

॥ ଶ୍ରୀହରିଃ ॥

ମୋର ପ୍ରିୟ ଗୋପାଳ!

॥ ଶ୍ରୀମଦ୍‌ଭଗବଦ୍‌ଭକ୍ତେଭ୍ୟୋ ନମଃ ॥

# ଶ୍ରୀଭକ୍ତ-ଚରିତାମୃତ

## (ପ୍ରଥମ ଖଣ୍ଡ)

ସତ୍ ପ୍ରେରଣା—

ପରମ ସନ୍ତ ଶ୍ରଦ୍ଧେୟ ସ୍ୱାମୀ ଶ୍ରୀରାମସୁଖଦାସଜୀ ମହାରାଜ

॥ ଶ୍ରୀହରିଃ ॥

ମୋର ପ୍ରିୟ ଗୋପାଳ

ଶ୍ରୀଲଳିତ ବିନୋଦ ବିଜୟତେ

॥ ଶ୍ରୀମଦ୍‌ଭଗବଦ୍‌ଭକ୍ତେଭ୍ୟୋ ନମଃ ॥

# ଶ୍ରୀଭକ୍ତ-ଚରିତାମୃତ

## (ପ୍ରଥମ ଖଣ୍ଡ)



ସମ୍ପାଦନା— { ବାବା ଦୀନବନ୍ଧୁ ଦାସ
ଶ୍ରୀ ନିରଞ୍ଜନ ପଣ୍ଡା

ପ୍ରକାଶକ—ସର୍ବହିତ ପ୍ରକାଶନ, ବୃନ୍ଦାବନ

**ଶ୍ରୀଭକ୍ତ-ଚରିତାମୃତ**
ପ୍ରଥମ ସଂସ୍କରଣ—୧,୦୦୦
**ପ୍ରକାଶକ**—ସର୍ବହିତ ପ୍ରକାଶନ, ଶ୍ରୀଲଳିତ ବିନୋଦ ଟ୍ରଷ୍ଟ (ଶ୍ୟାମକୁଟୀ ନିକଟ), ହରିଦେବ କଲୋନୀ, ପାଣିଘାଟ, ବୃନ୍ଦାବନ, ମଥୁରା (ଉ. ପ୍ର), ପିନ୍-୨୮୧୧୨୧
**ମୁଦ୍ରକ**—ବଙ୍ଗବାସୀ ପ୍ରେସ୍, ✆୯୮୩୦୦୫୬୩୮୦, କୋଲକାତା
**ମୂଲ୍ୟ**—୯୦/- ଟଙ୍କା ମାତ୍ର

**Shri Bhakta Charitamruta**
First Edition 1,000
**Publisher**- Sarbahita Prakasan, Shri Lalit Vinod Trust (Near Shyamkuti), Haridev Colony, Panighat, Vrindavan, Mathura,
**Printer**-Bangabasi Ltd. (Press), 26, Pataldanga St., Kolkata 9.
✆ : 9830056380
Price: Rs. 90/- (Ninety Only)

## ପ୍ରମୁଖ ଯୋଗାଯୋଗ ଓ ପ୍ରାପ୍ତିସ୍ଥାନ

ଶ୍ରୀ ଲଳିତ ବିନୋଦ ଟ୍ରଷ୍ଟ, ହରିଦେବ କଲୋନୀ, ପାଣିଘାଟ, ପରିକ୍ରମା ମାର୍ଗ, ବୃନ୍ଦାବନ, ମଥୁରା, ପିନ୍-୨୮୧୧୨୧, ଫୋ. ୯୮୯୭୫୨୦୪୮୩
**E:mail**-gopalpyare@yahoo.com
meregopalpyare@gmail.com

## ଆଞ୍ଚଳିକ ପ୍ରାପ୍ତିସ୍ଥାନ

**ପୁରୀ—(୧)** ଶ୍ରୀ ଦାମୋଦର ସାହୁ, ନୃସିଂହ ସତ୍ସଙ୍ଗ ମଣ୍ଡଳ, ନୃସିଂହ ମନ୍ଦିର, ପୁରୀ।
**(୨)** ଦାମୋଦର ପୁସ୍ତକାଳୟ, ସଦ୍‌ଗ୍ରନ୍ଥ ନିକେତନ, ଶ୍ରୀମନ୍ଦିର ପୁରୀ, ୭୨୫୦୦୧, ✆ ୯୪୩୯୦୪୪୯୯୫

**କଟକ—(୧)** ଶ୍ରୀବିଷ୍ଣୁ କୁମାର ଚୌଧୁରୀ, ✆୯୩୩୮୦୯୧୮୦୦
(୨) ଶ୍ରୀରାମନିଗମେଶ୍ୱର ମନ୍ଦିର, ଚହଟାଘାଟ, ବିଡ଼ନାସୀ, କଟକ ୧୪, ✆୯୮୬୧୨୩୨୧୭୧
(୩) ଚିତ୍ତରଞ୍ଜନ କର, ଶିବାନନ୍ଦ ଶାନ୍ତି ଆଶ୍ରମ, ଗୁରୁଜାଁପାଳ, କଟକ, ପିନ୍. ୭୫୪୨୦୪, ✆୯୪୩୮୦୭୫୨୦୦

**ଆଠଗଡ଼**—କାଳୀ ପ୍ରସାଦ ମିଶ୍ର, ନୂଆବନ୍ଧ, ଜେନାପଦା, ଆଠଗଡ଼, ✆୯୯୩୮୬୯୮୦୫୩

**ଭୁବନେଶ୍ୱର**—✆୯୨୩୮୮୧୪୦୪୩

**ବ୍ରହ୍ମପୁର**—ତାରାତାରିଣୀ ପୁସ୍ତକାଳୟ, ପୁରୁଣା ବସ୍‌ଷ୍ଟାଣ୍ଡ, ✆୯୪୩୭୧୨୩୧୯୩

**କେନ୍ଦୁଝର**—ଜତୀନ୍ ମିଶ୍ର, ଜନାର୍ଦ୍ଦନପୁର ଶାସନ, କେନ୍ଦୁଝର। ✆୯୪୩୭୬୭୫୧୧୨

**ଗଞ୍ଜାମ**—ବ୍ରହ୍ମାନନ୍ଦ ପ୍ରଧାନ, ଶ୍ରୀ ରାଧାଗୋପୀନାଥ ଗୀତା ପ୍ରଚାର ସମିତି, ଜିରାବାଡ଼ି, ଜଗନ୍ନାଥ ପ୍ରସାଦ, ଗଞ୍ଜାମ। ✆୯୯୩୭୭୧୭୪୭୦

**ଫୁଲବାଣୀ—(୧)** କୃଷ୍ଣଚନ୍ଦ୍ର ପଣ୍ଡା (ସଂସ୍କୃତ ଶିକ୍ଷକ) ଫୋ. ୦୯୪୩୭୦୪୭୧୧୯
(୨) ମହାନ୍ତି ଇଣ୍ଟର ପ୍ରାଇସେସ୍ (ବହି ଦୋକାନ) ✆୯୪୩୮୩୦୬୯୩୫

**ବରଗଡ଼**—ଲଳିତ ମୋହନ ପାଣିଗ୍ରାହୀ, ଲ-କଲେଜ ପାଖ, ✆୯୭୭୭୨୬୧୨୯୯

**ସମ୍ବଲପୁର**—ଭାରତୀ ବୁକ୍ ଏମ୍ପୋରିୟମ୍, ଧନୁପାଲି, ✆ ୮୯୦୮୦୫୨୦୫୦

**ନୟାଗଡ଼**—(୧) ଶ୍ରୀ ରାମଚନ୍ଦ୍ର ବୁକ୍‌ଷ୍ଟୋର
**(୨)** ଶ୍ରୀ ଅବକାଶ ସାହୁ (ଶିକ୍ଷକ), ହରିପୁର, ଗଦାଧର ପ୍ରସାଦ, ନୟାଗଡ଼।

ପ୍ରକାଶନ ସମ୍ବନ୍ଧୀୟ ଜ୍ଞାତବ୍ୟ—✆୯୪୩୭୧୧୩୧୯୩; ୯୪୩୮୦୪୧୫୪୪



॥ ଶ୍ରୀଗଣେଶାୟ ନମଃ ॥

# ପ୍ରସ୍ତାବନା

ଭକ୍ତ ଓ ଭଗବାନଙ୍କର ସମ୍ପର୍କ ଅତି ନିବିଡ଼। କେବଳ ନିବିଡ଼ ନୁହେଁ, ଅବିଚ୍ଛେଦ୍ୟ ମଧ୍ୟ। ସେହି ସମ୍ପର୍କକୁ କ୍ଷୀର-ନୀର ଭଳି କହିବା ମଧ୍ୟ ଠିକ୍ ହେବ ନାହିଁ; କାରଣ କ୍ଷୀରରେ ନୀର ମିଶି ଏକାକାର ହୋଇଯାଏ, ମାତ୍ର ଭକ୍ତ ଅଭିନ୍ନ ହୋଇ ମଧ୍ୟ ଭିନ୍ନ ରହେ ଏବଂ ଭେଦଭାବରେ ହିଁ ଭକ୍ତି କରିବାକୁ ପରମ ସୁଖ ମଣେ। ଅପରପକ୍ଷେ ଭକ୍ତର ଭାବ ଅନୁସାରେ ଭଗବାନ ମଧ୍ୟ କେବେ ପ୍ରଭୁ ହୋଇ ଭକ୍ତକୁ ଆଶ୍ରୟ ଦିଅନ୍ତି ତ କେବେ କେବେ ଦାସ ପରି ଭକ୍ତର ଆଜ୍ଞା ପାଳନ କରିବା ସହିତ ନାନାବିଧ ସେବା କରି ସୁଖ ପାଆନ୍ତି। ସେଠି ନ ଥାଏ ସ୍ୱାମୀ ସେବକର ତାରତମ୍ୟ, କି ଭୟ ସଂକୋଚର ଅବାସ୍ତବ ବ୍ୟବଧାନ। ଏହା କେବଳ ଏକ ପାରସ୍ପରିକ ଅନ୍ତରଙ୍ଗ ପ୍ରେମର ଅନୁପମେୟ ଅନୁଭବଗମ୍ୟ ମଧୁର ଲୋକାତୀତ ସମ୍ପର୍କ।

କିନ୍ତୁ ଏହି ମଧୁରତାର ବୃଦ୍ଧିରେ ଭକ୍ତ ହିଁ ମୁଖ୍ୟ କାରଣ। ସେଥିପାଇଁ ଭକ୍ତ ନିକଟରେ ଭଗବାନ ନିଜକୁ ବିକି ଦିଅନ୍ତି। ସମଗ୍ର ଜଗତ ଯେଉଁ ଭଗବାନଙ୍କର ଅଧୀନ, ସେ ମଧ୍ୟ ଭକ୍ତର ଅଧୀନତା ସ୍ୱୀକାର କରନ୍ତି। ତାଙ୍କର ଭ୍ରୂଭଙ୍ଗୀ ମାତ୍ରକେ ସମଗ୍ର ସଂସାର ନାଚୁଥିବା ବେଳେ ସେ ସ୍ୱୟଂ ଭକ୍ତର ସ୍ନେହପ୍ରେମମିଶ୍ରିତ ଘୋଳଦହି ମୁନ୍ଦାକ ପାଇଁ ନିଜର ପ୍ରଭୁତା ଭୁଲିଯାଇ ତା' ଆଗରେ ନାଚ ଦେଖାନ୍ତି। ଭକ୍ତ ଆଦେଶରେ ସେ ତା'ର ରଥ ଚଳାନ୍ତି; ତା'ର ନୀଚ୍ଚତିନୀଚ ସେବା କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ।

ପ୍ରକୃତରେ ଭଗବାନଙ୍କର ମହିମା ବିସ୍ତାରିତ ହୋଇଛି ଭକ୍ତଙ୍କ ନିମିତ୍ତ ଓ ଭକ୍ତଙ୍କ ଦ୍ୱାରା। ଯୁଗେ ଯୁଗେ ସେ ଭକ୍ତ ଓ ସାଧୁଜନଙ୍କର ପରିତ୍ରାଣ ନିମନ୍ତେ ହିଁ ଅବତାର ଗ୍ରହଣ କରନ୍ତି। ଦୁଷ୍ଟଙ୍କର ସଂହାର ତ ସେ ସଙ୍କଳ୍ପମାତ୍ରେ କରି ପାରିବେ; ମାତ୍ର ପ୍ରଣତଜନଙ୍କ ସଙ୍କଳ୍ପକୁ ସାକାରରୂପ ଦେବା ଓ ସେମାନଙ୍କୁ ଲୀଳାଖେଳାର

ସୁଖ ଦେବା ଅବତାର ଗ୍ରହଣ ବିନା ସମ୍ଭବପର ନୁହେଁ। ଭକ୍ତର ହିତ ନିମନ୍ତେ ସେ ଯେଉଁ ସବୁ ଲୀଳାଖେଳା କରନ୍ତି, ସେଥିରେ ଭକ୍ତ ମଧ୍ୟ ଗୋଟିଏ ପକ୍ଷ ହୋଇଥାଏ।

ତେବେ ଏ ପରିପ୍ରେକ୍ଷୀରେ ପ୍ରଶ୍ନ ହୋଇପାରେ ଯେ ଯଦି ଭଗବାନଙ୍କର ପ୍ରତ୍ୟେକ ଲୀଳା ଭକ୍ତଙ୍କ ନିମିତ୍ତ, ଭକ୍ତଙ୍କ ଗହଣରେ ଓ ଭକ୍ତଙ୍କ ମାଧ୍ୟମରେ ସଂଘଟିତ ତଥା ପରିସ୍ଫୁଟ ହୁଏ ଏବଂ ଭଗବାନ ଭକ୍ତ ବିନା ନିଜକୁ ଅପୂର୍ଣ୍ଣ ମନେ କରନ୍ତି, ତେବେ ଭଗବାନଙ୍କ ଚରିତ କ'ଣ ଭକ୍ତଙ୍କ ଚରିତ ବିନା ଅପୂର୍ଣ୍ଣ ନୁହେଁ? ଉଭୟଙ୍କ ସାନ୍ନିଧ୍ୟ ଓ ସାହଚର୍ଯ୍ୟରେ ଯେଉଁ ଲୀଳାଦି ସମ୍ପାଦିତ ହୁଏ, ସେଥିରୁ କ'ଣ ଭକ୍ତର ଚରିତକୁ ବାଦ୍ ଦିଆଯାଇ ପାରିବ? କଦାପି ନୁହେଁ। ଅତଏବ ଜଣଙ୍କର ଚରିତ କହିବାକୁ ହେଲେ ଅନ୍ୟ ଜଣକର ଚରିତ ମଧ୍ୟ ସେଥିରେ ଅପ୍ରତ୍ୟାଶିତରୂପେ ଆସିଯିବା ସୁନିଶ୍ଚିତ; କାରଣ ଭକ୍ତ ଚରିତ ଭଗବାନଙ୍କ ଚରିତର ଏକ ଅଭିନ୍ନ ଅଙ୍ଗ।

ଅନ୍ୟ ଏକ ଦୃଷ୍ଟିକୋଣରୁ ଦେଖିଲେ ଭକ୍ତ ଚରିତ ବିନା ଭଗବାନଙ୍କ ଚରିତ ଅପୂର୍ଣ୍ଣ। କାରଣ ଭଗବାନ ଅନନ୍ତ ଗୁଣ, ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ, କରୁଣା ଇତ୍ୟାଦିର ସାଗର ହେଲେ ମଧ୍ୟ ସିଧାସଳଖ ତାଙ୍କଠାରୁ ଉପକୃତ ହେବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ। ଭକ୍ତ ହିଁ ମେଘତୁଲ୍ୟ ହୋଇ ସେଇ ଅନନ୍ତ ଗୁଣାଦିକୁ ସର୍ବତ୍ର ବୃଷ୍ଟିରୂପେ ବିତରିତ କରିଥାଏ। ଭଗବାନ ଚନ୍ଦନ ତରୁ ତୁଲ୍ୟ ହେଲେ ମଧ୍ୟ ଭକ୍ତ ହିଁ ସମୀର ରୂପେ ତାଙ୍କର ମହିମାରୂପୀ ସୁବାସକୁ ଚତୁର୍ଦ୍ଦିଗରେ ବିସ୍ତାରିତ କରିଥାଏ। ଏହି କାରଣରୁ ଭକ୍ତ ଓ ଭଗବାନଙ୍କର ଚରିତକୁ ପରସ୍ପରର ପରିପୂରକ ଓ ଅନ୍ୟୋନ୍ୟାଶ୍ରିତ ବୋଲି କୁହାଯାଏ। ମହର୍ଷି ବ୍ୟାସଦେବ ଦେବର୍ଷି ନାରଦଙ୍କ ପରାମର୍ଶକ୍ରମେ ଭଗବାନଙ୍କ ଚରିତ ବର୍ଣ୍ଣନା କରିବାକୁ ଭାଗବତ ରଚନା କରିଥିଲେହେଁ ସେଥିରେ ଭୀଷ୍ମ, କୁନ୍ତୀ, ପରୀକ୍ଷିତ, ନାରଦ, ଅମ୍ବରୀଷ, ଧ୍ରୁବ, ପ୍ରହ୍ଲାଦ ପ୍ରମୁଖ ଯେଉଁ ଶତାଧିକ ଭକ୍ତଙ୍କ ଚରିତ ବର୍ଣ୍ଣନା କରିଯାଇଛନ୍ତି, ତାହାର କାରଣ ମଧ୍ୟ ଏହି ଅନ୍ୟୋନ୍ୟାଶ୍ରିତ ସମ୍ପର୍କ। ପାଠକବନ୍ଧୁଙ୍କ ସମ୍ମୁଖରେ ଏ ଯେଉଁ ଭକ୍ତ ଚରିତ ଗ୍ରନ୍ଥ ସ୍ଥାନିତ ହୋଇଛି, ତାହା ମଧ୍ୟ ଏହି ସମ୍ପର୍କର ମୂର୍ତ୍ତିମନ୍ତ ପରିଣତି। କିଛି ବର୍ଷ ପୂର୍ବେ ଯେତେବେଳେ ଆମେ ଗୀତାପ୍ରେସ୍‌ରୁ ଅତିବଡ଼ୀ ଜଗନ୍ନାଥଦାସଙ୍କ କୃତ ଭାଗବତ ପ୍ରକାଶିତ କରିବା କାର୍ଯ୍ୟରେ ବ୍ୟସ୍ତ ଥିଲୁ, ସେତିକିବେଳେ ଭଗବାନଙ୍କର ସେହି ଲୀଳାଚରିତ ଗ୍ରନ୍ଥ ସହିତ ଭକ୍ତଚରିତ ପ୍ରକାଶନ କରିବାର ଅଭିଲାଷ ମଧ୍ୟ

ମନରେ ଉଙ୍କି ମାରିଥିଲା । ସେହି ମାନସିକ ସଂକଳ୍ପ ହିଁ ଆଜି ପ୍ରଭୁକୃପା ଓ ଭକ୍ତଜନଙ୍କ ଆଶୀର୍ବାଦରୁ ସାକାର ରୂପ ଧାରଣ କରି ପାରିଛି ।

୨୦୦୧ ମସିହାରେ ଆମର ପାରମାର୍ଥିକ ମାର୍ଗର ପଥପ୍ରଦର୍ଶକ ଚିର ବନ୍ଦନୀୟ ଶ୍ରଦ୍ଧେୟ ସ୍ୱାମୀ ଶ୍ରୀରାମସୁଖ ଦାସଜୀ ମହାରାଜ ସତ୍ସଙ୍ଗ କାର୍ଯ୍ୟକ୍ରମରେ ଗୀତାପ୍ରେସ୍ ଆସିଥାନ୍ତି । ସେହି ସମୟରେ ଯଦିଓ ତାଙ୍କ ଲିଖିତ ଗୀତାର ସୁବୃହତ୍ 'ସାଧକ-ସଂଜୀବନୀ' ଟୀକାର ଓଡ଼ିଆ ଅନୁବାଦ ସାରି ଆମେ ତାଙ୍କର ଅନ୍ୟାନ୍ୟ ପୁସ୍ତକଗୁଡ଼ିକର ଅନୁବାଦ କାର୍ଯ୍ୟରେ ବ୍ୟସ୍ତ ଥାଉ, ତଥାପି ଓଡ଼ିଶାର ଅମ୍ଳାନ ପ୍ରତିଭା ଭକ୍ତକବି ଶ୍ରୀଜଗନ୍ନାଥଦାସଙ୍କ ଭାଗବତକୁ ଶୁଦ୍ଧ ଓ ସର୍ବାଙ୍ଗସୁନ୍ଦର ରୂପରେଖ ଦେଇ ଗୀତାପ୍ରେସରୁ ସୁଲଭ ମୂଲ୍ୟରେ ଛପାଇବାକୁ ଆମେ ମନ ମଧ୍ୟରେ ପରିକଳ୍ପନା କରିସାରିଥାଉ । ଦିନେ ବ୍ରାହ୍ମମୁହୂର୍ତ୍ତରେ ତାଙ୍କ ସହ ଭେଟି ଏହି ପ୍ରସ୍ତାବ ରଖିଲୁ । ସେହି ପରିପ୍ରେକ୍ଷୀରେ ତାହାର ରଚୟିତା ଭକ୍ତ ଶ୍ରୀଜଗନ୍ନାଥଦାସଙ୍କ ଜୀବନୀ ବିଷୟରେ କେଇପଦ ଚର୍ଚ୍ଚା ହୋଇଥିଲା । ତାହାକୁ ଶୁଣିଲା ପରେ ସେ ଅତ୍ୟନ୍ତ ପ୍ରଭାବିତ ହୋଇ ଗୀତାପ୍ରେସ କର୍ତ୍ତୃପକ୍ଷଙ୍କୁ ନିଜର ଅନୁକୂଳ ମନ୍ତବ୍ୟ ଜଣାଇଲେ; ଯାହାଫଳରେ ଭାଗବତର ପ୍ରକାଶନ ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଗଲା । ସେତିକିବେଳେ ଭକ୍ତଚରିତର ପ୍ରଭାବ ଯେ କେତେ, ତାହା ଆମକୁ ପ୍ରତ୍ୟକ୍ଷ ଅନୁଭୂତ ହେଲା; ତତ୍ସହିତ ଭକ୍ତଚରିତ ପ୍ରକାଶନ ପାଇଁ ମଧ୍ୟ ମନ ମଧ୍ୟରେ ସଙ୍କଳ୍ପରୂପେ ବୀଜ ବପନ ହୋଇଗଲା । ମାତ୍ର ସେତେବେଳେ ଭାଗବତର ସମ୍ପାଦନା କାର୍ଯ୍ୟର ପ୍ରାଧାନ୍ୟ ଥିବାରୁ ଭକ୍ତଚରିତ ପ୍ରକାଶନ ହୋଇ ପାରିଲା ନାହିଁ । ସେଥିରୁ ଅବ୍ୟାହତି ମିଳିବା ପରେ ୨୦୦୩ ମସିହାରେ, ଋଷିକେଶରେ ଏହି କାର୍ଯ୍ୟର ମୂଳଦୁଆ ପଡ଼ିଲା । ଭକ୍ତ ରଘୁ ଅରକ୍ଷିତ, ଭକ୍ତ ଦାମା ପନ୍ତ ଓ ଭକ୍ତ ନାମଦେବଙ୍କ ଚରିତର କିଛି ଅଂଶ ଲେଖା ହୋଇଗଲା । ମାତ୍ର ଭଗବାନଙ୍କର ବିଧାନ କିଛି ଭିନ୍ନ ଥିଲା, ଯାହା ଫଳରେ କାର୍ଯ୍ୟଟି ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହୋଇ ପାରିଲା ନାହିଁ । ନାନା ପ୍ରକାର ବାଧାବିଘ୍ନ ଆସିଲା ଏବଂ କିଛି ଦିନ ମଧ୍ୟରେ ସ୍ୱାମୀଜୀ ମହାରାଜଙ୍କର ମହାପ୍ରୟାଣ ମଧ୍ୟ ଘଟିଗଲା । କାର୍ଯ୍ୟ ସମ୍ପାଦନ ବ୍ୟବସ୍ଥା ଅସ୍ତବ୍ୟସ୍ତ ହୋଇଗଲା । କିନ୍ତୁ ଶୁଖିଲା ମାଟିରେ ପ୍ରସୁପ୍ତରୂପେ ପଡ଼ି ରହିଥିବା ମଞ୍ଜି ଯେପରି ଅନୁକୂଳ ସମୟ ଓ ଜଳବାୟୁ ପାଇଲେ ଅଙ୍କୁରିତ ହୋଇଉଠେ, ଏହି ସତ୍କାର୍ଯ୍ୟର ସଙ୍କଳ୍ପ ସେହିପରି ନଷ୍ଟ ନ ହୋଇ ସମୟ ପାଇ ମନରେ ପୁନଃ ଜାଗୃତ ହେଲା ଏବଂ ତାହା ଯଥାସାମର୍ଥ୍ୟ କାର୍ଯ୍ୟାନ୍ୱିତ ହୋଇ ବର୍ତ୍ତମାନ ଏହି 'ଶ୍ରୀଭକ୍ତ-ଚରିତାମୃତ'

ଗ୍ରନ୍ଥରୂପରେ ଆତ୍ମପ୍ରକାଶ ପାଇ ପାରିଛି।

ଭଗବାନଙ୍କର ଏହି ବିଶାଳ ସୃଷ୍ଟିରେ କେତେ ଯେ ଭକ୍ତ ଓ ସଜ୍ଜନ ଏ ସଂସାରକୁ ଆସି ନିଜର ଜୀବନକୁ ଧନ୍ୟ କରିବା ସଙ୍ଗେ ସଙ୍ଗେ ଜଗତକୁ ଦିଗ୍‌ଦର୍ଶନ ଦେଇ ଯାଇଛନ୍ତି, ତାହାର ଇୟତ୍ତା ନାହିଁ। ପୁଣି ସେମାନଙ୍କ ମଧ୍ୟରେ ବି ଯେଉଁମାନଙ୍କ ଚରିତ ପ୍ରକଟିତ ହୋଇଛି, ସେ ସମସ୍ତଙ୍କର ଚରିତ ସଂଗ୍ରହ କରିବା ମନୁଷ୍ୟର ସାଧ୍ୟାତିରିକ୍ତ। ତେଣୁ ବିଶାଳ ଅଗାଧ ସାଗର ଗର୍ଭରୁ ନିଜ ସାମର୍ଥ୍ୟ ଅନୁସାରେ କିଛି ରତ୍ନ ସଂଗ୍ରହ କରିବା ପରି ଆମେ ଅଳ୍ପ କେତେକ ଭକ୍ତଙ୍କ ଚରିତ ଚୟନ କରିଛୁ, ଯେଉଁମାନଙ୍କ ଜୀବନ ଚରିତ, ଆଦର୍ଶ ବ୍ୟବହାର ଅଥବା ମହତବାଣୀ ପରମାର୍ଥ ମାର୍ଗର ପଥିକମାନଙ୍କୁ ଦିଗ୍‌ଦର୍ଶନ କରାଇବ ଏବଂ ଯେଉଁମାନଙ୍କ ଚରିତକୁ ମତ-ସମ୍ପ୍ରଦାୟର ଭେଦ-ବିରୋଧ ଓ ଖଣ୍ଡନ-ମଣ୍ଡନ ବିନା ନିଃସଙ୍କୋଚରେ ପ୍ରକାଶ କରି ପାରିବୁ।

ପ୍ରଥମେ ଆମର ବିଚାର ଥିଲା ଯେ କାଳକ୍ରମ ଅନୁସାରେ ଭକ୍ତମାନଙ୍କ ଚରିତ ପ୍ରକାଶ କରିବାକୁ, ମାତ୍ର ସମୟ, ସୁବିଧା, ଓ ସାମର୍ଥ୍ୟ ଦେଖିଲେ ତାହା ସମ୍ପନ୍ନ କରିବା ଅଣାକାର ସାଗରକୁ ପାରି ହେବା ଭଳି ଦୁଃସାଧ୍ୟ ମନେ ହେଉଛି। ଅତଏବ ଏହି ଖଣ୍ଡଟିରେ କୌଣସି ପ୍ରକାର କ୍ରମ ନ ରଖି ସବୁ ପ୍ରକାର ଚରିତକୁ ମିଶ୍ରିତ କରି ପ୍ରକାଶିତ କରାଯାଉଛି। ଭବିଷ୍ୟତରେ ଅନ୍ୟାନ୍ୟ ଚରିତକୁ କେତୋଟି ଭାଗରେ ପ୍ରକାଶିତ କରିବାକୁ ମନ ମଧ୍ୟରେ ବିଚାର ପୋଷଣ କରିଛୁ। ଭଗବାନ ଓ ତାଙ୍କ ଆତ୍ମୀୟ ଭକ୍ତଜନଙ୍କର କୃପା ଏହିପରି ରହିଲେ ତଥା ସୁଧୀ ପାଠକମାନଙ୍କ ଠାରୁ ଉପଯୁକ୍ତ ପରାମର୍ଶ ସହ ଉତ୍ସାହ ପାଇଲେ ଏ କାର୍ଯ୍ୟ ଖୁବ୍ ଶୀଘ୍ର ଅଗ୍ରଗତି କରିବ ବୋଲି ଆଶା।

ଏଥିରେ ଯେଉଁ ଭକ୍ତମାନଙ୍କର ଜୀବନ ଚରିତ ସ୍ଥାନିତ ହୋଇଛି, ସେମାନଙ୍କ ଜନ୍ମତିଥି, ଜନ୍ମସ୍ଥାନ ଓ ଜୀବନର ଘଟଣାବଳୀ ସମ୍ପର୍କରେ ଅନେକ ଗ୍ରନ୍ଥରେ ଅନେକ ପ୍ରକାର ମତପାର୍ଥକ୍ୟ ଦେଖିବାକୁ ମିଳେ। ଯେଉଁ ପାଠକମାନଙ୍କର ଯେପରି ଧାରଣା ଓ ବିଶ୍ୱାସ, ତାହା ସେମାନେ ଗ୍ରହଣ କରି ପାରନ୍ତି; ଏଥିରେ ଆମର କୌଣସି ଆପତ୍ତି ନାହିଁ। ଆମ ଧାରଣାରେ ଏସବୁ ବିଷୟରେ ଆମ୍ଭେମାନେ ମସ୍ତିଷ୍କ ପ୍ରଧାନ ନ ହୋଇ ହୃଦୟପ୍ରଧାନ ହେବା ଉଚିତ ଏବଂ ଏସବୁ ମତପାର୍ଥକ୍ୟର ଜାଲରେ ଛନ୍ଦି ନ ହୋଇ ଆମେ ଯେଉଁ ସଂସାର ଜାଲରେ ଛନ୍ଦି ହୋଇ ଜନ୍ମମରଣ ପାଉଛୁ, ସେଥିରୁ ମୁକ୍ତ ହେବାର ସୂତ୍ରମାନ ସେମାନଙ୍କ ଜୀବନରୁ ଗ୍ରହଣ କରିବା

ଉଚିତ। ଏଇଥିରେ ହିଁ ଆମର ଭକ୍ତଚରିତ ଅଧ୍ୟୟନର ସାର୍ଥକତା ନିହିତ। ଭକ୍ତଚରିତ ଆମ ମନୋମଳକୁ ପରିଷ୍କାର କରିବାର ଏକମାତ୍ର ମାଧ୍ୟମ। ଯଦି ଏହାକୁ ଭିତ୍ତି କରି ବାଦ-ବିବାଦରେ ପଡ଼ି ଆମେ ମନକୁ ଅଧିକ ମଳିନ କରିଦେବା, ତେବେ ତାହାକୁ ସଫା କରିବା କେଉଁଥିରେ?

ଭଗବାନ ଯେପରି ଅନନ୍ତ, ତାଙ୍କ ଭକ୍ତଙ୍କର ଭାବ, ଭକ୍ତି ଓ ଭକ୍ତିର ରୀତି ସେହିପରି ଅନନ୍ତ। ସେମାନଙ୍କର ଭାବର ଗଭୀରତମ ପ୍ରଦେଶରେ ପହଞ୍ଚିବା ଆମ ଭଳି ସାଧାରଣ ମନୁଷ୍ୟଙ୍କ କ୍ଷମତା ବାହାରେ। ତଥାପି ଭକ୍ତ ଓ ଭଗବାନଙ୍କ ଚରିତର ମନନ, ଚିନ୍ତନ, ଲେଖନ ଓ ଅନୁଶୀଳନ ଦ୍ୱାରା ସେମାନଙ୍କ ଚରିତ ଓ ସ୍ୱଭାବରୁ କିଛି ଭଲ ଭଲ ଗୁଣ ଆହରଣ କରିହେବ ଏବଂ ଏହାଦ୍ୱାରା ଆମେ ପ୍ରଭୁଙ୍କର ଓ ତାଙ୍କ ଭକ୍ତଜନଙ୍କର କରୁଣା ଭାଜନ ହୋଇ ପାରିବୁ—ଏହି ମାନସରେ ଏତେ ବଡ଼ ପ୍ରୟାସ କରିବାର ଧୃଷ୍ଟତା କରିଛୁ। ଭକ୍ତଙ୍କର ଲେଶମାତ୍ର ଗୁଣ ନିଜଠାରେ ନ ଥିଲେ ମଧ୍ୟ ତାହାର ଚର୍ଚ୍ଚା କରୁଛୁ। ଏଣୁ ଏହି କାର୍ଯ୍ୟରେ ତ୍ରୁଟି ରହିବା ସ୍ୱାଭାବିକ। ଏଥିପାଇଁ ସୁଧୀ ପାଠକ ବନ୍ଧୁମାନଙ୍କୁ କରବଦ୍ଧ ପ୍ରାର୍ଥନା ଯେ ସେମାନେ ଏଥିରେ ଥିବା ତ୍ରୁଟିକୁ ନିଜ ଅବୋଧ ଶିଶୁର ଦରୋଟି ବଚନ ପରି ଭାବି କ୍ଷମା କରିଦେବେ ଏବଂ ଏଥିରେ ଯାହା ସାହିତ୍ୟିକ ସୌନ୍ଦର୍ଯ୍ୟ ବିଭବର ଅଭାବ ଥିବ, ସେଥିପ୍ରତି ଦୃଷ୍ଟି ନ ଦେଇ କେବଳ ସାର ଗ୍ରହଣ କରିବେ।

ଭକ୍ତ ଓ ଭଗବାନଙ୍କର ଯଶୋଗାଥା କୀର୍ତ୍ତନ, ପଠନ ଓ ଶ୍ରବଣ ଦ୍ୱାରା ଶରତ ଋତୁରେ ସରୋବରର ଜଳ ସ୍ୱଚ୍ଛ ହୋଇଯିବା ପରି ମଣିଷର ହୃଦୟ ନିର୍ମଳ ହୁଏ ଏବଂ ସେଥିରେ ଶ୍ରୀହରି ବିରାଜିତ ହୁଅନ୍ତି। ଏହି ଗ୍ରନ୍ଥଟି ଅଧ୍ୟୟନ କରି ଯଦି କାହାରି ହୃଦୟସରିତା ତା'ର ଚରମ ଲକ୍ଷ୍ୟ ଆଡ଼କୁ ପ୍ରଧାବିତ ହେବା ସଙ୍ଗେ ସଙ୍ଗେ ପରମାତ୍ମାରୂପୀ ମହା ସିନ୍ଧୁରେ ମିଳିତ ହୋଇ ଜୀବନ ପ୍ରବାହକୁ ସାର୍ଥକ କରେ, ତେବେ ଆମେ ଏହାକୁ ଆମ ପରିଶ୍ରମର ସାର୍ଥକତା ମନେ କରିବୁ। ଆମର ଆଶା, ଉକ୍ତ ଉଦ୍ଦେଶ୍ୟର ପୂର୍ଣ୍ଣତା ଦିଗରେ ଏହି 'ଶ୍ରୀଭକ୍ତ-ଚରିତାମୃତ' ଗ୍ରନ୍ଥଟି ନିଶ୍ଚୟ ଯତ୍‌କିଞ୍ଚିତ୍ ସହାୟକ ହେବ।

ବିନୀତ—

**ସମ୍ପାଦକ ଦ୍ୱୟ**



॥ ଶ୍ରୀହରିଃ ॥

# ଭକ୍ତ-ଚରିତର ପ୍ରକୃତ ଶ୍ରୋତା

ଭକ୍ତଙ୍କ ଚରିତ ଶ୍ରଦ୍ଧାଳୁ ଶ୍ରୋତାଙ୍କୁ ଆନନ୍ଦ ଦେବା ତ ସ୍ୱାଭାବିକ, ଏପରି କି ତାହା ଭଗବାନଙ୍କୁ ମଧ୍ୟ ଆନନ୍ଦ ପ୍ରଦାନ କରେ। ନିମ୍ନୋକ୍ତ ଦୁଇଟି ଘଟଣାରୁ ଏହାର ପ୍ରତ୍ୟକ୍ଷ ପରିଚୟ ମିଳେ—

(୧) ଘଟଣାଟି ବ୍ରଜମଣ୍ଡଳ ଅନ୍ତର୍ଗତ ହୋଡ଼ଲ ଗ୍ରାମର। ସେତେବେଳକୁ ସନ୍ତ ଶ୍ରୀପ୍ରିୟାଦାସ ସଦ୍‌ଗୁରୁଦେବଙ୍କ ଆଜ୍ଞାରେ 'ଭକ୍ତମାଳ-ଟୀକା'ର ଲେଖନ କାର୍ଯ୍ୟ ପୂର୍ଣ୍ଣାଙ୍ଗ କରି ସନ୍ତମଣ୍ଡଳୀଙ୍କ ସଙ୍ଗରେ ବ୍ରଜ ଚୌରାଶୀ କୋଶ ପରିକ୍ରମା କରିବାକୁ ବାହାରିଥାଆନ୍ତି। ଯାତ୍ରା କ୍ରମରେ ସେ ହୋଡ଼ଲ ଗ୍ରାମରେ ମହନ୍ତ ଶ୍ରୀ ଲାଲଦାସଙ୍କ ଆଶ୍ରମରେ କିଛି ଦିନ ବିଶ୍ରାମ କରିଥିବା ବେଳେ ସନ୍ତସେବୀ ମହନ୍ତ ମହାଶୟ ନବାଗତ ସାଧୁସନ୍ତଙ୍କୁ ଯଥେଷ୍ଟ ସତ୍କାର କରି ଆପଣା ଆଶ୍ରମରେ ସ୍ଥାନ ଦେଲେ ଏବଂ ଶ୍ରୀଭକ୍ତ-ଚରିତ କଥାର ବିରାଟ୍ ଆୟୋଜନ କଲେ। ଶ୍ରୀପ୍ରିୟାଦାସ ପ୍ରତ୍ୟହ ଭକ୍ତ-ଚରିତ ଶୁଣାନ୍ତି। ଚାତକ ପକ୍ଷୀ ସ୍ୱାତୀଜଳ ପାନ କଲା ପରି କଥା-କୀର୍ତ୍ତନ ଓ ମହୋତ୍ସବରେ ସନ୍ତଜନଙ୍କ ହୃଦୟ-ସିନ୍ଧୁ ଉଦ୍‌ବେଳିତ ହୋଇଉଠେ। ଦୂର-ଦୂରାନ୍ତରୁ କଥାରସ ରସିକ ଶ୍ରୋତୃବୃନ୍ଦ ଆସି ଭକ୍ତ-ଚରିତାମୃତ ପାନ କରି ପରମ ଆନନ୍ଦ ଅନୁଭବ କରନ୍ତି।

ଦିନେ ଜନଗହଳିର ସୁଯୋଗ ନେଇ କେତେକ ଚୋର କଥା ଶୁଣିବା ନାଆଁରେ ଭଦ୍ରଲୋକ ବେଶରେ ଆସି ଆଶ୍ରମରେ ପହଞ୍ଚିଗଲେ। ଗାଈ ଚିରରେ ଲାଗିଥିବା ଟିଙ୍କ ଚିରରୁ କ୍ଷୀର ପିଇବା ପରିବର୍ତ୍ତେ ରକ୍ତ ପିଇବା ଭଳି ଚୋରମାନେ କଥାମୃତ ପାନ କରିବା ପରିବର୍ତ୍ତେ ରାତି ଅଧରେ ନିଛାଟିଆ ଦେଖି ସାଧୁସନ୍ତଙ୍କର ସବୁ ଜିନିଷପତ୍ର ସହିତ ଠାକୁରଙ୍କୁ ମଧ୍ୟ ଉଠେଇ ନେଲେ। ପ୍ରଭାତରୁ ଏଭଳି ଦୁଃଖଦ ଘଟଣା ଦେଖି ସନ୍ତଜନଙ୍କ ମନ ଭାଙ୍ଗିଗଲା। ସନ୍ତ ଶ୍ରୀପ୍ରିୟାଦାସ ଭକ୍ତ-ଚରିତ ଶୁଣାଇଲା ବେଳେ ଠାକୁରଙ୍କୁ ମୁଖ୍ୟ ଶ୍ରୋତା ଭାବି ତାଙ୍କ ପାଇଁ ଗୋଟିଏ ସୁକୋମଳ ଆସନ ବିଛାଇ ତାଙ୍କୁ ପ୍ରଥମେ ବିରାଜମାନ କରାନ୍ତି ଏବଂ ତା'ପରେ କଥା ଚାଲେ। ଆଜି କିନ୍ତୁ ଠାକୁରେ ନ ଥିବାରୁ କଥା ବନ୍ଦ ରହିଲା। ସାଧୁସନ୍ତଙ୍କ ସମେତ ସମସ୍ତ ଶ୍ରୋତୃମଣ୍ଡଳୀ ଅନ୍ନଜଳ ଛାଡ଼ି ମନଦୁଃଖରେ ସେହି ରାତି କାଟିଲେ।

ଭକ୍ତଜନଙ୍କର ଏ ଦୁଃଖ ଭକ୍ତବତ୍ସଳ ଭଗବାନ ସହି ପାରିଲେ ନାହିଁ। ସେ ଏକ ଲୀଳା ଦେଖାଇଦେଲେ। ତା' ପରଦିନ ସକାଳୁ ହଠାତ୍ ଦେଖାଗଲା ଯେ। ସେପଟୁ ଠାକୁରଙ୍କୁ ବିମାନରେ ବସାଇ ଚୋରମାନେ ନାମ-ସଂକୀର୍ତ୍ତନ କରି କରି ଆସୁଛନ୍ତି। ସେମାନେ ଶ୍ରୀପ୍ରିୟାଦାସଙ୍କ ନିକଟରେ ପହଞ୍ଚି ହଠାତ୍ ତାଙ୍କ ପାଦତଳେ ପଡ଼ିଯାଇ ବ୍ୟାକୁଳ ଚିତ୍ତରେ କ୍ଷମା ମାଗି କହିଲେ—''ବାବା! ଆମେମାନେ ମହାପାପୀ

ଆପଣଙ୍କୁ ନ ଚିହ୍ନି ବହୁ କଷ୍ଟ ଦେଲୁ । ଠାକୁର ଆପଣଙ୍କ ମୁଖରୁ ଭକ୍ତ-ଚରିତ ଶୁଣିବାକୁ କେତେ ଆଗ୍ରହୀ, ଆଜି ଆମେ ପ୍ରତ୍ୟକ୍ଷ ଅନୁଭବ କଲୁ ।'' କ'ଣ ହେଲା ବୋଲି ପଚ୍ୱରିବାରୁ ଜଣେ କହିଲା—''ଠାକୁରେ ମୋତେ ରାତିରେ ଭୟାନକ ସ୍ୱପ୍ନ ଦେଇ କହିଲେ—ରେ ଦୁଷ୍ଟ! ପାଷଣ୍ଡ! ମୋତେ ଭକ୍ତ-ଚରିତ ଶୁଣିବାରୁ ବଞ୍ଚିତ କରି ଏବଂ ମୋ ଭକ୍ତଜନଙ୍କୁ ଭୋକ-ଉପାସରେ ରଖି ତୁମେମାନେ ମୋତେ ଯେଉଁ କଷ୍ଟ ଦେଲ, ତାହା ବଦଳରେ ମୁଁ ତୁମମାନଙ୍କ ମୁଣ୍ଡରେ ଦୁଃଖର ପାହାଡ଼ କଚ୍ୱଡ଼ିଦେବି । ଯଦି ତୁମର ଭଲି ଗତି ଥାଏ, ମୋତେ ମୋ ଭକ୍ତଙ୍କ ପାଖରେ ଶୀଘ୍ର ଛାଡ଼ିଆସ, ନହେଲେ ତୁମର ସର୍ବନାଶ ହୋଇଯିବ ।'' ଚ୍ୱେରଙ୍କ ଠାରୁ ଠାକୁରଙ୍କ ଭକ୍ତବତ୍ସଳତାର ବର୍ଣ୍ଣନା ଶୁଣି ଭକ୍ତଜନଙ୍କ ମନରେ ଆନନ୍ଦ-ଲହରୀ ଖେଳିଗଲା । ସେ ହିଁ ଭକ୍ତ-ଚରିତର ପ୍ରକୃତ ଶ୍ରୋତା ବୋଲି ଅନୁଭବ କରି ସମସ୍ତେ ନାମ-ସଂକୀର୍ତ୍ତନପୂର୍ବକ ପୂର୍ବ ଭଳି ଚରିତ ଶ୍ରବଣରେ ବିଭୋର ହୋଇଗଲେ ।

(୨) ପ୍ରେମୀଭକ୍ତର ମନ ରଖିବା ପାଇଁ ଶ୍ରୀଧାମ ବୃନ୍ଦାବନ ଛାଡ଼ି ରାଜସ୍ଥାନର ଜୟପୁରରେ ବିରାଜିତ ଠାକୁର ଶ୍ରୀଗୋବିନ୍ଦଦେବ ଜୀଉ କିପରି ଭକ୍ତ ଚରିତ ଶୁଣୁଥିଲେ, ଏହି ଅଦ୍ଭୁତ ଘଟଣାଟି ତାହାର ଜ୍ୱଳନ୍ତ ପ୍ରମାଣ । ଥରେ ଜଣେ ଭକ୍ତ-ଭଗବନ୍ତ-ଲୀଳା ରସିକ ସନ୍ଥ ଶ୍ରୀଗୋବିନ୍ଦ ଜୀଉଙ୍କ ଦର୍ଶନ ନିମନ୍ତେ ଜୟପୁର ଯାଇଥିଲେ । ଠାକୁରେ ତ ଭାବ ବିନୋଦିଆ । ସନ୍ଥଙ୍କ ମୁଖରୁ ଭକ୍ତ-ଚରିତ ଶୁଣିବାକୁ ତାଙ୍କର ମନ ବଳିଲା । ନବାଗତ ସନ୍ଥଙ୍କୁ ସେ ପ୍ରେମ ଡୋରିରେ ଏଭଳି ବାନ୍ଧି ରଖିଲେ ଯେ ଦର୍ଶନ କରି ଶୀଘ୍ର ଫେରି ଆସିବାକୁ ସ୍ଥିର କରିଥିବା ସନ୍ଥ ବହୁ ଦିନଯାଏ ମନ୍ଦିରରେ ପ୍ରଭୁଙ୍କୁ ଭକ୍ତ-ଚରିତ ଶୁଣାଇବା ପାଇଁ ଅଟକିଗଲେ । ମହା ଆନନ୍ଦରେ କଥା-କୀର୍ତ୍ତନ ଚ୍ୱଲିଲା । କିଛି ଦିନ ପରେ ସନ୍ଥଙ୍କୁ ଅନ୍ୟ କୌଣସି କାର୍ଯ୍ୟରେ ଯିବାକୁ ପଡ଼ିବାରୁ ସେ ଶ୍ରୋତାମାନଙ୍କ ଠାରୁ ବିଦାୟ ମାଗି, କିଛି ଦିନ ପରେ ଫେରିଲେ ପୁଣି ଭକ୍ତ-ଚରିତ ଶୁଣାଇବେ ବୋଲି କଥା ଦେଇ ଚ୍ୱଲିଗଲେ । କାର୍ଯ୍ୟ ସାରି ଫେରିବା ପରେ ଭକ୍ତ-ଚରିତ କଥା କେଉଁଯାଏ ଯାଇଥିଲା ବୋଲି ପଚ୍ୱରିବାରୁ ସମସ୍ତେ ନିରୁତ୍ତର ହୋଇଗଲେ । କାହାର ସଠିକ୍ ମନେ ପଡ଼ିଲା ନାହିଁ । ସେତିକିବେଳେ ଠାକୁର ଶ୍ରୀଗୋବିନ୍ଦଦେବ ମନ୍ଦିର ଭିତରୁ ମେଘ ଗମ୍ଭୀର ସ୍ୱରରେ କହିଲେ—''ମହାତ୍ମନ୍! ସନ୍ଥ ରବିଦାସଙ୍କ ଚରିତ ସରିଥିଲା, ଏବେ ତା' ଆଗକୁ କୁହନ୍ତୁ ।'' ପ୍ରଭୁଙ୍କ ଶ୍ରୀମୁଖରୁ ଏ କଥା ଶୁଣି ସମସ୍ତେ ଆଚମ୍ଭିତ ହୋଇଗଲେ । ସମସ୍ତଙ୍କୁ ବିଶ୍ୱାସ ହୋଇଗଲା ଯେ ଭକ୍ତଜନଙ୍କ ଚରିତର ପ୍ରକୃତ ଶ୍ରୋତା ହେଲେ ଭଗବାନ । ପିତାମାତା ଯେପରି କେଉଁଠି ତାଙ୍କ ଆଜ୍ଞାକାରୀ ସନ୍ତାନର କଥା ପଡ଼ିଥିଲେ ପ୍ରତ୍ୟକ୍ଷ ବା ପରୋକ୍ଷରେ କାନଡେରି ଶୁଣନ୍ତି, ଭଗବାନ ସେହିପରି ଭକ୍ତଜନଙ୍କ ଚରିତ ଶୁଣିବାକୁ ଚିର ଲାଳାୟିତ ।



॥ ଶ୍ରୀହରିଃ ॥

# ଭକ୍ତ-ଚରିତ କେମିତି ପଢ଼ିବା?

## (ପରମ ସନ୍ତ ସ୍ୱାମୀ ଶ୍ରୀରାମସୁଖଦାସ ମହାରାଜଙ୍କ ବିଚାର)

ଭକ୍ତ ଚ଼ରିତ ସାଧାରଣ ଇତିହାସ ଓ ଗଳ୍ପ ଭଳି ଲାଗୁଥିଲେହେଁ ସାଧାରଣ ନୁହେଁ। ଏହା ଭକ୍ତଙ୍କ ଜୀବନରେ ଘଟିଯାଇଥିବା ଘଟଣାବଳୀ ଓ ଭଗବଦ୍‌କୃପାର ପ୍ରତ୍ୟକ୍ଷ ନିଦର୍ଶନ। ଏହାକୁ ପଢ଼ିଲେ କଠୋର ହୃଦୟର ବ୍ୟକ୍ତି ମଧ ଭକ୍ତିରସକୁ ଅନୁଭବ କରିବାକୁ ସମର୍ଥ ହୁଏ। ନାନା ପ୍ରକାର ଅନୁକୂଳ ବା ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଭକ୍ତମାନେ କିପରି ଅଗ୍ରଗତି କରିଛନ୍ତି, ନିଜର ଐକାନ୍ତିକ ନିଷ୍ଠାରୁ ବିଚ୍ୟୁତ ନ ହୋଇ କିପରି ଜୀବନର ପରମ ଲକ୍ଷ୍ୟ ପ୍ରାପ୍ତ ହୋଇଛନ୍ତି, ତାହା ହୃଦୟଙ୍ଗମ କଲେ ମନୁଷ୍ୟକୁ ଏକ ଧୈର୍ଯ୍ୟ ଓ ସାହସ ପ୍ରାପ୍ତ ହୁଏ। ଭକ୍ତଜନଙ୍କ ପାଇଁ ତ ଏହା ସଂଜୀବନୀ ତୁଲ୍ୟ ଆହ୍ଲାଦ ପ୍ରଦାନ କରେ। ଏତଦ୍ଵାରା ଭଗବାନଙ୍କ ପ୍ରତି ପ୍ରଗାଢ଼ ଆସ୍ଥା ଓ ବିଶ୍ୱାସ ଜନ୍ମେ। ଭଗବାନ ପ୍ରତ୍ୟେକ ଜୀବର କେତେ ଆପଣାର ଓ ତାଙ୍କୁ ଭୁଲିଯାଇ ସଂସାରରେ ହନ୍ତସନ୍ତ ହେଉଥିବା ଜୀବକୁ ସେ କେଉଁ ଉପାୟରେ ତାଙ୍କ ଆଡ଼କୁ ଟାଣି ନିଅନ୍ତି, ଏ ସବୁ ଗୂଢ଼ ତଥ୍ୟ ଭକ୍ତ-ଚରିତରୁ ପ୍ରତ୍ୟକ୍ଷ ଜାଣିହୁଏ। ହୃଦୟର କାଲୁଷ୍ୟ-ରୋଗ ଦୂର କରିବା ନିମନ୍ତେ ଭକ୍ତ-ଚରିତ ଏକ ଅବ୍ୟର୍ଥ ଔଷଧ। ଏତଦ୍ଵାରା ହୃଦୟ ପରମ ପବିତ୍ର ହୋଇ ପ୍ରଭୁଭକ୍ତିରେ ଅନୁରଞ୍ଜିତ ହେବା ସଙ୍ଗେ ସଙ୍ଗେ ପ୍ରଭୁଙ୍କୁ ପାଇବାକୁ ମନରେ ଉତ୍ସାହ ଜାତ ହୁଏ। ଅପ୍ରାପ୍ତିର ନିରାଶା ସାଗରରେ ଉବୁଟୁବୁ ହେଉଥିବା ଉପାସକ ମନରେ ନବୀନ ଆଶା ସଂଚ୍ଚର ହୁଏ।

ମନୁଷ୍ୟ ଯେତେ ଶ୍ରଦ୍ଧା ଓ ଉତ୍କଣ୍ଠାର ସହ ମନଦେଇ ଭକ୍ତ-ଚରିତ ପଢ଼ିବ, ତାକୁ ସେତେ ଆନନ୍ଦ ଅନୁଭବ ହେବ। ତେଣୁ ଏହାକୁ ପଢ଼ିବାର ଗୋଟିଏ ସୁନ୍ଦର ପ୍ରଣାଳୀ ଏଠାରେ କୁହାଯାଉଛି। କୌଣସି ଏକାନ୍ତ ସ୍ଥାନରେ ବସିଯିବ, ଯେଉଁଠି ତୁମକୁ କେହି ଦେଖୁ ନ ଥିବେ କି ତୁମେ କାହାକୁ ଦେଖୁ ନ ଥିବ। ସେଠାରେ ଠାକୁରଙ୍କୁ ସ୍ମରଣ କରି ହୃଦୟ-ଆସନରେ ବିରାଜମାନ କରାଇବ। ତା'ପରେ ଭକ୍ତଙ୍କୁ ପ୍ରଣାମ କରି ତାଙ୍କ ଚରିତ ପଢ଼ିବ। ପଢ଼ୁ ପଢ଼ୁ ଯେଉଁଠି ମନ ଲାଗିଯିବ, ହୃଦୟ ଗଦ୍‌ଗଦ ହୋଇଯିବ, ଆଖିରୁ ଲୁହ ଝରି ଆସିବ, ରୋମ ଟାଙ୍କୁରି ଉଠିବ, ପ୍ରଭୁଙ୍କ ପାଇଁ ହୃଦୟ ବ୍ୟାକୁଳିତ ହେବ, ସେଇଠି ବହି ପଢ଼ା ବନ୍ଦ କରି ଧ୍ୟାନରେ ମଗ୍ନ ହୋଇଯିବ। ମନ ଭିତରେ ଠାକୁରଙ୍କ ନାମ ସ୍ମରଣ କରିବ ଅଥବା ପ୍ରାର୍ଥନାରୂପରେ ନିଜ ହୃଦୟ କଥା ପ୍ରଭୁଙ୍କୁ ଜଣାଇବ। ଏମିତି କରୁ କରୁ ଯେତେବେଳେ ଭାବ ଟିକିଏ କମି ଯିବା ଭଳି ଲାଗିବ, ଲୁହ ଝରିବା ବନ୍ଦ ହୋଇଯିବ, ସେତେବେଳେ ପୂର୍ବଥର ପଢ଼ିଲାବେଳେ ଯେଉଁଠୁ ଭାବ ଉଦ୍ରେକ ହୋଇଥିଲା, ପୁଣି ସେଇଠୁ

ପଢ଼ିବା ଆରମ୍ଭ କରିବ। ଯଦି ସେହି ଜାଗାରେ ପୁଣି ଭାବ ଉଦୟ ହୁଏ, ତେବେ ପୂର୍ବପରି ପ୍ରଭୁଙ୍କୁ ସ୍ମରଣ କରି ତାଙ୍କ ଧ୍ୟାନରେ ମଗ୍ନ ହୋଇଯିବ। ଏମିତି କଲେ ଧୀରେ ଧୀରେ ହୃଦୟରେ ଭକ୍ତି ବଢ଼ିବ। ତରତର ହୋଇ କେବଳ ବହି ସାରିବା ଉଦ୍ଦେଶ୍ୟରେ ନ ପଢ଼ି ହୃଦୟର ପ୍ରସୁପ୍ତ ଭକ୍ତିଭାବନାକୁ ଜାଗ୍ରତ କରିବା ପାଇଁ ଚେଷ୍ଟା କରିବା ଦରକାର।

ଭକ୍ତଜନଙ୍କ ଗହଣରେ ଭକ୍ତ-ଚରିତ ପଢ଼ିଲେ ଯଥେଷ୍ଟ ଉନ୍ନତି ହୁଏ। ଭକ୍ତଜନ ଏକ ମନପ୍ରାଣରେ ବସି ମନ୍ଦିର ପ୍ରାଙ୍ଗଣରେ ଅଥବା ଭାଗବତ ଟୁଙ୍ଗିରେ ଏହା ପଢ଼ିବା ବାଞ୍ଛନୀୟ। ଏ କ୍ଷେତ୍ରରେ ଜଣେ ପଢ଼ିବେ ଏବଂ ଅନ୍ୟମାନେ ମନଦେଇ ଶୁଣିବେ। ଯେଉଁଠି ଭକ୍ତଙ୍କର କରୁଣ କଥା ଓ ପ୍ରଭୁଙ୍କର କୃପା ପ୍ରସଙ୍ଗରେ ହୃଦୟ ଅଭିଭୂତ ହୋଇଯିବ, ସେଇଠି ହରିନାମ ସଂକୀର୍ତ୍ତନ ଆରମ୍ଭ କରିଦେବେ। ସେତେବେଳେ ଭାବିବେ ଯେ ଅନେକ ହୃଦୟ ଏକସ୍ୱରରେ ସମ୍ମିଳିତ ହୋଇ ପ୍ରଭୁଙ୍କୁ ପ୍ରାର୍ଥନା କରୁଛନ୍ତି। ଏହିରୂପେ ପଢ଼ିଲେ ଭଗବାନଙ୍କ ଠାରେ ଭକ୍ତି ବଢ଼େ।

ଯେଉଁ ବୟସ୍କ ବୁଢ଼ା-ବୁଢ଼ୀମାନେ ବହି ପଢ଼ିବାକୁ ଅକ୍ଷମ, ଯେଉଁମାନଙ୍କ ଆଖିକୁ ଭଲଭାବେ ଦେଖାଯାଉ ନ ଥିବ, ସେମାନେ ପୁଅ, ଝିଅ, ନାତି, ନାତୁଣୀ ବା ଅନ୍ୟ ପିଲାମାନଙ୍କୁ ପାଖରେ ବସାଇ ଭକ୍ତ-ଚରିତ ପଢ଼ି ଶୁଣାଇବାକୁ କହିବା ଉଚିତ। ଭକ୍ତ-ଚରିତ ପଢ଼ିବାରେ ପିଲାମାନଙ୍କର ମନ ଲାଗିଯିବ, ସେମାନେ ବଡ଼ ଆଗ୍ରହରେ ଶୁଣାଇବେ। ଏହାଦ୍ୱାରା ସେମାନଙ୍କର ଦୁଇ ଆଡୁ ଲାଭ ହେବ। ପଢ଼ିବା ଅଭ୍ୟାସ ମଧ୍ୟ ହୋଇଯିବ ଏବଂ ତାଙ୍କର କୋମଳ ଚିତ୍ତରେ ଭକ୍ତିର ସଂସ୍କାର ପଡ଼ିବା ସହିତ ସେମାନେ ଅନେକ ଭଲ ଭଲ କଥା ଶିଖି ପାରିବେ। ପିତା-ମାତାଙ୍କ ପ୍ରତି ସେମାନଙ୍କର ଭକ୍ତି ଉଦୟ ହେବ ଏବଂ ଶୁଣିବା ଲୋକଙ୍କ ହୃଦୟ ମଧ୍ୟ ଭକ୍ତିରସରେ ମଜ୍ଜିଯିବ। ଉପନ୍ୟାସ ବା ନଭେଲ୍ ପ୍ରଭୃତି କୁତ୍ସିତ ସାହିତ୍ୟ ପଢ଼ିଲେ ଚରିତ୍ର ଭ୍ରଷ୍ଟ ହେବା ସହିତ ପିଲାମାନଙ୍କ କୋମଳ ହୃଦୟରେ ଠାକୁରଙ୍କ ପ୍ରତି ଓ ଗୁରୁଜନଙ୍କ ପ୍ରତି ଥିବା ଭକ୍ତିବୀଜ ଲୋପ ପାଇଯାଏ। ତେଣୁ ପିଲାମାନଙ୍କ ହୃଦୟରେ ଭକ୍ତି-ସଂସ୍କାର ପକାଇବା ପାଇଁ ସେମାନଙ୍କୁ ଭକ୍ତ ଚରିତ ପଢ଼ିବାକୁ ସତ୍‌ପ୍ରେରଣା ଦେବା ଅଭିଭାବକମାନଙ୍କର କର୍ତ୍ତବ୍ୟ।

ଭକ୍ତ-ଚରିତ ଶୁଣାଇ ଅନ୍ୟମାନଙ୍କୁ ଭକ୍ତିରେ ଅନୁପ୍ରାଣିତ କରୁଥିବା ବ୍ୟକ୍ତି ଉପରେ ଭଗବାନ ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି। ତେଣୁ ପ୍ରଭୁଙ୍କର ପ୍ରୀତି ଭାଜନ ହେବା ନିମନ୍ତେ ଆମ୍ଭେମାନେ ସ୍ୱୟଂ ଭକ୍ତ-ଚରିତ ପଢ଼ିବା ସହିତ ଅନ୍ୟମାନଙ୍କୁ ପଢ଼ିବାକୁ ପ୍ରେରଣା ଯୋଗାଇବା ଉଚିତ।



॥ ଜୟ ଜଗନ୍ନାଥ! ॥

# ପ୍ରେରଣା ଉତ୍ସ

କୌଣସି ମହତ୍ କାର୍ଯ୍ୟ ପଛରେ ମହତ୍ ପ୍ରେରଣା ନିତାନ୍ତ ଆବଶ୍ୟକ ଏବଂ ମହତ୍ ପ୍ରେରଣାର ଉତ୍ସ ହେଉଛନ୍ତି ମହତ୍‌ଜନ। ଯେଉଁମାନେ ମହତ୍ତମ ଭଗବାନଙ୍କର ସାକ୍ଷାତ୍‌କାର କରି ନିଜ ଜୀବନର ଚରମ ଫଳ ହାସଲ କରି ସାରିଥାନ୍ତି, ଯେଉଁମାନଙ୍କ ଜୀବନ ପ୍ରଭୁଭକ୍ତିରେ ପରିପ୍ଳୁତ ହୋଇ ସାରିଥାଏ, ସେଭଳି ମହତ୍‌ପୁରୁଷଙ୍କ ମନରେ ଭବବ୍ୟାଧିଗ୍ରସ୍ତ ଦୁଃଖୀ ଜୀବଙ୍କୁ ଦେଖି ବେଦନା ସୃଷ୍ଟି ହୁଏ, ଯାହାଫଳରେ ସେମାନଙ୍କର କୋମଳ ହୃଦୟ ଜନକଲ୍ୟାଣ ପାଇଁ ଅଧୀର ହୋଇଉଠେ। ସେମାନଙ୍କ ଜୀବନର ପ୍ରତିଟି ସଙ୍କଳ୍ପ ଓ ପ୍ରତ୍ୟେକ କାର୍ଯ୍ୟ ଅନ୍ତରାଳରୁ ଫୁଟିଉଠେ ଲୋକହିତ ଭାବନା। ସେହି ପବିତ୍ର ଭାବନାରେ ସେମାନେ ନିଜେ ପ୍ରେରିତ ହେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ପ୍ରେରିତ କରନ୍ତି; ଏବଂ ସେମାନଙ୍କୁ ତାହା ମିଳିଥାଏ ଭଗବାନଙ୍କ ଅହେତୁକୀ କୃପାରୁ।

ଏହିରୂପେ ଦେଖିଲେ ପ୍ରତ୍ୟେକ ମହତ୍ କାର୍ଯ୍ୟର ପ୍ରେରକ ହେଉଛନ୍ତି କରୁଣାସିନ୍ଧୁ ଭଗବାନ। କିନ୍ତୁ ଭୂଗର୍ଭର ଜଳକୁ ଏବଂ ସମୁଦ୍ରର ଅଗାଧ ଜଳରାଶିକୁ ଯେପରି ସିଧା-ସଳଖ ମନୁଷ୍ୟ ଉପଯୋଗ କରିପାରେ ନାହିଁ, ସେହିପରି ଭଗବାନଙ୍କର ମହତ୍ ପ୍ରେରଣା ବା କୃପାକୁ ମନୁଷ୍ୟର ସାଧାରଣ ବୁଦ୍ଧି ଗ୍ରହଣ କରିପାରେ ନାହିଁ; ଏଥିପାଇଁ ଆବଶ୍ୟକ ହୁଏ ଗୋଟିଏ ମାଧ୍ୟମ। କୂପ, ତଡ଼ାଗ ମାଧ୍ୟମରେ ଭୂଗର୍ଭର ଜଳ ଯେପରି ସ୍ନାନୀୟ ଓ ପାନୀୟରୂପରେ ଏବଂ ସୂର୍ଯ୍ୟଙ୍କ ମାଧ୍ୟମରେ ସଂଗୃହୀତ ସମୁଦ୍ରଜଳ ଯେପରି ବର୍ଷାରୂପରେ ସକଳ ପ୍ରାଣୀକୁ ଜୀବନ ପ୍ରଦାନ କରେ, ଠିକ୍ ସେହିପରି ସନ୍ଥ-ମହାତ୍ମାଙ୍କ ମାଧ୍ୟମରେ ଭଗବାନଙ୍କର ମହତ୍ ପ୍ରେରଣା ବା କୃପା ପ୍ରକାଶିତ ହୋଇ ମହତ୍ କାର୍ଯ୍ୟ ପାଇଁ ପ୍ରେରଣା ଯୋଗାଇଥାଏ।

ଏହି 'ଭକ୍ତ-ଚରିତାମୃତ' ଲେଖନରୂପୀ ମହତ୍ କାର୍ଯ୍ୟର ମାଧ୍ୟମ ବା ମୂଳ ଉତ୍ସ ହେଲେ ଆମର ପରମ ବନ୍ଦନୀୟ ଅଧ୍ୟାତ୍ମମାର୍ଗ ପ୍ରଦର୍ଶକ **ପରମ ସନ୍ଥ ସ୍ୱାମୀ ଶ୍ରୀରାମସୁଖଦାସଜୀ ମହାରାଜ**। ତାଙ୍କ ଜୀବନର ପ୍ରତିଟି କଣିକାରେ ପୂରି ରହିଥିଲା ଲୋକହିତ ଭାବନା। ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ସେ ବୈଜ୍ଞାନିକମାନଙ୍କ ଭଳି ଭଗବତ୍‌ପ୍ରାପ୍ତିର ନୂଆ ନୂଆ ସରଳତମ ମାର୍ଗ ଅନ୍ୱେଷଣରେ ତତ୍ପର ଥିଲେ। ତାଙ୍କରି ମୁଖନିଃସୃତ କେତୋଟି ପ୍ରେରଣାଦାୟକ ବାକ୍ୟ ହିଁ ଆଜିପର୍ଯ୍ୟନ୍ତ ଆମକୁ ଏଭଳି କାର୍ଯ୍ୟରେ ଉତ୍ସାହିତ କରି ଆସୁଛି ଏବଂ ଭବିଷ୍ୟତରେ ଉତ୍ସାହିତ କରୁଥିବ ମଧ୍ୟ।

ସ୍ୱାମୀଜୀ ମହାରାଜ ସତ୍ସଙ୍ଗ କାର୍ଯ୍ୟକ୍ରମ ପାଇଁ ଗୀତାପ୍ରେସ ଆସିଥାନ୍ତି। ସେତେବେଳକୁ ତାଙ୍କ ପ୍ରଣୀତ ଗୀତାର ସାଧକ-ସଂଜୀବନୀ ଟୀକା ତଥା ଅନ୍ୟାନ୍ୟ ପ୍ରାୟ ୪୦ ଖଣ୍ଡି ପୁସ୍ତକ ଓଡ଼ିଆରେ ଅନୂଦିତ ହୋଇ ପ୍ରକାଶିତ ହୋଇସାରିଥାଏ। ଏହାପରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ପ୍ରଣୀତ ଭାଗବତ ପ୍ରକାଶିତ କରିବା ଆଶାରେ ଆମେ ମହାରାଜଙ୍କୁ

ବ୍ରାହ୍ମମୂହୁର୍ତ୍ତରେ ଭେଟିଲୁ। ଆଲୋଚନା କ୍ରମରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କର ପବିତ୍ର ଜୀବନ ଚରିତ ଶୁଣି ମହାରାଜଙ୍କର କୋମଳ ହୃଦୟରେ ମହତ ଭାବନା ଅଙ୍କୁରିତ ହେଲା। ତାଙ୍କର ନେତ୍ର ସଜଳ ଓ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା। ସେ ଅତି ଗଦ୍‌ଗଦ କଣ୍ଠରେ କହିଲେ—''ଭକ୍ତଜନଙ୍କର ପବିତ୍ର ଜୀବନ ଚରିତ ମୃତ୍ୟୁ କବଳିତ ଦୁଃଖୀ ଜୀବଙ୍କ ପାଇଁ ଅମୃତ ତୁଲ୍ୟ ନବଜୀବନ ପ୍ରଦାନ କରେ। ଏତଦ୍ୱାରା ସଂସାରର ଅଶେଷ କଲ୍ୟାଣ ସାଧିତ ହୁଏ। ଏଭଳି ଭକ୍ତମାନଙ୍କର ବାଣୀ ଓ ଚରିତ୍ର ପ୍ରକାଶ ପାଇବା ଆବଶ୍ୟକ। ତୁମେ ତୁମ ଭାଷାରେ ଲେଖିଲେ ଭଲ ହେବ।'' ସ୍ୱାମୀଜୀଙ୍କର ଏହି ଉକ୍ତିଟି ଆମ ପାଇଁ ଏକାଧାରରେ ମହତ୍ ପ୍ରେରଣା, ଆଜ୍ଞା ଓ ଆଶୀର୍ବାଦରୂପେ ପାଥେୟ ଭଳି କାର୍ଯ୍ୟ କଲା।

ସୁରମୁନିବନ୍ଦିତା ପୁଣ୍ୟସଲୀଳା ଭାଗୀରଥୀ ଗଙ୍ଗା ଉତ୍ତୁଙ୍ଗ ହିମାଳୟ ଶିଖରରୁ କ୍ଷୁଦ୍ର ଧାରାରୂପରେ ଅବତରିତ ହୋଇ ଅନେକ ନଦ-ନଦୀର ସଂଯୋଗରେ ଯେପରି କ୍ରମଶଃ ବିରାଟରୂପ ଧାରଣ କରେ, ସେହିପରି ପୂଜ୍ୟ ମହାରାଜଙ୍କର ପବିତ୍ର ପ୍ରେରଣା ଓ ଆଶୀର୍ବାଦ ସହ ଅନେକଙ୍କର ବାତ୍ସଲ୍ୟ, ପରାମର୍ଶ ଓ ସହଯୋଗ ମିଶି ଆମର ଉକ୍ତ ଭକ୍ତ-ଚରିତାମୃତ ଲେଖନ ଧାରାକୁ ବିରାଟରୂପ ଦେଲା।

ତା' ଛଡ଼ା ଆମର ଆତ୍ମୀୟ ତଥା ଆଦରଣୀୟ ବାବା ଶ୍ରୀବାସୁଦେବ ଦାସଙ୍କ ମୁଖରୁ ସମୟେ ସମୟେ ଭକ୍ତ ଚରିତ ଶୁଣିଲାବେଳେ ଓ ତାଙ୍କୁ କୌଣସି ଭକ୍ତ ଚରିତ ଶୁଣାଇଲାବେଳେ ଏକ ପ୍ରକାର ଦିବ୍ୟତା ଅନୁଭବ ହୁଏ, ହୃଦୟ ଆନନ୍ଦରେ ପୂରି ଉଠେ, ମନହୁଏ ତାଙ୍କ ଭାବନାରେ ମଜ୍ଜିଯାଇ କିଛି ଲେଖିବାକୁ। ସେହିପରି ଆମର ପ୍ରିୟ ବନ୍ଧୁ ବାବା ଶ୍ରୀହରିକୃଷ୍ଣଦାସ 'ସ୍ୱାମୀଜୀ ମହାରାଜ'ଙ୍କ ସେବାରେ ଥାଇ ତାଙ୍କୁ ଭକ୍ତ ଚରିତ ପଢ଼ି ଶୁଣାଇଲାବେଳେ ସ୍ୱାମୀଜୀଙ୍କ ମୁଖରୁ ତାଙ୍କୁ ମିଳିଥିବା ଅନେକ ରହସ୍ୟମୟ ତଥ୍ୟ ଆମକୁ ଦେଇ ଆମର ଲେଖନ କାର୍ଯ୍ୟରେ ଉତ୍ସାହ ଭରି ଦେଇଛନ୍ତି। ତା'ଛଡ଼ା ଆମର ଏକାନ୍ତ ପ୍ରିୟ ବାବା ଶ୍ରୀପରମାନନ୍ଦ ଦାସଙ୍କର ସହଯୋଗ ତ ଆଦ୍ୟରୁ ପ୍ରାନ୍ତଯାଏ ପୂରି ରହିଛି। ଏହିରୂପେ ଜ୍ଞାତ-ଅଜ୍ଞାତରେ ଅନେକ ସାଧୁସନ୍ଥ ଓ ଭକ୍ତଜନଙ୍କର ଅକୁଣ୍ଠ କୃପାରୁ ଏହି ଗ୍ରନ୍ଥର ପ୍ରଣୟନ କାର୍ଯ୍ୟ ସମ୍ପନ୍ନ ହୋଇପାରିଛି। ପରିଶେଷରେ ପୂର୍ବାପର ସମସ୍ତ ଭକ୍ତଜନଙ୍କର ଓ ଭକ୍ତବତ୍ସଳ ପ୍ରଭୁଙ୍କର ପଦାରବିନ୍ଦରେ ପ୍ରଣତି ଜଣାଇ ତାଙ୍କର କୃପା, ଆତ୍ମୀୟତା, ସ୍ନେହ ଓ ବାତ୍ସଲ୍ୟ ଅବାରିତ ରହିବା ଆଶା କରୁ।

ସନ୍ଥଚରଣାଶ୍ରିତ—



**ଦୀନବନ୍ଧୁ ଦାସ**
**ନିରଞ୍ଜନ ପଣ୍ଡା**
(ସମ୍ପାଦକ)

॥ ଶ୍ରୀହରିଃ ॥

# ସୂଚୀ ପତ୍ର


| କ୍ର. ସଂ. | ଚରିତର ନାମ | ପୃଷ୍ଠା |
|---|---|---|
| ୧. | ଭକ୍ତ ପ୍ରହ୍ଲାଦ | ୧୭ |
| ୨. | ଭକ୍ତିମତୀ ଶବରୀ | ୩୭ |
| ୩. | ଦେବୀ ଦ୍ରୌପଦୀ | ୪୭ |
| ୪. | ଭକ୍ତବର ଭୀଷ୍ମ ପିତାମହ | ୬୩ |
| ୫. | ଭକ୍ତ ବୃତ୍ରାସୁର | ୮୭ |
| ୬. | ଭକ୍ତିମତୀ କୁନ୍ତୀ | ୯୫ |
| ୭. | ଭକ୍ତ ସୁଦାମା | ୧୦୮ |
| ୮. | ରାଜା ଅମ୍ବରୀଷ | ୧୨୧ |
| ୯. | ଶ୍ୱପଚ ବାଲ୍ମୀକି | ୧୩୮ |
| ୧୦. | ଯଜ୍ଞପତ୍ନୀ | ୧୪୭ |
| ୧୧. | ଭକ୍ତ ଚନ୍ଦ୍ରହାସ | ୧୫୬ |
| ୧୨. | ଭକ୍ତରାଜ ଧ୍ରୁବ | ୧୭୪ |
| ୧୩. | ଶ୍ରୀ ମାଧବେନ୍ଦ୍ର ପୁରୀ | ୧୯୧ |
| ୧୪. | ଭକ୍ତ ଅଙ୍ଗଦ ସିଂହ | ୨୦୫ |
| ୧୫. | ଭକ୍ତବର ଲାଖା | ୨୧୮ |
| ୧୬. | ପ୍ରସାଦନିଷ୍ଠ ରାଜା | ୨୩୬ |
| ୧୭. | ସଦନ କଂସେଇ | ୨୪୨ |
| ୧୮. | ଭକ୍ତ ରାମଦାସ | ୨୫୭ |
| ୧୯. | ସାଧୁସେବୀ ତ୍ରିଲୋଚନ | ୨୬୭ |
| ୨୦. | ଅକିଞ୍ଚନ ଭକ୍ତ ହରିପାଳ | ୨୭୯ |
| ୨୧. | ଶ୍ରୀଧରସ୍ୱାମୀ | ୨୯୦ |
| ୨୨. | ଭକ୍ତ ଭୁବନସିଂହ | ୨୯୮ |
| ୨୩. | ମାମୁଁ ପ୍ରୟାଗଦାସ | ୩୦୫ |
| ୨୪. | ଭକ୍ତ ତ୍ରିପୁର ଦାସ | ୩୨୦ |
| ୨୫. | ଗୀତା ପଣ୍ଡା | ୩୩୨ |
| ୨୬. | ସାଧ୍ୱୀ ସଖୁବାଈ | ୩୪୪ |
| ୨୭. | ପହିଲମାନ୍ ଭକ୍ତ ଧନୁର୍ଦ୍ଦାସ | ୩୫୯ |
| ୨୮. | ଭକ୍ତିମତୀ କରମେତୀବାଈ | ୩୭୧ |
| ୨୯. | ଭକ୍ତ ଶ୍ରୀମାଧବ ଦାସ | ୩୮୨ |
| ୩୦. | ଭକ୍ତ ଶ୍ରୀବିଲ୍ୱମଙ୍ଗଳ | ୪୦୪ |
| ୩୧. | ରଘୁ ଅରକ୍ଷିତ | ୪୨୫ |
| ୩୨. | ଭକ୍ତ ଦାମା ପନ୍ତ | ୪୫୨ |
| ୩୩. | ବଡ଼ ବିପ୍ର ଓ ଛୋଟ ବିପ୍ର | ୪୬୭ |
| ୩୪. | ଶ୍ରୀଜୟଦେବ | ୪୮୪ |
| ୩୫. | ଭକ୍ତିମତୀ କରମାବାଈ | ୫୧୫ |
| ୩୬. | ଭକ୍ତ ମଣିଦାସ | ୫୨୧ |
| ୩୭. | ଭକ୍ତ ବଳରାମ ଦାସ | ୫୩୦ |
| ୩୮. | ଭକ୍ତ ଦାସିଆ ବାଉରୀ | ୫୪୦ |
| ୩୯. | ତିଳକ୍ଷ ମହାପାତ୍ର | ୫୫୫ |
| ୪୦. | ଅତିବଡ଼ୀ ଶ୍ରୀଜଗନ୍ନାଥ ଦାସ | ୫୬୬ |
| ୪୧. | ଭକ୍ତ କାମଧ୍ୱଜ | ୫୮୦ |
| ୪୨. | ଘାଟମ ମିଣା | ୫୮୬ |




॥ ଶ୍ରୀହରିଃ ॥

# ବନ୍ଦନା

ଭକତି ଭକତ ଭଗବାନ ଗୁରୁ ଗ୍ଚରି ନାମ ତନୁ ଏକ ।
ଏହାଙ୍କ ଚରଣେ କରନ୍ତେ ବନ୍ଦନା ଖଣ୍ଡଇ ବିଘ୍ନ ଅନେକ ॥

ଗୁଣ ଯଶ ଗାଅ ଭକ୍ତଜନଙ୍କର ଭକ୍ତ ଯେ ମଙ୍ଗଳ ରୂପ ।
ଶୁଭ ଦୃଷ୍ଟି ରଖି ମଙ୍ଗଳ ମନାସି କାଟନ୍ତି ସକଳ ପାପ ॥

ଗ୍ଚରିଯୁଗ ଭକ୍ତ ପଦରଜ ଧୂଳି ସାଦରେ ମସ୍ତକେ ବୋଳି ।
ଜୀବନ ଧନ ମୋ ହୃଦରହହାର କରୁଛି ଛାମୁରେ ଅଳି ॥

ଲକ୍ଷ ଲକ୍ଷ ଥର ହରି ହରି କହ ବାରେ କହ ହରିଦାସ ।
ପ୍ରଭୁ ଦୟାମୟ ହୁଅନ୍ତି ପ୍ରସନ୍ନ କହନ୍ତି ଶ୍ରୀନାଭାଦାସ ॥

ବାଞ୍ଛାକଳ୍ପତରୁଭ୍ୟଶ୍ଚ କୃପାସିନ୍ଧୁଭ୍ୟ ଏବ ଚ ।
ପତିତାନାଂ ପାବନେଭ୍ୟୋ ବୈଷ୍ଣବେଭ୍ୟୋ ନମୋ ନମଃ ॥*

ପ୍ରହ୍ଲାଦନାରଦପରାଶରପୁଣ୍ଡରୀକ-
ବ୍ୟାସାମ୍ବରୀଷଶୁକଶୌନକଭୀଷ୍ମଦାଲ୍‌ଭ୍ୟାନ୍ ।
ରୁକ୍ମାଂଗଦାର୍ଜୁନବଶିଷ୍ଟବିଭୀଷଣାଦୀନ୍
ଏତାନହଂ ପରମଭାଗବତାନ୍ ନମାମି ॥**

* "ଯେଉଁ ଭକ୍ତଜନ କଳ୍ପତରୁ ସମ ବାଞ୍ଛା ପୂର୍ଣ୍ଣକାରୀ ଓ କୃପାର ଅଗାଧ ସାଗର, ପତିତଜନଙ୍କୁ ପାବନ କରୁଥିବା ସେହି ଭକ୍ତଜନଙ୍କୁ ଆମର ବାରମ୍ବାର ପ୍ରଣତି ।"

** "ପ୍ରହ୍ଲାଦ, ନାରଦ, ପରାଶର, ପୁଣ୍ଡରୀକ, ବ୍ୟାସ, ଅମ୍ବରୀଷ, ଶୁକ, ଶୌନକ, ଭୀଷ୍ମ, ଦାଲଭ୍ୟ, ରୁକ୍ମାଙ୍ଗଦ, ଅର୍ଜୁନ, ବଶିଷ୍ଟ ଓ ବିଭୀଷଣ ପ୍ରଭୃତି ପରମ ଭାଗବତ (ଭକ୍ତଜନ)ଙ୍କୁ ଆମ୍ଭେ ପ୍ରଣାମ କରୁଛୁ ।"



ସଘନ କୁଞ୍ଚିତ-କେଶ ଯୁଡ଼ା ମଧ୍ୟେ ମୟୂର ମୁକୁଟ ଶୋଭାପାଏ ।
ଚପଳ ଚଞ୍ଚଳ ଭ୍ରୁ ଦୃଗଞ୍ଚଳ ବିମ୍ବାଧର ମନ କିଣିନିଏ ॥
ମଧୁର ମୃଦୁଳ ହାସ ପରିହାସ ଢଳି ଢଳି ଗତି ଗଜ ସମ ।
ଚିକ୍କଣ କାଳିଆ ଶ୍ୟାମଙ୍କ ଦର୍ଶନେ ଅଧୀର ହୁଅଇ ମୋର ମନ ॥



॥ ଶ୍ରୀରାଧାକୃଷ୍ଣାଭ୍ୟାଂ ନମଃ ॥

॥ ଶ୍ରୀମଦ୍‌ଭଗବଦ୍‌ଭକ୍ତେଭ୍ୟୋ ନମଃ ॥

# ଭକ୍ତ ପ୍ରହ୍ଲାଦ

କୁମାର ଅବସ୍ଥାରୁ ଭଗବାନଙ୍କୁ ନିଷ୍କାମ ଭକ୍ତି କରିଥିବା ଭକ୍ତଙ୍କ ମଧ୍ୟରେ ପ୍ରହ୍ଲାଦଙ୍କ ନାମ ଅଗ୍ରଗଣ୍ୟ । ଅସୁରରାଜ ହିରଣ୍ୟକଶିପୁ ଔରସରୁ ଜନ୍ମ ହୋଇଥିଲେ ମଧ୍ୟ ସେ ଏତେ ବଡ଼ ଭକ୍ତ ହୋଇଥିଲେ ଯେ ଦେବତା ଓ ଋଷିଗଣ ସୁଦ୍ଧା ତାଙ୍କୁ ସମ୍ମାନ ଦିଅନ୍ତି । ତାଙ୍କରି ପାଇଁ ଭଗବାନ ନୃସିଂହ ଅବତାର ଗ୍ରହଣ କରିଥିଲେ । ସର୍ବତ୍ର ଭଗବଦ୍‌ଦର୍ଶନ କରିବାର ଦୃଷ୍ଟାନ୍ତ ଦେଲାବେଳେ ସର୍ବପ୍ରଥମେ ପ୍ରହ୍ଲାଦଙ୍କ କଥା ମନେ ପଡ଼ିଯାଏ, ଯେ କି ସ୍ତମ୍ଭ ମଧ୍ୟରେ ବି ଭଗବାନଙ୍କ ବିଦ୍ୟମାନତାକୁ ଅନୁଭବ କରିଥିଲେ ଏବଂ ତାଙ୍କରି କଥାକୁ ଭଗବାନ ସତ୍ୟରେ ପରିଣତ କରିଥିଲେ । ସେଥିପାଇଁ ମହାପୁରୁଷମାନେ କହନ୍ତି, "ଜଗତରେ ସ୍ତମ୍ଭ ତ ଅନେକ ଅଛି ଏବଂ ଭଗବାନ ମଧ୍ୟ ସର୍ବତ୍ର ବିଦ୍ୟମାନ ଅଛନ୍ତି; କିନ୍ତୁ ତାଙ୍କୁ ପ୍ରତ୍ୟକ୍ଷୀଭୂତ କରିବାକୁ ପ୍ରହ୍ଲାଦ ପରି ଭକ୍ତଟିଏ ଅତ୍ୟନ୍ତ ଦୁର୍ଲଭ ।" ଏଭଳି ଭକ୍ତ ଯେଉଁଠି ଜନ୍ମ ହୁଅନ୍ତି, ସେ ଭୂମି ପବିତ୍ର ହୋଇଯାଏ, ତା'ର ଜନ୍ମଦାତ୍ରୀ ଜନନୀ କୃତାର୍ଥ ହୋଇଯାଏ, ସମସ୍ତ ସୁଖସମୃଦ୍ଧି ତା' ନିକଟରେ ବାସ କରନ୍ତି, ଏପରି କି ତା'ର ବଂଶର ଏକୋଇଶ ପିଢ଼ି ଉଦ୍ଧାର ପାଇଯାଆନ୍ତି । ଯଥାର୍ଥରେ କୁହାଯାଇଛି—

**କୁଳଂ ପବିତ୍ରଂ ଜନନୀ କୃତାର୍ଥା**
**ବସୁନ୍ଧରା ପୁଣ୍ୟବତୀ ଚ ତେନ ।**
**ଅପାର ସମ୍ବିତ୍ ସୁଖସାଗରେଽସ୍ମିନ୍**
**ଲୀନଂ ପରେବ୍ରହ୍ମଣି ଯସ୍ୟ ଚେତଃ ॥**

ହିରଣ୍ୟାକ୍ଷ ବଧ ପରେ ତା'ର ଭାଇ ହିରଣ୍ୟକଶିପୁ ଭଗବାନ ବିଷ୍ଣୁଙ୍କ ପ୍ରତି ଅତ୍ୟଧିକ ଦ୍ୱେଷ କଲା । ସେ ପ୍ରଥମେ ନିଜେ ଅଜର, ଅମର ଓ ସମଗ୍ର ସଂସାରର ଏକଛତ୍ର ସମ୍ରାଟ ହେବାର ବରଦାନ ପାଇବା ମାନସରେ ମନ୍ଦରାଚଳର ଏକ ଘାଟିକୁ ଯାଇ ଘୋର ତପସ୍ୟା କଲା । ସେ ଗୋଡ଼ର ବୁଢ଼ା ଆଙ୍ଗୁଠି ବଳରେ ଠିଆ ହୋଇ ହାତ ଉପରକୁ ଉଠାଇ ଆକାଶକୁ ଚ୍ହିଁ ଏପରି ତପସ୍ୟା କଲା ଯେ ତାହାର ମସ୍ତକରୁ ଧୂମ ଓ ଅଗ୍ନି ନିର୍ଗତ ହୋଇ ସମଗ୍ର ସଂସାରକୁ ସନ୍ତାପିତ କଲା । ପୃଥିବୀ ଟଳମଳ ହେଲା; ଗ୍ରହ ଓ ତାରାଗଣ ଅସ୍ତବ୍ୟସ୍ତ ହୋଇ ନିଜ ନିଜ ସ୍ଥାନରୁ ଖସିବାକୁ ଲାଗିଲେ । ବହୁ କାଳ ଅଟଳ ତପସ୍ୟା କରିବା ଫଳରେ ତା'ର ଦେହ

ଉଇହୁଙ୍କାରେ ପରିଣତ ହୋଇଗଲା । ଉଇ ଓ ପିମ୍ପୁଡ଼ି ତା'ର ଚର୍ମ, ମେଦ, ମାଂସ, ରକ୍ତ ସବୁ ଗ୍ରାସି ଖାଇଗଲେ । କେବଳ ହାଡ଼ ମଧ୍ୟରେ ତା'ର ପ୍ରାଣ ଅଟକି ରହିଥିଲା । ତା' ଉପରେ ଘାସ ଓ ବାଉଁଶ ଉତ୍ପନ୍ନ ହୋଇ ଅସ୍ଥିକଙ୍କାଳସାର ଦେହକୁ ଆଚ୍ଛାଦିତ କରିଦେଲା । ଏହି ସୁଯୋଗ ପାଇ ଇନ୍ଦ୍ରାଦି ଦେବଗଣ ଦାନବଙ୍କ ସଙ୍ଗେ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରିଦେଲେ । ସେମାନେ ବିଜୟ ଆନନ୍ଦରେ କହିଲେ, ପିମ୍ପୁଡ଼ିମାନେ ସାପକୁ କାମୁଡ଼ି କାମୁଡ଼ି ଖାଇଯିବା ପରି ହିରଣ୍ୟକଶିପୁର ପାପ ହିଁ ତାକୁ ଖାଇଗଲା । ଦୈତ୍ୟମାନେ ଦେବଗଣଙ୍କ ସମ୍ମୁଖୀନ ହୋଇ ନ ପାରି ନିଜ ନିଜ ପ୍ରାଣ ଘେନି ଘରଦ୍ୱାର ଛାଡ଼ି ପଳାୟନ କଲେ । ଦେବଗଣ ହିରଣ୍ୟକଶିପୁର ରାଜମହଲରେ ପଶି ଲୁଟପାଟ କଲେ । ଦେବରାଜ ଇନ୍ଦ୍ର ହିରଣ୍ୟକଶିପୁର ଗର୍ଭବତୀ ପତ୍ନୀ କୟାଧୂକୁ ବନ୍ଦୀ କରି ନେଇଯିବା ବେଳେ ବାଟରେ ଦେବର୍ଷି ନାରଦଙ୍କର ଇନ୍ଦ୍ରଙ୍କ ସହ ଭେଟ ହୋଇଗଲା । ସେ ଇନ୍ଦ୍ରଙ୍କୁ ଅଟକାଇ କହିଲେ— "ଦେବରାଜ! ଏ ବିଚାରୀ ନିରପରାଧିନୀକୁ କାହିଁକି ଟାଣି ଟାଣି ନେଇଯାଉଛ?" ଇନ୍ଦ୍ର କହିଲେ—"ଏକା ହିରଣ୍ୟକଶିପୁ ଆମକୁ ନାକେଦମ୍ କରି ସାରିଲାଣି, ଯଦି ଏହାର ଗର୍ଭରୁ ତା'ର ପୁତ୍ର ଜନ୍ମ ହେବ, ତେବେ ବାପପୁଅ ଦୁହେଁ ଆମ ପାଇଁ ନିଶ୍ଚୟ ଘୋର ବିପଦ ସୃଷ୍ଟି କରିଦେବେ । ତେଣୁ ସନ୍ତାନ ଜନ୍ମ ହେବାପରେ ତାକୁ ମାରିଦେଇ ମୁଁ ଏହାକୁ ଛାଡ଼ିଦେବି ।"

ନାରଦ କହିଲେ—"ଏହାର ଗର୍ଭରେ ଯେ ଅଛନ୍ତି, ସେ ହେଉଛନ୍ତି ଭଗବାନଙ୍କର ଜଣେ ପରମ ପ୍ରେମୀ ଭକ୍ତ; ସେ ଭଗବାନଙ୍କ ବଳରେ ପରମ ବଳଶାଳୀ ଓ ମହାତ୍ମା । ତୁମେ କଦାପି ତାଙ୍କୁ ମାରି ପାରିବ ନାହିଁ ।" ଦେବର୍ଷି ନାରଦଙ୍କ କଥାକୁ ଦେବ ଓ ଅସୁର ସମସ୍ତେ ସମ୍ମାନ ଦିଅନ୍ତି । ତାଙ୍କ କଥା ମାନି ଏବଂ ତାଙ୍କ ଗର୍ଭରେ ଜଣେ ଭଗବଦ୍ଭକ୍ତ ଅଛନ୍ତି ବୋଲି ଜାଣି ସେ ନିର୍ଭୟ ହୋଇଗଲେ ଏବଂ କୟାଧୂଙ୍କୁ ପ୍ରଦକ୍ଷିଣା କରି ସ୍ୱର୍ଗକୁ ଫେରିଗଲେ । ତା'ପରେ ଦେବର୍ଷି କୟାଧୂଙ୍କୁ ନିଜ ଆଶ୍ରମକୁ ନେଇ ସାନ୍ତ୍ୱନା ଦେଇ କହିଲେ—"ମାଆ ରେ! ତୁମ ସ୍ୱାମୀ ତପସ୍ୟାରୁ ନ ଫେରିବା ପର୍ଯ୍ୟନ୍ତ ତୁମେ ଏହି ଆଶ୍ରମରେ ନିଶ୍ଚିନ୍ତରେ ରୁହ?" କୟାଧୂ ଗର୍ଭସ୍ଥ ଶିଶୁଟିକୁ ହିରଣ୍ୟକଶିପୁ ଫେରିବା ପରେ ଜନ୍ମ ଦେବାର କାମନା କରି ମହାତ୍ମା ନାରଦଙ୍କର ସେବାଶୁଶ୍ରୂଷାରେ ମନୋନିବେଶ କଲେ ।

ଦେବର୍ଷି ନାରଦ ବଡ଼ ଦୟାଳୁ ଓ ସମର୍ଥ ପୁରୁଷ । ସେ ଗର୍ଭସ୍ଥ ସନ୍ତାନକୁ ଦୃଷ୍ଟିରେ ରଖି କୟାଧୂଙ୍କୁ ସମୟେ ସମୟେ ଭାଗବତଧର୍ମ ସମ୍ବନ୍ଧୀୟ ଅନେକ କଥା

ଓ ବିଶୁଦ୍ଧ ଜ୍ଞାନ ଉପଦେଶ ଦିଅନ୍ତି । କୟାଧୂ ସହଜେ ଅସୁରପତ୍ନୀ, ପୁଣି ନାରୀ ଜାତି । ତାଙ୍କର ସେସବୁ କଥା ମନେ ରହିଲା ନାହିଁ; କିନ୍ତୁ ପ୍ରହ୍ଲାଦ ମାତୃଗର୍ଭରେ ଥାଇ ସେହି ସବୁ ଜ୍ଞାନ ଓ ଭକ୍ତିର ରହସ୍ୟରେ ପାରଙ୍ଗମ ହୋଇଗଲେ ।

ତେଣେ ଦାନବ ହିରଣ୍ୟକଶିପୁ କଠୋର ତପସ୍ୟାରେ ସଫଳ ହୋଇଗଲା । ବ୍ରହ୍ମା ତାକୁ ବର ଦେବାକୁ ଆସି ପହଞ୍ଚିଗଲେ । ଯଦିଓ ଦୁଷ୍ଟ ଓ ଦୁରାତ୍ମାଙ୍କୁ ବର ଦେବା ସାପକୁ ଦୁଧ ଦେଇ ପୋଷିବା ସଙ୍ଗେ ସମାନ, ତଥାପି ପ୍ରକୃତିର ନିୟମାନୁସାରେ ପରିଶ୍ରମୀକୁ ତା'ର ପାରିଶ୍ରମିକ ଦେବା ବ୍ରହ୍ମାଙ୍କର କର୍ତ୍ତବ୍ୟ ଥିଲା । ଯଦି କୌଣସି ବ୍ୟକ୍ତି ଅର୍ଥ ଉପାର୍ଜନ କରିବା ଉଦ୍ଦେଶ୍ୟରେ କାହାର ସେବା କରେ, ତା'ର ପାରିଶ୍ରମିକ ତାକୁ ମିଳିବା ଉଚିତ; ଅବଶ୍ୟ ସେହି ଧନର ସେ ସଦୁପଯୋଗ କରିବ କି ଦୁରୁପଯୋଗ କରିବ, ତାହା ତା'ର ବିବେକ ଉପରେ ନିର୍ଭର କରେ । ସେ ଯଦି ସେଥିରେ ନିଜର ସର୍ବନାଶ କଲା ଭଳି ଜିନିଷ କିଣି ଆଣେ, ତେବେ ସେଥିପାଇଁ ସେ ଦାୟୀ । ପ୍ରଜାପତି ବ୍ରହ୍ମା ବରଦାତା; ତା' ଛଡ଼ା ସେ ବର ଦେଇ କୌଣସି ପ୍ରକାରେ ସେହି ଦାନବକୁ ଘୋର ତପସ୍ୟାରୁ ନିବୃତ୍ତ କରି ତା'ର ତପତେଜରେ ସନ୍ତପ୍ତ ଦେବତାଙ୍କୁ ଘୋର କଷ୍ଟରୁ ରକ୍ଷା କରିବାକୁ ଚାହୁଁଥିଲେ ।

ବ୍ରହ୍ମାଙ୍କୁ ଦେଖି ହିରଣ୍ୟକଶିପୁ ଭୂମିଷ୍ଠ ପ୍ରମାଣ କରି ବିନମ୍ର ଭାବରେ ଅନେକ ସ୍ତୁତି କଲା । ତା'ପରେ ସେ ଅମର ବର ମାଗିଲା । ବ୍ରହ୍ମା ଅମର ବର ଦେବାକୁ ନିଜର ଅସାମର୍ଥ୍ୟ ବ୍ୟକ୍ତ କରିବାରୁ ସେ କହିଲା—"ତେବେ ମୋତେ ଏହି ବର ଦିଅନ୍ତୁ ଯେ—ଆପଣଙ୍କ ଦ୍ୱାରା ସୃଷ୍ଟ କୌଣସି ମନୁଷ୍ୟ, ପଶୁ, ପ୍ରାଣୀ, ଅପ୍ରାଣୀ, ଦେବତା, ଦୈତ୍ୟ, ନାଗ କାହାରି ଦ୍ୱାରା ମୋର ମୃତ୍ୟୁ ହେବ ନାହିଁ । ଘର ଭିତରେ ବା ବାହାରେ, ଦିନରେ ବା ରାତିରେ, କୌଣସି ପ୍ରାଣୀ ଦ୍ୱାରା କି ଅସ୍ତ୍ରଶସ୍ତ୍ର ଦ୍ୱାରା, ପୃଥିବୀରେ କି ଆକାଶରେ, କେଉଁଠାରେ ବି ମୋର ମୃତ୍ୟୁ ହେବ ନାହିଁ । ମୁଁ ଅକ୍ଷୟ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇ ସକଳ ପ୍ରାଣୀଙ୍କର ଏକଛତ୍ର ସମ୍ରାଟ ହୋଇଯିବି ।" ଏହା ଅତ୍ୟନ୍ତ ଦୁର୍ଲଭ ବର ହୋଇଥିଲେ ମଧ୍ୟ ବ୍ରହ୍ମା 'ତଥାସ୍ତୁ' କହି ଫେରିଗଲେ ।*

ବରପ୍ରାପ୍ତିରେ ମତୁଆଲା ହୋଇ ସେ ଦେବାଦି ସମସ୍ତ ପ୍ରାଣୀଙ୍କୁ ନିଜର

* ପଦ୍ମପୁରାଣ ଉତ୍ତରଖଣ୍ଡ ୯୩ ଅଧ୍ୟାୟ ଅନୁସାରେ ହିରଣ୍ୟକଶିପୁ ଶିବପଞ୍ଚାକ୍ଷର ମନ୍ତ୍ର ଜପପୂର୍ବକ ତପସ୍ୟା କରିଥିଲା ଏବଂ ଶିବ ତାହାକୁ ବର ଦେଇଥିଲେ; କିନ୍ତୁ ଅନ୍ୟ ସମସ୍ତ ଗ୍ରନ୍ଥରେ ବ୍ରହ୍ମାଙ୍କ ବରଦାନ କଥା ଉଲ୍ଲେଖ ଅଛି । ସମ୍ଭବତଃ କଳ୍ପାନ୍ତର ଭେଦ ଦୃଷ୍ଟିରୁ ଏପରି ପାର୍ଥକ୍ୟ ଦେଖିବାକୁ ମିଳେ ।

ଅଧୀନ କରିଦେଲା । ବିଶ୍ୱବିଜୟ କରି ସ୍ୱର୍ଗ ମଧ୍ୟ ଅଧିକାର କରିନେଲା । ତାହାର କଠୋର ଶାସନ ଓ ଅତ୍ୟାଚାରରେ ସମସ୍ତେ ଅତିଷ୍ଠ ହୋଇ ପଡ଼ିଲେ । ଦେବତାମାନେ ଭଗବାନଙ୍କର ଶରଣ ନେଲେ । ଭଗବାନ ଆଶ୍ୱାସନା ଦେଇ କହିଲେ—"ତୁମେମାନେ ଆଉ କିଛି ଦିନ ପ୍ରତୀକ୍ଷା କର । ତା'ର କାଳ ପାଖେଇ ଆସିଲାଣି । ଯେ ଦେବତା, ବେଦ, ଗୋଜାତି, ବ୍ରାହ୍ମଣ, ସାଧୁ, ଧର୍ମ ଓ ମୋ ପ୍ରତି ଦ୍ୱେଷ କରେ, ସେ ଯେ କେହି ହେଉ ନା କାହିଁକି, ତାହାର ଅତି ଶୀଘ୍ର ବିନାଶ ଘଟେ । ଏ ଦୈତ୍ୟ ତାହାର ନିର୍ବୈର, ଶାନ୍ତ, ମହାତ୍ମା ପୁତ୍ର ପ୍ରହ୍ଲାଦ ପ୍ରତି ଯେତେବେଳେ ଦ୍ରୋହ କରିବ ଓ ତା'ର ଅନିଷ୍ଟ କରିବାକୁ ଚେଷ୍ଟା କରିବ, ମୁଁ ତାହାକୁ ନିଶ୍ଚୟ ବଧ କରିବି ।"

ହିରଣ୍ୟକଶିପୁର ଚାରି ପୁଅ ଥିଲେ—ହ୍ଲାଦ, ଅନୁହ୍ଲାଦ, ସଂହ୍ଲାଦ ଓ ପ୍ରହ୍ଲାଦ । ପ୍ରହ୍ଲାଦ ସମସ୍ତଙ୍କ ଠାରୁ ସାନ ହୋଇଥିଲେ ମଧ୍ୟ ସଦ୍‌ଗୁଣରେ ସର୍ବଶ୍ରେଷ୍ଠ ଥିଲେ । ପିଲାବେଳୁ ହିଁ ସେ ଖେଳକୁଦ ଛାଡ଼ି ଭଗବାନଙ୍କ ଭକ୍ତିରେ ମଗ୍ନ ରହୁଥିଲେ । ବାଲ୍ୟ ଚପଳତା ବଦଳରେ ତାଙ୍କ ଠାରେ ଦୟା, କ୍ଷମା, ଉଦାରତା, ବଡ଼ ଲୋକଙ୍କ ପ୍ରତି ସମ୍ମାନ ପ୍ରଭୃତି ଦୈବୀଗୁଣ ସ୍ପଷ୍ଟ ଦେଖାଯାଉଥିଲା ।

ଥରେ ବାଳକ ପ୍ରହ୍ଲାଦ ସାଥୀପିଲାଙ୍କ ମେଳରେ ବୁଲୁ ବୁଲୁ ଦେଖିଲେ ଜଣେ କୁମ୍ଭାରୁଣୀ ହାତରେ ତୁଳସୀ ମାଳାଟିଏ ଧରି ଭଗବାନଙ୍କ ନାମ ଜପି ଜପି କୁମ୍ଭାର ଉହାକୁ ପରିକ୍ରମା କରୁଛି । ନିଆଁରେ ଉହା ଲାଲ ଦେଖାଯାଉଛି । ଏ ଘଟଣା ତାଙ୍କୁ ବିଚିତ୍ର ପରି ଲାଗିଲା । ସେ କୁମ୍ଭାରୁଣୀକୁ ଏପରି କରିବାର କାରଣ ପଚାରିଲେ । କୁମ୍ଭାରୁଣୀ କହିଲା—"ରାଜକୁମାର! ମୁଁ ଗୋଟିଏ ଭୁଲ୍ କରି ଦେଇଛି । କଞ୍ଚା ହାଣ୍ଡି ଶୁଖୁଥିବା ବେଳେ ଗୋଟିଏ ହାଣ୍ଡି ଭିତରେ ବିଲେଇଟି ଛୁଆ ଦେଇଥିଲା । ରାତିରେ ଉହାରେ ହାଣ୍ଡିସବୁ ରଖିବା ବେଳେ ସେହି ହାଣ୍ଡିରୁ ଛୁଆଙ୍କୁ ବାହାର କରିବାକୁ ମୁଁ ଭୁଲିଗଲି । ନିଆଁ ଦିଆ ସରିଲା ପରେ ମୋର ମନେ ପଡ଼ିଲା । ଏବେ ଆଉ କୌଣସି ଉପାୟ ନାହିଁ । ସେଇ ଛୁଆଙ୍କ ପ୍ରାଣରକ୍ଷା କେବଳ ସର୍ବସମର୍ଥ ଭଗବାନ ହିଁ କରି ପାରିବେ । ସେଥିପାଇଁ ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି ।" ପ୍ରହ୍ଲାଦ କହିଲେ—"କଣ ସତରେ ଭଗବାନ ସେମାନଙ୍କୁ ବଞ୍ଚାଇ ଦେବେ!" କୁମ୍ଭାରୁଣୀ କହିଲା—"ଭଗବାନ ସର୍ବସମର୍ଥ । ସେ ଚାହିଁଲେ ଅସମ୍ଭବକୁ ମଧ୍ୟ ସମ୍ଭବ କରି ପାରିବେ ।" ପ୍ରହ୍ଲାଦ କହିଲେ—"ତେବେ ଉହା ଖୋଲିବା ବେଳେ ମୋତେ ଡାକିବ ।"

କିଛି ଦିନ ପରେ ଉହା ଖୋଲାଗଲା । ପ୍ରହ୍ଲାଦ ଦେଖିଲେ ସବୁ ହାଣ୍ଡି ଠିକ୍‌ଭାବେ ପୋଡ଼ ପାଇଛି । କେବଳ ବିଲେଇ ଛୁଆ ଥିବା ହାଣ୍ଡିଟି କଞ୍ଚା ରହିଯାଇଛି ।

ବିଲେଇ ଛୁଆଗୁଡ଼ିକ ଟିକେ ବଡ଼ ବଡ଼ ମଧ୍ୟ ହୋଇଗଲେଣି। ସେମାନଙ୍କର କିଛିହେଲେ କ୍ଷତି ହୋଇ ନାହିଁ। ଏ ଘଟଣାରୁ ପ୍ରହ୍ଲାଦଙ୍କ ମନରେ ଭଗବାନଙ୍କ ପ୍ରତି ବିଶ୍ୱାସ ଆହୁରି ଅଧିକ ସୁଦୃଢ଼ ହୋଇଗଲା।

ପ୍ରହ୍ଲାଦ ଥିଲେ ବ୍ରାହ୍ମଣଭକ୍ତ, ସୌମ୍ୟସ୍ୱଭାବ, ସତ୍ୟପ୍ରତିଜ୍ଞ ଏବଂ ଜିତେନ୍ଦ୍ରିୟ। ସେ ସକଳ ପ୍ରାଣୀଙ୍କୁ ନିଜ ସମାନ ମଣୁଥିଲେ ଓ ସମସ୍ତଙ୍କ ପ୍ରତି ସମଭାବ ରଖୁଥିଲେ। ସେ ଥିଲେ ସମସ୍ତଙ୍କ ପ୍ରିୟ ଓ ପ୍ରକୃତ ହିତୈଷୀ। ସେ ବଡ଼ମାନଙ୍କ ପାଖରେ ସେବକ ପରି ନତମସ୍ତକ ରହୁଥିଲେ; ଗରିବମାନଙ୍କୁ ପିତା ପରି ସ୍ନେହ କରୁଥିଲେ; ସମସ୍କନ୍ଧମାନଙ୍କୁ ଭାଇ ପରି ସ୍ନେହ କରୁଥିଲେ ଏବଂ ଗୁରୁଜନମାନଙ୍କ ପ୍ରତି ଭଗବଦ୍‌ଭାବ ରଖୁଥିଲେ। ସେ ବିଦ୍ୟା, ଧନ, ସୌନ୍ଦର୍ଯ୍ୟ ଓ କୁଳୀନତାରେ ସମ୍ପନ୍ନ ହୋଇଥିଲେ ମଧ୍ୟ ତାଙ୍କୁ ଗର୍ବ ଓ ଦାମ୍ଭିକତା ତିଳେମାତ୍ର ସ୍ପର୍ଶ କରି ନ ଥିଲା। ଯେତେ ବଡ଼ ଦୁଃଖ ଆସିଲେ ବି ସେ ଧୈର୍ଯ୍ୟଚ୍ୟୁତ ହେଉ ନ ଥିଲେ। ଇହଲୋକ-ପରଲୋକର ସୁଖଭୋଗ ବିଷୟରେ ବହୁତ ଶୁଣିଥିଲେ ମଧ୍ୟ ସେସବୁ ଅସାର ଓ ଅସତ୍ୟ ବୋଲି ସେ ବୁଝି ପାରିଥିଲେ। ତେଣୁ ତାଙ୍କ ମନରେ କୌଣସି ବସ୍ତୁ ପ୍ରତି ଲାଳସା ନ ଥିଲା। ଇନ୍ଦ୍ରିୟ, ପ୍ରାଣ, ଶରୀର ଓ ମନକୁ ସେ ନିଜ ବଶରେ ରଖିଥିଲେ। ତାଙ୍କ ଚିତ୍ତରେ କେବେ ବି କୌଣସି କାମନା ଜାଗ୍ରତ ହେଉ ନ ଥିଲା। ସେ ଜନ୍ମତଃ ଅସୁର ହେଲେ ମଧ୍ୟ ତାଙ୍କଠାରେ ଲେଶମାତ୍ର ଆସୁରୀସମ୍ପତ୍ତି ନ ଥିଲା।

ଭଗବାନଙ୍କର ଗୁଣ ଯେପରି ଅନନ୍ତ, ପ୍ରହ୍ଲାଦଙ୍କର ଗୁଣାବଳୀ ମଧ୍ୟ ସେହିପରି ଅସୀମ। ମହାତ୍ମାମାନେ ସର୍ବଦା ତାହାଙ୍କର ଗୁଣ ବର୍ଣ୍ଣନା କରନ୍ତି ଏବଂ ସେସବୁକୁ ନିଜ ଜୀବନରେ ଧାରଣ କରିବାକୁ ପ୍ରଚେଷ୍ଟା କରନ୍ତି। ଦେବତାମାନେ ଅସୁରମାନଙ୍କର ଶତ୍ରୁ ସତ, ତଥାପି ଯେତେବେଳେ ଭକ୍ତମାନଙ୍କର ଚରିତ ଶୁଣିବା ଲାଗି ଦେବତାମାନଙ୍କର ସଭା ହୁଏ, ସେତେବେଳେ ସେମାନେ ଅନ୍ୟ ଭକ୍ତମାନଙ୍କୁ ପ୍ରହ୍ଲାଦଙ୍କ ସହିତ ତୁଳନା କରି ତାଙ୍କୁ ସମ୍ମାନ ପ୍ରଦାନ କରନ୍ତି। ତାଙ୍କର ମହିମା ବର୍ଣ୍ଣନା କରିବାକୁ ହେଲେ ତାଙ୍କର ଅଗଣିତ ଗୁଣ ବିଷୟରେ କହିବା ଓ ଶୁଣିବାର ଆବଶ୍ୟକତା ନାହିଁ; ତାଙ୍କର କେବଳ ଗୋଟିଏ ମାତ୍ର ଗୁଣ ତାହାଙ୍କ ମହିମାକୁ ପ୍ରକଟିତ କରିଦେବାକୁ ଯଥେଷ୍ଟ ଏବଂ ସେହି ଗୁଣଟି ହେଉଛି— ଭଗବାନ ଶ୍ରୀକୃଷ୍ଣଙ୍କ ଚରଣରେ ତାହାଙ୍କର ସ୍ୱାଭାବିକ ଓ ଜନ୍ମଜାତ ପ୍ରୀତି। ଭଗବାନ ଶ୍ରୀକୃଷ୍ଣଙ୍କ ଅନୁଗ୍ରହରୂପୀ ଗ୍ରହ ତାହାଙ୍କର ହୃଦୟକୁ ଏପରି ଆକୃଷ୍ଟ କରି ନେଇଥିଲା

ଯେ ସେ ଜଗତକୁ ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ । ତାଙ୍କୁ ଜଣାପଡୁଥିଲା, ସତେ ଯେପରି ଭଗବାନ ତାଙ୍କୁ କୋଳରେ ବସାଇ ଆଲିଙ୍ଗନ କରୁଛନ୍ତି । ତେଣୁ ସେ ଶୁଆବସା, ଖିଆପିଆ, ଚ୍ୱଲବୁଲ ଓ କଥାଭାଷା କରୁଥିବା ବେଳେ ବି ସେହି ବାହ୍ୟ କ୍ରିୟା ପ୍ରତି ତାଙ୍କର ଆଦୌ ଧ୍ୟାନ ଯାଉ ନ ଥିଲା । ସବୁବେଳେ ଭଗବାନଙ୍କ ସାନ୍ନିଧ୍ୟ ଅନୁଭବ କରୁଥିଲେ । ବେଳେ ବେଳେ ତାଙ୍କ ମନରେ 'ଭଗବାନ ମୋତେ ଛାଡ଼ି ଚ୍ୱଲିଗଲେ' ବୋଲି ଭାବନା ଉଠୁଥିଲା । ସେତେବେଳେ ସେ ସେହି ବିରହ ଭାବନାରେ ଏତେ ବୁଡ଼ି ଯାଉଥିଲେ ଯେ ଉଚ୍ଚସ୍ୱରରେ କାନ୍ଦି ଉଠୁଥିଲେ । ବେଳେ ବେଳେ ସେ ମନେ ମନେ ଭଗବାନଙ୍କୁ ନିଜ ପାଖରେ ପାଇ ଆନନ୍ଦରେ ହସି ଉଠୁଥିଲେ । ବେଳେ ବେଳେ ଭଗବାନଙ୍କ ଧ୍ୟାନରେ ମଧୁର ଆନନ୍ଦ ଲାଭ କରି ଉଚ୍ଚସ୍ୱରରେ ଗାନ କରୁଥିଲେ । କେତେବେଳେ ସେ ଉତ୍ସୁକ ହୋଇ ବିଚିତ୍ର ପ୍ରକାରେ ଚିତ୍କାର କରି ଉଠୁଥିଲେ ତ ଆଉ କେତେବେଳେ ଲୋକଲଜ୍ଜା ତ୍ୟାଗ କରି ପ୍ରେମରେ ଉନ୍ମତ୍ତ ହୋଇ ନାଚି ପକାଉଥିଲେ । ବେଳେ ବେଳେ ଭଗବଦ୍‌ଲୀଳା ଚିନ୍ତନରେ ଏପରି ତଲ୍ଲୀନ ହୋଇଯାଉଥିଲେ ଯେ ନିଜେ ନିଜକୁ ଭୁଲିଯାଇ ସେହି ଲୀଳାକୁ ଅନୁକରଣ କରୁଥିଲେ । ବେଳେ ବେଳେ ନିଜ ଭିତରେ ଭଗବାନଙ୍କର କୋମଳ ସଂସ୍ପର୍ଶ ଅନୁଭବ କରି ଆନନ୍ଦରେ ମଗ୍ନ ହୋଇଯାଉଥିଲେ ଏବଂ ଚୁପ୍‌ଚ୍ୱପ୍ ଶାନ୍ତ ହୋଇ ବସି ପଡୁଥିଲେ । ସେତେବେଳେ ତାଙ୍କର ସର୍ବାଙ୍ଗ ପୁଲକିତ ହୋଇ ଉଠୁଥିଲା; ତାହାଙ୍କର ଅର୍ଦ୍ଧମୁଦ୍ରିତ ନୟନ ଅବିଚଳ ପ୍ରୀତି ଓ ଆନନ୍ଦାଶ୍ରୁରେ ଭରି ଯାଉଥିଲା । ଭଗବାନ ଶ୍ରୀକୃଷ୍ଣଙ୍କ ଚରଣକମଳରେ ଏପରି ଅବିଚଳ ଭକ୍ତି କେବଳ ଅକିଞ୍ଚନ ଭଗବଦ୍‌ପ୍ରେମୀ ମହାତ୍ମାମାନଙ୍କର ସଙ୍ଗରୁ ହିଁ ପ୍ରାପ୍ତ ହୁଏ । ଏହାଦ୍ୱାରା ସେ ସ୍ୱୟଂ ତ ପରମାନନ୍ଦରେ ମଗ୍ନ ରହୁଥିଲେ; ତା' ସହିତ ଯେଉଁମାନଙ୍କ ମନ କୁସଙ୍ଗ ହେତୁ ଅତ୍ୟନ୍ତ ନିରାଶ ହୋଇଯାଇଥିଲା, ସେମାନଙ୍କୁ ବି ଶାନ୍ତି ପ୍ରଦାନ କରୁଥିଲେ ।

ଦାନବ ହିରଣ୍ୟକଶିପୁର ପୁତ୍ର ଏତେ ବଡ଼ ଧର୍ମାତ୍ମା ଓ ଭଗବଦ୍‌ଭକ୍ତ କିପରି ହେଲେ, ସେ ବିଷୟରେ ଏକ ଆଖ୍ୟାନ ରହିଛି । ହିରଣ୍ୟକଶିପୁ ପ୍ରଥମ ଥର ତପସ୍ୟାକୁ ବାହାରିବା ବେଳେ କେତେକ ଅଶୁଭ ଲକ୍ଷଣ ଦେଖି ତା'ର କେତେକ ମନ୍ତ୍ରୀ ଓ ବିଦ୍ୱାନ୍ ତାକୁ ବାରଣ କଲେ । କିନ୍ତୁ ସେ ସେମାନଙ୍କ ପରାମର୍ଶ ନ ମାନି ତପସ୍ୟାକୁ ବାହାରି ପଡ଼ିଲା । ସତକୁ ସତ ସେଥର ତା'ର ତପସ୍ୟା ସଫଳ ହୋଇ ପାରିଲା ନାହିଁ । ଦେବତାମାନେ ତା'ର ତପସ୍ୟାର ଅସତ୍ ଉଦ୍ଦେଶ୍ୟକୁ ବୁଝିପାରି ଆତଙ୍କିତ ହୋଇ ପଡ଼ିଥିଲେ । ସେମାନଙ୍କର ସଂକଟ ମୋଚନ ପାଇଁ ଦେବର୍ଷି

ନାରଦ ପର୍ବତ ମୁନିଙ୍କୁ ସଙ୍ଗରେ ନେଇ ତା'ର ତପସ୍ଥଳୀରେ ପହଞ୍ଚିଲେ ଏବଂ 'କଳବିଙ୍କ' ନାମକ ପକ୍ଷୀ ରୂପ ଧରି ବାରମ୍ବାର 'ଓଁ ନମୋ ନାରାୟଣାୟ' ମନ୍ତ୍ର ଉଚ୍ଚାରଣ କଲେ। ନାରାୟଣଙ୍କ ନାମ ପ୍ରତି ଦ୍ୱେଷ କରୁଥିବାରୁ ସେ ତାହା ସହି ପାରିଲା ନାହିଁ। କ୍ରୋଧରେ ଜର୍ଜ୍ଜରିତ ହୋଇ ସେ ଧନୁ ଧରି ପକ୍ଷୀଙ୍କୁ ଗୋଡ଼ାଇଗଲା। ପକ୍ଷୀମାନେ ଅଦୃଶ୍ୟ ହୋଇଗଲେ। ଏହିରୂପେ ତା'ର ତପ ଭଙ୍ଗ ହେବାରୁ ସେ ସିଧା ରାଜଧାନୀକୁ ଫେରି ଆସିଲା। ରାତ୍ରିରେ ସେ ତା'ର ସ୍ତ୍ରୀ କୟାଧୂ ସହ ମିଳିତ ହେବାବେଳେ କୟାଧୂ ସ୍ୱାମୀଙ୍କୁ ଅସ୍ତନକ ଫେରିବାର କାରଣ ପଚାରିଲା। ସେତେବେଳେ ସେ ପକ୍ଷୀଙ୍କ ଦ୍ୱାରା ଉଚ୍ଚାରିତ 'ଓଁ ନମୋ ନାରାୟଣାୟ' ମନ୍ତ୍ର କଥା ବର୍ଣ୍ଣନା କରିଥିଲା। ସେହି ସମୟରେ କୟାଧୂର ଗର୍ଭାଧାନ ହୋଇଗଲା। ଭଗବାନଙ୍କ ନାମ ପ୍ରଭାବରେ ତା'ର ଗର୍ଭରୁ ଭଗବଭକ୍ତ ଜନ୍ମ ନେଲେ। ସେଥିପାଇଁ ଆମ ହିନ୍ଦୁ ସଂସ୍କୃତିରେ ସବୁ ସମୟରେ ଭଗବାନଙ୍କୁ ସ୍ମରଣ କରିବାକୁ ଉପଦେଶ ଦିଆଯାଇଛି। ଶିଶୁ ଗର୍ଭରେ ଥିବାବେଳେ ମାଆମାନେ ଭଗବାନଙ୍କ ଚରିତ ଓ ଉତ୍ତମ ଉତ୍ତମ କଥା ଶ୍ରବଣ-ଚିନ୍ତନ-ମନନ କରିବା ଉଚିତ। ଏହା ଫଳରେ ଶିଶୁଟି ଅତ୍ୟନ୍ତ ସୁସଂସ୍କୃତ, ନୀତିବାନ୍ ତଥା ଭକ୍ତିମାନ୍ ହେବ। ଆମ ପୁରାଣାଦିରେ ଅଭିମନ୍ୟୁ ମାତୃଗର୍ଭରେ ଥାଇ ଅନେକ ଯୁଦ୍ଧ କୌଶଳ ଶିଖିଥିବା କଥା ମଧ୍ୟ ବର୍ଣ୍ଣିତ ଅଛି।

ପ୍ରହ୍ଲାଦ ମାତ୍ର ପାଞ୍ଚ ବର୍ଷର ହୋଇଥାନ୍ତି, ଦୈତ୍ୟ ଗୁରୁ ଶୁକ୍ରାଚାର୍ଯ୍ୟ ତପସ୍ୟା କରିବାକୁ ଚାଲିଯାଇଥାନ୍ତି। ତେଣୁ ହିରଣ୍ୟକଶିପୁ ପ୍ରହ୍ଲାଦଙ୍କୁ ଗୁରୁପୁତ୍ର ଷଣ୍ଡ ଓ ଅମର୍କଙ୍କ ପାଖକୁ ବିଦ୍ୟାଧ୍ୟୟନ ନିମିତ୍ତ ପଠାଇଦେଇଥାନ୍ତି। ଥରେ ପ୍ରହ୍ଲାଦ ଘରକୁ ଆସିଲେ। ମାଆ କୟାଧୂ ତାଙ୍କୁ ବସ୍ତ୍ର ଓ ଆଭୂଷଣରେ ସଜାଇ ତାଙ୍କ ବାପାଙ୍କ ପାଖକୁ ପଠାଇଦେଲେ। ପ୍ରହ୍ଲାଦ ଯାଇ ବାପାଙ୍କୁ ପ୍ରଣାମ କଲେ। ହିରଣ୍ୟକଶିପୁ ପୁଅକୁ ଟେକି ଉଠାଇ ଆଣି କୋଳରେ ବସାଇଲା ଏବଂ ସ୍ନେହରେ ପଚାରିଲା—ବାବୁରେ! ତୁ କ'ଣ ସବୁ ଭଲ ଭଲ କଥା ପଢ଼ିଛୁ-ଶିଖିଛୁ କିଛି ଶୁଣେଇଲୁ।

ପ୍ରହ୍ଲାଦ କହିଲେ—"ବାପା! ସଂସାରରେ ସମସ୍ତ ପ୍ରାଣୀ ନାଶବାନ୍ ଭୋଗ୍ୟ ବସ୍ତୁ ଓ ସୁଖ ପାଇଁ ସର୍ବଦା ଉଦ୍‌ବିଗ୍ନ ରହୁଛନ୍ତି। ସତ୍ କ'ଣ, ଅବିନାଶୀ ସୁଖ କ'ଣ, ତାହା ବୁଝିବାକୁ ବି ଚାହୁଁ ନାହାନ୍ତି, ପାଇବାକୁ ଚେଷ୍ଟା କରିବା ତ ଦୂରର କଥା। ମୋ ବିଚାରରେ ଏ ଘର-ସଂସାରରୂପୀ ଅନ୍ଧକୂପରେ ପଡ଼ି ନିଜର ଅଧଃପତନ କରିବା ଅପେକ୍ଷା ବନକୁ ଯାଇ ଶ୍ରୀହରିଙ୍କୁ ଭଜିବା ଉଚିତ, ତାଙ୍କରି ଆଶ୍ରୟ ନେବା ସର୍ବୋତ୍ତମ।"

କୌଣସି ପ୍ରକାରେ ବି ଭକ୍ତଙ୍କ ସହିତ ସମାଗମ ହୋଇଗଲେ ତାହା କଲ୍ୟାଣ

କରେ । ପୁତ୍ର ଭାବି ହେଉ ପଛେ, ହିରଣ୍ୟକଶିପୁ ପ୍ରହ୍ଲାଦଙ୍କ ଭଳି ଭକ୍ତଙ୍କ ସହିତ ବାର୍ତ୍ତାଳାପ କରିବାର ସୁଯୋଗ ପାଇବାରୁ ତାକୁ ସଂସାରର ନଶ୍ୱରତା ଜ୍ଞାନ ଅନାୟାସରେ ମିଳିଗଲା । ହିରଣ୍ୟକଶିପୁ କିନ୍ତୁ ତାଙ୍କ ଉତ୍ତରକୁ ଶିଶୁସୁଲଭ କଥା ମନେକରି ହସରେ ଉଡ଼ାଇ ଦେଲା । ସେ ଭାବିଲା, କେହି ଶତ୍ରୁ ବୋଧହୁଏ କୋମଳମତି ବାଳକକୁ ଏପରି ଓଲଟା କଥା ଶିଖାଇ ଦେଇଛି । ତେଣୁ ସେ ଗୁରୁପୁତ୍ର ଷଣ୍ଡ ଓ ଅମର୍କଙ୍କୁ ସାବଧାନ କରିଦେଇ ପ୍ରହ୍ଲାଦଙ୍କୁ ଦୈତ୍ୟକୁଳୋଚିତ ରାଜନୀତି, ଅର୍ଥନୀତି ଆଦି ଶିକ୍ଷା ଦେବାକୁ ଆଦେଶ ଦେଲା ।

ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର କଥା ବି ନାହିଁ । ସେ ତା'ର ଆସୁରୀ ବୁଦ୍ଧିରେ ଏ ପାରମାର୍ଥିକ ଜ୍ଞାନର ମହତ୍ତ୍ୱ ବା କଣ ବୁଝନ୍ତା? ଯେଉଁମାନେ ଅର୍ଥ ଓ କାମକୁ ହିଁ ଜୀବନର ସବୁକିଛି ବୋଲି ବୁଝନ୍ତି, ସେମାନଙ୍କ ଦୃଷ୍ଟିରେ ଜୀବନର ଅର୍ଥ ହେଲା—"ଖାଅ-ପିଅ, ଅର୍ଥ ଉପାର୍ଜନ କର, ନିଜେ ସୁଖ-ସ୍ୱାଚ୍ଛନ୍ଦ୍ୟରେ ରୁହ, ଘରଦ୍ୱାର କର, ବଂଶବୃଦ୍ଧି କର ଓ ଶେଷରେ ମରିଯାଅ । ବାସ୍, ଏତିକି ହିଁ ଜୀବନର ଉଦ୍ଦେଶ୍ୟ । ଏ ଜୀବନରେ ଆଉ କ'ଣ ଅଛି?" କିନ୍ତୁ ପ୍ରହ୍ଲାଦଙ୍କୁ ସେହି ଅସାର ଶିକ୍ଷା ଭଲ ଲାଗୁ ନ ଥିଲା । ଗୁରୁପୁତ୍ର ତାଙ୍କୁ ଧମକାଇ ପଚାରିଲେ—"କିରେ! ଆମେ ତ ଏସବୁ ପଢ଼ାଇ ନ ଥିଲୁ! ତୋତେ ଏସବୁ ଶିକ୍ଷା କିଏ ଦେଲା?" ପ୍ରହ୍ଲାଦ କହିଲେ— "ଗୁରୁଦେବ! ଏ ଜଗତରେ ଅନ୍ୟ ବୋଲି କିଏ ଅଛି ଯେ ଶିକ୍ଷା ଦେବ । ମୁଁ-ମୋର, ତୁମେ-ତୁମର—ଏସବୁ ଆପଣା-ପର ଭେଦଭାବ ତ ଅଜ୍ଞାନୀର କଳ୍ପନା । ଏହି ମାୟାରେ ଜୀବ ମୋହିତ ହୋଇ ବାରମ୍ବାର ଜନ୍ମମୃତ୍ୟୁ ଆବର୍ତ୍ତରେ ଘୂରୁଛି । ପ୍ରଭୁ ବଡ଼ ଦୟାମୟ! ସେ ଯାହାକୁ ଦୟା କରନ୍ତି, ତା' ମନରୁ ସବୁ ଭେଦଭାବ ନଷ୍ଟ ହୋଇଯାଏ ଏବଂ ତା' ଦୃଷ୍ଟିରେ ଦ୍ୱିତୀୟ ସତ୍ତା ରହେ ନାହିଁ; ସେ ଏକମାତ୍ର ତାଙ୍କରି ଠାରେ ଅଭିନିବିଷ୍ଟ ହୋଇଯାଏ । ମୋର ମନ ମଧ୍ୟ ସେହି ପରମାତ୍ମାଙ୍କ କୃପାରୁ ତାଙ୍କ ଆଡ଼କୁ ଆପେ ଆପେ ଆକର୍ଷିତ ହୋଇଯାଇଛି ।"

ଷଣ୍ଡ ଓ ଅମର୍କ ଏ କଥା ଶୁଣି ପ୍ରହ୍ଲାଦଙ୍କୁ ବହୁତ ଡରାଇଲେ ଓ ଧମକାଇଲେ । ତା'ପରେ ତାଙ୍କୁ ଦଣ୍ଡନୀତି, ରାଜନୀତି, ଅର୍ଥନୀତି ଆଦି ପଢ଼ାଇଲେ । ପ୍ରହ୍ଲାଦ ସେହି ବିଦ୍ୟାକୁ କେବଳ ଶୁଆ ପଢ଼ିଲା ପରି ଭଲଭାବରେ ପଢୁଥିଲେ ସତ, କିନ୍ତୁ ସେଥିରେ ତାଙ୍କର ଆଦୌ ଆସ୍ଥା ନ ଥିଲା । ତଥାପି ସେହି ବିଦ୍ୟାକୁ କି ଗୁରୁଙ୍କୁ ସେ ନିନ୍ଦା କରୁ ନ ଥିଲେ । ଗୁରୁମାନେ ଦେଖିଲେ, ପ୍ରହ୍ଲାଦ ଭଲଭାବରେ ଶିକ୍ଷା ପାଇଗଲେଣି । ତେଣୁ ତାଙ୍କୁ ଦୈତ୍ୟରାଜ ପାଖକୁ ନେଇଗଲେ । ଏଥର ମଧ୍ୟ

ଦୈତ୍ୟରାଜ ତାଙ୍କୁ ସ୍ନେହରେ କୋଳରେ ବସାଇଲା ଏବଂ ପଚ୍ଚାରିଲା—ବାପା ପ୍ରହ୍ଲାଦ! ତୋ ବିଚ୍ଚାରରେ ଉତ୍ତମ ଜ୍ଞାନ କ'ଣ?

ପ୍ରହ୍ଲାଦ ପୂର୍ବ ଥର ପିତାଙ୍କୁ ସଂସାରର ନଶ୍ୱରତା ବିଷୟରେ ଅବଗତ କରାଇଥିଲେ। ତେଣୁ ଏଥର ବନକୁ ଯାଇ କେଉଁଭଳି ପ୍ରଭୁଙ୍କୁ ଭଜିବେ, ତାହାର ଉପାୟ ପରିଷ୍କାର ଭାବରେ କହିଦେଲେ। ପ୍ରହ୍ଲାଦ କହିଲେ—

**ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋ ସ୍ମରଣଂ ପାଦସେବନଂ।**
**ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍॥**

ଅର୍ଥାତ୍ "ଭଗବାନଙ୍କ ଗୁଣ ଓ ଚରିତ ଶ୍ରବଣ, ନାମ ଓ ଲୀଳା ଆଦି କୀର୍ତ୍ତନ, ତାଙ୍କ ନାମ-ରୂପ ଆଦି ସ୍ମରଣ, ତାଙ୍କ ପାଦପଦ୍ମରେ ସେବା, ତାଙ୍କର ପୂଜା-ଅର୍ଚ୍ଚନା, ତାଙ୍କୁ ନମସ୍କାର, ତାଙ୍କ ପ୍ରତି ଦାସ୍ୟ ଭାବ, ସଖ୍ୟ ଭାବ ଓ ତାଙ୍କଠାରେ ଆତ୍ମସମର୍ପଣ—ଏ ନଅ ପ୍ରକାରେ ବିଷ୍ଣୁ ଭଗବାନଙ୍କ ପ୍ରତି ଭକ୍ତି କରିବାକୁ ହିଁ ମୁଁ ଉତ୍ତମ ଶିକ୍ଷା ମନେକରେ।"

ଏତିକି ଶୁଣୁ ଶୁଣୁ ହିରଣ୍ୟକଶିପୁର ଓଠ କ୍ରୋଧରେ ପ୍ରକମ୍ପିତ ହେଲା। ଆଖି ଲାଲ ହୋଇଗଲା। ସେ ପ୍ରହ୍ଲାଦଙ୍କୁ କୋଳରୁ ଉଠାଇ ତଳେ କଚ୍ଚାଡ଼ି ଦେଲା ଏବଂ ଗୁରୁଙ୍କୁ ଦୋଷ ଦେଇ ତାଙ୍କ ଉପରେ କୋପ ପ୍ରକାଶ କଲା। ପ୍ରହ୍ଲାଦ ଶାନ୍ତ ଭାବରେ କହିଲେ—"ବାପା! ଗୁରୁଙ୍କର ଏଥିରେ କିଛି ଦୋଷ ନାହିଁ। ଯେଉଁମାନେ ବିଷୟାସକ୍ତ, ଘର, ପରିବାର, ପିଲାଛୁଆଙ୍କ ମୋହରେ ଯେଉଁମାନଙ୍କ ବୁଦ୍ଧି ଜଡ଼ିତ ହୋଇ ରହିଛି, ସେମାନେ ଚର୍ବିତ ଦ୍ରବ୍ୟକୁ ପୁନଃ ଚର୍ବଣ କଲା ପରି ବାରମ୍ବାର ସେହି ବିଷୟ ଭୋଗକୁ ପାଇବାକୁ ଇଚ୍ଛା କରୁଛନ୍ତି। ସେମାନଙ୍କର ବୁଦ୍ଧି ଆପେ ଆପେ କିଂବା କେହି ଶିଖାଇ ଦେଲେ ସୁଦ୍ଧା ଭଗବାନଙ୍କ ଠାରେ ଲାଗେ ନାହିଁ। ଗୋଟିଏ ଅନ୍ଧ ଆଉ ଗୋଟିଏ ଅନ୍ଧକୁ ମାର୍ଗ ଦେଖାଇ ନ ପାରିବା ପରି ସେମାନେ କଣ ଆଉ କାହାକୁ ମାର୍ଗ ଦେଖାଇ ପାରିବେ? ଯେପର୍ଯ୍ୟନ୍ତ ବ୍ୟକ୍ତି ମହାପୁରୁଷଙ୍କ ପାଦରଜକୁ ମସ୍ତକରେ ଧାରଣ ନ କରେ, ସେପର୍ଯ୍ୟନ୍ତ ତା'ର ବୁଦ୍ଧି ନିର୍ମଳ ହୋଇ ଭଗବାନଙ୍କ ଠାରେ ଲାଗେ ନାହିଁ। ବୁଦ୍ଧି ଭଗବାନଙ୍କ ଠାରେ ନ ଲାଗିବା ପର୍ଯ୍ୟନ୍ତ ଜନ୍ମମରଣରୂପୀ କ୍ଳେଶ ଦୂର ହେବ ନାହିଁ।"

ଛୋଟ ପିଲାଟିଏ ନିର୍ଭୟରେ ଠିଆ ହୋଇ ତ୍ରିଭୁବନବିଜୟୀ ଦୈତ୍ୟରାଜ ସମ୍ମୁଖରେ ତା'ର ଶତ୍ରୁ ବିଷ୍ଣୁଙ୍କର ଏପରି ପକ୍ଷ ନେବାରୁ ହିରଣ୍ୟକଶିପୁ ତାହା ସହି ପାରିଲା ନାହିଁ। ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ରାଜସଭାର କ୍ରୂର ଦୈତ୍ୟଙ୍କୁ ଆଦେଶ

ଦେଲା—''ଏଇଟା ମୋର ପୁତ୍ର ନୁହେଁ, ଏ ମୋର ପରମ ଶତ୍ରୁ । ଏହାକୁ ଯଥାଶୀଘ୍ର ମାରିଦିଅ ।'' ଆଦେଶ ପାଇବା ମାତ୍ରେ ଅସୁରମାନେ 'ମାର, ମାର' କହି ତାକୁ ତ୍ରିଶୂଳ, ଖଡ୍‌ଗ ଆଦି ଅସ୍ତ୍ରଶସ୍ତ୍ରରେ ଆକ୍ରମଣ କଲେ । କିନ୍ତୁ ପ୍ରହ୍ଲାଦ ନିର୍ଭୟରେ ଠିଆ ହୋଇଥାନ୍ତି । ତାଙ୍କୁ ତ ସର୍ବତ୍ର ତାଙ୍କର ଆପଣାର ପ୍ରଭୁଙ୍କ ଦର୍ଶନ ହେଉଥିଲା, ସେ କାହାକୁ ବା କାହିଁକି ଡରିବେ? ଅସୁରମାନେ ସେମାନଙ୍କର ପୂର୍ଣ୍ଣ ବଳ ପ୍ରୟୋଗ କରି ତାଙ୍କୁ ମାରିବାକୁ ଚେଷ୍ଟା କଲେ । ମାତ୍ର ସେମାନଙ୍କର ଅସ୍ତ୍ରଶସ୍ତ୍ର ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା; ପ୍ରଭୁଙ୍କ କୃପାରୁ ପ୍ରହ୍ଲାଦଙ୍କ ଦେହରେ ଦାଗଟିଏ ମଧ୍ୟ ପଡ଼ିଲା ନାହିଁ । 'ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ'—ଏହି ଉକ୍ତିଟି ଅକ୍ଷରେ ଅକ୍ଷରେ ସତ୍ୟ ହୋଇଗଲା ।

ଏହା ଦେଖି ଦୈତ୍ୟ ହିରଣ୍ୟକଶିପୁ ଯେତିକି ଆଶ୍ଚର୍ଯ୍ୟ ହେଲା, ତା'ଠାରୁ ଅଧିକ ଭୟଭୀତ ମଧ୍ୟ ହୋଇଗଲା । ସେ ତାଙ୍କୁ ମାରିବା ପାଇଁ ଅନେକ ଉପାୟ କଲା । ମଦମତ୍ତ ହସ୍ତୀ ଆଗରେ ପ୍ରହ୍ଲାଦଙ୍କୁ ହାତଗୋଡ଼ ବାନ୍ଧି ପକାଇ ଦିଆଗଲା । ମାତ୍ର ହାତୀ ତାଙ୍କୁ ଶୁଣ୍ଢରେ ଟେକି ନେଇ ପିଠିରେ ବସାଇଲା । ବିଷଧର ସର୍ପ ତାଙ୍କ ପାଖକୁ ଛଡ଼ାଗଲା; ମାତ୍ର ସର୍ପ ତାଙ୍କ ଗଳାର ହାର ହୋଇଗଲା । ସିଂହ ଶ୍ୱାନବତ୍ ଲାଞ୍ଜ ହଲାଇ ହଲାଇ ତାଙ୍କ ଚରଣରେ ଲୋଟି ପଡ଼ିଲା । ଶୂଳି ସିଂହାସନ ହୋଇଗଲା । ପର୍ବତରୁ ତଳକୁ ପକାଇ ଦିଆଯିବାରୁ କଠୋର ଭୂମି ସୁକୋମଳ ସୁମନଶଯ୍ୟା ପାଲଟିଗଲା । ହିରଣ୍ୟକଶିପୁର ଭଉଣୀର ନାମ ଥିଲା ହୋଲିକା; ତାକୁ ଅଗ୍ନିରେ ନ ପୋଡ଼ିବାକୁ ବର ମିଳିଥିଲା । ସେ ପ୍ରହ୍ଲାଦଙ୍କୁ କୋଳରେ ଧରି ଅଗ୍ନିରେ ପ୍ରବେଶ କରିଗଲା । ମାତ୍ର ପ୍ରହ୍ଲାଦଙ୍କ ପାଇଁ ଅଗ୍ନି ଚନ୍ଦନ ପରି ସୁଶୀତଳ ଲେପ ହୋଇଗଲା । ଅପରପକ୍ଷେ ଭଗବଦ୍ଭକ୍ତର ଅନିଷ୍ଟ କରିବା ଅପରାଧରେ ହୋଲିକା ପାଇଁ ବ୍ରହ୍ମାଙ୍କ ବରଦାନ ନିଷ୍ଫଳ ହୋଇଗଲା ଏବଂ ହୋଲିକା ନିଜେ ଜଳି ଭସ୍ମ ହୋଇଗଲା ।

ଏଭଳି ଆଶ୍ଚର୍ଯ୍ୟକର ଦୃଶ୍ୟ ଦେଖି ହିରଣ୍ୟକଶିପୁ ପଗ୍ଚରିଲା—''ପ୍ରହ୍ଲାଦ! ତୋତେ କ'ଣ ଅଗ୍ନିର ପ୍ରଖର ଜ୍ୱାଳା ସନ୍ତାପିତ କରୁ ନାହିଁ । ତୁ ଆନନ୍ଦରେ ବସି ରହିଛୁ କେମିତି?'' ପ୍ରହ୍ଲାଦ ପ୍ରସନ୍ନ ମନରେ ପିତାଙ୍କୁ କହିଲେ—''ସର୍ବତାପ ଶମନକାରୀ ଓ ଭବ-ଦାବାଗ୍ନି ପାଇଁ ଭେଷଜସ୍ୱରୂପ 'ରାମ' ନାମ ଜପ କରୁଥିବା ଲୋକକୁ ଭୟ କାହିଁ? ବାପା! ମୋ ନିକଟକୁ ଆସି ଦେଖ, ସର୍ବଗ୍ରାସୀ ଅଗ୍ନି କିପରି ଜଳ ଭଳି ସୁଶୀତଳ ହୋଇଯାଇଛି ।''—

ରାମନାମ ଜପତାଂ କୁତୋ ଭୟଂ
ସର୍ବତାପ ଶମନୈକ ଭେଷଜମ୍ ।
ପଶ୍ୟ ତାତ ମମ ଗାତ୍ର ସନ୍ନିଧୌ
ପାବକୋଽପି ଶଲିଳାୟତେଽଧୁନା ॥

ତା'ପରେ ହିରଣ୍ୟକଶିପୁର ଆଦେଶରେ ପ୍ରହ୍ଲାଦଙ୍କୁ ସମୁଦ୍ରରେ ବୁଡ଼ାଇ ତା' ଉପରେ ବଡ଼ ବଡ଼ କାଠଗଡ଼ ଓ ପଥର ପାହାଡ଼ ପରି ଲଦି ଦିଆଗଲା, ଅଥଚ ଭଗବାନ ତାଙ୍କୁ କୂଳକୁ ନେଇ ଆସିଲେ ଏବଂ ଦର୍ଶନ ଦେଇ କୃତାର୍ଥ କଲେ । ସେ ତ ସର୍ବତ୍ର, ସବୁ ବସ୍ତୁ, ପ୍ରାଣୀ ଓ ପଦାର୍ଥରେ, ସକଳ ଅସ୍ତ୍ରଶସ୍ତ୍ରରେ ପ୍ରଭୁଙ୍କୁ ଦର୍ଶନ କରୁଥିଲେ; ତାଙ୍କୁ ପୁଣି କିଏ ମାରିବ ଓ କେଉଁଥିରେ ମାରିବ? ଶେଷରେ ହିରଣ୍ୟକଶିପୁ ଚିନ୍ତିତ ହୋଇପଡ଼ିଲା ।

କିମ୍ବଦନ୍ତୀ ଅଛି ଯେ, ହିରଣ୍ୟକଶିପୁ ସବୁ ଉପାୟରେ ହାରିଯାଇ ପ୍ରହ୍ଲାଦଙ୍କୁ ଅନ୍ଧାର କୋଠରୀରେ ବନ୍ଦୀ କରି ରଖିଲା ଏବଂ ଖାଇବା-ପିଇବାକୁ କିଛି ଦେଲା ନାହିଁ । ତେଣେ ବୈକୁଣ୍ଠରେ ମାତା ଲକ୍ଷ୍ମୀ ଯେତେବେଳେ ଭଗବାନଙ୍କ ପାଇଁ ଭୋଜନ ପରଷିଲେ, ଭଗବାନ କହିଲେ—"ମୋ ଭକ୍ତ ଭୋକ-ଉପାସରେ ପଡ଼ି ରହିଛି, ମୁଁ କେମିତି ଖାଇବି?" ଏହା କହୁ କହୁ ଭଗବାନଙ୍କ ନେତ୍ର ଅଶ୍ରୁଛଳଛଳ ହୋଇଗଲା । ସେ ତାଙ୍କ ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀଙ୍କୁ ସଙ୍ଗରେ ଧରି ସେହି ବନ୍ଦୀଗୃହକୁ ଆସିଲେ । ପ୍ରହ୍ଲାଦ ଧ୍ୟାନରେ ମଗ୍ନ ଥାଆନ୍ତି । ପ୍ରଭୁ ସ୍ୱୟଂ ତାଙ୍କୁ ପ୍ରକୃତିସ୍ଥ କରାଇଲେ ଏବଂ କୋଳରେ ବସାଇ ନିଜ ହାତରେ ଖୁଆଇଦେଲେ । ହିରଣ୍ୟକଶିପୁର ଦଣ୍ଡ ତାଙ୍କ ପାଇଁ ବରଦାନରେ ପରିଣତ ହୋଇଗଲା, ଯାହାଫଳରେ ସେ ଲକ୍ଷ୍ମୀନାରାୟଣଙ୍କର ଦର୍ଶନ ପାଇଲେ ।

ଶେଷରେ ଗୁରୁ ଶଣ୍ଡ ଓ ଅମର୍କ ନିଜ ଆସୁରୀ ବିଦ୍ୟା ବଳରେ କୃତ୍ୟା ଉତ୍ପନ୍ନ କଲେ । ମାତ୍ର ଭଗବାନ ଯାହାକୁ ରକ୍ଷା କରିବେ, କୃତ୍ୟା ତାହାର କ'ଣ କରି ପାରିବ? କୃତ୍ୟା ପ୍ରହ୍ଲାଦଙ୍କର ଦୁର୍ଦ୍ଧର୍ଷ ବୈଷ୍ଣବ ତେଜ ଆଗରେ ପରାଭୂତ ହୋଇ ଫେରିଯାଇ ତାହାର ପ୍ରୟୋଗକାରୀ ଶଣ୍ଡ ଓ ଅମର୍କଙ୍କୁ ହିଁ ମାରି ପକାଇଲା । ସର୍ବଭୂତସୁହୃଦ ପ୍ରହ୍ଲାଦ ନିଜର ଗୁରୁଜନଙ୍କ ଅମଙ୍ଗଳ ଦେଖି କିପରି ବା ସହି ପାରନ୍ତେ । ଅନିଷ୍ଟକାରୀଙ୍କର ମଧ୍ୟ ମଙ୍ଗଳ କରିବା ଭକ୍ତର ଗୁଣ । ସେ ସେମାନଙ୍କୁ ଜୀବିତ କରିଦେବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରି କହିଲେ—"ହେ ପ୍ରଭୁ! ଯଦି ମୁଁ ପ୍ରତ୍ୟେକ ପ୍ରାଣୀଠାରେ ତୁମକୁ ଦର୍ଶନ କରୁଥାଏ, ତେବେ ଏହି ସତ୍ୟ ପ୍ରଭାବରୁ

ଏ ପୁରୋହିତମାନେ ଜୀବିତ ହୋଇଯାଆନ୍ତୁ।''

ପ୍ରହ୍ଲାଦଙ୍କୁ ଯେଉଁ ଗୁରୁ ନାନା ପ୍ରକାର ଦଣ୍ଡ ଦେଇଥିଲେ, ଭକ୍ତ ପ୍ରହ୍ଲାଦ ତାଙ୍କର ପ୍ରାଣ ରକ୍ଷା ପାଇଁ ଭଗବାନଙ୍କୁ ପ୍ରାର୍ଥନା କଲେ! ଆହା! କେତେ କ୍ଷମାପୂର୍ଣ୍ଣ ହୃଦୟ ତାଙ୍କର। ସେ ଭଗବାନଙ୍କୁ ପ୍ରାର୍ଥନା କରି ପୁରୋହିତଙ୍କୁ ସ୍ପର୍ଶ କରିଦେବା ମାତ୍ରେ ଦୁହେଁ ଜୀବିତ ହୋଇଗଲେ। ସେମାନେ ପ୍ରହ୍ଲାଦଙ୍କୁ ଆଶୀର୍ବାଦ ଦେଇ କହିଲେ—

**ଦୀର୍ଘାୟୁରପ୍ରତିହତୋ ବଳବୀର୍ଯ୍ୟ ସମନ୍ୱିତଃ।**
**ପୁତ୍ର ପୌତ୍ରଧନୈଶ୍ୱର୍ଯ୍ୟୈର୍ଯୁକ୍ତୋ ବତ୍ସ ଭବୋତ୍ତମଃ॥** (ବିଷ୍ଣୁ ପୁରାଣ)

''ହେ ବତ୍ସ! ତୁମେ ପରମ ମହାନ୍! ତୁମେ ଦୀର୍ଘାୟୁ ହୁଅ। ତୁମକୁ ବଳବୀର୍ଯ୍ୟ, ପୁତ୍ରପୌତ୍ରାଦି ଏବଂ ଧନ-ଐଶ୍ୱର୍ଯ୍ୟ ପ୍ରାପ୍ତ ହେଉ।''

ପୁରୋହିତ ପ୍ରହ୍ଲାଦଙ୍କ ଉପରେ ପ୍ରସନ୍ନ ତ ହୋଇଗଲେ; ହେଲେ ଦୈତ୍ୟରାଜର କଠୋର ଶାସନ ଆଗରେ ସେମାନେ ନିରୁପାୟ ଥିଲେ। ଭକ୍ତ ପ୍ରହ୍ଲାଦଙ୍କୁ କୌଣସି ପ୍ରକାରେ ମାରି ନ ହେବାରୁ ହିରଣ୍ୟକଶିପୁ ଘୋର ଚିନ୍ତାରେ ପଡ଼ିଗଲା। ଗୁରୁ ପୁତ୍ର ଶଣ୍ଡ ଓ ଅମର୍କ ଶେଷରେ ପରାମର୍ଶ ଦେଲେ ଯେ, ''ଆମ ପିତା ଫେରିବା ପର୍ଯ୍ୟନ୍ତ ଏହାକୁ ଅଦୃଶ୍ୟରୂପେ ବରୁଣ ପାଶରେ ବାନ୍ଧି ରଖି ଶିକ୍ଷା ଦେବା ଉଚିତ। ଏବେ ପିଲାଳିଆ ବୁଦ୍ଧି। ହୁଏତ ବଡ଼ ହେଲେ ବୁଦ୍ଧି ବଦଳିଯିବ।'' ହିରଣ୍ୟକଶିପୁ ଅନୁମତି ଦେଇଦେଲା। ଗୁରୁକୁଳକୁ ଯାଇ ପ୍ରହ୍ଲାଦ ଗୁରୁଙ୍କ ଆଦେଶରେ ପାଠ ପଢ଼ିଲେ। ଥରେ ଗୁରୁମାନେ ନିଜ କାର୍ଯ୍ୟରେ କେଉଁଠିକୁ ଯାଇଥାନ୍ତି। ପ୍ରହ୍ଲାଦ ଏହି ସୁଯୋଗରେ ସହପାଠୀ ଦୈତ୍ୟବାଳକମାନଙ୍କୁ ଡାକି ସେମାନଙ୍କୁ ସେମାନଙ୍କ ଜୀବନର ପ୍ରକୃତ ଉଦ୍ଦେଶ୍ୟ, ଜନ୍ମ ଓ କର୍ମର ରହସ୍ୟ ପ୍ରଭୃତି ପାରମାର୍ଥିକ ଉପଦେଶ ଦେଇ କହିଲେ—

**ଶୁଣ ବାଳକେ ମୋ ବଚନ। ସଂସାରେ ଯେବା ବୁଧଜନ॥**
**କୁମାର କାଳୁ ଭକ୍ତିଭରେ। ଶରୀର ଅନିତ୍ୟ ବିଗ୍ରହେ॥**
**ମନୁଷ୍ୟଶରୀର ଦୁର୍ଲ୍ଲଭ। ଏଣୁ ଗୋବିନ୍ଦେ କର ଭାବ॥**

* * *

**ମରଣ ନିତ୍ୟେ ସନ୍ନିହିତ। ତା ମୁଖେ ନ ପଡ଼ ଯନ୍ତ୍ରିତ॥**
**ଯାବତ ସୁସ୍ଥ ଏ ଶରୀର। ବୃଦ୍ଧ ଅବସ୍ଥା ଅଛି ଦୂର॥**
**ଯାବତ ଏ ଦୁର୍ଲ୍ଲଭ ଦେହେ। ଇନ୍ଦ୍ରିୟ ଶକ୍ତି ନଷ୍ଟ ନୋହେ॥**

ଯାବତ ଜୀବନ ଏ ଦେହେ । କାଳର ବଳେ କ୍ଷୟ ନୋହେ ॥
ତାବତ ଆତ୍ମା ନିସ୍ତାରଣେ । ଯତ୍ନ କରିବ ଅନୁକ୍ଷଣେ ॥
ତେବେ ଆତ୍ମାର ହିତ କରେ । ଦୁର୍ଲଭ ମାନବଶରୀରେ ॥
ଏ ଜ୍ଞାନ ନ ବୁଝି ଯେ ହେଲେ । ବୋଲେ ସାଧିବି ବୃଦ୍ଧକାଳେ ॥
ଗୃହେ ଲାଗିଲେ ଅଗ୍ନି ଯେହ୍ନେ । ଉଦ୍ୟମ କୂପର ଖନନେ ॥

ପ୍ରହ୍ଲାଦ ରାଜପୁତ୍ର ହୋଇଥିବାରୁ ଏବଂ ତାଙ୍କ ପ୍ରଭାବରେ ପିଲାମାନେ ପ୍ରଭାବିତ ଥିବାରୁ ସେମାନେ ତାଙ୍କ କଥାକୁ ମାନି ମନଦେଇ ସବୁ କଥା ଶୁଣୁଥିଲେ । ସୁକୋମଳମତି ପିଲାମାନଙ୍କର ହୃଦୟରେ ସାଂସାରିକ ବିଷୟ ବାସନା ଏବେ ପ୍ରବେଶ କରି ନ ଥିଲା । ତେଣୁ ସେମାନଙ୍କ ସ୍ୱଚ୍ଛ ନିର୍ମଳ ହୃଦୟରେ ପ୍ରହ୍ଲାଦଙ୍କ କଥା ଅଲିଭା ଦାଗ ପରି ଆଙ୍କି ହୋଇଯାଉଥିଲା । ପ୍ରହ୍ଲାଦଙ୍କ ପରାମର୍ଶରେ ନଗରସାରା ସେମାନେ ହରିକୀର୍ତ୍ତନ କରିବାକୁ ଲାଗିଲେ । ଗୁରୁମାନେ ଦେଖିଲେ ପ୍ରହ୍ଲାଦ ଯୋଗୁଁ ଗୁରୁକୁଳର ସବୁ ପିଲା ହରିକୀର୍ତ୍ତନ କଲେଣି । ସେମାନେ ହିରଣ୍ୟକଶିପୁକୁ ଏ ଖବର ଜଣାଇଲେ । ଦୈତ୍ୟରାଜ କ୍ରୋଧରେ ଅଗ୍ନିଶର୍ମା ହୋଇଗଲା । ସେ ଏଥର ନିଜ ହାତରେ ପ୍ରହ୍ଲାଦଙ୍କୁ ମାରିବାକୁ ସ୍ଥିର କରିନେଲା । ସେ ପ୍ରହ୍ଲାଦଙ୍କୁ ଧମକାଇ କହିଲା—"ତୁ କାହା ବଳରେ ମୋ ଆଜ୍ଞାର ବିରୁଦ୍ଧାଚରଣ କରୁଛୁ?"

ପ୍ରହ୍ଲାଦ କହିଲେ—"ଯାହାର ବଳରେ ସମଗ୍ର ସଂସାର ପରିଚାଳିତ, ଯେ ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜ ଅଧୀନରେ ରଖିଛନ୍ତି, ସେହି ସର୍ବଶକ୍ତିମାନ୍ ପ୍ରଭୁ ହେଉଛନ୍ତି ମୋର ବଳ । କେବଳ ମୋର ନୁହେଁ, ଆପଣଙ୍କର ବଳ ମଧ୍ୟ ସେହି ଅଟନ୍ତି । ଏ ବିଶ୍ୱର ସୃଜନ, ପାଳନ ଓ ସଂହାରକାରୀ ସେହି ପରମାତ୍ମା ହିଁ ସମସ୍ତଙ୍କର ମନୋବଳ, ଇନ୍ଦ୍ରିୟବଳ ଓ ଶାରୀରିକ ବଳ ରୂପେ ବିଦ୍ୟମାନ । ତେଣୁ ଆପଣ ଏ ଅସୁର ସ୍ୱଭାବ ଛାଡ଼ି ଦେଇ ତାଙ୍କରି ଭଜନ କରନ୍ତୁ । ଯେଉଁ ଲୋକ ତା'ର ଷଡ଼ଇନ୍ଦ୍ରିୟରୂପୀ ଡକାୟତମାନଙ୍କୁ ଜୟ ନ କରି ସାରା ସଂସାରକୁ ଜୟ କରିଛି ବୋଲି ଭାବୁଛି, ସେ ହେଉଛି ମହା ମୂର୍ଖ । ତେଣୁ ନିଜ ଇନ୍ଦ୍ରିୟମାନଙ୍କୁ ଓ କାମକ୍ରୋଧାଦିଙ୍କୁ ପ୍ରଥମେ ବଶ କରି ସମସ୍ତଙ୍କ ପ୍ରତି ସମଭାବ କରନ୍ତୁ; ଦେଖିବେ, ଆପଣଙ୍କର ଆଉ କେହି ବି ଶତ୍ରୁ ରହିବେ ନାହିଁ ।"

ହିରଣ୍ୟକଶିପୁର କ୍ରୋଧ ଚରମ ସୀମାରେ ପହଞ୍ଚିଗଲା । ସେ ଲାଲ ଲାଲ ଆଖି କରି ଖଡ୍‌ଗ ବାହାର କରି କହିଲା—"ରେ ମୂର୍ଖ! ଏଥର ତୋର କାଳ ପୂରିଗଲା । ତୁ ଯେଉଁ ହରିକୁ ଭଜୁଛୁ, ସେ କିପରି ତୋତେ ରକ୍ଷା କରିବ ମୁଁ ଆଜି

ଦେଖିବି । କେଉଁଠି ଅଛି ସେ?'' ପ୍ରହ୍ଲାଦ କହିଲେ—''ମୁଁ ଆପଣଙ୍କୁ ପଗ୍ଚରୁଛି, ସେ କେଉଁଠି ନାହାନ୍ତି?''

''ସବୁଠାରେ ଅଛି?''

—''ହଁ, ଆପଣଙ୍କଠାରେ ବି ଅଛନ୍ତି, ମୋଠାରେ ବି ଅଛନ୍ତି, ଆପଣଙ୍କ ଖଡ୍‌ଗରେ ବି ଅଛନ୍ତି । ସେ ତ ସବୁଠାରେ ବିଦ୍ୟମାନ ।''

—''ଆଚ୍ଛା! ଏ ସ୍ତମ୍ଭରେ ମଧ୍ୟ ଅଛି?''

—''ନିଶ୍ଚୟ ।''

—''ଠିକ୍ ଅଛି । ତୋର ରକ୍ଷକକୁ ପ୍ରଥମେ ମୁଁ ସଫା କରିଦେଉଛି । ତା'ପରେ ତୋର ଖବର ନେବି ।''

ଏତିକି କହି ଦୁଷ୍ଟ ଦୈତ୍ୟ ସ୍ତମ୍ଭକୁ ଖୁବ୍ ଜୋର୍‌ରେ ଗୋଟାଏ ମୁଥ ମାରିଦେଲା । ତା'ର ମୁଷ୍ଟିପ୍ରହାର ମାତ୍ରକେ ସ୍ତମ୍ଭ ମଧ୍ୟରୁ ଏକ ଭୟଙ୍କର ଶବ୍ଦ ଶୁଣାଗଲା । ସତେ ଯେପରି ବ୍ରହ୍ମାଣ୍ଡଟା ଫାଟିଗଲା କି?

ସେତିକିବେଳେ ଭକ୍ତ ପ୍ରହ୍ଲାଦଙ୍କର ଓ ବ୍ରହ୍ମାଙ୍କର ବାଣୀକୁ ସତ୍ୟ ପ୍ରତିପାଦିତ କରିବା ନିମନ୍ତେ ତଥା ସମସ୍ତ ପଦାର୍ଥରେ ନିଜର ବ୍ୟାପକତା ପ୍ରମାଣିତ କରିବା ନିମନ୍ତେ ଭଗବାନ ଏକ ବିଚିତ୍ର ରୂପ ଧରି ସ୍ତମ୍ଭ ମଧ୍ୟରୁ ପ୍ରକଟ ହୋଇଗଲେ । ସେହି ରୂପ ପୂର୍ଣ୍ଣତଃ ମନୁଷ୍ୟର ରୂପ ନ ଥିଲା କି ପୂର୍ଣ୍ଣତଃ ସିଂହର ରୂପ ନ ଥିଲା । ସେହି ଭୟଙ୍କର ବିଶାଳ ଉଗ୍ର ରୂପକୁ ତାଙ୍କର ତପ୍ତକାଞ୍ଚନ ପରି ଦେଦୀପ୍ୟମାନ ଚକ୍ଷୁ, ତୀକ୍ଷ୍ଣ ଦନ୍ତ, କୁଟିଳ ଭ୍ରୂଲତା, ଲହ ଲହ ଜିହ୍ୱା, ପର୍ବତ ଗୁମ୍ଫାପରି ବିସ୍ତାରିତ ବଦନ ଓ ତୀକ୍ଷ୍ଣ ଅସ୍ତ୍ର ପରି ନଖ ସବୁ ଆହୁରି ଅଧିକ ଭୟଙ୍କର କରି ଦେଉଥାଏ । ଏଭଳି ଅଦ୍ଭୁତ ନୃସିଂହ ରୂପ ଧାରଣ କରି ଭଗବାନ ଦୈତ୍ୟରାଜକୁ ଧରିବାକୁ ଗୋଡ଼ାଇଗଲେ । ହିରଣ୍ୟକଶିପୁ ମଧ୍ୟ ଗଦାଟିଏ ଧରି ତାଙ୍କୁ ଆକ୍ରମଣ କରିବାକୁ ଝପଟି ପଡ଼ିଲା; କିନ୍ତୁ ଗରୁଡ଼ ସାପକୁ ଧରି ପକାଇବା ପରି ଭଗବାନ ତାକୁ ଧରି ପକାଇଲେ । ହିରଣ୍ୟକଶିପୁ ନିରୁପାୟ ହୋଇଗଲା; ତଥାପି ବହୁ ଚେଷ୍ଟା କରି ସେ ତାଙ୍କ ହାତରୁ ଖସି ପଳାଇଲା । ଏଥର ସେ ଢାଲ-ତରବାରି ଧରି ନାନା ପ୍ରକାରେ ପଇଁତରା ବଦଳାଇ ଯୁଦ୍ଧ କରିବାକୁ ଚେଷ୍ଟା କଲା । କିନ୍ତୁ ଭଗବାନଙ୍କ ଭୟଙ୍କର ଅଟ୍ଟହାସରେ ତା'ର ଆଖି ବୁଜି ହୋଇଗଲା । ଭଗବାନ ପୁଣିଥରେ ତାକୁ ଖପ୍ କରି ଧରି ପକାଇଲେ । ସେ ତାକୁ ଟେକି ନେଇଯାଇ ରାଜସଭାର ଦ୍ୱାରଦେଶରେ ନିଜ ଜଂଘ ଉପରେ ଚିତ୍ କରି ପକାଇ ତା'ର ବକ୍ଷକୁ ତୀକ୍ଷ୍ଣ

ନଖରେ ଫାଡ଼ିଦେଲେ ଏବଂ ତା'ର ଅନ୍ତନାଡ଼ୀକୁ ହାର ପରି ବେକରେ ପକାଇ ମୃତ ଦେହଟାକୁ ତଳକୁ ଗଡ଼ାଇଦେଲେ।

ଦୈତ୍ୟରାଜ ହିରଣ୍ୟକଶିପୁ ନିଜ ବୁଦ୍ଧି ଅନୁସାରେ ଏକପ୍ରକାରେ ଅମର ବର ମାଗିଥିଲା ବୋଲି କହିଲେ ଚଳେ, କିନ୍ତୁ ସର୍ବସମର୍ଥ ଓ ଅମୋଘଲୀଳ ଭଗବାନଙ୍କର ଅଦ୍ଭୁତ ସାମର୍ଥ୍ୟ ଆଗରେ କ'ଣ ବା ଅସମ୍ଭବ? ସେ ତା'ର ସମସ୍ତ ସର୍ତ୍ତକୁ ରକ୍ଷା କରି ମଧ୍ୟ ତାକୁ ମୃତ୍ୟୁମୁଖକୁ ଠେଲିଦେଲେ। ସେତେବେଳେ ପ୍ରଭୁଙ୍କର କ୍ରୋଧପୂର୍ଣ୍ଣ ବିକଟାଳ ନୟନକୁ ଚାହିଁ ହେଉ ନ ଥାଏ। ଅସୁରର ରକ୍ତଛିଟା ପଡ଼ି ତାଙ୍କ ଗ୍ରୀବାଦେଶର ରୋମରାଜି ଲାଲ ହୋଇଯାଇଥାଏ। କରକମଳ ରକ୍ତରେ ଜୁଡୁବୁଡୁ ହୋଇଯାଇଥାଏ। ଗଳାରେ ଅନ୍ତନାଡ଼ୀର ମାଳା। ପୁଣି ସେ ବାରମ୍ବାର ଭୟଙ୍କର ଗର୍ଜନ କରୁଥାନ୍ତି। ସେ ଶୋଭା ପାଉଥାନ୍ତି ହାତୀକୁ ମାରି ତା'ର ଅନ୍ତପୁଟାକୁ ବେକରେ ପକାଇ ନିର୍ଭୟରେ ବୁଲୁଥିବା ମୃଗରାଜ ସିଂହ ପରି।

ସେତିକିବେଳେ ହଜାର ହଜାର ଦୈତ୍ୟ-ଦାନବ ତାଙ୍କୁ ଆକ୍ରମଣ କରିବାକୁ ଧାଇଁ ଆସିଲେ। ପ୍ରଭୁ ନୃସିଂହ ସମସ୍ତଙ୍କୁ ମାରି ଧରାଶାୟୀ କରିଦେଲେ। ଯେତେବେଳେ ଭଗବାନ ତାଙ୍କର ଗ୍ରୀବା ଦେଶର କେଶରକୁ ମଝିରେ ମଝିରେ ଝାଡ଼ି ଦେଇ ଚତୁର୍ଦ୍ଦିଗକୁ ଚାହୁଁଥାନ୍ତି, ସେତେବେଳେ ବାଦଲ ସବୁ ଛିନ୍ନଭିନ୍ନ ହୋଇଯାଉଥାନ୍ତି। ତାଙ୍କର ସିଂହନାଦରେ ଭୟଭୀତ ହୋଇ ଦିଗ୍‌ଗଜମାନେ ରଡ଼ି ଛାଡୁଥାନ୍ତି। ତାଙ୍କର ସେହି ଅତ୍ୟନ୍ତ ଉଗ୍ରରୂପକୁ ଚାହିଁ ହେଉ ନ ଥାଏ। ସେ ଯାଇ ହିରଣ୍ୟକଶିପୁର ସିଂହାସନ ଉପରେ ବସି ପଡ଼ିଲେ। ସତେ ଯେପରି ପରମ ପବିତ୍ର ପ୍ରଭୁ ନିଜେ ତାହାକୁ ଉପଯୋଗ କରି ଭକ୍ତ ପ୍ରହ୍ଲାଦଙ୍କ ପାଇଁ ପବିତ୍ର କରିଦେଲେ। ମହା ଦୈତ୍ୟର ଅତ୍ୟାଚାରରୁ ମୁକ୍ତି ପାଇ ବ୍ରହ୍ମା, ଶିବ, ଇନ୍ଦ୍ରାଦି ଦେବଗଣ, ଋଷି, ପିତୃଗଣ, ନାଗ, ମନୁ ଆଦି ପ୍ରଜାପତି, ଗନ୍ଧର୍ବ ପ୍ରଭୃତି ପୃଥକ୍ ପୃଥକ୍ ଭାବେ ଆସି ପ୍ରଭୁଙ୍କୁ ସ୍ତୁତି କଲେ। କିନ୍ତୁ ପ୍ରଭୁଙ୍କର କ୍ରୋଧିତ ମୂର୍ତ୍ତି ଦେଖି କେହି ତାଙ୍କ ସମ୍ମୁଖରେ ଅଧିକ ସମୟ ତିଷ୍ଠି ରହିପାରୁ ନ ଥାନ୍ତି। ଭଗବାନଙ୍କର ଅର୍ଦ୍ଧାଙ୍ଗିନୀ ସ୍ୱୟଂ ଲକ୍ଷ୍ମୀ ମଧ୍ୟ ସେହି ରୂପକୁ ଦେଖି ଭୟରେ ଥରିଲେ। ଶେଷରେ ପ୍ରଜାପତି ବ୍ରହ୍ମା ପ୍ରହ୍ଲାଦଙ୍କୁ କହିଲେ—"ବତ୍ସ ପ୍ରହ୍ଲାଦ! ତୁମରି ଲାଗି ଆଜି ଭଗବାନ ଏ ଅତ୍ୟୁଗ୍ର ଓ ଅଦ୍ଭୁତ ରୂପ ଧାରଣ କରିଛନ୍ତି। ତେଣୁ ତୁମେ ହିଁ ତାଙ୍କୁ ଶାନ୍ତ କରିପାରିବ। ତୁମେ ତାଙ୍କ ନିକଟକୁ ଗଲେ ହିଁ ତାଙ୍କ କ୍ରୋଧ ଶାନ୍ତ ହେବ।"

ଭକ୍ତ ପ୍ରହ୍ଲାଦ ବ୍ରହ୍ମାଙ୍କର ଆଜ୍ଞା ଶିରୋଧାର୍ଯ୍ୟ କଲେ। ସମସ୍ତ ପ୍ରାଣୀଙ୍କୁ ଭୟଭୀତ

କରୁଥିବା ସିଂହିନୀ ପାଖକୁ ତା'ର ଛୁଆ ଯିବାକୁ ଯେପରି ତିଳେମାତ୍ର ଭୟ କରେ ନାହିଁ, ଭକ୍ତ ପ୍ରହ୍ଲାଦ ସେହିପରି ନିର୍ଭୟରେ ଯାଇ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ। ସୁକୋମଳ ଶିଶୁଟି ପାଦତଳେ ଲୋଟିଥିବାର ଦେଖି ପ୍ରଭୁଙ୍କର ହୃଦୟ ବାତ୍ସଲ୍ୟ ସ୍ନେହରେ ପରିପୂରିତ ହୋଇ ଉଠିଲା। ତାଙ୍କ କ୍ରୋଧ ଶାନ୍ତ ହୋଇଗଲା। ଭଗବାନ୍ ତତ୍‌କ୍ଷଣାତ୍ ତାଙ୍କୁ ତଳୁ ଉଠାଇ ନିଜ କୋଳରେ ବସାଇ ତାଙ୍କ ମସ୍ତକକୁ ନିଜର ଅଭୟ କରକମଳରେ ଆଉଁସି ଦେଲେ। ପ୍ରଭୁଙ୍କ କରକମଳ ସ୍ପର୍ଶରେ ପ୍ରହ୍ଲାଦଙ୍କର ସର୍ବାଙ୍ଗ ପୁଲକିତ ହୋଇ ଉଠିଲା, ନେତ୍ର ସଜଳ ହୋଇଗଲା। ଏତେ ସୁକୋମଳ ନିର୍ଦ୍ଦୋଷ ବାଳକ ପ୍ରତି ଦାରୁଣ ଦୈତ୍ୟର କଠୋର ଅତ୍ୟାଗ୍ରହ କଥା ମନେ ପକାଇ ପ୍ରଭୁଙ୍କ ହୃଦୟ ଦୟାରେ ତରଳି ଗଲା। ତାଙ୍କ ଆସିବାରେ ବିଳମ୍ବ ହୋଇଥିବା ହେତୁ ପ୍ରଭୁ ପ୍ରହ୍ଲାଦଙ୍କୁ କ୍ଷମା ମାଗିଲେ। ଏହା ଚିତ୍ରଣ କରି ଜଣେ ଭକ୍ତ ଲେଖିଛନ୍ତି—

**କ୍ୱେଦଂ ବପୁଃ କ୍ୱ ଚ ବୟଃ ସୁକୁମାରମେତତ୍**
**କ୍ୱୈତାଃ ପ୍ରମତ୍ତକୃତଦାରୁଣ ଯାତନାସ୍ତେ।**
**ଆଲୋଚିତଂ ବିଷୟମେତଦଭୂତପୂର୍ବଂ**
**କ୍ଷନ୍ତବ୍ୟମଙ୍ଗ ଯଦି ମେ ସମୟେ ବିଳମ୍ବଃ॥**

"ବତ୍ସ ପ୍ରହ୍ଲାଦ! ତୋର ଏ ସୁକୋମଳ ଦେହ ଓ ସୁକୁମାର ବୟସ କେଉଁଠି ଏବଂ ଏ ଦୁର୍ଦ୍ଦାନ୍ତ ଦୈତ୍ୟ ଦ୍ୱାରା ତୋତେ ଦିଆଯାଇଥିବା କଠୋର ଯାତନା କେଉଁଠି! ଭାବିଲେ ଏହା ଅତ୍ୟନ୍ତ ଅଭୂତପୂର୍ବ ପରି ଲାଗୁଛି। ମୋ ଧନଟା ପରା! ମୋ ଆସିବାରେ ଯଦି ବିଳମ୍ବ ହୋଇଯାଇଥାଏ, ତେବେ ମୋତେ କ୍ଷମା କରିଦେ।"

ପ୍ରହ୍ଲାଦ କୃତକୃତ୍ୟ ହୋଇଗଲେ। ସେ ଗଦ୍‌ଗଦ୍ କଣ୍ଠରେ ଭଗବାନଙ୍କୁ ସ୍ତୁତି କରି କହିଲେ—"ପ୍ରଭୁ! ସତ୍ତ୍ୱଗୁଣରେ ପ୍ରତିଷ୍ଠିତ ବ୍ରହ୍ମାଦି ଦେବଗଣ, ମୁନିଋଷି ଓ ସିଦ୍ଧ ପୁରୁଷ ଯେଉଁଠି ଏତେ ସ୍ତୁତି ବଳରେ ମଧ୍ୟ ତୁମକୁ ପ୍ରସନ୍ନ କରି ପାରିଲେ ନାହିଁ, ସେଠାରେ ମୋ ଭଳି ଅସୁରକୁଳରେ ଜନ୍ମ ସାଧାରଣ ଶିଶୁ କଥା କିଏ ପଚାରେ? ତଥାପି ହେ ଦୟାମୟ! ମୋର ବିଶ୍ୱାସ ଅଛି ଯେ ମୁଁ ତୁମକୁ ସନ୍ତୁଷ୍ଟ କରି ପାରିବି; କାରଣ ତୁମେ କୌଣସି ବିଶେଷ ଗୁଣ ବଳରେ ସନ୍ତୁଷ୍ଟ ହୁଅ ନାହିଁ। ତୁମେ ସନ୍ତୁଷ୍ଟ ହୋଇଯାଅ କେବଳ ଅନାବିଳ ଭକ୍ତିରେ। ହେ ପ୍ରଭୁ! ଜଣେ ବ୍ରାହ୍ମଣ ଦ୍ୱାଦଶ ଗୁଣସମ୍ପନ୍ନ ହୋଇ ମଧ୍ୟ ଯଦି ଭକ୍ତିବିହୀନ ହୋଇଥାଏ, ତେବେ ତା'ଠାରୁ ମୁଁ ବରଂ ସେହି ଚଣ୍ଡାଳକୁ ଶ୍ରେଷ୍ଠ ମନେକରେ, ଯାହାର ଜିହ୍ୱାଗ୍ରରେ ତୁମର ପବିତ୍ର ନାମ ବିରାଜମାନ। ବ୍ରାହ୍ମଣ ନିଜେ ଜାତିର ଅଭିମାନରେ ବୁଡ଼ିଯିବ, କିନ୍ତୁ ତୁମ ନାମକୁ

ନାବ କରି ସେହି ଚଣ୍ଡାଳ ନିଜ କୁଳ ସମେତ ଏ ଜଗତକୁ ପାବନ କରିଦେବ। ହେ ପ୍ରଭୁ! ମୁଁ ତୁମ ଉଗ୍ରରୂପ ଦେଖି ଭୟଭୀତ ନୁହେଁ, ମୁଁ କେବଳ ଭୟ କରୁଛି ଏ ଭୟାନକ ସଂସାରଚକ୍ରକୁ। ମୋର ସେଭଳି ପରମ ସୌଭାଗ୍ୟ କେବେ ଉଦୟ ହେବ, ଯେତେବେଳେ ତୁମେ ମୋତେ ତୁମ ଅଭୟ ପାଦପଦ୍ମରେ ସ୍ଥାନ ଦେବ? ହେ ଅନନ୍ତ! ଯେଉଁ ଯେଉଁ ଯୋନିରେ ମୁଁ ଘୂରି ବୁଲିଲି, ସେଠାରେ କେବଳ ଦୁଃଖ ବ୍ୟତୀତ ମୋତେ କିଛି ମିଳିଲା ନାହିଁ। ତୁମ ଚରଣକମଳ ହିଁ ଏକମାତ୍ର ସୁଖର ନିବାସ ସ୍ଥାନ। ହେ ଦୀନବନ୍ଧୁ! ମୁଁ ଆଚମ୍ବିତ ହେଉଛି ଯେ ଅସୁରକୁଳରେ ଜନ୍ମ ପାଇଥିବା ମୋ ଭଳି ଦୁରାତ୍ମା ଉପରେ ତୁମର ଏତେ କୃପା କେଉଁ କାରଣରୁ ହେଲା! ବ୍ରହ୍ମା, ଶିବ ଓ ଲକ୍ଷ୍ମୀ ମଧ୍ୟ ଯେଉଁ ଅଭୟ କରକମଳର ସ୍ପର୍ଶ ପାଇ ପାରନ୍ତି ନାହିଁ, ତାହା ଆଜି ମୋ ମସ୍ତକ ଉପରେ ରଖିଦେଲ! ପ୍ରଭୁ! ନିଶ୍ଚୟ ତୁମେ ମେଘ ଭଳି ସମସ୍ତଙ୍କ ଉପରେ କୃପା ବୃଷ୍ଟି କରିଥାଅ। ତୁମର ଭେଦଭାବ ନାହିଁ। କିନ୍ତୁ ପ୍ରଭୁ! କାମବାସନାରେ କଳୁଷିତ ମୋର ଦୁଷ୍ଟ ମନ ହର୍ଷଶୋକରେ ନିରନ୍ତର ଅସ୍ଥିର ରହୁଛି। ତେଣୁ ତାକୁ ତୁମ ଲୀଳାକଥାରୁ ଆନନ୍ଦ ମିଳିପାରୁ ନାହିଁ। ପୁଣି ମୁଁ କିପରି ତୁମର ରୂପ ଚିନ୍ତନ କରିବି? ହେ ନାଥ! ମୋର ସ୍ଥିତି ଅତି ଦୟନୀୟ। ଜଣେ ବହୁପତ୍ନୀକ ପୁରୁଷକୁ ତା'ର ସ୍ତ୍ରୀମାନେ ଯେପରି ନିଜ ନିଜର ଶୟନ କକ୍ଷକୁ ଟାଣିନେବାକୁ ଚେଷ୍ଟା କରନ୍ତି, ମୋର ଜିହ୍ୱା, ନେତ୍ର, କର୍ଣ୍ଣ, ଶିଶ୍ନ, ଉଦର ପ୍ରଭୃତି ଇନ୍ଦ୍ରିୟମାନେ ମୋତେ ସେହିଭଳି ନିଜ ନିଜ ବିଷୟ ପ୍ରତି ଟାଣି ନିଅନ୍ତି। ପ୍ରଭୁ! ତୁମ ବିନା ମୋତେ ଏ ଦୁଃଖରୁ କିଏ ବା ରକ୍ଷା କରିବ? ମୋ ଭଳି ନିରାଶ୍ରୟ ନଗଣ୍ୟ ସେବକକୁ ଆପଣା ଚରଣରେ ଆଶ୍ରୟ ଦାନ କରି କୃତାର୍ଥ କର ପ୍ରଭୁ!"

ଭଗବାନ ପ୍ରହ୍ଲାଦଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ବର ମାଗିବାକୁ କହିଲେ। କିନ୍ତୁ ପ୍ରହ୍ଲାଦ ଏତେ ନିଷ୍କାମ ଭକ୍ତ ଥିଲେ ଯେ ତାଙ୍କୁ ବରଦାନ ମାୟାର ଜାଲ ପରି ବୋଧ ହେଲା। ସେ ବୟସରେ ଛୋଟ ହୋଇଥିଲେ ମଧ୍ୟ ବରଦାନକୁ ପ୍ରେମଭକ୍ତି ମାର୍ଗରେ ବିଘ୍ନ ବୋଲି ହୃଦୟଙ୍ଗମ କରି ପାରିଥିଲେ। ତେଣୁ ସେ ମୃଦୁ ମୃଦୁ ହସି କହିଲେ—"ପ୍ରଭୁ! ସହଜେ ମୁଁ ହେଉଛି ବିଷୟ ଭୋଗରେ ଆସକ୍ତ; ପୁଣି ଅସୁରକୁଳରେ ମୋର ଜନ୍ମ। ତେଣୁ ମୋତେ ବରଦାନରେ ପ୍ରଲୁବ୍ଧ କରାଇ ଆଉ ବିଷୟ ଭୋଗରେ ଜଡ଼ିତ ନ କରାନ୍ତୁ। ଆପଣ ବୋଧହୁଏ ମୋତେ ପରୀକ୍ଷା କରିବା ପାଇଁ ଏଭଳି ମାଗିବାକୁ କହୁଛନ୍ତି। ପ୍ରଭୁ! ଏ ସଂସାରିକ ସୁଖ ଜୀବକୁ ଆହୁରି ଦୃଢ଼ ବନ୍ଧନରେ ପକାଇଦିଏ। ସେଥିରୁ ମୁକ୍ତି ପାଇବା ପାଇଁ ହିଁ ମୁଁ ଆପଣଙ୍କ

ଚରଣରେ ଶରଣ ନେଇଛି! ହେ ପରମ ଦୟାଳୁ! ଯେ ଆପଣଙ୍କ ଭକ୍ତ ହୋଇ ଆପଣଙ୍କ ଦ୍ୱାରା କାମନା ପୂରଣ କରାଇବାକୁ ଚାହେଁ, ସେ ଆପଣଙ୍କ ଭକ୍ତ ବା ସେବକ ନୁହେଁ, ସେ ହେଉଛି ନେଣଦେଣ କରୁଥିବା ଜଣେ ପକ୍କା ବେପାରୀ। ଏପରି କରୁଥିବା ଓ କରାଉଥିବା ସେବକ ଓ ସ୍ୱାମୀ ଉଭୟେ ଉତ୍ତମ ନୁହନ୍ତି। ମୋର ଓ ଆପଣଙ୍କ ମଧ୍ୟରେ ନିଷ୍କାମ ସମ୍ବନ୍ଧ ଥାଉ। ହେ ବରଦଶିରୋମଣି! ଯଦି ଆପଣ ବର ଦେବାକୁ ଚାହୁଁଛନ୍ତି, ତେବେ ଏତିକି ବର ଦିଅନ୍ତୁ ଯେ ମୋ ହୃଦୟରେ ଯେପରି କୌଣସି ପ୍ରକାର କାମନା ବୀଜ ଅଙ୍କୁରିତ ନ ହେଉ।''

ପ୍ରହ୍ଲାଦଙ୍କର ଅଦ୍ଭୁତ ନିଷ୍କାମତା ଓ ବିଶୁଦ୍ଧ ଭକ୍ତି ଦେଖି ଭଗବାନ ଅତ୍ୟନ୍ତ ପ୍ରସନ୍ନ ହେଲେ। ତଥାପି ସେ ତାଙ୍କର ପ୍ରାରବ୍ଧର କ୍ଷୟ ନିମନ୍ତେ ଏକ ମନ୍ୱନ୍ତର ପର୍ଯ୍ୟନ୍ତ ରାଜପଦ ଦେଲେ ଏବଂ କହିଲେ, ମୋର ପ୍ରସନ୍ନତା ପାଇଁ ଏହି ରାଜପଦ ଗ୍ରହଣ କର। ସୁଖଭୋଗ ଓ ନିଷ୍କାମ ପୁଣ୍ୟ କର୍ମ କରି ତୁମେ ପୁଣ୍ୟ ଓ ପାପକୁ ନଷ୍ଟ କରି ଅନ୍ତକାଳରେ ସମସ୍ତ କର୍ମବନ୍ଧନରୁ ମୁକ୍ତ ହୋଇ ମୋତେ ପାଇଯିବ।

ପ୍ରହ୍ଲାଦ ଏଥର ଭବବନ୍ଧନ ଭୟରୁ ମୁକ୍ତ ହୋଇଗଲେ। କିନ୍ତୁ ତାଙ୍କ ପିତାଙ୍କର ମୁକ୍ତି କିପରି ହେବ ଓ ସେ ଭାଗବତ-ଅପରାଧ ଦୋଷରୁ କିପରି ମୁକ୍ତ ହେବେ, ତାହା ତାଙ୍କ ସର୍ବଭୂତସୁହୃଦ ହୃଦୟରେ ଆଲୋଡ଼ନ ସୃଷ୍ଟି କଲା; କାରଣ ଭଗବାନଙ୍କ ପ୍ରତି କେହି ଅପରାଧ କଲେ ଭଗବାନ ତାହାକୁ ଧରନ୍ତି ନାହିଁ, କିନ୍ତୁ ଭକ୍ତ ପ୍ରତି କେହି ଅପରାଧ କଲେ ଭଗବାନ ତାହାକୁ ସହଜେ କ୍ଷମା କରନ୍ତି ନାହିଁ। ଶ୍ରୀରାମଚରିତମାନସରେ କୁହାଯାଇଛି–

**ଜୋ ଅପରାଧ ଭଗତ କର କରଈ। ରାମ ରୋଷ ପାୱକ ମହୁଁ ଜରଈ ॥**

ଏ କଥା ଅମ୍ବରୀଷ ଓ ଦୁର୍ବାସାଙ୍କ ପ୍ରକରଣରୁ ମଧ୍ୟ ସୁସ୍ପଷ୍ଟ। ତେଣୁ ସେ ପ୍ରାର୍ଥନା କଲେ—''ହେ ମହେଶ୍ୱର! ମୋର ପିତା ଆପଣଙ୍କ ମହିମା ନ ଜାଣି ଆପଣଙ୍କୁ ନିନ୍ଦା କଲେ; ପୁଣି ମୁଁ ଆପଣଙ୍କର ଭକ୍ତ ହୋଇଥିବାରୁ ମୋ ପ୍ରତି ପୁତ୍ରଭାବ ତ୍ୟାଗ କରି ମୋ ସଙ୍ଗେ ଦ୍ରୋହ କଲେ। ଅବଶ୍ୟ ଆପଣଙ୍କ ଦୃଷ୍ଟି ପଡ଼ିବାରୁ ସେ ପବିତ୍ର ହୋଇଯାଇଛନ୍ତି, ତଥାପି ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି ଯେ ସେ ଏହି ଦୁସ୍ତର ଦୋଷରୁ ସହଜରେ କିପରି ମୁକ୍ତ ହୋଇଯାଆନ୍ତୁ।''

ଭଗବାନ କହିଲେ—''ହେ ନିଷ୍ପାପ ପ୍ରହ୍ଲାଦ! ତୁମ ପରି କୁଳପବିତ୍ରକାରୀ ପୁତ୍ର ଲାଭ କରିଥିବାରୁ ସେ ତ ଆପେ ଆପେ ପବିତ୍ର ହୋଇଯାଇଛନ୍ତି। କେବଳ ସେ ନୁହେଁ, ତୁମ ଭଳି ପୁତ୍ର ଯାହାଠାରୁ ଜନ୍ମ ନିଅନ୍ତି, ତାଙ୍କର ଏକୋଇଶି ପିଢ଼ି

ମଧ୍ୟ ପବିତ୍ର ହୋଇଯାଆନ୍ତି। ତେଣୁ ତୁମେ ଚିନ୍ତା କର ନାହିଁ। ତୁମ ପିତାଙ୍କର ଯଥାବିଧି ଅନ୍ତିମ ସଂସ୍କାର କର।''

ଯଦିଓ ଦୈତ୍ୟରାଜ ହିରଣ୍ୟକଶିପୁର ମୃତ୍ୟୁ ପରେ ଭଗବାନ ପ୍ରହ୍ଲାଦଙ୍କୁ ରାଜସିଂହାସନରେ ଅଧିଷ୍ଠିତ କରି ଦେଇଥିଲେ, ତଥାପି ତାଙ୍କର ବିଧିବତ୍ ସିଂହାସନାରୋହଣ ହୋଇ ନ ଥିଲା। ତେଣୁ ତାଙ୍କର ସମାବର୍ତ୍ତନ ସଂସ୍କାର ପରେ ତାଙ୍କ ରାଜସଭାର ବୃଦ୍ଧ ମନ୍ତ୍ରୀ ବଜ୍ରଦନ୍ତଙ୍କର ଭକ୍ତିମତୀ କନ୍ୟା ସୁବର୍ଣ୍ଣା ସହିତ ତାଙ୍କର ବିବାହ ହେଲା ଏବଂ ସେ ରାଜପଦରେ ମହା ସମାରୋହରେ ଅଧିଷ୍ଠିତ ହେଲେ। ଭକ୍ତ ପ୍ରହ୍ଲାଦଙ୍କ ଶାସନକାଳରେ ରାଜ୍ୟରେ ସୁଖସମୃଦ୍ଧି, ନ୍ୟାୟ, ଧର୍ମାଚରଣ ଆଦି ସତ୍ୟଯୁଗ ପରି ଚରମ ଉତ୍କର୍ଷରେ ପହଞ୍ଚିଗଲା। ସାଧୁ-ସନ୍ଥ, ଦେବତା, ବ୍ରାହ୍ମଣ ସମସ୍ତଙ୍କ ପ୍ରତି ତାଙ୍କର ସମ୍ମାନ ଥିଲା। ସେ ନିଜ ମଧ୍ୟରେ ଭଗବାନଙ୍କର ପ୍ରେରଣା ଅନୁଭବ କରି ସମସ୍ତ ରାଜକାର୍ଯ୍ୟ କରୁଥିଲେ ଏବଂ ତାହାକୁ ଭଗବାନଙ୍କର ସେବା ମନେ କରୁଥିଲେ।

ପଦ୍ମପୁରାଣ ଅନୁସାରେ ପ୍ରହ୍ଲାଦଙ୍କର ଚାରି ପୁତ୍ର ଥିଲେ; କିନ୍ତୁ ମହାଭାରତ ଦେଖିଲେ ତାଙ୍କର ବିରୋଚନ ହିଁ ଏକମାତ୍ର ପୁତ୍ର ଥିବା ଜଣାଯାଏ। ଦୈତ୍ୟର୍ଷି ପ୍ରହ୍ଲାଦଙ୍କର ପୁତ୍ରମାନଙ୍କ ଠାରେ କିନ୍ତୁ ଅନେକାଂଶରେ ଦେବ-ବିପ୍ର-ଦ୍ରୋହ ଆଦି ଆସୁର ଭାବ ରହିଥିଲା। ସେଥିପାଇଁ ଅଭିମାନବଶତଃ ତାଙ୍କ ପୁତ୍ର ବିରୋଚନ ଋଷିକୁମାର ସୁଧନ୍ୱାଙ୍କ ଠାରୁ ନିଜକୁ ଶ୍ରେଷ୍ଠ ମଣି ପରମ ସୁନ୍ଦରୀ ଓ ବିଦୁଷୀ କେଶିନୀ ସଙ୍ଗେ ବିବାହ କରିବାକୁ ଚାହିଁଥିଲା।

ପାଞ୍ଚାଳଦେଶର ରୂପବତୀ କନ୍ୟା କେଶିନୀ ଅନେକ ଅଭିଳାଷୀ ବରପାତ୍ରଙ୍କ ମଧ୍ୟରୁ ଋଷିକୁମାର ସୁଧନ୍ୱାଙ୍କୁ ଗୁଣଗାରିମାରେ ଶ୍ରେଷ୍ଠ ମନେକରି ସ୍ୱୟଂବରରେ ବରିବାକୁ ମନସ୍ଥ କରିଥିଲା। କିନ୍ତୁ ପ୍ରହ୍ଲାଦଙ୍କ ପୁତ୍ର ବିରୋଚନ ଆତ୍ମାଭିମାନ ହେତୁ ନିଜକୁ ସୁଧନ୍ୱାଙ୍କ ଠାରୁ ବିଦ୍ୱାନ୍, କୁଳୀନ ଓ ଶ୍ରେଷ୍ଠ ମଣୁଥିଲା। ତେଣୁ ସେ କେଶିନୀର ପ୍ରଣୟପ୍ରାର୍ଥୀ ହେଲା। ମାତ୍ର କେଶିନୀ ଉଭୟ ବରପାତ୍ରଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ନିର୍ଣ୍ଣୟ କରିବାକୁ ତାହାରି ପିତା ମହାପୁରୁଷ ଦୈତ୍ୟର୍ଷି ପ୍ରହ୍ଲାଦଙ୍କୁ ନିର୍ଣ୍ଣୟକାରୀ ରୂପେ ସ୍ୱୀକାର କଲା। ଉଭୟ ବରପାତ୍ର ପ୍ରାଣକୁ ବାଜିରେ ରଖି ତା'ର ସର୍ତ୍ତରେ ରାଜି ହୋଇଗଲେ। ପ୍ରହ୍ଲାଦଙ୍କ ସମ୍ମୁଖରେ ଧର୍ମସଂକଟ ଉପସ୍ଥିତ ହୋଇଗଲା। ସେ ହୃଦୟଙ୍ଗମ କଲେ ଯେ ତାଙ୍କ ପୁତ୍ର ବିରୋଚନ ସୁଧନ୍ୱାଙ୍କ ଠାରୁ ଶ୍ରେଷ୍ଠ ହୋଇ ପାରିବ ନାହିଁ; ତେଣୁ ବିରୋଚନର ପ୍ରାଣ ରକ୍ଷା କରିବା ତାଙ୍କ ପକ୍ଷେ

ଅସମ୍ଭବ ହୋଇଯିବ । ତଥାପି ସେ ପୁତ୍ରମୋହରେ ନ ପଡ଼ି ସତ୍ୟରେ ଦୃଢ଼ ପ୍ରତିଷ୍ଠ ରହି ନିଷ୍ପକ୍ଷ ନିର୍ଣ୍ଣୟ ଦେଲେ । ସେ ବିରୋଚନକୁ ନ୍ୟାୟ ଶୁଣାଇ କହିଲେ— "ରାଜକୁମାର! ତୁମେ ଏ ମିଥ୍ୟା ଅଭିମାନକୁ ଛାଡ଼ି ମୋ କଥା ଶୁଣ । ମୋର ନ୍ୟାୟ ଅନୁସାରେ କୁଳ, ବିଦ୍ୟା, ଓ ଗୁଣ ଗାରିମା ଦୃଷ୍ଟିରୁ ଋଷିକୁମାର ସୁଧନ୍ୱାଙ୍କ ପୂଜ୍ୟପାଦ ପିତା ମହର୍ଷି ଅଙ୍ଗିରା ମୋଠାରୁ ଶ୍ରେଷ୍ଠ, ତୁମ ମାତାଙ୍କ ଠାରୁ ସୁଧନ୍ୱାଙ୍କ ମାତା ଶ୍ରେଷ୍ଠ; ପୁନଶ୍ଚ ତୁମଠାରୁ ସୁଧନ୍ୱା ଶ୍ରେଷ୍ଠ । ଏହି ସବୁ ଦୃଷ୍ଟିରୁ ତୁମେ ହାରିଗଲ ଏବଂ ସୁଧନ୍ୱା ଜିତିଗଲେ । ତୁମ ପ୍ରାଣ ଏବେ ସୁଧନ୍ୱାଙ୍କ ହାତରେ । ଏତିକି କହୁ କହୁ ପ୍ରହ୍ଲାଦଙ୍କ ନେତ୍ରରୁ ପୁତ୍ରସ୍ନେହ ହେତୁ ଅଶ୍ରୁ ଝରି ଆସିଲା । ସୁଧନ୍ୱା ପ୍ରହ୍ଲାଦଙ୍କର ନିଷ୍ପକ୍ଷ ନ୍ୟାୟ ଶୁଣି ଓ ତାଙ୍କଠାରେ ପୁତ୍ର ସ୍ନେହ ତୁଳନାରେ ସତ୍ୟର ଆଦର ଦେଖି ପ୍ରହ୍ଲାଦଙ୍କର ବହୁ ପ୍ରଶଂସା କଲେ । ଶେଷରେ ପ୍ରହ୍ଲାଦ ସୁଧନ୍ୱାଙ୍କୁ ବିରୋଚନର ପ୍ରାଣଭିକ୍ଷା ମାଗିଲେ । ସୁଧନ୍ୱା ଖୁସୀ ମନରେ ବିରୋଚନଙ୍କୁ ପ୍ରାଣଦାନ ଦେଲେ । ପ୍ରହ୍ଲାଦଙ୍କର ସତ୍ୟନିଷ୍ଠାର କୀର୍ତ୍ତି ବିସ୍ତାରିତ ହେଲା ଏବଂ ପୁତ୍ରର ପ୍ରାଣରକ୍ଷା ମଧ୍ୟ ହୋଇଗଲା ।

ଥରେ ଅବଧୂତ ରୂପରେ ସଂସାରରୁ ସମ୍ପୂର୍ଣ୍ଣ ନିସ୍ପୃହ ଓ ଉଦାସୀନ ହୋଇ ବିଚରଣ କରୁଥିବା ଅଜଗର ମୁନିଙ୍କ ସଙ୍ଗେ ପ୍ରହ୍ଲାଦଙ୍କର ସାକ୍ଷାତ ହେଲା । ପ୍ରହ୍ଲାଦ ତାଙ୍କର ନିଶ୍ଚେଷ୍ଟ ବ୍ୟବହାର ସହ ଜ୍ଞାନର ଅଦ୍ଭୁତ ସମନ୍ୱୟ ଦେଖି ତାଙ୍କୁ ନାନା ପ୍ରଶ୍ନ କଲେ ଏବଂ ତାଙ୍କଠାରୁ ଅନେକ ଅଧ୍ୟାତ୍ମ ଉପଦେଶ ଲାଭ କଲେ ।

ପ୍ରହ୍ଲାଦଙ୍କର ରାଜ୍ୟ ଶାସନ ସମୟ ସମାପ୍ତ ହୋଇ ଆସିଲା । ଏପଟେ ଦୁର୍ବାସାଙ୍କ ଶାପର ଅବଧି ମଧ୍ୟ ପୂରି ଆସିଥିଲା । ଭଗବାନ ଦେବତାମାନଙ୍କର ଅଭ୍ୟୁଦୟ ଇଚ୍ଛା କଲେ । ସେହି ସମୟର କଥା । ଥରେ ଇନ୍ଦ୍ର କପଟରେ ବ୍ରାହ୍ମଣ ବେଶରେ ଆସି ତାଙ୍କୁ ଶୀଳ ଭିକ୍ଷା ମାଗିଲେ । ପ୍ରାଣୀର ସ୍ୱଭାବରେ ଶୀଳ ବା ସୁଶୀଳତା ହିଁ ସମସ୍ତ ଗୁଣ ଓ ଐଶ୍ୱର୍ଯ୍ୟର ମୂଳ । ଯାହାର ଶୀଳ ଚାଲିଯାଏ, ତା'ଠାରୁ କ୍ରମେ କ୍ରମେ ଧର୍ମ, ସତ୍ୟ, ବୃତ୍ତ, ବଳ ଓ ଶ୍ରୀ ମଧ୍ୟ ଚାଲିଯାଏ । ପ୍ରହ୍ଲାଦ ସତ୍ୟ ବାକ୍ୟରେ ଆବଦ୍ଧ ହୋଇ ଇନ୍ଦ୍ରଙ୍କୁ ଶୀଳ ପ୍ରଦାନ କଲେ; ଫଳରେ ପ୍ରହ୍ଲାଦଙ୍କ ଠାରୁ ଗୋଟିଏ ପରେ ଗୋଟିଏ ସମସ୍ତ ଗୁଣ ମୂର୍ତ୍ତିମନ୍ତ ଛାୟାରୂପେ ବାହାରି ଆସି ଦେବରାଜ ଇନ୍ଦ୍ରଙ୍କ ଶରୀରରେ ପ୍ରବିଷ୍ଟ ହୋଇଗଲେ । ଶେଷରେ ଶ୍ରୀ ବା ଲକ୍ଷ୍ମୀ ପ୍ରହ୍ଲାଦଙ୍କୁ ତ୍ୟାଗ କରି ଚାଲିଯିବାରୁ ସେ ଶ୍ରୀହୀନ ହୋଇଗଲେ । ଏଥିରେ କିନ୍ତୁ ପ୍ରହ୍ଲାଦ ଦୁଃଖୀ ହେଲେ ନାହିଁ । ସେ ଏହାକୁ ଭଗବାନଙ୍କ ଲୀଳା ଓ ପରମ କୃପା ମନେକରି, ରାଜପଦର ମାୟା ମୋହରୁ ମୁକ୍ତ ହୋଇ ତପୋଭୂମି ନୈମିଷାରଣ୍ୟରେ

ଭଗବାନଙ୍କୁ ଭଜିବାକୁ ନିର୍ଣ୍ଣୟ କରିନେଲେ । ସେହିଠାରେ ସେ ଭଗବାନଙ୍କୁ ସ୍ମରଣ କରି କରି ଦେହତ୍ୟାଗ କରି ଭଗବାନଙ୍କ ପରମ ଧାମକୁ ଚାଲିଗଲେ ।

ପ୍ରହ୍ଲାଦଙ୍କ ପରି ଭକ୍ତ ଅତ୍ୟନ୍ତ ବିରଳ । ତାଙ୍କ ଭକ୍ତିରେ ଭଗବାନ ଏତେ ପ୍ରଭାବିତ ହୋଇଯାଇଥିଲେ ଯେ ତାଙ୍କ କୁଳରେ ଉପନ୍ନ ଅସୁରଙ୍କୁ ଭଗବାନ ମାରିବେ ନାହିଁ ବୋଲି ପ୍ରହ୍ଲାଦଙ୍କୁ ଆଶ୍ୱାସନା ଦେଇଥିଲେ । ସେଥିପାଇଁ ତାଙ୍କ କୁଳରେ ବଳି, ବାଣାସୁର ପ୍ରଭୃତିଙ୍କୁ ଭଗବାନ ମାରି ନ ଥିଲେ, ବରଂ ସେମାନେ ମଧ୍ୟ ଈଶ୍ୱର ଭକ୍ତିରେ ଓତପ୍ରୋତ ହୋଇ ନିଜ ନିଜ ଜୀବନକୁ ଧନ୍ୟ କରିଥିଲେ ।



# ଭକ୍ତିମତୀ ଶବରୀ

**ପୁଂସ୍ତ୍ୱେ ସ୍ତ୍ରୀତ୍ୱେ ବିଶେଷୋ ବା ଜାତିନାମାଶ୍ରମାଦୟଃ ।**
**ନ କାରଣଂ ମଦ୍ଭଜନେ ଭକ୍ତିରେବ ହି କାରଣମ୍ ॥**

(ଅ.ରା. ୧୦ । ୨୦)

ଏ ଶ୍ଳୋକଟି ପ୍ରଭୁ ଶ୍ରୀରାମ ଶବରୀ ପ୍ରତି କହିଛନ୍ତି । ସତେ ଯେପରି ଭକ୍ତିର ପାତ୍ରତା ନିରୂପଣ ସମ୍ବନ୍ଧରେ ସଂକ୍ଷେପରେ ସଂକେତ ଦେଇଛନ୍ତି । ସତରେ, ପ୍ରଭୁଙ୍କୁ ଭକ୍ତି କରିବାରେ ଜାତି, ନାମ, ଆଶ୍ରମ, କୁଳ, ଲିଙ୍ଗ, ବିଦ୍ୟା ଇତ୍ୟାଦି ବିଶେଷତ୍ୱର କିଛି ପ୍ରୟୋଜନ ନାହିଁ । ଶବରୀ ଜାତି ଦୃଷ୍ଟିରୁ କେତେ ନୀଚ ନ ଥିଲେ! ନୀଚଜାତିରେ ପୁଣି ନାରୀ, ସେଥିରେ ପୁଣି ବିଦ୍ୟାବୁଦ୍ଧି ଚତୁରତା ଇତ୍ୟାଦିର ନାମ ଲେଶ ନାହିଁ । କିନ୍ତୁ ତାଙ୍କ ଭକ୍ତିକୁ ପ୍ରଭୁ ଶ୍ରୀରାମ କେତେ ପ୍ରଶଂସା କରିଛନ୍ତି! ଶ୍ରବଣ, କୀର୍ତ୍ତନ ଆଦି ନବଧା ଭକ୍ତି ମଧ୍ୟରୁ ଗୋଟିଏ ବି କାହା ପାଖରେ ଥିଲେ ସେ ଭକ୍ତ ବୋଲି ପରିଚିତ ହୋଇଯାଏ, କିନ୍ତୁ ନଅ ପ୍ରକାରଯାକ ଭକ୍ତି ଶବରୀଠାରେ ଥାଇ ମଧ୍ୟ ତାଙ୍କୁ ଏ କଥା ଜଣା ନ ଥିଲା କି ତପୋବନର ଅନ୍ୟ ମୁନିଋଷିଙ୍କୁ ମଧ୍ୟ ଜଣାପଡ଼ି ନ ଥିଲା । ସେ ନିଜକୁ ଏତେ ବଡ଼ ଭକ୍ତ ବୋଲି ଭାବି ନ ଥିଲେ । କେବଳ ଭଗବାନ ହିଁ ତାଙ୍କ ଭକ୍ତିକୁ ଚିହ୍ନିଥିଲେ । ଏହା ହିଁ ଥିଲା ତାଙ୍କ ଭକ୍ତିର ବୈଶିଷ୍ଟ୍ୟ । ଏହିପରି ସରଳତାରୂପୀ ନିଶ୍ଛିଦ୍ର ପାତ୍ରରେ ହିଁ ଭକ୍ତିରୂପୀ ଅମୃତ ରହିପାରେ । ନଚେତ୍ ଅଭିମାନ, ଯଶକୀର୍ତ୍ତି, କଳାଚାତୁରୀ ପ୍ରଦର୍ଶନ, ଋଦ୍ଧିସିଦ୍ଧି, ଜଗତପ୍ରସିଦ୍ଧି, ଲୋକସମ୍ପର୍କ, ବିଦ୍ୱତାପୂର୍ଣ୍ଣ ବକ୍ତୃତା ଆଦି ଛିଦ୍ର ଦ୍ୱାରା ପାତ୍ରଟି କେତେବେଳେ ଯେ ଖାଲି ହୋଇଯାଏ, ତାହା ପାରମାର୍ଥିକ ସାଧକ ଜାଣିପାରେନା ।

ସେ ଜଗତକୁ ଭକ୍ତିରସରେ ରସାପ୍ଲୁତ କରିବାକୁ ବାହାରି ଆସେ ସତ, ଅଥଚ ମାୟାର ବଳବତୀ ପ୍ରଭାବରେ ସେ ନିଜେ ରିକ୍ତ ରହିଯାଏ ।

ଶବରୀଙ୍କ ପୂର୍ବ ଜୀବନ ବିଷୟରେ ସନ୍ଥମହାତ୍ମାଙ୍କ ମୁଖରୁ ଏହିପରି ଆଖ୍ୟାନଟିଏ ଶୁଣିବାକୁ ମିଳେ—

ବନଜଙ୍ଗଲବାସୀ ଶବର ଜାତିରେ ଲୋକମାନେ ସାଧାରଣତଃ ଅସୁନ୍ଦର ହୋଇଥାନ୍ତି; କିନ୍ତୁ ଶବରୀ ଅତି ଅସୁନ୍ଦରୀ ଓ କୁରୂପା ଥିଲେ । ସେଥିପାଇଁ ତାଙ୍କ ପାଇଁ ଯେତେ ବିବାହ ପ୍ରସ୍ତାବ ଆସୁଥିଲା ସବୁ ଭାଙ୍ଗି ଯାଉଥିଲା । ଶେଷରେ ତାଙ୍କର ବାପା କୌଣସି ପ୍ରକାରେ ଗୋଟିଏ ବରପାତ୍ର ଯୋଗାଡ଼ କଲେ ଏବଂ ବିବାହ ପରେ ରାତାରାତି ବରକନ୍ୟାଙ୍କୁ ବିଦା କରିଦେବାକୁ ଯୋଜନା କଲେ, ଯାହା ଫଳରେ କନ୍ୟାର ରୂପକୁ ବର ରାତିରେ ବିବାହ ସମୟରେ ବା ପରେ ଭଲଭାବରେ ଦେଖି ନ ପାରିବ । ବର ଶବରୀଙ୍କୁ ସଙ୍ଗରେ ନେଇ ଘରକୁ ଫେରୁଥାଏ । ପଛେ ପଛେ ଶବରୀ ଚାଲିଥାନ୍ତି; ରାସ୍ତାରେ ରାତି ପାହିଗଲା । ତାଙ୍କର ସ୍ୱାମୀ ପଛକୁ ବୁଲି ଚାହିଁଦେଲେ । କି ଭୟଙ୍କର ରୂପ! ତାଙ୍କ ଦେହ ଶିତେଇ ଉଠିଲା ଶବରୀଙ୍କ ରୂପକୁ ଦେଖି । କୌଣସି ଡାହାଣୀ ବା ପିଶାଚୁଣୀ ତାଙ୍କ ପଛେ ପଛେ ଆସୁଛି ବୋଲି ଭାବି ଭୟରେ ଚିତ୍କାର କରି ସେ ଦୌଡ଼ି ପଳାଇଲେ । ଶବରୀ ଏକାକିନୀ ହୋଇଗଲେ; ଯାଆନ୍ତେ ବା କୁଆଡ଼େ? ବାପଘରକୁ ଗଲେ ବା କେଉଁ ଆଦର ପାଇବେ । ସ୍ୱାର୍ଥପର ସଂସାରରୁ ମାୟାମୋହ ତୁଟାଇ ସେ ସେହି ଦଣ୍ଡକାରଣ୍ୟରେ କନ୍ଦମୂଳ ଫଳ ଖାଇ ଦିନ କାଟିଲେ ।

ଏ ବିଷୟରେ ଅନ୍ୟ ଏକ କିଂବଦନ୍ତୀ ମଧ୍ୟ ଶୁଣିବାକୁ ମିଳେ । ଶବରୀଙ୍କର ବିବାହ ଅବସରରେ ବରଯାତ୍ରୀଙ୍କୁ ମାଂସ ରାନ୍ଧି ଭୋଜି ଦେବାପାଇଁ ଅନେକ ବନ୍ୟ ପଶୁଙ୍କୁ ଆଣି ବାନ୍ଧି ରଖାଯାଇଥିଲା । ବାଳିକା ଶବରୀ ତାଙ୍କ ମାଆଙ୍କୁ ଏତେ ପଶୁମାନଙ୍କୁ ବାନ୍ଧି ରଖାଯାଇଥିବାର କାରଣ ପଚାରିଲେ । ମାଆ ସହଜ ଭାବରେ ସତ କଥାଟି କହିଦେଲେ । କିନ୍ତୁ ଶବରୀଙ୍କ ମନରେ ଏହା ଗଭୀର ଆଘାତ ଦେଲା । ସେ ଭାବିଲେ, ମୋ ବାହାଘର ପାଇଁ ଏତେ ଜୀବବଧ ହେବ? ନା, ମୁଁ ଏହାର ନିମିତ୍ତ ହେବି ନାହିଁ । ଏହା ଭାବି ସେ ରାତିରେ ଚୁପ୍‌ଚାପ୍ ଘର ଛାଡ଼ି ବନକୁ ପଳାଇଗଲେ ।

ତ୍ରେତାଯୁଗରେ ବର୍ଣ୍ଣାଶ୍ରମ ମର୍ଯ୍ୟାଦାର ମହତ୍ତ୍ୱ ଥିଲା । ଦଣ୍ଡକାରଣ୍ୟରେ ବାନପ୍ରସ୍ଥାଶ୍ରମୀ ଓ ଋଷିମୁନିମାନେ ରହି ଭଗବାନଙ୍କ ଭଜନ କରୁଥିଲେ । ସେମାନଙ୍କ

ଦର୍ଶନ ମିଳୁଥିଲା ଶବରୀଙ୍କୁ। ଥରେ ସେ ମନେ ମନେ ଭାବିଲେ, "ମୁଁ ତ ଅଭାଗିନୀ ମୂର୍ଖ ନାରୀ; ମୁଁ ନିଜ ଉଦ୍ଧାର ପାଇଁ କ'ଣ ବା କରି ପାରିବି? କେବଳ ଏହି ପବିତ୍ରାତ୍ମା ମୁନିଋଷିଙ୍କର କିଛି ସେବା ମୁଁ କରି ପାରନ୍ତି। କିନ୍ତୁ କଣ ସେମାନେ ଏ ଅଧମ ଶବରୁଣୀର ସେବା ଗ୍ରହଣ କରିବେ?" ଏହା ଭାବି ସେ ଗୁପ୍ତଭାବରେ ସେବା କରିବାକୁ ଲାଗିଲେ। ତାଙ୍କ ମନରେ ସେବା କାର୍ଯ୍ୟ ପ୍ରତି ଶ୍ରଦ୍ଧା ଜାଗି ଉଠିଲା। ରାତି ନ ପାହୁଣୁ ସେମାନଙ୍କ ଆଶ୍ରମ ଆଗ ରାସ୍ତାରେ ଝାଡୁ ଦେବା, ଜଙ୍ଗଲରୁ ଜାଳେଣୀ କାଠ ଆଣି ଆଶ୍ରମ ଆଗରେ ରଖିଦେବା, ସେମାନଙ୍କ ଗାଧୋଇ ଯିବା ରାସ୍ତାରୁ କଣ୍ଟା, ଗୋଡ଼ି, ପଥର ଉଠାଇ ରାସ୍ତା ସଫା କରିଦେବା ପ୍ରଭୃତି କାର୍ଯ୍ୟ କରିଦେଉଥିଲେ। ଉତ୍ତମ କାର୍ଯ୍ୟ କେବେ ଲୁଚି ରହେ ନାହିଁ। ସେଥିପାଇଁ ନାଗରା ପିଟି ଘୋଷଣା କରିବା ଦରକାର ହୁଏ ନାହିଁ। କାର୍ଯ୍ୟ ନିଜେ ହିଁ ନିଜ ଉତ୍ତମତାର ପରିଚୟ ଦିଏ। ମୁନିଋଷିମାନେ ଭାବିଲେ, "ଏସବୁ କିଏ କରୁଛି? କାହାର ଏଭଳି ସେବାଭାବ, ଯିଏ ଲୁଚି ଲୁଚି ଏଭଳି ସେବା କାର୍ଯ୍ୟ କରୁଛି? କାର୍ଯ୍ୟ ତ ଉତ୍ତମ; ହେଲେ ଏ ତ ଆମ ସାଧନାର ପୁଣ୍ୟକୁ ଚୋରି କରି ନେଉଛି। ତାକୁ ଚିହ୍ନିବା ଦରକାର।" ଏହା ଭାବି ଥରେ ମୁନିଋଷିମାନେ ସେମାନଙ୍କ ଶିଷ୍ୟମାନଙ୍କୁ ଏ କାର୍ଯ୍ୟ କରୁଥିବା ଲୋକକୁ ଧରିବାକୁ ଆଦେଶ ଦେଲେ। ଶିଷ୍ୟମାନେ ରାତିରେ ପହରା ଦେଲେ। ଦିନେ ରାତିର ଶେଷ ପ୍ରହରରେ ଶବରୀ କାଠ ବିଡ଼ା ରଖିବା ବେଳେ ଧରାପଡ଼ିଗଲେ। ସାଧୁସନ୍ଥମାନେ କାଳେ କଣ ଭାବିବେ? କାଳେ ମୋ ସେବା ଗ୍ରହଣ ହେତୁ ସେମାନଙ୍କ ସାଧନାରେ ବିଘ୍ନ ଘଟୁଥିବ, ଏହା ଭାବି ଶବରୀ ବହୁତ ଡରିଗଲେ। ଶିଷ୍ୟଗଣ ତାଙ୍କୁ ମତଙ୍ଗ ମୁନିଙ୍କ ପାଖକୁ ନେଇଗଲେ। ମୁଣ୍ଡରେ କାଠ ବିଡ଼ା, ହାତରେ ଝାଡୁ। ତଳକୁ ମୁହଁ କରି ଅପରାଧୀ ପରି ଠିଆ ହୋଇଥାନ୍ତି ନିଷ୍କାମ ସେବାକାରିଣୀ ଶବରୀ। ମତଙ୍ଗ ମୁନି ପଚାରିଲେ—"ମାଆ ରେ! ତୁ କିଏ? କାହିଁକି ତୁ ପ୍ରତିଦିନ ରାସ୍ତାରେ ଝାଡୁ ଦେଉଛୁ ଓ କାଠ ଆଣି ରଖୁଛୁ? ଏଭଳି ସେବାରେ ତୋର ଅଭିପ୍ରାୟ କ'ଣ? ତୁ ତ ଆମଠାରୁ ବର୍ତ୍ତନ କି ବେତନ କିଛି ପାଉ ନାହୁଁ।"

ଭକ୍ତିମତୀ ଶବରୀ ଭୟରେ ଥରି ଥରି ଅତ୍ୟନ୍ତ ନମ୍ରତାପୂର୍ବକ ପ୍ରଣାମ କରି କହିଲେ—"ହେ ମହାତ୍ମା! ମୋ ନାଆଁ ଶବରୀ। ଦୁର୍ଭାଗ୍ୟ ହେତୁ ମୋର ନୀଚକୁଳରେ ଜନ୍ମ ହୋଇଛି। ମୁଁ ଏହି ଦଣ୍ଡକବନରେ ରହୁଛି ଏବଂ ଆପଣଙ୍କ ପରି ଋଷିମୁନିଙ୍କ ଦର୍ଶନ ପାଇ ନିଜକୁ ପବିତ୍ର କରୁଛି। ଭାବିଲି, ଅନ୍ୟ କୌଣସି ସେବା କରିବାର

ତ ମୋର ଅଧିକାର ନାହିଁ; ହେଲେ ଏତିକି ସେବା ତ ମୁଁ କରି ପାରିବି। ଗୋସେଇଁ! ମୁଁ ଆପଣଙ୍କ ସେବା କରିବାକୁ ଯୋଗ୍ୟା ନୁହେଁ, ଏଣୁ ମୋର ଦୋଷ କ୍ଷମା କରିବେ।''

ଶବରୀଙ୍କ ନମ୍ରତା ଓ ସେବା ଭାବ ଦେଖି ମତଙ୍ଗ ମୁନିଙ୍କ ମନରେ ଦୟା ଆସିଲା। ସେ ଶିଷ୍ୟମାନଙ୍କୁ କହିଲେ, ''ଏ ବଡ଼ ଭାଗ୍ୟଶାଳିନୀ! ଯ୍ୟା ପାଇଁ ଆଶ୍ରମ ବାହାରେ ଗୋଟିଏ କୁଡ଼ିଆ ତୋଳିଦିଅ ଓ ଏହା ପାଇଁ ଖାଇବା-ପିଇବାର କିଛି ବ୍ୟବସ୍ଥା କରିଦିଅ।'' ଋଷିଙ୍କର ଦୟାପୂର୍ଣ୍ଣ କଥା ଶୁଣି ଶବରୀର ନେତ୍ରକୋଣରୁ ଅଶ୍ରୁ ଝରି ଆସିଲା, ମନ ଆନନ୍ଦରେ ନାଚି ଉଠିଲା। ଉଦର ପୋଷଣର ବ୍ୟବସ୍ଥା ପାଇଁ ନୁହେଁ, ମହାତ୍ମା ତା'ର ସେବାକୁ ସ୍ୱୀକାର କଲେ, ଏଥିପାଇଁ ସେ ନିଜକୁ ଧନ୍ୟ ମନେକଲା। ମହାତ୍ମାଙ୍କ ଅନୁଗ୍ରହ ଏଥର ତାକୁ ସୁଲଭ ହୋଇଗଲା, ତା'ର ଭାଗ୍ୟର ଦ୍ୱାର ଖୋଲିଗଲା। ସେ ସଜଳ ନୟନରେ ହାତଯୋଡ଼ି କହିଲା— ''ମୁନିବର! ମୋ ପାଇଁ ଚିନ୍ତା କରନ୍ତୁ ନାହିଁ; ମୁଁ ତ ଫଳମୂଳ ଖାଇ ଚଳିଯାଉଛି। ଆପଣ ମୋର ସେବାକୁ ଅନୁଗ୍ରହ କରି ଯେଉଁ ସ୍ୱୀକାର କଲେ, ତାହା ମୋ ପାଇଁ ବଡ଼ ଆନନ୍ଦର କଥା। ତଥାପି ଆପଣଙ୍କ କୃପା ହୋଇଗଲେ ମୁଁ କୃତାର୍ଥ ହୋଇଯିବି। ଆପଣଙ୍କ ଠାରୁ ପ୍ରସାଦ ପାଇବା ମୋ ପାଇଁ ପରମ ସୌଭାଗ୍ୟର କଥା ହେବ। ଗୋସେଇଁ! ମୋର ଧନ-ବୈଭବ ପାଇବାକୁ ଇଚ୍ଛା ନାହିଁ, ଏ ଅସାର ସଂସାରରେ ମୋର ଆପଣାର ବୋଲି କେହି ନାହିଁ। ଆପଣ ଏ ଅଧମ ନାରୀକୁ ଏତିକି ଆଶୀର୍ବାଦ ଦିଅନ୍ତୁ, ଯାହାଫଳରେ ମୋର ଭଗବାନଙ୍କ ଚରଣରେ ପ୍ରୀତି ଉତ୍ପନ୍ନ ହୋଇଯିବ।''

ଶବରୀର ଶ୍ରଦ୍ଧା ଓ ବିନୟ ଦେଖି ଦୟାଳୁ ମତଙ୍ଗ ମୁନି କିଛି ସମୟ ମନେ ମନେ ବିଚାର କରି କହିଲେ, ''ଠିକ୍ ଅଛି, ତୁ ନିର୍ଭୟରେ ଏଠି ରହ ଏବଂ ଭଗବାନଙ୍କର ନାମ ଜପ କର।'' ଏହା କହି ସେ ତାକୁ ନାମ ଦେଇଦେଲେ। ମହାପୁରୁଷମାନେ କହନ୍ତି, ଶ୍ରଦ୍ଧାଳୁକୁ ଗୁରୁ ଖୋଜିବାକୁ ପଡ଼େ ନାହିଁ; ଗୁରୁ ନିଜେ ଆସି ତାକୁ ମନ୍ତ୍ର ଦିଅନ୍ତି। ଶବରୀ ଜୀବନରେ ତାହା ହିଁ ଘଟିଲା। ସତ୍‌ପାତ୍ରରେ ନାମ ଦାନ ଦେଇ ମତଙ୍ଗ ଋଷି ମଧ୍ୟ ଆନନ୍ଦ ଅନୁଭବ କଲେ। ତାଙ୍କରି କୃପାରୁ ଶବରୀ ଭଗବତ୍ ଭଜନରେ ଅହରହ ବୁଡ଼ି ରହିଲେ। ହେଲେ, ଅନ୍ୟ ସବୁ ଋଷିଙ୍କୁ ଏ କଥା ଭଲ ଲାଗିଲା ନାହିଁ। ସେମାନେ କେବଳ ବାହ୍ୟ ଦୃଷ୍ଟିରେ ଏ କଥାକୁ ଦେଖିଲେ। ଶବରୀର ଭାବକୁ ସେ ଚିହ୍ନି ପାରି ନ ଥିଲେ। ପଦ୍ମପୁରାଣରେ କୁହାଯାଇଛି—

ଚଣ୍ଡାଳୋଽପି ମୁନେଃ ଶ୍ରେଷ୍ଠୋ ବିଷ୍ଣୁଭକ୍ତିପରାୟଣଃ ।
ବିଷ୍ଣୁଭକ୍ତିବିହୀନସ୍ତୁ ଦ୍ୱିଜୋଽପି ଶ୍ୱପଚୋଽଧମଃ ॥

ବର୍ଣ୍ଣାଶ୍ରମର ମର୍ଯ୍ୟାଦା ଦୃଷ୍ଟିରୁ ସେମାନେ ମତଙ୍ଗ ଋଷିଙ୍କୁ କହିଲେ, ଆପଣ ନୀଚ ଜାତିର ଶବରୀକୁ ଆଶ୍ରମରେ ସ୍ଥାନ ଦେଇ ବହୁତ ବଡ଼ ଭୁଲ୍ କରିଛନ୍ତି, ତେଣୁ ଆମେ ସବୁ ଆପଣଙ୍କ ସଙ୍ଗେ ବସି ଭୋଜନ ଆଦି କରିବୁ ନାହିଁ। ମତଙ୍ଗ ଋଷି ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କଲେ, ମାତ୍ର ବିଫଳ ହେଲେ। ସେ ଭକ୍ତିତତ୍ତ୍ୱର ସୂକ୍ଷ୍ମ ରହସ୍ୟକୁ ଜାଣିଥିଲେ, ତେଣୁ ସେ ସେମାନଙ୍କ ଉପେକ୍ଷାକୁ ମହତ୍ତ୍ୱ ଦେଲେ ନାହିଁ। ସେ ଜାଣିଗଲେ ଯେ ସେମାନେ ଏବେ ଭ୍ରମରେ ଅଛନ୍ତି, ଶବରୀର ଅସଲ ସ୍ୱରୂପ ବିଷୟରେ ସେମାନଙ୍କର ଜ୍ଞାନ ନାହିଁ। ସେ ଯେ ସାଧାରଣ ଶବରୀ ନାରୀ ନୁହେଁ, ସେ ଜଣେ ଭଗବଭକ୍ତି ପରାୟଣା ମହାନ୍ ଆତ୍ମା—ଏ କଥା ସେମାନେ ବୁଝି ପାରି ନାହାନ୍ତି।

ସତରେ ଶବରୀ ଜଣେ ମହାନ୍ ଆତ୍ମା ଥିଲେ। ଅନେକ ଜନ୍ମରୁ ସାଧନାରତ ହୋଇ ଏ ଜନ୍ମରେ ସେ ପ୍ରଭୁଙ୍କୁ ପାଇବାର ଯୋଗ୍ୟା ହୋଇଥିଲେ। କଥିତ ଅଛି ଯେ, ସେ ପୂର୍ବଜନ୍ମରେ ଜଣେ ରାଣୀ ଥିଲେ। ଥରେ ସେ ରାଜାଙ୍କ ସଙ୍ଗରେ ତ୍ରିବେଣୀ ସ୍ନାନ ନିମନ୍ତେ ତୀର୍ଥରାଜ ପ୍ରୟାଗ ଯାଇଥିଲେ। ତ୍ରିବେଣୀ ସଙ୍ଗମରେ ସ୍ନାନ ଏବଂ ସାଧୁସନ୍ଥଙ୍କର ଦର୍ଶନରେ ତାଙ୍କର ହୃଦୟ ଆହ୍ଲାଦିତ ହୋଇଗଲା। ସାଧୁସନ୍ଥଙ୍କ ମୁଖରୁ ଭଗବାନଙ୍କ ଲୀଳା କଥା ଓ ସତ୍ସଙ୍ଗ ଚର୍ଚ୍ଚା ଶୁଣି ଜୀବନକୁ କୃତାର୍ଥ କରିବାକୁ ତାଙ୍କ ମନ ବ୍ୟାକୁଳ ହୋଇ ଉଠିଲା; କିନ୍ତୁ ସେ ରାଜରାଣୀ। ସମ୍ମାନ ଓ ମର୍ଯ୍ୟାଦାର ମଜବୁଦ୍ ଶୃଙ୍ଖଳ ତାଙ୍କ ହାତଗୋଡ଼କୁ ବାନ୍ଧି ରଖିଥିଲା। ତାଙ୍କ ପାଇଁ ଅନେକ କଟକଣା ଥିବାରୁ ସେ ତାହା କରି ପାରିଲେ ନାହିଁ। ମର୍ଯ୍ୟାଦା ଅନୁସରଣ କରି ସେ ପରଦା ଆଢୁଆଳରେ ରହିବାକୁ ବାଧ୍ୟ ହେଲେ। ତାଙ୍କ ମନକଥା ମନରେ ରହିଗଲା। ସେ ଭାବିଲେ, ଯେଉଁ ଜୀବନରେ ସାଧୁସନ୍ଥଙ୍କ ସତ୍ସଙ୍ଗ ପାଇହେବ ନାହିଁ, ସେଭଳି ଜୀବନ ଧରି କି ଲାଭ? ଦେହତ୍ୟାଗ କରିଦେବା ବରଂ ଏହାଠାରୁ ଶ୍ରେୟସ୍କର ହେବ। ଏଭଳି ବିଚାର କରି ସେ ପରଜନ୍ମରେ ସାଧୁସଙ୍ଗ ପାଇବାର ସଙ୍କଳ୍ପରେ ତ୍ରିବେଣୀରେ ଝାସ ଦେଲେ। ପ୍ରଭୁଙ୍କ କୃପାରୁ ପର ଜନ୍ମରେ ତାଙ୍କୁ ମତଙ୍ଗ ଋଷିଙ୍କ ସାନ୍ନିଧ୍ୟ ମିଳିଲା। ତ୍ରିକାଳଦର୍ଶୀ ମତଙ୍ଗ ଋଷି ଶବରୀର ଭାବନାକୁ ଚିହ୍ନି ପାରିଥିଲେ, ତେଣୁ ସେ ନିର୍ଭୟରେ ତାକୁ ସଦୁପଦେଶ ଦେଲେ ଏବଂ ତାହାର ଭକ୍ତିଭାବ ବଢ଼ାଇବା ପାଇଁ ଚେଷ୍ଟା କଲେ।

ସମୟ ଗଡ଼ିଚାଲିଲା। ଭଗବାନଙ୍କ ନାମଗୁଣ ଭଜନ ସ୍ମରଣ କରି କରି ଶବରୀ ବୃଦ୍ଧା ହୋଇଗଲେ। ମତଙ୍ଗ ଋଷିଙ୍କ ଦେହତ୍ୟାଗ କରିବାର ସମୟ ଆସିଗଲା। ଏ କଥା ଜାଣି ଶିଷ୍ୟମାନେ ଦୁଃଖିତ ହେଲେ। ଶବରୀ କିନ୍ତୁ ଅଧିକ ଚିନ୍ତିତ ହୋଇପଡ଼ିଲେ। ଗୁରୁଦେବଙ୍କ ବିୟୋଗର କଳ୍ପନା ତାଙ୍କୁ ଅସହ୍ୟ କଷ୍ଟ ଦେଲା। ସେ ଗୁରୁଦେବଙ୍କ ଶଯ୍ୟା ନିକଟରେ ହାତ ଯୋଡ଼ି ଠିଆହୋଇ କାନ୍ଦି କାନ୍ଦି କହିଲେ, "ଗୁରୁଦେବ! ଆପଣ ମୋତେ ବି ସଙ୍ଗରେ ନେଇଯାଆନ୍ତୁ। ମୁଁ ଆପଣଙ୍କ ସେବାରୁ ବଞ୍ଚିତ ରହିବାକୁ ଚାହେଁନା।" ଶବରୀର ଦୁଃଖ ଦେଖି ମତଙ୍ଗ ଋଷି କହିଲେ—"ତୁ ଦୁଃଖ କରନା, ତୁ ବଡ଼ ଭାଗ୍ୟଶାଳିନୀ। ତୋତେ ବହୁତ ବଡ଼ ଦୁର୍ଲଭ ଅବସର ମିଳିବ, ମୋର ତ ସମୟ ହୋଇଗଲାଣି। ମୁଁ ଗଲେ ଦିବ୍ୟଲୋକରେ ଭଗବାନଙ୍କ ଦର୍ଶନ ପାଇବି; କିନ୍ତୁ ସ୍ୱୟଂ କୋଶଳାଧୀଶ ଶ୍ରୀରାମ ତୋତେ ଦର୍ଶନ ଦେବାକୁ ତୋ ଆଶ୍ରମକୁ ଆସିବେ। ଏବେ ସେ ଚିତ୍ରକୂଟରେ ଅଛନ୍ତି। ସେ ଏଠାକୁ ନିଶ୍ଚୟ ଆସିବେ। ତୁ ତାଙ୍କୁ ଏହି ଚର୍ମଚକ୍ଷୁରେ ଦର୍ଶନ କରିବୁ। ସେ ହେଉଛନ୍ତି ସାକ୍ଷାତ୍ ପରମାତ୍ମା ନାରାୟଣ। ତାଙ୍କ ଦର୍ଶନ ପାଇ ତୋର ଉଦ୍ଧାର ହୋଇଯିବ। ଶ୍ରୀରାମ ଯେତେବେଳେ ତୋ ଆଶ୍ରମକୁ ଆସିବେ, ତାଙ୍କର ସ୍ୱାଗତ ସତ୍କାର କରି ନିଜ ଜୀବନକୁ ସଫଳ କରିବୁ। ସେପର୍ଯ୍ୟନ୍ତ ତୁ ତାଙ୍କର ନାମ ଜପ କରି କରି ତାଙ୍କୁ ପ୍ରତୀକ୍ଷା କର।"

ଋଷିବର ତାଙ୍କୁ ଏପରି ଆଶ୍ୱାସନା ଦେଇ ଦିବ୍ୟଲୋକକୁ ଚାଲିଗଲେ। ଗୁରୁଦେବଙ୍କ ବାକ୍ୟ ତାଙ୍କ କାନରେ ବାରମ୍ବାର ପ୍ରତିଧ୍ୱନିତ ହେଲା। ତାଙ୍କର ଗୁରୁଙ୍କ ବାକ୍ୟରେ ଅଟଳ ବିଶ୍ୱାସ ଥିଲା। ଶ୍ରୀରାମ ତାଙ୍କର କୁଟୀରକୁ ଆସିବେ, ଏ କଥା ଭାବି ତାଙ୍କ ମନ ଆନନ୍ଦରେ ନାଚି ଉଠିଲା। ସେ ରାମନାମ ଜପରେ ତଲ୍ଲୀନ ହୋଇଗଲେ। କେବଳ ରାମଲକ୍ଷ୍ମଣଙ୍କ ଆଗମନର କଳ୍ପନା ତାଙ୍କ ମାନସ ପଟରେ ନାଚିବାକୁ ଲାଗିଲା। ସେ ବନର କନ୍ଦମୂଳରେ ଜୀବନ ନିର୍ବାହ କରି ଭଗବାନଙ୍କ ଶୁଭାଗମନର ପ୍ରତୀକ୍ଷାରେ ରହିଲେ।

ପ୍ରତୀକ୍ଷା ଭକ୍ତିମାର୍ଗର ଗୋଟିଏ ଉତ୍ତମ ସାଧନ। ଏଥିରେ ସାଧନା ତୀବ୍ରତର ହୁଏ। ମିଳନର ଇଚ୍ଛା, ବିରହ ଦୁଃଖ ଓ ବ୍ୟାକୁଳତା—ଏଗୁଡ଼ିକ ଭକ୍ତିର ଲକ୍ଷଣ। ଏଥିରେ ଭକ୍ତର ଭଗବାନଙ୍କ ସହ ବା ପ୍ରେମୀର ପ୍ରେମାସ୍ପଦଙ୍କ ସହ ମିଳନର ଯେଉଁ ତୀବ୍ର ଉତ୍କଣ୍ଠା ଜାତ ହୁଏ, ତାଦ୍ୱାରା ଅହର୍ନିଶ ତାଙ୍କରି ଚିନ୍ତନ ହୁଏ। ସେହି ଭାବନାରେ ସେ ସଦାସର୍ବଦା ଭାବିତ ହେଉଥାଏ। ଯେଉଁ ପ୍ରତୀକ୍ଷାରେ ନିର୍ଦ୍ଦିଷ୍ଟ

ସମୟର ଅନ୍ତରାଳ ଥାଏ, ସେଥିରେ ଅବଶ୍ୟ ଏତେ ବିହ୍ୱଳତା ହୁଏ ନାହିଁ, କିନ୍ତୁ ଯେଉଁ ପ୍ରତୀକ୍ଷାରେ କିଛି ନିର୍ଦ୍ଦିଷ୍ଟ ସମୟର ସୂଚନା ନ ଥାଏ, ସେଥିରେ ପ୍ରତୀକ୍ଷାର ପ୍ରତ୍ୟେକ କ୍ଷଣ ମିଳନର ଆଶାରେ ବ୍ୟତୀତ ହୁଏ। ସେ କେତେବେଳେ ଯେ ଆସିଯିବେ କ'ଣ ଠିକଣା?

ଦିନକୁ ଦିନ ଶବରୀର ପ୍ରଭୁ ଦର୍ଶନ ଲାଳସା ବଢ଼ିଚାଲିଥାଏ। କେଉଁଠି ଟିକେ ଖସ୍ ଖସ୍ ଶବ୍ଦ ଶୁଣିଦେଲେ ସେ ବାହାରକୁ ଦୌଡ଼ି ଆସୁଥାଏ; ମାତ୍ର କାହାରିକୁ ନ ଦେଖି ପୁଣି ଫେରି ଯାଉଥାଏ। କେବେ କେବେ ପାଗଳୀ ପରି ବୃକ୍ଷଲତାକୁ ଦେଖି ପଚାରେ, ତୁମେ ମୋ ରାମଙ୍କୁ ଆସୁଥିବାର ଦେଖିଛ କି? ସକାଳେ ଭାବେ, ସେ ବୋଧେ ସନ୍ଧ୍ୟାବେଳକୁ ଆସିବେ; ସନ୍ଧ୍ୟା ହେଲେ ଭାବେ, କାଲି ସକାଳେ ଆସିବେ। କାଳେ ଆସିଗଲେ କି?— ଏହା ଭାବି କେତେବେଳେ ବାହାରକୁ ଆସି ଟିକେ ଦୂର ପର୍ଯ୍ୟନ୍ତ ଦୃଷ୍ଟି ପକାଇ ପୁଣି ଫେରିଯାଏ। "ମୋ ରାମ ଆସିବେ। ତାଙ୍କ ସୁକୋମଳ ପାଦରେ କାଳେ କଣ୍ଟା ପଥର କଷ୍ଟ ଦେବ"—ଏହି ଭାବନାରେ ସେ ରାସ୍ତାକୁ ସବୁବେଳେ ପରିଷ୍କାର ରଖୁଥାଏ। ରାସ୍ତାରେ ଫୁଲ ବିଛାଉ ଥାଏ। ଘରକୁ ପ୍ରତିଦିନ ଗୋବରରେ ଲିପି ପରିଷ୍କାର ରଖେ। ତାଙ୍କର ସତ୍କାର କରିବାକୁ ହେବ; ନଚେତ୍ ସେ କ'ଣ ଭାବିବେ! ଭାବିବେ ଶବରୀକୁ ସ୍ୱାଗତ କରିବା ଜଣା ନାହିଁ। ଏଥିପାଇଁସେ ନିଜ ଭାବନା ଅନୁସାରେ ନିତି ନିତି ବନରୁ ଚାଖି ଚାଖି ମିଠା ମିଠା ଫଳ ତୋଳିଆଣି ରଖେ; କିନ୍ତୁ ପ୍ରଭୁ ଆସନ୍ତି ନାହିଁ। ଏହିପରି ପ୍ରଭୁଙ୍କ ଆଗମନର ପ୍ରତୀକ୍ଷାରେ ସେ ଏତେ ଆତୁର ହୋଇଯାଏ ଯେ ଆଶ୍ରମର ଆଖପାଖ ଲୋକେ ତାକୁ ପାଗଳୀ ବୋଲି ଭାବନ୍ତି।

ଥରେ ଶବରୀର ସକାଳୁ ଉଠିବା ଟିକେ ବିଳମ୍ବ ହୋଇଗଲା। ପମ୍ପା ସରୋବର ରାସ୍ତାରେ ତରବର ହୋଇ ସେବା କରୁ କରୁ ସ୍ନାନ ସାରି ଫେରୁଥିବା ଜଣେ ମୁନିଙ୍କ ଦେହରେ ସ୍ପର୍ଶ ହୋଇଗଲା। ସେହି ମୁନିଙ୍କ ମନରେ ତ ପ୍ରଥମରୁ ଶବରୀ ପ୍ରତି ଦ୍ୱେଷଭାବନା ହୋଇଯାଇଥିଲା; ତେଣୁ ସେ ରାଗିଗଲେ। ଯାହା ପ୍ରତି ଦ୍ୱେଷଭାବନା ହୋଇଯାଏ, ତା'ର ଭଲ କର୍ମ ମଧ୍ୟ ଖରାପ ଲାଗେ। ମୁନି ତାହାକୁ ନାନା ଶବ୍ଦରେ ଗାଳି ଦେଇ ଅନୁଚ୍ଚସ୍ୱରରେ କହିଲେ, "ଛି, ଛି, ସକାଳୁ ସକାଳୁ ଏ ଅଶୁଭମୂର୍ତ୍ତି ଶବରୀ ମୁହଁ ଆଜି ଦେଖିବାକୁ ପଡ଼ିଲା। ପୁଣି ଥରେ ସ୍ନାନ କରିବାକୁ ପଡ଼ିବ। ବହୁତ ଭକ୍ତି ଦେଖେଇ ହେଉଛି। ରାମ କାଳେ ଖାଲି ଯାରି ପାଖକୁ ନିତି ଆସୁଛନ୍ତି! ଏଇଟା ପାଗଳୀ ହୋଇଗଲାଣି।" ଏହା କହି ଋଷି ପୁଣି ସ୍ନାନ କରିବାକୁ ଚାଲିଗଲେ।

ଭଗବାନ ଭକ୍ତର ଅପମାନ ସହିପାରିଲେ ନାହିଁ। ସେ ଭକ୍ତର ମହିମା ବିସ୍ତାର କରିବା ପାଇଁ ଏକ ଲୀଳା ରଚିଦେଲେ। ମୁନି ସରୋବରରେ ପ୍ରବେଶ କରିବା ମାତ୍ରେ ସରୋବରର ଜଳ ଲାଲ ହୋଇଗଲା ଏବଂ ସେଥିରେ ଅସଂଖ୍ୟ ଜୀବାଣୁ ଜନ୍ମିପଡ଼ି ସାଲୁବାଲୁ ହେଲେ। ଭକ୍ତର ସ୍ପର୍ଶକୁ ଅପବିତ୍ର ଭାବିବା ଦୋଷରେ ଏପରି ହୋଇଗଲା; କିନ୍ତୁ ଋଷି ଏ କଥା ବୁଝି ନ ପାରି ଶବରୀକୁ ସ୍ପର୍ଶ କରି ଆସି ସେଥିରେ ସ୍ନାନ କରିବାରୁ ଏପରି ହେଲା ବୋଲି ଭାବିଲେ।

ଏଣେ ଶବରୀ ନିଜର ନମ୍ରତା ହେତୁ ଭାବିଲା ଯେ, ଆଜି ତା'ରି ଦୋଷ ହେତୁ ଜଣେ ଋଷିଙ୍କ ମନରେ କଷ୍ଟ ହେଲା। ଏହା ଭାବି ସେ ମନଦୁଃଖରେ ଆଶ୍ରମକୁ ଫେରିଗଲା। ଏହାପରେ ସରୋବରର ଜଳକୁ ପବିତ୍ର କରିବାକୁ କର୍ମକାଣ୍ଡ-ବିଶ୍ୱାସୀ ଋଷିମାନେ ଅନେକ ପ୍ରକାର ପ୍ରତିକାର କରି ମଧ୍ୟ ବିଫଳ ହେଲେ। ଏହିପରି ଅନେକ ଦିନ ବିତିଗଲା। ଶବରୀ ମନରେ ପ୍ରଭୁଦର୍ଶନ ଉତ୍କଣ୍ଠା ଦିନକୁ ଦିନ ତୀବ୍ରତର ହେଉଥାଏ। "କେବେ ମୋ ରାମ ଆସିବେ? କେବେ ଏ ତୃଷାର୍ତ୍ତ ନୟନ ତାଙ୍କୁ ଦର୍ଶନ କରି ତୃପ୍ତ ହେବ?" ଏହି ଭାବନାରେ ସେ ବାଟ ଗ୍ରହିଁ ବସିଥାଏ।

ଶେଷରେ ଦିନେ ତା'ର ପ୍ରତୀକ୍ଷାର ଅନ୍ତିମ ଦିବସ ଆସିଗଲା। କୁହାଯାଇଛି, ଭଗବାନଙ୍କୁ ଯେ ଯେପରି ଭଜେ ଭଗବାନ ମଧ୍ୟ ତାକୁ ସେହିପରି ଭଜନ୍ତି। ଆଜି ଭଗବାନ ଶ୍ରୀରାମ ଓ ଲକ୍ଷ୍ମଣ ମଧ୍ୟ ଶବରୀକୁ ଦର୍ଶନ କରିବାକୁ ବ୍ୟାକୁଳ। ପ୍ରଭୁ ଶ୍ରୀରାମ ଓ ଲକ୍ଷ୍ମଣ ଋଷିମୁନି ଓ ବନବାସୀମାନଙ୍କୁ ଶବରୀ ଆଶ୍ରମର ବାଟ ପଗ୍ରରି ପଗ୍ରରି ଆସି ପହଞ୍ଚିଗଲେ କୁଟିର ସମ୍ମୁଖରେ। ଶ୍ୟାମଳ ଗୌର ଦୁଇଭାଇଙ୍କୁ ଦର୍ଶନ କରି ଶବରୀ ଭାବବିହ୍ୱଳ ହୋଇଗଲା। ତା'ର ବାକ୍‌ଶକ୍ତି ରୁଦ୍ଧ ହୋଇଗଲା, ନେତ୍ରଯୁଗଳ ପ୍ରଫୁଲ୍ଲିତ ହୋଇଉଠିଲେ। ସତରେ ମୋ ରାମ ଆଜି ବଡ଼ ବଡ଼ ଋଷିମୁନିଙ୍କ ଆଶ୍ରମ ଛାଡ଼ି ମୋତେ ଦର୍ଶନ ଦେବାକୁ ଆସିଛନ୍ତି, ଏ ଭାବନାରେ ତା'ର ନେତ୍ର ଯୁଗଳରୁ ବହି ଆସିଲା ଅଜସ୍ର ଅଶ୍ରୁର ଧାରା। ପ୍ରଭୁଙ୍କ କୋମଳ ବାଣୀରେ ହଠାତ୍ ତା'ର ସ୍ତମ୍ଭଭାବ ଦୂର ହୋଇଗଲା। ଆରେ, ପ୍ରଭୁଙ୍କୁ ସ୍ୱାଗତ ନ କରି ମୁଁ ଠିଆ ହୋଇଛି। ଏହା ଭାବି ସେ ପ୍ରଥମେ ସାଷ୍ଟାଙ୍ଗ ପ୍ରଣିପାତ କଲା। ସେହି ଲୁହର ଧାରାରେ ସତେ ଯେପରି ଧୋଇଦେଲା ପ୍ରଭୁଙ୍କର ଚରଣକମଳ ଯୁଗଳକୁ। ପ୍ରଭୁ ତାହାକୁ ମାତା ବୋଲି ସମ୍ବୋଧନ କରି ଉଠାଇଲେ। ପ୍ରଭୁଙ୍କ କରକମଳ ସ୍ପର୍ଶରେ ସେ ପ୍ରକୃତିସ୍ଥ ହେଲା। ଅତି ଆଦରରେ ଆଶ୍ରମକୁ ଡାକି ନେଇଗଲା। ଆନନ୍ଦରେ ସେ ପାଗଳୀ ପରି ହୋଇଯାଇଥାଏ। କ'ଣ କରିବ,

ପ୍ରଭୁଙ୍କୁ କିପରି ସତ୍କାର କରିବ, ଆଗ ପାଦ ଧୋଇଦେବ କି ଆସନ ବିଛାଇବ— କିଛି ଭାବିପାରୁ ନ ଥାଏ। ତା'ର ଗୋଡ଼ ତଳେ ପଡୁ ନ ଥାଏ। ପ୍ରଭୁ ତା'ର ପ୍ରେମଭାବ ଓ ମନୋଦଶା ଦେଖି ଭାବବିଭୋର ହୋଇଯାଉଥାନ୍ତି, ମନ୍ଦ ମନ୍ଦ ହସୁଥାନ୍ତି। ତରବର ହୋଇ ସେ ପ୍ରଭୁଙ୍କୁ ପାଦ୍ୟ-ଅର୍ଘ୍ୟ ଦ୍ୱାରା ସତ୍କାର କଲା। ତା'ପରେ ବନରୁ ତାଙ୍କ ପାଇଁ ଶ୍ରଦ୍ଧାରେ ଚାଖି ଚାଖି ତୋଳି ଆଣି ରଖିଥିବା ମଧୁର କୋଳି ଓ ଫଳ ଆଣି ପ୍ରଭୁଙ୍କୁ ଅର୍ପଣ କଲା। ପ୍ରଭୁ ତାହାକୁ ଆନନ୍ଦରେ ଗୋଟି ଗୋଟି ଉଠାଇ ଖାଉଥାନ୍ତି ଏବଂ ସେହି ଫଳର ସ୍ୱାଦକୁ ବାରମ୍ବାର ପ୍ରଶଂସା କରୁଥାନ୍ତି। କାହିଁକି ବା ପ୍ରଶଂସା ନ କରିବେ! ପ୍ରଭୁ ତ ଭାବଗ୍ରାହୀ। ସେଥିରେ ଶବରୀର ଅନାବିଳ ସ୍ନେହ, ସରଳତା ଓ ଅମାୟିକ ଭାବ ମିଶ୍ରିତ ହୋଇ ତାହାର ସ୍ୱାଦକୁ ବହୁଗୁଣିତ କରିଦେଇଥାଏ। ଶବରୀର ହାତରୁ ଖାଇବାବେଳେ ଭଗବାନ ନିଜ ମାତା କୌଶଲ୍ୟାଙ୍କ ହାତରୁ ଖାଇଲା ଭଳି ସ୍ୱାଦ ଅନୁଭବ କରୁଥିଲେ। ସେହି ସ୍ୱାଦକୁ ସେ କେବେ ଭୁଲି ପାରି ନ ଥିଲେ।

ଥରେ ପ୍ରଭୁ ରାମଚନ୍ଦ୍ର ଆମନ୍ତ୍ରିତ ହୋଇ ଜନକପୁରୀ ଯାଇଥିଲେ। ସେଠାରେ ଜଗନ୍ମାତା ଜାନକୀ ଓ ତାଙ୍କର ସଖୀମାନେ ପ୍ରଭୁଙ୍କ ସତ୍କାର ପାଇଁ ଅନେକ ଅନ୍ନ-ବ୍ୟଞ୍ଜନ ତିଆରି କଲେ। ପରିଶେଷରେ ପ୍ରଭୁଙ୍କୁ ପରିହାସ କରିବା ଲକ୍ଷ୍ୟରେ ସେମାନେ ଗୋଟିଏ ଉପାୟ ପାଞ୍ଚିଲେ। ପରସ୍ପର ବିଚାର କଲେ, ସବୁ ଜିନିଷ ବାଢ଼ି ସାରି ପଚାରିବା ଯେ କେଉଁ ଜିନଷ ଭଲ ହୋଇଛି? ଯଦି ସୀତାଙ୍କ ହାତରନ୍ଧାକୁ ଭଲ କହନ୍ତି, ତେବେ କହିବା ଯେ "ଖାଲି ଘର ଜିନିଷ ଭଲ ଲାଗୁଛି!" ଆଉ ଯଦି ଆମ ହାତରନ୍ଧାକୁ ଭଲ କହନ୍ତି, ତେବେ କହିବା ଯେ "ପରଘର ଜିନିଷ ଭଲ ଲାଗୁଛି।" ସଖୀମାନେ ଚତୁରତାର ସହିତ ଅଲଗା ଅଲଗା ଜାଗାରେ ନାନା ପ୍ରକାର ବ୍ୟଞ୍ଜନ ବାଢ଼ି ସାରି କେଉଁ ପଦାର୍ଥ ସ୍ୱାଦିଷ୍ଟ ହୋଇଛି ବୋଲି ପଚାରିଲେ। କିନ୍ତୁ ଜଗତଜିତା ରାମଚନ୍ଦ୍ରଙ୍କୁ କିଏ ବା ଜିତି ପାରିବ? ସେ ଏମାନଙ୍କର ପ୍ରଶ୍ନର ଉତ୍ତରରେ ନୂଆ କଥାଟିଏ କହିଲେ, ଯାହାଫଳରେ ସଖୀମାନଙ୍କୁ ପରିହାସ ପାଇଁ ସୁଯୋଗ ମିଳିଲା ନାହିଁ। ସେ କହିଲେ—"ଆଜିଯାଏ ଘରେ, ଗୁରୁକୁଳରେ, ସାଙ୍ଗସାଥିଙ୍କ ଘରେ, ଶ୍ୱଶୁର ଘରେ ଯେଉଁଠି ଯେତେ ବି ସତ୍କାର ପାଇଛି, ସବୁ ଶବରୀ ମାଆର ଅଇଁଠା ଫଳର ତଳେ। ଶବରୀର ଜଙ୍ଗଲିଆ ଫଳରେ ଯେଉଁ ସ୍ୱାଦ ଥିଲା, ତାହା ଏହି ବିବିଧ ବ୍ୟଞ୍ଜନରେ ନାହିଁ।" ଗୋସ୍ୱାମୀ ତୁଳସୀଦାସଙ୍କ ଶବ୍ଦରେ—

**ଘର ଗୁରୁଗୃହ ପ୍ରିୟ ସଦନ ସାସୁରେ ଭଇ ଜବ ଜହଁ ପହୁନାଈ।**

**ତବ ତହଁ କହୀ ଶବରୀ କେ ଫଲନି କୀ ରୁଚି ମାଧୁରୀ ନ ପାଈ ॥**

(ବିନୟ ପତ୍ରିକା)

ପ୍ରଭୁ ପ୍ରଥମେ ଶବରୀ ଆଶ୍ରମରେ ପଦାର୍ପଣ କରିଥିବାରୁ ଋଷିମୁନିମାନେ ନିଜକୁ ଲଜ୍ଜିତ ଅନୁଭବ କଲେ। ସେମାନଙ୍କର ବ୍ରାହ୍ମଣତ୍ୱର ଅଭିମାନ ଚୂରମାର ହୋଇଗଲା। ସେମାନେ ଶବରୀ ଆଶ୍ରମକୁ ଆସି ପ୍ରଭୁଙ୍କୁ ଦର୍ଶନ ଓ ପ୍ରଣାମ କଲେ। ହେଲେ ସେମାନେ ସେମାନଙ୍କ ସମସ୍ୟା ପାଇଁ ଅଧିକ ଚିନ୍ତିତ ଥିଲେ; ତେଣୁ ପ୍ରଥମେ ସରୋବର ଜଳ ଶୁଦ୍ଧ ହେବାର ଉପାୟ ପଚ୍ଚାରିଲେ। ସମସ୍ତେ ସ୍ୱାର୍ଥସାଧନାରେ ତତ୍ପର, ନିର୍ମଳ ଭକ୍ତି କାହିଁ? ପ୍ରଭୁ କହିଲେ, ଏହା ଭକ୍ତ ଅପମାନର ପରିଣାମ। ପ୍ରଥମେ ଶବରୀର ପାଦସ୍ପର୍ଶ କର ଏବଂ ତା'ପରେ ଶବରୀକୁ ନେଇ ତା'ର ପାଦରେ ସେହି ଜଳକୁ ସ୍ପର୍ଶ କରାଅ। ତା'ହେଲେ ସେହି ଜଳ ପୂର୍ବବତ୍ ପବିତ୍ର ହୋଇଯିବ। ଋଷିମାନେ ଭଗବାନଙ୍କ ଆଜ୍ଞା ପାଳନ କଲେ। ସରୋବରର ଜଳ ନିର୍ମଳ ହୋଇଗଲା। ଭକ୍ତିର ମହିମା ଦେଖି ସେମାନଙ୍କର ଅନ୍ତଃକରଣ ମଧ୍ୟ ନିର୍ମଳ ହୋଇଗଲା। ପ୍ରଭୁ ଏହିରୂପେ ଭକ୍ତିର ମହତ୍ତ୍ୱ ପ୍ରକାଶିତ କରି ସେମାନଙ୍କର ଭ୍ରମ ଦୂର କରିଦେଲେ।

ମାତା ଶବରୀଙ୍କର ଜୀବନ ଧନ୍ୟ ହୋଇଗଲା। ତାଙ୍କୁ ସାଧୁସେବା ଓ ସତ୍ସଙ୍ଗତିର ଫଳ ମିଳିଗଲା। ଗୁରୁ ମତଙ୍ଗ ଋଷିଙ୍କ କୃପାରୁ ଶ୍ରୀରାମ ଲକ୍ଷ୍ମଣଙ୍କ ଦର୍ଶନ ପାଇଲେ। ସେ ନିଜକୁ ଅତ୍ୟନ୍ତ ହୀନ ଓ ଅଧମ ବୋଲି କହି ଭଗବାନଙ୍କୁ ସ୍ତୁତି କରିବାର ଅକ୍ଷମତା ଦର୍ଶାଇବାରୁ ଭଗବାନ ତାଙ୍କୁ ପ୍ରଶଂସା କରି କହିଲେ—ମୁଁ ଜାତି, ପଂକ୍ତି, କୁଳ, ବଡ଼ିମା, ବଳ, ଗୁଣ, ଚତୁରତା ଦେଖେ ନାହିଁ। ମୁଁ କେବଳ ଭକ୍ତିରେ ହିଁ ସନ୍ତୁଷ୍ଟ ହୁଏ। ସମସ୍ତ ଗୁଣ ଥାଇ ମଧ୍ୟ ଯେଉଁ ମନୁଷ୍ୟଠାରେ ଭକ୍ତି ନାହିଁ, ତା'ର ଜୀବନ ବୃଥା। ଶେଷରେ ପ୍ରଭୁ ଶ୍ରୀରାମ ତାକୁ ନବଧା ଭକ୍ତିର ରହସ୍ୟ ବୁଝାଇଲେ ଏବଂ କହିଲେ—ଏହି ନବଧା ଭକ୍ତି ମଧ୍ୟରୁ ଗୋଟିଏ ବି ଯାହା ପାଖରେ ଥାଏ ସେ ସ୍ତ୍ରୀ, ପୁରୁଷ, ଛୋଟ, ବଡ଼, ଚର-ଅଚର ଯେ କେହି ହୋଇଥାଉ ନା କାହିଁକି ମୋର ଅତି ପ୍ରିୟ। ପୁଣି ତୁମ ପାଖରେ ତ ଏ ନଅଟି ଯାକ ଭକ୍ତି ରହିଛି। ତେଣୁ ତୁମ ଉଦ୍ଧାରରେ ପୁଣି ସନ୍ଦେହ କ'ଣ? ତୁମକୁ ମୁଁ ଏଭଳି ଗତି ଦେବି, ଯାହା କି ଯୋଗୀଜନଙ୍କୁ ମଧ୍ୟ ଦୁର୍ଲଭ। ଶେଷରେ ଶବରୀ ନିଜ ଗୁରୁଙ୍କ ସମାଧିସ୍ଥଳ ଦେଖାଇ ଦେଇ ନିଜେ ଏ ନଶ୍ୱର ସଂସାରରୁ ବିଦାୟ ମାଗିଲେ। ପ୍ରଭୁଙ୍କ ସମକ୍ଷରେ ହିଁ ଶବରୀ ପାର୍ଥିବ ଶରୀର ତ୍ୟାଗ କରି ପରମ ଧାମକୁ ଚ୍ଚାଲିଗଲେ।



# ଦେବୀ ଦ୍ରୌପଦୀ

ଦେବୀ ଦ୍ରୌପଦୀ ପାଞ୍ଚାଳନରେଶ ଦ୍ରୁପଦଙ୍କର ଅଯୋନିସମ୍ଭୂତା କନ୍ୟା ଥିଲେ । ସେ ଯଜ୍ଞକୁଣ୍ଡରୁ ଉତ୍ପନ୍ନ ହୋଇଥିଲେ । ସେ କୃଷ୍ଣବର୍ଣ୍ଣର ହୋଇଥିଲେ ମଧ୍ୟ ତାଙ୍କର ରୂପଲାବଣ୍ୟ ଥିଲା ଅନୁପମ । ସେହି ସମୟରେ ତାଙ୍କ ପରି ସୁନ୍ଦରୀ ସାରା ପୃଥିବୀରେ ମଧ୍ୟ ଆଉ କେହି ନ ଥିଲେ । ତାଙ୍କ ଦେହରୁ ପଦ୍ମର ସୁଗନ୍ଧ ବାହାରି କୋଶେ ପର୍ଯ୍ୟନ୍ତ ଅଞ୍ଚଳକୁ ସୁଗନ୍ଧିତ କରି ଦେଉଥିଲା । ତାଙ୍କ ପ୍ରାକଟ୍ୟ ସମୟରେ ଏହିପରି ଶୂନ୍ୟବାଣୀ ହୋଇଥିଲା—''କ୍ଷତ୍ରିୟସଂହାର ଦ୍ୱାରା ଦେବତାମାନଙ୍କ କାର୍ଯ୍ୟ ସିଦ୍ଧି କରିବା ଉଦ୍ଦେଶ୍ୟରେ ଏହି ନାରୀରତ୍ନଙ୍କର ଆବିର୍ଭାବ ହୋଇଛି ।'' ସେ କୃଷ୍ଣବର୍ଣ୍ଣର ହୋଇଥିବାରୁ ଲୋକେ ତାଙ୍କୁ 'କୃଷ୍ଣା' ବୋଲି କହୁଥିଲେ । ପୂର୍ବଜନ୍ମରେ ଶିବ ତାଙ୍କୁ ଦେଇଥିବା ବରଦାନ ହେତୁ ତାଙ୍କୁ ପାଞ୍ଚଟି ସ୍ୱାମୀ ମିଳିଥିଲେ । କେବଳ ଅର୍ଜୁନ ତାଙ୍କୁ ସ୍ୱୟଂବର ସଭାରେ ଜିତି ଆଣିଥିଲେ ମଧ୍ୟ ମାତା କୁନ୍ତୀଙ୍କ ଆଦେଶରେ ତାଙ୍କୁ ପାଞ୍ଚଭାଇ ବିବାହ କରିଥିଲେ ।

ଦ୍ରୌପଦୀ ଥିଲେ ଜଣେ ଉଚ୍ଚକୋଟିର ପତିବ୍ରତା ଏବଂ ଭଗବଭକ୍ତା । ସେ ଥିଲେ ଆଦର୍ଶ ଭଗବତ୍ ବିଶ୍ୱାସର ପ୍ରତିମୂର୍ତ୍ତି । ଶ୍ରୀକୃଷ୍ଣଙ୍କ ଚରଣରେ ତାଙ୍କର ଅବିଚଳ ଭକ୍ତି ଥିଲା । ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ନିଜର ରକ୍ଷକ, ହିତୈଷୀ ଏବଂ ପରମ ଆତ୍ମୀୟ ମାନିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ସର୍ବବ୍ୟାପକତା ଏବଂ ସର୍ବଶକ୍ତିମତ୍ତା ପ୍ରତି ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ତାଙ୍କ ଚରିତରୁ ଏହାର ଅନେକ ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ଧର୍ମରାଜ ଯୁଧିଷ୍ଠିର ଦ୍ରୌପଦୀଙ୍କୁ ଜୁଆରେ ହାରିଯାଇଥାନ୍ତି । ଦୁର୍ଯ୍ୟୋଧନର ପ୍ରେରଣାରେ ଦୁଷ୍ଟ ଦୁଃଶାସନ ମହାରାଣୀ ଦ୍ରୌପଦୀଙ୍କ କେଶ ଧରି ଘୋଷାରି ଘୋଷାରି ସଭା ମଧ୍ୟକୁ ନେଇ ଆସିଥାଏ । ବିଚାରୀ ଦ୍ରୌପଦୀ ସେତେବେଳେ ଋତୁମତୀ ଓ ଏକବସ୍ତ୍ରା ଥାନ୍ତି । ତଥାପି ସେହି ତେଜସ୍ୱିନୀ ନାରୀ ସଭାମଧ୍ୟକୁ ଆସି ନିଜ ଅଶ୍ରୁର ବେଗକୁ ରୋକି ଧୈର୍ଯ୍ୟର ସହ ନ୍ୟାୟ ମାଗିଲେ । ସେ ପଚାରିଲେ, ''ଧର୍ମରାଜ ନିଜେ ହାରିଯିବା ପରେ ଜଣେ ରାଜରାଣୀକୁ ଜୁଆରେ ବାଜିରେ ଲଗାଇବାର ଅଧିକାର ତାଙ୍କର ଥିଲା କି? ସେ ମୋତେ ବାଜିରେ ଲଗାଇବା ପୂର୍ବରୁ ଅନ୍ୟ ପାଣ୍ଡବଙ୍କର ଅନୁମତି ନେଇଥିଲେ କି?''

କେବଳ ବିକର୍ଣ୍ଣ ଓ ବିଦୁରଙ୍କୁ ଛାଡିଦେଲେ ଆଉ କେହି ତାଙ୍କ ସପକ୍ଷରେ

କିଛି ମନ୍ତବ୍ୟ ଦେଲେ ନାହିଁ । ବୋଧହୁଏ ଦୁଷ୍ଟମାନଙ୍କ ମହାସଂହାର ପାଇଁ ଭଗବାନଙ୍କର ଯୋଗମାୟା କ୍ଷେତ୍ର ପ୍ରସ୍ତୁତ କରୁଥିଲା । ସମସ୍ତେ ମୌନ ରହିଲେ । କେହି ଏ ଘଟଣାର ପ୍ରତିବାଦ କରିପାରିଲେ ନାହିଁ । ପାଣ୍ଡବମାନେ ଜୁଆର ସର୍ତ୍ତରେ ଆବଦ୍ଧ ଥିଲେ । ଭୀଷ୍ମ, ଦ୍ରୋଣାଦି ଧର୍ମାତ୍ମାଙ୍କର ବୁଦ୍ଧି ମଧ୍ୟ ପାପୀମାନଙ୍କ ଅନ୍ନ ପ୍ରଭାବରେ ବିକୁଣ୍ଠିତ ଓ ସଙ୍କୁଚିତ ହୋଇଯାଇଥିଲା । ରାଜା ଧୃତରାଷ୍ଟ୍ର କେବଳ ବାହ୍ୟ ଦୃଷ୍ଟିରୁ ଅନ୍ଧ ନ ଥିଲେ, ପୁତ୍ରମୋହରେ ଜ୍ଞାନନେତ୍ର ମଧ୍ୟ ତାଙ୍କର ଲୋପ ପାଇଯାଇଥିଲା । ସେଥିପାଇଁ ଦ୍ରୌପଦୀ ସେମାନଙ୍କର ସାହାଯ୍ୟ ଆଶା କରି ନିରାଶ ହୋଇଗଲେ । କର୍ଣ୍ଣ ତାଙ୍କୁ ବେଶ୍ୟା କହିଲା, ଦୁର୍ଯ୍ୟୋଧନ ତାଙ୍କୁ ବସାଇବାକୁ ନିଜ ଜଂଘ ଦେଖାଇଲା, ଦୁଃଶାସନ ତାଙ୍କୁ ଉଲଗ୍ନ କରିବାକୁ ଚେଷ୍ଟା କଲା । ଦ୍ରୌପଦୀ ନିଜର ହାତ ଓ ଦାନ୍ତରେ ପାରୁ ପର୍ଯ୍ୟନ୍ତ ନିଜର ଲାଜ ରଖିବାକୁ ଚେଷ୍ଟା କଲେ, କିନ୍ତୁ ମହାବଳୀ ଦୁଃଶାସନର ବଳ ଆଗରେ ସୁକୁମାରୀ ଦ୍ରୌପଦୀଙ୍କ ସାମର୍ଥ୍ୟ ବା କେତେ! ମହାରଥୀ ପାଣ୍ଡବ ଓ ଧର୍ମଜ୍ଞ ପୁରୁଷଙ୍କ ଠାରୁ ତାଙ୍କର ଭରସା ତ ତୁଟି ସାରିଥିଲା, ଏଥର ନିଜ ଉପରୁ ବି ଭରସା ତୁଟିଗଲା ।

ମହାପୁରୁଷମାନେ ଯଥାର୍ଥରେ କହନ୍ତି, ନିଜର ବଳ ଉପରେ ଭରସା ଥିବା ପର୍ଯ୍ୟନ୍ତ ଶରଣାଗତିର ପୂର୍ଣ୍ଣତା ହୋଇପାରେ ନାହିଁ । ଏଥର ସେ ଭଗବାନଙ୍କ ଭରସାରେ ଦୁଇ ହାତ ଟେକି ଦେଲେ । କେବଳ ଏତିକି ଅପୂର୍ଣ୍ଣତା, ଏତିକି ତ୍ରୁଟି ରହିଯାଇଥିଲା ତାଙ୍କ ସମର୍ପଣରେ, ତାଙ୍କ ଶରଣାଗତିରେ । ଏଥର ତାହା ପୂର୍ଣ୍ଣ ହୋଇଗଲା । ସେ ମନେ ମନେ କହିଦେଲେ, "ହେ କୃଷ୍ଣ! ମୁଁ ତୁମର । ମୋର ଲାଜ ମଧ୍ୟ ତୁମର ଲାଜ । ତୁମେ ମୋର ଲାଜ ରଖିଲେ ରଖ, ନ ରଖିଲେ ନାହିଁ । ତୁମ ଇଚ୍ଛା । ତୁମର ଶରଣାଗତ ହୋଇ ମଧ୍ୟ ରକ୍ଷା ହୋଇ ନ ପାରିଲେ, ଏଥିର ମୋର କ'ଣ ଯିବ? ତୁମରି କୀର୍ତ୍ତି ନାଶଯିବ । ତୁମକୁ ଲାଜ ହେବ ।" ସେ ଆକୁଳ କଣ୍ଠରେ ଡାକିଲେ—

ଗୋବିନ୍ଦ ଦ୍ୱାରକାବାସିନ୍ କୃଷ୍ଣ ଗୋପୀଜନପ୍ରିୟ ।
କୌରବୈଃ ପରିଭୂତାଂ ମାଂ କିଂ ନ ଜାନାସି କେଶବ ॥
ହେ ନାଥ ହେ ରମାନାଥ ବ୍ରଜନାଥାର୍ତ୍ତିନାଶନ ।
କୌରବାର୍ଣ୍ଣବମଗ୍ନାଂ ମାମୁଦ୍ଧରସ୍ୱ ଜନାର୍ଦ୍ଦନ ॥
କୃଷ୍ଣ କୃଷ୍ଣ ମହାଯୋଗିନ୍ ବିଶ୍ୱାତ୍ମନ୍ ବିଶ୍ୱଭାବନ ।
ପ୍ରପନ୍ନାଂ ପାହି ଗୋବିନ୍ଦ କୁରୁମଧ୍ୟେଽବସୀଦତୀନ୍ ॥

"ହେ ଗୋବିନ୍ଦ! ହେ ଦ୍ୱାରକାବାସୀ! ହେ ଶ୍ରୀକୃଷ୍ଣ! ହେ ଗୋପୀଜନବଲ୍ଲଭ! ହେ କେଶବ! ମୁଁ କୌରବଙ୍କ ଦ୍ୱାରା ଆଜି ଅପମାନିତ ହେଉଛି; ଏକଥା କଣ ତୁମକୁ ଅଜଣା? ହେ ନାଥ! ହେ ରମାନାଥ! ହେ ବ୍ରଜନାଥ! ହେ ଆର୍ତ୍ତତ୍ରାଣ ଜନାର୍ଦ୍ଦନ! ମୁଁ କୌରବସମୂହରୂପୀ ଅଥଳ ସମୁଦ୍ରରେ ବୁଡ଼ିଯାଉଛି । ମୋତେ ଏଠୁ ଉଦ୍ଧାର କର । ହେ କୃଷ୍ଣ! ହେ ମହାଯୋଗୀ! ହେ ବିଶ୍ୱାତ୍ମା! ହେ ବିଶ୍ୱର ଜୀବନଦାତା ଗୋବିନ୍ଦ! ମୁଁ କୌରବଙ୍କ ଘେର ଭିତରେ ଘୋର ସଙ୍କଟରେ ପଡ଼ିଯାଇଛି । ମୁଁ ତୁମର ଶରଣ ଯାଉଛି, ମୋତେ ରକ୍ଷା କର ।"

ଦ୍ରୌପଦୀଙ୍କର ଏହି କରୁଣ ଆହ୍ୱାନରେ ଆର୍ତ୍ତଭାବ ସ୍ପଷ୍ଟ ଦୃଷ୍ଟିଗୋଚର ହୁଏ । ସେ ଭଗବାନଙ୍କର ଗୁଣାନୁବାଦ ବା ସ୍ତୁତି ନ କରି କେବଳ ଭଗବାନଙ୍କର ବିଭିନ୍ନ ନାମ ଧରି ବ୍ୟାକୁଳ ହୋଇ ତାଙ୍କୁ ଡାକ ପକାଇଥିଲେ । ତାହା ଥିଲା ଅନାବିଳ ହୃଦୟର ଅନ୍ତରତମ ପ୍ରଦେଶରୁ ବାହାରି ଆସିଥିବା କରୁଣାଭରା ଆର୍ତ୍ତନାଦ । ତାହାକୁ ଭଗବାନ ନ ଶୁଣନ୍ତେ ବା କିପରି? ତାଙ୍କର ତ ସର୍ବତ୍ର କାନ ରହିଛି । ସେ ସର୍ବତ୍ର ବିଦ୍ୟମାନ ମଧ୍ୟ । ଏପରିକି କୁରୁସଭାରେ ଓ ଦ୍ରୌପଦୀଙ୍କ ହୃଦୟରେ ମଧ୍ୟ ସେ ବିଦ୍ୟମାନ ଥିଲେ । କିନ୍ତୁ ଭାବ ଅନୁସାରେ ଭଗବାନ ପ୍ରକଟ ହୋଇଥାନ୍ତି । ଦ୍ରୌପଦୀ **'ଦ୍ୱାରକାବାସୀନ୍'** କହି ଡାକିଥିଲେ । ତେଣୁ ଭଗବାନ ପଲଙ୍କରୁ ଉଠି ରଥ ଆଦିକୁ ଅପେକ୍ଷା ନ କରି ଦ୍ୱାରିକାରୁ ଅବିଳମ୍ବେ ଆସି ପହଞ୍ଚିଗଲେ ଏବଂ ଧର୍ମରୂପରେ ଦ୍ରୌପଦୀଙ୍କ ବସ୍ତ୍ରରେ ଲୁଚି ରହି ତାଙ୍କର ଲଜ୍ୟା ରକ୍ଷା କଲେ । ଭଗବାନଙ୍କ କୃପାରୁ ତାଙ୍କର ଶାଢ଼ୀ ଅନନ୍ତ ଗୁଣ ବଢ଼ିଗଲା । ଦୁଃଶାସନ ଯେତେ ଟାଣିଲା, ସେତେ ବଢ଼ିଚାଲିଲା । ଗ୍ରହୁଁ ଗ୍ରହୁଁ ସେଠାରେ ଶାଢୀର ଗୋଟାଏ ବିରାଟ ଗଦା ହୋଇଗଲା । ଦୁଃଶାସନର ବଳଶାଳୀ ବାହୁ ଥକିଗଲା, ଅଥଚ ଶାଢ଼ୀ ଦ୍ରୌପଦୀଙ୍କ ଦେହରୁ ଖସିଲା ନାହିଁ । ସେଠାରେ ଉପସ୍ଥିତ ଥିବା ସମସ୍ତ ସଭାସଦ୍ ଭଗବଭକ୍ତି ଓ ପତିବ୍ରତାଧର୍ମର ଏହି ଅଦ୍ଭୁତ ପ୍ରଭାବ ଦେଖି ଆଚମ୍ବିତ ହୋଇଗଲେ । ପରିଶେଷରେ ଦୁଃଶାସନ ହାର ମାନି ଲଜ୍ଜିତ ହୋଇ ବସିପଡ଼ିଲା । ଭକ୍ତବତ୍ସଳ ପ୍ରଭୁ ଏହିରୂପେ ଭକ୍ତର ମାନ ରକ୍ଷା କଲେ ।

ଭଗବାନ ଦ୍ରୌପଦୀଙ୍କ ମାନ ରକ୍ଷା କରି ମଧ୍ୟ ନିଜେ ତାଙ୍କ ଉପରେ କିଛି ଅନୁଗ୍ରହ କରିଥିବା ଅନୁଭବ କରି ନାହାନ୍ତି । ସେ କହିଥିଲେ, "ଦ୍ରୌପଦୀ! ଏଥିରେ ମୁଁ କିଛି କରି ନାହିଁ । ତୁମେ ମୋର ଭକ୍ତଙ୍କର ଉପକାର କରି ମୋତେ ଯେଉଁ ଋଣୀ କରିଦେଇଥିଲ, ସେହି ଋଣ ଆଜି ମୁଁ ପରିଶୋଧ ମାତ୍ର କଲି ।" ତାହା କେଉଁ

ଋଣ ଥିଲା, ସେହି ପ୍ରସଙ୍ଗରେ ଦୁଇଟି ଭିନ୍ନ ଭିନ୍ନ ଆଖ୍ୟାନ ଶୁଣିବାକୁ ମିଳେ।

ଥରେ ଦ୍ରୌପଦୀ ପାଣି ଆଣିବାକୁ ନଦୀକୁ ଯାଇଥିଲେ। ଜଣେ ସାଧୁ-ମହାତ୍ମା ପାଣିରେ ପଶି ସ୍ନାନ କରୁଥିବା ବେଳେ ଜଳସ୍ରୋତରେ ତାଙ୍କର କୌପୁନି ଭାସିଗଲା। ସେ ଲଜ୍ଜାବଶତଃ ପାଣିରୁ ଉପରକୁ ଆସି ପାରୁ ନ ଥାନ୍ତି; ତେଣେ ନଦୀର ଥଣ୍ଡା ଜଳରେ ତାଙ୍କୁ ବହୁତ କଷ୍ଟ ମଧ୍ୟ ଅନୁଭବ ହେଉଥାଏ। ଦ୍ରୌପଦୀ ଏ କଥାକୁ ସହଜରେ ବୁଝିଗଲେ ଏବଂ ସେ ନିଜ ଶାଢ଼ୀରୁ ଖଣ୍ଡେ କନା ଚିରି ମହାତ୍ମାଙ୍କ ପାଖକୁ ଫୋପୋଡ଼ିଲେ। ତାଙ୍କର ଲଜ୍ଜା ନିବାରଣ କରିବାର ପୁଣ୍ୟଫଳ ଆଜି ଦ୍ରୌପଦୀଙ୍କୁ ଭଗବାନ ଦେଲେ। ତାହା ଅନନ୍ତଗୁଣ ହୋଇ କୁରୁସଭାତଳେ ଦ୍ରୌପଦୀଙ୍କର ମଧ୍ୟ ଲଜ୍ଜା ନିବାରଣ କଲା।

ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ ରାଜସୂୟ ଯଜ୍ଞ ସଭାରେ ଶିଶୁପାଳ ଉପରକୁ ଚକ୍ର ପେଶିବା ବେଳେ ଭଗବାନ୍ ଶ୍ରୀକୃଷ୍ଣଙ୍କ ହାତର ଅଙ୍ଗୁଳି ଟିକେ କଟିଗଲା। ହଠାତ୍ ତାଙ୍କ ହାତରୁ ଧାର ଧାର ରକ୍ତ ବହିବା ଦେଖି ରାଜରାଣୀ ଦ୍ରୌପଦୀ ସହି ପାରିଲେ ନାହିଁ। ସେ ଉପଚାର ପାଇଁ ପ୍ରତୀକ୍ଷା ନ କରି ନିଜର ରାଜସିକ ଶୋଭାମୟ ବସ୍ତ୍ରକୁ ତତ୍‌କ୍ଷଣାତ୍ ଚିରିଦେଇ ତାଙ୍କର ଅଙ୍ଗୁଳିକୁ ବାନ୍ଧି ଦେଲେ। ସେହି ଛୋଟ କନାଖଣ୍ଡିକର ଗୋଟି ଗୋଟି ସୂତାର ଋଣ ଆଜି ଭଗବାନ୍ ସୁଝିଲେ।

କେହି କହି କହନ୍ତି ସତ୍ୟଭାମାଙ୍କର ଗର୍ବଗଞ୍ଜନ ପାଇଁ ଭଗବାନ ନିଜ ଅଙ୍ଗୁଳି କାଟିବାର ଏକ ଲୀଳା ରଚିଲେ। ଧାର ଧାର ରକ୍ତ ବହିଗଲିଲା। ସତ୍ୟଭାମା ଓ ଅନ୍ୟ ପାଟରାଣୀମାନେ ତରବର ହୋଇ ଧାଇଁଲେ କନା ଖଣ୍ଡେ ଆଣିବାକୁ। କିନ୍ତୁ ରାଜପ୍ରସାଦରେ, ପୁଣି ରାଜରାଣୀଙ୍କ ପାଖରେ ଛୋଟିଆ ବା ପୁରୁଣା କନା ଖଣ୍ଡେ କେଉଁଠୁ ମିଳିବ? ବହୁମୂଲ୍ୟର ଶାଢ଼ୀକୁ ଚିରିବାକୁ ମନ ବଳୁ ନ ଥାଏ, କି ସେପରି କରିବାକୁ କାହାରି ମୁଣ୍ଡକୁ ବୁଦ୍ଧି ମଧ୍ୟ ଜୁଟୁ ନ ଥାଏ। ସେମାନେ ଏହିପରି ନିରାଶାରେ ଅସ୍ତବ୍ୟସ୍ତ ହୋଇ ଶ୍ରୀକୃଷ୍ଣଙ୍କ ପାଖକୁ ଧାଇଁ ଆସିବା ବେଳକୁ ଦ୍ରୌପଦୀ ନିଜ ଶାଢ଼ୀର ପଣତ ଚିରି ତାଙ୍କ ଅଙ୍ଗୁଳିରେ ବାନ୍ଧି ସାରିଥାନ୍ତି। ସତ୍ୟଭାମାଙ୍କ ମନରେ ନିଜକୁ ଶ୍ରୀକୃଷ୍ଣଙ୍କର ସର୍ବାଧିକ ପ୍ରିୟା ବୋଲି ଭାବି ଯେଉଁ ଗର୍ବ ଥିଲା, ସେହି ଗର୍ବ ତାଙ୍କର ଖର୍ବ ହୋଇଗଲା। ଏହାଦ୍ୱାରା ଶ୍ରୀକୃଷ୍ଣ ଦେଖାଇଦେଲେ ଯେ ତୁମର ତୁମ ଶାଢ଼ୀ ପ୍ରତି ଯେତିକି ପ୍ରେମ, ମୋ ପ୍ରତି ସେତିକି ନାହିଁ? ଏହି ଲୀଳାରେ ଦ୍ରୌପଦୀଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଆତ୍ମୀୟତା କେତେ ଅଧିକ, ତାହା ପ୍ରତିପାଦିତ ହୋଇଥିଲା। କେବଳ ବସ୍ତ୍ରହରଣ ସମୟରେ

ନୁହେଁ, ଅନେକ ଥର ଭଗବାନ ଦ୍ରୌପଦୀଙ୍କୁ ରକ୍ଷା କରିଛନ୍ତି ।

ପାଣ୍ଡବମାନେ ଦ୍ରୌପଦୀଙ୍କୁ ସଙ୍ଗରେ ନେଇ କାମ୍ୟକ ବନରେ ରହୁଥାନ୍ତି । ତେଣେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ବିନାଶ କରି ନିଜର ରାଜ୍ୟାଧିକାର ମାର୍ଗର ରାସ୍ତାକୁ ନିଷ୍କଣ୍ଟକ କରିବାକୁ ଉଦ୍ୟମ କରୁଥାଏ । ଥରେ ସେ ମହର୍ଷି ଦୁର୍ବାସା ଋଷିଙ୍କୁ ଆତିଥ୍ୟ ଓ ସେବାରେ ସନ୍ତୁଷ୍ଟ କରିଦେଲା । ଋଷି କିଛି ମାଗିବାକୁ କହିବାରୁ ସେ କୂଟବୁଦ୍ଧି ପ୍ରୟୋଗ କରି କହିଲା, "ମହର୍ଷି! ଯୁଧିଷ୍ଠିର ଆମର ବଡ଼ ଭାଇ । ଯେପର୍ଯ୍ୟନ୍ତ ଆପଣ ତାଙ୍କର ଆତିଥ୍ୟ ସ୍ୱୀକାର କରି ସନ୍ତୁଷ୍ଟ ନ ହୋଇଛନ୍ତି, ସେପର୍ଯ୍ୟନ୍ତ ଆମର ଏ ଅତିଥିସେବା ଅପୂର୍ଣ୍ଣ । ତେଣୁ ଆପଣ ଥରେ ସଶିଷ୍ୟ ତାଙ୍କର ଆତିଥ୍ୟ ସ୍ୱୀକାର କରି ତାଙ୍କର ଇଚ୍ଛା ପୂର୍ଣ୍ଣ କରନ୍ତୁ । ଏତିକି ମୋର ମାଗୁଣି ।"

ଦୁର୍ଯ୍ୟୋଧନ ଜାଣିଥିଲା ଯେ ଦୁର୍ବାସା ଅତ୍ୟନ୍ତ କ୍ରୋଧୀ । ଥରେ ଯଦି କୌଣସି ପ୍ରକାରେ ସେ ଅସନ୍ତୁଷ୍ଟ ହୋଇ ପାଣ୍ଡବଙ୍କୁ ଅଭିଶାପ ଦେଇଦିଅନ୍ତି, ସେମାନେ ନଷ୍ଟ ହୋଇଯିବେ ଏବଂ ଅନାୟାସରେ ତା'ର ମାର୍ଗ ପରିଷ୍କାର ହୋଇଯିବ । ଦୁର୍ବାସା ଦୁର୍ଯ୍ୟୋଧନ ହୃଦୟର ଏହି କପଟପୂର୍ଣ୍ଣ ଷଡ଼ଯନ୍ତ୍ରକୁ ବୁଝି ନ ପାରି ସ୍ୱୀକୃତି ଦେଇଦେଲେ । ଦୁର୍ଯ୍ୟୋଧନ ଏଥିରେ ଆଶ୍ୱସ୍ତ ହୋଇ ଆଉ ଗୋଟିଏ ସର୍ତ୍ତ ଯୋଡ଼ିଦେଲା । ସେ କହିଲା, "ମହାତ୍ମନ୍! ଯୁଧିଷ୍ଠିର ବଡ଼ ଧର୍ମାତ୍ମା ଓ ସଙ୍କୋଚ ସ୍ୱଭାବର । ତେଣୁ ଆପଣ ଏଭଳି ସମୟରେ ଯିବେ, ଯେପରି କି ପାଣ୍ଡବଙ୍କ ସମେତ ଦ୍ରୌପଦୀ ଭୋଜନ କରିସାରିଥିବେ । ନଚେତ୍ ସେମାନେ ସଙ୍କୋଚରେ ପଡ଼ି ଭୋକିଲା ରହିଯିବେ ।" ତାହାରି ପ୍ରରୋଚନାରେ ମହର୍ଷି ଦୁର୍ବାସା ତାଙ୍କର ଦଶହଜାର ଶିଷ୍ୟଙ୍କୁ ସଙ୍ଗରେ ନେଇ ପାଣ୍ଡବଙ୍କ ପାଖରେ ପହଞ୍ଚିଲେ । ଅତିଥି ସତ୍କାର ଗୃହସ୍ଥର ଧର୍ମ । ଯୁଧିଷ୍ଠିର ପ୍ରସନ୍ନ ମନରେ ମହର୍ଷିଙ୍କୁ ଶିଷ୍ୟମଣ୍ଡଳୀ ସହିତ ଭୋଜନ ନିମନ୍ତେ ଆମନ୍ତ୍ରିତ କରିଦେଲେ ଏବଂ ଦୁର୍ବାସା ପ୍ରଥମେ ମଧ୍ୟାହ୍ନକାଳୀନ ସ୍ନାନ-ସଂଧ୍ୟାଦି ନିତ୍ୟକର୍ମ ସାରିବା ନିମନ୍ତେ ଶିଷ୍ୟମଣ୍ଡଳୀ ସହିତ ଗଙ୍ଗାତଟକୁ ଚାଲିଗଲେ । ସେତେବେଳେ ପାଣ୍ଡବମାନେ ଭୋଜନ କରିସାରିଥିଲେ । ଦ୍ରୌପଦୀ ମଧ୍ୟ ଭୋଜନ କରି ସାରିଥିଲେ ।

ମହାରାଜ ଯୁଧିଷ୍ଠିର ଅତିଥିସେବା ଉଦ୍ଦେଶ୍ୟରେ ସୂର୍ଯ୍ୟଦେବଙ୍କ ଠାରୁ ଏଭଳି ଏକ ଅଦ୍ଭୁତ ଅକ୍ଷୟ ପାତ୍ର ପାଇଥିଲେ, ଯେଉଁଥିରେ ଅଳ୍ପ ଅନ୍ନ ରନ୍ଧା ହେଲେ ମଧ୍ୟ ତାହା ଅସରନ୍ତି ହୋଇଯାଉଥିଲା । କିନ୍ତୁ କେବଳ ଏତିକି ସର୍ତ୍ତ ଥିଲା ଯେ, ଦ୍ରୌପଦୀ ଯେପର୍ଯ୍ୟନ୍ତ ଭୋଜନ ନ କରି ଅନ୍ନ ପରିବେଷଣ କରୁଥିବେ, ସେପର୍ଯ୍ୟନ୍ତ

ସେଥିରୁ ଅନ୍ନ ସରିବ ନାହିଁ। ତଥାପି ଧର୍ମରାଜ ଯୁଧିଷ୍ଠିର ସେ ସମସ୍ତଙ୍କୁ ନିମନ୍ତ୍ରିତ କରିଦେଲେ; ସେତେବେଳେ ପାଣ୍ଡବମାନଙ୍କ ଭିତରୁ କେହି ବି ଭାବିଲେ ନାହିଁ ଯେ ଦ୍ରୌପଦୀ ଖାଇସାରିଲେଣି। ଦ୍ରୌପଦୀ ଖାଇସାରିଥିବାରୁ ସୂର୍ଯ୍ୟଦେବଙ୍କ ପ୍ରଦତ୍ତ ଅକ୍ଷୟପାତ୍ରରୁ ଆଉ ସେମାନଙ୍କ ଭୋଜନର ବ୍ୟବସ୍ଥା ହେବା ସମ୍ଭବପର ନ ଥିଲା। ଦ୍ରୌପଦୀ ଏ କଥା ଜାଣି ଘୋର ଚିନ୍ତାରେ ପଡ଼ିଗଲେ। ସେ ଭାବିଲେ, ଋଷି ଯଦି ଭୋଜନ ନ କରି ଫେରିଯିବେ, ତେବେ ନିଶ୍ଚୟ ଅଭିଶାପ ଦେଇଯିବେ। ତାଙ୍କର କ୍ରୋଧୀ ସ୍ୱଭାବ କଥା ଜଗତରେ କିଏ ବା ନ ଜାଣେ। ଦ୍ରୌପଦୀଙ୍କୁ କୌଣସି ଉପାୟ ଦିଶିଲା ନାହିଁ। ସେ ନିରୁପାୟ ହୋଇ ମନେ ମନେ ଭକ୍ତଭୟଭଞ୍ଜନ ଭଗବାନ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ ଏବଂ ଘୋର ସଙ୍କଟରୁ ଉଦ୍ଧାର କରିବାକୁ ଏହିରୂପେ ପ୍ରାର୍ଥନା କଲେ—

**କୃଷ୍ଣ କୃଷ୍ଣ ମହାବାହୋ ଦେବକୀନନ୍ଦନାୟ ଚ ॥**
**ବାସୁଦେବ ଜଗନ୍ନାଥ ପ୍ରଣତାର୍ତ୍ତିବିନାଶନ ।**

\+ \+ \+

**ଦୁଃଶାସନାଦହଂ ପୂର୍ବଂ ସଭାୟାଂ ମୋଚିତା ଯଥା ।**
**ତଥୈବ ସଙ୍କଟାଦସ୍ମାନ୍ ମାମୁଦ୍ଧର୍ତ୍ତୁମିହାର୍ହସି ॥**

ଶ୍ରୀକୃଷ୍ଣ ତ ସମସ୍ତଙ୍କ ହୃଦୟର କଥା ଜାଣନ୍ତି। ସେ ଅବିଳମ୍ବେ ସେଠାରେ ପହଞ୍ଚିଗଲେ। ତାଙ୍କୁ ଦେଖିବାମାତ୍ରେ ଦ୍ରୌପଦୀଙ୍କ ଶରୀରରେ ସତେ ଯେପରି ନୂତନ ପ୍ରାଣ ସଞ୍ଚାର ହୋଇଗଲା; ବୁଡ଼ି ଯାଉଥିବା ଲୋକକୁ ସତେ ଯେପରି ନୌକାଟିଏ ମିଳିଗଲା। ଦ୍ରୌପଦୀ ତାଙ୍କୁ ସଂକ୍ଷେପରେ ସକଳ ବୃତ୍ତାନ୍ତ କହିଗଲେ। ଶ୍ରୀକୃଷ୍ଣ କିନ୍ତୁ କ୍ଷୁଧାତୁର ପରି ହୋଇ କହିଲେ—"ଏସବୁ କଥା ଯାହା ହେବ ଦେଖିବା, ପ୍ରଥମେ ମୋତେ କିଛି ଖାଇବାକୁ ଦିଅ। ମୋତେ ପ୍ରବଳ ଭୋକ ଲାଗୁଛି।" ଦ୍ରୌପଦୀ କହିଲେ—"ସଖା! ମୁଁ ତ ସେହି ଭୋଜନ ସଂକଟରେ ପଡ଼ି ତୁମକୁ ସ୍ମରଣ କଲି, ଏବେ ତୁମେ ବି ମୋତେ ଉପହାସ କରିବାକୁ ବାହାରି ପଡ଼ିଲ! ଏଇଟା ପରିହାସର ବେଳ ନୁହେଁ କେଶବ!" "ପରିହାସ! ମୁଁ କେତେ ଦୂରରୁ ଆସିଲିଣି ଜାଣିଛ ନା ନାହିଁ?"—ଶ୍ରୀକୃଷ୍ଣ କହିଲେ। ଦ୍ରୌପଦୀ କ'ଣ କରିବେ କିଛି ଭାବି ନ ପାରି ଲାଜରେ ଝାଉଁଳି ଗଲେ। ସେ ଥଙ୍ଗ ଥଙ୍ଗ ହୋଇ କହିଲେ—"ପ୍ରଭୁ! ମୁଁ ତ ଖାଇ ସାରିଲିଣି; ଏବେ ଆଉ ସେ ପାତ୍ରରେ କିଛି ନାହିଁ।" ଶ୍ରୀକୃଷ୍ଣ କହିଲେ—"ନିଶ୍ଚୟ କିଛି ନା କିଛି ଥିବ। ମୋତେ ଆଣି ସେ ହାଣ୍ଡି ଦେଖାଅ।"

କୃଷ୍ଣା ହାଣ୍ଡିଟି ଆଣିଲେ । ଶ୍ରୀକୃଷ୍ଣ ସେ ହାଣ୍ଡିଟିକୁ ନେଇ ଦେଖିବାରୁ ତା ବେକ ପାଖରେ ଗୋଟିଏ ଶାଗପତ୍ର ଲାଗିଥିବାର ଦେଖାଗଲା । ସେ ସେହି ଶାଗପତ୍ରଟିକୁ ପାଟିରେ ପକାଇଦେଇ କହିଲେ—"ଏହି ଶାଗପତ୍ରଟିରେ ସମଗ୍ର ଜଗତର ଆତ୍ମା ଯଜ୍ଞଭୋକ୍ତା ପରମେଶ୍ୱର ତୃପ୍ତ ହୋଇଯାଆନ୍ତୁ ।" ଏହାପରେ ଶ୍ରୀକୃଷ୍ଣ ସହଦେବଙ୍କୁ ଡାକି ତାଙ୍କ ଦ୍ୱାରା ମୁନୀଶ୍ୱର ଦୁର୍ବାସାଙ୍କୁ ଡକାଇ ପଠାଇଲେ । ସହଦେବ ଗଙ୍ଗାତଟକୁ ଯାଇ ଦେଖିଲା ବେଳକୁ ସେଠାରେ କେହି ନାହାନ୍ତି ।

ଯେତେବେଳେ ଭଗବାନ୍ ଶାଗପତ୍ରଟିକୁ ପାଟିରେ ପକାଇ ସମସ୍ତଙ୍କୁ ତୃପ୍ତ କରିବାକୁ ସଂକଳ୍ପ କରିଦେଲେ, ସେତେବେଳେ ସମଗ୍ର ମୁନିମଣ୍ଡଳୀ ପାଣି ଭିତରେ ଛିଡ଼ା ହୋଇ ଅଘମର୍ଷଣ କରୁଥିଲେ । ସେମାନଙ୍କୁ ଅକସ୍ମାତ୍ ଅନୁଭବ ହେଲା ଯେ ସେମାନେ ସତେ ଯେପରି ତଣ୍ଟି ପର୍ଯ୍ୟନ୍ତ ଭୋଜନ କରିସାରିଛନ୍ତି । ତେଣୁ ସମସ୍ତେ ପରସ୍ପର ମୁହଁକୁ ଚାହିଁ କହିଲେ—"ପେଟ ତ ପୂରିଲା ଭଳି ଲାଗୁଛି, ଆଉ ଆମେ ଯୁଧିଷ୍ଠିରଙ୍କ ନିମନ୍ତ୍ରଣରେ ଯାଇ କ'ଣ ଖାଇବା?" ଏ ପରିସ୍ଥିତି ଦେଖି ଦୁର୍ବାସା ଚୁପ୍‌ଚାପ ପଳାୟନ କରିବାକୁ ଶ୍ରେୟସ୍କର ମନେ କଲେ; କାରଣ ସେ ଜାଣିଥିଲେ ଯେ ପାଣ୍ଡବମାନେ ହେଉଛନ୍ତି ଭଗବାନଙ୍କର ଭକ୍ତ । ତା'ଛଡ଼ା ଭକ୍ତ ଅମ୍ବରୀଷଙ୍କ ଘଟଣାରେ ତାଙ୍କୁ ଯେପରି ଦଣ୍ଡ ଭୋଗିବାକୁ ପଡ଼ିଥିଲା, ସେ ଘଟଣାକୁ ସେ ଭୁଲି ନ ଥିଲେ । ସେହିଦିନ ଠାରୁ ଭଗବଭକ୍ତଙ୍କ ପ୍ରତି ତାଙ୍କ ମନରେ ଭୟ ରହିଥିଲା । ତେଣୁ ସମସ୍ତେ ସେଠାରୁ ଚୁପ୍‌ଚାପ ପଳାଇଲେ । ସେଠାରେ ବାସ କରୁଥିବା ତପସ୍ୱୀମାନଙ୍କ ଠାରୁ ଦୁର୍ବାସା ସଶିଷ୍ୟ ସେଠାରୁ ପଳାଇଯିବା କଥା ସହଦେବଙ୍କୁ ଜ୍ଞାତ ହେଲା । ସହଦେବ ଫେରିଆସି ଯୁଧିଷ୍ଠିରଙ୍କୁ ସମସ୍ତ ବୃତ୍ତାନ୍ତ ଶୁଣାଇଲେ । ଏହିରୂପେ ଦ୍ରୌପଦୀଙ୍କ କୃଷ୍ଣଭକ୍ତି ହେତୁ ପାଣ୍ଡବଙ୍କ ଉପରୁ ଏକ ବିରାଟ ସଂକଟ ଟଳିଗଲା । ଶ୍ରୀକୃଷ୍ଣ ଆସି ସେମାନଙ୍କୁ ଦୁର୍ବାସାଙ୍କ ଅଭିଶାପରୁ ରକ୍ଷା କରି ନିଜର ଭକ୍ତବତ୍ସଳତାର ପରିଚୟ ଦେଲେ ।

ଦ୍ରୌପଦୀ ଭଗବାନଙ୍କୁ ଆତ୍ମୀୟ ଭାବୁଥିଲେ । ଏହି ଆତ୍ମୀୟତା ବଳରେ ସେ ଶ୍ରୀକୃଷ୍ଣଙ୍କ ଉପରେ କେବେ କେବେ ନିଜର ଅଧିକାର ସାବ୍ୟସ୍ତ କରିଦେଉଥିଲେ ତ କେବେ କେବେ ନିଜ ଦୁଃଖ କଷ୍ଟ ଓ ଅତ୍ୟାଚାର କଥା କହି ତାଙ୍କଠାରୁ ନ୍ୟାୟ ଆଶା କରୁଥିଲେ । କାରଣ ସେ ଜାଣିଥିଲେ ଯେ ଧର୍ମମାର୍ଗରେ ଚାଲୁଥିବା ପାଣ୍ଡବଙ୍କର ଏକମାତ୍ର ସହାୟକ ହେଉଛନ୍ତି ଶ୍ରୀକୃଷ୍ଣ । ତାଙ୍କ ଛଡ଼ା ସେମାନଙ୍କ ରକ୍ଷକ ଆଉ ସଂସାରରେ କେହି ନାହିଁ ।

ଥରେ ଶ୍ରୀକୃଷ୍ଣ ବନରେ ପାଣ୍ଡବମାନଙ୍କ ପାଖରେ ପହଞ୍ଚିଲେ। ସେତେବେଳେ ପାଣ୍ଡବମାନେ ଜୁଆରେ ସର୍ବସ୍ୱ ହାରି ବନବାସ କରୁଥିଲେ। ପାଣ୍ଡବଙ୍କ ସଙ୍ଗେ ଭେଟି ସେମାନଙ୍କ ଦୁଃଖ କଥା ଶୁଣିବା ପରେ ତାଙ୍କ ମନରେ କୌରବଙ୍କ ପ୍ରତି କ୍ରୋଧ ଆସିଲା। ଭଗବାନ ହୋଇ ଏତେ ଘୋର ଅନ୍ୟାୟକୁ ବା ସେ କିପରି ସହନ୍ତେ? ଏହି ପରିପ୍ରେକ୍ଷୀରେ ଦ୍ରୌପଦୀ କହିଲେ—''ହେ ମଧୁସୂଦନ! ମୁଁ ମହର୍ଷି ଅସିତ ଓ ଦେବଳଙ୍କ ଠାରୁ ଶୁଣିଛି ଯେ ତୁମେ ସମଗ୍ର ଜଗତର ସ୍ରଷ୍ଟା। ପରଶୁରାମ ତୁମକୁ ସାକ୍ଷାତ୍ ଅପରାଜେୟ ବିଷ୍ଣୁ ବୋଲି କହିଛନ୍ତି। ତୁମେ ହିଁ ଯଜ୍ଞ, ଋଷି, ଦେବତା ତଥା ପଞ୍ଚମହାଭୂତଙ୍କ ରୂପରେ ବିଦ୍ୟମାନ। ସାରା ସଂସାର ତୁମର ଏକ କ୍ଷୁଦ୍ର ଅଂଶରେ ସ୍ଥିତ। ତୁମେ ଜ୍ଞାନୀ ଓ ଯୋଗୀମାନଙ୍କର ପରମ ପ୍ରାପ୍ତବ୍ୟ। ତୁମ ଶକ୍ତିରୁ ସମସ୍ତଙ୍କୁ ଶକ୍ତି ପ୍ରାପ୍ତ ହେଉଛି। ତୁମେ ହିଁ ପରମେଶ୍ୱର! ତେଣୁ ମୁଁ ମୋର ଦୁଃଖ ତୁମକୁ କହିବି ନାହିଁ ତ ଆଉ କାହାକୁ କହିବି?''

ଏତିକି କହୁ କହୁ ଦ୍ରୌପଦୀଙ୍କ ନେତ୍ର ରକ୍ତାଭ ହୋଇଆସିଲା, ତାଙ୍କ କମଳ-ନୟନରୁ କ୍ରୋଧମିଶ୍ରିତ ଦୁଃଖର ଧାର ଧାର ଅଶ୍ରୁ ବହିଆସିଲା। ହୃଦୟ ମଧ୍ୟରେ ଦବି ରହିଥିବା କ୍ରୋଧ ହଠାତ୍ ଘନ ଘନ ଶ୍ୱାସ ରୂପରେ ପରିଣତ ହୋଇ ବାହାରିବାକୁ ଲାଗିଲା। ସେ ଫଁ ଫଁ ହୋଇ କହିଲେ—''ମୁଁ ମହାପରାକ୍ରମୀ ପାଣ୍ଡବଙ୍କର ପତ୍ନୀ, ଧୃଷ୍ଟଦ୍ୟୁମ୍ନଙ୍କର ଭଉଣୀ, ପୁଣି ତୁମର ସଖୀ। ତଥାପି ମୋତେ କୁରୁସଭା ମଧ୍ୟକୁ ମୋର କେଶଧରି ଘୋଷାରି ଘୋଷାରି ନିଆଗଲା; ମୋର ମହାବଳୀ ସ୍ୱାମୀମାନେ ଧର୍ମକୁ ଗ୍ରହି ମୋତେ ରକ୍ଷା କରିପାରିଲେ ନାହିଁ। ମୋତେ ପୂର୍ଣ୍ଣସଭା ମଧ୍ୟରେ ବିବସ୍ତ୍ରା କରିବାକୁ ଚେଷ୍ଟା କରାଗଲା। ନୀଚକର୍ମା ଦୁର୍ଯ୍ୟୋଧନ ପୂର୍ବରୁ ଭୀମସେନଙ୍କୁ ବିଷ ଦେଇ ପାଣିକୁ ଫୋପାଡ଼ି ଦେଇଥିଲା, ପୁଣି ପାଣ୍ଡବଙ୍କୁ ଲାକ୍ଷାଗୃହରେ ପୋଡ଼ି ଭସ୍ମ କରିଦେବାକୁ ଚେଷ୍ଟା କରିଥିଲା। ଏତେ ସବୁ କୁକର୍ମ କରିବା ସତ୍ତ୍ୱେ ଏ ଦୁଷ୍ଟ ଜୀବିତ ରହିଛି କିପରି? ତୁମେ ଏସବୁକୁ କିପରି ସହିଛ?'' ଏତିକି କହୁ କହୁ ପାଞ୍ଚାଳୀଙ୍କର କଣ୍ଠରୁଦ୍ଧ ହୋଇଗଲା। କୋହର ଅସଂଖ୍ୟ ଅଦମ୍ୟ ତରଙ୍ଗ ଉଠିଲା। ସେ କଇଁ କଇଁ ହୋଇ କାନ୍ଦି ପକାଇଲେ। ଟିକେ ଶାନ୍ତ ହେବା ପରେ ସେ କହିଲେ, ''ତୁମେ ମୋର ଆତ୍ମୀୟ ବାନ୍ଧବ। ମୁଁ ଯଜ୍ଞାଗ୍ନିରୁ ପ୍ରକଟ ହୋଇଥିବା ଗୌରବମୟୀ ନାରୀ। ତୁମ ପ୍ରତି ମୋର ପବିତ୍ର ଅନୁରାଗ ରହିଛି, ପୁଣି ତୁମ ଉପରେ ମୋର ଅଧିକାର ମଧ୍ୟ ରହିଛି ଏବଂ ତୁମେ ଏଥିରୁ ମୋତେ ରକ୍ଷା କରିବାକୁ ସମର୍ଥ ମଧ୍ୟ। ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଯେ ତୁମେ ଆଉଁ ଆଉଁ

ମୋର ଏ ଦଶା ହେଲା କିପରି?''

ଭକ୍ତବତ୍ସଳ ଭଗବାନ ଆଉ ନୀରବ ହୋଇ ରହି ପାରିଲେ ନାହିଁ। ସେ ଆଶ୍ୱାସନା ଦେଇ କହିଲେ—''କଲ୍ୟାଣୀ! ଯେଉଁମାନଙ୍କ ଉପରେ ତୁମେ ରୁଷ୍ଟ ହୋଇଛ, ଜାଣ ଯେ ସେମାନଙ୍କର କାଳ ପୂରିଗଲା। ସେମାନଙ୍କର ସ୍ତ୍ରୀମାନେ ମଧ୍ୟ ତୁମରି ପରି କାନ୍ଦିବେ। ସେ ସମୟ ଆସିବାକୁ ଆଉ ବେଶୀ ଡେରି ନାହିଁ। ସେମାନେ ସେତେବେଳେ ଅର୍ଜୁନଙ୍କ ଶରାଘାତରେ ମରି ଶୃଗାଳ ଓ କୁକୁରଙ୍କ ଆହାର ହେବେ। ମୁଁ ପ୍ରତିଜ୍ଞା କରି କହୁଛି, ତୁମେ ସମ୍ରାଟ ଯୁଧିଷ୍ଠିରଙ୍କ ବାମ ଭାଗରେ ସମ୍ରାଜ୍ଞୀରୂପେ ଶୋଭା ପାଇବ। ଆକାଶ ପଛେ ଫାଟିଯିବ, ସମୁଦ୍ର ପଛେ ଶୁଖିଯିବ, ହିମାଳୟ ପଛେ ଭାଙ୍ଗି ଚୁର୍‌ମାର ହୋଇଯିବ, କିନ୍ତୁ ମୋର କଥା କଦାପି ଅସତ୍ୟ ହେବ ନାହିଁ।'' ଅନ୍ତତୋଗତ୍ୱା ତାହା ହିଁ ହେଲା। ଭଗବାନ ନିଜ ବାକ୍ୟକୁ ସତ୍ୟରେ ପରିଣତ କରି ଭକ୍ତର ଟେକ ରଖିଲେ।

ଦ୍ରୌପଦୀଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ କେତେ ଅଧିକ ଥିଲା, ତାହା ସୁଭଦ୍ରା ପରିଣୟ ପ୍ରସଙ୍ଗରେ ମଧ୍ୟ ଦେଖିବାକୁ ମିଳେ। ବସୁଦେବଙ୍କ ଇଚ୍ଛା ଓ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଅର୍ଜୁନ ସୁଭଦ୍ରାଙ୍କୁ ହରଣ କରି ନେଇଆସିଥାନ୍ତି। କିନ୍ତୁ ଦ୍ରୌପଦୀଙ୍କ ସଙ୍ଗେ ତାଙ୍କର କିପରି ପରିଚୟ କରାଇବେ, ସେହି ଧର୍ମସଂକଟରେ ପଡ଼ିଯାଇଥାନ୍ତି ଅର୍ଜୁନ। ଦ୍ରୌପଦୀ ନିଜେ ଥାଉ ଥାଉ ଆଉ ଜଣେ ତାଙ୍କର ସଉତୁଣୀ ହୋଇ ଆସିବ, ଏହାକୁ ସେ ସହିପାରିବେ ତ? ହଠାତ୍ ଦ୍ରୌପଦୀଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି କେତେ ଆତ୍ମୀୟତା ତାହା ଅର୍ଜୁନଙ୍କର ମନେ ପଡ଼ିଗଲା। ସେ ଶ୍ରୀକୃଷ୍ଣଙ୍କ ପରାମର୍ଶ ଲୋଡ଼ିଲେ। ତାଙ୍କର ପରାମର୍ଶ ଅନୁସାରେ ସୁଭଦ୍ରା ରାଜରାଣୀ ବେଶରେ ତାଙ୍କ ସମ୍ମୁଖକୁ ନ ଯାଇ ସାଧାରଣ ଗୋପାଳୁଣୀ ବେଶରେ ଯାଇ ପ୍ରଣାମ କରି କହିଲେ—''ମୁଁ ଶ୍ରୀକୃଷ୍ଣଙ୍କ ଅଲିଅଳି ଭଉଣୀ ସୁଭଦ୍ରା ମହାରାଣୀ ଦ୍ରୌପଦୀଙ୍କୁ ପ୍ରଣାମ କରୁଛି। ଏ ଦାସୀର ପ୍ରଣାମ ସ୍ୱୀକାର କରି ନିଜ ଚରଣରେ ସ୍ଥାନ ଦେବେ।'' ଶ୍ରୀକୃଷ୍ଣଙ୍କ ନାମ ଶୁଣିବାମାତ୍ରେ ଦ୍ରୌପଦୀଙ୍କ ମନରୁ ସଉତୁଣୀ ଭାବ କୁଆଡ଼େ ଉଭେଇଗଲା। ସୁଭଦ୍ରାଙ୍କ ଅଙ୍ଗପ୍ରତ୍ୟଙ୍ଗରେ ତାଙ୍କୁ ଦିଶିଲା ଶ୍ରୀକୃଷ୍ଣଙ୍କ ମଧୁର ସ୍ନେହର ଅମୂର୍ତ୍ତ ପ୍ରତିଛବି। ସେ ସୁଭଦ୍ରାକୁ ତଳୁ ଉଠାଇ ବକ୍ଷ ଉପରକୁ ଆଉଜେଇ ନେଇ ଆଲିଙ୍ଗନ କଲେ ଏବଂ କହିଲେ—''ତୁମର ସ୍ଥାନ ମୋ ଚରଣରେ ନୁହେଁ, ମୋ ହୃଦୟରେ। ତୁମର ଅର୍ଜୁନଙ୍କ ଉପରେ ମୋରି ପରି ସମାନ ଅଧିକାର ରହିବ।'' ଏହା କହି ଦ୍ରୌପଦୀ ସୁଭଦ୍ରାଙ୍କୁ ଆଶୀର୍ବାଦ ଦେଲେ ଏବଂ ତାଙ୍କୁ

ସଉତୁଣୀ ପରି ନ ଦେଖି ଆଜୀବନ ସ୍ନେହରେ ଭଉଣୀ ପରି ଦେଖିଥିଲେ।

ଯେଉଁ ଦ୍ରୌପଦୀଙ୍କ କ୍ରୋଧ ସର୍ପ ପରି ଅତ୍ୟନ୍ତ ଭୀଷଣ ଥିଲା, ଯିଏ ତାଙ୍କ ଅପମାନର ପ୍ରତିଶୋଧ ନେବାକୁ କଦାପି ଭୁଲି ନ ଥିଲେ; ପାଣ୍ଡବମାନେ ଯୁଦ୍ଧ କରିବାକୁ ଶୀଘ୍ର ପ୍ରସ୍ତୁତ ନ ହେଉଥିବା ବେଳେ ନିଜ ଭାଇ, ପିତା ଓ ପୁତ୍ରମାନେ ଯୁଦ୍ଧ କରି ତାଙ୍କ ଅପମାନର ପ୍ରତିଶୋଧ ନେବେ ବୋଲି କହିଥିଲେ, ଯୁଦ୍ଧ ସମୟରେ ପାଣ୍ଡବମାନଙ୍କୁ ଉତ୍ତେଜିତ କରିବା ପାଇଁ ଶିବିରରେ ଆସି ରହିଥିଲେ, ଏପରିକି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସନ୍ଧି ପ୍ରସ୍ତାବ ନେଇ ହସ୍ତିନାପୁର ଯାଉଥିବା ବେଳେ ତାଙ୍କୁ ନିଜର ଉନ୍ମୁକ୍ତ କେଶ ଦେଖାଇ କହିଥିଲେ—'ମଧୁସୂଦନ! ତୁମେ ସନ୍ଧି ପ୍ରସ୍ତାବ ନେଇ ଯାଉଛ ସତ, କିନ୍ତୁ ଏହି ଦ୍ରୌପଦୀର ଖୋଲା କେଶକୁ ଭୁଲିବ ନାହିଁ', ସେହି ତେଜସ୍ୱିନୀ ଦ୍ରୌପଦୀଙ୍କର କ୍ଷମା ଗୁଣ ମଧ୍ୟ ଅତି ଅଦ୍ଭୁତ ଥିଲା। କ୍ରୋଧ ସହିତ କ୍ଷମାର ଏହି ଅଦ୍ଭୁତ ସମାବେଶ ଦ୍ରୌପଦୀଙ୍କର ଗୁରୁଭକ୍ତି ଓ ବ୍ରାହ୍ମଣ ଭକ୍ତିର ସ୍ପଷ୍ଟ ନିଦର୍ଶନ।

ମହାଭାରତ ଯୁଦ୍ଧ ସମାପ୍ତ ହୋଇସାରିଥାଏ। ରାତିରେ ପାଣ୍ଡବ ସେନା ଶାନ୍ତିରେ ଶୋଇଥାନ୍ତି। ପାଣ୍ଡବରକ୍ଷକ ଶ୍ରୀକୃଷ୍ଣ ପଞ୍ଚପାଣ୍ଡବ ଓ ଦ୍ରୌପଦୀଙ୍କୁ ନେଇ ଉପପ୍ଲବ ନଗରକୁ ଯାଇଥାନ୍ତି। ସକାଳୁ ସକାଳୁ ଦୂତ ସମାଗ୍ର୍ର ଦେଲା ଯେ ରାତିରେ ଅଶ୍ୱତ୍ଥାମା ଦ୍ରୌପଦୀଙ୍କର ପୁତ୍ରଙ୍କୁ ଶୋଇଥିବା ଅବସ୍ଥାରେ ମାରିଦେଇଛି ଓ ଭୀଷଣ ନରସଂହାର କରିଛି। ଏହା ଶୁଣିବା ମାତ୍ରେ ସମସ୍ତେ ତରବର ହୋଇ ରଥରେ ବସି ଶିବିରକୁ ଆସିଲେ। ମୃତ ପୁତ୍ରମାନଙ୍କୁ ଦେଖି ଦ୍ରୌପଦୀ ଅତି କରୁଣସ୍ୱରରେ ବିଳାପ କରିବାକୁ ଲାଗିଲେ। କେଉଁ ମାଆ ତା'ର ପୁତ୍ରମାନଙ୍କୁ ଏପରି ଅସହାୟ ଅବସ୍ଥାରେ ଅନ୍ୟାୟପୂର୍ବକ ମାରିଦିଆଯାଇଥିବା ଦେଖି ଧୈର୍ଯ୍ୟ ଧରି ପାରିବ? ସେ ପୁତ୍ରମାନଙ୍କ ଶବକୁ ଧରି କାନ୍ଦି କାନ୍ଦି କହିଲେ—"ମୋର ପରାକ୍ରମୀ ପୁତ୍ରମାନେ ଯଦି ରଣଭୂମିରେ ଯୁଦ୍ଧ କରୁ କରୁ ବୀରଗତିକୁ ପ୍ରାପ୍ତ ହୋଇଥାନ୍ତେ, ମୋ ମନରେ ଏତେ କଷ୍ଟ ହୋଇ ନ ଥାନ୍ତା, କିନ୍ତୁ ଏ କ୍ରୂର ବ୍ରାହ୍ମଣାଧମ ଅଶ୍ୱତ୍ଥାମା ଏମାନଙ୍କୁ ଶୋଇଥିବା ଅବସ୍ଥାରେ ମାରି ଘୋର ଅନ୍ୟାୟ କରିଛି।"

ଶ୍ରୀକୃଷ୍ଣ କହିଲେ—"କୃଷ୍ଣା! ପୁଅମାନେ ରଣଭୂମିରେ ସମର କରି ମରନ୍ତୁ ବା ଶୋଇଥିବା ଅବସ୍ଥାରେ ମରନ୍ତୁ, ମରଣରେ ତ କିଛି ତଫାତ୍ ନାହିଁ।" ଦ୍ରୌପଦୀ ତାଙ୍କ ଆଖିରୁ ବହିଗ୍ଲଲିଥିବା ଲୁହଧାର ପୋଛିଦେଇ କହିଲେ—"ଅଛି ସଖା! ଅନେକ ତଫାତ୍ ଅଛି। ମୁଁ ପିଲାମାନଙ୍କୁ କ୍ଷୀର ପିଆଇବା ବେଳେ ଶିଖାଇଥିଲି

ଯେ, କୌଣସି ବିପଦ ପଡ଼ିଲେ ଶ୍ରୀକୃଷ୍ଣଙ୍କୁ ଡାକିବ । ସେ ବିପତ୍ତିଭଞ୍ଜନ । ତାଙ୍କୁ ସ୍ମରଣ କଲେ ସବୁ ବିପଦରୁ ମୁକ୍ତି ମିଳେ—**'ହରିସ୍ମୃତିଃ ସର୍ବ ବିପଦ୍‌ବିମୋକ୍ଷଣମ୍ ।'** ତେଣୁ ଜାଗ୍ରତ ଅବସ୍ଥାରେ ସମର କଲାବେଳେ ସେମାନେ କୌଣସି ବିପତ୍ତିର ସମ୍ମୁଖୀନ ହୋଇଥିଲେ ତୁମକୁ ସ୍ମରଣ କରିଥାନ୍ତେ, ଆଉ ତୁମ ସ୍ମରଣର ଫଳ ହେଉଛି ଅଭୟପଦ ପ୍ରାପ୍ତି । କିନ୍ତୁ ତାହା ସେମାନେ କରି ପାରିଲେ ନାହିଁ ।''

ଦ୍ରୌପଦୀଙ୍କୁ ଧର୍ମରାଜ ଯୁଧିଷ୍ଠିର ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ; କିନ୍ତୁ ଆଖି ଆଗରେ ପୁତ୍ରମାନଙ୍କ ଶବକୁ ଦେଖି କାନ୍ଦୁଥିବା ମାଆକୁ କିଏ ବା ବୁଝାଇ ପାରିବ! ଅର୍ଜୁନ ଦ୍ରୌପଦୀଙ୍କୁ ସାନ୍ତ୍ୱନା ଦେଇ କହିଲେ—''କଲ୍ୟାଣୀ! ଚିନ୍ତା କର ନାହିଁ । ମୁଁ ସେହି ଅଧମ ଅଶ୍ୱତ୍ଥାମାର ମୁଣ୍ଡ କାଟି ଆଣି ତୁମକୁ ଉପହାର ଦେବି ଏବଂ ତୁମେ ତା ମୁଣ୍ଡ ଉପରେ ଗୋଡ଼ ରଖି ପୁଅମାନଙ୍କ ଅନ୍ତ୍ୟେଷ୍ଟି କ୍ରିୟା ପରେ ସ୍ନାନ କରିବ ।'' ଏହା କହି ସେ ରଥରେ ବସି ଅଶ୍ୱତ୍ଥାମାର ଅନୁଧାବନ କଲେ । ଅର୍ଜୁନଙ୍କୁ ଦେଖି ପ୍ରାଣବିକଳରେ ସେ ବ୍ରହ୍ମାସ୍ତ୍ର ପ୍ରୟୋଗ କରିଦେଲା । ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଅର୍ଜୁନ ମଧ୍ୟ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ତାହାକୁ ତେଜହୀନ କରିଦେଲେ ଏବଂ ବଳପୂର୍ବକ ଅଶ୍ୱତ୍ଥାମାକୁ ଧରି ପଶୁ ପରି ବାନ୍ଧି ପକାଇ ଶିବିରକୁ ନେଇଯିବାକୁ ଚାହିଁଲେ । ଶ୍ରୀକୃଷ୍ଣ ସେହି ଆତତାୟୀକୁ ମାରିଦେବା ଉଚିତ ବୋଲି ପରାମର୍ଶ ଦେଲେ । ତଥାପି ଅର୍ଜୁନ ନିଜେ ନ ମାରି ପୁତ୍ରଶୋକରେ ବିଳାପ କରୁଥିବା ଦ୍ରୌପଦୀଙ୍କ ପାଖକୁ ନେଇଆସିଲେ । ଦ୍ରୌପଦୀ ଯାହା କହିବେ, ସେହି ଦଣ୍ଡ ଦିଆଯିବ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ତାକୁ ଦେଖିବା ମାତ୍ରେ ଦ୍ରୌପଦୀଙ୍କ ମତି ବଦଳିଗଲା! ଭକ୍ତିମତୀ ଦ୍ରୌପଦୀଙ୍କ ମହାନ୍ ମାତୃତ୍ୱପୂର୍ଣ୍ଣ ହୃଦୟ ହଠାତ୍ ନିଜ ପୁତ୍ରଶୋକରୁ ନିବୃତ୍ତ ହୋଇ ଅନ୍ୟ ଜଣେ ମାଆର ପୁତ୍ରଶୋକ କଳ୍ପନାରେ ବ୍ୟାକୁଳ ହୋଇଉଠିଲା । ଦ୍ରୌପଦୀ ଦେଖିଲେ, ଅଶ୍ୱତ୍ଥାମା ପଶୁପରି ବନ୍ଧା ହୋଇଛି । ନିନ୍ଦିତ କର୍ମ କରିଥିବାରୁ ସେ ତଳକୁ ମୁହଁ କରି ଠିଆ ହୋଇଛି । ଗୁରୁପୁତ୍ରକୁ ଏପରି ଅପମାନଜନକ ଦୟନୀୟ ଅବସ୍ଥାରେ ଦେଖି ଦ୍ରୌପଦୀଙ୍କ କୋମଳ ହୃଦୟ ଦୟାରେ ବିଗଳିତ ହୋଇଗଲା । ସେ ଅଶ୍ୱତ୍ଥାମାକୁ ନମସ୍କାର କଲେ ଏବଂ ତାହାର ଏହି ଦୁର୍ଦ୍ଦଶା ଦେଖି ସହି ନ ପାରି କହିଲେ—''ଏହାଙ୍କୁ ଛାଡ଼ି ଦିଅନ୍ତୁ, ଛାଡ଼ି ଦିଅନ୍ତୁ । ଏ ଜଣେ ବ୍ରାହ୍ମଣ, ଆମର ପୂଜନୀୟ । ଯେଉଁ ଆଚାର୍ଯ୍ୟ ଦ୍ରୋଣଙ୍କ କୃପାରୁ ଆପଣ ଧନୁର୍ବେଦର ସମସ୍ତ ରହସ୍ୟ, ପ୍ରୟୋଗ ଓ ଉପସଂହାର କୌଶଳ ଶିକ୍ଷା କରିଛନ୍ତି ଏବଂ ସମସ୍ତ ଅସ୍ତ୍ରଶସ୍ତ୍ରର ଜ୍ଞାନ ଲାଭ କରିଛନ୍ତି, ସେହି ଆଚାର୍ଯ୍ୟ ହିଁ ତାଙ୍କର ପୁତ୍ର

ରୂପରେ ଆପଣଙ୍କ ଆଗରେ ଠିଆ ହୋଇଛନ୍ତି। ତାଙ୍କର ଅଭାଗିନୀ ପତ୍ନୀ କୃପୀ ଏହି ବୀରପୁତ୍ରର ମମତାରେ ହିଁ ସ୍ୱାମୀଙ୍କର ଅନୁଗମନ ନ କରି ଜୀବିତ ରହିଛନ୍ତି। ସ୍ୱାମୀ! ଆପଣ ତ ଧର୍ମଜ୍ଞ! ଯେଉଁ ଗୁରୁଙ୍କୁ ନିତ୍ୟ ବନ୍ଦନା ଓ ପୂଜା କରିବା କଥା, ତାଙ୍କୁ ବ୍ୟଥା ଦେବା ଆପଣଙ୍କ ପକ୍ଷେ ଶୋଭନୀୟ ହେବ ନାହିଁ। ମୁଁ ଯେପରି ପୁତ୍ରଙ୍କ ବିୟୋଗରେ କାନ୍ଦୁଛି, ଏହାଙ୍କର ମାଆ ଗୌତମୀଙ୍କୁ ସେହିପରି କାନ୍ଦିବାକୁ ନ ପଡୁ। ଏହାଙ୍କୁ ଛାଡ଼ି ଦିଅନ୍ତୁ।''

ଧନ୍ୟ! ଧନ୍ୟ ତୁମେ ଦ୍ରୌପଦୀ! ଧନ୍ୟ ତୁମର କ୍ଷମାଗୁଣ! ନିଜ ପୁତ୍ରଙ୍କର ନିଷ୍ଠୁର ହତ୍ୟାକାରୀ ପାଇଁ ମଧ୍ୟ ତୁମର ହୃଦୟ କ୍ଷମାରେ ପୂରି ଉଠୁଛି! ତୁମର ମହାନତା, ତୁମର ଗୁରୁଭକ୍ତି ହିମାଳୟଠାରୁ ମଧ୍ୟ ଉଚ୍ଚ; ତୁମର ହୃଦୟ ସାଗରଠାରୁ ମଧ୍ୟ ବିଶାଳ।

ପରିଶେଷରେ ଶ୍ରୀକୃଷ୍ଣ ଅର୍ଜୁନଙ୍କର ପରୀକ୍ଷା ନେବାକୁ ଯାଇ କହିଲେ— ''ବ୍ରାହ୍ମଣ ପତିତ ଓ ନିନ୍ଦିତ କର୍ମ କଲେ ମଧ୍ୟ ତାଙ୍କୁ ମାରିବା ଉଚିତ ନୁହେଁ'' ଏବଂ ''ଆତତାୟୀକୁ ମାରିଦେବା ଉଚିତ''—ମୁଁ ଶାସ୍ତ୍ରରେ ଏହିପରି ଉଭୟ ପ୍ରକାର ଆଦେଶ ଦେଇଛି। ତେଣୁ ତୁମେ ମୋର ଉଭୟ ଆଜ୍ଞା ପାଳନ କର। ତୁମେ ଦ୍ରୌପଦୀକୁ ସାନ୍ତ୍ୱନା ଦେବା ବେଳେ ଯେଉଁ ପ୍ରତିଜ୍ଞା କରିଥିଲ, ତାହା ବି ପାଳନ କର ଏବଂ ଭୀମସେନଙ୍କୁ, ଦ୍ରୌପଦୀଙ୍କୁ ଓ ମୋତେ ଯାହା ଭଲ ଲାଗିବ, ତାହା ମଧ୍ୟ କର।'' ଶ୍ରୀକୃଷ୍ଣଙ୍କର ମନୋଭାବ ବୁଝିପାରି ଅର୍ଜୁନ ଅଶ୍ୱତ୍ଥାମାର ମଥାରୁ ଦିବ୍ୟ ମଣି କାଢ଼ି ନେଲେ ଏବଂ ତାକୁ ଲଣ୍ଡା କରି ଜୀବନ୍ମୃତ ଅବସ୍ଥାରେ ଶିବିରରୁ ବାହାର କରିଦେଲେ। ସେହି ଅଧମ ବ୍ରାହ୍ମଣ ପାଇଁ ଏହା ହିଁ ଥିଲା ମୃତ୍ୟୁଦଣ୍ଡ।

ସତୀ ଦ୍ରୌପଦୀ ଆଉ ଏକ ପ୍ରସଙ୍ଗରେ ଜୟଦ୍ରଥକୁ ମଧ୍ୟ କ୍ଷମା ଦେଇ ତାର ପ୍ରାଣ ରକ୍ଷା କରିଥିଲେ। ସେତେବେଳେ ପାଣ୍ଡବ କାମ୍ୟକବନରେ ରହୁଥାନ୍ତି। ଥରେ ଦ୍ରୌପଦୀଙ୍କୁ ଏକାକିନୀ ଅବସ୍ଥାରେ ଦେଖି ଜୟଦ୍ରଥ ତାଙ୍କୁ ଅପହରଣ କରିବାକୁ ଚେଷ୍ଟା କଲା। ସେ ପାଣ୍ଡବମାନଙ୍କୁ ସର୍ବହରା ନିଃସ୍ୱ ବୋଲି କହି ତାଙ୍କୁ ନିଜର ରାଜରାଣୀ କରି ରଖିବାକୁ ପ୍ରଲୋଭନ ଦେଖାଇଲା। ମାତ୍ର ଦ୍ରୌପଦୀଙ୍କ ସତୀତ୍ୱର ତେଜ ଆଗରେ ପରାସ୍ତ ହୋଇଯିବାରୁ ସେ ତାଙ୍କୁ ବଳପୂର୍ବକ ଉଠାଇ ନେବାକୁ ଉଦ୍ୟମ କଲା; କିନ୍ତୁ ଦ୍ରୌପଦୀ ଏତେ ଜୋରରେ ଧକ୍କାଏ ଦେଲେ ଯେ ସେ କଟା ଗଛ ଭଳି ଭୁସ୍ କରି ପଡ଼ିଗଲା। ତଥାପି ସେ ତୁରନ୍ତ ଉଠିପଡ଼ି ଜବରଦସ୍ତି ଦ୍ରୌପଦୀଙ୍କୁ ଧରି ରଥରେ ବସାଇ ନେଇ ପଳାଇ ଯାଉଥିଲା।

ଏତିକିବେଳେ ପଛରୁ ଭୀମ ଓ ଅର୍ଜୁନ ଆସି ତାକୁ ଧରି ଖୁବ୍ ମାଡ଼ ମାରିଲେ; କିନ୍ତୁ ଦ୍ରୌପଦୀ ଦୟା କରି ତାକୁ ମୃତ୍ୟୁମୁଖରୁ ବଞ୍ଚାଇ ଦେଲେ ।

ଦେବୀ ଦ୍ରୌପଦୀ ଅତି ବୁଦ୍ଧିମତୀ ଓ ବିଦୁଷୀ ଥିଲେ । ତାଙ୍କର ତ୍ୟାଗ ଓ ଉଦାରତା ମଧ୍ୟ ଅଦ୍ଭୁତ ଥିଲା । ଅନ୍ୟର ଅନୁଗ୍ରହ ଉପରେ ଭରସା ନ କରି ସେ ନିଜର ସ୍ୱାମୀମାନଙ୍କର ବାହୁବଳରେ ହିଁ ସବୁକିଛି ପାଇବାକୁ ଚାହୁଁଥିଲେ । ସେଥିପାଇଁ ସେ ଧୃତରାଷ୍ଟ୍ରଙ୍କ ବଦାନ୍ୟତାକୁ ସ୍ପଷ୍ଟ ଶବ୍ଦରେ ଅସ୍ୱୀକାର କରିଦେଇଥିଲେ ।

ଭଗବାନଙ୍କ କୃପାରୁ ଦ୍ରୌପଦୀ-ବସ୍ତ୍ରହରଣ ନିଷ୍ଫଳ ହୋଇଗଲା । ଭୀମସେନ ଓ ଅର୍ଜୁନଙ୍କ ଭୀଷଣ ପ୍ରତିଜ୍ଞା ଶୁଣି ସମସ୍ତେ ଭୟଭୀତ ହୋଇଗଲେ । ସତୀ ଗାନ୍ଧାରୀଙ୍କୁ ଏ ଅମାନବିକ ଅତ୍ୟାଚାରର କଥା ଜଣାପଡ଼ିଗଲା । ସେ ଏ ଘଟଣାକୁ ସର୍ବନାଶର ପୂର୍ବ ସୂଚନା ବୋଲି ବୁଝି ଭୟରେ କମ୍ପି ଉଠିଲେ । ଧୃତରାଷ୍ଟ୍ରଙ୍କୁ ସେ କଠୋର ଶବ୍ଦରେ ସାବଧାନ କରିଦେଲେ । ଭୟରେ ଧୃତରାଷ୍ଟ୍ର ଏ ଅପ୍ରୀତିକର ଘଟଣାର ଯବନିକା ପାତ କରିବା ପାଇଁ ଚେଷ୍ଟା କଲେ । ସେ ଦୁର୍ଯ୍ୟୋଧନକୁ ଗାଳିଦେବା ସହିତ ପାଣ୍ଡବମାନେ ଏ ଘଟଣାକୁ ଯେପରି ଭୁଲିଯିବେ ସେଥିପାଇଁ ଗୋଟିଏ କୂଟନୈତିକ ସମାଧାନ ବାହାର କରିଦେଲେ । ଦ୍ରୌପଦୀ ସେତେବେଳେ ଲଜ୍ଜାରେ ମୁହଁକୁ ହାତରେ ଘୋଡ଼ାଇ କାନ୍ଦୁଥାନ୍ତି । ଧୃତରାଷ୍ଟ୍ର ଦ୍ରୌପଦୀଙ୍କୁ ଡାକି କହିଲେ—"ମାଆରେ! ତୋ ପ୍ରତି ଯାହା କିଛି ହେଲା, ତାହା ଅତ୍ୟନ୍ତ ଦୁଃଖର କଥା । ଏଥିପାଇଁ ତୁ ଏ ଅନ୍ଧ ଶ୍ୱଶୁରକୁ କ୍ଷମା କରିଦେ । ତୁ ତୋର ଶାଶୁ ଗାନ୍ଧାରୀ ମୁହଁକୁ ଓ ମୋ ମୁହଁକୁ ଚାହିଁ ସବୁ ଭୁଲିଯା । କୁରୁକୁଳର ବୋହୂ ହିସାବରେ ତୁ ଯେଉଁ ଧର୍ମନିଷ୍ଠା ଦେଖାଇଲୁ, ତାହା ଅତି ପ୍ରଶଂସନୀୟ । ତେଣୁ ମୁଁ ଚାହେଁ, ତୁ କିଛି ମାଗ; ମୁଁ ଦେବାକୁ ପ୍ରସ୍ତୁତ ଅଛି ।"

ଦ୍ରୌପଦୀ ଏ ପରିପ୍ରେକ୍ଷୀରେ ଯାହା ମାଗିଲେ, ତାହା ଜଣେ ଉତ୍ତମ ପତିବ୍ରତା ନାରୀର ଶ୍ରେଷ୍ଠ ପରିଚାୟକ ଥିଲା । ସେ ଧନ ବା ରାଜ୍ୟ ବା ସୁଖଭୋଗର ସାମଗ୍ରୀ ମାଗି ନ ଥିଲେ, ଯାହା କି ସେ ହରାଇଛନ୍ତି । ସେ କହିଲେ—"ଯଦି ଆପଣ କିଛି ଦେବାକୁ ଚାହାନ୍ତି, ତେବେ ମୋର ପାଞ୍ଚ ପତିଙ୍କୁ ଦାସତ୍ୱରୁ ମୁକ୍ତ କରିଦିଅନ୍ତୁ ।" ଧୃତରାଷ୍ଟ୍ର କହିଲେ "ଠିକ୍ ଅଛି; ମୁଁ ସେମାନଙ୍କୁ ମୁକ୍ତ କରିଦେଲି । ହେଲେ ତୁ ଆହୁରି କିଛି ମାଗ ।" ଦ୍ରୌପଦୀ କହିଲେ, "ସେମାନଙ୍କ ଅସ୍ତ୍ରଶସ୍ତ୍ର ଓ ରଥ ସେମାନଙ୍କୁ ଫେରାଇ ଦିଆଯାଉ । ସେମାନଙ୍କ ପୁତ୍ରଙ୍କୁ ଯେପରି କେହି ଦାସପୁତ୍ର ନ କହନ୍ତୁ ।" ଧୃତରାଷ୍ଟ୍ର ତାହା ଦେଇସାରି ପୁଣି କହିଲେ, "ମାଆରେ! ଏତିକି

ଦେଇ ମୋର ମନ ମାନୁ ନାହିଁ। ତୁ ଆହୁରି କିଛି ମାଗ।''

କିନ୍ତୁ ଏଥର ଦ୍ରୌପଦୀ ସ୍ପଷ୍ଟ ଶବ୍ଦରେ ନିର୍ଲୋଭତାପୂର୍ଣ୍ଣ ଉତ୍ତର ଦେଇ କହିଲେ, ''କ୍ଷତ୍ରିୟ ନାରୀ ହିସାବରେ ମୋର ଦୁଇଟିମାତ୍ର ବର ମାଗିବାର ଅଧିକାର ଅଛି। ଅଧିକ ଲୋଭ କରିବା ଠିକ୍ ନୁହେଁ। ତା' ଛଡ଼ା ମୋ ସ୍ୱାମୀମାନେ ଯେତେବେଳେ ମୁକ୍ତ ହୋଇଗଲେଣି, ସେମାନେ ନିଜ ବାହୁବଳ, ବୁଦ୍ଧି ଓ ପରାକ୍ରମରେ ସବୁ କରିଦେବେ।''

ଆହା! ପାତିବ୍ରତ୍ୟ ଓ ନିର୍ଲୋଭତାର କେଡ଼େ ଆଦର୍ଶ ଦୃଷ୍ଟାନ୍ତ! ସତରେ, ଏତେ ବଡ଼ ବିପତ୍ତିରେ ପଡ଼ି ମଧ୍ୟ କାହାରି ଅନୁଗ୍ରହରେ ଜୀବନ ନ ବିତାଇବା ତାଙ୍କର କେତେ ବଡ଼ ସ୍ୱାଭିମାନ। ନିଜ ସ୍ୱାମୀମାନଙ୍କ ଉପରେ ତାଙ୍କର କେତେ ଭରସା ଓ ବିଶ୍ୱାସ!

ଏହାପରେ ଧୃତରାଷ୍ଟ୍ର ପ୍ରାୟ ସବୁକିଛି ଫେରାଇଦେଲେ ଏବଂ ସେମାନଙ୍କୁ ସେମାନଙ୍କ ରାଜଧାନୀ ଖାଣ୍ଡବପ୍ରସ୍ଥ ଯିବାକୁ ଅନୁମତି ପ୍ରଦାନ କଲେ।

ସତୀ ଦ୍ରୌପଦୀଙ୍କର ପାତିବ୍ରତ୍ୟ ଧର୍ମ ଅତ୍ୟନ୍ତ ପ୍ରଶଂସନୀୟ ଥିଲା। ପଞ୍ଚପାଣ୍ଡବଙ୍କ ସଙ୍ଗେ ବିବାହ କରିଥିଲେହେଁ ସମସ୍ତଙ୍କୁ ସେ ନିଜର ସେବାବଳରେ ମନ୍ତ୍ରମୁଗ୍ଧ କରି ରଖିଥିଲେ। ଥରେ ପାଣ୍ଡବ ବନବାସରେ ଥିବାବେଳେ ଭଗବାନ ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ସଙ୍ଗରେ ନେଇ ପାଣ୍ଡବଙ୍କୁ ଭେଟିବାକୁ ଆସିଲେ। ସେତେବେଳେ କଥା ପ୍ରସଙ୍ଗରେ ସତ୍ୟଭାମା ଦ୍ରୌପଦୀଙ୍କୁ ପଚ୍ଚାରିଲେ—''ଆଚ୍ଛା ଭଉଣୀ! ମୁଁ ତୁମକୁ ଗୋଟିଏ କଥା ପଚ୍ଚାରୁଛି। ମୁଁ ଦେଖୁଛି, ତୁମର ବୀର ଓ ବଳବାନ ସ୍ୱାମୀମାନେ ସବୁବେଳେ ତୁମ ବଶରେ ରହୁଛନ୍ତି। ଏହାର କାରଣ କ'ଣ? ତୁମେ କଣ କିଛି ମନ୍ତ୍ରତନ୍ତ୍ର ବା ଔଷଧ କରିବା ଜାଣିଛ? ନା, କୌଣସି ଜପ, ତପ, ହୋମ ବା ବିଦ୍ୟା ଦ୍ୱାରା ସେମାନଙ୍କୁ ବଶ କରି ରଖିଛ? ମୋତେ ବି ଟିକିଏ ସେହି ବିଦ୍ୟା ଶିଖାଇ ଦିଅନ୍ତନି, ଯାହା ଫଳରେ ମୋର ସ୍ୱାମୀ ଶ୍ୟାମସୁନ୍ଦର ମୋ ବଶରେ ରହନ୍ତେ।'' ଦ୍ରୌପଦୀ କହିଲେ—''ଭଉଣୀ! ତୁମେ ଏତେ ବୁଦ୍ଧିମତୀ ଓ ଶ୍ରୀକୃଷ୍ଣଙ୍କ ପାଟରାଣୀ ହୋଇ ଏଭଳି ସନ୍ଦେହ କରିବା ଠିକ୍ ନୁହେଁ। ସ୍ୱାମୀକୁ ଯଦି ଜଣାପଡ଼ିଯିବ ଯେ ତାକୁ ବଶରେ ରଖିବା ପାଇଁ ସ୍ତ୍ରୀ କିଛି ମନ୍ତ୍ରଯନ୍ତ୍ର ପ୍ରୟୋଗ କରୁଛି, ତବେ ସେ ସର୍ପିଣୀକୁ ଡରିବା ପରି ତାଠାରୁ ଦୂରେଇ ରହିବ। ତେଣୁ ମନ୍ତ୍ରଯନ୍ତ୍ରରେ ସ୍ୱାମୀକୁ କଦାପି ବଶ କରାଯାଇ ପାରିବ ନାହିଁ। ବରଂ ଏପରି କଲେ ପରେ ଅନେକ ପ୍ରକାର ବିଭ୍ରାଟ ସୃଷ୍ଟି ହୋଇଯିବ। ତେଣୁ ସ୍ୱାମୀକୁ ଅପ୍ରିୟ ଲାଗୁଥିବା

କୌଣସି କାର୍ଯ୍ୟ କରିବା ସ୍ତ୍ରୀ ପକ୍ଷେ ଉଚିତ ନୁହେଁ।"

ଏହାପରେ ଦ୍ରୌପଦୀ ସ୍ୱାମୀଙ୍କୁ ବଶରେ ରଖିବା ପାଇଁ କିଭଳି ଆଚରଣ କରୁଥିଲେ, ତାହା ବର୍ଣ୍ଣନା କଲେ। ସେ କହିଲେ—ମୁଁ ଅହଂକାର ଓ କାମକ୍ରୋଧକୁ ପରିତ୍ୟାଗ କରି ଅତି ସାବଧାନତାର ସହିତ ପଞ୍ଚପାଣ୍ଡବଙ୍କର ଓ ସେମାନଙ୍କ ସ୍ତ୍ରୀମାନଙ୍କର ସେବା କରେ। ମୁଁ ଈର୍ଷାଠାରୁ ଦୂରେଇ ରହେ ଏବଂ ନିଜ ମନକୁ ଦମନ କରି କେବଳ ସେବା ଉଦ୍ଦେଶ୍ୟରେ ମୋ ସ୍ୱାମୀମାନଙ୍କର ମନ ଅନୁସାରେ କାର୍ଯ୍ୟ କରେ। ମୁଁ କଟୁ କଥା କହେ ନାହିଁ, ଅସଭ୍ୟ ଭାବରେ ଠିଆ ହୁଏ ନାହିଁ। ଖରାପ କାର୍ଯ୍ୟ ପ୍ରତି ଦୃଷ୍ଟି ଦିଏ ନାହିଁ, ଖରାପ ସ୍ଥାନରେ ବସେ ନାହିଁ। ଦୂଷିତ ଆଚରଣ ଠାରୁ ଦୂରେଇ ରହେ ଏବଂ ସ୍ୱାମୀମାନଙ୍କ ଅଭିପ୍ରାୟ ଓ ସଂକେତ ବୁଝି କାର୍ଯ୍ୟ କରେ। କୌଣସି ପୁରୁଷ ଯେତେ ସୁନ୍ଦର ହୋଇଥାଉ ଅଥବା ଯେତେ ବଡ଼ ଦେବତା, ମନୁଷ୍ୟ, ଗନ୍ଧର୍ବ, ଯୁବକ ବା ଧନୀ ହୋଇଥାଉ ପଛକେ, ମୋ ମନ ପାଣ୍ଡବଙ୍କ ଅତିରିକ୍ତ ଅନ୍ୟ କାହାରି ଆଡ଼କୁ ଯାଏ ନାହିଁ। ମୋ ସ୍ୱାମୀମାନେ ଭୋଜନ ନ କଲା ପର୍ଯ୍ୟନ୍ତ ମୁଁ ଭୋଜନ କରେ ନାହିଁ, ୮୮ସେମାନେ ନ ବସିବା ପର୍ଯ୍ୟନ୍ତ ମୁଁ ବସେ ନାହିଁ। ମୋ ସ୍ୱାମୀ ଯେତେବେଳେ ବାହାରୁ ଘରକୁ ଫେରନ୍ତି, ମୁଁ ତାଙ୍କୁ ଜଳ ଓ ଆସନ ଦିଏ। ମୁଁ ଘରେ ବାସନକୁସନ ପରିଷ୍କାର କରି ରଖେ, ସ୍ୱାଦିଷ୍ଟ ରୋଷେଇ କରେ ଏବଂ ସମୟାନୁସାରେ ସମସ୍ତଙ୍କୁ ଖାଇବାକୁ ଦିଏ। ମୁଁ ସାବଧାନ ରହେ, ଘରେ ଶସ୍ୟାଦିକୁ ରକ୍ଷା କରେ ଏବଂ ଘରକୁ ଝାଡ଼ୁ କରି ଓ ଲିପାପୋଛା କରି ପରିଷ୍କାର ରଖେ। ମୁଁ କଥା କହିବାବେଳେ କାହାରିକୁ ତିରସ୍କାର କରେ ନାହିଁ, କୁଳଟା ନାରୀଙ୍କ ପାଖ ମାଡ଼େ ନାହିଁ ଏବଂ ସର୍ବଦା ନିରଳସ ହୋଇ ସ୍ୱାମୀମାନଙ୍କ ମନର ଅନୁକୂଳ ଆଚରଣ କରେ। ମୁଁ ବାରମ୍ବାର ଦୁଆରବନ୍ଧ ପାଖରେ ଛିଡ଼ା ହୁଏ ନାହିଁ, ଖୋଲା ସ୍ଥାନ ବା ଅଳିଆଗଦା ପାଖରେ ଅଧିକ ସମୟ ଛିଡ଼ା ହୁଏ ନାହିଁ। ମୁଁ ସର୍ବଦା ସତ୍ୟ ବଚନ କହିଥାଏ ତଥା ପତିସେବାରେ ତତ୍ପର ଥାଏ। ପତିଦେବଙ୍କ ବିନା ଏକୁଟିଆ ରହିବା ମୋତେ ଆଦୌ ଭଲ ଲାଗେ ନାହିଁ। ଯଦି କୌଣସି କାରଣରୁ ପତିଦେବ କିଛି ଦିନ ପାଇଁ ବାହାରକୁ ଯାଇଥାନ୍ତି, ତେବେ ମୁଁ ଫୁଲ, ଚନ୍ଦନ ଆଦିରେ ବେଶ ନ ହୋଇ ନିୟମ ଓ ବ୍ରତ ପାଳନ କରି କରି କାଳ ଅତିବାହିତ କରିଦିଏ। ମୋ ସ୍ୱାମୀ ଯେଉଁ ଖାଦ୍ୟ ଖାଆନ୍ତି ନାହିଁ ବା ପିଅନ୍ତି ନାହିଁ, ତାହା ମୁଁ ମଧ୍ୟ ଗ୍ରହଣ କରେ ନାହିଁ। ନାରୀ ପାଇଁ ଶାସ୍ତ୍ର ଯାହା ଯାହା ନିର୍ଦ୍ଦେଶ କରିଛନ୍ତି, ମୁଁ ସେଗୁଡ଼ିକୁ ପାଳନ କରେ।

ମୋତେ ଯାହା କିଛି ବସ୍ତ୍ରାଳଙ୍କାର ମିଳେ, ତାହା ଦ୍ୱାରା ମୋ ଶରୀରକୁ ସୁସଜ୍ଜିତ ରଖେ ଏବଂ ସର୍ବଦା ସାବଧାନ ହୋଇ ସ୍ୱାମୀଙ୍କୁ ପ୍ରିୟ ଲାଗୁଥିବା କର୍ମରେ ତତ୍ପର ରହେ ।

ଶାଶୂ ମୋତେ ପରିବାର ସମ୍ବନ୍ଧୀୟ ଯାହା କିଛି ଧର୍ମ ଶିଖାଇଛନ୍ତି, ତାହା ମୁଁ ପାଳନ କରେ । ଭିକ୍ଷା ଦେବା, ପୂଜା, ଶ୍ରାଦ୍ଧ ଓ ପର୍ବପର୍ବାଣିରେ ମିଷ୍ଟାନ୍ନ ତିଆରି କରିବା, ମାନନୀୟ ବ୍ୟକ୍ତିଙ୍କୁ ସମ୍ମାନ ଦେବା ତଥା ଆହୁରି ମଧ୍ୟ ଯାହା କିଛି ଧର୍ମ ମୋ ପାଇଁ ବିହିତ, ସେଗୁଡ଼ିକୁ ମୁଁ ଅତି ସାବଧାନତାର ସହିତ ଦିନରାତି ପାଳନ କରେ । ମୁଁ ବିନୟ ଓ ନିୟମକୁ ଛାଡ଼େ ନାହିଁ । ମୋର ଧାରଣା ଯେ ସ୍ତ୍ରୀଲୋକଙ୍କ ପାଇଁ ସନାତନ ଧର୍ମ ହେଲା, ସ୍ୱାମୀଙ୍କର ଅଧୀନରେ ରହିବା । ସ୍ୱାମୀ ହିଁ ସ୍ତ୍ରୀ ପାଇଁ ଇଷ୍ଟଦେବ । ମୁଁ ମୋ ସ୍ୱାମୀମାନଙ୍କ ଠାରୁ ବଢ଼ିଚଢ଼ି କଥା କହେ ନାହିଁ । ସେମାନଙ୍କ ଠାରୁ ଭଲ ଭୋଜନ କରେ ନାହିଁ, ସେମାନଙ୍କ ଠାରୁ ଭଲ ବସ୍ତ୍ରାଭୂଷଣ ପିନ୍ଧେ ନାହିଁ, କି ଶାଶୁଙ୍କ ସଙ୍ଗେ କଦାପି ବାଦବିବାଦ କରେ ନାହିଁ । ମୁଁ ସର୍ବଦା ନିଜକୁ ସଂଯତ ରଖେ । ମୁଁ ମୋ ସ୍ୱାମୀଙ୍କ ଉଠିବା ପୂର୍ବରୁ ଉଠେ ଏବଂ ବୟୋଜ୍ୟେଷ୍ଠ ଗୁରୁଜନଙ୍କ ସେବାରେ ତତ୍ପର ରହେ । ଶାଶୁଙ୍କୁ ଭୋଜନ, ବସ୍ତ୍ର, ଜଳ ପ୍ରଭୃତି ଯୋଗାଇ ଦିଏ । ବସ୍ତ୍ର, ଆଭୂଷଣ ଓ ଭୋଜନରେ ମୁଁ ଶାଶୁଙ୍କ ଠାରୁ ଭଲ ପଦାର୍ଥ ନିଜ ପାଇଁ ରଖେ ନାହିଁ ।

ଏହିପରି ସମସ୍ତ ଗୃହକାର୍ଯ୍ୟ ତଥା ରାଜକାର୍ଯ୍ୟରେ ସେ ମହାରାଜ ଯୁଧିଷ୍ଠିରଙ୍କୁ କିପରି ସହଯୋଗ କରୁଥିଲେ ତାହା ବର୍ଣ୍ଣନା କରିସାରିବା ପରେ କହିଲେ—"ହେ ରାଣୀ ସତ୍ୟଭାମା! ସ୍ୱାମୀମାନଙ୍କୁ ମନୋନୁକୂଳ କରି ରଖିବାର କେବଳ ଏହି ଉପାୟ ମୋତେ ଜଣା ।" ଦ୍ରୌପଦୀଙ୍କର ଏହି ପ୍ରସଙ୍ଗରୁ ଜଣେ ଆଦର୍ଶ ଗୃହିଣୀ ଘରେ କିପରି ରହିବ, ତାହା ଆମ୍ଭମାନଙ୍କୁ ଶିକ୍ଷା ଗ୍ରହଣ କରିବା ଆବଶ୍ୟକ ।

ଦ୍ରୌପଦୀଙ୍କର ପାତିବ୍ରତ୍ୟ ତେଜ ଅତି ଅଦ୍ଭୁତ ଥିଲା । ଯେଉଁମାନେ ତାଙ୍କୁ କଷ୍ଟ ଦେଉଥିଲେ, ସେମାନେ ସମସ୍ତେ ପ୍ରାଣ ହରାଇଲେ । ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଜୟଦ୍ରଥ, କୀଚକ ପ୍ରଭୃତି ସମସ୍ତଙ୍କର ଏକା ଦଶା ହେଲା । ପତିବ୍ରତା ପୀଡ଼ିତା ନାରୀର ଗରମ ନିଃଶ୍ୱାସ (ହୃଦୟର ଅଭିଶାପ) କାହାକୁ ବା ଭସ୍ମ କରି ନ ଦେବ! ମହାଭାରତରେ କୌରବଙ୍କର ଯେଉଁ ସର୍ବନାଶ ହେଲା, ତାହାର ମୂଳ କାରଣ ଥିଲା ଦ୍ରୌପଦୀଙ୍କ ଅପମାନ । ସତୀ, ପତିବ୍ରତା ବା ଭଗବଦ୍‌ଭକ୍ତଙ୍କର ଯେ ଅନିଷ୍ଟ କରେ, ତାହାର ଏହି ଅବସ୍ଥା ହୁଏ । ଭଗବାନଙ୍କ

ଆଶ୍ରୟରେ ଜୀବନ ବିତାଇ ଓ ସମସ୍ତ ଦୁଃଖକଷ୍ଟକୁ ସହନ କରି ଦ୍ରୌପଦୀ ଆଦର୍ଶ ନାରୀ ହୋଇପାରିଥିଲେ ।

ଭଗବାନ କୌରବ ଓ ପାଣ୍ଡବଙ୍କୁ ନିମିତ୍ତ କରି ଦୁଷ୍ଟ ସଂହାରଣ କଲେ । ଶେଷରେ ନିଜ କୁଳକୁ ମଧ୍ୟ ଧ୍ୱଂସ କରି ନିଜେ ସ୍ୱଧାମକୁ ବାହୁଡ଼ି ଗଲେ । ଧର୍ମରାଜ ଯୁଧିଷ୍ଠିର ଅର୍ଜୁନଙ୍କଠାରୁ ଯଦୁବଂଶ ନାଶର ସମାଚାର ପାଇଲେ । ସେ ପରୀକ୍ଷିତଙ୍କୁ ରାଜସିଂହାସନରେ ବସାଇ ନିଜେ ମୌନବ୍ରତ ଧାରଣ କରି ମହାପ୍ରସ୍ଥାନ ପାଇଁ ବାହାରି ପଡ଼ିଲେ । ଭାଇମାନେ ମଧ୍ୟ ତାଙ୍କୁ ଅନୁସରଣ କଲେ । ସମଗ୍ର ଜୀବନ ପତିଙ୍କ ପଦାଙ୍କ ଅନୁସରଣ କରିଥିବା ପତିବ୍ରତା ଦ୍ରୌପଦୀ ମଧ୍ୟ ପାଣ୍ଡବଙ୍କ ପରି ବଲ୍‌କଳ ଧାରଣ କରି ସେମାନଙ୍କର ପଛେ ପଛେ ଚାଲିଲେ । ଯୁଧିଷ୍ଠିର ଉତ୍ତର ଦିଗରେ ବଦ୍ରିକାଶ୍ରମର ହିମପ୍ରଦେଶରେ ଆଗକୁ ଆଗକୁ ଚାଲିଥାନ୍ତି । ଦ୍ରୌପଦୀ ସମସ୍ତଙ୍କ ପଛରେ ଥାଆନ୍ତି । ସମସ୍ତେ ମୌନ ଥାଆନ୍ତି । କେହି କାହାରି ଆଡ଼କୁ ଚାହୁଁ ନ ଥାନ୍ତି । ଦ୍ରୌପଦୀ ନିଜର ଚିତ୍ତକୁ ସବୁ ଦିଗରୁ ନିବୃତ୍ତ କରି ପରାତ୍ପର ଭଗବାନ ଶ୍ରୀକୃଷ୍ଣଙ୍କ ଠାରେ ଏକାଗ୍ର କରିଦେଲେ । ତାଙ୍କୁ ନିଜର ଦେହଜ୍ଞାନ ରହିଲା ନାହିଁ । ସେ ବରଫରେ ଖସି ପଡ଼ିଗଲେ । ତାଙ୍କ ଦେହ ସେହିଠାରେ ଶ୍ୱେତ ହିମରାଶିରେ ବିଲୀନ ହୋଇଗଲା ଏବଂ ସେ ଭଗବାନଙ୍କ ସହ ମିଶିଗଲେ । ଦୁଷ୍ଟଙ୍କ ସଂହାରରେ ନିମିତ୍ତ ହେବାକୁ ଯଜ୍ଞକୁଣ୍ଡରୁ ଉତ୍ପନ୍ନ ହୋଇଥିବା ଯାଜ୍ଞସେନୀ ଭଗବାନଙ୍କ ଲୀଳାରେ ସଫଳ ସହଭାଗିତା କରି ପୁନଃ ନିଜ ସ୍ଥାନକୁ ଚାଲିଗଲେ ।



# ଭକ୍ତବର ଭୀଷ୍ମ ପିତାମହ

ସତ୍ୟ ହିଁ ଧର୍ମର ସାର ଓ ମୂଳ । ସତ୍ୟ ବିନା ଧର୍ମାଚରଣ ଖୁବ୍ ଶୀଘ୍ର ପାଷଣ୍ଡତାରେ ପରିଣତ ହୋଇଯାଏ । ଏହି ସତ୍ୟକୁ ଜୀବନର ଆଦର୍ଶରୂପେ ରଖି ତ୍ୟାଗର ପରମ ପରାକାଷ୍ଠା ଦେଖାଇଯାଇଛନ୍ତି କୁରୁକୁଳର ଅମ୍ଳାନ ପ୍ରତିଭା ପରମ ଯଶସ୍ୱୀ, ପ୍ରବଳ ପରାକ୍ରମୀ, ଶସ୍ତ୍ରଶାସ୍ତ୍ରର ମର୍ମଜ୍ଞ, ଧର୍ମଧୁରନ୍ଧର, ଆବାଳ ବ୍ରହ୍ମଚାରୀ ଭୀଷ୍ମ । ସେ ପିତାଙ୍କ ସୁଖ ପାଇଁ ତଥା ଅଧର୍ମ ପକ୍ଷରେ ରହି ସୁଦ୍ଧା ଧର୍ମର ବିଜୟ ଇଚ୍ଛା କରି ଯେପରି ନିଜର ସମସ୍ତ ସୁଖକୁ ତିଳାଞ୍ଜଳି ଦେଇଛନ୍ତି, ତାହା ମାନବ ସମାଜ ପାଇଁ ଆଦର୍ଶ ଓ ପଥପ୍ରଦର୍ଶକ ହୋଇ ରହିବ । ତାଙ୍କର ଅଦ୍ଭୁତ ଭଗବଦ୍‌ଭକ୍ତି,

ଯାହା ଯୁଦ୍ଧ କ୍ଷେତ୍ରରେ ସର୍ବଜନ ସମକ୍ଷରେ ପ୍ରକାଶିତ ହୋଇଥିଲା, ତାହା ସ୍ୱୟଂ ଭଗବାନଙ୍କ ମନରେ ମଧ୍ୟ ରେଖାଙ୍କିତ କରି ଦେଇଥିଲା। ସେ ଶରଶଯ୍ୟାରେ ପଡ଼ି ରହି ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥିବା ବେଳେ ଭକ୍ତଭକ୍ତିମାନ୍ ଶ୍ରୀକୃଷ୍ଣ ମଧ୍ୟ ତାଙ୍କୁ ଧ୍ୟାନ କରୁଥିଲେ।

ଇତିହାସରେ କେବଳ ପିତାମହ ଭୀଷ୍ମ ହିଁ ଏଭଳି ସମ୍ମାନ ପାଇବାର ଅଧିକାରୀ, ଯେ କି ସତ୍ୟର ରକ୍ଷା ପାଇଁ ଓ ଧର୍ମର ବିଜୟ ପାଇଁ ନିଜ ଜୀବନର ସମସ୍ତ ସୁଖକୁ ବଳିଦାନ କରିବା ସହିତ ମୃତ୍ୟୁକୁ ନିଜ ଇଚ୍ଛାରେ ବରଣ କରିନେଇଥିଲେ। ପିତାଙ୍କ ସୁଖ ପାଇଁ ସ୍ୱୟଂ ଆଜୀବନ ବ୍ରହ୍ମଚର୍ଯ୍ୟ ରହିବାର ଭୀଷଣ ପ୍ରତିଜ୍ଞା କରି ଭୀଷ୍ମ ନାମ ପାଇଥିବା ଏହି ମହାନ୍ ଉଦାତ୍ତ ବ୍ୟକ୍ତିତ୍ୱ ଯେ କେବଳ ସତ୍ୟନିଷ୍ଠାର ପରାକାଷ୍ଠା ମଧ୍ୟରେ ସୀମିତ ଥିଲେ, ତା' ନୁହେଁ; ସେ ଏକାଧାରରେ ଶସ୍ତ୍ର ଓ ଶାସ୍ତ୍ରରେ ପ୍ରବୀଣ, ପରମ ପରାକ୍ରମୀ ଯୋଦ୍ଧା, ଧର୍ମଜ୍ଞ, ନୀତିନିପୁଣ, ଭଗବଦ୍‌ଭକ୍ତ ଓ ପିତୃଭକ୍ତ ମଧ୍ୟ ଥିଲେ। ଆମ ସନାତନ ଧର୍ମରେ ଏମିତି କିଏ ଅଛି, ଯେ କି ଭୀଷ୍ମଙ୍କ ନାମ ଶୁଣି ନ ଥିବ। ଅଧର୍ମ ପକ୍ଷରେ ସୁଦୃଢ଼ ଓ ଦୁର୍ଭେଦ୍ୟ ଦ୍ୱାର ପରି ଦଣ୍ଡାୟମାନ ହେବାକୁ ପଡ଼ିଥିଲେ ମଧ୍ୟ ଧର୍ମକୁ ବିଜୟୀ କରିବାର ଦୁଃସାଧ୍ୟ ପ୍ରୟାସ କରିଥିବା ଏହି ମହାନ୍ ବ୍ୟକ୍ତିତ୍ୱଙ୍କୁ ଜୀବନରେ କେତେ ଯେ କଠିନ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିବ, ଦେହ ଓ ମନର ଅନ୍ତର୍ଦ୍ୱନ୍ଦ୍ୱ ଭିତରେ କେତେ ଯେ ମର୍ମବେଦନାରେ ଦଗ୍ଧ ହେବାକୁ ପଡ଼ିଥିବ, କେତେ ଯେ ପରସ୍ପର ବିରୁଦ୍ଧ ବିଗ୍ରହର ଆଘାତ ସହିବାକୁ ପଡ଼ିଥିବ, ତାହା ଜଣେ ସାଧାରଣ ବ୍ୟକ୍ତି କେବେ ଅନୁମାନ ମଧ୍ୟ କରି ପାରିବ ନାହିଁ। ଧର୍ମର ବିଜୟ ନିମନ୍ତେ ସେ ନିଜ ଇଚ୍ଛାରେ ମୃତ୍ୟୁବରଣ କରି, ନିଜକୁ ଅସଂଖ୍ୟ ଶରରେ ବିଦ୍ଧ କରି ଏବଂ ଦେହର ପ୍ରତ୍ୟେକ ବିନ୍ଦୁ ରକ୍ତ ଦାନ କରି ଧର୍ମବୃକ୍ଷକୁ ଅଭିଷେଚିତ ତଥା ପୁଷ୍ପିତ-ପଲ୍ଲବିତ କରିଥିଲେ। ଏଇଥିପାଇଁ ତ ଏହି ସର୍ବସ୍ୱ ବଳିଦାନୀ ମହାପୁରୁଷ ଆଜି ମଧ୍ୟ ସମସ୍ତଙ୍କ ସମ୍ମାନର ପାତ୍ର ତଥା ହିନ୍ଦୁ ଗୃହସ୍ଥ ଦ୍ୱାରା ତର୍ପଣ ପାଇବାର ଅଧିକାରୀ ହୋଇ ପାରିଛନ୍ତି!

ଏହି ମହାପୁରୁଷଙ୍କର ପିଲାଦିନର ନାମ ଥିଲା ଦେବବ୍ରତ। ଏହାଙ୍କର ପିତା ଥିଲେ ଚକ୍ରବର୍ତ୍ତୀ ସମ୍ରାଟ ମହାରାଜ ଶାନ୍ତନୁ ଏବଂ ମାତା ଥିଲେ ଗଙ୍ଗାଦେବୀ। ସ୍ୱୟଂ ଦେବବ୍ରତ ମଧ୍ୟ ଅଷ୍ଟବସୁଙ୍କ ମଧ୍ୟରୁ 'ଦ୍ୟୌ' ନାମକ ବସୁ ଥିଲେ। ତାଙ୍କୁ ମହର୍ଷି ବଶିଷ୍ଠଙ୍କ ଅଭିଶାପରେ ମର୍ତ୍ତ୍ୟରେ ଜନ୍ମ ନେବାକୁ ପଡ଼ିଥିଲା ଏବଂ ଗଙ୍ଗା

ତାଙ୍କର ମାତା ହେବାକୁ ସ୍ୱୀକାର କରିଥିଲେ ।* ଯଦ୍ୟପି ଅନ୍ୟ ସାତ ଜଣ ବସୁ ମଧ୍ୟ ଶାନ୍ତନୁଙ୍କ ଔରସରେ ଗଙ୍ଗାଙ୍କ ଠାରୁ ଜନ୍ମଗ୍ରହଣ କରିଥିଲେ, ତଥାପି ସେମାନେ ଜନ୍ମ ହେବାମାତ୍ରେ ଗଙ୍ଗା ସେମାନଙ୍କୁ ନଦୀ ସ୍ରୋତରେ ଭସାଇ ଦେଇ ଶୀଘ୍ର ଶାପମୁକ୍ତ କରିଦେଇଥିଲେ । କିନ୍ତୁ ଶାନ୍ତନୁଙ୍କ ସଙ୍ଗେ ବୈବାହିକ ଜୀବନ ବିତାଇବା ପୂର୍ବରୁ ଗଙ୍ଗା ଏହି ସର୍ତ୍ତ ରଖିଥିଲେ ଯେ ଯେପର୍ଯ୍ୟନ୍ତ ତାଙ୍କର କୌଣସି କାର୍ଯ୍ୟକୁ ଶାନ୍ତନୁ ବିରୋଧ କରିବେ ନାହିଁ, ସେପର୍ଯ୍ୟନ୍ତ ସେ ତାଙ୍କର ପତ୍ନୀ ହୋଇ ରହିବେ । ତାଙ୍କର କାର୍ଯ୍ୟକୁ ବିରୋଧ କଲେ ବା ତାଙ୍କୁ ନିଷ୍ଠୁର ବାଣୀ କହିଲେ ସେ ତାଙ୍କୁ ଛାଡ଼ି ଦେବଲୋକକୁ ଚାଲିଯିବେ । ଅବଶ୍ୟ ଏହା ଗଙ୍ଗାଙ୍କ ଶୀଘ୍ର ମୁକ୍ତିର ଏକ ଉପାୟ ମଧ୍ୟ ଥିଲା ।

---

* ଶାନ୍ତନୁ ଓ ଗଙ୍ଗା ଦେବୀଙ୍କ ପରିଣୟ କିପରି ହେଲା, ସେ ସମ୍ବନ୍ଧରେ ମଧ୍ୟ ଏକ ରହସ୍ୟମୟ ଆଖ୍ୟାନ ଅଛି ।

ପରମ ପବିତ୍ର ଈକ୍ଷ୍ୱାକୁ ବଂଶରେ ମହାଭିଷକ୍ ନାମରେ ଜଣେ ରାଜା ଥିଲେ । ସେ ନିଜର ପୁଣ୍ୟ କର୍ମ ପ୍ରଭାବରେ ବ୍ରହ୍ମଲୋକ ପ୍ରାପ୍ତ ହୋଇଥିଲେ । ଥରେ ବ୍ରହ୍ମଲୋକରେ ସଭା ଚାଲିଥିବା ବେଳେ ସେଠାରେ ଉପସ୍ଥିତା ଗଙ୍ଗାଦେବୀଙ୍କ ପଣତ ପବନରେ ଟିକିଏ ଉଡ଼ିଗଲା । ସମସ୍ତେ ମର୍ଯ୍ୟାଦା ଦୃଷ୍ଟିରୁ ଦୃଷ୍ଟି ଅବନତ କରିଦେଲେ; ମାତ୍ର ମହାଭିଷକ୍ ଗଙ୍ଗାଙ୍କୁ ଚାହିଁ ରହିଲେ । ସଭାର ମର୍ଯ୍ୟାଦା ଭଙ୍ଗ କରିଥିବା ଦୃଷ୍ଟିରୁ ତାଙ୍କୁ ବ୍ରହ୍ମା ଅଭିଶାପ ଦେଇ କହିଲେ—''ଯେଉଁ ଗଙ୍ଗାଙ୍କ ସୌନ୍ଦର୍ଯ୍ୟ ପ୍ରତି ତୁମେ ଆକର୍ଷିତ ହୋଇ ଚାହିଁ ରହିଲ, ମର୍ତ୍ତ୍ୟଲୋକରେ ଜନ୍ମନେଇ ତୁମେ ତାଙ୍କ ହୃଦୟର ନିଷ୍ଠୁରତାକୁ ଅନୁଭବ କରିବ ।'' ଏହି ଅଭିଶାପ ଘଟଣାରେ ଗଙ୍ଗା ମଧ୍ୟ ମନେ ମନେ ନିଜକୁ ଦାୟୀ ମନେକଲେ । ତେଣୁ ସେ ମର୍ତ୍ତ୍ୟକୁ ଆସି ମହାଭିଷକ୍‌ଙ୍କର ସେବା କରିବାକୁ ମନସ୍ଥ କଲେ । ପୁନଶ୍ଚ ମହର୍ଷି ବଶିଷ୍ଠଙ୍କୁ ଅବହେଳନା କରିବା ଅପରାଧରେ ଅଷ୍ଟବସୁଙ୍କୁ ମଧ୍ୟ ମର୍ତ୍ତ୍ୟରେ ଜନ୍ମ ନେବାର ଥିଲା । ସେମାନଙ୍କ ଅନୁରୋଧରେ ଗଙ୍ଗାଦେବୀ ସେମାନଙ୍କୁ ଗର୍ଭରେ ଧାରଣ କରିବାକୁ ସ୍ୱୀକାର କଲେ । ସେମାନେ ମର୍ତ୍ତ୍ୟରେ ମହାରାଜ ପ୍ରତୀପଙ୍କ ପୁତ୍ର ଶାନ୍ତନୁଙ୍କ ଔରସରୁ ଜନ୍ମ ଗ୍ରହଣ କରିବାକୁ ଚାହିଁଲେ । ଏହି ଶାନ୍ତନୁ ହିଁ ପୂର୍ବେ ମହାଭିଷକ୍ ଥିଲେ । ଏହି ଉଭୟ ଘଟଣାର ଏକତ୍ର ସମାବେଶ ହୋଇଯିବାରୁ ଗଙ୍ଗା ଅଷ୍ଟବସୁଙ୍କୁ ଜନ୍ମ ଦେଇ ଶୀଘ୍ର ଶାପମୁକ୍ତ କରି ନିଜେ ମଧ୍ୟ ଦୋଷମୁକ୍ତ ହେବାକୁ ମର୍ତ୍ତ୍ୟକୁ ଆସିଲେ ଏବଂ ଶାନ୍ତନୁଙ୍କୁ ପତିରୂପେ ବରଣ କଲେ ।

ଶାନ୍ତନୁଙ୍କ ପିତା ପ୍ରତୀପ ମଧ୍ୟ ବାନପ୍ରସ୍ଥ ଆଶ୍ରମ ଗ୍ରହଣ କରିବା ପୂର୍ବରୁ ପୁତ୍ର ଶାନ୍ତନୁଙ୍କୁ ରାଜପଦରେ ଅଭିଷିକ୍ତ କରି ଏ ଆଦେଶ ଦେଇ ଯାଇଥିଲେ ଯେ, ''ଜଣେ ସ୍ୱର୍ଗୀୟ କନ୍ୟା ତୁମକୁ ଏକାନ୍ତରେ ଭେଟିବ । ତୁମେ ତାହାକୁ ବିବାହ କରି ତା'ର ଇଚ୍ଛା ପୂର୍ଣ୍ଣ କରିବ ।'' ଏଣୁ ପିତୃଆଜ୍ଞାନୁସାରେ ଶାନ୍ତନୁ ଗଙ୍ଗାଙ୍କୁ ବିବାହ କଲେ ଏବଂ ତାଙ୍କଠାରୁ ଅଷ୍ଟବସୁ ପୁତ୍ରରୂପେ ଜନ୍ମ ଗ୍ରହଣ କଲେ ।

ଏହି ସର୍ତ୍ତର ପରିଣାମ ଭୟରେ, ସ୍ୱୟଂ ଜନ୍ମଦାତ୍ରୀ ଗଙ୍ଗା ନିଜ ହାତରେ ନିଜ ସନ୍ତାନ ତଥା ଶାନ୍ତନୁଙ୍କ ବଂଶଧରଙ୍କୁ ଗୋଟି ଗୋଟି କରି ନଦୀସ୍ରୋତରେ ଭସାଇ ଦେଉଥିଲେ ମଧ୍ୟ ଶାନ୍ତନୁ କିଛି କହି ପାରୁ ନ ଥିଲେ। ଗଙ୍ଗାଙ୍କ ପ୍ରତି ଆସକ୍ତି ହିଁ ତାଙ୍କ ମୁହଁ ବନ୍ଦ କରିଦେଇଥିଲା। କିନ୍ତୁ ବଂଶରକ୍ଷାର ଚିନ୍ତା ମଧ୍ୟ ତାଙ୍କୁ ଘାରୁଥିଲା। ସାତଟି ପୁତ୍ର ଚ୍ଲିଗଲେ। ଶେଷରେ ଅଷ୍ଟମ ପୁତ୍ରର ଜନ୍ମ ପରେ ଗଙ୍ଗାଙ୍କର ଏହି ନିଷ୍ଠୁର କର୍ମକୁ ତାଙ୍କର ପିତୃହୃଦୟ ସହି ପାରିଲା ନାହିଁ। ସେ ଗଙ୍ଗାଙ୍କୁ ବାରଣ କଲେ। ଏହିଠାରୁ ଗଙ୍ଗାଙ୍କର ସର୍ତ୍ତ ପୂର୍ଣ୍ଣ ହୋଇଗଲା। ସେ ନିଜର ତଥା ପୁତ୍ରମାନଙ୍କର ପରିଚୟ ତଥା ପୂର୍ବଜନ୍ମ ବୃତ୍ତାନ୍ତ କହି ଶେଷ ପୁତ୍ରଟିକୁ ନ ମାରିବାକୁ ପ୍ରତିଜ୍ଞା କଲେ। ସେ ପୁତ୍ରଟିକୁ ଲାଳନ ପାଳନ କରି ସୁଯୋଗ୍ୟ କରିବା ପରେ ପିତାଙ୍କ ନିକଟରେ ଛାଡ଼ିଦେଇ ଯିବେ ବୋଲି ପ୍ରତିଶ୍ରୁତି ଦେଇ ସେହି ପୁତ୍ର ଦେବବ୍ରତକୁ ସଙ୍ଗରେ ନେଇ ଚ୍ଲିଗଲେ। ଏହି ପୁତ୍ର ଦେବବ୍ରତ ପୂର୍ବେ 'ଦ୍ୟୌ' ନାମକ ବସୁ ଥିଲା ଏବଂ ପରବର୍ତ୍ତୀ କାଳରେ ଭୀଷ୍ମ ନାମରେ ପ୍ରସିଦ୍ଧ ହେଲା।

ସମୟ ଗଡ଼ି ଚ୍ଲିଲା। ପୁତ୍ରକୁ ଦେଖିବାର ଅଭିଳାଷ ଶାନ୍ତନୁଙ୍କ ମନରେ ବଢ଼ି ଚ୍ଲିଥାଏ। ତେଣେ ଗଙ୍ଗାଙ୍କ ସ୍ନେହ ପାଇ ଦେବବ୍ରତ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲେ। ସେ ମହର୍ଷି ବଶିଷ୍ଠଙ୍କ ଠାରୁ ସମସ୍ତ ବେଦ-ବେଦାଙ୍ଗ ଅଧ୍ୟୟନ କଲେ। ମହର୍ଷି ପରଶୁରାମଙ୍କ ଠାରୁ ଅମୋଘ ଅସ୍ତ୍ର-ଶସ୍ତ୍ରର ଜ୍ଞାନ ଲାଭ କଲେ ଏବଂ ଖୁବ୍ ଶୀଘ୍ର ଅତ୍ୟନ୍ତ ତେଜସ୍ୱୀ, ପରାକ୍ରମୀ ବୀର ହୋଇ ବାହାରିବା ସଙ୍ଗେ ସଙ୍ଗେ ସମସ୍ତ ବିଦ୍ୟାରେ ପାରଙ୍ଗମ ହୋଇଗଲେ। ସେ ଅତି ସଂଯମୀ, ସଦାଚ୍ରୀ, ଭଗବନ୍ନିଷ୍ଠ ଓ ତତ୍ତ୍ୱଜ୍ଞାନୀ ହୋଇଗଲେ। ପୁତ୍ର ସୁଯୋଗ୍ୟ ହୋଇଯିବାରୁ ଗଙ୍ଗା ତାଙ୍କୁ ଆଣି ଶାନ୍ତନୁଙ୍କୁ ସମର୍ପି ଦେଲେ। ରାଜକୁମାର ଦେବବ୍ରତଙ୍କୁ ଦେଖି ପିତା ଶାନ୍ତନୁଙ୍କ ଆନନ୍ଦର ସୀମା ରହିଲା ନାହିଁ। ସେ ନିଜର ରାଜସିଂହାସନ ପାଇଁ ସୁଯୋଗ୍ୟ ଉତ୍ତରାଧିକାରୀ ପାଇ ମନରେ ଅନେକ ସ୍ୱପ୍ନ ଦେଖିବାକୁ ଲାଗିଲେ। କିନ୍ତୁ ସମସ୍ତଙ୍କ ସ୍ୱପ୍ନ କ'ଣ ସତ୍ୟ ହୋଇପାରେ? ଭଗବାନଙ୍କ ବିଧାନ ଯେ କଣ, କିଏ ବା ଜାଣି ପାରିବ! ଭଗବତ୍ ବିଧାନ ତାଙ୍କୁ ପୁନର୍ବିବାହ କରାଇ ଏକ ମହାନ୍ ବଂଶ ସୃଷ୍ଟି କରିବାକୁ ବାଧ୍ୟ କରିଦେଲା। ତେଣୁ ସେ ଯୋଜନଗନ୍ଧା ପ୍ରତି ଆସକ୍ତ ହୋଇଗଲେ। ଅବଶ୍ୟ ମହତ୍ ପୁରୁଷଙ୍କ ପ୍ରବୃତ୍ତି ଓ ନିବୃତ୍ତି ଉଭୟରେ ଭଗବାନଙ୍କର କୌଣସି ଇଚ୍ଛା ହିଁ ନିହିତ ଥାଏ; ତେଣୁ ଅଦୃଷ୍ଟର ବିଧାନ ଅନୁସାରେ

ତାଙ୍କର ଜୀବନ ଏକ ନୂତନ ମୋଡ଼ ନେଲା ।

ଥରେ ମହାରାଜା ଶାନ୍ତନୁ ଯମୁନାକୂଳରେ ଭ୍ରମଣ କରୁ କରୁ ଏକ ପ୍ରକାର ଦିବ୍ୟ ସୁଗନ୍ଧ କେଉଁଠାରୁ ଆସୁଥିବାର ଅନୁଭବ କଲେ । ତାହା ଏକ ଅପୂର୍ବ ସୁନ୍ଦରୀ କନ୍ୟାଠାରୁ ଆସୁଥିବାର ଜାଣିପାରି ତାକୁ ତା'ର ପରିଚୟ ପଗ୍ଚରିଲେ । ଶାନ୍ତନୁ ତା' ପ୍ରତି ଆକୃଷ୍ଟ ହୋଇଗଲେ । ସେ ଥିଲା ରାଜା ଉପରିଚରଙ୍କ ଅଯୋନିଜା କନ୍ୟା ମତ୍ସ୍ୟଗନ୍ଧା । ମହର୍ଷି ପରାଶର କୃପା କରି ତାକୁ ନିର୍ଦ୍ଦୋଷ ଓ ସୁଗନ୍ଧମୟ କରି ଦେଇଥିବାରୁ ସେ ଯୋଜନଗନ୍ଧା ହୋଇଥିଲା । ଶାନ୍ତନୁ ତା'ର ପାଳିତ ପିତା ଧୀବର ଦାଶରାଜ ପାଖକୁ ଯାଇ ନିଜର ରାଣୀ କରିବାକୁ ପ୍ରସ୍ତାବ ରଖିବାରୁ ସେ ଏଭଳି ଗୋଟିଏ ସର୍ତ୍ତ ରଖିଦେଲା, ଯାହା କି ଶାନ୍ତନୁଙ୍କର ଇଚ୍ଛାକୁ ଅପୂର୍ଣ୍ଣ ରଖିଦେଲା ଏବଂ ସେ ଅବ୍ୟକ୍ତ ମନସ୍ତାପରେ ହନ୍ତସନ୍ତ ହେବାକୁ ଲାଗିଲେ । ତାଙ୍କର ସ୍ୱପ୍ନ ଧୂଳିସାତ୍ ହେବା ଆଶଙ୍କାରେ ସେ ତା' ସର୍ତ୍ତରେ ରାଜି ହୋଇପାରୁ ନ ଥାନ୍ତି କି ଯୋଜନଗନ୍ଧା ସତ୍ୟବତୀକୁ ଭୁଲି ପାରୁ ନ ଥାନ୍ତି ।

ଥରେ ଦେବବ୍ରତ ପିତା ଶାନ୍ତନୁଙ୍କ ମନରେ କିଛି ଅବ୍ୟକ୍ତ ଦୁଃଖ ଥିବାର ଲକ୍ଷ୍ୟ କଲେ ଏବଂ ଖୁବ୍ ଶୀଘ୍ର ପିତାଙ୍କ ଦୁଃଖର କାରଣ ବିଷୟରେ ତାଙ୍କ ଅନ୍ତରଙ୍ଗ ସେବକଠାରୁ ଅବଗତ ହୋଇଗଲେ । ଶେଷରେ ନିଜର ସର୍ବସ୍ୱ ବିନିମୟରେ ପିତାଙ୍କର ଦୁଃଖ ଦୂର କରିବାକୁ ନିଜର କର୍ତ୍ତବ୍ୟ ବୋଲି ମନସ୍ଥ କରିନେଲେ । ମହାରାଜ ଶାନ୍ତନୁ ସେତେବେଳେ ଧୀବର ଦାଶରାଜଙ୍କ ପାଳିତା କନ୍ୟା ସତ୍ୟବତୀ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇଯାଇଥିଲେ । ଦାଶରାଜ ଯଦ୍ୟପି ଶାନ୍ତନୁଙ୍କ ଭଳି ଚକ୍ରବର୍ତ୍ତୀ ସମ୍ରାଟ ସଙ୍ଗେ କନ୍ୟାର ବିବାହକୁ ବହୁତ ବଡ଼ ଭାଗ୍ୟର କଥା ବୋଲି ଭାବୁଥିଲେ, ତଥାପି ସେ ଗ୍ଚହୁଁଥିଲେ ଯେ ତାଙ୍କ କନ୍ୟାର ସନ୍ତାନ ରାଜସିଂହାସନର ଅଧିକାରୀ ହେବା ଆବଶ୍ୟକ । ମାତ୍ର ଶାନ୍ତନୁ ଦେବବ୍ରତଙ୍କ ପରି ସୁଶୀଳ ଓ ଯୋଗ୍ୟତମ ପୁତ୍ରର ଅଧିକାର ଓ ସ୍ୱତ୍ୱ ଛଡ଼ାଇ ନେବାକୁ ଗ୍ଚହୁଁ ନ ଥିଲେ । ଏକପକ୍ଷରେ ପ୍ରିୟ ତଥା ଯୋଗ୍ୟତମ ଉତ୍ତରାଧିକାରୀର ଅଧିକାର ଓ ନିଜର କର୍ତ୍ତବ୍ୟ, ଅପରପକ୍ଷରେ ସତ୍ୟବତୀ ପ୍ରତି ଆସକ୍ତି ତାଙ୍କୁ ଦୋଦୁଲ୍ୟମାନ ସ୍ଥିତିରେ ପକାଇ ଦେଇଥିଲା । ଦେବବ୍ରତ ପିତାଙ୍କର ଏହି ମନୋବେଦନା ଜାଣିପାରି ଧୀବରଙ୍କୁ କହିଲେ—"ତୁମେ ବିବାହ ପ୍ରସ୍ତାବରେ ରାଜି ହୋଇଯାଅ; ମୁଁ ପ୍ରତିଜ୍ଞା କରୁଛି ଯେ ମୁଁ ରାଜ୍ୟାଧିକାର ନେବି ନାହିଁ ।" ଏଥିରେ ବି ଦାଶରାଜଙ୍କ ମନ ମାନିଲା ନାହିଁ, ସେ କହିଲେ—"ତୁମେ ସିନା ରାଜପଦ ଗ୍ରହିଁବ ନାହିଁ, ଭବିଷ୍ୟତରେ

ତୁମର ସନ୍ତାନ ତ ରାଜସିଂହାସନ ପାଇଁ କଳହ କରି ପାରନ୍ତି।'' ଏ କଥାରେ ଦେବବ୍ରତ କହିଲେ—''ମୋର ଯଦି ସନ୍ତାନ ହେବେ, ତେବେ ସିନା କଳହ କରିବେ। ମୁଁ ଏବେ ସମସ୍ତ ଦିଗପାଳଙ୍କୁ ସାକ୍ଷୀ ରଖି ଦୃଢ଼ ସ୍ୱରରେ ଏହି କଠୋର ପ୍ରତିଜ୍ଞା କରୁଛି ଯେ, ମୁଁ ଆଜୀବନ ଅବିବାହିତ ରହିବି।'' ତାଙ୍କର ମେଘଗମ୍ଭୀର ଭୀଷଣ ପ୍ରତିଜ୍ଞାରେ ଦିଗ-ବିଦିଗ କମ୍ପି ଉଠିଲା। ତାଙ୍କର ଏହି ପିତୃଭକ୍ତି ଦେଖି ଦେବତାମାନେ ଆନନ୍ଦରେ ପୁଷ୍ପବୃଷ୍ଟି କଲେ ଏବଂ ଏଭଳି ଭୀଷଣ ପ୍ରତିଜ୍ଞା ହେତୁ ସେ 'ଭୀଷ୍ମ' ନାମରେ ପରିଚିତ ହେଲେ। ମହାରାଜ ଶାନ୍ତନୁ ପ୍ରିୟ ପୁତ୍ରର ପିତୃଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ଇଚ୍ଛାମୃତ୍ୟୁର ବର ଦେଇ କହିଲେ—''ମୁଁ ଆଶୀର୍ବାଦ ଦେଉଛି, ତୁମର ଇଚ୍ଛା ବିନା ମୃତ୍ୟୁ ତୁମକୁ ଛୁଇଁ ପାରିବ ନାହିଁ।''

ସ୍ୱାଭାବିକ କଥା। କାୟମନୋବାକ୍ୟରେ ପିତୃସେବା କରୁଥିବା ପୁତ୍ର ପାଇଁ କ'ଣ ବା ଅଲଭ୍ୟ ହୋଇପାରେ? ପିତୃଆଜ୍ଞା ପାଳନ, ପିତାଙ୍କ ସେବା ପ୍ରଭୃତି କରି ଅନେକ ବ୍ୟକ୍ତି ଜଗତରେ ବନ୍ଦନୀୟ ଓ ଯଶସ୍ୱୀ ହୋଇଥିବାର ଆମ ପୁରାଣାଦିରେ ପ୍ରମାଣ ରହିଛି। ପୂରୁ ପିତାଙ୍କୁ ନିଜର ଯୌବନ ଦାନ କରି ନିଜେ ବୃଦ୍ଧାବସ୍ଥାକୁ ଆଦରି ନେଇଥିଲେ ଏବଂ ପରିଣାମରେ ରାଜସିଂହାସନର ଅଧିକାରୀ ହେଲେ। ପରଶୁରାମ ପିତୃଆଜ୍ଞା ପାଳନ କରି ପରିବାରର ସମସ୍ତଙ୍କୁ ସଙ୍କଟରୁ ବଞ୍ଚାଇ ଦେଇଥିଲେ। ପୁଣ୍ଡରୀକ ପିତାମାତାଙ୍କ ସେବା ଫଳରେ ଭଗବାନଙ୍କ ଦର୍ଶନ ପାଇଥିଲେ। ଯଦିଓ ଏଠାରେ ଶାନ୍ତନୁଙ୍କ ଇଚ୍ଛା ସେତେ ଉତ୍ତମ ଶ୍ରେଣୀର ନ ଥିଲା, ସାଧାରଣ ସାଂସାରିକ ସୁଖର ଇଚ୍ଛା ଥିଲା; ତଥାପି ଏ ପରିପ୍ରେକ୍ଷୀରେ ପିତାଙ୍କ ସାମର୍ଥ୍ୟ ନୁହେଁ, ବରଂ ଶାସ୍ତ୍ର ଓ ଭଗବାନଙ୍କର ଆଦେଶ ହିଁ ଫଳ ପ୍ରଦାନ କରିଥାଏ।

ସତ୍ୟବତୀଙ୍କ ସଙ୍ଗେ ଶାନ୍ତନୁଙ୍କର ବିବାହ ହୋଇଗଲା। ତାଙ୍କଠାରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମ ନେଲେ। ଚିତ୍ରାଙ୍ଗଦ ଯୁବାବସ୍ଥାରେ ପଦାର୍ପଣ ନ କରୁଣୁ ଶାନ୍ତନୁଙ୍କର ଦେହାନ୍ତ ହୋଇଗଲା। ତେଣୁ ମାତା ସତ୍ୟବତୀଙ୍କ ଆଦେଶରେ ଭୀଷ୍ମ ଚିତ୍ରାଙ୍ଗଦକୁ ସିଂହାସନରେ ବସାଇଲେ। କିନ୍ତୁ ସେ ମଧ୍ୟ ତାଙ୍କରି ନାମଧାରୀ ଜଣେ ଗନ୍ଧର୍ବ ସଙ୍ଗେ ଯୁଦ୍ଧ କରୁ କରୁ ନିହତ ହେଲେ। ଶେଷରେ ବାଳକ ବିଚିତ୍ରବୀର୍ଯ୍ୟଙ୍କୁ ସିଂହାସନରେ ବସାଇ ଭୀଷ୍ମ ନିଜେ ରାଜ୍ୟର ସୁରକ୍ଷାଭାର ଗ୍ରହଣ କଲେ। ବିଚିତ୍ରବୀର୍ଯ୍ୟଙ୍କର ଯୁବାବସ୍ଥା ହେବାରୁ ତାଙ୍କ ବିବାହ ନିମନ୍ତେ ସତ୍ୟବତୀଙ୍କ ଅନୁମତି କ୍ରମେ କାଶିରାଜ-କନ୍ୟାଙ୍କ ସ୍ୱୟଂବର ସଭାକୁ ଗଲେ। ଭୀଷ୍ମଙ୍କୁ ଦେଖି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ। ସେମାନେ ଉପହାସ କରି କହିଲେ, ''ଦେଖ

ହେ! ଏ ନିଜର ପ୍ରତିଜ୍ଞା ଭଙ୍ଗ କରି ଏ ବୃଦ୍ଧାବସ୍ଥାରେ ବିବାହ କରିବାକୁ ଆସିଛନ୍ତି!'' ଆଉ କେହି କହିଲା—''ରାଜକୁମାରୀଙ୍କର ରୂପସୌନ୍ଦର୍ଯ୍ୟ ଭୀଷ୍ମଙ୍କର ବ୍ରତ ଭଙ୍ଗ କରିଦେଲା।'' ସେମାନଙ୍କ ବ୍ୟଙ୍ଗ ବାକ୍ୟର ଉତ୍ତରରେ ଭୀଷ୍ମ ନିଜର ଉଦ୍ଦେଶ୍ୟ ସ୍ପଷ୍ଟ କରିଦେଲେ ଏବଂ ସମସ୍ତଙ୍କୁ ନିଜର ଅଦ୍ଭୁତ ପରାକ୍ରମରେ ପରାସ୍ତ କରି କାଶୀରାଜାଙ୍କର ତିନୋଟି କନ୍ୟା ଅମ୍ବା, ଅମ୍ବିକା ଓ ଅମ୍ବାଳିକାଙ୍କୁ ନେଇ ଆସିଲେ।

ଭୀଷ୍ମ ସେଠାକୁ ଯିବାର କାରଣ ଥିଲା ଯେ ସେ ହସ୍ତିନାପୁର ସିଂହାସନର ସୁରକ୍ଷା ପାଇଁ ପିତାଙ୍କ ସମ୍ମୁଖରେ ବଚନବଦ୍ଧ ହୋଇଥିଲେ। ସେ କହିଥିଲେ, ''ଯେପର୍ଯ୍ୟନ୍ତ ଏ ସିଂହାସନ ସବୁ ଦୃଷ୍ଟିରୁ ସୁରକ୍ଷିତ ଓ ଉପଯୁକ୍ତ ରାଜା ଲାଭ ନ କରିଛି, ସେପର୍ଯ୍ୟନ୍ତ ଏ ସିଂହାସନରେ ପ୍ରତିଷ୍ଠିତ ରାଜାଙ୍କୁ ମୁଁ ସାହାଯ୍ୟ କରିବି।'' ସେହି ଦୃଷ୍ଟିରୁ ସେ ବାଳକ ବିଚିତ୍ରବୀର୍ଯ୍ୟଙ୍କର ପ୍ରତିନିଧିତ୍ୱ କରି ସେଠାକୁ ଯାଇ ତିନି କନ୍ୟାଙ୍କୁ ନେଇ ଆସିଲେ। କିନ୍ତୁ ଅମ୍ବା ଶାଲ୍ୱଙ୍କୁ ବିବାହ କରିବାକୁ ଚାହୁଁଥିଲା। ସେ ଭୀଷ୍ମଙ୍କ ଆଗରେ ଏ କଥା ପ୍ରକାଶ କରିବାରୁ ଭୀଷ୍ମ ତାକୁ ସସମ୍ମାନେ ଶାଲ୍ୱଙ୍କ ପାଖକୁ ପଠାଇ ଦେଲେ। ମାତ୍ର ଶାଲ୍ୱ ଭୀଷ୍ମଙ୍କ ଠାରୁ ପରାସ୍ତ ହୋଇଥିବାରୁ ତାକୁ ଆଉ ଗ୍ରହଣ କଲେ ନାହିଁ। ଅମ୍ବା ତା'ର ପ୍ରିୟତମ ଠାରୁ ନିରାଶ ହୋଇ ଫେରିଆସି ଭୀଷ୍ମଙ୍କୁ କହିଲା—''ତୁମେ ହିଁ ମୋତେ ବିବାହ କର; କାରଣ ତୁମେ ମୋତେ ଜିତି ଆଣିଥିବାରୁ ନିୟମ ଦୃଷ୍ଟିରୁ ମୁଁ ତୁମର ହୋଇଗଲି। ଶାଲ୍ୱ ମୋତେ ଗ୍ରହଣ କରୁ ନାହାନ୍ତି।'' ଭୀଷ୍ମ କିନ୍ତୁ ନିଜର ପ୍ରତିଜ୍ଞା କଥା ଶୁଣାଇ ତାକୁ ଗ୍ରହଣ କଲେ ନାହିଁ। ଫଳରେ ସେ ଉଭୟ ଦିଗରୁ ପ୍ରତାରିତ ହୋଇ ଭୀଷ୍ମଙ୍କ ଠାରୁ ପ୍ରତିଶୋଧ ନେବାକୁ କଠୋର ପ୍ରତିଜ୍ଞା କଲା ଏବଂ ଭୀଷ୍ମଙ୍କର ଗୁରୁ ପରଶୁରାମଙ୍କ ପାଖରେ ପହଞ୍ଚି ଭୀଷ୍ମଙ୍କୁ ଦଣ୍ଡ ଦେବାକୁ ଅନୁରୋଧ କଲା। ପରଶୁରାମ ଭୀଷ୍ମଙ୍କୁ କହିଲେ, ''ତୁମରି କାରଣରୁ ବିଚାରୀ ଅବଳା ଉଭୟ ଦିଗରୁ ଅପମାନିତ ହେଲା। ଏହା ଅଧର୍ମ।'' ଭୀଷ୍ମ କହିଲେ—''ମୁଁ ଅଧର୍ମ କରି ନାହିଁ। ଅମ୍ବାର ଇଚ୍ଛା ଅନୁସାରେ ମୁଁ ତାକୁ ଶାଲ୍ୱ ପାଖକୁ ପଠାଇ ଦେଇଥିଲି। ତା'ଛଡ଼ା ଏ ଶାଲ୍ୱ ପ୍ରତି ପ୍ରୀତି କରୁଥିବାରୁ ବିଚିତ୍ରବୀର୍ଯ୍ୟ ସଙ୍ଗେ ଏହାର ବିବାହ କରାଇବା ଅଧର୍ମ ହେବ।'' ପରଶୁରାମ ଶେଷରେ କହିଲେ—''ତୁମେ ହିଁ ଏହାକୁ ବିବାହ କର, ନଚେତ୍ ମୋ ସଙ୍ଗେ ଯୁଦ୍ଧ କର। ମୁଁ ତୁମକୁ ଏଭଳି କର୍ମ ପାଇଁ ବୀରୋଚିତ ଦଣ୍ଡ ଦେବାକୁ ଚାହେଁ।'' ଭୀଷ୍ମ ଯେତେ ଅନୁନୟ ବିନୟ କରି ବୁଝାଇଲେ ସୁଦ୍ଧା ସେ ମାନିଲେ

ନାହିଁ। ଭୀଷ୍ମ ନିର୍ଭୀକ ସ୍ୱରରେ କହିଲେ—''ଆପଣ ମୋର ଗୁରୁ। ତଥାପି ଆପଣ ଯଦି ମୋତେ ଯୁଦ୍ଧ କରିବାକୁ ବାଧ୍ୟ କରୁଛନ୍ତି, ମୁଁ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି। ଭୟ, ଦୟା, ଲୋଭ ଅଥବା କାମବାସନାର ବଶବର୍ତ୍ତୀ ହୋଇ ମୁଁ ମୋ ସତ୍ୟଧର୍ମ କଦାପି ଛାଡ଼ି ପାରିବି ନାହିଁ।''

ଆହା! ସତ୍ୟ ପ୍ରତି କି ଅଟଳ ନିଷ୍ଠା! ଅନ୍ୟ କୌଣସି ବ୍ୟକ୍ତି ହୋଇଥିଲେ ସେ ଏହି ପରିସ୍ଥିତିରେ ଗୁରୁଙ୍କ ଆଜ୍ଞାକୁ ସହର୍ଷ ସ୍ୱୀକାର କରିଥାନ୍ତା। କିନ୍ତୁ ଭୀଷ୍ମ ହେଉଛନ୍ତି ସତ୍ୟନିଷ୍ଠାର ଆଦର୍ଶ ପୁରୁଷ।

ଯୁଦ୍ଧର ପ୍ରସ୍ତୁତି ହୋଇଗଲା। ଭୀଷ୍ମ ପରଶୁରାମଙ୍କୁ ପ୍ରଣାମ କରି ଯୁଦ୍ଧ ପାଇଁ ଆଜ୍ଞା ମାଗିଲେ। ଭୟଙ୍କର ଯୁଦ୍ଧ ହେଲା। କେହି କାହାରିଠାରୁ କମ୍ ନୁହନ୍ତି। ଗୁରୁ ଶିଷ୍ୟଙ୍କ ମଧ୍ୟରେ ଯୁଦ୍ଧ ବଡ଼ ଅଦ୍ଭୁତ ଓ ରୋମହର୍ଷଣକାରୀ ଥିଲା। ଉଭୟେ ପ୍ରତିଦିନ ପ୍ରାତଃ ସ୍ନାନ, ସଂଧ୍ୟା ଓ ନିତ୍ୟକର୍ମ ସାରି ଯୁଦ୍ଧ କରୁଥାନ୍ତି, ପୁଣି ସାୟଂକାଳର ନିତ୍ୟକର୍ମ ସମୟ ଆସିଲେ ବିରତି ଦେଉଥାନ୍ତି। ଦୀର୍ଘ ତେଇଶ ଦିନ ଧରି ଯୁଦ୍ଧ ଚାଲିଲା। ପରିଶେଷରେ ଭୀଷ୍ମ ପୂର୍ବଜନ୍ମରେ ଶିକ୍ଷା କରିଥିବା ପ୍ରସ୍ୱାବ ଅସ୍ତ୍ର ପ୍ରୟୋଗ କରିବାକୁ ଯିବାରୁ ମୁନିଋଷି ଓ ଦେବତାମାନେ ତାଙ୍କୁ ମନା କଲେ। କାହାରି ଯେପରି ପରାଜୟ ନ ହେବ, ସେଥିପାଇଁ ଦୁହେଁ ପଛୁଆ ପଛୁଆ ଯାଇ ଯୁଦ୍ଧରୁ ବିରତ ହେଲେ। ତା'ପରେ ଭୀଷ୍ମ ପରଶୁରାମଙ୍କ ପାଦରେ ଯାଇ ପ୍ରଣାମ କଲେ। ପରଶୁରାମ ଆନନ୍ଦ ମନରେ କହିଲେ—''ବୀରବର ଭୀଷ୍ମ! ପୃଥିବୀରେ ତୁମ ପରି ବୀର ଯୋଦ୍ଧା ଆଉ କେହି ନାହିଁ। ତୁମେ ମୋତେ ଆଜି ଯୁଦ୍ଧରେ ସନ୍ତୁଷ୍ଟ କରିଦେଲ।''

ଅମ୍ବା ଏଥର ନିରୁପାୟ ହୋଇଗଲା। ସେ ଭୀଷ୍ମଙ୍କୁ ମାରିବାକୁ ପଣ କରି ଘୋର ତପସ୍ୟା କରିବାକୁ ଚାଲିଗଲା। ଭୀଷ୍ମ ଓ ପରଶୁରାମ ମଧ୍ୟ ନିଜ ନିଜ ସ୍ଥାନକୁ ଫେରିଗଲେ।

ତ୍ୟାଗୀ ଓ ଭୋଗୀଙ୍କ ମଧ୍ୟରେ ଏହା ଏକ ମୁଖ୍ୟ ପ୍ରଭେଦ ଯେ ତ୍ୟାଗୀ ଭୋଗ-ବର୍ଜନ ପାଇଁ ସଂଗ୍ରାମ କରୁଥିବା ବେଳେ ଭୋଗୀ ଭୋଗ୍ୟପଦାର୍ଥ ପାଇଁ ସବୁ ଦୃଷ୍ଟିରୁ ପ୍ରୟାସ କରୁଥାଏ। ତାହା ହିଁ ଏଠାରେ ଘଟିଲା। ଭୀଷ୍ମ ବିବାହ ନ କରିବା ପାଇଁ ଗୁରୁଙ୍କ ସଙ୍ଗେ ଯୁଦ୍ଧ କରୁଥାନ୍ତି, ତେଣେ ବିଚିତ୍ରବୀର୍ଯ୍ୟ ଦୁଇ ଦୁଇଟି ସୁନ୍ଦରୀ ସ୍ତ୍ରୀ ପାଇ ଇନ୍ଦ୍ରିୟସୁଖରେ ବୁଡ଼ି ରହିଥାନ୍ତି। ଏ ସଂସାରକୁ ଆସିବାର ଉଦ୍ଦେଶ୍ୟ କ'ଣ, ଜୀବନର ଲକ୍ଷ୍ୟ କ'ଣ, ନିଜର କର୍ତ୍ତବ୍ୟ କ'ଣ, ତାହା ସେ ଭୁଲି ବିଷୟଭୋଗରେ

ଲିପ୍ତ ହୋଇଯାଇଥାନ୍ତି। ସେ ସିନା ଭୁଲିଗଲେ, ହେଲେ ମୃତ୍ୟୁ କ'ଣ କାହାରିକୁ ଭୁଲିଯାଏ। ମୃତ୍ୟୁର ଅନେକ ନାମ ମଧ୍ୟରୁ 'ଅନିମିଷ' ନାମଟି ଏହା ସୂଚିତ କରିଦିଏ ଯେ ସେ କେତେ ସତର୍କ। ସେ କେତେବେଳେ ପଲକ ପକାଏ ନାହିଁ, ସମସ୍ତଙ୍କୁ ନଜରରେ ରଖିଥାଏ। ତା'ର ସମୟ ଆସିଲେ ସେ ଆସି ପହଞ୍ଚିଯାଏ।

ଅତ୍ୟଧିକ ବିଷୟ ଭୋଗ ହେତୁ ବିଚିତ୍ରବୀର୍ଯ୍ୟ କ୍ଷୟରୋଗ (ଯକ୍ଷ୍ମା)ରେ ପୀଡ଼ିତ ହେଲେ। ଯଥାର୍ଥରେ ଭର୍ତ୍ତୃହରି କହିଛି—**'ଭୋଗା ନ ଭୁକ୍ତା ବୟମେବ ଭୁକ୍ତା'** ଅର୍ଥାତ୍ ଆମେ ଭୋଗକୁ ଭୋଗ କରୁନା, ବରଂ ଭୋଗ ହିଁ ଆମକୁ ଉପଭୋଗ କରି ନଷ୍ଟ କରିଦିଏ। ତାହା ହିଁ ହେଲା। ବହୁ ପ୍ରୟାସ ସତ୍ତ୍ୱେ ବିଚିତ୍ରବୀର୍ଯ୍ୟ ଆରୋଗ୍ୟ ହୋଇ ପାରିଲେ ନାହିଁ। ସେ ଅକାଳରେ କାଳର କବଳିତ ହୋଇଗଲେ। ଏବେ ସତ୍ୟବତୀଙ୍କ ଆଖି ଆଗରେ ଘୋର ଅନ୍ଧକାର ଘୋଟିଗଲା। ତାଙ୍କ ପିତାଙ୍କ ଦୁରାଶାର ପରିଣତି ତାଙ୍କ ପାଇଁ ଘୋର ନିରାଶାରେ ପରିଣତ ହୋଇଗଲା। ଭୀଷ୍ମ ସିଂହାସନରେ ନ ବସିବାକୁ ଓ ବିବାହ ନ କରିବାକୁ କଠୋର ପ୍ରତିଜ୍ଞା କରିସାରିଛନ୍ତି। ଏବେ ସିଂହାସନର ଉତ୍ତରାଧିକାରୀ ହେବ କିଏ? ଶେଷରେ ନିରୁପାୟ ହୋଇ ସେ ଭୀଷ୍ମଙ୍କୁ ନିଜ ମାତୃତ୍ୱର ଅଧିକାର ପ୍ରୟୋଗ କରି ବିଧବା ଅମ୍ବିକା ଓ ଅମ୍ବାଳିକାଙ୍କ ଠାରୁ ପୁତ୍ର ଉତ୍ପନ୍ନ କରିବାକୁ ବାଧ୍ୟ କଲେ।

ଭୀଷ୍ମଙ୍କ ପାଇଁ ଏହା ହିଁ ଥିଲା ଅସଲ ପରୀକ୍ଷାର ସମୟ। ସତ୍ୟ ଓ ଧର୍ମ ବିଷୟରେ ବଡ଼ ବଡ଼ ଭାଷଣ ଦେବା, ଅନ୍ୟକୁ ଶିକ୍ଷା ଦେବା ବହୁତ ସହଜ କଥା; କିନ୍ତୁ ସେହି ବକ୍ତାର ସତ୍ୟବାଦିତା ଓ ଧାର୍ମିକତାର ପ୍ରକୃତ ପରୀକ୍ଷା ହୋଇଥାଏ ସେତିକିବେଳେ, ଯେତେବେଳେ ତା' ଜୀବନରେ ସତ୍ୟ ଓ ଧର୍ମ ପାଳନର ପରିସ୍ଥିତି ଆସେ। ଭୀଷ୍ମଙ୍କର ବାପା ଜୀବିତ ଥିବା ପର୍ଯ୍ୟନ୍ତ କିଛି ଚିନ୍ତା ନ ଥିଲା। ସେ ଚାଲିଯିବା ପରେ ସାନ ଭାଇ ଚିତ୍ରାଙ୍ଗଦ ରାଜା ହେଲା; ପୁଣି ତା'ର ନିଧନ ହେବା ପରେ ବିଚିତ୍ରବୀର୍ଯ୍ୟ ରାଜା ହେଲା। ଏପର୍ଯ୍ୟନ୍ତ ତ ତାଙ୍କ ପ୍ରତିଜ୍ଞା ଭଙ୍ଗ ନ ହେବାଟା କିଛି ବିଶେଷ ବଡ଼ କଥା ନୁହେଁ। ତା'ଛଡ଼ା ସେ ସ୍ୱୟଂ ସଂଯମୀ, ଜିତେନ୍ଦ୍ରିୟ ଓ ଭଗବାନଙ୍କର ଭକ୍ତ ମଧ୍ୟ ଥିଲେ। କିନ୍ତୁ ବିଚିତ୍ରବୀର୍ଯ୍ୟ ନିଃସନ୍ତାନ ଅବସ୍ଥାରେ ମରିଯିବା ପରେ ଅନ୍ତତଃ ରାଜସିଂହାସନର ମର୍ଯ୍ୟାଦା ଦୃଷ୍ଟିରୁ, ବଂଶରକ୍ଷା ଦୃଷ୍ଟିରୁ ତଥା ଯେଉଁ ମାଆଙ୍କ ପାଇଁ ସେ ଏତେ ବଡ଼ ପ୍ରତିଜ୍ଞା କରିଥିଲେ, ଯେଉଁ ମାଆଙ୍କ ଆଦେଶରେ ସେ କାଶୀରାଜଙ୍କ କନ୍ୟାକୁ ସାନ ଭାଇ

ପାଇଁ ନେଇ ଆସିଥିଲେ, ସେଇ ମାଆଙ୍କର ଆଦେଶ ପାଳନ କରି ରାଜସିଂହାସନରେ ବସି ସନ୍ତାନ ପରମ୍ପରା ଦ୍ୱାରା ବଂଶକୁ ରକ୍ଷା କରିବା ତ ଧର୍ମଦୃଷ୍ଟିରୁ ଅସଙ୍ଗତ ମଧ୍ୟ ନୁହେଁ। କେହି ଏହାକୁ ଖରାପ ଭାବି ନ ଥାନ୍ତେ ମଧ୍ୟ। ଏଥିରେ ଅନ୍ୟମାନଙ୍କର ମଧ୍ୟ ସମ୍ମତି ଥିଲା। ମାତ୍ର ଭୀଷ୍ମ ଥିଲେ ସତ୍ୟନିଷ୍ଠ, ଦୃଢ଼ପ୍ରତିଜ୍ଞ ଓ ପ୍ରକୃତ ଧର୍ମାତ୍ମା। ସେ ନିଜ କର୍ତ୍ତବ୍ୟ ସମ୍ବନ୍ଧରେ ତିଳେମାତ୍ର ଭ୍ରମିତ ନ ହୋଇ ସ୍ପଷ୍ଟରୂପେ କହିଦେଲେ—"ମାଆ! ମୋତେ କ୍ଷମା କରିବ। ତ୍ରିଭୁବନରେ ରାଜ୍ୟାଧିକାର, ସ୍ୱର୍ଗର ସିଂହାସନ ଅଥବା ଏହାଠାରୁ ଅଧିକ ଉଚ୍ଚପଦ ଲୋଭରେ ମଧ୍ୟ ମୁଁ ସତ୍ୟକୁ ଛାଡ଼ି ପାରିବି ନାହିଁ।"—

ପରିତ୍ୟଜେୟଂ ତ୍ରୈଲୋକ୍ୟଂ ରାଜ୍ୟଂ ଦେବେଷୁ ବା ପୁନଃ।
ଯଦ୍‌ବାପ୍ୟଧିକମେତାଭ୍ୟାଂ ନ ତୁ ସତ୍ୟଂ କଥଞ୍ଚନ ॥(ମହାଭାରତ)

ସତ୍ୟବତୀ ଭୀଷ୍ମଙ୍କ ଠାରୁ ନିରାଶ ହୋଇ ଶେଷରେ ତାଙ୍କର କାନୀନ ପୁତ୍ର ବ୍ୟାସଦେବଙ୍କୁ ଡକାଇଲେ। ବ୍ୟାସଦେବ ଆସି ମାଆଙ୍କ ପାଦବନ୍ଦନା କଲେ। ସତ୍ୟବତୀ ତାଙ୍କୁ କଲ୍ୟାଣ କରିବା ସଙ୍ଗେ ସଙ୍ଗେ ନିଜର ସମସ୍ୟା ଶୁଣାଇ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ ପୁତ୍ର ଉତ୍ପନ୍ନ କରିବାକୁ ଆଦେଶ ଦେଲେ। ବ୍ୟାସଦେବ କହିଲେ—"ମାତା! ଆପଣଙ୍କ ଆଦେଶ ମୁଁ ଅମାନ୍ୟ କରି ପାରିବି ନାହିଁ। କିନ୍ତୁ ମୁଁ ବର୍ତ୍ତମାନ ଉଗ୍ର ତପସ୍ୟାରୁ ଉଠି ଆସିଛି। ତେଣୁ ମୋତେ କିଛି ସମୟ ଦିଅ।" ସତ୍ୟବତୀ କହିଲେ—"ପୁତ୍ର! ମୋ ପାଖରେ ସମୟ ନାହିଁ।" ବ୍ୟାସଦେବ ଭଗବାନଙ୍କ ଇଚ୍ଛାକୁ ବଳବତୀ ମନେକରି ନିଜର ଦୃଷ୍ଟିପାତ ଦ୍ୱାରା ଅମ୍ବିକା ଓ ଅମ୍ବାଳିକାଙ୍କର ଗର୍ଭସଞ୍ଚାର କରିଦେଲେ। ରାଣୀମାନଙ୍କର ନିଜ ଦୋଷରୁ ସେମାନଙ୍କ ଠାରୁ ଉତ୍ପନ୍ନ ଦୁଇଟି ପୁତ୍ର ମଧ୍ୟରୁ ଧୃତରାଷ୍ଟ୍ର ଅନ୍ଧ ହେଲେ ଓ ପାଣ୍ଡୁ ପାଣ୍ଡୁରୋଗଗ୍ରସ୍ତ ହେଲେ। ଶେଷରେ ଅମ୍ବିକାଙ୍କ ଦାସୀଠାରୁ ଧର୍ମାତ୍ମା ବିଦୁର ଜନ୍ମ ନେଲେ।*

ସମୟ ଗଡ଼ି ଚାଲିଲା। ଭୀଷ୍ମଙ୍କ ସ୍ନେହ ଓ ସୁରକ୍ଷାରେ ଧୃତରାଷ୍ଟ୍ର, ପାଣ୍ଡୁ ଓ

---

* ଅପୁତ୍ରିକ ଅବସ୍ଥାରେ ମୃତ ବ୍ୟକ୍ତିର ବଂଶରକ୍ଷା ଉଦ୍ଦେଶ୍ୟରେ ତା'ର ବିଧବା ସ୍ତ୍ରୀ ଗର୍ଭରୁ ଦେବର ବା ସ୍ୱାମୀଙ୍କ ସପିଣ୍ଡ କୌଣସି ବ୍ୟକ୍ତିଙ୍କ ଔରସରେ ସନ୍ତାନ ଉତ୍ପନ୍ନ କରିବାର ବିଧି କଳି ବ୍ୟତୀତ ଅନ୍ୟ ଯୁଗରେ ପ୍ରଚଳିତ ଥିଲା। ଏହାକୁ 'ନିଯୋଗ ପ୍ରଥା' କୁହାଯାଏ। ସ୍ମୃତି ଶାସ୍ତ୍ରରେ ଅଶ୍ୱମେଧ, ଗୋମେଧ, ସନ୍ନ୍ୟାସ, ପିତୃଶ୍ରାଦ୍ଧରେ ମାଂସ ଓ ନିଯୋଗ ବିଧିକୁ କଳିବର୍ଜ୍ୟ କୁହାଯାଇଛି—

ଅଶ୍ୱମେଧଂ ଗବାଲମ୍ଭଂ ସନ୍ନ୍ୟାସଂ ପଲପୈତୃକମ୍।
ଦେବରାଚ୍ଚ ସୁତୋତ୍ପତ୍ତିଂ କଲୌ ପଞ୍ଚ ବିବର୍ଜିତଃ ॥

ବିଦୁର ବଡ଼ ହୋଇଗଲେ । ସେମାନଙ୍କର ବିବାହ ହେଲା । ଧୃତରାଷ୍ଟ୍ର ଅନ୍ଧ ଓ ବିଦୁର ଦାସୀ ପୁତ୍ର ହୋଇଥିବାରୁ ଭୀଷ୍ମ ପାଣ୍ଡୁଙ୍କୁ ରାଜପଦରେ ଅଭିଷିକ୍ତ କଲେ । ଧୃତରାଷ୍ଟ୍ରଙ୍କର ଶହେ ଏକ ପୁତ୍ର ହେଲେ ଏବଂ ପାଣ୍ଡୁଙ୍କ କ୍ଷେତ୍ରରେ କୁନ୍ତୀ ଓ ମାଦ୍ରୀଙ୍କର ପାଞ୍ଚପୁତ୍ର ହେଲେ । ବୃଦ୍ଧ ଭୀଷ୍ମ ଏବେ ପିତାମହ ପାଲଟିଗଲେ । ସେ କୌରବ ଓ ପାଣ୍ଡବଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । କିନ୍ତୁ ପିଲାବେଳୁ ହିଁ ପାଣ୍ଡବମାନଙ୍କର ସଦ୍‌ଗୁଣ ଓ ଉତ୍କର୍ଷ ପ୍ରକଟିତ ହୋଇଥିଲା, ଯାହା କି ଦୁର୍ଯ୍ୟୋଧନାଦି କୌରବମାନେ ସହି ପାରୁ ନ ଥିଲେ । ଧୀରେ ଧୀରେ ଦୁର୍ଯ୍ୟୋଧନ ଶକୁନିଙ୍କ କୁଶିକ୍ଷା ପାଇ ପାଣ୍ଡବଙ୍କୁ ନଷ୍ଟ କରିବାକୁ ଚେଷ୍ଟା କଲା । ଭୀଷ୍ମ ପିଲାମାନଙ୍କ କଳହକୁ ଏତେ ଗୁରୁତ୍ୱ ନ ଦେଇ ସେମାନଙ୍କ ଶିକ୍ଷା ପାଇଁ କୃପାଚାର୍ଯ୍ୟଙ୍କୁ ଏବଂ ଅସ୍ତ୍ରଶସ୍ତ୍ର ବିଦ୍ୟା ପାଇଁ ଦ୍ରୋଣାଚାର୍ଯ୍ୟଙ୍କୁ ନିଯୁକ୍ତ କଲେ । ଦୁର୍ଯ୍ୟୋଧନାଦି ଭୀଷ୍ମ ଓ ବିଦୁରଙ୍କୁ ନିଜର ଯୋଜନା ନ ଜଣାଇ ଶକୁନିଙ୍କ କପଟ ପରାମର୍ଶ ଅନୁସାରେ ଅନେକ ଥର ଅଧର୍ମ ଓ ଅନ୍ୟାୟ କଲେ । ଭୀମଙ୍କୁ ବିଷ ଖୁଆଇଦେଲେ । ଲାକ୍ଷାଗୃହରେ ପୋଡ଼ି ମାରିଦେବା ପାଇଁ ଚେଷ୍ଟା କଲେ । ପାଣ୍ଡୁଙ୍କ ଅନୁପସ୍ଥିତିରେ ଧୃତରାଷ୍ଟ୍ର ରାଜଗାଦିରେ ବସୁ ବସୁ ତାଙ୍କର ସେହି ରାଜଗାଦି ପ୍ରତି ମୋହ ଉପନ୍ନ ହୋଇଗଲା ଏବଂ ପାଣ୍ଡୁଙ୍କ ମୃତ୍ୟୁପରେ ରାଜଗାଦି ତାଙ୍କ ପାଇଁ ସ୍ଥାୟୀ ହୋଇଗଲା । ସେ ନିଜ ପୁତ୍ର ଦୁର୍ଯ୍ୟୋଧନକୁ ଯୁବରାଜ କରିବାକୁ ମନେ ମନେ ଇଚ୍ଛା କଲେ । କିନ୍ତୁ ତାଙ୍କର ଇଚ୍ଛାରେ ମୁଖ୍ୟ ବାଧା ହୋଇ ଠିଆ ହୋଇଥିଲେ ପ୍ରଜାଙ୍କର ପ୍ରିୟପାତ୍ର, ଧର୍ମ ଓ ନ୍ୟାୟ-ପରାୟଣ ତଥା କୁରୁକୁଳର ଜ୍ୟେଷ୍ଠ ପୁତ୍ର ଯୁଧିଷ୍ଠିର । ଦୁର୍ଯ୍ୟୋଧନ ଧୃତରାଷ୍ଟ୍ରଙ୍କର ଜ୍ୟେଷ୍ଠ ପୁତ୍ର ସତ, କିନ୍ତୁ ଯୁଧିଷ୍ଠିର ଥିଲେ କୁରୁକୁଳର ଜ୍ୟେଷ୍ଠ ପୁତ୍ର ।

ଜଗତରେ ଅଧିକାଂଶ କଳହର ମୂଳ କାରଣ ଏହି ମୋହ ଅର୍ଥାତ୍ ତୋର-ମୋର ଭାବ ବା ପକ୍ଷପାତ । 'ମୋର ପୁତ୍ର ଓ ପାଣ୍ଡୁଙ୍କର ପୁତ୍ର'—ଏହା ହିଁ ମହାଭାରତ ଯୁଦ୍ଧର ମୂଳ ବୀଜ ଥିଲା । ଧୃତରାଷ୍ଟ୍ର ନିଜ ପୁତ୍ରଙ୍କର ଦୋଷକୁ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ସମର୍ଥନ ଦେଉଥିଲେ; ସେ ଶାରୀରିକ ଦୃଷ୍ଟିରୁ ତ ଅନ୍ଧ ଥିଲେ, ଶେଷରେ ପ୍ରବଳ ପୁତ୍ରମୋହରେ ଜ୍ଞାନାନ୍ଧ ମଧ୍ୟ ହୋଇଗଲେ । ତାଙ୍କରି ସମର୍ଥନରେ କପଟ ପଶା ଖେଳ ହେଲା । ପାଣ୍ଡବମାନେ କୁନ୍ତୀଙ୍କ ସହିତ ବନବାସର କଷ୍ଟ ଭୋଗିଲେ ।

ଏ ସବୁ ଅନ୍ୟାୟ ଘଟଣା ଦେଖି ଧର୍ମାତ୍ମା ବିଦୁର ଓ ପିତାମହ ଭୀଷ୍ମ ବହୁତ

ମନସ୍ତାପ କରୁଥିଲେ; ଧୃତରାଷ୍ଟ୍ରଙ୍କୁ ଉପଯୁକ୍ତ ସମୟ ଦେଖି ସତ୍‌ପରାମର୍ଶ ମଧ୍ୟ ଦେଉଥିଲେ । କିନ୍ତୁ ଉଷର ଭୂମିରେ ବିହନ ଅଙ୍କୁରିତ ନ ହେବା ପରି ଧୃତରାଷ୍ଟ୍ରଙ୍କର ବିବେକ ଉଦିତ ହେଲା ନାହିଁ । ଯାହାଙ୍କ ଅଙ୍ଗୁଳି ଧରି ଧୃତରାଷ୍ଟ୍ର ଚାଲି ଶିଖିଥିଲେ, ଏବେ ତାଙ୍କ ହାତ ଛାଡ଼ି କପଟୀ ଶକୁନିର ହାତ ଧରିବାକୁ ନିରାପଦ ମଣିଲେ । ଭୀଷ୍ମ ନିଜର ପ୍ରତିଜ୍ଞା ଓ ପିତାଙ୍କୁ ଦେଇଥିବା ପ୍ରତିଶ୍ରୁତି ଉଭୟ ଦୃଷ୍ଟିରୁ ବାନ୍ଧି ହୋଇ ପଞ୍ଜୁରୀର ପରାଧୀନ ପକ୍ଷୀ ପରି ଧୃତରାଷ୍ଟ୍ରଙ୍କ ଅନ୍ନରେ ପାଳିତ ହେଉଥିଲେ । ରାଜସିଂହାନକୁ ଯୋଗ୍ୟତମ ରାଜା ଦ୍ୱାରା ସୁରକ୍ଷିତ ନ କରିବା ପର୍ଯ୍ୟନ୍ତ ସେ ନା ସେହି ବନ୍ଧନ କାଟି ମୁକ୍ତ ବିହଙ୍ଗ ପରି ଉଡ଼ିଯାଇ ପାରୁଥିଲେ, ନା ନିଜ ଇଚ୍ଛାନୁସାରେ ଓ ଧର୍ମାନୁସାରେ ସ୍ୱତନ୍ତ୍ରଭାବରେ କିଛି କରିବାକୁ ସମର୍ଥ ଥିଲେ ।

ପାଣ୍ଡବଙ୍କର ଲାକ୍ଷାଗୃହରେ ଭସ୍ମ ହୋଇଯିବା ଖବର ପିତାମହ ଭୀଷ୍ମଙ୍କ ମନରେ ଗଭୀର ଦୁଃଖ ଦେଇଥିଲା । ପରେ ପାଣ୍ଡବ ଜୀବିତ ରହିଥିବା କଥା ଜାଣି ସେ ବହୁତ ଖୁସୀ ହେଲେ ଏବଂ ପରବର୍ତ୍ତୀ ସମୟରେ ବାରମ୍ବାର ଝଗଡ଼ା ଓ ଅପକୀର୍ତ୍ତିରୁ ମୁକ୍ତି ପାଇବା ପାଇଁ ଓ ଶାନ୍ତି ପାଇଁ ସେ ରାଜ୍ୟ ବିଭାଜନ କରିବାକୁ ପ୍ରସ୍ତାବ ରଖିଲେ । ସେଥିରେ ପାଣ୍ଡବମାନେ ରାଜି ହୋଇଗଲେ । ପାଣ୍ଡବ ସେମାନଙ୍କର ପରିଶ୍ରମ, ଅଧ୍ୟବସାୟ ଓ ଗୁଣ ହେତୁ ଖାଣ୍ଡବ ବନକୁ ଇନ୍ଦ୍ରପ୍ରସ୍ଥରେ ପରିଣତ କରି ଖୁବ୍ ଶୀଘ୍ର ଉତ୍‌କର୍ଷରେ ପହଞ୍ଚିଗଲେ । ମାତ୍ର ପରଶ୍ରୀକାତର ଦୁର୍ଯ୍ୟୋଧନ ତାହାକୁ ମଧ୍ୟ ଛଡ଼ାଇ ନେବାକୁ ଚାହିଁଲା । ଜୁଆ ଖେଳ ହେଲା, କପଟ ପଶାରେ ପାଣ୍ଡବ ସବୁ କିଛି ହରାଇଲେ । କୁରୁକୁଳର ସବୁଠାରୁ ଅପମାନଜନକ ଘଟଣା ତଥା ମହାଭାରତ ଯୁଦ୍ଧର ମୂଳ କାରଣ ଦ୍ରୌପଦୀଙ୍କ ବସ୍ତ୍ରହରଣ ହେଲା । ସେହି ସଭାରେ ଭୀଷ୍ମ, ଦ୍ରୋଣ, ବିଦୁର ପ୍ରଭୃତି ବଡ଼ ବଡ଼ ଧର୍ମାତ୍ମା ମଧ୍ୟ ଥିଲେ । ଦ୍ରୌପଦୀ ପଚାରିଲେ—"ଏ ଧୂର୍ତ୍ତ ପାପୀମାନେ ଛଳକପଟ ଦ୍ୱାରା ଧର୍ମରାଜ ଯୁଧିଷ୍ଠିରଙ୍କୁ ଜୁଆ ଖେଳିବାକୁ ବାଧ୍ୟ କରିଛନ୍ତି । ପୁଣି ଛଳରେ ହିଁ ତାଙ୍କର ସର୍ବସ୍ୱ ଜିତିଛନ୍ତି । ଧର୍ମରାଜ ପ୍ରଥମେ ନିଜ ଭାଇମାନଙ୍କୁ ଓ ତା'ପରେ ନିଜକୁ ହାରିବା ପରେ ମୋତେ ବାଜିରେ ଲଗାଇଥିଲେ ! ତେଣୁ ମୁଁ ଜାଣିବାକୁ ଚାହେଁ, ଏପରିପ୍ରେକ୍ଷୀରେ ମୋତେ ବାଜିରେ ଲଗାଇବାର ତାଙ୍କର ଅଧିକାର ଥିଲା ନା ନାହିଁ? ଏ ସଭାରେ ବଡ଼ ବଡ଼ ଧର୍ମାତ୍ମା ପୁରୁଷ ବସିଛନ୍ତି, ସେମାନେ ମୋ ପ୍ରଶ୍ନ ଉପରେ ଗଭୀର ବିଚାର କରି ଉଚିତ ଉତ୍ତର ଦିଅନ୍ତୁ ।" କିନ୍ତୁ ବିକର୍ଣ୍ଣ ଓ ବିଦୁରଙ୍କ ଛଡ଼ା ଅନ୍ୟ କେହି ବି ଦ୍ରୌପଦୀଙ୍କ ସପକ୍ଷରେ କିଛି କହିଲେ ନାହିଁ । କର୍ଣ୍ଣ, ଦୁର୍ଯ୍ୟୋଧନ, ଶକୁନି ପ୍ରଭୃତି ଦୁଷ୍ଟଙ୍କ ଛଡ଼ା

ପ୍ରାୟ ସମସ୍ତେ ଏ କ୍ରୂର, ନିନ୍ଦନୀୟ ଓ କଳଙ୍କିତ ଘଟଣାରେ ଦୁଃଖୀ ଥିଲେ। ଭଗବାନଙ୍କୁ ଦୁଷ୍ଟଙ୍କର ସଂହାର କରିବାର ଥିଲା। ହୁଏତ ସେହି କାରଣରୁ ସମସ୍ତଙ୍କର ମତିଭ୍ରମ ହୋଇଯାଇଥିଲା। ପିତାମହ ଭୀଷ୍ମ ମଧ୍ୟ ଦ୍ରୌପଦୀଙ୍କ ପ୍ରଶ୍ନର ଉତ୍ତର ନ ଦେଇ ମୁଣ୍ଡ ତଳକୁ କରି ବସି ରହିଲେ। ବାରମ୍ବାର ପ୍ରଯତ୍ନ କରି କରି ହାରିଯାଇଥିବାରୁ ବୋଧହୁଏ ସେ ମଧ୍ୟ ଭବିତବ୍ୟତାକୁ ପ୍ରତୀକ୍ଷା କରୁଥିଲେ। ଦୁଷ୍ଟଙ୍କର ଅନ୍ନ ଖାଇ ତାଙ୍କର ମଧ୍ୟ ଧର୍ମ-ଅଧର୍ମ ନିର୍ଣ୍ଣୟ କରିବାର ଶକ୍ତି ନ ଥିଲା। ତେଣୁ ସେ ନିଜର ଅକ୍ଷମତା ଦର୍ଶାଇ ଯୁଧିଷ୍ଠିରଙ୍କ ଉପରେ ଧର୍ମର ନିର୍ଣ୍ଣୟ ଛାଡ଼ିଦେଲେ।

ଶେଷରେ ଯାହା ଘଟିବାର ଥିଲା, ଘଟିଗଲା। ଅବଶ୍ୟ ପରେ ଧୃତରାଷ୍ଟ୍ର ସବୁକିଛି ଫେରାଇଦେଲେ, ହେଲେ ଯେଉଁ ଅପ୍ରୀତିକର ଘଟଣା ଘଟିଗଲା, ସେଥିରେ କୁରୁକୁଳର ସର୍ବନାଶର ମୂଳଦୁଆ ପଡ଼ିଯାଇଥିଲା। ଏହା ସତ୍ତ୍ୱେ ଧୃତରାଷ୍ଟ୍ର ଚେତିଲେ ନାହିଁ। ପୁନର୍ବାର ଜୁଆ ଖେଳିବାକୁ ଆମନ୍ତ୍ରିତ କରି ପାଣ୍ଡବଙ୍କୁ କପଟରେ ହରାଇଦେଲେ ଏବଂ ପାଣ୍ଡବଙ୍କୁ ବାରବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତବାସ ଭୋଗିବାକୁ ପଡ଼ିଲା।

ଭୀଷ୍ମ ପାଣ୍ଡବଙ୍କ ବିପକ୍ଷରେ ରହିଗଲେ। ଏହା ସତ୍ତ୍ୱେ ତାଙ୍କ ହୃଦୟରେ ପାଣ୍ଡବଙ୍କ ପ୍ରତି ସ୍ନେହ ଥିଲା। ଏହାର ପ୍ରମାଣ ମହାଭାରତରେ ଅନେକ ସ୍ଥାନରେ ଦେଖିବାକୁ ମିଳେ। ସେ ଜାଣିଥିଲେ ଯେ ଭଗବାନ ଶ୍ରୀକୃଷ୍ଣ ପାଣ୍ଡବଙ୍କ ପକ୍ଷରେ ଅଛନ୍ତି; ଏବଂ ସେ ତାଙ୍କର ଭକ୍ତ ତଥା ପୁଣ୍ୟାତ୍ମା ପାଣ୍ଡବଙ୍କୁ ଖୁବ୍ ଭଲ ପାଆନ୍ତି। ତେଣୁ ଧର୍ମରକ୍ଷା ପାଇଁ ସେ ଏ ଦୁଷ୍ଟମାନଙ୍କୁ ନିଶ୍ଚୟ ସଂହାର କରିବେ। ତା'ଛଡ଼ା ପାଣ୍ଡବଙ୍କ ବଳ, ପରାକ୍ରମ ଆଗରେ ଏମାନେ ତିଷ୍ଠି ପାରିବେ ନାହିଁ। ପାଣ୍ଡବଙ୍କର ସବୁଠାରୁ ବଡ଼ ବଳ ହେଉଛି ଧର୍ମ। ପରିଣାମରେ ଧର୍ମର ହିଁ ବିଜୟ ହେବ। ଏ କଥା ସେ ଧୃତରାଷ୍ଟ୍ର ପ୍ରଭୃତିଙ୍କୁ ବୁଝାଉଥିଲେ ମଧ୍ୟ। କିନ୍ତୁ କାଳର ଦୁର୍ବାର ଆକର୍ଷଣରେ ସେମାନେ ମୃତ୍ୟୁ ଆଡ଼କୁ ଟାଣି ହୋଇ ହୋଇ ଯାଉଥିଲେ।

ଅଜ୍ଞାତବାସ ସମୟରେ ପାଣ୍ଡବମାନେ ବିରାଟ ରାଜାଙ୍କ ନଗରରେ ଥିବାର ଖବର ପ୍ରକାଶିତ ହୋଇଗଲା। ଅଜ୍ଞାତବାସ କାଳ ପୂର୍ଣ୍ଣ ହୋଇଛି କି ନାହିଁ, ଏ ବିଷୟରେ ନିର୍ଣ୍ଣୟ ଦେବା ପାଇଁ ଦ୍ରୋଣାଚାର୍ଯ୍ୟ ଭୀଷ୍ମ ପିତାମହଙ୍କୁ ପ୍ରଶ୍ନ କଲେ। ଭୀଷ୍ମ କହିଲେ—"ନକ୍ଷତ୍ର ମଣ୍ଡଳର ଗତି ଅନୁସାରେ ପକ୍ଷ, ମାସ, ବର୍ଷ ଆଦିରେ ହ୍ରାସ-ବୃଦ୍ଧି ହୋଇଥାଏ। କାଳଚକ୍ରର ଏହି ନିୟମ ଦୃଷ୍ଟିରୁ ପ୍ରତି ପାଞ୍ଚ ବର୍ଷରେ ୨ମାସ ବୃଦ୍ଧି ହୋଇଥାଏ। ସେ ସବୁ ମଳମାସକୁ ମିଶାଇଲେ ଆଜିକୁ ତେର ବର୍ଷ

ପୂରିଯାଇ ୫ ମାସ ୬ ଦିନ ଅଧିକ ହୋଇ ସାରିଲାଣି । ତେଣୁ ତାଙ୍କୁ ଅଧାରାଜ୍ୟ ଦେବା ଉଚିତ ହେବ; ନଚେତ୍ ଆମକୁ ତାଙ୍କ ସହ ଯୁଦ୍ଧ କରିବାକୁ ପ୍ରସ୍ତୁତ ରହିବାକୁ ପଡ଼ିବ ।''

ଶେଷରେ ସେଇଆ ହେଲା । ଯୁଦ୍ଧ ପାଇଁ ପ୍ରସ୍ତୁତି ଚାଲିଲା । ଭଗବାନ ଶ୍ରୀକୃଷ୍ଣ ଏ ମହାସଂହାର ଦୋଷ ନିଜ ମୁଣ୍ଡକୁ ନେବାକୁ ଚାହୁଁ ନ ଥିଲେ । ତେଣୁ ସେ ଯୁଦ୍ଧ ପାଇଁ ଉତ୍ସୁକ ପାଣ୍ଡବ ପକ୍ଷର ସମସ୍ତଙ୍କୁ ବୁଝାଇଶୁଝାଇ ନିଜେ ସନ୍ଧିପ୍ରସ୍ତାବ ନେଇ ହସ୍ତିନା ଆସିଲେ । ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ବନ୍ଦୀ କରିବାକୁ ଷଡ଼ଯନ୍ତ୍ର କଲା । ଏ କଥା ଭୀଷ୍ମଙ୍କୁ ଜଣା ପଡ଼ିବା ମାତ୍ରେ ସେ ତାକୁ ବାରଣ କଲେ । ସେ ତ ଧର୍ମାତ୍ମା ଥିଲେ ଓ ଭଗବାନଙ୍କ ପ୍ରଭାବ, ସାମର୍ଥ୍ୟ ଓ ଭକ୍ତବତ୍ସଳତାକୁ ଜାଣିଥିଲେ । ସେଥିପାଇଁ ସେ ଜାଣି ପାରୁଥିଲେ ଯେ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଝଗଡ଼ାର ପରିଣତି ଭଲ ହେବ ନାହିଁ । ତେଣୁ ସେ ଅତି କଠୋର ଶବ୍ଦରେ ଧୃତରାଷ୍ଟ୍ରଙ୍କୁ କହିଲେ— ''ଧୃତରାଷ୍ଟ୍ର! ତୁମର ପୁତ୍ର ଗୋଟାଏ ମୂର୍ଖ । ତାକୁ କେବଳ ସର୍ବନାଶ ବୁଦ୍ଧି ଦିଶୁଛି । ଭଲ ଲୋକଙ୍କର କଥା ସେ ଆଦୌ ଶୁଣୁ ନାହିଁ । ତୁମେ ମଧ୍ୟ ସେହି କୁଳକଳଙ୍କ ପୁତ୍ରର କଥା ଅନୁସାରେ ଚାଲୁଛ । ଏହାର ପରିଣାମ ଖୁବ୍ ଭୟଙ୍କର ହେବ । ଯଦି ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ବନ୍ଦୀ କରିବାକୁ ଚେଷ୍ଟା କରେ, ସେ ତାଙ୍କର କ୍ରୋଧାଗ୍ନିରେ ଭସ୍ମ ହୋଇଯିବ ।'' ସେ ଦୁର୍ଯ୍ୟୋଧନକୁ ମଧ୍ୟ ବୁଝାଇ କହିଲେ—''ଶୁଣ ବାବୁ ଦୁର୍ଯ୍ୟୋଧନ! ଶ୍ରୀକୃଷ୍ଣ ଯାହା କହିବେ, ତାହା ମାନିଯାଅ । ନହେଲେ ତୋର ଭଲ ହେବ ନାହିଁ । ଅଯଥା ପ୍ରଜାନାଶ କର ନାହିଁ, ସନ୍ଧି ପ୍ରସ୍ତାବକୁ ମାନିଯାଅ । ଗର୍ବ ଓ ଅଭିମାନରେ ନିଜର ସ୍ୱଜନକୁଟୁମ୍ବଙ୍କ ଜୀବନକୁ ସଂକଟରେ ପକାଅ ନାହିଁ । ତୁମର ବାପା ବଞ୍ଚି ଥାଉ ଥାଉ ଭରତବଂଶର ସାମ୍ରାଜ୍ୟ ଲକ୍ଷ୍ମୀକୁ ନଷ୍ଟ କରିଦିଅ ନାହିଁ ।'' ତାଙ୍କ ପରେ ଦ୍ରୋଣାଚାର୍ଯ୍ୟ ଓ ବିଦୁର ମଧ୍ୟ ବୁଝାଇଲେ; ହେଲେ ସେ କାହାରି କଥା ଶୁଣିଲା ନାହିଁ । ଯୁଦ୍ଧ ହେବା ସୁନିଶ୍ଚିତ ହୋଇଗଲା ।

ଏଣେ ପିତାମହ ଭୀଷ୍ମଙ୍କ ଆଗରେ ଭୀଷଣ ଧର୍ମସଂକଟ ଉପସ୍ଥିତ ହୋଇଗଲା । ଯେଉଁ ଦିନ ସେ ରାଜପଦ ତ୍ୟାଗ କରିବାକୁ ସଂକଳ୍ପ କରିଥିଲେ, ସେହି ଦିନଠାରୁ ତାଙ୍କ ମନରେ ଏ କଥା କେବେ ବି ଉଠି ନ ଥିଲା ଯେ ଏ ରାଜ୍ୟ ପ୍ରକୃତରେ ମୋର ବା ଏହା ସଙ୍ଗେ ମୋର କିଛି ସମ୍ବନ୍ଧ ଅଛି । କେବଳ ଆବଶ୍ୟକ ସମୟରେ ସାହାଯ୍ୟ କରି ଦେଉଥିଲେ ଓ ଉଦାସୀନ ବ୍ୟକ୍ତି ପରି ପରାମର୍ଶ ଦେଇ ଦେଉଥିଲେ; ନଚେତ୍ ଏକାନ୍ତରେ ରହି ମନ ମଧ୍ୟରେ ଭଗବାନଙ୍କୁ ଚିନ୍ତନ-ଧ୍ୟାନ କରୁଥିଲେ ।

ସେ ଭାବୁଥିଲେ—''ଦୁର୍ଯ୍ୟୋଧନ ମୋତେ ରହିବାକୁ ସ୍ଥାନ ଦେଇଛି, ମୋ ପାଇଁ ଅନ୍ନ-ବସ୍ତ୍ରର ବ୍ୟବସ୍ଥା କରିଛି, ଏ ଶରୀର ତା'ରି ଅନ୍ନରେ ପ୍ରତିପାଳିତ ହୋଇଛି; ତେଣୁ ଏ ଶରୀର ତାହାର । ଜଣେ ଯୋଦ୍ଧା ଯେପରି ରାଜାର ଆଶ୍ରୟରେ ପାଳିତ ହୋଇ ରାଜା ପାଇଁ ପ୍ରାଣ ଦେଇଦିଏ, ମୁଁ ମଧ୍ୟ ସେହିପରି ତା' ପାଇଁ ଯୁଦ୍ଧ କରି ପ୍ରାଣ ଦେଇଦେବାଟା ମୋର କର୍ତ୍ତବ୍ୟ ହେବ ।'' ପୁଣି ଏ କଥା ମଧ୍ୟ ତାଙ୍କ ମନକୁ ଆସେ ଯେ, ''ଯୁଧିଷ୍ଠିର ଧର୍ମପଥରେ ଅଛନ୍ତି । ମୁଁ ତାଙ୍କରି ପକ୍ଷରେ ରହିବା କଥା ।'' ଉଭୟ ଦୃଷ୍ଟିରୁ ସେ ଦ୍ୱିଧାରେ ପଡ଼ିଯାଆନ୍ତି । ଶେଷରେ ଶରୀର ଓ ଆତ୍ମାକୁ ସେ ଦୁଇ ପକ୍ଷରେ ବାଣ୍ଟିଦେଇ ଓ ଭଗବାନଙ୍କ ଇଚ୍ଛା ଉପରେ ସବୁ ଛାଡ଼ିଦେଇ ନିଶ୍ଚିନ୍ତ ହୋଇ ଭଗବାନଙ୍କୁ ଚିନ୍ତନ କରନ୍ତି ।

ଭଗବାନଙ୍କ ଅବତାରର ବିଶେଷ ପ୍ରୟୋଜନ ହେଲା—ସାଧୁଜନଙ୍କର ପରିତ୍ରାଣ, ଦୁଷ୍ଟମାନଙ୍କର ସଂହାର ଓ ଧର୍ମସଂସ୍ଥାପନ । ଏହି କାର୍ଯ୍ୟ ସାଧନ କରିବାକୁ ଥିଲା ଭଗବାନଙ୍କୁ ମହାଭାରତ ଯୁଦ୍ଧରେ । ସେତେବେଳେ ଅନେକ ଦେବଦ୍ରୋହୀ ଓ ଧର୍ମଦ୍ରୋହୀ ଅସୁର କ୍ଷତ୍ରିୟ ରୂପରେ ଜନ୍ମ ନେଇ ପୃଥିବୀ ପାଇଁ ଭାରସ୍ୱରୂପ ହୋଇଯାଇଥିଲେ । ସେଇମାନେ ଉଭୟ ପକ୍ଷରେ ଯୋଗ ଦେଇଥିଲେ । ପ୍ରତ୍ୟକ୍ଷରେ ଅଧର୍ମ ପକ୍ଷରେ ଥିବା ଦୁଷ୍ଟମାନଙ୍କୁ ମାରିବାରେ ତ କୌଣସି ଆପତ୍ତି ନାହିଁ, କିନ୍ତୁ ଯେଉଁ ଦୁଷ୍ଟମାନେ ଧର୍ମର ଆଢୁଆଳରେ ରହି ନିଜକୁ ଧାର୍ମିକ ପ୍ରତିପାଦିତ କରୁଥିଲେ, ସେମାନଙ୍କର ସଂହାର ପାଇଁ ଶତ୍ରୁପକ୍ଷରେ ମଧ୍ୟ କିଛି ମହତ୍‌ପୁରୁଷଙ୍କର ଆବଶ୍ୟକତା ଥିଲା, ଯେଉଁମାନେ କି ଭଗବାନଙ୍କର ଲୀଳାପରିକର ହୋଇ ତାଙ୍କ କାର୍ଯ୍ୟରେ ସହଯୋଗ କରିବେ । ସେହି ଉଦ୍ଦେଶ୍ୟରେ ଭୀଷ୍ମ, ଦ୍ରୋଣ ପ୍ରଭୃତି ଧର୍ମାତ୍ମା ହୋଇ ମଧ୍ୟ ବାହ୍ୟ ଦୃଷ୍ଟିରୁ ଅଧର୍ମ ପକ୍ଷରେ ଥିଲେ । ସେମାନଙ୍କର ଅଦ୍ଭୁତ ସେବା ଦ୍ୱାରା ମଧ୍ୟ ଭଗବାନ ପ୍ରସନ୍ନ ହୁଅନ୍ତି । ତାହା ହିଁ ଘଟିଥିଲା ଭୀଷ୍ମଙ୍କ ଜୀବନରେ । ଯୁଦ୍ଧ କ୍ଷେତ୍ରରେ ବିପକ୍ଷରେ ରହି ଭୀଷ୍ମ ଭଗବାନଙ୍କୁ ଲହୁଲୁହାଣ କରିଦେଇଥିଲେ । ତାଙ୍କ ଅଙ୍ଗୁଳିକୁ ଛୋଟ ଛୋଟ ଶରରେ ଆଘାତ କରି ତାଙ୍କୁ କୁପିତ କରିଦେଇଥିଲେ । ଭଗବାନଙ୍କୁ ଘୋଡ଼ାଙ୍କର ଲଗାମ ଧରିବା କଷ୍ଟକର ହୋଇପଡ଼ିଲା । ସେ ନିଜର ପ୍ରତିଜ୍ଞା ଭଙ୍ଗ କରି ରଥର ଚକ ଧରି ଦୌଡ଼ିଗଲେ ଭୀଷ୍ମଙ୍କ ଆଡ଼କୁ । ସେତେବେଳେ ତାଙ୍କ କାନ୍ଧରୁ ପୀତାମ୍ବର ଉତ୍ତରୀୟ ଖସି ପଡୁଥିଲା । ଭୀଷ୍ମ ଭଗବାନଙ୍କୁ ଆହ୍ୱାନ କରି ତାଙ୍କ ହାତରେ ମରିବାକୁ ବଡ଼ ଭାଗ୍ୟର କଥା ବୋଲି ଭାବୁଥିଲେ । ଅର୍ଜୁନ ରଥରୁ ଓହ୍ଲାଇ ପଡ଼ି ଭଗବାନଙ୍କ ପାଦ ଧରି ତାଙ୍କୁ ଅଟକାଇଥିଲେ । ସେହି ଦୃଶ୍ୟକୁ

ସେ ଅନ୍ତ ସମୟରେ ଧ୍ୟାନ କରି କେତେ ଭାବବିଭୋର ହୋଇଯାଇଥିଲେ, ତାହା ତାଙ୍କ ସ୍ତୁତିରେ ବେଶ୍ ପରିଲକ୍ଷିତ ହୁଏ। ସତରେ ଅଦ୍ଭୁତ ଏହି ଭକ୍ତ ଓ ଭଗବାନଙ୍କର ସମ୍ପର୍କ; ଅଦ୍ଭୁତ ଏଇ ଭକ୍ତି।

ଭୀଷ୍ମ ପାଣ୍ଡବଙ୍କ ବିପକ୍ଷରେ ଯୁଦ୍ଧ କରୁଥିଲେ ସତ, କିନ୍ତୁ ଧର୍ମ ପକ୍ଷ ପ୍ରତି ତାଙ୍କର ହାର୍ଦ୍ଦିକ ସମର୍ଥନ ରହିଥିଲା। ଅନେକ ଘଟଣାରେ ସେ ପାଣ୍ଡବଙ୍କୁ ଯୁଦ୍ଧରୂପୀ ସଂକଟରେ ସାହାଯ୍ୟ କରିଛନ୍ତି, ଯେଉଁଠି କି ଭଗବାନ ମଧ୍ୟ ନିରୁପାୟ ହୋଇ ଯାଇଥିଲେ। ନଚେତ୍ ପାଣ୍ଡବଙ୍କର ବିଜୟ ହେବା ଅସମ୍ଭବ ହୋଇ ପଡ଼ିଥାନ୍ତା। ଅବଶ୍ୟ ଏ ସମସ୍ତ ଘଟଣା ଭଗବାନଙ୍କର ହିଁ ଅଘଟନଘଟନ-ପଟୀୟସୀ ଲୀଳାର ଅନ୍ତର୍ଗତ, କିନ୍ତୁ ସାଧାରଣତଃ ବାହ୍ୟ ଦୃଷ୍ଟିରେ ତ ଭୀଷ୍ମଙ୍କର ଉଦାରତା ହିଁ ଏଥିରେ ପ୍ରତିଭାସିତ ହୁଏ। ଏଥିମଧ୍ୟରୁ ଅଳ୍ପ କେତୋଟି ସଂକଟମୟ ପରିସ୍ଥିତିର ଚର୍ଚ୍ଚା ଏଠାରେ କରାଯାଉଛି।

(୧) ମହାଭାରତ ଯୁଦ୍ଧର ପ୍ରସ୍ତୁତି ଚାଲିଥାଏ। କୌରବପକ୍ଷର ପ୍ରଧାନ ସେନାପତି ରୂପେ ଭୀଷ୍ମଙ୍କୁ ଚୟନ କରାଗଲା। ପିତାମହ ଭୀଷ୍ମ ଦୁର୍ଯ୍ୟୋଧନଙ୍କୁ ତାଙ୍କ ପକ୍ଷର ମହାରଥୀ, ଅତିରଥୀ, ରଥୀ ଓ ଏକରଥୀ ପ୍ରଭୃତିଙ୍କର ଶକ୍ତି କେତେ, ତାହା ଜଣାଇଲେ। ଏ ପରିପ୍ରେକ୍ଷୀରେ ସେ କର୍ଣ୍ଣଙ୍କୁ 'ଅର୍ଦ୍ଧରଥୀ' କହିଦେଲେ। ସେ କହିଲେ, ''ଦୁର୍ଯ୍ୟୋଧନ! ତୁମେ ଯେଉଁ କର୍ଣ୍ଣ ଭରସାରେ ଯୁଦ୍ଧରେ ବିଜୟ ଆଶା କରୁଛ, ସେ କେବଳ ଆତ୍ମାଭିମାନୀ। ତା'ର ନୈସର୍ଗିକ କବଚକୁଣ୍ଡଳ ଆଉ ନାହିଁ। ସେ ପରଶୁରାମଙ୍କ ଠାରୁ ଅଭିଶାପ ମଧ୍ୟ ପାଇଛି। ସେ କେବଳ କଥା ଖୁବ୍ ବଡ଼ ବଡ଼ କହୁଛି, କିନ୍ତୁ କ୍ଷେତ୍ର ଉପରେ ବିଶେଷ କିଛି କରି ପାରିବ ନାହିଁ। ତେଣୁ ମୁଁ ତାକୁ ରଥୀ ବା ଅତିରଥୀ କହି ପାରିବି ନାହିଁ। ମୋ ଦୃଷ୍ଟିରେ ସେ ଜଣେ ଅର୍ଦ୍ଧରଥୀ।''

ଏହିପରି କେତୋଟି କଥା ଯୋଗୁଁ ଭୀଷ୍ମ ଓ କର୍ଣ୍ଣଙ୍କର ଏକମତ ହୋଇପାରୁ ନ ଥିଲା। ଫଳରେ ଭୀଷ୍ମ ସେନାପତି ପଦରେ ଥିବା ପର୍ଯ୍ୟନ୍ତ କର୍ଣ୍ଣଙ୍କୁ ଯୁଦ୍ଧ କରିବାର ଅବସର ମିଳିପାରି ନ ଥିଲା। ଯାହା ଫଳରେ କର୍ଣ୍ଣ ଓ ଅର୍ଜୁନଙ୍କ ସଂଗ୍ରାମକୁ କିଛି ଦିନ ପାଇଁ ଟାଳି ଦିଆଯାଇ ପାରିଲା ଏବଂ କର୍ଣ୍ଣ ପାଖରେ ଥିବା ଅମୋଘ ଦିବ୍ୟାସ୍ତ୍ର ଠାରୁ ଅର୍ଜୁନ ବର୍ତ୍ତିଗଲେ।

(୨) ଭୀଷ୍ମ ପ୍ରଥମରୁ ଦୁର୍ଯ୍ୟୋଧନଙ୍କୁ ଶୁଣାଇ ଦେଇଥିଲେ ଯେ ''ମୁଁ ତୁମ ପାଇଁ ପୂର୍ଣ୍ଣ ଶକ୍ତି ପ୍ରୟୋଗ କରି ଯୁଦ୍ଧ କରିବି ଏବଂ ପ୍ରତିଦିନ ଦଶ ହଜାର

ମହାରଥୀଙ୍କୁ ମାରିବି, କିନ୍ତୁ ପାଣ୍ଡବମାନଙ୍କୁ ମାରିବି ନାହିଁ। ମୁଁ ଶିଖଣ୍ଡୀକୁ ନାରୀ ମନେକରେ, ତେଣୁ ସେ ଯୁଦ୍ଧ କଲେ ମୁଁ ତା' ଉପରକୁ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରିବି ନାହିଁ।'' ଏପରେ ଦୁର୍ଯ୍ୟୋଧନର ଅତ୍ୟଧିକ ଚାପରେ ବାଧ୍ୟ ହୋଇ ଭୀଷ୍ମ ପଞ୍ଚପାଣ୍ଡବଙ୍କୁ ମାରିବା ପାଇଁ ପାଞ୍ଚଟି ଶର ରଖିଲେ। ଏ ସମାଚାର ପାଣ୍ଡବଙ୍କ ଶିବିରରେ ପହଞ୍ଚିବା ମାତ୍ରେ ସମସ୍ତେ ଚିନ୍ତିତ ହୋଇପଡ଼ିଲେ। ଭକ୍ତବତ୍ସଳ ଭଗବାନଙ୍କୁ ଆଉ କି ନିଦ ଆସେ! ସେ କୌଶଳ ଖଞ୍ଜିଲେ ଏବଂ ଭୀଷ୍ମ ଅର୍ଦ୍ଧନିମୀଳିତ ନୟନରେ ଭଗବାନଙ୍କୁ ଧ୍ୟାନ କରୁଥିବା ସମୟରେ ପହଞ୍ଚି ଖୁବ୍ ଚତୁରତାର ସହିତ ଭୀଷ୍ମଙ୍କ ଠାରୁ ପାଞ୍ଚଟି ଶର ମଗାଇ ନେଲେ। ପରେ ଭୀଷ୍ମ ଯେତେବେଳେ ସମ୍ମୁଖରେ ଶ୍ରୀକୃଷ୍ଣଙ୍କୁ ଦେଖିଲେ, ସେ ବୁଝିଗଲେ ଯେ ଏ ସବୁ ଶ୍ରୀକୃଷ୍ଣଙ୍କ କୌଶଳ। ଶେଷରେ ସେ ଭଗବାନଙ୍କ ଇଚ୍ଛା ଆଗରେ ନତମସ୍ତକ ହୋଇ ହାର ମାନିଲେ ଏବଂ ପାଣ୍ଡବ ବଞ୍ଚିଗଲେ।

(୩) ଯୁଦ୍ଧ ଆରମ୍ଭ ହେବାକୁ ଯାଉଥାଏ। ଉଭୟ ପକ୍ଷରେ ବିଶାଳ ସେନାବାହିନୀ। ସ୍ୱଜନବର୍ଗଙ୍କୁ ଦେଖି ଅର୍ଜୁନଙ୍କ ମନରେ ମୋହ ଉତ୍ପନ୍ନ ହୋଇଗଲା। ଭଗବାନ ତାଙ୍କୁ ଗୀତା ଉପଦେଶ ଶୁଣାଇଲେ। ତା'ପରେ ଯୁଦ୍ଧାରମ୍ଭର ଶଙ୍ଖନାଦ ହେଲା। କେବଳ ଅସ୍ତ୍ର ଚାଳନା ବାକିଥାଏ। ହଠାତ୍ ଧର୍ମରାଜ ଯୁଧିଷ୍ଠିର ନିଜର କବଚ ପ୍ରଭୃତି ଓହ୍ଲାଇ ରଖିଦେଇ ଖାଲି ପାଦରେ ଚାଲି ଚାଲି କୌରବସେନା ଆଡ଼କୁ ଆସିଲେ। ତାଙ୍କୁ ଦେଖି ଅନ୍ୟ ପାଣ୍ଡବ ମଧ୍ୟ ତାଙ୍କର ଅନୁଗମନ କଲେ। କିନ୍ତୁ କେହି ଏହାର ଉଦ୍ଦେଶ୍ୟ ବୁଝିପାରୁ ନ ଥାନ୍ତି। ଆଶ୍ଚର୍ଯ୍ୟରେ ପଡ଼ି ଅନେକ ଲୋକ ଅନେକ କଥା କଳ୍ପନା କରୁଥାନ୍ତି; କେତେକ ପରିହାସ ମଧ୍ୟ କରୁଥାନ୍ତି। ଏତେ ବଡ଼ ପ୍ରସ୍ତୁତି ପରେ କ'ଣ ପୁଣି ଯୁଧିଷ୍ଠିର ଆତ୍ମସମର୍ପଣ କରିବେ ନା କ'ଣ? କିନ୍ତୁ ଶ୍ରୀକୃଷ୍ଣ କେବଳ ଏ ରହସ୍ୟକୁ ଜାଣିଥିବାରୁ ମନ୍ଦ ମନ୍ଦ ହସୁଥାନ୍ତି। ଯୁଧିଷ୍ଠିର କାହାରି କଥାକୁ କାନ ନ ଦେଇ ସିଧା ଯାଇ ଭୀଷ୍ମଙ୍କ ପାଦ ଛୁଇଁ ପ୍ରଣାମ କଲେ ଏବଂ କହିଲେ—''ପିତାମହ! ଆଜି ଏଭଳି ସଂକଟ ସମୟ ଆସିଯାଇଛି ଯେ ମୋତେ ଆପଣଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପଡୁଛି। ତେଣୁ ଆପଣ ମୋତେ ଯୁଦ୍ଧ ପାଇଁ ଆଜ୍ଞା ଦିଅନ୍ତୁ ଓ ଆଶୀର୍ବାଦ ଦିଅନ୍ତୁ।''

ଭୀଷ୍ମ କହିଲେ—''ପ୍ରିୟ ଯୁଧିଷ୍ଠିର! ତୁମେ ବଡ଼ ଧର୍ମଜ୍ଞ। ମୋତେ ଅନୁମତି ମାଗି ତୁମେ ଧର୍ମାନୁକୂଳ କାର୍ଯ୍ୟ କରିଛ। ଏହା ନ କରିଥିଲେ ମୁଁ ତୁମକୁ ପରାଜୟର ଅଭିଶାପ ଦେଇଥାନ୍ତି। ଯାଅ! ଯୁଦ୍ଧ କର। ଯୁଦ୍ଧରେ ତୁମର ବିଜୟ

ହେଉ, ତୁମର ଅଭିଳାଷ ପୂର୍ଣ୍ଣ ହେଉ। ଆଉ କିଛି ଯଦି ମାଗିବାକୁ ଚାହୁଁଛ ମାଗ। ମୁଁ କୌରବଙ୍କ ଧନର ଓ ବୃତ୍ତିର ଅଧୀନ ହୋଇ ବିବଶ ହୋଇଯାଇଛି; ତେଣୁ ଯୁଦ୍ଧରେ ତୁମକୁ ସାହାଯ୍ୟ କରି ପାରିବି ନାହିଁ। ଏହାଛଡ଼ା ଆଉ ଯାହା କିଛି ମାଗିବ, ମୁଁ ଦେବାକୁ ପ୍ରସ୍ତୁତ ଅଛି।''

ଯୁଧିଷ୍ଠିର କହିଲେ—''ପିତାମହ! ଆପଣ ଦୁର୍ଯ୍ୟୋଧନ ପକ୍ଷରେ ରହି ଯୁଦ୍ଧ କରନ୍ତୁ, କିଛି କଥା ନାହିଁ। ଆପଣଙ୍କ ଶରୀର ତାଙ୍କ ପକ୍ଷରେ ଥାଉ, କିନ୍ତୁ ହୃଦୟ ଆମ ପକ୍ଷରେ ରହୁ; ଆମକୁ ଆପଣ ଆମର ହିତ ଦୃଷ୍ଟିରୁ ପରାମର୍ଶ ଦେଉଥାନ୍ତୁ। ଏତିକି ମୋର ପ୍ରାର୍ଥନା।'' ଭୀଷ୍ମ କହିଲେ, ''କେଉଁଭଳି ପରାମର୍ଶ କଥା କହୁଛ?'' ଯୁଧିଷ୍ଠିର କହିଲେ, ''ଆପଣ ତ ଆମର ବିଜୟ ଚାହାନ୍ତି; କିନ୍ତୁ ଆପଣ ନିଜେ ଆମ ବିପକ୍ଷରେ ଠିଆ ହୋଇଥିବା ପର୍ଯ୍ୟନ୍ତ ବିଜୟ କ'ଣ ସମ୍ଭବ? କିଏ ଆପଣଙ୍କୁ ଯୁଦ୍ଧରେ ହରାଇ ପାରିବ?'' ଭୀଷ୍ମ କହିଲେ, ''ତୁମେ ଠିକ୍ କଥା କହିଛ; ତଥାପି ସମୟ ଆସିଲେ ମୁଁ ତୁମକୁ ତା'ର ଉପାୟ କହିବି।'' ଏହା ତାଙ୍କର କେତେ ଉଦାରତା ନୁହେଁ ସତେ!

(୪) ମହାଭାରତ ଯୁଦ୍ଧର ଭୟଙ୍କରତାକୁ କିଏ ବା ନ ଜାଣେ? ସେଥିରେ ପୁଣି ଇଚ୍ଛାମୃତ୍ୟୁ ବରପ୍ରାପ୍ତ ଅଦ୍ୱିତୀୟ ପରାକ୍ରମୀ ଯୋଦ୍ଧା ଭୀଷ୍ମଙ୍କ ଭୂମିକା କେତେ ଭୟଙ୍କର ଥିଲା! ପାଣ୍ଡବଙ୍କୁ ସିନା ସେ ମାରୁ ନ ଥିଲେ, କିନ୍ତୁ ସେ ଶରବର୍ଷା କଲାବେଳେ ପାଣ୍ଡବସେନାରେ ହାହାକାର ଖେଳି ଯାଉଥିଲା। କେହି ତାଙ୍କ ଆଗରେ ତିଷ୍ଠି ପାରୁ ନ ଥିଲେ। ପ୍ରତିଦିନ ସେ ଏକୁଟିଆ ଦଶହଜାର ବୀରଙ୍କୁ ସଂହାର କରୁଥିଲେ। ତଥାପି, ଯୁଦ୍ଧରେ ହାରିବା ଜିତିବା ତ ଜୁଆର-ଭଙ୍ଗା ପରି ଲାଗି ରହିଥାଏ। ଯୁଦ୍ଧର ତୃତୀୟ ଦିନ ପାଣ୍ଡବଙ୍କ ଆକ୍ରମଣ ରେ ଦୁର୍ଯ୍ୟୋଧନ ମୂର୍ଚ୍ଛିତ ହୋଇଗଲା, କୌରବ ସେନା ଛତ୍ରଭଙ୍ଗ ଦେଲା। ଦୁର୍ଯ୍ୟୋଧନ ଭୀଷ୍ମଙ୍କ ଉପରେ କିଛି ଲାଞ୍ଛନା ଲଗାଇ କହିଲା—''ଆପଣଙ୍କ ଭରସାରେ ମୁଁ ଯୁଦ୍ଧ ଘୋଷଣା କରିଥିଲି, କିନ୍ତୁ ଆପଣ ଜାଣିଶୁଣି ପାଣ୍ଡବଙ୍କ ଉପରେ ଦୟା କରୁଛନ୍ତି। ପୂର୍ଣ୍ଣ ବଳ ପ୍ରୟୋଗ କରୁ ନାହାନ୍ତି।'' ଭୀଷ୍ମ ତାକୁ ଖୁସୀ କରିବା ପାଇଁ ସେ ଦିନ ଆହୁରି ଅଧିକ ପରାକ୍ରମ ଦେଖାଇଲେ। ଏତେ ଫୂର୍ତ୍ତିରେ ସେ ଶରବର୍ଷା କଲେ ଯେ ତାଙ୍କ ଧନୁରେ କେବେ ଶର ସଂଯୋଗ ହେଉଛି, ଆଉ କେବେ ଗତି କରୁଛି, କିଛି ଜାଣିହେଉ ନ ଥାଏ। ତାଙ୍କ ଶରରେ ଅର୍ଜୁନଙ୍କ ରଥଟି ଢାଙ୍କି ହୋଇଗଲା।

ଭଗବାନ ଅନୁମାନ କଲେ ଯେ ଭୀଷ୍ମଙ୍କୁ ପ୍ରତିରୋଧ ନ କଲେ ପାଣ୍ଡବସେନା

ଛିନ୍ନଛତ୍ର ହୋଇଯିବ । ଅର୍ଜୁନଙ୍କ ଯୁଦ୍ଧ ତାଙ୍କୁ କୋମଳ ଯୁଦ୍ଧ ପରି ଲାଗିଲା । ଅବଶ୍ୟ ସାତ୍ୟକି ଅର୍ଜୁନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ ଏବଂ ଛତ୍ରଭଙ୍ଗ ଦେଉଥିବା ବୀରମାନଙ୍କୁ ଉତ୍ସାହିତ କରି ଅଟକାଇବାକୁ ଚେଷ୍ଟା କଲେ । କିନ୍ତୁ ଭଗବାନ ଦେଖିଲେ ଏଥିରେ କିଛି ହୋଇ ପାରିବ ନାହିଁ । ଶେଷରେ ସେ ଭକ୍ତଙ୍କୁ ବିଜୟୀ କରିବା ପାଇଁ ନିଜ ପ୍ରତିଜ୍ଞାକୁ ଖାତିରି ନ କରି ଚକ୍ର ଧରି ଭୀଷ୍ମଙ୍କୁ ମାରିବା ପାଇଁ ଦୌଡ଼ି ଆସିଲେ । ତାଙ୍କ ନୀଳୋଜ୍ଜ୍ୱଳ ଦେହରେ ପୀତାମ୍ବର ଘନ ବାଦଲ ମଧ୍ୟରେ ବିଜୁଳି ପରି ଝଟକୁଥିଲା । ହାତରେ ଚକ୍ର ଖୁବ୍ ଦ୍ରୁତଗତିରେ ଘୂରୁଥିଲା । ନବ କିଶୋର ସିଂହ ବୃଦ୍ଧ ଗଜରାଜ ଉପରକୁ ଝାମ୍ପ ଦେଲା ପରି ସେ ଭୀଷ୍ମଙ୍କ ଆଡ଼କୁ ମାଡ଼ି ଆସୁଥିବାର ଦେଖି ଲୋକେ ହାହାକାର କରିବାକୁ ଲାଗିଲେ । ସମସ୍ତେ ଭାବିଲେ, ଏଥର ଭୀଷ୍ମଙ୍କର ଶେଷ ସମୟ ଆସିଗଲା । ଭୀଷ୍ମ କିନ୍ତୁ ତାଙ୍କୁ ଦେଖି ଟିକିଏ ହେଲେ ବିଚଳିତ ହେଲେ ନାହିଁ । ସେ ନିଜ ଧନୁରେ ଟଙ୍କାର କରି କହିଲେ—"ଆସ, ଆସ ଶ୍ରୀକୃଷ୍ଣ! ମୁଁ ତୁମକୁ ସ୍ୱାଗତ କରୁଛି । ଆଜି ତୁମେ ହାତରେ ଚକ୍ର ଧରି ମୋତେ ମାରିବାକୁ ଆସିଛ! ଉତ୍ତମ । ହେ ଜଗଦାଧାର! ତୁମେ ତ ତୁମ ଶରଣାଗତଙ୍କ ରକ୍ଷକ ନା? ଠିକ୍ ଅଛି । ତୁମ ଶରଣାଗତଙ୍କୁ ରକ୍ଷା କର, ମୋତେ ଚକ୍ରରେ କାଟି ରଥରୁ ତଳକୁ ପକାଇଦିଅ । ତୁମ ହାତରେ ମଲେ ମୋତେ ଇହଲୋକରେ ଯଶ ବି ମିଳିବ ଓ ପରଲୋକରେ ମୁକ୍ତି ବି ମିଳିବ । ତୁମ ହାତରେ ମଲେ ମୋର କୌଣସି ଅପକୀର୍ତ୍ତି ହେବ ନାହିଁ, ବରଂ ଯଶବ୍ୟାପ୍ତି ହେବ । ତୁମେ ସ୍ୱୟଂ ମୋତେ ମାରିବାକୁ ଆସିଲ—କେବଳ ଏତିକିରେ ବି ମୋର ପ୍ରତିଷ୍ଠା ଓ କୀର୍ତ୍ତି ସହସ୍ରଗୁଣ ବଢ଼ିଯିବ ।"

ଏଣେ ଅର୍ଜୁନ ଭଗବାନଙ୍କର କ୍ରୋଧ ଦେଖି ଅବିଳମ୍ବେ ରଥରୁ ଡେଇଁ ପଡ଼ିଲେ ଏବଂ ଦୌଡ଼ିଯାଇ ଭଗବାନଙ୍କ ପାଦ ଧରି ତାଙ୍କୁ ଅଟକାଇବାକୁ ଚେଷ୍ଟା କଲେ, କିନ୍ତୁ ଭଗବାନଙ୍କ ତୀବ୍ର ଗତିରେ ଅର୍ଜୁନ ମଧ୍ୟ ଘୋଷାରି ହୋଇ କେତେ ଦୂର ଗ୍ଲଲିଗଲେ । ସେ ତାଙ୍କୁ ଅଟକାଇ ଅନେକ କାକୁତି ମିନତି ହୋଇ ବୁଝାଇ କହିଲେ—"ପ୍ରଭୁ! ତୁମେ ଆମ ପାଇଁ ତୁମର ପ୍ରତିଜ୍ଞା ଛାଡ଼ି ଦିଅନି । ପ୍ରଭୁ! ମୁଁ ଶପଥ କରି କହୁଛି, ଏବେ ମୁଁ ଆଉ କୋମଳ ଯୁଦ୍ଧ କରିବି ନାହିଁ । ତୁମ ଆଦେଶରେ ମୁଁ ଗୁରୁଜନଙ୍କୁ ମଧ୍ୟ ସଂହାର କରିବି ।" ଏହି ଶପଥ ଶୁଣି ଭଗବାନ କ୍ରୋଧ ଶାନ୍ତ କଲେ ଓ ରଥକୁ ଫେରି ଆସିଲେ । ଏହାପରେ ଅର୍ଜୁନ ଭୀଷ୍ମଙ୍କ ସଙ୍ଗେ ଭୟଙ୍କର ଯୁଦ୍ଧ କଲେ ।

(୫) ଠିକ୍ ଏହିପରି ଆଉ ଥରେ ନବମ ଦିନ ଭୀଷ୍ମ ତାଙ୍କର ପ୍ରବଳ ପରାକ୍ରମ ଦେଖାଇଥିଲେ; ଯାହା ଫଳରେ ଶରଣାଗତ ରକ୍ଷକ ଭଗବାନ ନିଜର ଯୁଦ୍ଧ ନ କରିବା ପ୍ରତିଜ୍ଞାକୁ ଭଙ୍ଗ କରି ଘୋଡ଼ାଙ୍କର ଚାବୁକ ଉଠାଇ ଭୀଷ୍ମଙ୍କୁ ମାରିବାକୁ ଦୌଡ଼ି ଯାଇଥିଲେ । ସେଥର ମଧ୍ୟ ଅର୍ଜୁନ ତାଙ୍କର ପାଦ ଧରି ତାଙ୍କୁ ଅଟକାଇଥିଲେ ଏବଂ ନିଜର ପୂର୍ବ ପ୍ରତିଜ୍ଞା ଅନୁସାରେ ଭୀଷ୍ମଙ୍କୁ ମାରିବା ନିମନ୍ତେ କଠୋର ଯୁଦ୍ଧ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଭୀଷ୍ମଙ୍କୁ ପ୍ରତିହତ କରିବା କଣ ଏତେ ସହଜ କଥା!

ଭୀଷ୍ମଙ୍କ ଦ୍ୱାରା ପାଣ୍ଡବସେନାର ଯେଉଁ କ୍ଷତି ହେଉଥିଲା, ସେଥିରେ ଯୁଧିଷ୍ଠିର ଚିନ୍ତିତ ହୋଇ ପଡ଼ିଲେ । ତାଙ୍କ ପକ୍ଷର କ୍ଷତ୍ରିୟ ବୀରଙ୍କର ଏଭଳି ମହାସଂହାର ହେଲେ ସେମାନେ କେତେ ଦିନ ବା ତିଷ୍ଠି ପାରିବେ! ଶ୍ରୀକୃଷ୍ଣଙ୍କ ସଙ୍ଗେ ସେ ପରାମର୍ଶ କଲେ ଏବଂ ଏ ପ୍ରସ୍ତାବ ରଖିଲେ ଯେ ଭୀଷ୍ମଙ୍କ ପାଖକୁ ଯାଇ ତାଙ୍କୁ ତାଙ୍କର ମୃତ୍ୟୁ ଉପାୟ ପଚାରିବା ଆବଶ୍ୟକ । ତାହା ହିଁ ହେଲା । ସମସ୍ତେ ଯାଇ ଭୀଷ୍ମଙ୍କୁ ପ୍ରଣାମ କଲେ । ସେ ସମସ୍ତଙ୍କୁ ସ୍ୱାଗତ କରି କହିଲେ—"ବୀରମାନେ! ମୁଁ ତୁମର ପ୍ରସନ୍ନତା ପାଇଁ କ'ଣ କରିବି? ତାହା ଯେତେ ବଡ଼ କାର୍ଯ୍ୟ ହେଲେ ମଧ୍ୟ ମୁଁ କରିବାକୁ ପ୍ରସ୍ତୁତ । ଯୁଧିଷ୍ଠିର ଅତି ବିନମ୍ର ଭାବରେ କହିଲେ—"ଜେଜେ! ଆପଣ ଆମକୁ ବିଜୟର ବରଦାନ ଦେଇଛନ୍ତି; ହେଲେ ତାହା ତ ସତ୍ୟ ହେବା ପରି ଦେଖାଯାଉ ନାହିଁ! ଆପଣ ଥାଉଁ ଥାଉଁ ଆମର କେବେ ବି ବିଜୟ ହେବା ସମ୍ଭବ ନୁହେଁ ।" ଭୀଷ୍ମ କହିଲେ—"ତୁମେ ଠିକ୍ କହିଛ । ମୁଁ ଜୀବିତ ଥିବା ପର୍ଯ୍ୟନ୍ତ ତୁମେ ଜିତି ପାରିବ ନାହିଁ । ତେଣୁ ଖୁବ୍ ଶୀଘ୍ର ମୋତେ ମାରିବାକୁ ବ୍ୟବସ୍ଥା କର ମୁଁ ତୁମକୁ ଅତ୍ୟନ୍ତ କଠୋର ଯୁଦ୍ଧ କରିବାକୁ ଆଦେଶ ଦେଉଛି ।" ଯୁଧିଷ୍ଠିର କହିଲେ—"ପିତାମହ! ଆମ ବାହୁବଳରେ କିଛି ହୋଇ ପାରିବ ନାହିଁ; ଆପଣ ଦୟା କରି ନିଜେ ହିଁ ନିଜ ମୃତ୍ୟୁର ଉପାୟ କହି ଦିଅନ୍ତୁ ।"

ଧର୍ମାତ୍ମା ଭୀଷ୍ମ ଏଥର ମନେ ମନେ ବିଚାର କଲେ ଯେ, "ସତ କଥା । ମୁଁ ହିଁ ଧର୍ମର ବିଜୟରେ ଦୁର୍ଭେଦ୍ୟ ପ୍ରାଚୀର ପରି ପ୍ରତିବନ୍ଧକ ହୋଇ ଠିଆ ହୋଇଛି ଧର୍ମରାଜଙ୍କର ବିଜୟ ତ ସୁନିଶ୍ଚିତ । ଅର୍ଜୁନ ଓ ଶ୍ରୀକୃଷ୍ଣ ସାକ୍ଷାତ୍ ନର ଓ ନାରାୟଣ । ଭଗବାନ ଶ୍ରୀକୃଷ୍ଣ ଯାହାଙ୍କୁ ସାହାଯ୍ୟ କରୁଛନ୍ତି, ତାଙ୍କୁ ବା କିଏ ହରାଇ ପାରିବ । ମୁଁ ଅଯଥାରେ ଭୀଷଣ ନରସଂହାରର କାରଣ ହୋଇ ଆଉ ଲାଭ କ'ଣ?" ସେ କୌରବ ପକ୍ଷରେ ରହି ପୂର୍ଣ୍ଣ ବଳ ପ୍ରୟୋଗ କରି ନିଜର କର୍ତ୍ତବ୍ୟ

ମଧ୍ୟ ପୂର୍ଣ୍ଣ କରି ସାରିଥିଲେ । ତେଣୁ ସେ ନିଜର ମୃତ୍ୟୁର ଉପାୟ କହିଦେଲେ । ଧର୍ମ ପାଇଁ ନିଜର ପ୍ରାଣତ୍ୟାଗ କରିବାକୁ ସେ ନିର୍ଣ୍ଣୟ କରିନେଲେ ।

ସେ କହିଲେ, "ଧର୍ମପୁତ୍ର! ମୁଁ ଏହା ନିୟମ କରିଛି ଯେ, ନିଃଶସ୍ତ୍ର, କବଚହୀନ, ଧ୍ୱଜାହୀନ, ଭୟଭୀତ, ଛତ୍ରଭଙ୍ଗ ଦେଉଥିବା, ଶରଣାଗତ, ନାରୀ, ନାରୀନାମଧାରୀ, ବିକଳାଙ୍ଗ, ସନ୍ତାନହୀନ ଓ ନପୁଂସକ ଯୋଦ୍ଧା ସଙ୍ଗେ ଯୁଦ୍ଧ କରିବି ନାହିଁ । ତା'ଛଡ଼ା ଦ୍ରୁପଦ ପୁତ୍ର ଶିଖଣ୍ଡୀ ଉପରକୁ ମୁଁ ଶସ୍ତ୍ର ପ୍ରହାର କରିବି ନାହିଁ ବୋଲି ପ୍ରତିଜ୍ଞା କରିଛି; କାରଣ ସେ ପୂର୍ବେ ନାରୀ ଥିବାରୁ ମୁଁ ତାକୁ ନାରୀ ବୋଲି ଭାବେ । ତେଣୁ ଅର୍ଜୁନ ତାକୁ ମୋ ସମ୍ମୁଖରେ ରଖି ଯୁଦ୍ଧ କଲେ ମୋତେ ମାରି ପାରିବ । ଏହା ହିଁ ମୋତେ ମାରିବାର ଉପାୟ ।"

ଧନ୍ୟ! ଧନ୍ୟ ତୁମେ ଧର୍ମନିଷ୍ଠ ବୀର । ଧନ୍ୟ ତୁମ ସତ୍ୟ ପ୍ରତିଜ୍ଞା, ଧନ୍ୟ ତୁମ କର୍ତ୍ତବ୍ୟ ନିଷ୍ଠା । ଏଭଳି ଉଦାର ମହାତ୍ମା ଆଉ କିଏ ଅଛି, ଯିଏ ନିଜ ମୃତ୍ୟୁର ଉପାୟ କହିଦେବ!

ଭୀଷ୍ମଙ୍କ ଅନୁମତି ମିଳିଗଲା । ସମସ୍ତେ ଶିବିରକୁ ଫେରି ଆସିଲେ । ପିତାମହ ଭୀଷ୍ମଙ୍କର ସ୍ନେହ, ବାତ୍ସଲ୍ୟ ଓ ମମତାକୁ ମନେ ପକାଇ ଅର୍ଜୁନ ଅବଶ୍ୟ ଟିକେ ଭାଙ୍ଗି ପଡ଼ିଥିଲେ, କିନ୍ତୁ ଭଗବାନଙ୍କ ପ୍ରେରଣା, ଆଜ୍ଞା ଓ ନିଜର ଶପଥକୁ ସ୍ମରଣ କରି ସେ ମୋହତ୍ୟାଗ କଲେ । ଦଶମ ଦିନର ଯୁଦ୍ଧରେ ଶିଖଣ୍ଡୀ ଭୀଷ୍ମଙ୍କ ସଙ୍ଗେ ଯୁଦ୍ଧ କଲାବେଳେ ଅର୍ଜୁନ ଅଜସ୍ର ଶର ମାରି ଭୀଷ୍ମଙ୍କୁ ରଥରୁ ତଳକୁ ଗଡ଼ାଇଦେଲେ । ଆକାଶରେ ଓ ପୃଥିବୀରେ ସର୍ବତ୍ର ହାହାକାର ଖେଳିଗଲା । ତାଙ୍କ ଦେହରେ ଏତେ ସଂଖ୍ୟକ ଶର ବିନ୍ଧି ହୋଇଯାଇଥିଲା ଯେ ସେ ଭୂମିରେ ନ ପଡ଼ି ଶର ସାହାଯ୍ୟରେ ଟେକି ହୋଇ ରହିଗଲେ । ସେହି ପରାକ୍ରମୀ ଯୋଦ୍ଧାଙ୍କ ପାଇଁ ଏହି ଶରତଳ୍ପ ହିଁ ଥିଲା ବୀରୋଚିତ ସମ୍ମାନପୂର୍ଣ୍ଣ ଶଯ୍ୟା । କିନ୍ତୁ ସେ ସଙ୍ଗେ ସଙ୍ଗେ ଦେହତ୍ୟାଗ ନ କରି ଉତ୍ତରାୟଣକୁ ପ୍ରତୀକ୍ଷା କଲେ ।

ଶରଶଯ୍ୟାରେ ତାଙ୍କର ମୁଣ୍ଡଟି କିନ୍ତୁ ଝୁଲି ରହିଲା । ମୁଣ୍ଡ ତଳେ ଗୋଟିଏ ତକିଆ ଆବଶ୍ୟକ ହେଉଥିଲା । କୌରବ ସୈନ୍ୟ ତକିଆ ନେଇ ଆସିଲେ; କିନ୍ତୁ ଭୀଷ୍ମ କହିଲେ, ଅର୍ଜୁନ ହିଁ ମୋତେ ଉପଯୁକ୍ତ ତକିଆ ଦେବ । ତାଙ୍କର ସଂକେତ ପାଇ ଅର୍ଜୁନ ତାଙ୍କର ଶିରୋଭାଗକୁ ତିନୋଟି ଶର ମାରିଲେ । ଧର୍ମନିଷ୍ଠ କ୍ଷତ୍ରିୟ ବୀରଙ୍କୁ ବୀରୋଚିତ ଶଯ୍ୟା ମିଳିଗଲା । ସେ ଅର୍ଜୁନଙ୍କ ଉପରେ ଖୁସୀ ହେଲେ । ତାଙ୍କୁ ଥରେ ଖୁବ୍ ଶୋଷ ଲାଗିଲା । ସେ ମର୍ତ୍ତ୍ୟଲୋକର ଜଳ ପିଇବାକୁ ଚାହୁଁ

ନ ଥିଲେ। ତେଣୁ ଅର୍ଜୁନଙ୍କୁ ଡକାଇଲେ। ଅର୍ଜୁନ ଶର ମାରିବାରୁ ପୃଥିବୀରୁ ଦିବ୍ୟ ଜଳଧାରା ବାହାରିଲା। ସେଥିରେ ଭୀଷ୍ମ ତୃପ୍ତ ହୋଇ ତାଙ୍କୁ ପ୍ରଶଂସା କଲେ।

ଦୁର୍ଯ୍ୟୋଧନ ଆଦେଶରେ ଭୀଷ୍ମଙ୍କର ଚିକିତ୍ସା ପାଇଁ ଅନେକ ଶଲ୍ୟ ଚିକିତ୍ସକ ଓ ବୈଦ୍ୟ ଆସି ପହଞ୍ଚିଗଲେ। କିନ୍ତୁ ସେ କହିଲେ—"ସେମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଇ ଫେରାଇ ଦିଅ। ମୁଁ ଏହି ଶରଶଯ୍ୟାରେ ଶୋଇରହି ଭଗବାନଙ୍କୁ ସ୍ମରଣ କରିବାକୁ ଚାହେଁ। ମୋର ମୃତ୍ୟୁ ପରେ ଏହି ଶଯ୍ୟାରେ ହିଁ ମୋତେ ଅଗ୍ନି ଦେବ।" ସେହିଠାରେ ଶୋଇ ରହି ଭଗବାନଙ୍କୁ ସ୍ମରଣ କରିବା ସହିତ ସେ ଉତ୍ତରାୟଣକୁ ଅପେକ୍ଷା କଲେ।

ସମସ୍ତେ ଚାଲିଯିବା ପରେ କର୍ଣ୍ଣ ଆସି ତାଙ୍କୁ ସାକ୍ଷାତ୍ କଲେ। ଭୀଷ୍ମ ଧୀରେ ଧୀରେ ଆଖି ଖୋଲିଲେ। କର୍ଣ୍ଣ ଓ ତାଙ୍କ ଭିତରେ ଥିବା ମନୋମାଳିନ୍ୟକୁ ଦୂର କରିବାକୁ ଯାଇ ଭୀଷ୍ମ କହିଲେ—"ବୀର କର୍ଣ୍ଣ! ମୁଁ ବ୍ୟାସଦେବଙ୍କ ଠାରୁ ଜାଣିବାକୁ ପାଇଛି ଯେ ତୁମେ ରାଧାପୁତ୍ର ନୁହଁ, ତୁମେ କୁନ୍ତୀପୁତ୍ର। ତୁମେ ସ୍ୱୟଂ ସୂର୍ଯ୍ୟଙ୍କ ଅଂଶରୁ ଜାତ ହୋଇଛ। ମୋର ତୁମ ପ୍ରତି ତିଳେମାତ୍ର ଦ୍ୱେଷ ନାହିଁ; ତଥାପି ମୁଁ ତୁମକୁ ଯାହା କିଛି କଟୁ ବାକ୍ୟ କହିଛି, ତା'ର ମୂଳ କାରଣ ଥିଲା, ତୁମର ତେଜ ହ୍ରାସ କରିବା; କାରଣ ତୁମ ବଳ ପାଇ କୌରବଙ୍କର ଦର୍ପ ଓ ଅଭିମାନ ଆହୁରି ବଢ଼ିଆନ୍ତା। ସେମାନେ ପାଣ୍ଡବଙ୍କ ପ୍ରତି ଆହୁରି ଅଧିକ ଶତ୍ରୁତା ଓ ଦ୍ୱେଷ କରିଥାନ୍ତେ। ତୁମେ ବ୍ରହ୍ମନିଷ୍ଠ, ବୀର ଓ ଅଦ୍ୱିତୀୟ ଦାନୀ। ମୋର ଇଚ୍ଛା ଯେ ତୁମେ ପାଣ୍ଡବଙ୍କ ସଙ୍ଗେ ମିଶିଯାଅ। ଯୁଦ୍ଧ ବନ୍ଦ ହୋଇଯିବ, ଶତ୍ରୁତା ମେଣ୍ଟିଯିବ। ପ୍ରଜାଙ୍କ ଭିତରେ ଶାନ୍ତିର ବିସ୍ତାର ହେବ।" କିନ୍ତୁ କର୍ଣ୍ଣ ମଧ୍ୟ ନିଜ କର୍ତ୍ତବ୍ୟ-ରଜ୍ଜୁରେ ବନ୍ଧା ଥିଲେ. ସେ ଜୟ-ପରାଜୟକୁ ନ ଦେଖି ମିତ୍ରତାର ଋଣ ସୁଝାଇବାକୁ ହିଁ ଉଚିତ ମନେକଲେ ଏବଂ ଯୁଦ୍ଧରେ କ୍ଷତ୍ରିୟୋଚିତ ପରାକ୍ରମ ଦେଖାଇ ବୀରଗତି ପ୍ରାପ୍ତ ହେଲେ।

ଏଣେ କୁରୁକ୍ଷେତ୍ରର ରଣାଙ୍ଗନରେ ଭୀଷ୍ମପିତାମହ ଶରଶଯ୍ୟାରେ ଶୋଇ ରହି ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥାନ୍ତି, ତେଣେ ଭଗବାନ ମଧ୍ୟ ଭୀଷ୍ମଙ୍କୁ ନିଶ୍ଚଳରେ ଧ୍ୟାନ କରୁଥାନ୍ତି। ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଏଭଳି ପ୍ରଗାଢ଼ ଧ୍ୟାନମୁଦ୍ରାରେ ଦେଖି ପଚାରିଲେ—"ଭଗବନ୍! ଆପଣ ତ ସମଗ୍ର ସଂସାରର ରଚୟିତା ଓ ସଂହାରକର୍ତ୍ତା। କ୍ଷର-ଅକ୍ଷର, ପ୍ରକୃତି-ପୁରୁଷ, ବ୍ୟକ୍ତ-ଅବ୍ୟକ୍ତ ସବୁ କିଛି ଆପଣଙ୍କର ହିଁ ବିସ୍ତାର। ଆପଣ ଅନାଦି, ଅନନ୍ତ ଓ ଆଦିପୁରୁଷ। ପୁଣି ଆପଣ କାହାକୁ ଧ୍ୟାନ କରୁଛନ୍ତି?" ଯୁଧିଷ୍ଠିରଙ୍କ ବିନମ୍ର ପ୍ରଶ୍ନ ଶୁଣି ଧୀରେ ଧୀରେ ଭଗବାନ ପ୍ରକୃତିସ୍ଥ ହେଲେ ଏବଂ

ସ୍ମିତହାସ୍ୟପୂର୍ବକ କହିଲେ—"ମୁଁ ତୁମର ଜେଜ ବୟୋବୃଦ୍ଧ ଭୀଷ୍ମଙ୍କୁ ଧ୍ୟାନ କରୁଥିଲି। ଯେ ମୋତେ ଧ୍ୟାନ କରେ, ମୁଁ ମଧ୍ୟ ତାକୁ ଧ୍ୟାନ ନ କରି ରହିପାରେ ନାହିଁ—ଏହା ମୋର ସ୍ୱଭାବ। ସେଥିପାଇଁ ମୋ ମନ ତାଙ୍କ ଆଡ଼କୁ ଚାଲିଯାଇଥିଲା। ଯାହାଙ୍କ ଧନୁର ଟଙ୍କାର ଇନ୍ଦ୍ରଙ୍କୁ ମଧ୍ୟ ଥରାଇ ଦେଉଥିଲା, ଯାହାଙ୍କ ବାହୁବଳ ଆଗରେ କୌଣସି ରାଜା ତିଷ୍ଠି ପାରୁ ନ ଥିଲେ, ପରଶୁରାମ ତେଇଶ ଦିନ ଯୁଦ୍ଧ କରି ଯାହାଙ୍କୁ ହରାଇ ପାରିଲେ ନାହିଁ, ସେହି ମହାତ୍ମା ଭୀଷ୍ମ ଆଜି ଆତ୍ମସମର୍ପଣ କରି ମୋର ଶରଣ ନେଇଛନ୍ତି। ଭଗବତୀ ଗଙ୍ଗା ଯାହାଙ୍କୁ ଗର୍ଭରେ ଧାରଣ କରି ନିଜକୁ କୃତାର୍ଥ କରିଛନ୍ତି, ମହର୍ଷି ବଶିଷ୍ଠ ଯାହାଙ୍କୁ ଜ୍ଞାନୋପଦେଶ ଦେଇ ନିଜ ଜ୍ଞାନକୁ ସାର୍ଥକ କରିଛନ୍ତି, ଯାହାଙ୍କୁ ନିଜ ଶିଷ୍ୟରୂପେ ପାଇ ପରଶୁରାମ ନିଜର ଗୁରୁପଣିଆକୁ ଗୌରବ ମଣ୍ଡିତ କରିଛନ୍ତି, ଯେ ସମସ୍ତ ବେଦ-ବେଦାଙ୍ଗର ଜ୍ଞାତା, ନାନା ବିଦ୍ୟାର ଆଧାର, ଦିବ୍ୟ ଅସ୍ତ୍ରଶସ୍ତ୍ରର ପ୍ରଧାନ ଆଚାର୍ଯ୍ୟ ଏବଂ ଭୂତ, ଭବିଷ୍ୟ ତଥା ବର୍ତ୍ତମାନର ଜ୍ଞାତା, ସେହି ମହାତ୍ମା ଭୀଷ୍ମ ଆଜି ମନ ଓ ଇନ୍ଦ୍ରିୟଗଣଙ୍କୁ ସଂଯତ କରି ମୋର ଶରଣକୁ ଆସିଛନ୍ତି। ସେଥିପାଇଁ ମୁଁ ତାଙ୍କରି ଚିନ୍ତା କରୁଥିଲି। ପ୍ରିୟ ଧର୍ମରାଜ! ସେ ଚାଲିଗଲେ ଏ ପୃଥିବୀ ଚନ୍ଦ୍ରବିହୀନ ରାତ୍ରି ପରି ଶୋଭାହୀନ ହୋଇଯିବ, ଅନେକ ଜ୍ଞାନ ଲୁପ୍ତ ହୋଇଯିବ, ତେଣୁ ତୁମେ ତାଙ୍କ ପାଖକୁ ଯାଇ କିଛି ଜ୍ଞାନ ଆହରଣ କର।"

ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ସହିତ ପିତାମହ ଭୀଷ୍ମଙ୍କ ପାଖକୁ ଯାଇ ଅନେକ ରହସ୍ୟାବୃତ କଥା ପଚାରିଲେ। ଶ୍ରୀକୃଷ୍ଣଙ୍କ କୃପାରୁ ଭୀଷ୍ମଙ୍କର ସମସ୍ତ ଶାରୀରିକ କ୍ଳେଶ ଦୂର ହୋଇଗଲା ଓ ତାଙ୍କ ଭିତରେ ଜ୍ଞାନ ସ୍ଫୁରିତ ହେଲା। ସେ ବର୍ଣ୍ଣଧର୍ମ, ଆଶ୍ରମଧର୍ମ ଆଦି ଅନେକ ରହସ୍ୟାବୃତ ତତ୍ତ୍ୱ ପ୍ରକାଶ କଲେ। ଶେଷରେ ନିଜ ଦିବ୍ୟଲୋକକୁ ପ୍ରତ୍ୟାବର୍ତ୍ତନ କରିବାର ସମୟ ଆସିବାରୁ ସମସ୍ତ ଇନ୍ଦ୍ରିୟବୃତ୍ତିକୁ ନିରୁଦ୍ଧ କରିଦେଲେ। ତା'ପରେ ଭଗବାନଙ୍କୁ ହୃଦୟ ସିଂହାସନରେ ବସାଇ ସ୍ତୁତି କଲେ—"ମୁଁ ଏହି ମରଣକାଳରେ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ପାଦତଳେ ମୋର ବୁଦ୍ଧିରୂପୀ ପବିତ୍ର କନ୍ୟାକୁ ସମର୍ପଣ କରୁଛି। ଆହା! କି ସୁନ୍ଦର ମୋ ପ୍ରଭୁଙ୍କର ରୂପ! ଯାହାଙ୍କର ଭୁବନମୋହନ କମନୀୟ ସୁନ୍ଦର ନୀଳାଭ ଶ୍ରୀଅଙ୍ଗରେ ସୂର୍ଯ୍ୟରଶ୍ମି ସମ ପୀତବସ୍ତ୍ର କଳା ମେଘରେ ବିଜୁଳି ଭଳି ଶୋଭା ପାଉଥିଲା, ମୁଖମଣ୍ଡଳରେ କେରା କେରା ହୋଇ ଝୁଲୁଥିବା କୁଞ୍ଚିତ କେଶ ରଣାଙ୍ଗନରେ ଘୋଡ଼ାଙ୍କ ଟାପୁରୁ ଉଡୁଥିବା ଧୂଳିରେ ଧୂସରିତ ହୋଇଯାଇଥିଲା, ଯାହାଙ୍କ ନୀଳ ଅଙ୍ଗରେ ସ୍ୱେଦ

କଣିକା ଶ୍ୱେତ ପୁଷ୍ପ ଭଳି ଧାଉ ଧାଉ ହୋଇ ଝଟକୁଥିଲା, ମୋର ତୀକ୍ଷ୍ଣ ଶର ଦ୍ୱାରା ଯାହାଙ୍କର ତ୍ୱଗ୍ କ୍ଷତ-ବିକ୍ଷତ ହୋଇଯାଇଥିଲା, ସେହି କବଚମଣ୍ଡିତ ଶ୍ରୀକୃଷ୍ଣଙ୍କ ଠାରେ ମୋର ଦେହ, ମନ ଓ ପ୍ରାଣ ସମର୍ପିତ ହେଉ। କୁଟୁମ୍ବଜନଙ୍କ ମରଣ ଆଶଙ୍କାରେ ଭୟଭୀତ ଅର୍ଜୁନର ରଥକୁ ଦୁଇ ସେନାଙ୍କ ମଧ୍ୟରେ ଠିଆ କରି ଯିଏ ଗୀତାରୂପୀ ଜ୍ଞାନର ଆଲୋକରେ ତା'ର ମୋହ ଦୂର କରିବା ସହିତ ତୀକ୍ଷ୍ଣ ଦୃଷ୍ଟିପାତ ଦ୍ୱାରା ବିପକ୍ଷ ସେନାଙ୍କ ଆୟୁ ହରଣ କରିନେଲେ, ସେହି ଶ୍ରୀକୃଷ୍ଣଙ୍କ ପାଦତଳେ ମୋର ପ୍ରୀତି ହେଉ। ଯିଏ ନିଜର ପ୍ରତିଜ୍ଞାକୁ ପଛ କରି ନବ କିଶୋର ସିଂହ ବୃଦ୍ଧ ଗଜରାଜକୁ ମାରିବା ପାଇଁ ଉଦ୍ୟତ ହେବା ଭଳି ଗ୍ରବୁକ ଓ ରଥର ଚକ ଉଠାଇ ମୋ ଆଡ଼କୁ ଦୌଡ଼ି ଆସିଥିଲେ, ମୋର ଛୋଟ ଛୋଟ ତୀକ୍ଷ୍ଣ ଶର ଦ୍ୱାରା ଯାହାଙ୍କର କବଚ ବିଦୀର୍ଣ୍ଣ ହୋଇଯାଇଥିଲା, ସେହି ଶ୍ରୀକୃଷ୍ଣ ହିଁ ମୋର ଏକମାତ୍ର ଆଶ୍ରୟ ହୁଅନ୍ତୁ। ଯାହାଙ୍କର ଗଜଗମନ ଅତ୍ୟନ୍ତ ଲଳିତ, ମୃଦୁ ହାସ୍ୟ ଓ ମଧୁର ବାଙ୍କଗ୍ରହାଣିରେ ଯିଏ ବ୍ରଜବନିତାମାନଙ୍କର ବିୟୋଗ ଦୁଃଖକୁ ପ୍ରଶମନ କରିଥିଲେ, ତାଙ୍କ ଚରଣକମଳରେ ମୋର ମନଭ୍ରମର ବିଚରଣ କରୁ। ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ମୋ ଆଖି ଆଗରେ ଯିଏ ଅଗ୍ରପୂଜା ପାଇଥିଲେ, ତାଙ୍କରି ରୂପସୁଧା ପାନ କରି ମୋର ଜୀବନ ଯାଉ। ହେ ଭକ୍ତବତ୍ସଳ! ସତରେ ମୋ ପ୍ରତି ତୁମର କେତେ କରୁଣା! ମୋ ଭଳି ଶରଶଯ୍ୟାଶାୟୀ, ମରଣାସନ୍ନ ଆତତାୟୀକୁ ଦର୍ଶନ ଦେଇ ତୁମେ କୃତାର୍ଥ କରିଦେଲ। ଏବେ ମୁଁ ଭେଦ-ଭ୍ରମରହିତ ହୋଇ ତୁମ ଅଭୟ ପାଦରେ ଶରଣ ପଶୁଛି।''

ଏହିପରି ସ୍ତୁତି କରି ଏବଂ ସ୍ୱୟଂ ଭଗବାନଙ୍କୁ ନେତ୍ର ସମ୍ମୁଖରେ ସାକ୍ଷାତ୍ ଦର୍ଶନ କରି, ତାଙ୍କରି ଉପସ୍ଥିତିରେ ସେ ମହାପ୍ରୟାଣ କରି ନିଜର ପ୍ରାପ୍ତବ୍ୟ ଦିବ୍ୟ ଲୋକକୁ ଗ୍ଲଲିଗଲେ। ପିତାମହ ଭୀଷ୍ମଙ୍କର ମହାପ୍ରୟାଣ ହୁଅନ୍ତେ ସନ୍ଧ୍ୟାକାଳରେ ପକ୍ଷୀଗଣ କଳରବଶୂନ୍ୟ ହୋଇଯିବା ପରି ସମସ୍ତେ କିଛି କ୍ଷଣ ପାଇଁ ନୀରବ ହୋଇଗଲେ। ଦେବଦୁନ୍ଦୁଭି ବାଜି ଉଠିଲା। ସାଧୁସ୍ୱଭାବର ରାଜାମାନେ ତାଙ୍କର ଭୂରି ଭୂରି ପ୍ରଶଂସା କଲେ ଏବଂ ଦେବଗଣ ଆକାଶରୁ ସୁମନ ବୃଷ୍ଟି କରି ତାଙ୍କୁ ଅଭ୍ୟର୍ଥନା ଜଣାଇଲେ। ଏହିରୂପେ ଅପାର ସ୍ୱାଗତ ସମ୍ଭାର ସହିତ ପିତାମହ ଭୀଷ୍ମ ସ୍ୱଧାମକୁ ପ୍ରସ୍ଥାନ କଲେ।



# ଭକ୍ତ ବୃତ୍ରାସୁର

ଭଗବାନଙ୍କୁ ଭକ୍ତି କରିବାରେ ସାଧାରଣତଃ ମନୁଷ୍ୟ ହିଁ ଉତ୍ତମ ଅଧିକାରୀ; କାରଣ ଦେବାଦି ଯୋନିରେ ସୁଖଭୋଗର ପ୍ରାଧାନ୍ୟ ଥିବାବେଳେ ନାରକୀୟ ଯୋନିରେ ଦୁଃଖ ଭୋଗର ପ୍ରାଧାନ୍ୟ ଥାଏ। ପଶୁପକ୍ଷୀ ଆଦି ଯୋନିରେ କର୍ତ୍ତବ୍ୟ-ଅକର୍ତ୍ତବ୍ୟର ବିବେକଜ୍ଞାନ ନ ଥାଏ। ତେଣୁ ସେମାନେ ଜନ୍ମମୃତ୍ୟୁଚକ୍ରରୁ ପରିତ୍ରାଣ ପାଇବାକୁ ଓ ସଂସୃତିନାଶକ ନୂତନ କର୍ମ କରିବାକୁ ସ୍ୱତନ୍ତ୍ର ଭାବେ ଉଦ୍ୟମ କରିପାରନ୍ତି ନାହିଁ। କିନ୍ତୁ ଏହାର ଅର୍ଥ ନୁହେଁ ଯେ ଅନ୍ୟଯୋନିର ପ୍ରାଣୀ ଭଗବାନଙ୍କୁ ଭକ୍ତି କରି ପାରିବେ ନାହିଁ। ପ୍ରହ୍ଲାଦ, ବଳି, ବାଣ, ବୃତ୍ର ପ୍ରଭୃତି ଅସୁରକୁଳରେ ଜନ୍ମ ନେଇ ମଧ୍ୟ ଭଗବାନଙ୍କର ଭକ୍ତ ହୋଇ ପାରିଛନ୍ତି। ସେହିପରି ଗଜେନ୍ଦ୍ର, ଜଟାୟୁ ପ୍ରଭୃତି ପଶୁ-ପକ୍ଷୀ ମଧ୍ୟ ଭକ୍ତିଭାବରେ ଭାବିତ ହୋଇ ଭଗବାନଙ୍କୁ ପାଇ ପାରିଛନ୍ତି। ଅବଶ୍ୟ ଏଭଳି ଭକ୍ତମାନଙ୍କ ଭକ୍ତିଭାବ ଜାଗ୍ରତ ହେବାରେ ଅନେକ କ୍ଷେତ୍ରରେ ସେମାନଙ୍କର ପୂର୍ବଜନ୍ମର ସମ୍ପର୍କ ରହିଛି। କିନ୍ତୁ ଯାହା ହେଲେ ବି ସେମାନଙ୍କ ଭକ୍ତିରେ କୌଣସି ନା କୌଣସି ଶିକ୍ଷଣୀୟ ବିଶେଷତ୍ୱ ନିଶ୍ଚୟ ରହିଛି। ବୃତ୍ରାସୁରର ଭକ୍ତିରେ ଯେଉଁ ନିଷ୍କାମ ଭାବ, ଯେଉଁ ଭଗବଦ୍ଦର୍ଶନର ଅନନ୍ୟ ଲାଳସା ତଥା ଜୀବନ-ମରଣ, ଜୟ-ପରାଜୟରେ ଯେଉଁ ସମତ୍ୱ ଭାବ ଦେଖିବାକୁ ମିଳେ, ତାହା ବଡ଼ ବଡ଼ ଭକ୍ତମାନଙ୍କ ପାଇଁ ମଧ୍ୟ ପରମ ଆଦର୍ଶ। ଯୁଦ୍ଧ କ୍ଷେତ୍ରରେ ତାହାର ଭକ୍ତି ଦେଖି ସ୍ୱୟଂ ଦେବରାଜ ଇନ୍ଦ୍ର ମଧ୍ୟ ଚକିତ ହୋଇଯାଇଥିଲେ। ଶେଷରେ ଭକ୍ତିର ପ୍ରଭାବରେ ସେ ସାଲୋକ୍ୟ ମୁକ୍ତି ଲାଭ କରି ଭଗବାନଙ୍କ ଧାମକୁ ଚାଲିଗଲା।

ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପ ଦେବଗୁରୁ ବୃହସ୍ପତିଙ୍କ ଅନୁପସ୍ଥିତିରେ ଦେବଗୁରୁଙ୍କ କାର୍ଯ୍ୟ ତୁଲାଉ ଥିଲେ। କିନ୍ତୁ ଯଜ୍ଞରେ ସେ ଉଭୟ ଦେବକୁଳ ଓ ଅସୁରକୁଳଙ୍କୁ ଅହୁତି ପ୍ରଦାନ କରିବାରୁ ଇନ୍ଦ୍ର ରାଗିଯାଇ ତାଙ୍କର ମୁଣ୍ଡ କାଟିଦେଲେ। ତ୍ୱଷ୍ଟା ପ୍ରତିଶୋଧ ଭାବନାରେ ଇନ୍ଦ୍ରଙ୍କୁ ମାରିବା ଭଳି ପୁତ୍ରଟିଏ ପାଇବା କାମନାରେ ଯଜ୍ଞ କଲେ। ସହି ଯଜ୍ଞରୁ ଯେଉଁ ବିଶାଳକାୟ ଅସୁର ଉତ୍ପନ୍ନ ହେଲା, ତାହାର ନାମ ଥିଲା 'ବୃତ୍ର'। ଅବଶ୍ୟ ଭଗବାନଙ୍କ ଅଘଟନଘଟନ-ପଟୀୟସୀ ଲୀଳାନୁସାରେ ସେ ଇନ୍ଦ୍ରଙ୍କୁ ମାରିବା ପରିବର୍ତ୍ତେ ନିଜେ ଇନ୍ଦ୍ରଙ୍କ ହସ୍ତରେ ନିହତ ହେଲା, କିନ୍ତୁ ତା'ର ବୀରତ୍ୱ ଓ ଭକ୍ତିର କୀର୍ତ୍ତି ଜଗତ ବିଖ୍ୟାତ ହୋଇଗଲା। ସେ ନିଜର ଭଗବଭକ୍ତି ଓ ଯୁଦ୍ଧରେ ଅଦ୍ଭୁତ ପରାକ୍ରମ ଦେଖାଇ ଯେଉଁ ଗତି ଲାଭ କଲା, ତାହା ତାକୁ

ଅବିସ୍ମରଣୀୟ କରିରଖିଛି । ଏ ନଶ୍ୱର ସଂସାରରେ କିଏ ବା ନ ମରେ? ଯିଏ ଜନ୍ମ ହୋଇଛି ତାର ମୃତ୍ୟୁ ନିଶ୍ଚିତ—**'ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ ।'** ମରଣରେ କାହାରି ଅପକୀର୍ତ୍ତି ହୁଏ ନାହିଁ; କିନ୍ତୁ ତା'ର କୀର୍ତ୍ତି ହିଁ ତାକୁ ଅମର କରି ରଖେ—**କୀର୍ତ୍ତିର୍ଯସ୍ୟ ସ ଜୀବତି ।'**

ବୃତ୍ର ଅସୁର ଜନ୍ମ ପାଇଥିବାରୁ ତାର ଆସୁରୀ ବୃତ୍ତି ହେବା ସ୍ୱାଭାବିକ । ପୁଣି ସେ ସେହି ଉଦ୍ଦେଶ୍ୟରେ ଜନ୍ମ ହୋଇଛି । ତେଣୁ ସେ ଦେବତାମାନଙ୍କୁ ଯୁଦ୍ଧରେ ପରାସ୍ତ କରିଦେଲା । ତା' ଭୟରେ ଇନ୍ଦ୍ର ସମେତ ଦେବଗଣ ଭଗବାନଙ୍କ ଶରଣ ଗଲେ । ଆଶ୍ରିତର ରକ୍ଷାକର୍ତ୍ତା ପ୍ରଭୁ ସ୍ୱୟଂ ଚତୁର୍ଭୁଜରୂପରେ ଦର୍ଶନ ଦେଇ ଦେବଗଣଙ୍କୁ ବୃତ୍ରକୁ ମାରିବାର ଉପାୟ କହିଦେଲେ । ତାଙ୍କ କହିବା ଅନୁସାରେ ଦେବରାଜ ଇନ୍ଦ୍ର ଦଧୀଚି ଋଷିଙ୍କ ହାଡ଼ରେ ବଜ୍ର ତିଆରି କରାଇଲେ । କିନ୍ତୁ ଭକ୍ତକୁ ଭଗବାନ କଣ କେବଳ ବଜ୍ର ଦ୍ୱାରା ମାରିଦେବାକୁ ଚାହିଁବେ? ଭଗବାନ ଯାହାକୁ ସଦ୍‌ଗତି ଦିଅନ୍ତି ତାକୁ ନିଜେ ମାରିଥାନ୍ତି, ନଚେତ୍ ନିଜ ଶକ୍ତି ଦ୍ୱାରା ମାରିଥାନ୍ତି । ସେଥିପାଇଁ ବଜ୍ରକୁ ସେ ନିଜର ତେଜରେ ଶକ୍ତିସମ୍ପନ୍ନ କରିଦେଲେ । ଏଣେ ଭଗବାନଙ୍କ ଶକ୍ତି ଓ ସହାୟତା ପାଇ ଦେବଗଣ ଯୁଦ୍ଧ ପାଇଁ ଆହ୍ୱାନ ଦେଲେ । ଅସୁରଗଣଙ୍କୁ ସଙ୍ଗରେ ନେଇ ବୃତ୍ରାସୁର ଘୋର ସଂଗ୍ରାମ କଲା । ଦେବଗଣଙ୍କ ଭୀଷଣ ଆକ୍ରମଣରେ ପରାସ୍ତପ୍ରାୟ ହୋଇ ଅନ୍ୟ ଅସୁରଗଣ ପଳାୟନ କଲେ । ମହାବଳଶାଳୀ ବୃତ୍ର ଏକାକୀ ହୋଇଗଲା, ତଥାପି ସେ ଏତେ ଶକ୍ତିଶାଳୀ ଥିଲା ଯେ ସେ ଏକୁଟିଆ ହୋଇ ମଧ୍ୟ ଦେବଗଣଙ୍କୁ ମର୍ଦ୍ଦିବାକୁ ସମର୍ଥ ଥିଲା । ସେ ଯେତେବେଳେ ହାତରେ ଶୂଳଟିଏ ଧରି ରଣାଙ୍ଗନରେ ସିଂହ ପରି ଗର୍ଜନ କରୁଥିଲା, ଦେବଗଣ ମୂର୍ଚ୍ଛିତ ହୋଇଯାଉଥିଲେ । ସେହି ପର୍ବତାକାର ବିଶାଳକାୟ ଅସୁର, ମଦୋନ୍ମତ୍ତ ଗଜରାଜ ନଳଘାସ ବଣକୁ ଦଳି ଚକଟି ନଷ୍ଟ କରିଦେବା ପରି ଦେବଗଣଙ୍କୁ ପାଦରେ ମର୍ଦ୍ଦନ କରିବାକୁ ଲାଗିଲା ।

ସେ ଚାଲିଲା ବେଳେ ପୃଥିବୀ କମ୍ପମାନ ହେଉଥାଏ । ଦେବରାଜ ଏହା ଦେଖି ସହିପାରିଲେ ନାହିଁ । ସେ ତାହା ଉପରକୁ ଏକ ବିଶାଳ ଗଦା ଫୋପାଡ଼ିଲେ । କିନ୍ତୁ ବୃତ୍ରାସୁର ସେହି ଗଦାକୁ ଧରିପକାଇ ସେହିଥିରେ ଇନ୍ଦ୍ରଙ୍କର ଐରାବତକୁ ପିଟି ମୂର୍ଚ୍ଛିତ କରିଦେଲା । ଇନ୍ଦ୍ର ବଜ୍ର ଧରି ତାହାର ସମ୍ମୁଖକୁ ଆସିଗଲେ । ନିଜ ଭାଇର ହତ୍ୟାକାରୀକୁ ସମ୍ମୁଖରେ ଦେଖି ବୃତ୍ରାସୁର କହିଲା—"ରେ ଅଧମ! ମୋର ବଡ଼ ଭାଇ ନିଷ୍କାମ ବ୍ରାହ୍ମଣ ଥିଲେ, ତୋର ଗୁରୁ ଥିଲେ, ପୁଣି ଯଜ୍ଞରେ ଦୀକ୍ଷିତ ଥିଲେ;

କିନ୍ତୁ ତୁ ବିଶ୍ୱାସଘାତକତା କରି, ବଳିପଶୁକୁ ବଧ କରିବା ପରି ତାଙ୍କର ମସ୍ତକ କାଟି ନୃଶଂସଭାବେ ହତ୍ୟା କଲୁ। ଏଭଳି ନୀଚ କର୍ମ କରି ତୁ ଦୟା, ଲଜ୍ଜା, କୀର୍ତ୍ତି ସବୁକିଛି ହରାଇ ବସିଛୁ। ଆଜି ଏହି ତ୍ରିଶୂଳରେ ମୁଁ ତୋତେ ଖଣ୍ଡ ଖଣ୍ଡ କରି ମୋ ଭ୍ରାତୃହତ୍ୟାର ପ୍ରତିଶୋଧ ନେବି। ବୀର ଇନ୍ଦ୍ର! ସମ୍ଭବତଃ ତୁ ତୋ ବଜ୍ରରେ ମୋ ମୁଣ୍ଡ କାଟି ଦେଇପାରୁ। ତା' ହେଲେ ବି ମୋର କିଛି ଚିନ୍ତା ନାହିଁ। ମୁଁ ଏ ଶରୀରକୁ ପଶୁପକ୍ଷୀଙ୍କ ଆହାର ପାଇଁ ଅର୍ପଣ କରିଦେଇ କର୍ମବନ୍ଧନରୁ ମୁକ୍ତ ହୋଇ ମହାପୁରୁଷଙ୍କ ପଦରଜର ଆଶ୍ରୟ ପାଇଯିବି। ମୁଁ ଜାଣେ, ତୋର ଏ ବଜ୍ର ନିଷ୍ଫଳ ହେବ ନାହିଁ; କାରଣ ଭଗବାନ ବିଷ୍ଣୁ ଏଥିରେ ମୋତେ ମାରିବା ପାଇଁ ତୋତେ ଆଜ୍ଞା ଦେଇଛନ୍ତି। ତେଣୁ ତୁ ଏ ବଜ୍ରରେ ମୋତେ ମାରିଦେ। ଭଗବାନ ସଂକର୍ଷଣଙ୍କ ଆଜ୍ଞାନୁସାରେ ମୁଁ ତାଙ୍କ ପାଦପଦ୍ମରେ ମନୋନିବେଶ କରିଦେବି। ଏ ବଜ୍ର ମୋତେ ନୁହେଁ, ବରଂ ମୋର ବିଷୟଭୋଗରୂପୀ ବନ୍ଧନକୁ କାଟିଦେବ। ଭଗବାନ ତାଙ୍କ ଭକ୍ତଙ୍କୁ ସ୍ୱର୍ଗ, ପୃଥିବୀ ଓ ରସାତଳର ସମ୍ପତ୍ତି ଆଦି ଦିଅନ୍ତି ନାହିଁ। ସେ ଭକ୍ତର ଧର୍ମ, ଅର୍ଥ, କାମ ସମ୍ବନ୍ଧୀୟ ପ୍ରୟାସକୁ ବିଫଳ କରିଦିଅନ୍ତି; କାରଣ ଏସବୁ ତା'ର ରାଗଦ୍ୱେଷ, ଅଭିମାନ ଓ ମାନସିକ କଷ୍ଟ ବଢ଼ାଇବା ସହିତ ତାକୁ ପରମାର୍ଥରୁ ବିଚ୍ୟୁତ କରି ଦେଇଥାଏ।''

ଏହିପରି ବୃତ୍ରାସୁର ଯେତେ ସବୁ ପାରମାର୍ଥିକ କଥା କହିଲା, ତାହା ବଡ଼ ବଡ଼ ମହାତ୍ମାଙ୍କ ପକ୍ଷେ ମଧ୍ୟ ଦୁର୍ଗମ୍ୟ। କାହିଁକି ବା ନ କହିବ? ସେ ତ ସାଧାରଣ ଅସୁର ନ ଥିଲା। ସେ ଥିଲା ପୂର୍ବଜନ୍ମର ଜଣେ ସିଦ୍ଧ ଭକ୍ତ, ଯେ କି ପାର୍ବତୀଙ୍କ ଅଭିଶାପ ଫଳରେ ଅସୁର ଜନ୍ମ ପାଇଥିଲା। ସେ ସେହି ଯୁଦ୍ଧକ୍ଷେତ୍ରରେ ଯେପରି ଭକ୍ତିଭାବରେ ଭଗବାନଙ୍କୁ ପ୍ରାର୍ଥନା କରିଥିଲା, ତାହା ନିଷ୍କାମଭକ୍ତିର ବହୁ ଉଚ୍ଚକୋଟିର ଭକ୍ତଙ୍କ ଜୀବନ ଛଡ଼ା ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ। ସେ ପ୍ରାର୍ଥନା କରି କହିଲା—

''ହେ ହରି! ହେ ମୋର ପ୍ରାଣବଲ୍ଲଭ! ମୋତେ ଜନ୍ମ ଜନ୍ମାନ୍ତରରେ ତୁମ ଭକ୍ତଙ୍କର ସେବା କରିବାର ଅବସର ଦେଉଥାଅ। ମୋତେ ମୋର କର୍ମର ଫଳସ୍ୱରୂପ ଯେଉଁଠିକୁ ପଠାଇ ଦିଅ ପଛେ, ଯେଉଁଠି ଜନ୍ମ ଦିଅ ପଛେ, ତୁମ ପ୍ରିୟ ଭକ୍ତଙ୍କର ସାନ୍ନିଧ୍ୟ ମୋତେ ମିଳୁଥାଉ। ଦେହଗେହରେ ଆସକ୍ତ ମାୟାମୋହିତ ଲୋକଙ୍କ ସଙ୍ଗେ ମୋର କୌଣସି ପ୍ରକାର ସମ୍ବନ୍ଧ ନ ହେଉ। ପ୍ରଭୁ! ମୋର ମନ ତୁମର ମଙ୍ଗଳମୟ ଗୁଣାବଳୀ ସ୍ମରଣ କରୁ, ମୋର ମୁଖ ତାହାକୁ ଗାନ କରୁ

ଏବଂ ଶରୀର ତୁମ ସେବାରେ ସଂଲଗ୍ନ ରହୁ। ହେ ସର୍ବସୌଭାଗ୍ୟନିଧେ! ମୁଁ ତୁମ ଛଡ଼ା ଆଉ କିଛି ଚାହେଁନା। ମୋର ସ୍ୱର୍ଗ, ବ୍ରହ୍ମଲୋକ, ଭୂମଣ୍ଡଳର ସାମ୍ରାଜ୍ୟ, ରସାତଳର ଏକଚ୍ଛତ୍ର ରାଜ୍ୟ ଏବଂ ଯୋଗର ସିଦ୍ଧିରେ, ଏପରି କି ମୋକ୍ଷରେ ମଧ୍ୟ ପ୍ରୟୋଜନ ନାହିଁ। ହେ କମଳନୟନ! ପର କଅଁଳି ନ ଥିବା ପକ୍ଷୀଶାବକ ଯେପରି ବସାରେ ଚୁଁ ଚୁଁ ଶବ୍ଦ କରି ମାଆ ଆସିବା ବାଟକୁ ଚାହିଁ ବସିଥାନ୍ତି, କଅଁଳା ବାଛୁରି ଯେପରି ଗୋଠରେ ଥାଇ ଚରିବାକୁ ଯାଇଥିବା ମାଆକୁ ପ୍ରତୀକ୍ଷା କରି ଦୁଧ ପିଇବାକୁ ଆତୁର ହେଉଥାଏ ଏବଂ ବିଦେଶଗତ ସ୍ୱାମୀର ଆଗମନକୁ ପ୍ରତୀକ୍ଷା କରି ବିରହିଣୀ ସ୍ତ୍ରୀ ଯେପରି ମିଳନ ସୁଖ ପାଇଁ ଉତ୍କଣ୍ଠିତ ରହିଥାଏ, ମୋ ମନ ତୁମ ଦର୍ଶନ ପାଇବା ପାଇଁ ସେହିପରି ଆକୁଳ-ବ୍ୟାକୁଳ ହେଉଛି।''

ଆହା! ଦର୍ଶନଉତ୍କଣ୍ଠାର କେଡ଼େ ସୁନ୍ଦର ଉପମା! କେଡ଼େ ବ୍ୟାକୁଳତା!! ତମୋଗୁଣୀ ଅସୁରର ଭଗବାନଙ୍କ ଠାରେ ଏଭଳି ଭକ୍ତିକୁ ବିଚାର କରି ବଡ଼ ବଡ଼ ବୈରାଗୀ ସାଧନନିଷ୍ଠ ଭକ୍ତ ମଧ୍ୟ ନିଜକୁ ଲଜ୍ଜିତ ଅନୁଭବ କରନ୍ତି। ପ୍ରେମପ୍ରାପ୍ତିର ଅଭିଳାଷ କଥା ମୁହଁରେ କହିଦେବା ସହଜ; କିନ୍ତୁ ଏଭଳି ଅନନ୍ୟ ଲାଳସା, ଏଭଳି ବିଶୁଦ୍ଧ ନିଷ୍କାମତା ଜୀବନରେ ଆସିଛି କି ନାହିଁ, ତାହା ଦେଖିବାକୁ ଯଦି କେହି ସାଧକ ଅନ୍ତଃଚକ୍ଷୁ ଖୋଲି ହୃଦୟ ମନ୍ଦିରକୁ ଚାହିଁବ, ତେବେ ଦେଖିବ, ସେଠି ମୋକ୍ଷପଦର ଅନିଚ୍ଛା ତ ଦୂରର କଥା, ସାଂସାରିକ ମାନସମ୍ମାନର ଇଚ୍ଛା, ତୁଚ୍ଛ ଆରାମଦାୟକ ସୁଖସାମଗ୍ରୀର ଇଚ୍ଛା, ଲୋକପ୍ରତିଷ୍ଠାର ଇଚ୍ଛା, ଏପରିକି ଐଶ୍ୱରିକ କୃପାଦୃଷ୍ଟି ପରିବର୍ତ୍ତେ ପାପଧନ ଅର୍ଜନକାରୀ ଧନିକମାନଙ୍କ କୃପାଦୃଷ୍ଟିର ଇଚ୍ଛାରୂପୀ ଅଳିଆ-ଆବର୍ଜନା ଏତେ ପରିମାଣରେ ପୂରି ରହିଛି ଯେ, ଭଗବାନଙ୍କ ପାଇଁ ତିଳେମାତ୍ର ସ୍ଥାନ କେଉଁଠି ଖାଲି ନାହିଁ। ଏ ପରିପ୍ରେକ୍ଷୀରେ ପରମ ପ୍ରେମପ୍ରାପ୍ତି ଯେ କେତେ ଉଚ୍ଚସ୍ତରର କଥା ତାହା ଅନୁମାନ କରିବା ମଧ୍ୟ ଅସମ୍ଭବ। ବରକୋଳିଟିଏ ପାଇଁ ଯେ ଲାଳାୟିତ, ସେ ମୋକ୍ଷରୂପୀ ଅମୃତକୁ ତ୍ୟାଗ କରିବା କଥା ବା କଣ କହିବ? ତଥାପି ଆମର ଭଗବାନ ପରମ ଦୟାଳୁ! ସେ କାମନା ବାସନାରୂପୀ ଅଳିଆ-ଆବର୍ଜନା ବା ପାପ ଆଦିକୁ ଦେଖନ୍ତି ନାହିଁ, କିନ୍ତୁ ଏତିକି ଆଶା ଅବଶ୍ୟ ରଖନ୍ତି ଯେ ଭକ୍ତ ଅନ୍ୟର ଆଶ୍ରୟ ନ ନେଇ କେବଳ ତାଙ୍କରି ଉପରେ ଭରସା ରଖୁ ଓ ତାଙ୍କୁ ହିଁ ଆଶ୍ରୟ କରୁ। ତାଙ୍କର ଅନନ୍ୟାଶ୍ରିତ ଭକ୍ତକୁ ସେ ଉପେକ୍ଷା କରି ପାରନ୍ତି ନାହିଁ।

ତାହା ହିଁ ତମୋଗୁଣୀ ଆସୁରୀ ତନୁଧାରୀ ବୃତ୍ରାସୁର ଜୀବନରେ ଘଟିଥିଲା।

ଇନ୍ଦ୍ରାଦି ଦେବଗଣ ସତ୍ତ୍ୱଗୁଣୀ ଓ ପୁଣ୍ୟକର୍ମା ହୋଇଥିଲେ ମଧ୍ୟ ସ୍ୱର୍ଗଭୋଗ ଆଶାରେ ସଂଗ୍ରାମ କରୁଥିବା ବେଳେ, ଭଗବଦ୍ଦର୍ଶନର ଅନନ୍ୟ ଅଭିଳାଷୀ ବୃତ୍ର ଭଗବାନଙ୍କ ବିଧାନକୁ ସାଦର ସ୍ୱୀକାର କରି ନିଜେ ଭଗବାନଙ୍କ ତେଜରେ ଯୁକ୍ତ ବଜ୍ରରେ ପ୍ରାଣ ଦେଇ ସମସ୍ତଙ୍କ ସମକ୍ଷରେ ଭଗବାନଙ୍କ ଧାମକୁ ଚାଲିଗଲା ।

ଭଗବାନଙ୍କର ତତ୍ତ୍ୱ ଓ ରହସ୍ୟକୁ ବୃତ୍ରାସୁର ଉତ୍ତମରୂପେ ବୁଝିପାରିଥିଲା । ସେ ଇନ୍ଦ୍ରଙ୍କୁ ଯୁଦ୍ଧ ପାଇଁ ବୀରୋଚିତ ଆହ୍ୱାନ ଦେଇ ସଂଗ୍ରାମରେ ବ୍ୟାପୃତ ରହିଥିବା ସମୟରେ ଅତି ସୁନ୍ଦର ଜ୍ଞାନ ଓ ଭକ୍ତିପୂର୍ଣ୍ଣ ତତ୍ତ୍ୱ ପ୍ରକାଶ କରିଥିଲା । ଇନ୍ଦ୍ରଙ୍କ ବଜ୍ରରେ ତାର ଗୋଟିଏ ହାତ କଟିଯିବା ପରେ ସେ ଅନ୍ୟ ହାତରେ ପରିଘ ପ୍ରହାର କରି ଇନ୍ଦ୍ରଙ୍କର ବଜ୍ରକୁ ତଳେ ପକାଇ ଦେଲା । ଇନ୍ଦ୍ର ଲଜ୍ଜିତ ହୋଇ ବଜ୍ର ଉଠାଇନେବାକୁ ସାହସ କଲେ ନାହିଁ । ବୃତ୍ରାସୁର କହିଲା—"ଦେବରାଜ! ମନରେ ଦୁଃଖ କର ନାହିଁ । ବଜ୍ର ଉଠାଇ ନେଇ ମୋତେ ମାରିଦିଅ । ଜୟ-ପରାଜୟ ସର୍ବଦା ଲାଗି ରହିଛି । ସବୁବେଳେ ବିଜୟୀ ହେବା କାହାରି ହାତର କଥା ନୁହେଁ । ସ୍ୱୟଂ କାଳରୂପୀ ପରମାତ୍ମା ଏହାର କାରଣ । ସେ ସମସ୍ତଙ୍କୁ କାଠକଣ୍ଢେଇ ପରି ନଚାଉଛନ୍ତି । ସମସ୍ତେ ତାଙ୍କରି ଅଧୀନ । ସେ ହିଁ ସୃଷ୍ଟିର କର୍ତ୍ତା, ଭର୍ତ୍ତା ଓ ସଂହର୍ତ୍ତା । ସମୟ ପ୍ରତିକୂଳ ହେଲେ ଯେପରି ମନୁଷ୍ୟର ମୃତ୍ୟୁ ଓ ଅପଯଶ ଆପେ ଆପେ ପ୍ରାପ୍ତ ହୁଏ, ଠିକ୍ ସେହିପରି ଅନୁକୂଳ ସମୟ ଆସିଲେ ଆୟୁ, ଲକ୍ଷ୍ମୀ, ଯଶ ଓ ଐଶ୍ୱର୍ଯ୍ୟ ଆପେ ଆପେ ପ୍ରାପ୍ତ ହୁଏ । ତେଣୁ ଯଶ-ଅପଯଶ, ଜୟ-ପରାଜୟ, ସୁଖ-ଦୁଃଖ, ଜୀବନ-ମରଣ ଇତ୍ୟାଦିକୁ ସମାନ ଦୃଷ୍ଟିରେ ଦେଖିବା ଉଚିତ । ସତ୍ତ୍ୱ, ରଜ ଓ ତମଗୁଣ ପ୍ରକୃତି ରାଜ୍ୟର ଅନ୍ତର୍ଗତ, ଏସବୁ ଆତ୍ମାର ଗୁଣ ନୁହେଁ । ଯେ ଆତ୍ମାକୁ ସାକ୍ଷୀରୂପେ ଦେଖେ, ସେ ଏହି ସବୁ ଗୁଣଦୋଷରେ ଲିପ୍ତ ହୁଏ ନାହିଁ । ତୁମେ ମୋର ଗୋଟିଏ ହାତ କାଟିଦେଇ ମୋତେ ଏକପ୍ରକାରେ ପରାସ୍ତ କରି ଦେଇଛ, ତଥାପି ମୁଁ ତୁମର ପ୍ରାଣ ହରିବାକୁ ଯଥାସାଧ୍ୟ ପ୍ରୟାସ କରୁଛି, ନା-ନାହିଁ? ଯୁଦ୍ଧ ତ ଜୁଆ ଖେଳ ପରି ।"

ବୃତ୍ରାସୁରର ଏହିପରି ଦାର୍ଶନିକ ସିଦ୍ଧାନ୍ତପୂର୍ଣ୍ଣ ବୀରୋଚିତ ବାଣୀ ଶୁଣି ଇନ୍ଦ୍ର ଚକିତ ହୋଇଗଲେ । ସେ ତାର ଧୈର୍ଯ୍ୟ, ମାନସିକ ଅବଧାରଣା ଓ ଭଗବଦ୍‌ଭାବକୁ ପ୍ରଶଂସା ନ କରି ରହି ପାରିଲେ ନାହିଁ । ପୁଣି ଯୁଦ୍ଧ ହେଲା । ଶେଷରେ ଇନ୍ଦ୍ର ତାର ଦ୍ୱିତୀୟ ହାତକୁ ମଧ୍ୟ କାଟିଦେଲେ । ଶେଷରେ ସେ ତାର ମୁଖ ବ୍ୟାଦାନ କରି ଐରାବତ ସମେତ ଇନ୍ଦ୍ରଙ୍କୁ ଗିଳିପକାଇଲା । ଇନ୍ଦ୍ର ବିଶ୍ୱରୂପଙ୍କ ଠାରୁ ପ୍ରାପ୍ତ ବୈଷ୍ଣବୀ

ବିଦ୍ୟା ନାରାୟଣ କବଚ ଦ୍ୱାରା ସୁରକ୍ଷିତ ଥିବାରୁ ତାର ଉଦରରେ ମଲେ ନାହିଁ। ସେ ତାର ଉଦର ଚିରି ବାହାରକୁ ବାହାରି ଆସିଲେ ଏବଂ ବଜ୍ରରେ ତାର ମସ୍ତକ କାଟିଦେଲେ। ସମସ୍ତେ ଚାହୁଁ ଚାହୁଁ ତାହାର ମୃତ ଦେହରୁ ଏକ ଦିବ୍ୟ ଜ୍ୟୋତି ବାହାରି ପରମ ଧାମକୁ ଚାଲିଗଲା।

ଏଠାରେ ସନ୍ଦେହ ଉତ୍ପନ୍ନ ହୁଏ ଯେ ଶୁଦ୍ଧ ସତ୍ତ୍ୱଗୁଣୀ ଦେବତା ଓ ଋଷିମାନେ ମଧ୍ୟ ଭଗବାନଙ୍କ ଠାରେ ପରମପ୍ରେମମୟୀ ଭକ୍ତି କରି ପାରନ୍ତି ନାହିଁ। ପୁଣି ବୃତ୍ରାସୁର, ଯେ କି ଆସୁରୀ ପ୍ରବୃତ୍ତିର ଥିଲା ଓ ଦେବଗଣଙ୍କୁ କଷ୍ଟ ଦେଇ ପାପ କରୁଥିଲା, ତାର ଭଗବାନ ନାରାୟଣଙ୍କ ଚରଣରେ ଏତେ ସୁଦୃଢ଼ ଭକ୍ତି କିପରି ହେଲା? ପ୍ରକୃତରେ ଦେଖିବାକୁ ଗଲେ ବୃତ୍ରାସୁରର ଏହି ଅଦ୍ଭୁତ ଭଗବଦ୍‌ଭକ୍ତିରେ ତାର ଇହଜନ୍ମର ସାଧନାର କିଛି ସମ୍ପର୍କ ନାହିଁ। ଏହା ତାର ପୂର୍ବଜନ୍ମର ଭକ୍ତିଭାବର ଫଳ। ତେଣୁ ତାର ଚରିତକୁ ଭଲଭାବେ ବୁଝିବାକୁ ହେଲେ ତାର ପୂର୍ବଜନ୍ମର ଚରିତକୁ ଅଧ୍ୟୟନ କରିବା ନିତାନ୍ତ ଆବଶ୍ୟକ।

ପୂର୍ବଜନ୍ମରେ ବୃତ୍ରାସୁର ଶୂରସେନ ଦେଶର ସର୍ବଗୁଣସମ୍ପନ୍ନ ଓ ସମୃଦ୍ଧ ରାଜା ଥିଲା। ତାହାର ନାମ ଥିଲା ଚିତ୍ରକେତୁ। ଚିତ୍ରକେତୁ ଭକ୍ତିପରାୟଣ ରାଜା ଥିଲେ। ତାଙ୍କର କୋଟିଏ ରାଣୀ ଥିଲେ; ହେଲେ କାହାରିଠାରୁ ଗୋଟିଏ ବି ସନ୍ତାନ ହେଲା ନାହିଁ। ଥରେ ମହର୍ଷି ଅଙ୍ଗିରା ତାଙ୍କୁ ଜ୍ଞାନୋପଦେଶ ଦେବାକୁ ଆସି ଦେଖିଲେ ଯେ ରାଜା ଅପୁତ୍ରିକ ହେବା ଦୁଃଖରେ ଅତ୍ୟନ୍ତ ଦୁଃଖୀ। ସେ ତାଙ୍କୁ ବୁଝାଇ କହିଲେ, ରାଜନ୍! ପ୍ରାରବ୍ଧରେ ଯଦି ଦୁଃଖ ଭୋଗ ଲେଖାଥାଏ, ସୁଖ ପାଇଁ ଯେତେ ପ୍ରୟାସ କଲେ ମଧ୍ୟ ତାହା ଦୁଃଖରେ ପରିଣତ ହୋଇଯାଏ। ତେଣୁ ପୁତ୍ର ଆଶା ପରିତ୍ୟାଗ କର। ମାତ୍ର ଛିଦ୍ର ପାତ୍ରରେ ଜଳ ରହି ନ ପାରିବା ପରି ତାଙ୍କ ଉପରେ ଜ୍ଞାନ ଉପଦେଶର କୌଣସି ପ୍ରଭାବ ପଡ଼ିଲା ନାହିଁ। ତେଣୁ ସେ ରାଜାଙ୍କ ଅନୁରୋଧରେ ବାଧ୍ୟ ହୋଇ ତାଙ୍କ ପାଇଁ ଯଜ୍ଞ କଲେ ଏବଂ ତାଙ୍କର ସବୁଠାରୁ ବଡ଼ ରାଣୀ କୃତଦ୍ୟୁତିଙ୍କୁ ଯଜ୍ଞ ଚରୁ ଦେଇ ଚିତ୍ରକେତୁଙ୍କୁ କହିଲେ—"ରାଜନ୍! ତୁମର ଏ ଯେଉଁ ପୁତ୍ର ହେବ, ସେ ତୁମକୁ ହର୍ଷ ସହିତ ଶୋକ ମଧ୍ୟ ଦେବ।"

ସମୟକ୍ରମେ ପୁତ୍ର ଉତ୍ପନ୍ନ ହେଲା, କିନ୍ତୁ ଅନ୍ୟ ରାଣୀମାନେ ପୁତ୍ରବତୀ ସଉତୁଣୀର ସୁଖ ଦେଖି ନ ପାରି ଶିଶୁଟିକୁ ବିଷ ଦେଇ ମାରିଦେଲେ। ରାଜା ସର୍ବସ୍ୱ ହରାଇବା ପରି ପୁତ୍ରଶୋକରେ ଅତିଶୟ ବ୍ୟାକୁଳ ହୋଇଗଲେ। ଦୟାଳୁ ମହର୍ଷି ଅଙ୍ଗିରା ଓ ନାରଦ ଆସି ତାଙ୍କୁ ହର୍ଷଶୋକରୁ ମୁକ୍ତ କରିବା ପାଇଁ ସାନ୍ତ୍ୱନା

ଓ ଦିବ୍ୟଜ୍ଞାନ ଦେଲେ। ପୁନଶ୍ଚ ତାଙ୍କୁ ଭଗବାନ ସଙ୍କର୍ଷଣ ବା ଶେଷଦେବଙ୍କ ଉପାସନା କରିବାର ଦିବ୍ୟ ମନ୍ତ୍ର ପ୍ରଦାନ କଲେ। ସାତଦିନ ସାତରାତି ସେହି ମନ୍ତ୍ର ଜପ କରି ଉପାସନା କରିବାଦ୍ୱାରା ତାଙ୍କୁ ବିଦ୍ୟାଧରଙ୍କ ଅଧିପତି ପଦ ମିଳିଗଲା ଏବଂ ଅଳ୍ପ କିଛି ଦିନ ମଧ୍ୟରେ ଅନ୍ତଃକରଣ ନିର୍ମଳ ହୋଇଯିବାରୁ ସଙ୍କର୍ଷଣ ଭଗବାନଙ୍କ ଦର୍ଶନ ମଧ୍ୟ ମିଳିଲା। ସଙ୍କର୍ଷଣଙ୍କ କୃପାରୁ ବିଦ୍ୟାଧର ଚିତ୍ରକେତୁଙ୍କୁ ଜ୍ଞାନ-ବିଜ୍ଞାନମୟ ଉପଦେଶ ପ୍ରାପ୍ତ ହେଲା ଏବଂ ଏକ ଦିବ୍ୟ ବିମାନ ମଧ୍ୟ ପ୍ରାପ୍ତ ହେଲା। ସେହିଥିରେ ବିରାଜମାନ ହୋଇ ଚିତ୍ରକେତୁ ସ୍ୱଚ୍ଛନ୍ଦରେ ଅନେକ ବର୍ଷପର୍ଯ୍ୟନ୍ତ ଅକ୍ଷୟ ବଳ ଓ ଇନ୍ଦ୍ରିୟଶକ୍ତିରେ ଯୁକ୍ତ ହୋଇ ସୁମେରୁ ପର୍ବତର ଘାଟିମାନଙ୍କରେ ବିହାର କଲେ। ବଡ଼ ବଡ଼ ଋଷି, ମୁନି, ସିଦ୍ଧ, ଚାରଣ ପ୍ରଭୃତି ତାଙ୍କୁ ସ୍ତୁତି କରୁଥିଲେ। ବିଦ୍ୟାଧରଙ୍କ ସ୍ତ୍ରୀମାନେ ଭଗବାନଙ୍କର ଲୀଳା ଓ ଗୁଣଗାନ କରୁଥିଲେ।

ଭୋଗ ଓ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ତଥା ଉଚ୍ଚପଦ ବେଳେ ବେଳେ ବ୍ୟକ୍ତିର ବୁଦ୍ଧିକୁ ଭ୍ରମିତ କରିଦିଏ। ଏହିପରି ବିଚରଣ କରୁ କରୁ ଚିତ୍ରକେତୁ ଥରେ ଦେଖିଲେ ବଡ଼ ବଡ଼ ଋଷି, ମୁନି ଓ ସିଦ୍ଧଗଣଙ୍କ ସଭାରେ ଭଗବାନ ଶିବ ବସିଛନ୍ତି। ତାଙ୍କ ବାମାଙ୍କରେ ମାତା ପାର୍ବତୀ ବସିଛନ୍ତି। ଭଗବାନ ସଦାଶିବ ମାତା ପାର୍ବତୀଙ୍କ କାନ୍ଧରେ ହାତ ପକାଇଛନ୍ତି। ଏହା ଦେଖି ହଠାତ୍ ଚିତ୍ରକେତୁଙ୍କ ମନରେ କେଉଁ ପୂର୍ବସଂସ୍କାର ଜାଗ୍ରତ ହୋଇଗଲା କେଜାଣି, ସେ ତ୍ରିଗୁଣାତୀତ, ମାୟାତୀତ ମହେଶ୍ୱର ଶିବଙ୍କୁ ଦେଖି ଉଚ୍ଚସ୍ୱରରେ ହସିଦେଲେ ଏବଂ ପାର୍ବତୀଙ୍କୁ ଶୁଣାଇଲା ଭଳି ଶିବଙ୍କ ବିଷୟରେ କିଛି ନିନ୍ଦନୀୟ ମନ୍ତବ୍ୟ ଦେଇ କହିଲେ—"ଆରେ ଦେଖ ତ? ଏ କୁଆଡ଼େ ଜଗତର ଧର୍ମୋପଦେଷ୍ଟା ଓ ଗୁରୁ! ଏତେ ବଡ଼ ବଡ଼ ଜଟାଧାରୀ, ତପସ୍ୱୀ ଓ ବ୍ରହ୍ମବାଦୀମାନଙ୍କ ଗହଣରେ ଏ ନିର୍ଲଜ୍ଜ ପୁରୁଷ ପରି ସ୍ତ୍ରୀକୁ କୋଳରେ ବସାଇଛନ୍ତି, ପୁଣି ତାକୁ ଗୋଟିଏ ହାତରେ ଆଲିଙ୍ଗନ କଲା ଭଳି ବସିଛନ୍ତି। ସାଧାରଣ ଲୋକେ ମଧ୍ୟ ଏକାନ୍ତ ସ୍ଥାନରେ ସ୍ତ୍ରୀ ସହିତ ବସାଉଠା ମିଳାମିଶା କରନ୍ତି। କିନ୍ତୁ ଏତେ ବଡ଼ ବ୍ରତଧାରୀ ହୋଇ ସୁଦ୍ଧା ସଭା ମଧ୍ୟରେ ଏପରି ଆଚରଣ କରିବାକୁ ଯାଙ୍କୁ ଲଜ୍ଜା ଲାଗୁ ନାହିଁ!"

ଭଗବାନ ସଦାଶିବଙ୍କ ବୁଦ୍ଧି ଅଗାଧ। ସେ ଚିତ୍ରକେତୁଙ୍କର ଏପରି କଟାକ୍ଷ ଶୁଣି ତାହାକୁ ମନକୁ ଆଣିଲେ ନାହିଁ। ସାମାନ୍ୟ ସ୍ମିତହାସ କରି ସେ ଚୁପ୍ ରହିଗଲେ। ସଭାରେ ଉପସ୍ଥିତ ସମସ୍ତ ସଦସ୍ୟ ମଧ୍ୟ ନୀରବ ରହିଲେ। କିନ୍ତୁ

ଚିତ୍ରକେତୁ ଶିବଙ୍କର ପ୍ରଭାବକୁ ବୁଝି ପାରି ନ ଥିଲେ। ତେଣୁ ସେ ଏହିପରି କଟୂକ୍ତି ନିର୍ବିଘ୍ନରେ କହିଗଲେ। ଶିବ ଯେ ପାର୍ବତୀଙ୍କ ଭକ୍ତିରେ ପ୍ରୀତ ହୋଇ ତାଙ୍କୁ ଅର୍ଦ୍ଧାଙ୍ଗରେ ମିଶାଇ ଦେଇଛନ୍ତି ଓ ସେ ଅର୍ଦ୍ଧନାରୀଶ୍ୱର ରୂପ ଅଟନ୍ତି, ଏ କଥା ପ୍ରତି ସେ ଧ୍ୟାନ ଦେଲେ ନାହିଁ। କାମଦେବଙ୍କୁ ଭସ୍ମ କରି ଦେଇଥିବା ଜିତେନ୍ଦ୍ରିୟ ଊର୍ଦ୍ଧ୍ୱରେତା ମହାଯୋଗୀ ଶିବଙ୍କ ବିଷୟରେ ସେ ପ୍ରାକୃତ କାମବାସନାର ଆରୋପ କରି ଏପରି କହିଦେଲେ। ତାଙ୍କର ଲୋକାତୀତ ପ୍ରୀତିକୁ ସେ ବୁଝି ପାରି ନ ଥିଲେ। ସେ ନିଜକୁ ଜିତେନ୍ଦ୍ରିୟ ବୋଲି ଭାବି ଗର୍ବୀ ହୋଇଯାଇଥିଲେ।

ମାତା ପାର୍ବତୀ କିନ୍ତୁ ଏହା ସହିପାରିଲେ ନାହିଁ। ସେ ଚିତ୍ରକେତୁଙ୍କର ଏହି ଧୃଷ୍ଟତା ଦେଖି କ୍ରୋଧାନ୍ୱିତ ହୋଇ କହିଲେ—"ଆମ ଭଳି ଦୁଷ୍ଟ ଓ ନିର୍ଲଜ୍ଜଙ୍କୁ ଶାସନ ଓ ଅପମାନିତ କରିବାର ଅଧିକାର ଆଜିକାଲି ଏହାକୁ ମିଳିଯାଇଛି ନା କଣ? ଏ ସଭାରେ ବସିଥିବା ବ୍ରହ୍ମାଦି ଦେବତା, ଭୃଗୁ, ନାରଦ, ସନକାଦି ଋଷି, ମନୁ ପ୍ରଭୃତି ବଡ଼ ବଡ଼ ମହାପୁରୁଷଙ୍କୁ ଏ ଆଚରଣ ଖରାପ ଲାଗିଲା ନାହିଁ, କେବଳ ଏହାକୁ ଖରାପ ଲାଗିଲା? ସେମାନେ ତ କିଛି କହିଲେ ନାହିଁ! ଏ ଅଧମ କ୍ଷତ୍ରିୟଟା ବୋଧହୁଏ ସେମାନଙ୍କ ଠାରୁ ଅଧିକ ଧର୍ମର ରହସ୍ୟ ଓ ଧର୍ମମର୍ଯ୍ୟାଦା ଜାଣେ। ମଙ୍ଗଳକୁ ମଧ୍ୟ ମଙ୍ଗଳ କରୁଥିବା ସାକ୍ଷାତ୍ ଜଗଦ୍‌ଗୁରୁ ମହାଦେବଙ୍କୁ ଓ ଏହି ସଭାସଦ୍‌ମାନଙ୍କୁ ତିରସ୍କାର କରି ଏ ଅଧମ ଦଣ୍ଡର ପାତ୍ର ହୋଇଯାଇଛି। ଏ ଭଗବାନ ଶ୍ରୀହରିଙ୍କ ଚରଣକମଳରେ ଆଶ୍ରୟ ପାଇବାର ଯୋଗ୍ୟ ନୁହେଁ।" ପାର୍ବତୀ ପୁଣି ଚିତ୍ରକେତୁକୁ ସମ୍ବୋଧନ କରି କହିଲେ—"ରେ ମୂର୍ଖ! ତୁ ପାପମୟ ଅସୁର ଯୋନି ପ୍ରାପ୍ତ ହୁଅ। ଏହି ଦଣ୍ଡ ପାଇଲେ ତୁ ଆଉ କେବେ ହେଲେ କୌଣସି ମହାପୁରୁଷଙ୍କ ପ୍ରତି ଏପରି ଅପରାଧ କରିବୁ ନାହିଁ।"

ମାତା ପାର୍ବତୀ ଏପରି ଅଭିଶାପ ଦେବା ପରେ ଚିତ୍ରକେତୁଙ୍କୁ ନିଜ ଅପରାଧ କଥା ଅନୁଭବ ହେଲା। ତାଙ୍କର ନେତ୍ର ସମ୍ମୁଖରୁ ଅଜ୍ଞାନର ପରଦା ହଟିଗଲା। ସେ ବିମାନରୁ ଓହ୍ଲାଇ ପଡ଼ି ନତମସ୍ତକ ହୋଇ ପାର୍ବତୀଙ୍କୁ ପ୍ରସନ୍ନ କରିବାକୁ ଚେଷ୍ଟା କଲେ ଏବଂ ତାଙ୍କର ଅଭିଶାପକୁ ଭାବୀ କର୍ମଫଳଭୋଗର ସୂଚନାମାତ୍ର ମନେକରି ତାହାକୁ ସାଦରେ ସ୍ୱୀକାର କଲେ। ସେ କହିଲେ—"ମାତା! ଏ ଜୀବ ଅଜ୍ଞାନରେ ମୋହିତ ହୋଇଯାଇଛି। ସେଥିପାଇଁ ଜନ୍ମମୃତ୍ୟୁର ଆବର୍ତ୍ତରେ ଘୂରି ସୁଖଦୁଃଖ ଭୋଗ କରୁଛି। ପ୍ରକୃତରେ ସୁଖ ବା ଦୁଃଖ କେହି ଦିଏ ନାହିଁ। ଅଜ୍ଞାନୀ ଲୋକେ ହିଁ ନିଜ ବୁଦ୍ଧି ଅନୁସାରେ ଅନ୍ୟକୁ ନିଜ ସୁଖଦୁଃଖର କାରଣ ମନେକରି ଦାୟୀ

କରନ୍ତି । ଏ ସଂସାର ସତ୍ତ୍ୱ, ରଜ ଓ ତମ ଗୁଣର ପ୍ରବାହ । ଏ ପରିପ୍ରେକ୍ଷୀରେ ଶାପ କ'ଣ ଓ ଅନୁଗ୍ରହ କ'ଣ? ସ୍ୱର୍ଗ କ'ଣ ଓ ନରକ କ'ଣ? ସୁଖ କ'ଣ ଓ ଦୁଃଖ କ'ଣ? ଏକମାତ୍ର ଭଗବାନ ହିଁ ତାଙ୍କରି ଆତ୍ମସ୍ୱରୂପିଣୀ ମାୟାଦ୍ୱାରା ଏହି ସୁଖ-ଦୁଃଖ ଓ ବନ୍ଧନ-ମୋକ୍ଷ ଆଦି ଦ୍ୱନ୍ଦ୍ୱ କର୍ମଫଳ ଭୋଗାଇବା ପାଇଁ ସୃଷ୍ଟି କରିଛନ୍ତି । ସେ ନିଜେ କିନ୍ତୁ ସମ ଓ ନିର୍ଲିପ୍ତ । ତେଣୁ ମୋତେ ତାଙ୍କରି ବିଧାନ ଅନୁସାରେ ଯେଉଁଠିକୁ ଯିବାକୁ ପଡ଼ିଲେ ମଧ୍ୟ ମୋର ଦୁଃଖ ନାହିଁ । ମୁଁ ଶାପରୁ ମୁକ୍ତ ହେବା ପାଇଁ ଆପଣଙ୍କୁ ଏହି ବିନତି କରୁ ନାହିଁ, ମୋ ଅନୁଚିତ ମନ୍ତବ୍ୟରେ ଆପଣଙ୍କୁ ଯେଉଁ କଷ୍ଟ ହେଲା, ସେଥିପାଇଁ ମୁଁ କ୍ଷମା ମାଗୁଛି ।''

ଚିତ୍ରକେତୁ ପ୍ରକୃତରେ ଭଗବାନଙ୍କର ଭକ୍ତ ଥିଲେ, ତେଣୁ ସେ ସ୍ୱର୍ଗ-ନରକ, ଶାପ-ଅନୁଗ୍ରହ, ସୁଖ-ଦୁଃଖ ଆଦିକୁ ସମାନ ମନେକରି ସେଠାରୁ ବିଦାୟ ନେଲେ । ଭଗବାନ ସମସ୍ତଙ୍କର ପ୍ରିୟତମ । ତାଙ୍କର କେହି ଆପଣା-ପର ନାହାନ୍ତି । ଠିକ୍ ସେହିପରି ତାଙ୍କର ଅନୁଗାମୀ ଭକ୍ତଙ୍କର ମଧ୍ୟ ସବୁଥିରେ ସମଭାବ ରହିଥାଏ । ତେଣୁ ଚିତ୍ରକେତୁ ପାର୍ବତୀଙ୍କ ଅଭିଶାପ ହେତୁ ଅସୁରଯୋନି ପାଇଥିଲେହେଁ ପୂର୍ବଜନ୍ମର ଭକ୍ତିପ୍ରଭାବ ତାଙ୍କର ନଷ୍ଟ ହୋଇ ନ ଥିଲା । ସେହି ଭକ୍ତିର ପ୍ରଭାବରୁ ସେ ବୃତ୍ରାସୁରରୂପେ ଜନ୍ମ ହୋଇ ସୁଦ୍ଧା ଯୁଦ୍ଧକ୍ଷେତ୍ରରେ ଭଗବାନଙ୍କୁ ସ୍ମରଣ କରି ନିଷ୍କାମ ଭକ୍ତିର ଅଦ୍ଭୁତ ପରାକାଷ୍ଠା ଦେଖାଇବା ସହିତ ସମସ୍ତ କର୍ମବନ୍ଧନରୁ ମୁକ୍ତ ହୋଇଗଲେ ।

# ଭକ୍ତିମତୀ କୁନ୍ତୀ

**ବିପଦଃ ସନ୍ତୁ ନଃ ଶଶ୍ୱତ୍ ତତ୍ର ତତ୍ର ଜଗଦ୍‌ଗୁରୋ ।**
**ଭବତୋ ଦର୍ଶନଂ ଯତ୍ ସ୍ୟାଦପୁନର୍ଭବଦର୍ଶନମ୍ ॥**

''ହେ ଜଗଦ୍‌ଗୁରୁ ଶ୍ରୀକୃଷ୍ଣ! ଆମ ଜୀବନରେ ପ୍ରତି ପଦକ୍ଷେପରେ ବିପତ୍ତି ଉପରେ ବିପତ୍ତି ଆସୁଥାଉ, ଯାହା ଫଳରେ ଆମେ ସେହି ବିପତ୍ତିରେ ତୁମକୁ ସ୍ମରଣ କରିବୁ ଏବଂ ତୁମର ଜନ୍ମମୃତ୍ୟୁ ନିବାରଣକାରୀ ସ୍ୱରୂପର ଦର୍ଶନ ଆମକୁ ବାରମ୍ବାର ମିଳୁଥିବ ।''

ଜଗତରେ ଏମିତି କିଏ ଅଛି, ଯିଏ ବିପଦକୁ ନିଜ ଉପରକୁ ଆମନ୍ତ୍ରିତ କରିବାକୁ ଚାହିଁବ? କିନ୍ତୁ କୁନ୍ତୀ ଥିଲେ ଏହିପରି ଜଣେ ଅସାଧାରଣ ଭକ୍ତିମତୀ

ନାରୀ, ଯିଏ କି ଭଗବାନଙ୍କୁ ବରରୂପେ ବିପଦ ମାଗିଥିଲେ। ତାଙ୍କର ଏହି ଅଲୌକିକ ଭଗବନ୍ନିଷ୍ଠା, ଐକାନ୍ତିକ ଭଗବତ୍ ଆଶ୍ରୟ ଓ ଅତୁଟ ଭଗବତ୍ ବିଶ୍ୱାସ ଭକ୍ତିମାର୍ଗୀ ପାଇଁ ପରମ ଆଦର୍ଶ। ସେ ତାଙ୍କ ଜୀବନରେ ଅନେକ ଦୁଃଖକଷ୍ଟର ଝଡ଼ଝଞ୍ଜା ସହି ଧର୍ମପଥରେ ଚାଲିବାର ଯେଉଁ ଅଦମ୍ୟ ସାହସ ପ୍ରଦର୍ଶନ କରିଯାଇଛନ୍ତି, ତାହା ତାଙ୍କୁ ଚିରଦିନ ପାଇଁ ଅବିସ୍ମରଣୀୟା କରି ରଖିଛି।

କୁନ୍ତୀ ଦେବୀ ଥିଲେ ଧର୍ମପ୍ରାଣ ପାଣ୍ଡବମାନଙ୍କର ମାଆ, ଭଗବାନ ଶ୍ରୀକୃଷ୍ଣଙ୍କର ପିଉସୀ ତଥା ବସୁଦେବଙ୍କର ନିଜ ଭଉଣୀ। ଜନ୍ମ ବେଳୁ ତାଙ୍କ ନାମ ଥିଲା ପୃଥା; ମାତ୍ର ରାଜା କୁନ୍ତିଭୋଜ ତାଙ୍କୁ କନ୍ୟାରୂପେ ଗ୍ରହଣ କରି ତାଙ୍କର ଲାଳନପାଳନ କରିଥିବାରୁ ସେ 'କୁନ୍ତୀ' ନାମରେ ବିଖ୍ୟାତ ହେଲେ। ବାଲ୍ୟାବସ୍ଥାରୁ ସେ ଖୁବ୍ ସୁଶୀଳା, ସଦାଚାରିଣୀ, ସଂଯମଶୀଳା ଏବଂ ଭକ୍ତିମତୀ ଥିଲେ। ତାଙ୍କର ସେବା କାର୍ଯ୍ୟରେ ଖୁବ୍ ରୁଚି ଥିଲା। ସେ ଜଣେ ତେଜସ୍ୱୀ ଅତିଥିଙ୍କୁ ସେବାରେ ସନ୍ତୁଷ୍ଟ କରି ଏଭଳି ବରଦାନ ପାଇଥିଲେ, ଯାହାକି ତାଙ୍କର ଆଗାମୀ ବୈବାହିକ ଜୀବନ ପାଇଁ ଏକ ବିଶେଷ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ ସୃଷ୍ଟି କରିଥିଲା ଏବଂ ଧର୍ମର ବିଜୟ ଓ ଅଧର୍ମର ପରାଜୟ ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରି ଭଗବାନଙ୍କ ଅବତାର ଲୀଳାର ପୁଷ୍ଟି ସାଧନ କରି ପାରିଥିଲା।

ମଣିଷ ଜୀବନରେ କୌଣସି ଉତ୍ତମ କର୍ମ ବୃଥା ଯାଏ ନାହିଁ। ସେଇ କର୍ମର ତାତ୍କାଳିକ ଫଳ ଦୃଷ୍ଟିଗୋଚର ନ ହେଲେ ମଧ୍ୟ ଭବିଷ୍ୟତରେ ତାହା ଜୀବନରେ କୌଣସି ନା କୌଣସି ମାର୍ଗ ପ୍ରଶସ୍ତ କରିଦିଏ, ଯାହାକି କେବେ କେବେ ଅତ୍ୟନ୍ତ ବିଷମ ସଙ୍କଟପୂର୍ଣ୍ଣ ପରିସ୍ଥିତିରେ କାମରେ ଲାଗେ। ତାହା ହିଁ ଘଟିଥିଲା କୁନ୍ତୀଙ୍କ ଜୀବନରେ।

ଥରେ ରାଜା କୁନ୍ତିଭୋଜଙ୍କ ପୁରକୁ ଜଣେ ତପୋନିଷ୍ଠ ବ୍ରାହ୍ମଣ ଅତିଥିରୂପେ ଆସିଥିଲେ। ତାଙ୍କର ସେବାକାର୍ଯ୍ୟର ଦାୟିତ୍ୱ ବାଳିକା କୁନ୍ତୀଙ୍କୁ ଦିଆଗଲା। କୁନ୍ତୀଙ୍କର ବସ୍ତୁତଃ ସେବା କାର୍ଯ୍ୟରେ ବହୁତ ଅଭିରୁଚି ଥିଲା; ତା'ଛଡ଼ା ବ୍ରାହ୍ମଣଙ୍କ ପ୍ରତି ଭକ୍ତି ମଧ୍ୟ ଥିଲା। ରାଜକୁମାରୀ ପୃଥା ଆଳସ୍ୟ ଏବଂ ଅଭିମାନ ଛାଡ଼ି ସେହି ଅତିଥି ବ୍ରାହ୍ମଣଙ୍କ ସେବାରେ ମନପ୍ରାଣ ଅର୍ପଣ କରିଦେଲେ। ସେ ମନୋଯୋଗପୂର୍ବକ ପବିତ୍ର ଭାବରେ ସେବା କରି ତାଙ୍କୁ ଅତ୍ୟନ୍ତ ପ୍ରସନ୍ନ କରିଦେଲେ। ସେହି ଅତିଥିଙ୍କ ବ୍ୟବହାର ଟିକେ ଅନିୟମିତ ଥିଲା। କେତେବେଳେ ଠିକ୍ ସମୟରେ ଆସୁଥିଲେ ତ କେତେବେଳେ ଆସୁ ନ ଥିଲେ; କେତେବେଳେ ଏଭଳି ଦ୍ରବ୍ୟ ଖାଇବାକୁ

ମାଗୁଥିଲେ ଯାହା ମିଳିବା ବହୁତ ଦୁର୍ଲଭ ହେଉଥିଲା । କିନ୍ତୁ କୁନ୍ତୀ ତାଙ୍କର ସମସ୍ତ ସେବାକାର୍ଯ୍ୟ ଏତେ ସୁଗ୍ରୁରୂପେ ତୁଲାଉଥିଲେ ଯେ ଜଣାପଡୁଥିଲା ସତେ ଯେପରି ସେ ତାଙ୍କ ପାଇଁ ଆଗରୁ ପ୍ରସ୍ତୁତ କରି ରଖିଥିଲେ । କୁନ୍ତୀଙ୍କର ସୁଶୀଳ ସ୍ୱଭାବ ଓ ସଂଯମ ଦେଖି ତପୋନିଷ୍ଠ ବ୍ରାହ୍ମଣ ମନ ମଧ୍ୟରେ ପରମ ସନ୍ତୋଷ ଲାଭ କଲେ ।

ଅତ୍ୟନ୍ତ ତତ୍ପରତା ଓ ମନୋଯୋଗପୂର୍ବକ ମହାତ୍ମା ବ୍ରାହ୍ମଣଙ୍କ ସେବା କରୁ କରୁ ବର୍ଷେ ବିତିଗଲା । ତାଙ୍କ ସେବାରେ ବ୍ରାହ୍ମଣ କୌଣସି ପ୍ରକାର ତ୍ରୁଟି ଦେଖିବାକୁ ପାଇଲେ ନାହିଁ । ସେ ଅତ୍ୟନ୍ତ ପ୍ରସନ୍ନ ହୋଇ ଥରେ ତାଙ୍କୁ କହିଲେ—"ମାଆରେ! ମୁଁ ତୋର ସେବାରେ ଅତ୍ୟନ୍ତ ପ୍ରସନ୍ନ । ତେଣୁ ମୋତେ କିଛି ବର ମାଗ!" କୁନ୍ତୀ ଖୁବ୍ ସୁନ୍ଦର ଉତ୍ତର ଦେଲେ । ବାସ୍ତବରେ ତାହା ଥିଲା ଶ୍ରୀକୃଷ୍ଣଙ୍କ ପିଉସୀ ଓ ପାଣ୍ଡବଙ୍କର ଭାବୀ ମାଆଙ୍କ ପକ୍ଷେ ଯଥୋଚିତ ଉତ୍ତର । ସେ କହିଲେ—"ଋଷିବର! ଆପଣ ଓ ମୋ ପିତା ଯଦି ମୋ ଉପରେ ଏତେ ପ୍ରସନ୍ନ, ତେବେ ଜାଣନ୍ତୁ ମୋର ସବୁ କାର୍ଯ୍ୟ ସଫଳ ହୋଇଗଲା; ତେଣୁ ମୋର ବର କଣ ପ୍ରୟୋଜନ?"

ଗୋଟିଏ ଛୋଟ ବାଳିକା ଅନ୍ତରରେ ଏତେ ଅଦ୍ଭୁତ ସେବାଭାବ ସହିତ ଏପରି ନିଷ୍କାମ ଭାବନା ପ୍ରକୃତରେ ମଣି ଓ କାଞ୍ଚନର ସଂଯୋଗ ପରି ଥିଲା । ଆମ ଦେଶର ବାଳିକାମାନେ କୁନ୍ତୀଙ୍କ ଠାରୁ ଏହି ଆଦର୍ଶ ସେବାଭାବ ଶିଖିବା ଉଚିତ । ପ୍ରାଚୀନ କାଳରୁ ଅତିଥିସେବା ଆମ ସାମାଜିକ ଜୀବନର ପ୍ରାଣ ଭଳି ମର୍ଯ୍ୟାଦା ପାଇଛି । ଏହି କଥା ଭାରତବାସୀଙ୍କୁ ବାଲ୍ୟକାଳରୁ ମଧ୍ୟ ଶିକ୍ଷା ମିଳିଯାଉଥିଲା । ଯେଉଁ ସେବା ପ୍ରସନ୍ନତାପୂର୍ବକ କରାଯାଏ ଅର୍ଥାତ୍ ଯେଉଁ ସେବା ଭାରସ୍ୱରୂପ ମନେ ନ ହୁଏ ବା ବିରକ୍ତି ଭାବ ନ ଆଣେ ଏବଂ ପ୍ରତିବଦଳରେ କିଛି ଆଶା କରା ନ ଯାଏ, ତାହା ହିଁ ପ୍ରକୃତ ସେବା ଓ ସାତ୍ତ୍ୱିକ ସେବା । କିନ୍ତୁ ଆଜିକାଲି ସେବାରେ ପ୍ରାୟ ଏଇ ଦୁଇଟି କଥାର ଅଭାବ ଦେଖାଯାଉଛି । ଏହା ଠିକ୍ ନୁହେଁ । ପ୍ରସନ୍ନ ମନରେ ଓ ନିଷ୍କାମ ଭାବରେ କରାଯାଉଥିବା ସେବା ଉଦ୍ଧାରର ମାର୍ଗ ପ୍ରଶସ୍ତ କରିଦିଏ ।

ସେ ଯାହା ହେଉ, କିନ୍ତୁ କୁନ୍ତୀ ବ୍ରାହ୍ମଣଙ୍କୁ କୌଣସି ବର ମାଗିଲେ ନାହିଁ; ତଥାପି ବ୍ରାହ୍ମଣ ନିଜ ପକ୍ଷରୁ ଦେବତାଙ୍କୁ ଆବାହନ କରିବାର ମନ୍ତ୍ର ଶିଖାଇ ଦେଲେ । କାରଣ ସେ କୁନ୍ତୀଙ୍କୁ କିଛି ନା କିଛି ଦେଇ ଫେରିଯିବାକୁ ଚାହୁଁଥିଲେ । କୁନ୍ତୀ ମଧ୍ୟ ବ୍ରାହ୍ମଣଙ୍କ ସମ୍ମାନରକ୍ଷା ଦୃଷ୍ଟିରୁ ମନା କରିପାରିଲେ ନାହିଁ । ତାହା ଥିଲା ଅଥର୍ବବେଦର ଶିରୋଭାଗରେ ଥିବା ମନ୍ତ୍ର । ସେ କହିଲେ—"ଏହି ମନ୍ତ୍ର ବଳରେ

ତୁ ଯେଉଁ ଦେବତାଙ୍କୁ ଆବାହନ କରିବୁ, ସେ ତୋର ଅଧୀନ ହୋଇଯିବେ।” ଏତିକି କହି ବ୍ରାହ୍ମଣ ଅଦୃଶ୍ୟ ହୋଇଗଲେ।

ସେହି ଅତିଥି ବ୍ରାହ୍ମଣ କୌଣସି ସାଧାରଣ ବ୍ୟକ୍ତି ନ ଥିଲେ, ସେ ଥିଲେ ଉଗ୍ରତପା ମହର୍ଷି ଦୁର୍ବାସା। ତାଙ୍କରି ପ୍ରଦତ୍ତ ମନ୍ତ୍ର ବଳରେ କୁନ୍ତୀ ଭବିଷ୍ୟତରେ ଧର୍ମାଦି ଦେବତାଙ୍କ ଠାରୁ ଯୁଧିଷ୍ଠିର ପ୍ରମୁଖଙ୍କୁ ପୁତ୍ରରୂପେ ପାଇଥିଲେ।

କୁନ୍ତୀଙ୍କର ମହାରାଜା ପାଣ୍ଡୁଙ୍କ ସଙ୍ଗେ ବିବାହ ହୋଇଥିଲା। ପାଣ୍ଡୁ ଥିଲେ ଜଣେ ଧର୍ମାତ୍ମା। ସେ ନିଜ ପରାକ୍ରମରେ ଦିଗ୍‌ବିଜୟ କରି ଚକ୍ରବର୍ତ୍ତୀ ସମ୍ରାଟ ହୋଇଗଲେ। କିନ୍ତୁ ସେ ଅଧିକାଂଶ ସମୟ ରୋଗଗ୍ରସ୍ତ ରହୁଥିଲେ। ତେଣୁ ସ୍ୱାସ୍ଥ୍ୟ ଲାଭ ନିମିତ୍ତ ମଝିରେ ମଝିରେ କିଛି କିଛି ଦିନ ରାଜମହଲ ପରିବେଶରୁ ଦୂରରେ ବନରେ ରହିବାକୁ ସେ ପସନ୍ଦ କରୁଥିଲେ। ସେହି ସମୟରେ ସେ ନିଜର ପୂଜ୍ୟ ଅଗ୍ରଜ ନେତ୍ରହୀନ ଧୃତରାଷ୍ଟ୍ରଙ୍କୁ ରାଜ୍ୟଭାର ସମର୍ପି ଦେଇ ଯାଉଥିଲେ। ପ୍ରବଳ ପରାକ୍ରମୀ ଭୀଷ୍ମ ରାଜ୍ୟର ସୁରକ୍ଷା ଦୃଷ୍ଟିରୁ ପ୍ରତିଜ୍ଞାବଦ୍ଧ ଥିବାରୁ ସେ ନିଶ୍ଚିନ୍ତରେ ଅରଣ୍ୟବାସର ଆନନ୍ଦ ଉପଭୋଗ କରୁଥିଲେ।

ଧର୍ମାତ୍ମାଙ୍କ ମନ ପବିତ୍ର ହୋଇଥାଏ। ସେ ହଠାତ୍ ଅନ୍ୟକୁ ସନ୍ଦେହ ଦୃଷ୍ଟିରେ ଦେଖନ୍ତି ନାହିଁ। କିନ୍ତୁ ଯାହାର ମନ କୌଣସି ପାପବାସନାରେ କଳୁଷିତ ହୋଇଯାଏ ବା ଲୋଭ-ମୋହରେ ଆସକ୍ତ ହୋଇଯାଏ, ତାହାର ବିବେକ ଧୀରେ ଧୀରେ ଲୁପ୍ତ ହୋଇଯାଏ। ନ୍ୟାୟ-ଅନ୍ୟାୟ ଓ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ବୁଝିବାର ଶକ୍ତି ରହେ ନାହିଁ। ଧୃତରାଷ୍ଟ୍ରଙ୍କୁ ରାଜସିଂହାସନର ମୋହ ଗ୍ରାସ କଲା। କେବଳ ଧୃତରାଷ୍ଟ୍ର କାହିଁକି, ଧନ-ସମ୍ପତ୍ତି, ପ୍ରଭୁତ୍ୱ ଓ ରାଜପଦର ମୋହ ଏପରି ଯେ ତାହା ଭଲ ଭଲ ଲୋକଙ୍କୁ ମଧ୍ୟ ଭୁଲ୍ ବାଟକୁ ଟାଣି ନିଏ। ଧୃତରାଷ୍ଟ୍ର ବେଳେ ବେଳେ ନିଜର ନେତ୍ରହୀନତାକୁ ରାଜପଦରୁ ବଞ୍ଚିତ ହେବାର କାରଣ ମନେକରି ବହୁତ ଅନୁତାପ କରୁଥିଲେ। ତଥାପି ସେ ନିଜର ଭାଗ୍ୟକୁ ଦୋଷ ଦେଇ ସାନଭାଇର ରାଜ୍ୟଭାର ତୁଲାଉଥିଲେ।

ପାଣ୍ଡୁଙ୍କର ସେତେବେଳେ ସନ୍ତାନ ହୋଇ ନ ଥିଲେ। ରାଜସିଂହାସନର ଉତ୍ତରାଧିକାରୀ ହେବ କିଏ? ସେ ପିତୃଋଣରୁ ମୁକ୍ତ ହେବେ କିପରି? ଏହି ଚିନ୍ତା ତାଙ୍କୁ ବ୍ୟସ୍ତ କରି ପକାଇଲା। ସେ ଥରେ କୁନ୍ତୀଙ୍କୁ କହିଲେ, “ପ୍ରିୟେ! ତୁମେ ପୁତ୍ର ଉତ୍ପନ୍ନ କରିବା ପାଇଁ ଉଦ୍ୟମ କର।” କୁନ୍ତୀ କହିଲେ, “ସ୍ୱାମୀ! କୁମାରୀ ଅବସ୍ଥାରେ ମୁଁ ମହର୍ଷି ଦୁର୍ବାସାଙ୍କୁ ସେବାରେ ପ୍ରସନ୍ନ କରି ତାଙ୍କ ଠାରୁ ଏକ ମନ୍ତ୍ର ଲାଭ କରିଛି। ସେ ମୋତେ କହିଥିଲେ, ‘ମାଆରେ! ଏହି ମନ୍ତ୍ର ଜପି ତୁ ଯେଉଁ ଦେବତାଙ୍କୁ

ଆବାହନ କରିବୁ, ସେ ଆସି ତୋର ମନ କଥା ରଖିବାକୁ ବାଧ୍ୟ ହୋଇ ପଡ଼ିବେ ।' ଯଦି ଆପଣ କହିବେ, ମୁଁ ତାହାକୁ ପ୍ରୟୋଗ କରିବି ।'' ପାଣ୍ଡୁ କହିଲେ, ''ତୁମେ ଧର୍ମ ଦେବତାଙ୍କୁ ଆବାହନ କର, ତାଙ୍କଠାରୁ ଯେଉଁ ପୁତ୍ର ହେବ, ସେ ନିଶ୍ଚୟ ପରମ ଧାର୍ମିକ ହେବ ।'' କୁନ୍ତୀ ଧର୍ମଙ୍କୁ ଆବାହନ କରି ତାଙ୍କଠାରୁ ଧର୍ମରାଜ ଯୁଧିଷ୍ଠିରଙ୍କୁ ପୁତ୍ରରୂପେ ଲାଭ କଲେ । ପୁଣି ପାଣ୍ଡୁଙ୍କର ପରାମର୍ଶ କ୍ରମେ ସେ ବଳ ଓ ଶ୍ରେଷ୍ଠତା ଦୃଷ୍ଟିରୁ ଯଥାକ୍ରମେ ବାୟୁ ଓ ଇନ୍ଦ୍ରଙ୍କୁ ଆବାହନ କରିବାରୁ ସେମାନଙ୍କ ଅଂଶରୁ ଭୀମ ଓ ଅର୍ଜୁନ ଜନ୍ମ ହେଲେ । ଏହିରୂପେ କୁନ୍ତୀ ନିଜର ସ୍ୱାମୀଙ୍କୁ ମଧ୍ୟ ପିତୃଋଣରୁ ମୁକ୍ତ କରିଦେଲେ । ତେବେ ମାଦ୍ରୀଙ୍କ କୋଳ କ'ଣ ରିକ୍ତ ରହିଯିବ? ଆଜିକାଲିର ସଉତୁଣୀ ପରି ଦାଉ ସାଧିବା ତ ତାଙ୍କ ମନରେ ନ ଥିଲା । ତେଣୁ ପାଣ୍ଡୁଙ୍କ ଅନୁରୋଧରେ ନିଜ ସଉତୁଣୀ ମାଦ୍ରୀଙ୍କ ପାଇଁ ମଧ୍ୟ ସେହି ମନ୍ତ୍ର ପ୍ରୟୋଗ କଲେ । ଅଶ୍ୱିନୀକୁମାରଙ୍କ ଅଂଶରୁ ତାଙ୍କ କୋଳମଣ୍ଡନ କଲେ ନକୁଳ ଓ ସହଦେବ ।

କାଳ କାହାରିକୁ ଛାଡ଼ି ନାହିଁ । ସମୟ ଆସିଲେ ମୃତ୍ୟୁ କୌଣସି ନା କୌଣସି ବାହାନା ଧରି ଆସିଯାଏ । ସେ ବାଳକ-ବୃଦ୍ଧ ଦେଖେ ନାହିଁ କି ସୁବିଧା-ଅସୁବିଧା ଦେଖେ ନାହିଁ । ତାହା ହିଁ ହେଲା । ବସନ୍ତଋତୁ ହୋଇଥାଏ, ବନ ପର୍ବତର ଅପୂର୍ବ ଶୋଭାମୟ ପରିବେଶରେ ପୂର୍ଣ୍ଣଯୌବନା ମାଦ୍ରୀଙ୍କର ରୂପଲାବଣ୍ୟ ଅଗ୍ରନଜ ପାଣ୍ଡୁଙ୍କ ଚିତ୍ତକୁ ଆକର୍ଷିତ କରିଦେଲା । କାମବାସନାର ପ୍ରବଳ ଆବେଗରେ ସେ କିନ୍ଦମ ଋଷିଙ୍କ ଅଭିଶାପକୁ ଭୁଲିଗଲେ । ମାଦ୍ରୀଙ୍କ ବାରଣ ସତ୍ତ୍ୱେ ସେ କାମକ୍ରୀଡ଼ାରେ ପ୍ରବୃତ୍ତ ହୋଇଗଲେ ଏବଂ ସେହିଠାରେ ତାଙ୍କର ଦେହାନ୍ତ ହୋଇଗଲା । ସ୍ୱାମୀଙ୍କର ଦେହାନ୍ତ ହୋଇଯିବାରୁ ସେ ପିଲାମାନଙ୍କର ଲାଳନପାଳନ ଦାୟିତ୍ୱ ସାନ ସଉତୁଣୀ ମାଦ୍ରୀଙ୍କୁ ଅର୍ପଣ କରି ନିଜେ ସତୀ ହୋଇ ସ୍ୱାମୀଙ୍କର ଅନୁଗମନ କରିବାକୁ ଇଚ୍ଛା କଲେ । କିନ୍ତୁ ମାଦ୍ରୀ ତାଙ୍କୁ ମନା କରି କହିଲେ—''ମୁଁ ବର୍ତ୍ତମାନ ଯୁବତୀ; ମୋରି ପ୍ରତି ଆସକ୍ତି କରି ସ୍ୱାମୀଙ୍କର ଆଜି ଏ ଦଶା ହେଲା; ତେଣୁ ମୁଁ ସ୍ୱାମୀଙ୍କର ଅନୁଗମନ କରିବି । ତୁମେ ମୋ ପିଲାମାନଙ୍କୁ ପାଳନ କର ।'' କୁନ୍ତୀ ମାଦ୍ରୀଙ୍କ କଥାକୁ ମାନିଗଲେ ଏବଂ ଶେଷ ପର୍ଯ୍ୟନ୍ତ ମାଦ୍ରୀଙ୍କ ପୁଅମାନଙ୍କୁ ନିଜ ପୁଅଙ୍କ ଠାରୁ ମଧ୍ୟ ଅଧିକ ସ୍ନେହରେ ପାଳିଲେ । ଏହା ତାଙ୍କର କେତେ ଉଦାରତା! ସଉତୁଣୀ ଓ ତାର ପୁଅମାନଙ୍କ ସଙ୍ଗେ କିପରି ବ୍ୟବହାର କରିବା କଥା, ତାହା ଆମର ମାଆ-ଭଉଣୀମାନେ କୁନ୍ତୀଙ୍କ ଠାରୁ ଶିକ୍ଷା ଗ୍ରହଣ କରିବା ଆବଶ୍ୟକ । ସ୍ୱାମୀ ଜୀବିତ ଥିବା ପର୍ଯ୍ୟନ୍ତ କୁନ୍ତୀ ମାଦ୍ରୀଙ୍କ ସଙ୍ଗେ ଛୋଟ ଭଉଣୀ ପରି ବ୍ୟବହାର କରିଥିଲେ ଏବଂ

ମାଦ୍ରୀ ସତୀ ହୋଇଯିବା ପରେ ତାଙ୍କ ପୁଅମାନଙ୍କ ପ୍ରତି ମଧ୍ୟ ପୂର୍ବବତ୍ ସାଧୁତାପୂର୍ଣ୍ଣ ବ୍ୟବହାର କରିଥିଲେ। ସହଦେବଙ୍କ ପ୍ରତି ତାଙ୍କର ଅଧିକ ସ୍ନେହ-ମମତା ଥିଲା ଏବଂ ସହଦେବ ମଧ୍ୟ କୁନ୍ତୀଙ୍କୁ ଅଧିକ ଶ୍ରଦ୍ଧା କରୁଥିଲେ।

ସ୍ୱାମୀଙ୍କ ଦେହାନ୍ତ ପରେ କୁନ୍ତୀ ପିଲାମାନଙ୍କୁ ଧରି ହସ୍ତିନା ଫେରି ଆସିଲେ। ମାତ୍ର ସେଠାରେ ତାଙ୍କର ଜୀବନ ବହୁ କଷ୍ଟରେ ବିତିଲା। ସେ ନିଜକୁ ନିରାଶ୍ରିତା ପରି ଅନୁଭବ କଲେ। ଦୁଷ୍ଟ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ସବୁବେଳେ ପକ୍ଷପାତ ଦୃଷ୍ଟିରେ ଦେଖିଲା। ତା' ମନରେ ପିଲାବେଳୁ ପାଣ୍ଡବଙ୍କ ପ୍ରତି ଦ୍ୱେଷ ଥିଲା। ବିଶେଷ କରି ଭୀମ ଅଧିକ ବଳବାନ୍ ହୋଇଥିବାରୁ ତା ପ୍ରତି ତା'ର ଈର୍ଷ୍ୟା ଅଧିକ ଥିଲା। ପୁଣି ତା'ର କୁବିଗ୍ରହରୂପୀ ବିଷବୃକ୍ଷକୁ ପୁଷ୍ପିତ ପଲ୍ଲବିତ କରିବାରେ ଅଧିକ ସାହାଯ୍ୟ କଲା ମାମୁଁ ଶକୁନିର କୁମନ୍ତ୍ରଣା।

ଏଣେ ପାଣ୍ଡୁଙ୍କ ଦେହାନ୍ତ ପରେ ବିଲେଇ କପାଳକୁ ଶିକା ଛିଣ୍ଡିବା ପରି ରାଜ ସିଂହାସନରର ଅଧିକାର ସ୍ଥାୟୀ ହୋଇ ରହିଗଲା ଧୃତରାଷ୍ଟ୍ରଙ୍କ ପାଖରେ। ସେ ଧୀରେ ଧୀରେ ରାଜସିଂହାସନର ମୋହରେ ଆବଦ୍ଧ ହେବାକୁ ଲାଗିଲେ। ନିଜର ବିକଳାଙ୍ଗତା ହେତୁ ସେ ସିନା ରାଜ୍ୟାଧିକାରରୁ ବଞ୍ଚିତ ହୋଇଯାଇଥିଲେ, କିନ୍ତୁ ତାଙ୍କର ଜ୍ୟେଷ୍ଠ ପୁତ୍ର ଦୁର୍ଯ୍ୟୋଧନକୁ ସିଂହାସନରେ ଅଧିଷ୍ଠିତ ଦେଖିବାର ମୋହ ଧୀରେ ଧୀରେ ତାଙ୍କର ବିବେକ ଜ୍ଞାନକୁ ବାଦଲ ପରି ଢାଙ୍କିବାକୁ ଲାଗିଲା। ଶକୁନି ବାରମ୍ବାର ଦୁର୍ଯ୍ୟୋଧନକୁ ପାଣ୍ଡବମାନଙ୍କ ବିରୁଦ୍ଧରେ କୁପରାମର୍ଶ ଦେଲା ଏବଂ ପାଣ୍ଡବମାନଙ୍କୁ ତା'ର ରାଜ୍ୟାଧିକାର ରାସ୍ତାର କଣ୍ଟକରୂପେ ବର୍ଣ୍ଣନା କରି ସେମାନଙ୍କୁ ମାରିଦେବାକୁ ନାନା ଉପାୟ ଶିଖାଇଲା। ତାହାରି ପ୍ରରୋଚନାରେ ଦୁର୍ଯ୍ୟୋଧନ ଭୀମକୁ ବିଷଲଡୁ ଦେଲା ଓ ପାଣ୍ଡବମାନଙ୍କୁ ଲାକ୍ଷାଗୃହରେ ପୋଡ଼ି ମାରିବାକୁ ଉଦ୍ୟମ କଲା। ଯଦିଓ ଧର୍ମ ଓ ନୀତିର ଜ୍ଞାତା ପିତୃବ୍ୟ ଭୀଷ୍ମ ଓ ମନ୍ତ୍ରୀ ବିଦୁର ଧୃତରାଷ୍ଟ୍ରଙ୍କୁ ବାରମ୍ବାର ସତ୍‌ପରାମର୍ଶ ଦେଉଥିଲେ ଓ ସ୍ୱର୍ଗତ ସାନଭାଇର ପୁତ୍ରମାନଙ୍କ ପ୍ରତି ନିଜ ପୁତ୍ରଙ୍କ ପରି ସମାନ ବ୍ୟବହାର କରିବାକୁ ଶିକ୍ଷା ଦେଉଥିଲେ, ତଥାପି ପୁତ୍ର ଦୁର୍ଯ୍ୟୋଧନର ମୋହରେ ବାହ୍ୟଚକ୍ଷୁହୀନ ଧୃତରାଷ୍ଟ୍ର ଅନ୍ତଶ୍ଚକ୍ଷୁ ମଧ୍ୟ ହରାଇ ବସିଲେ। ଦୁର୍ଯ୍ୟୋଧନର ଷଡ଼ଯନ୍ତ୍ରପୂର୍ଣ୍ଣ ଯୋଜନା ପ୍ରତି ଦୃଷ୍ଟି ନ ଦେଇ କୁନ୍ତୀଙ୍କ ସମେତ ପାଣ୍ଡବଙ୍କୁ ବାରଣାବନ୍ତ ପଠାଇଦେଲେ।

ଦୁଷ୍ଟମାନଙ୍କ ଚକ୍ରାନ୍ତ ସବୁବେଳେ ସଫଳ ହୁଏ ନାହିଁ। ଭଗବାନଙ୍କ ବିଧାନରେ ପାଣ୍ଡବ ବାରଣାବନ୍ତର ସେହି ଲାକ୍ଷାଗୃହରେ ପୋଡ଼ି ହୋଇ ମରି ନ ଯାଇ ରକ୍ଷା

ପାଇଗଲେ ଏବଂ ଗୁପ୍ତରୂପେ ଯାଇ ଏକଚକ୍ରା ନଗରୀରେ ରହିଲେ ।

ଏକଚକ୍ରା ନଗରୀରେ ରହିବାବେଳେ ସେଠାକାର ପ୍ରଜାମାନଙ୍କ ଉପରେ ଏକ ଭୀଷଣ ସଂକଟ ପଡ଼ି ଯାଇଥିଲା । ସେହି ନଗରୀ ନିକଟରେ ବକାସୁର ନାମକ ଗୋଟାଏ ରାକ୍ଷସ ରହୁଥିଲା । ତା ପାଇଁ ପ୍ରତିଦିନ ନଗରବାସୀଙ୍କୁ ଗାଡ଼ିଏ ଲେଖାଏଁ ଖାଦ୍ୟ ଓ ଦୁଇଟି ମଇଁଷି ଯୋଗାଇବାକୁ ପଡୁଥିଲା । ଯେଉଁ ଲୋକ ଏସବୁ ନେଇ ତା ପାଖକୁ ଯାଉଥିଲା, ତାକୁ ମଧ୍ୟ ସେ ଖାଇଯାଉଥିଲା । ସମସ୍ତ ନଗରବାସୀ ପାଳି କରି ତାକୁ ଏହିରୂପେ ଆହାର ଯୋଗାଇବାକୁ ବାଧ୍ୟ ହେଉଥିଲେ । ପାଣ୍ଡବମାନେ ଯେଉଁ ବ୍ରାହ୍ମଣଙ୍କ ଘରେ ଭିକ୍ଷୁକରୂପେ ଆଶ୍ରୟ ନେଇଥିଲେ, ଦିନେ ତାଙ୍କର ପାଳି ପଡ଼ିଲା । ରାକ୍ଷସର ଆହାର ପାଇଁ ଜଣେ ମଣିଷ ଦରକାର । ବ୍ରାହ୍ମଣ ପରିବାରରେ କାନ୍ଦବୋବାଳି ପଡ଼ିଗଲା । କୁନ୍ତୀଙ୍କୁ ଏ କଥା ଜଣାପଡ଼ିବାରୁ ତାଙ୍କ ହୃଦୟ ଦୟାରେ ତରଳିଗଲା । ତାଙ୍କର ସ୍ୱଭାବ ଥିଲା ଅତ୍ୟନ୍ତ କୋମଳ ଓ ଦୟାପୂର୍ଣ୍ଣ । ସେ ନିଜ କଷ୍ଟକୁ ଆଦୌ ଖାତିରି କରୁ ନ ଥିଲେ, କିନ୍ତୁ ଅନ୍ୟର କଷ୍ଟକୁ ସହି ପାରୁ ନ ଥିଲେ । ସେ ଭାବିଲେ—"ଆମ୍ଭେମାନେ ଥାଉ ଥାଉ ଏ ବ୍ରାହ୍ମଣ ପରିବାରକୁ ଏତେ କଷ୍ଟ ପଡ଼ିବାଟା ବଡ଼ ଲଜ୍ଜାର କଥା । ତା'ଛଡ଼ା ଏ ଆମର ଆଶ୍ରୟଦାତା, କୌଣସି ନା କୌଣସି ଉପାୟରେ ତାଙ୍କର ପ୍ରତିଉପକାର କରିବା ଆମର କର୍ତ୍ତବ୍ୟ । ଉପଯୁକ୍ତ ସମୟରେ ଉପକାରୀ ବ୍ୟକ୍ତିର ପ୍ରତ୍ୟୁପକାର ନ କଲେ ଧର୍ମଚ୍ୟୁତ ହେବାର ଦୋଷ ଲାଗେ । ଏହାଙ୍କ ଘରେ ଯେତେବେଳେ ଆମେ ରହୁଛୁ, ଏହାଙ୍କର ଦୁଃଖରେ ଭାଗୀଦାର ହେବା ଆମର କର୍ତ୍ତବ୍ୟ ।" ଏହା ଭାବି ସେ ବ୍ରାହ୍ମଣଙ୍କ ଘରକୁ ଆସିଲେ ।

କୁନ୍ତୀ ପ୍ରଥମେ ଟିକେ ଦୂରରୁ ଠିଆ ହୋଇ ଲକ୍ଷ୍ୟ କଲେ । ଦେଖିଲେ, ବ୍ରାହ୍ମଣ ତାଙ୍କ ସ୍ତ୍ରୀ, କନ୍ୟା ଓ ପୁତ୍ର ସହିତ ବସି ଗମ୍ଭୀର ମୁଦ୍ରାରେ କିଛି ମହତ୍ତ୍ୱପୂର୍ଣ୍ଣ ଚର୍ଚ୍ଚା କରୁଛନ୍ତି । ବ୍ରାହ୍ମଣ ସ୍ତ୍ରୀକୁ କହୁଛନ୍ତି—"ତୁମେ କୁଳୀନା, ସୁଶୀଳା ଏବଂ ପିଲାଙ୍କର ମାଆ । ମୁଁ ରାକ୍ଷସଠାରୁ ନିଜକୁ ବଞ୍ଚାଇବା ପାଇଁ ତୁମକୁ ତା' ପାଖକୁ ପଠାଇ ପାରିବି ନାହିଁ ।" ସ୍ୱାମୀଙ୍କ କଥା ଶୁଣି ବ୍ରାହ୍ମଣୀ କହିଲେ—"ନା, ନା, ମୁଁ ନିଜେ ତା'ପାଖକୁ ଯିବି । ସ୍ୱାମୀର ମଙ୍ଗଳ ପାଇଁ ସ୍ତ୍ରୀ ନିଜ ଜୀବନକୁ ମଧ୍ୟ ବିସର୍ଜନ କରିଦେବା ହିଁ ତା'ର ସବୁଠାରୁ ବଡ଼ କର୍ତ୍ତବ୍ୟ । ସ୍ୱାମୀ ଥାଉ ଥାଉ ସ୍ତ୍ରୀ ପରଲୋକବାସୀ ହୋଇଯିବାଟା ତ ସ୍ତ୍ରୀ ପାଇଁ ବଡ଼ ସୌଭାଗ୍ୟର କଥା । କିନ୍ତୁ ଏ କଥା ବି ହୋଇପାରେ ଯେ, ରାକ୍ଷସ ସ୍ତ୍ରୀଜାତିକୁ ଅବଧ୍ୟ ଭାବି ମୋତେ ଛାଡ଼ିଦେଇ ପାରେ । ପୁରୁଷବଧ ତ ସୁନିଶ୍ଚିତ, କିନ୍ତୁ ସ୍ତ୍ରୀବଧ ସନ୍ଦେହାସ୍ପଦ; ତେଣୁ ତୁମେ ଯାଅ ନାହିଁ; ମୋତେ ତା

ପାଖକୁ ଯିବାକୁ ଅନୁମତି ଦିଅ।'' ପିତାମାତାଙ୍କ ଦୁଃଖପୂର୍ଣ୍ଣ କଥା ଶୁଣି ଝିଅ କହିଲା—''ତୁମେମାନେ କାହିଁକି କାନ୍ଦୁଛ? ଟିକେ ଚିନ୍ତା କର, ଧର୍ମାନୁସାରେ ତୁମେ ମୋତେ ଦିନେ ନା ଦିନେ ଛାଡ଼ିଦେବ। ତେଣୁ ଆଜିଠାରୁ ଛାଡ଼ିଦେଇ ନିଜକୁ କାହିଁକି ରକ୍ଷା ନ କରୁଛ? ଲୋକ ତ ଦୁଃଖରୁ ରକ୍ଷା ପାଇବା ଆଶାରେ ହିଁ ସନ୍ତାନ ଜନ୍ମ ଦେଇଥାନ୍ତି।'' ଝିଅର କଥା ଶୁଣି ମାଆ ବାପା ଉଭୟେ କାନ୍ଦି ପକାଇଲେ, ଝିଅ ମଧ୍ୟ ନ କାନ୍ଦି ରହିପାରିଲା ନାହିଁ। ସମସ୍ତେ କାନ୍ଦୁଥିବା ଦେଖି ବ୍ରାହ୍ମଣଙ୍କର ଛୋଟ ଶିଶୁଟିଏ କାଠି ଖଣ୍ଡିଏ ଉଠାଇ ଆଣି କହିଲା—''ବାପା, ମାଆ, ନାନୀ! ତୁମେମାନେ କାନ୍ଦନା। ମୁଁ ସେ ରାକ୍ଷସକୁ ଏଥିରେ ପିଟିପିଟି ମାରିପକାଇବି। ତା କଥା ଶୁଣି ସମସ୍ତଙ୍କ ମୁହଁରୁ ଟିକିଏ ହସ ବାହାରି ପଡ଼ିଲା।''

କୁନ୍ତୀ ଏସବୁ ଘଟଣା ଦୂରରୁ ଦେଖୁଥିଲେ। ଏଥର ସେ ନିକଟକୁ ଯାଇ କହିଲେ—''ଗୋସେଇଁ! ଆପଣ ଚିନ୍ତା କରନ୍ତୁ ନାହିଁ। ଆପଣଙ୍କର ମାତ୍ର ଗୋଟିଏ ପୁଅ ଓ ଗୋଟିଏ ଝିଅ। କିନ୍ତୁ ମୋତେ ତ ଭଗବାନ ପାଞ୍ଚଟି ପୁଅ ଦେଇଛନ୍ତି। ସେମାନଙ୍କ ମଧ୍ୟରୁ ମୁଁ ଜଣକୁ ପଠାଇଦେବି। ଆପଣଙ୍କ ଲାଗି ଆମେ ଏଠି ସୁଖରେ ରହିଛୁ, ଆପଣଙ୍କ ଦୁଃଖରେ ସହଭାଗୀ ହେବା କଣ ଆମର କର୍ତ୍ତବ୍ୟ ନୁହେଁ ?'' କିନ୍ତୁ କୁନ୍ତୀଙ୍କ ପ୍ରସ୍ତାବରେ ବ୍ରାହ୍ମଣ ରାଜି ହେଲେ ନାହିଁ। ସେ କହିଲେ—''ଦେବୀ! ଏଭଳି ସମବେଦନା ପାଇଁ ଆପଣ ଅବଶ୍ୟ ଧନ୍ୟବାଦର ପାତ୍ର, କିନ୍ତୁ ମୁଁ ନିଜ କାର୍ଯ୍ୟ ପାଇଁ କଣ ଜଣେ ଅତିଥିଙ୍କୁ ହତ୍ୟା କରାଇପାରିବି ?'' କୁନ୍ତୀ କହିଲେ—''ମୁଁ ଯେଉଁ ପୁଅକୁ ପଠାଇବି, ସେ ବହୁତ ବଳବାନ୍, ମନ୍ତ୍ରସିଦ୍ଧିପ୍ରାପ୍ତ ଓ ତେଜସ୍ୱୀ। ବିଶ୍ୱାସ କରନ୍ତୁ, ତାର କେହି ବି କିଛି ଅନିଷ୍ଟ କରିପାରିବେ ନାହିଁ।'' ଶେଷରେ ବ୍ରାହ୍ମଣ ରାଜି ହୋଇଗଲେ। କୁନ୍ତୀ ଭୀମସେନଙ୍କ ହାତରେ ରାକ୍ଷସ ପାଖକୁ ଆହାର ପଠାଇଦେଲେ।

ସତରେ, କୁନ୍ତୀଙ୍କର ଏହି ପରଦୁଃଖରେ ସହଭାଗୀ ହେବାର ଗୁଣ କେଡ଼େ ମହାନ୍। ଅବଶ୍ୟ ଭୀମ ସେହି ରାକ୍ଷସକୁ ମାରି ପକାଇଲେ, କିନ୍ତୁ କେଉଁ ମାଆ ବା ଜାଣିଶୁଣି ନିଜର ସନ୍ତାନକୁ ଅନ୍ୟର ପ୍ରାଣରକ୍ଷା ପାଇଁ ବଳିଦାନ କରିଦେବାକୁ ପ୍ରସ୍ତୁତ ହେବ? କୁନ୍ତୀଙ୍କର ଏହି ଆଦର୍ଶ ତ୍ୟାଗର କଥା ସମଗ୍ର ନଗରୀରେ ଚର୍ଚ୍ଚା ହେବାକୁ ଲାଗିଲା। ସେମାନଙ୍କର ସଂକଟ ସବୁଦିନ ପାଇଁ ମୋଚନ ହୋଇଗଲା।

କୁନ୍ତୀ ଜଣେ ଆଦର୍ଶ ସତ୍ୟବାଦି ନାରୀ ଥିଲେ। ସେ ହାସ୍ୟବିନୋଦରେ ମଧ୍ୟ କେବେ ମିଛ କହୁ ନ ଥିଲେ। ଭୁଲ୍‌ରେ ମଧ୍ୟ ଯଦି କୌଣସି କଥା ପାଟିରୁ

ବାହାରି ଯାଉଥିଲା, ତାହାକୁ ପ୍ରାଣପଣେ ପାଳନ କରୁଥିଲେ। ସତ୍ୟନିଷ୍ଠାର ଏଭଳି ଅଦ୍ଭୁତ ଉଦାହରଣ ଇତିହାସର ପୃଷ୍ଠାରେ ଅତ୍ୟନ୍ତ ବିରଳ।

ଦ୍ରୌପଦୀଙ୍କ ସ୍ୱୟଂବର ପରର ଘଟଣା। ଅର୍ଜୁନ ଓ ଭୀମସେନ ସ୍ୱୟଂବରରେ ସମସ୍ତଙ୍କୁ ହରାଇ ଦ୍ରୌପଦୀଙ୍କୁ ସଙ୍ଗରେ ନେଇ ନିଜ କୁଟୀରକୁ ଫେରିଲେ। ମାତା କୁନ୍ତୀ ଘର କାମରେ ଅନ୍ୟମନସ୍କ ଥାଆନ୍ତି। ଦୁଇଭାଇ ଦୁଆର ମୁହଁ ପାଖରୁ ଡାକ ଦେଲେ—"ମାଆ! ଆଜି ଏହି ଭିକ୍ଷା ଆଣିଛୁ।" କୁନ୍ତୀ ସେମାନଙ୍କ ଆଡ଼କୁ ନ ଦେଖି କହିଦେଲେ, "ଠିକ୍ ଅଛି, ପାଞ୍ଚ ଭାଇ ମିଳିମିଶି ତାହାକୁ ଉପଯୋଗ କର।" ପରେ ତାଙ୍କୁ ଜଣାପଡ଼ିଲା ଯେ ସେମାନେ ଗୋଟିଏ କନ୍ୟାକୁ ଆଣିଛନ୍ତି। ସେ ଧର୍ମସଂକଟରେ ପଡ଼ିଗଲେ। ସେ ଭାବିଲେ, ଯଦି ମୁଁ ମୋ କଥାକୁ ଫେରାଇନେବି, ତେବେ ଅସତ୍ୟ କହିବାର ଦୋଷ ଲାଗିବ; ଅପରପକ୍ଷେ ଯଦି ପୁଅମାନଙ୍କୁ ସେହି ବାକ୍ୟ ଅନୁସାରେ ଚଳିବାକୁ ଆଦେଶ ଦେବି, ତେବେ ସନାତନ ମର୍ଯ୍ୟାଦା ହାନି ହେବ। ପାଞ୍ଚ ଭାଇ ଗୋଟିଏ ସ୍ତ୍ରୀକୁ ବିବାହ କରିବା ବିଷୟ ପୂର୍ବରୁ କେବେ କେଉଁଠି ଶୁଣିବାକୁ କି ଦେଖିବାକୁ ମିଳି ନାହିଁ। ଏ ପରିପ୍ରେକ୍ଷୀରେ ଦେବୀ କୁନ୍ତୀ କିଛି ନିର୍ଣ୍ଣୟ କରିପାରିଲେ ନାହିଁ। ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ। ଶେଷରେ ସେ ଧର୍ମରାଜ ଯୁଧିଷ୍ଠିରଙ୍କ ସମ୍ମତି ଲୋଡ଼ିଲେ। ଯୁଧିଷ୍ଠିର ସତ୍ୟରେ ଅଟଳ ରହିବାକୁ ପରାମର୍ଶ ଦେଲେ। ପରବର୍ତ୍ତୀ ସମୟରେ ରାଜା ଦ୍ରୁପଦ ଆପତ୍ତି ଉଠାଇବାରୁ ବ୍ୟାସଦେବ ଦ୍ରୌପଦୀଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ଶୁଣାଇ ତାଙ୍କୁ ବୁଝାଇଦେଲେ ଯେ, ଶିବଙ୍କ ବରଦାନ ଅନୁସାରେ ପାଞ୍ଚଜଣ ଦ୍ରୁପଦନନ୍ଦିନୀଙ୍କର ପାଣିଗ୍ରହଣ କରିବା ଅବଶ୍ୟମ୍ଭାବୀ। ଏହିରୂପେ ପାଞ୍ଚଜଣଙ୍କ ସଙ୍ଗେ ଦ୍ରୌପଦୀଙ୍କର ବିବାହ ସମ୍ପନ୍ନ ହେଲା। କୁନ୍ତୀଙ୍କ ସତ୍ୟନିଷ୍ଠାର ବିଜୟ ହେଲା। ତାଙ୍କ ମୁହଁରୁ ଏଭଳି କଥା ବହାରି ପଡ଼ିଲା, ଯାହା କି ପ୍ରକୃତରେ ଘଟିବାର ଥିଲା। ଦୃଢ଼ଭାବେ ସତ୍ୟର ଆଶ୍ରୟ ନେଇଥିବା ଲୋକଙ୍କର ଜୀବନରେ ଏପରି ହେବା କିଛି ଅସମ୍ଭବ କଥା ନୁହେଁ।

ଦେବୀ କୁନ୍ତୀଙ୍କ ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅତ୍ୟନ୍ତ ତ୍ୟାଗପୂର୍ଣ୍ଣ, ତପସ୍ୟାମୟ ଓ ଅନାସକ୍ତ ଥିଲା। ସେ ପାଣ୍ଡବଙ୍କ ଅଜ୍ଞାତବାସ କାଳରେ ପୁତ୍ରମାନଙ୍କ ସଙ୍ଗରେ ନ ଯାଇ ହସ୍ତିନାପୁରରେ ବିଦୁରଙ୍କ ଘରେ ରହିଥିଲେ। କୁନ୍ତୀଙ୍କ ମନରେ ନିଜ ପୁତ୍ରଙ୍କ ଦୁଃଖକଷ୍ଟ ପାଇଁ ଏତେ ଚିନ୍ତା ନ ଥିଲା। ତାଙ୍କୁ ସବୁଠାରୁ ଅଧିକ ମର୍ମାହତ କରିଥିଲା କୌରବଙ୍କର ଦୁଇଟି ଅତ୍ୟାଗ୍ଚର। କୁରୁସଭା ମଧ୍ୟରେ କୁଳବଧୂ ଦ୍ରୌପଦୀଙ୍କୁ ବିବସ୍ତ୍ରା କରିବାର ପ୍ରଚେଷ୍ଟା ଓ ଶାନ୍ତିଦୂତ ହୋଇ ଆସିଥିବା ଶ୍ରୀକୃଷ୍ଣଙ୍କୁ

ବନ୍ଦୀ କରିବାର ଉଦ୍ୟମ। ସେ ସ୍ଥିର କରିନେଲେ ଯେ, ଏ ପାପୀମାନଙ୍କର ପାପର ସେର ଉଛୁଳି ପଡ଼ିଲାଣି। ସେଥିପାଇଁ ସେ ଜଣେ ବୀର କ୍ଷତ୍ରିୟଜନନୀର ଉତ୍ତମ ପରିଚୟ ଦେଇ ନିଜ ପୁତ୍ରମାନଙ୍କୁ ଧର୍ମଯୁକ୍ତ ଯୁଦ୍ଧ ପାଇଁ ପ୍ରେରିତ କରିଥିଲେ। ସେ ଶ୍ରୀକୃଷ୍ଣଙ୍କ ହାତରେ, ବିଶେଷକରି ଭୀମ ଓ ଅର୍ଜୁନଙ୍କ ପାଖକୁ କ୍ଷତ୍ରିୟର ଧର୍ମ ବୁଝାଇ ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ ସନ୍ଦେଶ ପଠାଇଥିଲେ। ସେ ବିଦୁର ଓ ସଞ୍ଜୟଙ୍କର ଦୃଷ୍ଟାନ୍ତ ଦେଇ ଅତ୍ୟନ୍ତ ମର୍ମସ୍ପର୍ଶୀ ଶବ୍ଦରେ କହିଥିଲେ—"ମୋର ପୁତ୍ରମାନେ! ଯେଉଁ କାର୍ଯ୍ୟ ପାଇଁ କ୍ଷତ୍ରାଣୀ ପୁତ୍ର ଜନ୍ମଦିଏ, ସେହି କାର୍ଯ୍ୟ କରିବାର ସମୟ ଆସିଗଲା। ତୁମେମାନେ ଯଦି ମୋ ପରି କ୍ଷତ୍ରାଣୀର କ୍ଷୀର ପିଇଥାଅ, ତେବେ ଯୁଦ୍ଧରେ ତାହାର ଉପଯୁକ୍ତ ସମ୍ମାନ ରକ୍ଷା କରିବ।"

ମହାଭାରତ ଯୁଦ୍ଧ ସମାପ୍ତ ହେଲା। ଧର୍ମରାଜ ଯୁଧିଷ୍ଠିର ସମ୍ରାଟପଦରେ ଅଭିଷିକ୍ତ ହେଲେ। କୁନ୍ତୀ ରାଜମାତା ହେବାର ସୌଭାଗ୍ୟ ପ୍ରାପ୍ତ ହେଲେ। ମାତ୍ର ସେ ସେହି ସୁଖରେ ବୁଡ଼ି ରହିଲେ ନାହିଁ। ବିଦୁରଙ୍କ ପରାମର୍ଶରେ ଧୃତରାଷ୍ଟ୍ର ବନରେ ତପସ୍ୟା କରିବାକୁ ବାହାରି ପଡ଼ିଲେ। ତାଙ୍କ ସଙ୍ଗରେ ପତିବ୍ରତା ଗାନ୍ଧାରୀ ମଧ୍ୟ ବାହାରିଲେ। ତ୍ୟାଗମୂର୍ତ୍ତି କୁନ୍ତୀ ମଧ୍ୟ ଗାନ୍ଧାରୀଙ୍କ ହାତ ଧରି ସେମାନଙ୍କ ସେବା ପାଇଁ ବାହାରିଲେ। ଯୁଧିଷ୍ଠିରାଦି କୁନ୍ତୀଙ୍କୁ ବନକୁ ନ ଯିବାକୁ ଅନୁରୋଧ କଲେ। ପୁତ୍ରମାନଙ୍କର ଦୁଃଖପୂର୍ଣ୍ଣ ମୁଖମଣ୍ଡଳକୁ ଦେଖି କୁନ୍ତୀଙ୍କର ଆଖି ଅଶ୍ରୁ ଛଳଛଳ ହୋଇଗଲା। ତଥାପି ସେ ମୋହମମତାର ଦୃଢ଼ ବନ୍ଧନକୁ ଛିଡ଼ାଇ ନିଜ ନିର୍ଣ୍ଣୟରେ ଅଟଳ ରହିଲେ। ଅଶ୍ରୁଧାରାର ବେଗକୁ ରୋକି ରଖି ସେ ତାଙ୍କ ହାର୍ଦ୍ଦିକ ଇଚ୍ଛା ବ୍ୟକ୍ତ କରିଦେଲେ। ସେ କହିଲେ, ଯୁଧିଷ୍ଠିର! ତୁମେ ସହଦେବକୁ କଦାପି ଉପେକ୍ଷା କରିବ ନାହିଁ। ସେ ମୋର ଓ ତୁମର ପରମ ଆଜ୍ଞାକାରୀ। ଆଉ ସଂଗ୍ରାମରେ କେବେ ପୃଷ୍ଠଭଙ୍ଗ ଦେଉ ନ ଥିବା ତୁମର ଭାଇ ବୀର କର୍ଣ୍ଣକୁ ମଧ୍ୟ କେବେ ଭୁଲିବ ନାହିଁ; କାରଣ ସେ ମୋରି ଦୁର୍ବୁଦ୍ଧି ହେତୁ ଯୁଦ୍ଧରେ ନିହତ ହେଲା। ପୁତ୍ର! ମୁଁ ବଡ଼ ଅଭାଗିନୀ। ମୋ ହୃଦୟ ଭାରି କଠୋର; ତାହା ନ ହୋଇଥିଲେ ଆଜି କର୍ଣ୍ଣକୁ ତୁମମାନଙ୍କ ସଙ୍ଗରେ ଦେଖିବାକୁ ନ ପାଇ ମୋ ହୃଦୟ ଫାଟିଯାଇ ନ ଥାନ୍ତା! ତୁମେ ପାଞ୍ଚଭାଇ ତା ପାଇଁ ଦାନପୁଣ୍ୟ କରିବ। ମୋ ବୋହୂ ଦ୍ରୌପଦୀକୁ ସୁଖରେ ରଖିବ। ମୁଁ ଏବେ ବନକୁ ଯାଇ ତପସ୍ୟା କରିବା ସହିତ ମୋର ଏହି ଯାଆ ଓ ଦେଢ଼ଶୁରଙ୍କର ସେବା କରିବି।"

ଏହା ଶୁଣି ଭୀମ କହିଲେ, "ମାଆ! ତୁମେ ଆମକୁ ଯୁଦ୍ଧ ପାଇଁ ପ୍ରେରିତ

କଲ । ଆମେ ଯୁଦ୍ଧରେ ଜିତିଲୁ । ଏବେ ଯେତେବେଳେ ସୁଖର ସମୟ ଆସିଲା ତୁମର ବୁଦ୍ଧି ପୁଣି ବଦଳିଗଲା କେମିତି? ଯଦି ଶେଷରେ ଏଇଆ କରିବାର ଥିଲା, ତେବେ ଆମକୁ ବୃଥାଟାରେ ଏତେ ନରସଂହାରରେ ପ୍ରବୃତ୍ତ କରାଇଲ କାହିଁକି? ଆମର ବନବାସୀ ପିତାଙ୍କ ମୃତ୍ୟୁପରେ ଆମକୁ ବନରୁ ନଗରକୁ ଆଣିଥିଲ କାହିଁକି?''

ସେତେବେଳେ କୁନ୍ତୀ ଯେଉଁ ଉତ୍ତର ଦେଇଥିଲେ, ତାହା ଅତ୍ୟନ୍ତ ହୃଦୟଗ୍ରାହୀ ଥିଲା । ସେ କହିଲେ, ''ଭୀମ! ମୁଁ ଚାହୁଁ ନ ଥିଲି ଯେ ତୁମେମାନ ହାତଗୋଡ଼ ଜାକି କ୍ଷତ୍ରିୟୋଚିତ ପୁରୁଷାର୍ଥ ଛାଡ଼ି ଅପମାନପୂର୍ଣ୍ଣ ଜୀବନ ଯାପନ କର ଏବଂ ଶକ୍ତି ଥାଉ ଥାଉ ନିଜର ନ୍ୟାଯ୍ୟ ଅଧିକାରରୁ କାଳ କାଳ ପାଇଁ ବଞ୍ଚିତ ରହିଯାଅ । ତୁମେମାନେ ପିଲାଦିନରୁ ବହୁତ ଦୁଃଖକଷ୍ଟ ସହିଛ । ଜୁଆରେ ତୁମର ରାଜ୍ୟ ଛଡ଼ାଇ ନିଆଗଲା । ଅନେକ କଷ୍ଟ ଦିଆଗଲା । ତୁମରି ନିଜ ଲୋକ ତୁମକୁ ତିରସ୍କାର କଲେ । ଅଧର୍ମ ଧର୍ମକୁ ଦମନ କରିବାକୁ ଚେଷ୍ଟା କଲା । ସେଥିପାଇଁ ମୁଁ ଯୁଦ୍ଧ ନିମନ୍ତେ ପ୍ରେରଣା ଦେଇଥିଲି, ମୁଁ ନିଜ ସୁଖ ପାଇଁ ଏହା କରି ନ ଥିଲି । ମୋର ରାଜ୍ୟସୁଖ ଭୋଗିବାକୁ ଇଚ୍ଛା ନାହିଁ । ମୁଁ ଏବେ ତପ ଦ୍ୱାରା ପତିଲୋକ ଯିବାକୁ ଚାହୁଁଛି । ତେଣୁ ବନରେ ମୋ ଯାଆ ଦେଢ଼ଶୁରଙ୍କ ସେବାରେ ରହି ଶେଷ ଜୀବନ ତପରେ ବିତାଇବି । ତୁମେମାନେ ଘରକୁ ଫେରିଯାଅ ଏବଂ ଧର୍ମପୂର୍ବକ ପ୍ରଜାପାଳନ କରି ନିଜ ପରିଜନଙ୍କୁ ସୁଖ ଦିଅ ।'' ଏହିରୂପେ ପୁଅମାନଙ୍କୁ ବୁଝାଇ ସୁଝାଇ କୁନ୍ତୀ ବନକୁ ଚାଲିଗଲେ । ଜୀବନର ଶେଷସମୟ ପର୍ଯ୍ୟନ୍ତ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ସେବାରେ ରହି ସେମାନଙ୍କ ସଙ୍ଗେ ଯୋଗୀଙ୍କ ପରି ଦାବାଗ୍ନିରେ ପ୍ରବେଶ କରି ଦେହତ୍ୟାଗ କରିଦେଲେ ।

କୁନ୍ତୀ ତାଙ୍କ ଜୀବନରେ ସାଂସାରିକ ସୁଖ ଭୋଗି ନ ଥିଲେ । ବାହା ହୋଇ ଆସିବା ପର ଠାରୁ ତାଙ୍କୁ ନାନାପ୍ରକାର ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସ୍ୱାମୀ ରୋଗୀ ଥିଲେ, ତାଙ୍କର ସ୍ୱାସ୍ଥ୍ୟଲାଭ ପାଇଁ ସେ ତାଙ୍କ ସଙ୍ଗରେ ବନ ଜଙ୍ଗଲରେ ଅନେକ କାଳ ବିତାଇଲେ । ସେଇଠାରେ ହିଁ ତାଙ୍କର ପୁଅମାନେ ଜନ୍ମ ହେଲେ ଓ ବଢ଼ିଲେ । ବିଲେଇ ତା ଛୁଆଙ୍କୁ ଧରି ଏଘର ସେଘର ବୁଲିଲା ପରି ସେ ପାଣ୍ଡବମାନଙ୍କୁ ନିଜ ପାଖେ ପାଖେ ରଖି ଲାଳନପାଳନ କରିଥିଲେ । କିଛି ଦିନ ହସ୍ତିନାପୁରକୁ ଯଦିଓ ଆସିଥିଲେ, କିନ୍ତୁ ସେଠାରେ ପରାଶ୍ରିତା ହୋଇ ଓ କଠୋର ଦାନ୍ତଗୁଡ଼ିକର ଘେର ଭିତରେ କୋମଳ ଜିଭ ରହୁଥିବା ପରି ତାଙ୍କୁ ରହିବାକୁ ପଡ଼ିଥିଲା । ତା'ପରେ ଲାକ୍ଷାଗୃହରେ ପୋଡ଼ି ମାରିଦେବାର ଷଡଯନ୍ତ୍ରରୁ କୌଣସି ପ୍ରକାରେ ରକ୍ଷା ପାଇ ପିଲାମାନଙ୍କୁ ଧରି ଲୁଚି ପଳାଇଗଲେ ଏବଂ କିଛି

କାଳ ଭିକ୍ଷାନ୍ନରେ ଜୀବନ ନିର୍ବାହ କଲେ । ଦ୍ରୌପଦୀଙ୍କ ସଙ୍ଗେ ପୁଅମାନଙ୍କର ବିବାହ ହେବା ପରେ କିଛି ଦିନ ରାଜସୁଖ ଭୋଗିବାର ସମୟ ଆସିଛି କି ନାହିଁ, ଯୁଧିଷ୍ଠିର କପଟପଶାରେ ସର୍ବସ୍ୱ ହରାଇ ପୁଣି ବନବାସୀ ହୋଇଗଲେ । ସେତେବେଳେ କୁନ୍ତୀ ବିଦୁରଙ୍କ ଘରେ ରହି ଯେନକେନ ପ୍ରକାରେ ତେର ବର୍ଷ କାଟିଲେ । ତାଙ୍କର ଭଗବାନଙ୍କ ଉପରେ ଅତୁଟ ବିଶ୍ୱାସ ଥିଲା; ସେ ଭଗବାନଙ୍କୁ ଆତ୍ମୀୟତାର ଡୋରିରେ ବାନ୍ଧି ଦେଇଥିଲେ । ସେଥିପାଇଁ ତାଙ୍କୁ ଆଶ୍ୱାସନା ଦେଇ ତାଙ୍କର ଧର୍ମାତ୍ମା ପୁତ୍ରମାନଙ୍କୁ ଭଗବାନ ପ୍ରତ୍ୟେକ ସଂକଟରୁ ଉଦ୍ଧାର କରିଥିଲେ । ଏହି କଥା ବର୍ଣ୍ଣନା କରି କୁନ୍ତୀ ଭଗବାନଙ୍କୁ କେଡ଼େ ସୁନ୍ଦର ସ୍ତୁତି କରିଛନ୍ତି, କେତେ କୃତଜ୍ଞତା ଜ୍ଞାପନ କରିଛନ୍ତି, ତାହା ଭାଗବତର ପ୍ରଥମ ସ୍କନ୍ଧର ଅଷ୍ଟମ ଅଧ୍ୟାୟରେ ଦେଖିବାକୁ ମିଳେ ।

ମହାଭାରତ ଯୁଦ୍ଧ ପରେ ଭଗବାନ ଶ୍ରୀକୃଷ୍ଣ ଦ୍ୱାରକାପୁରୀ ଯିବାକୁ ରଥାରୂଢ଼ ହୁଅନ୍ତେ କୁନ୍ତୀ ସ୍ତୁତି କରି କହିଲେ—"ସକଳ ପ୍ରାଣୀଙ୍କ ବାହ୍ୟ-ଆଭ୍ୟନ୍ତରରେ ପରିବ୍ୟାପ୍ତ, ସକଳ ଇନ୍ଦ୍ରିୟ ଓ ମନୋବୃତ୍ତିର ଦ୍ରଷ୍ଟା ହେ ଆଦିପୁରୁଷ! ତୁମକୁ ମୋର ବାରମ୍ବାର ନମସ୍କାର । ରଙ୍ଗମଞ୍ଚରେ ଅଭିନୟ କରୁଥିବା ଅଭିନେତାକୁ ଯେପରି ଦର୍ଶକଗଣ ଚିହ୍ନି ପାରନ୍ତି ନାହିଁ, ସେହିପରି ମାୟା ପରଦାର ଆଢୁଆଳରେ ଥିବାରୁ ତୁମକୁ ଜୀବ ଜାଣିପାରେ ନାହିଁ । ତୁମେ ଅମଳାତ୍ମା ମୁନି-ଋଷିଙ୍କୁ ବିଶୁଦ୍ଧ ପ୍ରେମାଭକ୍ତି ଦାନ କରିବା ନିମିତ୍ତ ଅବତରିତ ହୋଇଛ । ପୁଣି ମୁଁ ଛାର ନାରୀ ତୁମକୁ କିପରି ବା ଜାଣିବି? ତଥାପି ମୁଁ ଏତିକି ଜାଣେ ଯେ ତୁମେ ମୋ ଭାଇ ବସୁଦେବଙ୍କର ପ୍ରିୟ ପୁତ୍ର କୃଷ୍ଣ । ହେ ବାସୁଦେବ! ହେ ନନ୍ଦନନ୍ଦନ! ହେ ଗୋବିନ୍ଦ! ତୁମକୁ ମୋର ନମସ୍କାର । ହେ ପଦ୍ମନାଭ! ହେ ପଦ୍ମନେତ୍ର! ତୁମେ ମୋତେ ତୁମର ଜନ୍ମଦାତ୍ରୀ ମାତା ଦେବକୀଠାରୁ ମଧ୍ୟ ଅଧିକ ରକ୍ଷା କରିଛ । ପ୍ରାଣାନ୍ତକ ବିଷଜ୍ୱାଳାରୁ, ବାରଣାବନ୍ତର ଯତୁଗୃହର ଅଗ୍ନିରୁ, ରାକ୍ଷସମାନଙ୍କ କବଳରୁ, ଦୁଷ୍ଟଙ୍କର କୁରୁସଭାରୁ, ବନବାସର ଅସହ୍ୟ କଷ୍ଟରୁ, ମହାଭାରତ ଯୁଦ୍ଧରୁ ତଥା ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ର ତଥା ଅନ୍ୟ ରଥୀ-ମହାରଥୀଙ୍କ ଅସ୍ତ୍ର-ଶସ୍ତ୍ରରୁ ତୁମେ ଆମମାନଙ୍କୁ ରକ୍ଷା କରି ଆସିଛ । ଯେତେବେଳେ ଆମେ ତୁମକୁ ସ୍ମରଣ କରିଛୁ, ତୁମେ ଆସି ଆମ ପାଖରେ ଠିଆ ହୋଇଛ । ତେଣୁ ହେ କୃଷ୍ଣ! ମୋର ଆଉ ଗୋଟିଏ ବାଞ୍ଛା ପୂର୍ଣ୍ଣ କର । ଆମ ଜୀବନର ପ୍ରତି ପଦକ୍ଷେପରେ ବିପଦ ଆସୁଥାଉ, ଯଦ୍ଦ୍ୱାରା ଆମେ ତୁମକୁ ସବୁବେଳେ ମନେ ରଖୁଥିବୁ । ତୁମେ ଆମ ସ୍ମୃତିପଥରେ ରହିଲେ ଆମକୁ ଆଉ ଭବରୋଗ ବାଧିବ ନାହିଁ; ଆହୁରି ମଧ୍ୟ ତୁମ କାରଣରୁ ଆମ ଗୃହରେ ସନ୍ଥମହାତ୍ମାଙ୍କର ସମାଗମ ଲାଗି

ରହିବ। ହେ ଅକିଞ୍ଚନଧନ! ଜନ୍ମ, ଐଶ୍ୱର୍ଯ୍ୟ, ବିଦ୍ୟା, ବୁଦ୍ଧି ଇତ୍ୟାଦିରେ ବିମୋହିତ ପ୍ରାଣୀ ତୁମକୁ ଜାଣିପାରେ ନାହିଁ। ତୁମେ ଆତ୍ମାରାମ, କୈବଲ୍ୟପତି। ସକଳ ପ୍ରାଣୀଙ୍କ ମଧ୍ୟରେ ତୁମେ ସମରୂପେ ବିଚରଣ କର। ହେ ବିଶ୍ୱାତ୍ମା! ପଶୁ-ପକ୍ଷୀ, ଜଳଚର, ମନୁଷ୍ୟ, ଋଷି ପ୍ରଭୃତି ନାନା ରୂପରେ ଅବତରିତ ହେବା ତୁମ ଭଳି ଜଗଦୀଶ୍ୱରଙ୍କ ପାଇଁ ଲୀଳା ନୁହେଁ ତ ଆଉ କ'ଣ?

ବେଳେ ବେଳେ ତୁମ ପିଲାଦିନର କଥା ମନେ ପଡ଼ିଲେ ମୋ ମନରେ ଆଶ୍ଚର୍ଯ୍ୟ ସୃଷ୍ଟି ହୁଏ। ତୁମେ କ୍ରୋଧରେ ଦଧିଭାଣ୍ଡ ଭାଙ୍ଗି ଦେଇଥିବାରୁ ତୁମ ମାଆ ଯଶୋଦା ତୁମକୁ ରୋଳରେ ଯେତେବେଳେ ବାନ୍ଧିଦେଲେ, ସେତେବେଳେ ତୁମର ପଦ୍ମନେତ୍ର ଦୁଇଟି ଅଶ୍ରୁଛଳଛଳ ହୋଇଗଲା, ଲୋତକ ପ୍ରବାହରେ କଜ୍ଜଳ ବୋହି ଆସି ତୁମ କଳା ଶ୍ରୀମୁଖର ଶୋଭା ବଢ଼ାଇଲା; ତୁମେ ମୁଖ ଅବନତ କରି ଭୟଭୀତ ଭଳି ଠିଆ ହୋଇଥିଲ। ସେତେବେଳର ସେହି ରୂପ ଦେଖି ଲାଗେ ଭୟ ଯାହାକୁ ଭୟ କରେ, ସେ ପୁଣି ଯଶୋଦାକୁ ଡରିବା କ'ଣ ଆଶ୍ଚର୍ଯ୍ୟ ନୁହେଁ? ଅଜନ୍ମା ହୋଇ ମଧ୍ୟ ତୁମେ ଜନ୍ମ ହୋଇଛ। ଭକ୍ତଜନ ତୁମର ଏହି ଲୀଳା ଗାନ କରି କରି ଭବସାଗରକୁ ତରିଯିବେ। ହେ ଭକ୍ତବତ୍ସଳ! ସତରେ କ'ଣ ତୁମେ ଆମକୁ ଛାଡ଼ି ଚାଲିଯିବ? ପ୍ରାଣ ବିହୁନେ ଇନ୍ଦ୍ରିୟଗଣ ଶକ୍ତିହୀନ ହୋଇଯିବା ପରି ତୁମ ବିନା ଆମର ଅସ୍ତିତ୍ୱ ରହିବ ନାହିଁ। ହେ ବିଶ୍ୱେଶ! ହେ ବିଶ୍ୱମୂର୍ତ୍ତି! ତୁମ ପ୍ରତି ମୋ ଅନ୍ତରରେ ଅଗାଧ ଭକ୍ତି ସ୍ଥାନ ପାଉ। ଯଦୁବଂଶ ପ୍ରତି ଓ ପାଣ୍ଡବଙ୍କ ପ୍ରତି ମୋ ହୃଦୟରେ ଅଙ୍କୁରିତ ସ୍ନେହଲତାକୁ ତୁମେ ଛେଦନ କରିଦିଅ। ହେ କୃଷ୍ଣ! ହେ ଅର୍ଜୁନସଖା! ହେ ଗୋବିନ୍ଦ! ଗାଈ, ବ୍ରାହ୍ମଣ ଓ ଦେବଗଣଙ୍କ ଦୁଃଖ ଦୂର କରିବା ନିମନ୍ତେ ତୁମେ ଯୁଗେ ଯୁଗେ ଅବତାର ଗ୍ରହଣ କରୁଥାଅ। ହେ ଚରାଚରଗୁରୁ! ତୁମ ପାଦତଳେ ମୋର ବାରମ୍ବାର ନମସ୍କାର।

ମାତା କୁନ୍ତୀ ଇତିହାସର ପ୍ରଥମ ନାରୀ, ଯେ କି ଭଗବାନଙ୍କୁ ବରଦାନରୂପେ ବିପଦ ହିଁ ମାଗିଥିଲେ; କାରଣ ସେ ଜାଣିଥିଲେ ଯେ ମଣିଷର ବିପଦ ସବୁବେଳେ ରହେ ନାହିଁ; ଆଜି ଅଛି ତ କାଲିକି ନାହିଁ। କିନ୍ତୁ ଯେଉଁ ଜନ୍ମମରଣରୂପୀ ବିପଦ ଅନନ୍ତ କାଳରୁ ଅନେକ ଜନ୍ମରେ ଆମକୁ ଦୁଃଖ ଦେଇଚାଲିଛି, ତାହାର ନିରାକରଣ ସବୁଠୁ ମହତ୍ତ୍ୱପୂର୍ଣ୍ଣ। ସୁଖରେ ଆତ୍ମବିସ୍ମୃତ ହୋଇଯିବାର ଭୟ ଅଛି, କିନ୍ତୁ ଦୁଃଖ ପଡ଼ିଲେ ସେ ତାଙ୍କର ଏକମାତ୍ର ଆଶ୍ରୟ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରିବେ। ତାଙ୍କର ଦର୍ଶନ ମିଳିଗଲେ ଇହଜନ୍ମର ଦୁଃଖ ଦୂର ହେବା ସଙ୍ଗେ ସଙ୍ଗେ କାଳ କାଳ

ପାଇଁ ପୁନର୍ଜନ୍ମର ଦୁଃଖ ମଧ୍ୟ କଟିଯିବ । ସେଥିପାଇଁ ସେ ବିପଦକୁ ସୁଖ ମଣୁଥିଲେ ଏବଂ ହୃଦୟରେ ତାହାକୁ ବିପଦ ବୋଲି ଭାବୁ ନ ଥିଲେ ।

**ବିପଦୋ ନୈବ ବିପଦଃ ସମ୍ପଦୋ ନୈବ ସମ୍ପଦଃ ।**
**ବିପଦ୍ ବିସ୍ମରଣଂ ବିଷ୍ଣୋଃ ସମ୍ପନ୍ନାରାୟଣସ୍ମୃତିଃ ॥**

''ବିପତ୍ତି ବାସ୍ତବରେ ବିପତ୍ତି ନୁହେଁ, ସମ୍ପତ୍ତି ମଧ୍ୟ ସମ୍ପତ୍ତି ନୁହେଁ । ଭଗବାନଙ୍କୁ ଭୁଲିଯିବା ହିଁ ବିପତ୍ତି ଏବଂ ତାଙ୍କୁ ସ୍ମରଣ କରିବା ହିଁ ସବୁଠାରୁ ବଡ଼ ସମ୍ପତ୍ତି ।''

ତାଙ୍କର ଏହି ବିଚାରଧାରା ହେତୁ ସେ ସମସ୍ତ ସଂକଟକୁ ସୁଖ ଓ ଭଗବାନଙ୍କ ବିଧାନ ମନେକରି ସହିଯାଉଥିଲେ । ସେ ଭଗବାନଙ୍କୁ କେବେ ଭୁଲି ନ ଥିଲେ; ସେ ଭଗବତ୍‌ସ୍ମୃତିର ସୁଖରେ ହିଁ ସୁଖୀ ଥିଲେ । ସେ ଶ୍ରୀକୃଷ୍ଣଙ୍କୁ ଯେ କେବଳ କୌଟୁମ୍ବିକ ସମ୍ବନ୍ଧ ହେତୁ ପୁତୁରା ବୋଲି ଭାବୁଥିଲେ, ତା ନୁହେଁ; ସେ ତାଙ୍କୁ ଭଗବାନ ବୋଲି ହୃଦୟଙ୍ଗମ କରିଥିଲେ ଏବଂ ତାଙ୍କର ତତ୍ତ୍ୱ ଓ ରହସ୍ୟକୁ ଭଲଭାବେ ବୁଝିଥିଲେ ।

ଭାଗବତର ବର୍ଣ୍ଣନା ଅନୁସାରେ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଆତ୍ମୀୟତା ଏତେ ପ୍ରଗାଢ଼ ଥିଲା ଯେ ସେ ଶ୍ରୀକୃଷ୍ଣଙ୍କ ବିୟୋଗକୁ ସହି ପାରି ନ ଥିଲେ । ଶ୍ରୀକୃଷ୍ଣଙ୍କ ତିରୋଧାନ ସଂବାଦ ପାଇବାମାତ୍ରେ ନିଜର ସମସ୍ତ ଇନ୍ଦ୍ରିୟାଦିର କ୍ରିୟାକୁ ନିରୁଦ୍ଧ କରିବା ସଙ୍ଗେ ସଙ୍ଗେ ସେହି ପରମଗତି ପରମାତ୍ମାଙ୍କ ଠାରେ ନିଜର ଆତ୍ମାକୁ ମିଶାଇ ଦେଇ ପାଞ୍ଚଭୌତିକ ଶରୀରର କ୍ରିୟାକୁ ଚିରଦିନ ପାଇଁ ବିରାମ ଦେଇଥିଲେ ।



# ଭକ୍ତ ସୁଦାମା

**ତସ୍ୟୈବ ମେ ସୌହୃଦସଖ୍ୟମୈତ୍ରୀ**
**ଦାସ୍ୟଂ ପୁନର୍ଜନ୍ମନି ଜନ୍ମନି ସ୍ୟାତ୍ ।**
**ମହାନୁଭାବେନ ଗୁଣାଲୟେନ**
**ବିଷଜ୍ଜତସ୍ତତ୍‌ପୁରୁଷପ୍ରସଙ୍ଗଃ ॥**

''ମୋତେ ଜନ୍ମେ ଜନ୍ମେ ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମ, ସୁହୃଦୟତା ଓ ବନ୍ଧୁତ୍ୱ ଲାଭ ହେଉ । ତାଙ୍କ ସେବାରେ ମୋର ଜୀବନ ଉତ୍ସର୍ଗ ହେଉ । ମୋର ଧନ ବୈଭବ କିଛି ଲୋଡ଼ା ନାହିଁ । ସେହି ସକଳ ଗୁଣନିଧାନ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ଦିବାନିଶି ମୋର ଅନୁରାଗ ବୃଦ୍ଧି ହେଉ ଏବଂ ତାଙ୍କ ପ୍ରେମୀ ଭକ୍ତଜନଙ୍କ ସଙ୍ଗ

ପାଇ ମୁଁ କୃତାର୍ଥ ହେଉଥାଏ।''

ଭଗବାନ ଶ୍ରୀକୃଷ୍ଣ ଅବନ୍ତୀ ନଗରରେ ସାନ୍ଦୀପନି ଋଷିଙ୍କ ଠାରୁ ବିଦ୍ୟାଧ୍ୟୟନ କଲାବେଳେ ଗୁରୁକୁଳରେ ତାଙ୍କର ଜଣେ ସହପାଠୀ ମିତ୍ର ଥିଲେ ସୁଦାମା। ଶ୍ରୀକୃଷ୍ଣ ଓ ସୁଦାମାଙ୍କ ପ୍ରଥମ ମିଳନରୁ ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା। ଦୁଇ ବନ୍ଧୁଙ୍କର ସେଇ ପ୍ରଥମ ମିଳନ ବେଶ୍ ହୃଦୟସ୍ପର୍ଶୀ। ସେଦିନ ସୁଦାମା କୁଶ, ସମିଧ ପ୍ରଭୃତି ପୂଜା ଦ୍ରବ୍ୟ ସଂଗ୍ରହ କରିବା ନିମନ୍ତେ ବନକୁ ଯାଇଥାନ୍ତି। ହଠାତ୍ ତାଙ୍କ ପାଦରେ ଗୋଟିଏ କଣ୍ଟା ପଶିଗଲା। କୋମଳ ହୃଦୟର ବ୍ରାହ୍ମଣ ବାଳକ ଅଧୀର ହୋଇ କ୍ରନ୍ଦନ କଲେ। ନିଜେ କଣ୍ଟା ବାହାର କରିବାକୁ ତାଙ୍କର ସାହସ ପାଉ ନ ଥାଏ ଏବଂ କାହାକୁ ଡାକିବା ପାଇଁ ଆଖପାଖରେ କେହି ଦେଖାଯାଉ ନ ଥାନ୍ତି। ହଠାତ୍ ତାଙ୍କର ମନେ ପଡ଼ିଗଲା ***'ନିରାଶ୍ରୟ ମାଂ ଜଗଦୀଶ ରକ୍ଷ'*** କଥାଟି। ସେ ସ୍ମରଣ କଲେ ଭକ୍ତବତ୍ସଳ ପ୍ରଭୁଙ୍କୁ। କ୍ଷଣକ ମଧ୍ୟରେ ମିତ୍ରବତ୍ସଳ ଶ୍ରୀକୃଷ୍ଣ ରଥାରୂଢ଼ ହୋଇ ଯାଇ ପହଞ୍ଚିଲେ ସୁଦାମା ନିକଟରେ। ସେତେବେଳେ ଗୁରୁକୁଳରେ ନାମ ଲେଖାଇବା ପାଇଁ ଯାଉଥିଲେ ଶ୍ରୀକୃଷ୍ଣ। ବ୍ରହ୍ମଣ୍ୟଦେବ ଶ୍ରୀକୃଷ୍ଣ ବ୍ରାହ୍ମଣକୁମାର ସୁଦାମାର ବ୍ୟାକୁଳତା ଦେଖି ବ୍ୟସ୍ତ ହୋଇ ପଡ଼ିଲେ। ତକ୍ଷଣେ ରଥରୁ ଓହ୍ଲାଇ ପଡ଼ି ତାଙ୍କୁ ସାନ୍ତ୍ୱନା ଦେବା ସହିତ ତାଙ୍କ ପାଦରେ ପଶିଯାଇଥିବା କଣ୍ଟାଟିକୁ କାଢ଼ିଦେଲେ ଏବଂ ନିଜ ପୀତ ଉତ୍ତରୀୟ କାନିକୁ ଚିରିଦେଇ କ୍ଷତସ୍ଥାନରେ ଗୁଡ଼ାଇ ବାନ୍ଧିଦେଲେ। ତା'ପରେ ସେ ସୁଦାମାକୁ ଅତି ଆଦରରେ ରଥରେ ବସାଇ ଆଶ୍ରମକୁ ନେଇ ଆସିଲେ। ପ୍ରଭୁଙ୍କ ସ୍ନେହର ଅଭୁଲା ଛାପ ପଡ଼ିଲା ସୁଦାମା ହୃଦୟରେ। ସେହି ଦନଠାରୁ ସ୍ଥାପିତ ହେଲା କୃଷ୍ଣ ଓ ସୁଦାମାଙ୍କ ମଧ୍ୟରେ ମୈତ୍ରୀ। କାୟାଛାୟା ପରି ଦୁହେଁ ଦୁହିଙ୍କ ଠାରୁ ସବୁଦିନ ପାଇଁ ଅଭିନ୍ନ ହୋଇଗଲେ। ତାଙ୍କର ମୈତ୍ରୀ ଏତେ ନିବିଡ଼ ହୋଇଗଲା ଯେ ଜଣେ ଅନ୍ୟ ଜଣକୁ କ୍ଷଣକ ପାଇଁ ମଧ୍ୟ ଛାଡ଼ି ରହି ପାରିଲେ ନାହିଁ।

ଗୁରୁକୁଳ ବିଦ୍ୟାଳୟର ନିୟମ ଥିଲା ଯେ ପାଠ ଭୁଲି ଯାଉଥିବା ବିଦ୍ୟାର୍ଥୀଙ୍କୁ କାଠ ଆଣିବା ପାଇଁ ଜଙ୍ଗଲକୁ ପଠାଯିବ। ଏହାଦ୍ୱାରା ଏକ ସଙ୍ଗେ ଦୁଇଟି କାର୍ଯ୍ୟ ହୋଇଯାଉଥାଏ। ଦଣ୍ଡକୁ ଦଣ୍ଡ ମିଳିଯାଏ ଏବଂ ସେବାକୁ ସେବା ମଧ୍ୟ ହୋଇଯାଏ। ଦିନେ ସୁଦାମା ଘୋଷିଥିବା ପାଠ ଭୁଲିଗଲେ। ତେଣୁ ଗୁରୁ ତାଙ୍କୁ ଦଣ୍ଡସ୍ୱରୂପ ବଣରୁ କାଠ ଆଣିବା ପାଇଁ ପଠାଇଲେ। ମିତ୍ର ବିୟୋଗ ଭଗବାନଙ୍କୁ ସହ୍ୟ ହେଲା ନାହିଁ। ସେ ଅଧୀର ହୋଇ ଭାବିଲେ—''ସୁଦାମାକୁ ଛାଡ଼ି ମୁଁ କେମିତି ରହିବି?

ମୋ ମିତ୍ର ଏକାକୀ ବଣକୁ ଯିବ କେମିତି? ସେ ଯଦି ଡରିଯାଏ କାହାକୁ ଡାକିବ? ବଣରେ କିଏ ତାକୁ ସାହା ହେବ?'' ଏଭଳି ଭାବି ସୁଦାମା ସଙ୍ଗରେ ଯିବା ନିମନ୍ତେ ସର୍ବଜ୍ଞ ଶ୍ରୀକୃଷ୍ଣ ମଧ୍ୟ ପାଠ ଭୁଲିଗଲେ । ଗୁରୁ ତାଙ୍କୁ ମଧ୍ୟ ସେଇ ଦଣ୍ଡ ଦେଲେ । ଏଥର ଶ୍ରୀକୃଷ୍ଣଙ୍କ ଆନନ୍ଦ କହିଲେ ନ ସରେ । ଦୁଇ ମିତ୍ର ମନ ଆନନ୍ଦରେ କାଠ ଆଣିବା ପାଇଁ ବଣରେ ପହଞ୍ଚିଲେ । ଦୈବଯୋଗକୁ କିଛି ସମୟ ମଧ୍ୟରେ ପ୍ରବଳ ବର୍ଷା-ପବନ ମାଡ଼ି ଆସିଲା । ଚ୍ୱରି ଦିଗ ଅନ୍ଧକାର ହୋଇଗଲା । ପ୍ରବଳ ବର୍ଷା ସହିତ ମଝିରେ ମଝିରେ ଘଡ଼ଘଡ଼ି ଚଡ଼ଚଡ଼ି ମଧ୍ୟ ମାରୁଥାଏ । ସୁଦାମା ଭାବିଲା— ମୋ ମିତ୍ର ଶ୍ରୀକୃଷ୍ଣଙ୍କ ଅଙ୍ଗ କେତେ ସୁକୋମଳ । ଏ ବର୍ଷାମାଡ଼କୁ ସେ କିପରି ସହିବେ! ତେଣୁ ମିତ୍ରକୁ ରକ୍ଷା କରିବା ପାଇଁ ସେ ଶ୍ରୀକୃଷ୍ଣଙ୍କୁ କୋଳରେ ଜାବୁଡ଼ି ଧରିଲା । ନିଜର ଦେହ ଦ୍ୱାରା ଓ ଚ୍ୱରିଆଡୁ ବସ୍ତ୍ର ଘୋଡ଼ାଇ ସେ ମିତ୍ରକୁ ବର୍ଷା ଦାଉରୁ ରକ୍ଷା କରିବା ପାଇଁ ଆପ୍ରାଣ ଚେଷ୍ଟା କଲା । ନିଜେ କଷ୍ଟ ସହି ମଧ୍ୟ ମିତ୍ରକୁ କଷ୍ଟରୁ ରକ୍ଷା କଲା ।

ଏଣେ ଗୁରୁଦେବ ଅତି ଚିନ୍ତିତ ହୋଇପଡ଼ିଲେ । ଶିଷ୍ୟଙ୍କ ଆସିବାରେ ବିଳମ୍ବ ହେବା ଦେଖି ବର୍ଷା ଟିକିଏ ଥମିଯିବା ପରେ ସେମାନଙ୍କୁ ଖୋଜିବା ପାଇଁ ବାହାରିଲେ । ଘୋର ଅରଣ୍ୟରେ ଦୁଇ ମିତ୍ର ପରସ୍ପରକୁ ଆଲିଙ୍ଗନ କରିଥିବା ଦେଖି ଗୁରୁଦେବ ଅତି ପ୍ରସନ୍ନ ହେଲେ । ଦୁହିଙ୍କୁ ଆଶୀର୍ବାଦ ଦେଇ କହିଲେ— ''ତୁମର ମୈତ୍ରୀ ଯୁଗେ ଯୁଗେ ଅକ୍ଷୁଣ୍ଣ ରହିବ । ପ୍ରକୃତରେ ମିତ୍ର ଏମିତି ହେବା ଦରକାର । ବିପତ୍ତି ବେଳେ ପରସ୍ପରକୁ ସହାୟତା କରିବା ମିତ୍ରର ପ୍ରଥମ କର୍ତ୍ତବ୍ୟ ।'' ଗୁରୁଙ୍କ ଆଶୀର୍ବାଦରୁ କୃଷ୍ଣ-ସୁଦାମାଙ୍କ ବନ୍ଧୁତ୍ୱ ଏଭଳି ଅକ୍ଷୁଣ୍ଣ ହୋଇଗଲା ଯେ ଆଜି ମଧ୍ୟ ଲୋକେ ବନ୍ଧୁତ୍ୱର ଘନିଷ୍ଠତା ସୂଚିତ କରିବା ପାଇଁ କୃଷ୍ଣ-ସୁଦାମାଙ୍କ ଉପମା ଦିଅନ୍ତି । କେବଳ ଗୋଟିଏ ଜନ୍ମରେ ନୁହେଁ, ଜନ୍ମ-ଜନ୍ମାନ୍ତରେ ମଧ୍ୟ ଦୁହେଁ ଦୁହିଙ୍କୁ ଭଲ ପାଇଲେ ।

ସେହିପରି ଆଉ ଦିନେ ଦୁଇ ମିତ୍ର ସମିଧ ଆଣିବା ପାଇଁ ବଣକୁ ଯିବାକୁ ବାହାରି ଥାଆନ୍ତି । ବାତ୍ସଲ୍ୟମୟୀ ଗୁରୁମାଆ ସୁଦାମାର ଉତ୍ତରୀ କାନିରେ ମୁଠାଏ ଭଜା ଚଣା ବାନ୍ଧିଦେଇ କହିଲେ—''ସୁଦାମା! ଭୋକ ଲାଗିଲେ ଦୁହେଁ ବାଣ୍ଟି ଖାଇବ ।'' ସେ ଦୁହେଁ ବଣରେ ଯାଇ ପହଞ୍ଚିଛନ୍ତି କି ନାହିଁ, ହଠାତ୍ କୁଆଡୁ କଳାହାଣ୍ଡିଆ ମେଘ ଘୋଟି ଆସିଲା । ବର୍ଷା ସାଙ୍ଗକୁ ଖୁବ୍ ଜୋରରେ ଥଣ୍ଡା ପବନ ମଧ୍ୟ ବହୁଥାଏ । ଦୁଇ ମିତ୍ର ଦୁଇଟି ଗଛ ମୂଳେ ବସି ବର୍ଷା ବନ୍ଦ ହେବାକୁ ଅପେକ୍ଷା

କରିଥାନ୍ତି । ଇତି ମଧ୍ୟରେ ସୁଦାମାକୁ ପ୍ରବଳ ଭୋକ ଲାଗିଲା । ଗୁରୁମାଆ ଦେଇଥିବା ସବୁଯାକ ଚଣା ତା' ପାଖରେ ଥିଲା । ତେଣୁ ସେ ଧୀରେ ଧୀରେ ଖାଉ ଖାଉ ନିଜ ଭାଗ ସହିତ କୃଷ୍ଣଙ୍କର ଭାଗକୁ ମଧ୍ୟ ଖାଇଗଲା । ଚଣା ଚ୍ୱେବେଇବାର କଡ଼ କଡ଼ ଶବ୍ଦ ଶୁଣି କୃଷ୍ଣ ପଚାରିଲେ—''ସୁଦାମା ଚଣା ଖାଉଛ କି? କଡ଼ କଡ଼ ଶୁଭୁଛି ଯେ?'' ସୁଦାମା କଥାକୁ ବୁଲେଇ କହିଲା—''ନାଇଁ କୃଷ୍ଣ! ମୁଁ ଥଣ୍ଡା ସହି ପାରୁନି ତ, ଦାନ୍ତକୁ ଦାନ୍ତ ବାଡ଼େଇ ହେବାରୁ ଏମିତି ଶୁଭୁଛି ।'' ଭଗବାନ ସବୁ ଜାଣି ମଧ୍ୟ ନୀରବ ରହିଲେ । ବର୍ଷା ବନ୍ଦ ହେବାପରେ ଦୁଇ ମିତ୍ର ଦୁହିଙ୍କୁ କୋଳ କରି ଆନନ୍ଦିତ ହେଲେ । ଶ୍ରୀକୃଷ୍ଣ ତାଙ୍କ ଭାଗର ଚଣା ମାଗିବାରୁ ସୁଦାମା ଲାଜରେ ମଥା ନୁଆଁଇ କହିଲା—''କୃଷ୍ଣ! ମୁଁ ଭୋକ ସହି ନ ପାରି ଖାଉ ଖାଉ ତୁମ ଭାଗର ଚଣା ମଧ୍ୟ ଖାଇଦେଲି ।'' ଶ୍ରୀକୃଷ୍ଣ ବିନୋଦରେ କହିଲେ—''ମିତ୍ର! ତୁମେ ଏ କ'ଣ କଲ! ତୁମେ ଜଣ ଭୁଲିଗଲ ଯେ ଅନ୍ୟର ଭାଗ ଖାଉଥିବା ଲୋକକୁ ଦାରିଦ୍ର୍ୟ ଦୁଃଖ ଭୋଗିବାକୁ ପଡ଼େ ବୋଲି!'' ସୁଦାମା କହିଲା—''କୃଷ୍ଣ! କଣ କରିବି? ସେତେବେଳେ ମୋର ବିବେକ କାମ କଲା ନାହିଁ । ଭୋକରେ ବ୍ୟାକୁଳ ହୋଇ ମୁଁ ହିତାହିତ ଜ୍ଞାନ ହରାଇ ବସିଲି । ମୁଁ ମୋ ଭାଗ ଚଣା ଖାଇ ତୁମ ଭାଗ ବି ଖାଇଗଲି ଏବଂ ତୁମକୁ ମିଛ ମଧ୍ୟ କହିଦେଲି । ମୋ ମନ୍ଦ କପାଳ ମୋତେ ଏମିତି କୁକର୍ମ ଆଡ଼କୁ ଟାଣି ନେଲା । କୃଷ୍ଣ! ଦରିଦ୍ର ହେବାକୁ ମୋର ଚିନ୍ତା ନାହିଁ, କିନ୍ତୁ ମୋର ଏତିକି ପ୍ରାର୍ଥନା ଯେ ଦାରିଦ୍ର୍ୟ ଦୁଃଖରେ ମଧ୍ୟ ଯେପରି ମୁଁ ତୁମକୁ ଭୁଲି ନ ଯାଏଁ, ମୋ ଉପରେ ଏତିକି ଦୟା କର!'' ମିତ୍ରର ଦୈନ୍ୟ ବଚନ ଶୁଣି ଶ୍ରୀକୃଷ୍ଣଙ୍କ ହୃଦୟ ଦ୍ରବିତ ହୋଇଗଲା । ସେ ସୁଦାମାକୁ ନିବିଡ଼ ଭାବରେ ଆଲିଙ୍ଗନ କଲେ ।

ଏହିଭଳି ଘନିଷ୍ଠ ମିତ୍ରତା ମଧ୍ୟରେ ଗୁରୁକୁଳର ବିଦ୍ୟାର୍ଥୀ ଜୀବନ କଟିଗଲା । ସମସ୍ତ ବେଦ, ବେଦାନ୍ତ, ଶାସ୍ତ୍ର, ଉପନିଷଦ ଓ ଚଉଷଠି କଳା ଅଧ୍ୟୟନ କରିସାରି କୃଷ୍ଣ ନିଜ ଜନ୍ମଭୂମି ମଥୁରା ଫେରି ଗଲେ । ସୁଦାମା ମଧ୍ୟ ବିଦ୍ୟାଧ୍ୟୟନ ସାରି ଘରକୁ ଫେରି ଗୃହସ୍ଥାଶ୍ରମ ସ୍ୱୀକାର କଲେ । ଇତିମଧ୍ୟରେ ବହୁ ବର୍ଷ ବିତିଗଲା । ସୁଦାମା ନିସ୍ପୃହ ବ୍ରାହ୍ମଣ । ଭକ୍ତି ହିଁ ଥିଲା ତାଙ୍କ ଜୀବନର ସର୍ବସ୍ୱ । ପ୍ରାରବ୍ଧବଶତଃ ତାଙ୍କ ଜୀବନ ଦାରିଦ୍ର୍ୟ ମଧ୍ୟରେ ଅତିବାହିତ ହେଲା । ଗୃହ ଉପକରଣ କହିଲେ ଭଙ୍ଗା କୁଡ଼ିଆଟିଏ, ଭଙ୍ଗାତୁଟା ବାସନ କୁସନ କେତେ ଖଣ୍ଡ ଏବଂ ଲଜ୍ୟା ନିବାରଣ ପାଇଁ ଅଳ୍ପ କେତେ ଖଣ୍ଡ ପୁରୁଣା ଛିଣ୍ଡା ଲୁଗାପଟା । ହେଲେ ସୁଦାମାଙ୍କ ମନରେ ସେଥିପାଇଁ ଦୁଃଖ ନ ଥିଲା । ପ୍ରାରବ୍ଧ ଅନୁସାରେ ଯାହା କିଛି ସହଜରେ ମିଳିଯାଉଥିଲା

ତାହାକୁ ଭଗବାନଙ୍କୁ ନିବେଦିତ କରି ଗ୍ରହଣ କରୁଥିଲେ ଏବଂ ସେତିକିରେ ମନରେ ସନ୍ତୋଷ କରୁଥିଲେ । ମାଗିବା ତାଙ୍କ ସ୍ୱଭାବରେ ନ ଥିଲା । ତାଙ୍କର ପତିବ୍ରତା ସ୍ତ୍ରୀ ଆଜିକାଲିର ଆଧୁନିକ ଯୁଗର ନାରୀ ତ ନ ଥିଲେ ଯେ ସ୍ୱାମୀଙ୍କୁ ପ୍ରତିଦିନ ଅନ୍ୟଠାରୁ ଦେଖି ନିଜର ନୂଆ ନୂଆ ଆବଶ୍ୟକତା ପୂରଣ କରିବାକୁ ବାଧ୍ୟ କରିବେ । ସେ ସ୍ୱାମୀଙ୍କର ସୁଖଦୁଃଖରେ ସହଭାଗୀ ହୋଇ ଚଳୁଥିଲେ । ଅନେକ ଥର ଉପବାସ ରହିବାକୁ ପଡୁଥିବାରୁ ଭକ୍ତ ଦମ୍ପତିଙ୍କ ଦେହରେ ଅସ୍ଥିକଙ୍କାଳ ଗୋଟି ଗୋଟି କରି ସ୍ପଷ୍ଟ ଦେଖାଯାଉଥିଲା ।

ସୁଦାମା ସ୍ୱୟଂ ବିଶ୍ୱବିମୋହନ ଶ୍ୟାମସୁନ୍ଦରଙ୍କ ସଙ୍ଗରେ ପାଠ ପଢ଼ିଥିଲେ, ଖେଳିଥିଲେ, ତାଙ୍କ ସଙ୍ଗରେ ଗୁରୁଙ୍କ ପାଇଁ ସମିଧ, ପୁଷ୍ପ ପ୍ରଭୃତି ଆଣିବା ପାଇଁ ବଣକୁ ଯାଇଥିଲେ । ତାଙ୍କର ରୂପ, ଗୁଣ ଓ ଉଦାରତା ସୁଦାମାଙ୍କ ଚିତ୍ତରେ ଅଲିଭା ଚିତ୍ର ପରି ଆଙ୍କି ହୋଇଯାଇଥିଲା । ବେଳେ ବେଳେ ସେ ବାଲ୍ୟକାଳର ସେହି ସଖାଙ୍କ ବିଷୟରେ ସ୍ତ୍ରୀକୁ ମଧ୍ୟ କହନ୍ତି । କିନ୍ତୁ ଦୁଃଖ ଦାରିଦ୍ର୍ୟର ଦୁର୍ଦ୍ଦିନରେ ମଧ୍ୟ କେବେ ସେହି ଦମ୍ପତିଙ୍କ ମନରେ ତାଙ୍କ ଠାରୁ କିଛି ମାଗିବାକୁ ଇଚ୍ଛା ଜାତ ହୋଇ ନ ଥିଲା । ମାତ୍ର ଭଗବାନ ଯଦି କିଛି ଦେବା ନିମନ୍ତେ କାହା ମନରେ କାମନା ଉତ୍ପନ୍ନ କରି ଦିଅନ୍ତି, ତାଙ୍କୁ କିଏ ବା ଅଟକାଇ ପାରିବ?

ଆଜି ଲୀଳାମୟ ଭଗବାନଙ୍କୁ କିଛି ନୂଆ ଲୀଳା କରିବାର ଅଛି, ଅରଣ୍ୟ ମଧ୍ୟରେ ଅଜ୍ଞାତରେ ଫୁଟିଥିବା ଦିବ୍ୟ ପୁଷ୍ପଟିର ମନମୋହକ ସୁଗନ୍ଧକୁ ସାରା ଜଗତ ଆଗରେ ବିସ୍ତାରିତ କରିବାର ଅଛି । ତେଣୁ ଭଗବାନ ଶ୍ରୀକୃଷ୍ଣ ଛଦ୍ମ ବ୍ରାହ୍ମଣ ବେଶରେ ଭିକ୍ଷାଟନ କରି ଆସି ପହଞ୍ଚିଲେ ସୁଦାମାଙ୍କ ଦ୍ୱାରଦେଶରେ । ସେତେବେଳକୁ ସୁଦାମା ଘରେ ନ ଥାନ୍ତି । **'ଭବତୀ ଭିକ୍ଷାଂ ଦେହୀ'** କହିବାରୁ ଗୃହିଣୀ ସୁଶୀଳା ଘରୁ ବାହାରି ଆସିଲା । ଭିକ୍ଷୁ ବ୍ରାହ୍ମଣଙ୍କୁ ଖାଲି ହାତରେ ଫେରାଇ ଦେବାକୁ ଇଚ୍ଛା ନ ଥିଲେ ବି ସେ ନିରୁପାୟ । ସଂଭ୍ରମରେ ତା'ର ମଥା ନଇଁଗଲା । ସେ ଅବନତ ମସ୍ତକରେ ଭିକ୍ଷା ଦେବାକୁ ନିଜର ଅସାମର୍ଥ୍ୟ ପ୍ରକାଶ କଲା । ଛଦ୍ମବେଶୀ ବ୍ରାହ୍ମଣ ତାହାର କାରଣ ପଚ୍ଚରିବାରୁ ସେ ନିଜର ଦାରିଦ୍ର୍ୟ କାହାଣୀ କହି ଚ୍ଚଲିଲା । ଭଗବାନ ସମବେଦନା ବ୍ୟକ୍ତ କରି ତାକୁ କହିଲେ—''ତୁମ ସ୍ୱାମୀ ପରା ଦ୍ୱାରିକାନାଥଙ୍କର ମିତ୍ର! ଥରେ ତୁମେ ତାଙ୍କୁ ତାଙ୍କ ନିକଟକୁ ପଠାଉ ନାହଁ କାହିଁକି?'' ଏତିକି କହି ଭିକ୍ଷୁ ବେଶଧାରୀ ଭଗବାନ ଚ୍ଚଲିଗଲେ । ପତିପରାୟଣା ସୁଶୀଳା ମନକୁ ବ୍ରାହ୍ମଣଙ୍କ କଥାଟି ବେଶ୍ ପାଇଲା । ସେ ସ୍ୱାମୀଙ୍କୁ ତାଙ୍କର ସେହି

ବାଲ୍ୟସଖା ତ୍ରିଭୁବନର ସ୍ୱାମୀ ଲକ୍ଷ୍ମୀପତି ଦ୍ୱାରକାନାଥ ଶ୍ରୀକୃଷ୍ଣଙ୍କ ପାଖକୁ ଯିବାକୁ ପ୍ରେରିତ କଲେ। ସେ ନିଜର କ୍ଷୁଧାକୁ ତ ସହିଯିବେ, କିନ୍ତୁ ଏତେ ବଡ଼ ଧର୍ମାତ୍ମା ସ୍ୱାମୀ ବାରମ୍ବାର ଉପବାସରେ ରହିବା ଆଜି ତାଙ୍କୁ ସହ୍ୟ ହେଉ ନାହିଁ। ତାଙ୍କ ଦୁର୍ବଳ ଦେହକୁ ଗ୍ରହି ହେଉ ନାହିଁ। ପତିପତ୍ନୀ ଦୁହେଁ କେତେ ଦିନ ହେଲା ଉପବାସରେ ଅଛନ୍ତି। କିନ୍ତୁ ଆଜି ସୁଶୀଳା ସାହସ ବାନ୍ଧିଛି କିଛି କହିବାକୁ। ସେ ବିନମ୍ର ଭାବରେ ସ୍ୱାମୀଙ୍କୁ କହିଲା—"ସ୍ୱାମୀ! ତୁମେ ତ କେତେ ଥର କହିଛ ଯେ ତୁମର ବାଲ୍ୟସଖା ଓ ମିତ୍ର ଶ୍ରୀକୃଷ୍ଣ ହେଉଛନ୍ତି ବ୍ରାହ୍ମଣଙ୍କର ପରମ ଭକ୍ତ, ସାକ୍ଷାତ୍ ଲକ୍ଷ୍ମୀପତି ଓ ଶରଣାଗତବତ୍ସଳ। ତୁମେ ଥରେ ତାଙ୍କ ପାଖକୁ ଯାଉ ନାହଁ କାହିଁକି? ସେ ଯେତେବେଳେ ଜାଣିବେ ଯେ ତୁମେ ଗୃହସ୍ଥ ଏବଂ ନିର୍ଦ୍ଧନତା ହେତୁ ଦୁଃଖକଷ୍ଟରେ କାଳାତିପାତ କରୁଛ, ସେ ନିଶ୍ଚୟ ପ୍ରଚୁର ମାତ୍ରାରେ ଧନ ଦେବେ। ଆମର ଉଦରକଷ୍ଟ ମେଣ୍ଟିଯିବ। ଦ୍ୱାରକାଧୀଶ ପ୍ରଭୁ ତ ତାଙ୍କ ଶରଣାଗତଙ୍କ ନିକଟରେ ସ୍ୱୟଂ ନିଜକୁ ମଧ୍ୟ ଅର୍ପଣ କରିଦିଅନ୍ତି, ପୁଣି ଧନ ଦେବା ତାଙ୍କ ପକ୍ଷରେ କେଉଁ ବଡ଼ କଥା ଅବା!"

ସୁଶୀଳା କଥା ଶୁଣି ସୁଦାମାଙ୍କର ଗୁରୁକୁଳ କଥା ମନେ ପଡ଼ିଗଲା। ତାଙ୍କ ନେତ୍ରରୁ ଆନନ୍ଦାଶ୍ରୁ ଝରି ଆସିଲା। ସେ କହିଲେ—"ପ୍ରିୟେ! ତୁମେ ଏ କ'ଣ କହୁଛ? ମୁଁ କିଛି ମାଗିବା ଆଶାରେ ଯିବି କୃଷ୍ଣଙ୍କ ନିକଟକୁ! ନା, ଏହା କଦାପି ସମ୍ଭବ ନୁହେଁ। ଅବଶ୍ୟ ସେ ମୋର ପିଲା ଦିନର ମିତ୍ର, କିନ୍ତୁ ଆମର ମୈତ୍ରୀ ସମ୍ବନ୍ଧ ଅନ୍ୟମାନଙ୍କ ଭଳି ଲୌକିକ ବ୍ୟବହାର ପାଇଁ ନୁହେଁ। ତୁମେ ଜାଣିଛ କି ନାହିଁ, ଶାସ୍ତ୍ରରେ ଅଛି ଯେ ବିପଦ କାଳରେ ବନ୍ଧୁଙ୍କ ଘରକୁ ଯିବା କଥା ନୁହେଁ।"

ଶୁଶୀଳା କହିଲା—"ସ୍ୱାମୀ! ଅବଶ୍ୟ ମୁଁ ଜାଣୁଛି ଯେ ତୁମ ମନରେ ଧନ ପାଇଁ ତିଳେମାତ୍ର ଇଚ୍ଛା ନାହିଁ, କିନ୍ତୁ ଆମର ଗୁଜୁରାଣ କିପରି ଚଳିବ? ତେଣୁ ତୁମେ ଦ୍ୱାରକା ଯିବାକୁ ମନା କର ନାହିଁ।"

ସୁଦାମା ମନେ ମନେ ଭାବିଲେ, ବିଗ୍ରୀ ଭୋକର ଦାଉ ସହି ନ ପାରି ବ୍ୟାକୁଳ ହୋଇଗଲାଣି। ସେଥିପାଇଁ ମୋତେ ବାଧ୍ୟ କରି ଦ୍ୱାରକା ପଠାଉଛି। ସେ କହିଲେ, "ଆରେ ପାଗିଳୀ, ବ୍ରାହ୍ମଣର ଧନରେ ବା କି କାମ? ଯଦି କହିବୁ, ମୁଁ ପଛେ ଭିକ୍ଷା ମାଗି ଖାଇବା ପାଇଁ କିଛି ନେଇ ଆସିବାକୁ ପୁଣି ଚେଷ୍ଟା କରିବି; କିନ୍ତୁ ଧନ ପାଇଁ ଦ୍ୱାରକା ଯିବାଟା ମୋତେ ଭଲ ଲାଗୁ ନାହିଁ। ଆମ ପକ୍ଷେ ତ ଭଗବାନଙ୍କୁ ଭଜି ଭଜି ସନ୍ତୋଷପୂର୍ବକ ଜୀବନ କାଟିବା ଉଚିତ।

ଏହାକୁ ହିଁ ସୁଖ ଭାବିବା ଉଚିତ।''

ପୁଣି ଥରେ ସୁଶୀଳା କହିଲା—''ସ୍ୱାମୀ! ତୁମର କ'ଣ କେବେ କୃଷ୍ଣଙ୍କୁ ଥରେ ଦେଖି ଆସିବା ପାଇଁ ମନ ହେଉ ନାହିଁ। ମାଗିବା ପାଇଁ ନ ହେଲେ ବି ଥରେ ଯାଇ ତାଙ୍କୁ ଦେଖାକରି ଆସ ତ!''

ଛଦ୍ମ ବ୍ରାହ୍ମଣ ବେଶରେ ଦ୍ୱାରକାନାଥ ଆଜି ସୁଶୀଳାକୁ ପାଠ ପଢ଼ାଇ ଦେଇ ଯାଇଛନ୍ତି, ତେଣୁ ସେ ଆଜି ନଛୋଡ଼ବନ୍ଧା। ସେ ଚାହୁଁଥିଲା, ଅନ୍ତତଃ ତା' ସ୍ୱାମୀ ଥରେ ଶ୍ରୀକୃଷ୍ଣଙ୍କ ସଙ୍ଗେ ଭେଟ କରିବାକୁ ଯାଆନ୍ତୁ। ଧନ ମାଗିବାକୁ ସିନା ସୁଦାମାଙ୍କର ଇଚ୍ଛା ନ ଥିଲା, କିନ୍ତୁ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବାକୁ ତ ଇଚ୍ଛା ଥିଲା। ସେ ଭାବିଲେ, ତାଙ୍କ ଗୁରୁକୁଳର ବନ୍ଧୁ ଶ୍ରୀକୃଷ୍ଣ ବୋଧହୁଏ ଆଜି ପତ୍ନୀ ହୃଦୟରେ ପ୍ରେରଣା ଦେଇଛନ୍ତି। ନ ହେଲେ ଆଜି ସେ ଏତେ ବାଧ୍ୟ କରନ୍ତା କାହିଁକି। ଠିକ୍ ଅଛି, ଏଇ ସୁଯୋଗରେ ଶ୍ରୀକୃଷ୍ଣଙ୍କର ଦର୍ଶନ ମିଳିଯିବ। ଏଭଳି ଭାବି ସେ ସହମତ ହୋଇଗଲେ। କିନ୍ତୁ ମିତ୍ର ପାଖକୁ ଖାଲି ହାତରେ ଯିବେ କେମିତି! ତାଙ୍କ ମନ କଥା ଜାଣି ସୁଶୀଳା ପଡ଼ିଶା ଘରୁ ଚାରି ମୁଠା ଚୁଡ଼ା ମାଗି ଆଣିଲା। ଖଣ୍ଡେ କନାରେ ବାନ୍ଧି ଧରାଇ ଦେଲା। ଚୁଡ଼ା ପୁଟୁଳିଟି କାନ୍ଧରେ ପକାଇ ସୁଦାମା ବାହାରି ପଡ଼ିଲେ ଦ୍ୱାରକା ଅଭିମୁଖେ।

ଦ୍ୱାରକା କାହିଁ କେତେ ଦୂର। ତଥାପି ଶ୍ରୀକୃଷ୍ଣଙ୍କ କଥା ଭାବି ଭାବି ଖରା ଓ କଷ୍ଟ ସହି ଖାଲି ପାଦରେ ଚାଲିଥାନ୍ତି। ଚାଲି ଚାଲି କିଛି ଦିନ ଭିତରେ ଦ୍ୱାରକାରେ ପହଞ୍ଚିଗଲେ। ଦ୍ୱାରକାର ଐଶ୍ୱର୍ଯ୍ୟ ଓ ଶୋଭା ଦେଖି ତାଙ୍କର ମନ ମୋହିତ ହୋଇଯାଉଥାଏ। ନଭଶ୍ଚୁମ୍ବୀ ଅଟ୍ଟାଳିକା, ସ୍ଫଟିକ ମଣିରେ ନିର୍ମିତ ବଡ଼ ବଡ଼ ଭବନ, ଗମ୍ବୁଜ ଉପରେ ସ୍ୱର୍ଣ୍ଣକଳଶ ରଖାଯାଇଛି, ପ୍ରାସାଦର କାନ୍ଥରେ ରତ୍ନଖଚିତ କାରୁକାର୍ଯ୍ୟ। ନଗରର ଶୋଭା ସ୍ୱର୍ଗପୁରକୁ ବି ଜିଣିଯିବା ପରି ଲାଗୁଥାଏ। ଭାବିଲେ, ଏଭଳି ସୁରମ୍ୟ ନଗରୀରେ ମୋ ଭଳି ଛିଣ୍ଡା ଲୁଗା ପିନ୍ଧା ନରକଙ୍କାଳ ପରି ଦିଶୁଥିବା ଦରିଦ୍ରର ସ୍ଥାନ କାହିଁ? ମୋତେ ଦେଖି କେହି କିଛି ଭାବିବେ ନାହିଁ ତ? ତଥାପି ମନରେ ସାହସ ବାନ୍ଧି କୌଣସି ନାଗରିକକୁ ଶ୍ରୀକୃଷ୍ଣଙ୍କର ଭବନ କେଉଁଠି ବୋଲି ପଚାରିଲେ ଏବଂ ତା'ର ସଙ୍କେତ ଅନୁସାରେ ଯାଇ ଭବନର ଦ୍ୱାରଦେଶରେ ପହଞ୍ଚିଗଲେ। ସେଠାରେ ତାଙ୍କୁ ଲାଗିଲା ସତେ ଅବା ସେ ବ୍ରହ୍ମାନନ୍ଦ-ସାଗରରେ ବୁଡୁଛନ୍ତି ଓ ଉଠୁଛନ୍ତି। ଅବଶ୍ୟ ଏଭଳି କାଙ୍ଗାଳ, ଦରିଦ୍ରକୁ ଦେଖି ଦ୍ୱାରପାଳକୁ ଆଶ୍ଚର୍ଯ୍ୟ ଲାଗିଲା ନାହିଁ; କାରଣ ସେ ଜାଣିଥିଲା ଯେ ତା'ର

ସ୍ୱାମୀ ଏଭଳି ଦୀନଜନଙ୍କର ରକ୍ଷକ ଅଟନ୍ତି। କିନ୍ତୁ ସୁଦାମା ନିଜକୁ ତାଙ୍କର ମିତ୍ର ବୋଲି କହିବାରୁ ସେ ଆଶ୍ଚର୍ଯ୍ୟରେ ପଡ଼ିଗଲା। ସେ ଭାବିଲା, ଐଶ୍ୱର୍ଯ୍ୟଶାଳୀ ଦେବରାଜ ଇନ୍ଦ୍ର ମଧ୍ୟ ଯେଉଁଠି ନିଜକୁ ଅତି ସଙ୍କୋଚରେ ଭଗବାନଙ୍କର 'ଦାସ' ବୋଲି କହିଥାନ୍ତି, ସେଠି ଏ ଦରିଦ୍ର କାଙ୍ଗାଳ ବ୍ରାହ୍ମଣ ନିଃସଙ୍କୋଚରେ ତାଙ୍କର 'ମିତ୍ର' ବୋଲି କହୁଛି କିପରି? ତଥାପି ସେ ବ୍ରାହ୍ମଣ ବୋଲି ଜାଣି ସୁଦାମାଙ୍କୁ ପ୍ରଣାମ କଲା ଏବଂ ନିୟମାନୁସାରେ ଅପେକ୍ଷା କରିବାକୁ କହି ପ୍ରଭୁଙ୍କ ଅନୁମତି ନେବାକୁ ଭିତରକୁ ଗଲା।

ତ୍ରିଭୁବନର ସ୍ୱାମୀ ସର୍ବେଶ୍ୱର ଯାଦବେନ୍ଦ୍ର ନିଜ ଭବନରେ ପଲଙ୍କ ଉପରେ ବସିଥାନ୍ତି। ରୁକ୍ମିଣୀ ନିଜ ହାତରେ ରତ୍ନବେଷ୍ଟଲଗା ବିଚଣା ଧରି ପଙ୍ଖା କରୁଥାନ୍ତି। ଦ୍ୱାରପାଳ ଯାଇ ପ୍ରଣାମପୂର୍ବକ କହିଲା—"ପ୍ରଭୁ! ଜଣେ ଅତ୍ୟନ୍ତ ଦୁର୍ବଳ ବ୍ରାହ୍ମଣ ଆପଣଙ୍କ ସଙ୍ଗେ ଭେଟିବାକୁ ଆସିଛନ୍ତି, ମଳିମକନ୍ଦରା ଛିଣ୍ଡା ଲୁଗା ଖଣ୍ଡେ ପିନ୍ଧିଛନ୍ତି। ତାଙ୍କ ମୁଣ୍ଡରେ ଟୋପି ନାହିଁ, କାନ୍ଧରେ ଉତ୍ତରୀ ନାହିଁ କି ପାଦରେ ପାଦୁକା ନାହିଁ। ଦେହର ହାଡ଼ ଗୋଟି ଗୋଟି ଗଣି ହୋଇଯାଉଛି। ସେ ଅତି କାଙ୍ଗାଳ ପରି ଆଶ୍ଚର୍ଯ୍ୟରେ ଚାରିଆଡ଼କୁ ଚାହୁଁଛନ୍ତି। ଲାଗୁଛି, ସେ ଆମ ଦ୍ୱାରିକାର ଲୋକ ନୁହନ୍ତି, ଅନ୍ୟ କେଉଁଠାରୁ ଆସିଛନ୍ତି। ସେ ନିଜକୁ ଆପଣଙ୍କର ମିତ୍ର ବୋଲି କହୁଛନ୍ତି। ନାମ ପଚାରିବାରୁ ସେ 'ସୁଦାମା' ବୋଲି କହିଲେ।"

'ସୁଦାମା' ନାମଟି ଶୁଣିବାମାତ୍ରେ ପ୍ରଭୁ ଧଡ଼ପଡ଼ ହୋଇ ଉଠି ପଡ଼ିଲେ। ତାଙ୍କର ଆଉ ବାହ୍ୟଜ୍ଞାନ ରହିଲା ନାହିଁ। ତରବରରେ ମୁକୁଟ ନ ପିନ୍ଧି, ପାଦରେ ପାଦୁକା ନ ପିନ୍ଧି ସିଧା ଦୌଡ଼ିଗଲେ ରାଜଦ୍ୱାରକୁ। ଉତ୍ତରୀୟ ବସ୍ତ୍ର ଖସି ତଳେ ପଡ଼ିଯିବା କଥା ବି ତାଙ୍କୁ ଜଣାପଡ଼ିଲା ନାହିଁ। ପ୍ରଭୁଙ୍କର ବ୍ୟଗ୍ରତା ଦେଖି ସମସ୍ତେ ଚକିତ ହୋଇଗଲେ। କିଏ ଏହି ବ୍ୟକ୍ତି ଯାହାଙ୍କ ପାଇଁ ସ୍ୱୟଂ ଦ୍ୱାରିକାଧିପତି ଅସ୍ତବ୍ୟସ୍ତ ହୋଇ ଧାଉଁଛନ୍ତି! ସମସ୍ତେ ତାଟକା ହୋଇ ଚାହିଁ ରହିଲେ ପ୍ରଭୁଙ୍କୁ।

ଆହା! ଧନ୍ୟ ପ୍ରଭୁ! ଧନ୍ୟ ତୁମର ଭକ୍ତବତ୍ସଳତା! ପ୍ରଭୁଙ୍କ ମନରେ ତାଙ୍କ ନିଷ୍କିଞ୍ଚନ ଭକ୍ତଙ୍କ ପ୍ରତି କେତେ ଆଦର ଯେ! ସେ ତ ଆଜିକାଲିକାର ରାଜମଦ ଓ ଐଶ୍ୱର୍ଯ୍ୟ-ମଦରେ ପ୍ରମତ୍ତ ମାନ-ମର୍ଯ୍ୟାଦାଲୋଭୀ ରାଜା ନୁହନ୍ତି ଯେ ରାଜପରିପାଟୀ ବିନା ପଦାକୁ ଗୋଡ଼ କାଢ଼ିବେ ନାହିଁ। ଏଇଭଳି ପରିସ୍ଥିତିରେ ଥରେ ରାଜମଦରେ ପ୍ରମତ୍ତ ଦ୍ରୁପଦ ତାଙ୍କର ବାଲ୍ୟସଖା ଦ୍ରୋଣାଚାର୍ଯ୍ୟଙ୍କୁ ଅପମାନିତ କରିଦେଇଥିଲେ। କିନ୍ତୁ ଏ ତ ଭାବଗ୍ରାହୀ ଭଗବାନ। ଆଜି ତାଙ୍କର ପ୍ରାଣପ୍ରିୟ ସଖା ଆସିଛନ୍ତି, ସର୍ବସ୍ୱ

ବିନିମୟରେ ତାଙ୍କୁ ଅନନ୍ୟଭାବରେ ଭଜୁଥିବା ଭକ୍ତ ଆସିଛନ୍ତି । ସଖାଙ୍କ ଦରିଦ୍ର ବେଶ, ତାଙ୍କ ମଇଳା ଛିଣ୍ଡା ଲୁଗା କଣ ତାଙ୍କ ସଙ୍ଗେ ଭେଟିବାରେ ବାଧା ସୃଷ୍ଟି କରିପାରିବ! ଏହା ତ ଦୁଇ ଅନାବିଳ ନିର୍ମଳ ହୃଦୟର ମିଳନ, ନିଶ୍ଛଳ ପ୍ରୀତିର ରୀତି । ସତେ ଯେପରି ବହୁଦିନରୁ ହଜିଯାଇଥିବା ଅମୂଲ୍ୟ ନିଧି ମିଳିଗଲା ପ୍ରଭୁଙ୍କୁ । ସେ ତତ୍‌କ୍ଷଣାତ୍ ଦୁଇବାହୁ ପ୍ରସାରିତ କରି ନିବିଡ଼ ଆଲିଙ୍ଗନ ମୁଦ୍ରାରେ ଗ୍ରପିଧରିଲେ ସୁଦାମାଙ୍କୁ ନିଜ ଶ୍ରୀବତ୍ସାଙ୍କିତ ବକ୍ଷରେ । ଉଭୟଙ୍କ ନେତ୍ରରୁ ଝରିଆସିଲା ଅବଦମିତ ଅଶ୍ରୁର ପ୍ରବାହ । ସମସ୍ତେ ବିସ୍ମିତ । ଭାବିଲେ, ''ଏ କେଉଁ ମିତ୍ର, ଯାହାଙ୍କୁ ପ୍ରଭୁ ଏତେ ଆପଣାର କରି ନିବିଡ଼ ଆଲିଙ୍ଗନ କରୁଛନ୍ତି!'' ଦୁହିଁଙ୍କର ନେତ୍ରରୁ ଝରି ଆସୁଥାଏ ଲୋତକର ଧାର! କେହି କିଛି କହିବା ଓ ଶୁଣିବାକୁ ଅକ୍ଷମ ହୋଇ ଯାଇଥାନ୍ତି । ଦୁହେଁ ଭାବସମୁଦ୍ରର ଅତଳ ଗର୍ଭରେ ନିମଗ୍ନ ।

ଏହିପରି ବହୁ ସମୟ ବିତିଗଲା । ଅନେକ ଦିନ ପରେ ଦୁଇ ଘନିଷ୍ଠ ମିତ୍ରଙ୍କର ମିଳନ ଘଟିଛି! ଦୁହିଁଙ୍କର ଭାବସମାଧି ଭଙ୍ଗ ହେଉ ନ ଥାଏ । ହଠାତ୍ ଶ୍ରୀକୃଷ୍ଣଙ୍କର ସୁଦାମା କଥା ଓ ସୁଦାମାଙ୍କର ଶ୍ରୀକୃଷ୍ଣଙ୍କ କଥା ମନେ ପଡ଼ିଗଲା । ଶ୍ରୀକୃଷ୍ଣ ଭାବିଲେ, ତାଙ୍କର ଅଙ୍ଗ ଅତି ବଳିଷ୍ଠ ଓ ସୁଦାମା କୃଶକାୟ । ତେଣୁ ତାଙ୍କର ନିବିଡ଼ ଆଲିଙ୍ଗନ ସୁଦାମାଙ୍କୁ କଷ୍ଟ ଦେଉଥିବ । ଅପରପକ୍ଷେ ସୁଦାମା ଭାବିଲେ, ନରକଙ୍କାଳ ସମ ତାଙ୍କର ଅସ୍ଥିପଞ୍ଜରା ଶ୍ରୀକୃଷ୍ଣଙ୍କ ସୁକୋମଳ ଶ୍ରୀଅଙ୍ଗକୁ କଷ୍ଟ ଦେଉଥିବ । ବନ୍ଧୁଙ୍କୁ କଷ୍ଟ ଦେବା ଉଚିତ ନୁହେଁ । ଏହିଭଳି ଜଣେ ଅନ୍ୟର କଷ୍ଟ ଚିନ୍ତା କରି ବନ୍ଧ ବାହୁପାଶକୁ ଟିକିଏ କୋହଳ କଲେ ।

କିଛି ସମୟପରେ ଉଦ୍ଧବ ପ୍ରଭୃତି ସଚେତ କରାଇବାରୁ ଭଗବାନ ସୁଦାମାଙ୍କୁ ନିଜ ଉଆସକୁ ନେଇଗଲେ । ତାଙ୍କୁ ନିଜ ଦିବ୍ୟ ରତ୍ନପଲଙ୍କ ଉପରେ ବସାଇଲେ । ନିଜ ହାତରେ ତାଙ୍କର ପାଦପ୍ରକ୍ଷାଳନ କଲେ । ''ଆହା! ମୋ ମିତ୍ରଙ୍କ ପାଦ କେତେ ଫାଟିଯାଇଛି । ହାୟ! କେତେ ନିର୍ଦ୍ଧନତାର କଷ୍ଟ ଭୋଗୁଛନ୍ତି ଏ ବୀତସ୍ପୃହ ବ୍ରାହ୍ମଣ ।'' ଏହା ଭାବି ପ୍ରଭୁଙ୍କ ନେତ୍ରରୁ ଅଶ୍ରୁଧାରା ବହିବାକୁ ଲାଗିଲା । ଜଳପାତ୍ରର ଜଳ ସେମିତି ରହିଗଲା, ଅଥଚ ସେ ପବିତ୍ର ନେତ୍ରଜଳରେ ତାଙ୍କର ପାଦ ଧୋଇଦେଲେ । ପ୍ରଭୁଙ୍କ ଭାବବିହ୍ୱଳତା ଦେଖି ରୁକ୍ମିଣୀ ନିଜ ସୁକୋମଳ ହାତରେ ବିପ୍ର ସୁଦାମାଙ୍କ ପାଦ ଧୋଇଦେଲେ । ଯେଉଁ ମହାଲକ୍ଷ୍ମୀଙ୍କର କୃପା କଟାକ୍ଷ ଟିକେ ଲାଭ କରିବାକୁ ସମଗ୍ର ଜଗତ ଲାଳାୟିତ, ସେ ଆଜି ଏ କାଙ୍ଗାଳ ବ୍ରାହ୍ମଣଙ୍କର ପାଦ ପ୍ରକ୍ଷାଳନ କରୁଛନ୍ତି! ଦ୍ୱାରକାନାଥ ବ୍ରାହ୍ମଣଙ୍କର ପାଦୋଦକ ନିଜ ମସ୍ତକରେ ଛିଞ୍ଚିଲେ ଏବଂ

ସମଗ୍ର ମହଲରେ ଛିଞ୍ଚାଇଲେ। ଏହାପରେ ସୁଦାମାଙ୍କୁ ଦିବ୍ୟ ଗନ୍ଧଯୁକ୍ତ ଚନ୍ଦନ, ଦୂବ, ଅଗୁରୁ, କୁଙ୍କୁମ, ଧୂପ, ପୁଷ୍ପ, ମାଳା ପ୍ରଭୃତିରେ ବିଧିପୂର୍ବକ ପୂଜା କଲେ। ନାନା ପ୍ରକାର ସ୍ୱାଦିଷ୍ଟ ଅନ୍ନବ୍ୟଞ୍ଜନରେ ତାଙ୍କୁ ତୃପ୍ତ କଲେ। ଆଚମନ ପରେ ତାମ୍ବୁଲ ଦେଲେ। ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଭାବୁଥାନ୍ତି, ଏ ନିଶ୍ଚୟ ବଡ଼ ଭାଗ୍ୟବାନ୍; ନ ହେଲେ ସ୍ୱୟଂ ସକଳ ଐଶ୍ୱର୍ଯ୍ୟର ସ୍ୱାମୀ ତାଙ୍କୁ ନିଜ ବଡ଼ଭାଇ ବଳରାମଙ୍କ ପରି ଏତେ ସମ୍ମାନ ଦିଅନ୍ତେ କାହିଁକି!

ଭୋଜନ ସାରି ସୁଦାମା ବସିଲେ, ଭଗବାନଙ୍କର ପାଟରାଣୀମାନେ ସ୍ୱହସ୍ତରେ ବ୍ରାହ୍ମଣଙ୍କୁ ବିଞ୍ଚୁଥାନ୍ତି। ଶ୍ରୀକୃଷ୍ଣ ତାଙ୍କ ପାଖରେ ବସି ତାଙ୍କ ହାତ ଧରି ଘରର ଭଲମନ୍ଦ ପଚାରୁଥାନ୍ତି। ତାଙ୍କ ମାନସପଟରେ ଭାସିଆସିଲା, ଗୁରୁକୁଳର ମଧୁର ସ୍ମୃତି। ଦୁଇ ମିତ୍ର ମନ ଖୋଲି କଥାବାର୍ତ୍ତା ହେଲେ। ଗୁରୁଙ୍କ ପାଇଁ ସମିଧ ଆଣିବାକୁ ଯାଇ କିପରି ପ୍ରବଳ ବର୍ଷା ପବନ ହେତୁ ଘରକୁ ଫେରି ପାରି ନ ଥିଲେ। ବନରେ ଭୋକ ଉପବାସରେ ରାତ୍ରି ବିତାଇବାକୁ ପଡ଼ିଥିଲା। ସକାଳ ହେବାରୁ ଗୁରୁ ସେ ଦୁହିଁଙ୍କୁ ଖୋଜିବାକୁ ଆସି କିପରି ଆଶୀର୍ବାଦ ଦେଇଥିଲେ, ସେସବୁ କଥା ବର୍ଣ୍ଣନା କରୁ କରୁ ସତେ ଯେପରି ଅତୀତକୁ ଚାଲିଗଲେ। ଶ୍ରୀକୃଷ୍ଣ କହିଲେ—"ମିତ୍ର! ସତରେ ଗୁରୁଙ୍କର ଆମ ପ୍ରତି କେତେ କରୁଣା ଥିଲା! ଗୁରୁଙ୍କ ନିକଟରେ ନିଜର ସବୁ କିଛି ଅର୍ପଣ କରି ନିଷ୍କପଟ ଭାବରେ ତାଙ୍କର ସେବା କରୁଥିବା ଶିଷ୍ୟ ପାଇଁ କୌଣସି ଜିନିଷ ଅପ୍ରାପ୍ୟ ରହେ ନାହିଁ।" ସୁଦାମା କହିଲେ—"ଦେବଦେବ! ଆପଣ ତ ଜଗଦ୍‌ଗୁରୁ, ସକଳ ବିଦ୍ୟାର ଆଧାର। ବିଦ୍ୟାଧ୍ୟୟନ ପାଇଁ ଗୁରୁକୁଳ ଯିବା ତ ଆପଣଙ୍କର ଲୀଳାମାତ୍ର ଥିଲା। ଯାହା ଫଳରେ ମୋତେ ଆପଣଙ୍କ ସାଥୀ ହେବାର ସୌଭାଗ୍ୟ ମିଳିଲା।"

ଭଗବାନଙ୍କୁ ସୁଦାମାଙ୍କ ଉକ୍ତିରେ ଐଶ୍ୱର୍ଯ୍ୟର ଝଲକ ଅନୁଭବ ହେଲା। ଯେଉଁଠି ମିତ୍ରତାର ଏତେ ମଧୁର ସମ୍ପର୍କ, ସେଠି ଭଗବଦୀୟ ସ୍ତୁତି ତାଙ୍କୁ ମୈତ୍ରୀ ଆନନ୍ଦରେ ବାଧା ଦେଲାପରି ଲାଗିଲା। ସେ ହସି ହସି କଥା ବଦଳାଇ ଦେଇ କହିଲେ—"ଆଉ ମିତ୍ର! ଛାଡ଼ ସେ କଥା। ଗୁରୁକୁଳରୁ ମୁଁ ତ ଚାଲିଆସିଲି। ତୁମେ ବି ଘରକୁ ଗଲ। ତୁମକୁ ତୁମର ମନ ଅନୁରୂପ ପତ୍ନୀ ନିଶ୍ଚୟ ମିଳିଥିବ। କିନ୍ତୁ ମୋତେ ଲାଗୁଛି ଘରସଂସାରରେ ତୁମେ ଆସକ୍ତ ହୋଇ ନାହଁ। ସୁଖସ୍ୱାଚ୍ଛନ୍ଦ୍ୟରୁ ଦୂରେଇ ରହିଛ।" ଏତିକିରେ ସୁଦାମାଙ୍କ ବୁଡ଼ା ପୁଟୁଳିଟି ଉପରେ ଶ୍ରୀକୃଷ୍ଣଙ୍କ ଆଖି ପଡ଼ିଗଲା। ସେ ପଚାରିଲେ—"ତୁମେ ସେ ପୁଟୁଳିରେ କଣ ଲୁଚାଇଛ? ଭାଉଜ

ମୋ ପାଇଁ ନିଶ୍ଚୟ କିଛି ଭଲ ଜିନିଷ ଦେଇଥିବେ।'' ସୁଦାମା ସଙ୍କୋଚରେ ପୁଟୁଳିଟିକୁ ଦେଉ ନ ଥାନ୍ତି। ଅତୁଳ ଐଶ୍ୱର୍ଯ୍ୟର ଅଧିପତିଙ୍କୁ କିପରି ବା ଦେବେ ସାଧାରଣ ଚୁଡ଼ା କେଇ ମୁଠା। ମୁଣ୍ଡ ତଳକୁ କରି ଚୁପ୍ ରହିଗଲେ।

ସର୍ବାନ୍ତର୍ଯ୍ୟାମୀ ସୁଦାମାଙ୍କ ମନ କଥା ଜାଣିଗଲେ। ସେ ଭାବିଲେ, ଏ ମୋର ନିଷ୍କାମ ଭକ୍ତ। କେବେ ବି ଏ ମୋତେ ଧନପ୍ରାପ୍ତି ଇଚ୍ଛାରେ ଭକ୍ତି କରି ନାହାନ୍ତି କି ଏହାଙ୍କ ମନରେ କିଛି କାମନା ନାହିଁ; କିନ୍ତୁ ପତିପ୍ରାଣା ସ୍ତ୍ରୀର ପ୍ରେରଣାରେ ଏଠାକୁ ଆସିଛନ୍ତି, ତେଣୁ ଆଜି ଏହାଙ୍କର ଦାରିଦ୍ର୍ୟ ଦୂର କରିବି। ଏହାଙ୍କୁ ମୁଁ ଏଭଳି ଦୁର୍ଲଭ ସମ୍ପତ୍ତି ଦେବି, ଯାହା ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲଭ। ସେ ହସି ହସି କହିଲେ, ''ସଖା! ଆରେ ଲୁଗ୍‌ଉଛ କଣ? ଦିଅ ନା! ମୋତେ ମୋ ପ୍ରିୟ ଭକ୍ତଙ୍କର ଅତି ସାଧାରଣ ଉପହାର ମଧ୍ୟ ବହୁତ ଭଲ ଲାଗେ; ଆଉ ଅଭକ୍ତଙ୍କର ବିପୁଳ ଉପହାର ମଧ୍ୟ ମୋତେ ସନ୍ତୁଷ୍ଟ କରିପାରେ ନାହିଁ।'' ଏପରି କହି ଭଗବାନ ସୁଦାମାଙ୍କ ହାତରୁ ଟାଣି ନେଇଗଲେ ପୁଟୁଳିଟି। ପୁରୁଣା ପାମ୍ଭରା କନାର ପୁଟୁଳିଟି ପ୍ରୀତିପୂର୍ଣ୍ଣ ଟଣାଓଟରାରେ ଫାଟିଗଲା। ଚୁଡ଼ା ତଳେ ବୁଣି ହୋଇଗଲା। ଆହା! ଭଗବାନଙ୍କ ପ୍ରୀତିର ରୀତି ତ ଦେଖ! କେତେ ଦିନର ଭୋକିଲା କାଙ୍ଗାଳ କୋଟି ନିଧି ପାଇଲା ପରି ଭକ୍ତର ସେହି ଉପହାରକୁ ଭଗବାନ ତରବର ହୋଇ ତୋଳି ପୂରାଇଲେ ନିଜର ପୀତାମ୍ବର କାନିରେ। ସେଥିରୁ ମୁଠାଏ ପାଟିରେ ପୂରାଇ ଦେଇ କହିଲେ—ମିତ୍ର! ଏ ଉପହାର ମୋତେ ଆଜି ବହୁତ ଆନନ୍ଦ ଦେଲା। ଏ ଚୁଡ଼ା ମୁଠାକ ତ ମୋ ସମେତ ସମଗ୍ର ବିଶ୍ୱକୁ ତୃପ୍ତ କରିଦେବାକୁ ସକ୍ଷମ—

**ନନ୍ୱେତଦୁପନୀତଂ ମେ ପରମପ୍ରୀଣନଂ ସଖେ।**
**ତର୍ପୟନ୍ତ୍ୟଙ୍ଗଂ ମାଂ ବିଶ୍ୱମେତେ ପୃଥୁକତଣ୍ଡୁଳାଃ॥**

(ଶ୍ରୀମଭା. ୧୦।୮୧।୯)

''ବହୁତ ମଧୁର, ଅତି ସ୍ୱାଦିଷ୍ଟ। ଏଭଳି ଅମୃତତୁଲ୍ୟ ପଦାର୍ଥ ମୋତେ କେବେ କେଉଁଠି ମିଳି ନ ଥିଲା।'' ଏହିପରି ପ୍ରଶଂସା କରି କରି ଶ୍ୟାମସୁନ୍ଦର ଦ୍ୱିତୀୟ ମୁଠା ପାଟିକୁ ନେଲାବେଳକୁ ରୁକ୍ମିଣୀ ତାଙ୍କର ହାତ ଧରିପକାଇ କହିଲେ—''ସ୍ୱାମୀ! ସେତିକି ଥାଉ। ସେଇ ଗୋଟିଏ ମୁଠାରେ ଇହଲୋକ ଓ ପରଲୋକର ସମସ୍ତ ପ୍ରକାର ସମ୍ପତ୍ତି ଏହି ବିପ୍ରବରଙ୍କୁ ମିଳିଗଲାଣି। ଏ ଦ୍ୱିତୀୟ ମୁଠାରେ ଆଉ କ'ଣ ଦେବାକୁ ଗ୍ୱହାନ୍ତି? ସବୁ କିଛି ଦେଇଦେଲେ ମୁଁ କେଉଁଠି ରହିବି? ଏବେ ମୋ ପ୍ରତି ତ ଦୟା କରନ୍ତୁ!''

ଏହା ବ୍ୟତୀତ ରୁକ୍ମଣୀ ସୁଦାମା ବ୍ରାହ୍ମଣଙ୍କ ପ୍ରୀତି ରମାଣିତ ଉପହାର ଦ୍ରବ୍ୟର ସ୍ୱାଦ ଜାଣିବାକୁ ଚାହୁଁଥିଲେ। ତେଣୁ ସେ ଭଗବାନଙ୍କ ହାତ ଧରି ପକାଇ କହିଲେ— ''ହେ ପ୍ରାଣବଲ୍ଲଭ! କୁହାଯାଇଛି ଯେ ସ୍ୱାଦିଷ୍ଟ ଦ୍ରବ୍ୟ ଏକାକୀ ଖାଇବ ନାହିଁ— **'ଏକଃ ସ୍ୱାଦୁ ନ ଭୁଞ୍ଜୀତ'**। ତେଣୁ ମିତ୍ରଙ୍କର ପ୍ରୀତିପୂର୍ଣ୍ଣ ଦ୍ରବ୍ୟକୁ ତୁମେ ଏକାକୀ ଖାଇଯିବା ଉଚିତ ନୁହେଁ। ଆମ ରାଣୀମାନଙ୍କ ପାଇଁ ବି କିଛି ରଖ।'' ରୁକ୍ମିଣୀଙ୍କ ଗୂଢ଼ ମନୋଭାବ ଜାଣିପାରି ଭଗବାନ ଚୁଡ଼ା ରଖି ଦେଇ ମୃଦୁ ମୃଦୁ ହସିବାକୁ ଲାଗିଲେ।

ସୁଦାମା ସେଠାରେ କିଛି ଦିନ ରହିଲେ। ଶ୍ରୀକୃଷ୍ଣ ତଥା ତାଙ୍କର ପାଟରାଣୀମାନେ ତାଙ୍କର ଖୁବ୍ ସେବା-ସତ୍କାର କଲେ। ଶେଷରେ ଘରକୁ ଫେରିବା ପାଇଁ ଶ୍ରୀକୃଷ୍ଣଙ୍କ ଠାରୁ ବିଦାୟ ମାଗିଲେ। ସଖା ଶ୍ରୀକୃଷ୍ଣ କିଛି ବାଟ ତାଙ୍କୁ ବଳେଇ ଦେବାକୁ ଆସିଲେ। ସୁଦାମା ଫେରିବା ବାଟରେ ଭଗବାନଙ୍କ ଉଦାରତା, ମହାନତା ଓ ସେବା ସତ୍କାର କଥା ଭାବୁଥାନ୍ତି। ତାଙ୍କ ମନରେ ତିଳେମାତ୍ର ବି ଧନ ମାଗିବାକୁ ଇଚ୍ଛା ନ ଥିଲା। 'ନ ମାଗିଲେ ମଧ୍ୟ ସେ କିଛି ନିଶ୍ଚୟ ଦେବେ' ଏ ଇଚ୍ଛା ମଧ୍ୟ ତାଙ୍କ ମନରେ ଉଠି ନ ଥିଲା। ପୁଣି ଶ୍ରୀକୃଷ୍ଣ ମଧ୍ୟ କିଛି ତାଙ୍କୁ ପ୍ରତ୍ୟକ୍ଷରେ ଦେଲେ ନାହିଁ। ସେ ଭାବିଲେ—''ଭଲ ହେଲା। ଧନ ହିଁ ସକଳ ଅନର୍ଥର ମୂଳ। ଧନ ପାଇଗଲେ ମଣିଷର ବିବେକ ଜ୍ଞାନ ଅପହୃତ ହୋଇଯାଏ ଓ ସେ ଭଗବାନଙ୍କୁ ଭୁଲିଯାଏ। ମୋ ସଖା କେତେ ଦୟାଳୁ! ମୁଁ ଆଜନ୍ମ ଦରିଦ୍ର ଧନ ପାଇ କାଳେ ତାଙ୍କୁ ଭୁଲିଯିବି, ସେଥିପାଇଁ ସେ ମୋତେ କିଛି ହେଲେ ଦେଲେ ନାହିଁ।''

ତାଙ୍କ ମନରେ ବାରମ୍ବାର ଶ୍ରୀକୃଷ୍ଣଙ୍କର ଅପୂର୍ବ ବ୍ରାହ୍ମଣଭକ୍ତି ଓ ପରିଚର୍ଯ୍ୟା କଥା ଭାସି ଆସୁଥାଏ। ସେ ଭାବୁଥାନ୍ତି—''ସତରେ ପ୍ରଭୁ କେଡ଼େ ବ୍ରହ୍ମଣ୍ୟଦେବ। କାହିଁ ମୋ ଭଳି ଗରିବ କାଙ୍ଗାଳ ପାପୀ ବ୍ରାହ୍ମଣ ଆଉ କାହିଁ ଲକ୍ଷ୍ମୀପତି ପୁଣ୍ୟଚରିତ୍ର ପ୍ରଭୁ! କିନ୍ତୁ ମୋତେ ସେ କିଭଳି ଉଲ୍ଲସିତ ହୋଇ ନିବିଡ଼ ଆଲିଙ୍ଗନ କଲେ, ନିଜ ପ୍ରାଣପ୍ରିୟାଙ୍କ ପଲଙ୍କ ଉପରେ ବସାଇଲେ, ମୋର ପାଦ ଧୋଇଦେଲେ! ସାକ୍ଷାତ୍ ଲକ୍ଷ୍ମୀଙ୍କ ଅବତାର ରୁକ୍ମିଣୀ ଚାମର ପକାଉଥିଲେ। ସତରେ, ମୋର ପରମ ସୁହୃଦ ଶ୍ରୀକୃଷ୍ଣ କେଡ଼େ ଦୟାଳୁ! ତାଙ୍କର ଚରଣସେବା କଲେ ମଣିଷକୁ ତ୍ରିଭୁବନର ସମ୍ପତ୍ତି, ସକଳ ପ୍ରକାର ସିଦ୍ଧି, ଏପରିକି ମୋକ୍ଷ ମଧ୍ୟ ମିଳିଯାଏ। ତାଙ୍କ ପକ୍ଷେ ଧନ ଦେବା କେତେ ସରଳ କଥା। ତଥାପି ସେ ମୋର ପରମ କଲ୍ୟାଣକୁ ଦୃଷ୍ଟିରେ ରଖି ଧନ ଦେଲେ ନାହିଁ। ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ।''

ଆହା! କି ନିଷ୍କାମ ଭକ୍ତି ସୁଦାମାଙ୍କର। ଘରେ ଭୋକିଲା ସ୍ତ୍ରୀକୁ ଛାଡ଼ି

ଆସିଛନ୍ତି; ଅନ୍ନ-ବସ୍ତ୍ର ବୋଲି ଘରେ କିଛି ନାହିଁ; ବିପ୍ରୁରୀ ସହଧର୍ମିଣୀକୁ ଯାଇ କି ଉତ୍ତର ଦେବେ, ସେ କଥା ଚିନ୍ତା ନାହିଁ; ରାଜରାଜେଶ୍ୱରଙ୍କୁ ଭେଟି ମଧ୍ୟ ଖାଲି ହାତରେ ଫେରୁଛନ୍ତି, ସେଥିପାଇଁ ମଧ୍ୟ ଟିକିଏ ଗ୍ଲାନି ନାହିଁ। ଲୋକେ ତ ଧନ ପାଇଁ ଭଗବାନଙ୍କୁ ଉପାସନା କରନ୍ତି ଏବଂ ଧନ ନ ମିଳିଲେ ଭଗବାନଙ୍କୁ ଗାଳିମନ୍ଦ ଦେଇ ପୂଜା ବନ୍ଦ କରିଦିଅନ୍ତି। ମାତ୍ର ସୁଦାମାଙ୍କ ପରି ନିଷ୍କାମ ଭକ୍ତ କେବଳ ଭଗବାନଙ୍କୁ ଚାହାନ୍ତି।

ସୁଦାମାଙ୍କର କାମନା ନ ଥିଲେ ମଧ୍ୟ ପତ୍ନୀ ତାଙ୍କୁ ଧନ ଇଚ୍ଛାରେ ଭଗବାନଙ୍କ ପାଖକୁ ପ୍ରେରିତ କରିଥିଲେ। ଅନ୍ତର୍ଯାମୀ ଭଗବାନ ଏ କଥା ଜାଣିଥିଲେ। ତେଣୁ ଭକ୍ତବାଞ୍ଛାକଳ୍ପତରୁ ବିଶ୍ୱକର୍ମାଙ୍କୁ ପଠାଇ ତାଙ୍କ ଗ୍ରାମକୁ ଦ୍ୱାରକାପୁରୀ ପରି ଭବ୍ୟ ଓ ସୁନ୍ଦର କରିଦେଲେ। ରାତାରାତି ତାଙ୍କର ଭଙ୍ଗା କୁଡ଼ିଆଘରଟି ଦେବଦୁର୍ଲଭ ଐଶ୍ୱର୍ଯ୍ୟପୂର୍ଣ୍ଣ ମଣିମୟ ଭବନରେ ପରିଣତ ହୋଇଗଲା। ସୁଦାମା ଫେରି ଦେଖନ୍ତି ତ ତାଙ୍କ ଗ୍ରାମ କୁଆଡ଼େ ଉଭେଇ ଯାଇଛି। ସେହି ସ୍ଥାନରେ ଅପୂର୍ବ ଦିବ୍ୟ ସୁଦାମାପୁରୀ ଝିଲମିଲ କରୁଛି। ସେ ବିଶ୍ୱାସ କରିପାରିଲେ ନାହିଁ। ସେ ଭାବିଲେ, ମୁଁ ସ୍ୱପ୍ନ ଦେଖୁ ନାହିଁ ତ? ମୁଁ କଣ ବାଟ ଭୁଲି ଆଉ କେଉଁଠିକୁ ଆସିଗଲି? ମୋ ଘର କୁଆଡ଼େ ଗଲା? ଇତିମଧ୍ୟରେ କେତେଜଣ ସେବକ ତାଙ୍କୁ ସ୍ୱାଗତ କରିବାକୁ ଆସିଗଲେ। ତାଙ୍କୁ ନେଇ ଦିବ୍ୟ ଭବନରେ ପହଞ୍ଚାଇଲେ। ତାଙ୍କ ପତ୍ନୀ ସ୍ୱର୍ଗର ଦେବୀ ପରି ଦିଶୁଥିଲେ। ସେ ଶହ ଶହ ଦାସୀଙ୍କ ଗହଣରେ ଆସି ସୁଦାମାଙ୍କୁ ନମସ୍କାର କଲେ ଏବଂ ଘର ଭିତରକୁ ପାଛୋଟି ନେଲେ। ସୁଦାମା ପ୍ରଥମେ ତ ବିସ୍ମିତ ହୋଇଗଲେ, ପରେ ସବୁ ରହସ୍ୟ ଜାଣିବା ପରେ ଆନନ୍ଦରେ ଗଦ୍‌ଗଦ ହୋଇଗଲେ। ଭାବବିଭୋର ହୋଇ ସେ କହିଲେ—"ମୋ ସଖା ଉଦାର ଶିରୋମଣି। ତାଙ୍କୁ ମାଗି କେହି ଯେପରି ଲଜ୍ଜା ଅନୁଭବ ନ କରୁ, ସେଥିପାଇଁ ସେ ତା ଅଜାଣତରେ ଲୁଚାଇ ଲୁଚାଇ ବହୁତ କିଛି ଦେଇଦିଅନ୍ତି। ତାକୁ ପୂର୍ଣ୍ଣକାମ କରିଦିଅନ୍ତି। ହେଲେ ମୋର ଏ ସମ୍ପତ୍ତିରେ ପ୍ରୟୋଜନ ନାହିଁ। ଜନ୍ମ ଜନ୍ମ ପର୍ଯ୍ୟନ୍ତ ମୁଁ ସର୍ବଗୁଣାଗାର ଶ୍ରୀକୃଷ୍ଣଙ୍କ ବିଶୁଦ୍ଧ ଭକ୍ତି କରୁଥାଏଁ, ଏହି ମୋର ଅଭୀଷ୍ଟ।"

ସୁଦାମା ଏତେ ଐଶ୍ୱର୍ଯ୍ୟ ପାଇ ମଧ୍ୟ ସେଥିରେ ଅନାସକ୍ତ ପରି ରହିଲେ। ବିଷୟଭୋଗରେ ଚିତ୍ତ ନ ମଜାଇ ସର୍ବଦା ଭଗବଦ୍‌ଭଜନରେ ନିମଗ୍ନ ରହି ସେ ବ୍ରହ୍ମଭାବକୁ ପ୍ରାପ୍ତ ହୋଇଗଲେ।



# ରାଜା ଅମ୍ବରୀଷ

ନଦ-ନଦୀର ଅନନ୍ତ ଜଳରାଶି ସମୁଦ୍ରଗର୍ଭରେ ଏକ ସଙ୍ଗେ ପ୍ରବେଶ କରି ମଧ୍ୟ ଯେପରି ସମୁଦ୍ର ହୃଦୟରେ ଲେଶମାତ୍ର କ୍ଷୋଭ ସୃଷ୍ଟି କରିପାରେ ନାହିଁ, ସେହିପରି ସଂସାରର ସମସ୍ତ ବୈଭବ ଭଗବାନଙ୍କର ଚରଣାଶ୍ରିତ ଭକ୍ତ ମନରେ ଲେଶମାତ୍ର କ୍ଷୋଭ ସୃଷ୍ଟି କରିପାରେ ନାହିଁ। ଏଭଳି ପରମ ଭାଗ୍ୟଶାଳୀ ଭକ୍ତଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ରାଜା ଅମ୍ବରୀଷ। ସେ ସପ୍ତଦ୍ୱୀପବତୀ ପୃଥିବୀର ଏକଚ୍ଛତ୍ର ସମ୍ରାଟ ଥିଲେ ବୋଲି ଯେ ତାଙ୍କୁ ଭାଗ୍ୟଶାଳୀ କୁହାଯାଇଛି, ତା' ନୁହେଁ। ତାଙ୍କ ହୃଦୟରେ ନିବାସ କରିଥିଲା ପ୍ରଭୁଭକ୍ତି। ତେଣୁ ବ୍ୟାସଦେବ ତାଙ୍କ ପାଇଁ 'ମହାଭାଗ' ବିଶେଷଣଟି ପ୍ରୟୋଗ କରି ସେତିକିରେ ସବୁକିଛି କହି ଦେଇଛନ୍ତି। ଅନେକ ଗୁଣର ସୂଚନା ପାଇଁ ଏତିକି କହିଦେବା ଯଥେଷ୍ଟ ହେବ ଯେ ସେ ହୃଦୟରେ ଧାରଣ କରିଥିଲେ ସମସ୍ତ ସଦ୍‌ଗୁଣର ଅଧିପତି ଶ୍ରୀହରିଙ୍କୁ। ଯାହାର ହୃଦୟରେ ପ୍ରଭୁଭକ୍ତି ନିବାସ କରେ, ସମସ୍ତ ସଦ୍‌ଗୁଣ ସହିତ ତା' ହୃଦୟରେ ନିବାସ କରନ୍ତି ସକଳ ଦେବଗଣ।

ସପ୍ତଦ୍ୱୀପବତୀ ପୃଥିବୀର ଏକଚ୍ଛତ୍ର ସମ୍ରାଟ ହୋଇ ମଧ୍ୟ ଭକ୍ତ ଅମ୍ବରୀଷଙ୍କ ମନରେ ଲେଶମାତ୍ର ଅଭିମାନ ନ ଥିଲା। ସେ ଭଲଭାବେ ଜାଣିଥିଲେ ଯେ ସମସ୍ତ ଐଶ୍ୱର୍ଯ୍ୟ ସ୍ୱପ୍ନ ତୁଲ୍ୟ। ପାଣିଫୋଟକା ଭଳି ସବୁକିଛି କ୍ଷଣକ ମଧ୍ୟରେ ଉଭେଇଯିବ। ଯେଉଁ ବୈଭବରେ ବାତୁଳ ହୋଇ ମନୁଷ୍ୟ ନିଜର ହିତାହିତ ଚିନ୍ତା କରିପାରେ ନାହିଁ, ତାହା ତାକୁ ଯେ ନରକକୁ ଟାଣିନେବ, ଏ ରହସ୍ୟ ସେ ବେଶ୍ ବୁଝି ପାରିଥିଲେ। ଭଗବାନ ଶ୍ରୀକୃଷ୍ଣଙ୍କ ଚରଣରେ ଥିଲା ତାଙ୍କର ଅନନ୍ୟ ଭକ୍ତି। ତା' ସହିତ ପ୍ରଭୁଙ୍କ ପ୍ରଣତଜନଙ୍କ ପ୍ରତି ତାଙ୍କ ହୃଦୟରେ ସ୍ଥାନ ପାଇଥିଲା ଅଗାଧ ଶ୍ରଦ୍ଧାଭାବନା।

ଏ କଥାଟି ସେ ଯଥାର୍ଥରେ ବୁଝି ପାରିଥିଲେ ଯେ ସଂସାରର ସମସ୍ତ ଐଶ୍ୱର୍ଯ୍ୟ, ଏପରିକି ଦେହ, ମନ, ପ୍ରାଣ ପ୍ରଭୃତି ସବୁକିଛି ପ୍ରଭୁଙ୍କର ଏବଂ ପ୍ରଭୁସେବାରେ ବିନିଯୋଗ ହେଲେ ଏସବୁ ଧନ୍ୟ ହୋଇଥାଏ। ସେ ତାଙ୍କ ମନରୂପୀ ଭ୍ରମରକୁ ଶ୍ରୀକୃଷ୍ଣଙ୍କ ପାଦପଦ୍ମ-ମକରନ୍ଦ ପାନରେ ବିନିଯୋଗ କରିଥିଲେ। ତାଙ୍କ ବାକ୍‌ଇନ୍ଦ୍ରିୟ ଲାଗି ରହିଥିଲା ପ୍ରଭୁଙ୍କ ଗୁଣଗାନରେ। ପ୍ରଭୁଙ୍କ ମନ୍ଦିର ମାର୍ଜନାରେ ହସ୍ତ ଦ୍ୱୟ ନିବିଷ୍ଟ ହୋଇ ନିଜକୁ ସାର୍ଥକ କରୁଥିଲେ। ପ୍ରଭୁଙ୍କର ମଙ୍ଗଳମୟୀ କଥା ଶ୍ରବଣ

କରି କର୍ଣ୍ଣ ସଫଳ ହେଉଥିଲା। ତାଙ୍କ ନେତ୍ରରେ ଦିବାନିଶି ନାଚୁଥିଲା ପ୍ରଭୁଙ୍କର ମୁନିଜନ ମୋହିନୀ ରୂପଲାବଣ୍ୟ। ଭକ୍ତଜନଙ୍କ ଅଙ୍ଗ-ସେବାର ସୌଭାଗ୍ୟ ଲାଭ କରି ତାଙ୍କର ଅଙ୍ଗ ଅଙ୍ଗରେ ପ୍ରସ୍ଫୁଟିତ ହେଉଥିଲା ଅପାର ପୁଲକ। ପ୍ରଭୁଙ୍କ ଚରଣରେ ସମର୍ପିତ ତୁଳସୀର ଦିବ୍ୟ ସୁବାସ ଆଘ୍ରାଣ କରି ନାସିକା ଏବଂ ପ୍ରଭୁଙ୍କ ନୈବେଦ୍ୟ ସେବନ କରି ରସନା ଧନ୍ୟ ହେଉଥିଲା। ପ୍ରଭୁଙ୍କ ତୀର୍ଥ ଭ୍ରମଣରେ ନିଯୁକ୍ତ ଥିଲା ତାଙ୍କ ପାଦଦ୍ୱୟ। ହୃଷୀକେଶଙ୍କ ପାଦାଭିବନ୍ଦନ କରି ସାର୍ଥକ ହେଉଥିଲା ତାଙ୍କର ମଣିମୁକୁଟ ଶୋଭିତ ମସ୍ତକ। ପ୍ରଭୁଙ୍କ ସେବାରେ ପୁଷ୍ପ, ଚନ୍ଦନ ପ୍ରଭୃତି ପୂଜାଦ୍ରବ୍ୟ ନିବେଦନ କରିବା ଥିଲା ତାଙ୍କର ନିତିଦିନିଆ କାର୍ଯ୍ୟ। ସେ କୌଣସି ଭୋଗ୍ୟ ବସ୍ତୁକୁ ନିଜ'ର କାମନା ପୂରଣ ପାଇଁ ଉପଯୋଗ କରୁ ନ ଥିଲେ। ତାଙ୍କ ମନରେ ଏକମାତ୍ର ଅଭିଳାଷ ଥିଲା ଯେ ଯେଉଁ ଭକ୍ତି ଶରଣାଗତ ଭକ୍ତଙ୍କର ଗଣ୍ଠି ଧନ, ସେଭଳି ଅଚଳା ଭକ୍ତି ତାଙ୍କ ହୃଦୟ ସିଂହାସନରେ ବିରାଜମାନ ହେଉ। ସକଳ ପ୍ରାଣୀଙ୍କ ହୃଦୟରେ ଯେ ଭଗବାନ ବିରାଜମାନ, ଏହା ଥିଲା ତାଙ୍କର ଅଟଳ ବିଶ୍ୱାସ। ବ୍ରାହ୍ମଣଙ୍କ ଆଜ୍ଞାନୁସାରେ ନିଜର ଦୈନନ୍ଦିନ କାର୍ଯ୍ୟ ଓ ରାଜକାର୍ଯ୍ୟକୁ ସୁସ୍ଥୁରୂପେ ସମ୍ପାଦନ କରୁଥିଲେ ରାଜା ଅମ୍ବରୀଷ।

ଭୋଗ୍ୟ ସାମଗ୍ରୀର ଅଭାବ କାରଣରୁ ଜଣେ ନିର୍ଦ୍ଧନ ବ୍ୟକ୍ତି ମନରେ ସଂସାରରୁ ବୈରାଗ୍ୟ ଜାତ ହେବା କୌଣସି ବଡ଼ କଥା ନୁହେଁ, କିନ୍ତୁ ସମସ୍ତ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ଥାଇ ମଧ୍ୟ ସେଥିପ୍ରତି ତିଳେମାତ୍ର ଆସକ୍ତ ନ ହେବା ଅସାଧାରଣ ବ୍ୟକ୍ତିତ୍ୱର ପରିଚାୟକ। ଏଭଳି କାର୍ଯ୍ୟ କେବଳ ଜଣେ ଭଗବତ୍‌ବିଶ୍ୱାସୀ ଭକ୍ତ ପକ୍ଷେ ହିଁ ସମ୍ଭବ। ସାମାନ୍ୟ ସମ୍ପତ୍ତି ଓ ଅଧିକାରର ଗର୍ବ ସାଧାରଣ ମନୁଷ୍ୟକୁ ହିଁ ଅନ୍ଧ କରିପାରେ। କିନ୍ତୁ ଯିଏ ସେହି ଅଶରଣଶରଣ ଦୀନଜନ ବାନ୍ଧବ ପ୍ରଭୁଙ୍କ ଅଭୟ ଚରଣର ଆଶ୍ରୟ ଗ୍ରହଣ କରି ତାଙ୍କ ରୂପମାଧୁରୀର ମଧୁପାନରେ ମନରୂପୀ ଭ୍ରମରକୁ ଲଗାଇଦିଏ, ମାୟାର ମାଦକତା ତା' ଉପରେ ପ୍ରଭାବ ପକାଇ ପାରେ ନାହିଁ। ମୋହନଙ୍କ ମୋହିନୀ ବଂଶୀ ଯାହାର ଶୁଷ୍କ ପ୍ରାଣରେ ସଞ୍ଚାର କରିଦିଏ ନବୀନ ଉତ୍ସାହ, ମାୟା ପିଶାଚିନୀର ପ୍ରହେଳିକା ତାକୁ ମୋହିତ କରିବାକୁ କିପରି ବା ସମର୍ଥ ହୋଇ ପାରିବ? ଅମ୍ବରୀଷ ବିବିଧ ସମ୍ପତ୍ତି ଓ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ଭିତରେ ଥାଇ ମଧ୍ୟ ସେଥିପ୍ରତି ବୀତସ୍ପୃହ ଥିଲେ।

ନାଭାଗ ତନୟ ଅମ୍ବରୀଷଙ୍କ ଜୀବନରେ ଏଭଳି ଦିବ୍ୟ ନୈସର୍ଗିକ ଲକ୍ଷଣ ଦେଖାଯିବା ପଛରେ ଗୋଟିଏ ବିଶେଷ କାରଣ ରହିଛି। ଥରେ ରାଜର୍ଷି ନାଭାଗ

ପୁତ୍ରକାମନାରେ ସପତ୍ନୀକ ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରଭୁଙ୍କ ଆରାଧନାରେ ନିମଗ୍ନ ରହିଲେ । ତପସ୍ୟା କାଳ ମଧ୍ୟରେ ଥରେ ଭକ୍ତଦମ୍ପତ୍ତି ରାତ୍ରିରେ ନିଦ୍ରିତ ଥିବାବେଳେ ଭଗବାନ ତାଙ୍କ ଉପରେ ପ୍ରସନ୍ନ ହୋଇ କହିଲେ—"ଅମ୍ବ!" ଦମ୍ପତ୍ତି ଚମକି ପଡ଼ି କହି ଉଠିଲେ—"କାହାର ଏ ମଧୁର ସ୍ୱର ଆମ ଜୀବନରେ ସଞ୍ଚାର କଲା ନବୀନ ଉତ୍ସାହ!" ପ୍ରଭୁ କହିଲେ—"ଈଶ! ମୁଁ ସେହି ଈଶ୍ୱର । ଆଖି ଖୋଲ ଭକ୍ତବର! ମୁଁ ତୁମ ଦୁହିଙ୍କ ଉପରେ ଅତ୍ୟନ୍ତ ପ୍ରୀତ ।" ପ୍ରଭୁଙ୍କ ଅମୃତବର୍ଷୀ ବାଣୀ ଶ୍ରବଣ କରି ସହସା ସେମାନଙ୍କ ନିଦ୍ରା ଭାଙ୍ଗିଗଲା । ନେତ୍ର ଖୋଲି ଦେଖନ୍ତି ତ ତ୍ରିଭୁବନମୋହନ ପ୍ରଭୁ ସମ୍ମୁଖରେ ବିରାଜମାନ । ଅପଲକ ନୟନରେ ପ୍ରଭୁଙ୍କ ରୂପଲାବଣ୍ୟ ଦର୍ଶନ କରି ଭକ୍ତଦମ୍ପତ୍ତିଙ୍କ ହୃଦୟରୁ ପ୍ରସ୍ଫୁରିତ ହେଲା ସ୍ତୁତିର ଅବାଧ ପ୍ରବାହ । ସେ ତାଙ୍କ ଚରଣ ବନ୍ଦନା କରି ତାଙ୍କୁ ପୁତ୍ର ରତ୍ନଟିଏ ମାଗିଲେ । ଭଗବାନ ସ୍ୱୟଂ ଅଂଶରୂପରେ ତାଙ୍କ ପୁତ୍ର ହୋଇଆସିବେ ବୋଲି ବର ପ୍ରଦାନ କରି ସହସା ଅନ୍ତର୍ଦ୍ଧାନ ହୋଇଗଲେ । ଯଥାସମୟରେ ଭଗବାନଙ୍କ ଅଂଶରୁ ପୁତ୍ରରତ୍ନଟିଏ ଭକ୍ତଦମ୍ପତ୍ତିଙ୍କ କୋଳ ମଣ୍ଡନ କଲା । ନିଦ୍ରିତ ଅବସ୍ଥାରେ ଭଗବାନଙ୍କ ଶ୍ରୀମୁଖରୁ ଶୁଣିଥିବା ଶବ୍ଦ ଦୁଇଟିକୁ ସ୍ମରଣ କରି ସେ ପୁତ୍ରଟିର ନାମ ରଖିଲେ—ଅମ୍ବରୀଷ!

ଚନ୍ଦ୍ରକଳା ଭଳି ବଢ଼ି ବଢ଼ି ଅମ୍ବରୀଷ ଧୀରେ ଧୀରେ ତରୁଣ ଅବସ୍ଥାରେ ପଦାର୍ପଣ କଲେ । ପିଲାଟିବେଳୁ ଦେଖାଦେଇଥିଲା ତାଙ୍କ ପାଖରେ ଅଲୌକିକ ଗୁଣ । ସେ ଜଳରେ ପଦ୍ମପତ୍ର ଭଳି ଭୋଗରୁ ନିର୍ଲିପ୍ତ ଥିଲେ ।

ପ୍ରଜାଜନ ମଧ୍ୟ ରାଜା ଅମ୍ବରୀଷଙ୍କ ଭଳି ପ୍ରଜାବତ୍ସଳ ଭକ୍ତ ରାଜାଙ୍କୁ ପାଇ ନିଜକୁ କୃତାର୍ଥ ମଣୁଥାନ୍ତି । ପ୍ରତିଦିନ ରାଜଭବନରେ ଭଗବାନଙ୍କର ପାବନ ଚରିତ୍ର ଚର୍ଚ୍ଚା ହୁଏ । **'ଯଥା ରାଜା ତଥା ପ୍ରଜା'** ନ୍ୟାୟରେ ସକଳ ପ୍ରଜା ପ୍ରଭୁଙ୍କ ଚରିତ୍ର ଶ୍ରବଣ କରିବା ସହିତ ନାମ-ଗୁଣ ସଂକୀର୍ତ୍ତନ କରି ପ୍ରଭୁଙ୍କ ସେବାରେ ସମର୍ପଣ କରିଦେଇଥାନ୍ତି ଜୀବନର ସର୍ବସ୍ୱ । ଅନ୍ୟ କଥା ଚିନ୍ତା କରିବାକୁ କାହା ପାଖରେ ସମୟ ବି ନ ଥାଏ । ସଭିଏଁ ସଂସାର ଜ୍ୱାଳାରେ ସଂତପ୍ତ ନିଜ ନିଜର ମନରୂପୀ ହାତୀକୁ ଭଗବାନଙ୍କ କଥାମୃତରୂପୀ ନଦୀରେ ଅବଗାହନ କରାଇ ଆତ୍ମବିସ୍ମୃତ ହୋଇ ସାରିଥାନ୍ତି । ଭକ୍ତଜନଙ୍କ ଏଭଳି ସ୍ଥିତି ଦେଖି ଭଗବାନଙ୍କ ମାନସରେ ଜାଗରିତ ହେଲା ଭକ୍ତଜନଙ୍କ ଯୋଗ-କ୍ଷେମ ନିର୍ବହନର ଦାୟିତ୍ୱ । ସେ ଭାବିଲେ—"ଭକ୍ତଜନ ତ ମୋ ଭକ୍ତିରେ ତନ୍ମୟ, ତେଣୁ ସେମାନଙ୍କର ସୁରକ୍ଷା ପାଇଁ ମୋତେ ନିଶ୍ଚୟ କୌଣସି ଉପାୟ କରିବାକୁ ହେବ । ମୁଁ ନିଶ୍ଚୟ ମୋ ଭକ୍ତବତ୍ସଳ ବାନାକୁ

ସାର୍ଥକ କରିବି।'' ଭକ୍ତଜନଙ୍କ ଉପରେ ଯେପରି କୌଣସି ବିପତ୍ତି ନ ଆସିବ, ସେଥିପାଇଁ ଭଗବାନ ତାଙ୍କ ଚକ୍ର ସୁଦର୍ଶନକୁ ସେମାନଙ୍କ ସେବାରେ ନିଯୁକ୍ତ କରିଦେଲେ।

କୁସୁମର ସୁବାସକୁ ମନ୍ଦ ସମୀର ଯେପରି ଚତୁର୍ଦିଗରେ ବିଚ୍ଛୁରିତ କରିଦିଏ, ସେହିପରି ଅମ୍ବରୀଷଙ୍କ ଭକ୍ତିରୂପୀ ପୁଷ୍ପର ସୁବାସରେ ସୁବାସିତ ହେଲା ସମ୍ପୂର୍ଣ୍ଣ ପୃଥିବୀ। ଥରେ ଦୁର୍ବାସା ଋଷି ମକର ସଂକ୍ରାନ୍ତି ମହୋତ୍ସବରେ ତୀର୍ଥରାଜ ପ୍ରୟାଗରେ ବୁଡ଼ ଦେବା ପାଇଁ ଯାଇଥାନ୍ତି। ସେଠାରେ ଦେବର୍ଷି ନାରଦଙ୍କ ମୁଖରୁ ସେ ରାଜା ଅମ୍ବରୀଷଙ୍କର ଭୂରି ଭୂରି ପ୍ରଶଂସା ଶୁଣିବାକୁ ପାଇଲେ। ତାଙ୍କୁ ଏହା ଉଚିତ ବୋଧ ହେଲା ନାହିଁ। ମନେ ମନେ ଭାବିଲେ—''ଅମ୍ବରୀଷ ନାରଦଙ୍କ ଶିଷ୍ୟ ହୋଇଥିବାରୁ ସେ ନିଜ ମୁଖରେ ଶିଷ୍ୟର ବଡ଼ିମା ଗାନ କରୁଛନ୍ତି। ଏଭଳି କି ଗୁଣ ଅଛି ଜଣେ ରାଜା ପାଖରେ! ଆମ ଭଳି ଅନେକ ଋଷି-ମହର୍ଷି ଥାଉ ଥାଉ ସେ ଏତେ ପ୍ରଶଂସନୀୟ ହୋଇ ପାରିବ କିପରି?'' ଋଷିଙ୍କ ମନ ଊଣା ହୋଇଗଲା। ମନ ମଧ୍ୟରେ ଏଭଳି ଅନେକ ତର୍କ-ବିତର୍କ କରି ସେ ଅମ୍ବରୀଷଙ୍କୁ ପରୀକ୍ଷା କରିବା ପାଇଁ ମନ ମଧ୍ୟରେ ସ୍ଥିର କରିନେଲେ। ପ୍ରୟାଗ ସ୍ନାନ ସାରି ସେ ବାହାରି ପଡ଼ିଲେ ଅମ୍ବରୀଷଙ୍କ ରାଜଧାନୀ ଅଭିମୁଖେ। କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ବାଟରେ ଯିବାବେଳେ ମଧ୍ୟ ସେ ସ୍ଥାନେ ସ୍ଥାନେ ଜନମୁଖରୁ ଶୁଣିବାକୁ ପାଇଲେ ରାଜାଙ୍କର ଭୂରି ଭୂରି ପ୍ରଶଂସା। ତାଙ୍କ ହୃଦୟରେ ଜଳୁଥିବା ଈର୍ଷାରୂପୀ ଅଗ୍ନିରେ ସତେ ଯେପରି ଘୃତ ଆହୁତି ପଡ଼ିଗଲା।

ସେତେବେଳେ ମହାରାଜ ଅମ୍ବରୀଷ ଭଗବାନଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ସପତ୍ନୀକ ଏକ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ଏକାଦଶୀ ବ୍ରତ ପାଳନ ପାଇଁ ନିୟମ ଗ୍ରହଣ କରିଥିଲେ। ସେ ବିଧି-ବିଧାନ ପୂର୍ବକ ମଧୁପୁରୀରେ ନିବାସ କରି ପ୍ରତିଦିନ ଯମୁନା ସ୍ନାନ ସାରି ମନପ୍ରାଣ ଦେଇ ବ୍ରତ ପାଳନ କରି ଚ୍ଛଳିଥାନ୍ତି। ଏକାଦଶୀ କରି ପ୍ରତି ଦ୍ୱାଦଶୀକୁ ମହାଭିଷେକ ବିଧିରେ ଶ୍ରୀକୃଷ୍ଣଙ୍କୁ ପୂଜା କରନ୍ତି ଏବଂ ତା'ପରେ ପାରଣା କରନ୍ତି। ଏହିଭଳି ଏକ ବର୍ଷ ପର୍ଯ୍ୟନ୍ତ ଅଖଣ୍ଡ ବ୍ରତ ପାଳନ କରିବା ପରେ କାର୍ତ୍ତିକ ଶୁକ୍ଳପକ୍ଷ ପ୍ରବୋଧନୀ ଏକାଦଶୀକୁ ନିର୍ଜଳା ବ୍ରତ କରି ବିଧି-ବିଧାନ ସହିତ ରାତ୍ରି ଜାଗରଣ କଲେ ଏବଂ ଦ୍ୱାଦଶୀ ଦିନ ପ୍ରଭାତରୁ ଉଠି ସ୍ନାନାଦି ନିତ୍ୟକର୍ମ ଓ ଠାକୁର ପୂଜା ସାରି ବ୍ରାହ୍ମଣମାନଙ୍କୁ ଭୂରି ଭୋଜନ ତଥା ଦାନରେ ସନ୍ତୁଷ୍ଟ କଲେ। ତା'ପରେ ବ୍ରାହ୍ମଣଙ୍କ ଅନୁମତିକ୍ରମେ ବ୍ରତ ପାରଣା ପାଇଁ ସ୍ୱୟଂ ବିରାଜମାନ ହେଲେ।

ଠିକ୍ ସେହି ସମୟରେ ଦଶହଜାର ଶିଷ୍ୟଙ୍କ ସମେତ ପଦାର୍ପଣ କଲେ ଅଭିଶାପ ଓ ବରଦାନ ଦେବାରେ ସମର୍ଥ ଋଷି ଦୁର୍ବାସା। ଋଷିଙ୍କ ଆଗମନରେ ଅମ୍ବରୀଷଙ୍କ ହୃଦୟରୂପୀ ଚାତକ ପକ୍ଷୀ ସ୍ୱାତୀ ଜଳ ପାଇବା ପରି ନାଚି ଉଠିଲା। ସେ ଆସନ ତେଜି ଋଷିଙ୍କୁ ଅଭିବାଦନ ଜଣାଇଲେ ଏବଂ ଯଥୋଚିତ ସମ୍ମାନ କରି ଭୋଜନ ପାଇଁ ନିମନ୍ତ୍ରଣ ଦେଲେ।

ଋଷି ଦୁର୍ବାସା ରାଜାଙ୍କ ନିମନ୍ତ୍ରଣ ସ୍ୱୀକାର କରି ନିତ୍ୟକର୍ମ କରିବା ପାଇଁ ଯମୁନା କୂଳକୁ ଚାଲିଗଲେ। ସେ ରାଜାଙ୍କୁ ପରୀକ୍ଷା କରିବା ଜାଣିଶୁଣି ପାଇଁ ବିଳମ୍ବ କରିଦେଲେ। ରାଜା ଏଣେ ବ୍ୟତିବ୍ୟସ୍ତ। ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା। ସେ କ'ଣ କରିବେ କିଛି ଭାବି ପାରିଲେ ନାହିଁ। ଋଷିଙ୍କୁ ଅପେକ୍ଷା କଲେ ତାଙ୍କର ଦ୍ୱାଦଶୀ ପାରଣା ସମୟ ଗଡ଼ିଯାଉଛି ଏବଂ ଋଷିଙ୍କୁ ନିମନ୍ତ୍ରଣ ଦେଇ ତାଙ୍କୁ ଭୋଜନ କରାଇବା ପୂର୍ବରୁ ନିଜେ ଭୋଜନ କରିବା ଧର୍ମ ବିରୁଦ୍ଧ। ଏତଦ୍ଦ୍ୱାରା ଋଷିଙ୍କର ଅବଜ୍ଞା ହେବ। ତେଣୁ ଏଭଳି ବିଷମ ପରିସ୍ଥିତିରେ ତାଙ୍କ ପକ୍ଷେ କ'ଣ କରିବା ଉଚିତ ହେବ—ଏ କଥା ବଶିଷ୍ଠ ପ୍ରଭୃତି ଧର୍ମଜ୍ଞ ବ୍ରାହ୍ମଣଙ୍କୁ ପଚାରିଲେ। ସେମାନେ ନିର୍ଣ୍ଣୟ କରି କହିଲେ—ରାଜନ୍! ଭଗବାନଙ୍କ ଚରଣାମୃତ ଜଳ ଓ ତୁଳସୀ ସେବନ କଲେ ଦ୍ୱାଦଶୀ ପାରଣା ମଧ୍ୟ ହୋଇଯିବ ଏବଂ ଏହା ଭୋଜନରେ ମଧ୍ୟ ଗଣାଯିବ ନାହିଁ। ତେଣୁ ଆପଣ ଠାକୁରଙ୍କ ଚରଣାମୃତ ଗ୍ରହଣ କରନ୍ତୁ। ବ୍ରାହ୍ମଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ରାଜା ଅମ୍ବରୀଷ ପ୍ରଭୁଙ୍କ ଚରଣାମୃତ ସେବନ କରି ବ୍ରତ ପାରଣା କରିଦେଲେ।

ଋଷି ଦୁର୍ବାସା ତ୍ରିକାଳଦର୍ଶୀ ଥିଲେ। ସେ ସେଇ ଯମୁନାକୂଳରୁ ଜାଣିଗଲେ ଯେ ରାଜା ପାରଣା କରି ସାରିଛନ୍ତି। ଏପରି ବ୍ୟବହାରରେ ସେ ନିଜର ଅପମାନ ବୋଧ କରି କ୍ରୋଧିତ ହୋଇଗଲେ। ସେ ଯମୁନାରୁ ସିଧା ଗଲେ ରାଜାଙ୍କ ନିକଟକୁ। ତାଙ୍କ ନେତ୍ର ରକ୍ତାକ୍ତ ହୋଇଗଲା। ଅଧର କମ୍ପି ଉଠିଲା। ସେ କ୍ରୋଧରେ ରାଜା ଅମ୍ବରୀଷଙ୍କୁ ଅଭିଶାପ ଦେବାକୁ ଉଦ୍ୟତ ହେଲେ। ନିକଟସ୍ଥ ବ୍ରାହ୍ମଣବୃନ୍ଦ ଋଷିଙ୍କୁ ଅନେକ ପ୍ରକାରେ ବୁଝାଇବାକୁ ଚେଷ୍ଟା କଲେ ଯେ— "ଋଷିବର! ଆପଣ ଶାନ୍ତ ହୁଅନ୍ତୁ, କ୍ରୋଧ ସମ୍ବରଣ କରନ୍ତୁ। ଏଥିରେ ରାଜାଙ୍କର କୌଣସି ଦୋଷ ନାହିଁ। ଏଭଳି ବିଷମ ସ୍ଥିତିରେ ଶାସ୍ତ୍ରବିଧାନ ମଧ୍ୟ ଏଇଆ କହୁଛି।" କିନ୍ତୁ ଋଷି ଦୁର୍ବାସା କାହାରି କଥା ଶୁଣିବା ସ୍ଥିତିରେ ନ ଥାନ୍ତି। ତାଙ୍କ ମନରେ ବସା ବାନ୍ଧିଥିବା ପୂର୍ବର ଈର୍ଷାରୂପୀ ଅଗ୍ନି ହୁ ହୁ ହୋଇ ଜଳି ଉଠିଲା।

ହଠାତ୍ ସେ ନିଜ ଜଟାରୁ ଗୋଟିଏ କେଶ ଉପାଡ଼ି ଦେଇ ଅମ୍ବରୀଷଙ୍କୁ ମାରିବା ଉଦ୍ଦେଶ୍ୟରେ ସେଥିରୁ କୃତ୍ୟା ସୃଷ୍ଟି କରିଦେଲେ। ଅଗ୍ନି ଶିଖା ସମ ପ୍ରଜ୍ୱଳିତ କୃତ୍ୟା ଯୋଡ଼ହସ୍ତ ହୋଇ ଋଷି ଦୁର୍ବାସାଙ୍କୁ ଆଜ୍ଞା ମାଗିଲା। ଋଷିଙ୍କ ଆଜ୍ଞା ପାଇବା କ୍ଷଣି ସେ ଲମ୍ଫ ପ୍ରଦାନ କଲା ରାଜାଙ୍କ ଉପରକୁ।

କୃତ୍ୟାର ବିକଟାଳ ରୂପ ଓ ଭୟଙ୍କର ଚିତ୍କାରରେ ଉପସ୍ଥିତ ସକଳ ଜନତା ଭୟରେ ଥରହର ହେଲେ। ସମସ୍ତଙ୍କ ମୁଖରୁ ହା-ହା-କାର ଶବ୍ଦ ବାହାରୁ ଥାଏ। ରାଜା ଅମ୍ବରୀଷ କିନ୍ତୁ ଧୀର ଗମ୍ଭୀର ଭାବରେ ହାତଯୋଡ଼ି ଠିଆ ହୋଇଥାନ୍ତି। ସେ ମନେ ମନେ ଭାବୁଥାନ୍ତି—"ମୋ ଯୋଗୁଁ ଋଷିଙ୍କ ମନରେ କ୍ରୋଧ ଜାତ ହେଲା। ମୁଁ ନିଶ୍ଚୟ ଋଷିଙ୍କର ଅପରାଧୀ। ଏଥିପାଇଁ ମୋତେ ଉଚିତ ଦଣ୍ଡ ମିଳିବା ଦରକାର। ଏହି କୃତ୍ୟା ମୋତେ ଭସ୍ମ କରିଦେଲେ ଯାଇ ପ୍ରକୃତ ପ୍ରାୟଶ୍ଚିତ୍ତ ହେବ ଏବଂ ଋଷିଙ୍କ ମନ ସନ୍ତୋଷ ହେବ।"

ପ୍ରକୃତରେ ଅମ୍ବରୀଷଙ୍କର କୌଣସି ଦୋଷ ନ ଥିଲା। ଦୁର୍ବାସା ଏହାକୁ ନିଜର ଅପମାନ ବୋଲି ଭାବିନେଲେ। ଅପମାନିତ କରାଇବାକୁ ଅମ୍ବରୀଷଙ୍କର ଉଦ୍ଦେଶ୍ୟ ମଧ୍ୟ ନ ଥିଲା। ତା' ଛଡ଼ା ସପ୍ତଦ୍ୱୀପବତୀ ପୃଥିବୀର ଚକ୍ରବର୍ତ୍ତୀ ସମ୍ରାଟ ଅମ୍ବରୀଷ ଦୁର୍ବାସାଙ୍କୁ ମଧ୍ୟ ଦଣ୍ଡିତ କରିବାକୁ ସକ୍ଷମ ଥିଲେ। କିନ୍ତୁ ତାଙ୍କର ବିନମ୍ରତା ଆଜି ଚରମ ସୀମାରେ ପହଞ୍ଚିଗଲା। ସେ ପ୍ରତିକାରଶୂନ୍ୟ ଅବସ୍ଥାରେ ହାତଯୋଡ଼ି ପ୍ରଭୁଙ୍କୁ ସ୍ମରଣ କରୁଥାନ୍ତି। ଶକ୍ତି ଥାଇ ମଧ୍ୟ ଦୋଷୀକୁ ଦଣ୍ଡ ନ ଦେବା ହିଁ ଯଥାର୍ଥ ସାଧୁତା—

**ଦଣ୍ଡିବା ଶକ୍ତି ଯାର ଥାଇ। ସେ ଯେବେ କ୍ଷମା ଆଚରଇ ॥**
**ସାଧୁଙ୍କ ଶ୍ରେଷ୍ଠ ସେହି ନର। ସୁଖଦୁଃଖରୁ ସେ ବାହାର ॥**

ରାଜା ଅମ୍ବରୀଷ ସିନା ପ୍ରତିକାରଶୂନ୍ୟ ହୋଇ ପ୍ରଭୁଙ୍କୁ ପ୍ରାର୍ଥନା କରୁଥାନ୍ତି, କିନ୍ତୁ ତାଙ୍କ ସୁରକ୍ଷାରେ ନିଯୁକ୍ତ ସୁଦର୍ଶନ ଚକ୍ର ନିର୍ଦ୍ଦୋଷ ଭକ୍ତ ପ୍ରତି ଏତେ କଠୋର ଦଣ୍ଡକୁ କିପରି ବା ନୀରବରେ ସହି ପାରନ୍ତା? ସେ ନିଜର ପ୍ରଚଣ୍ଡ ବିକରାଳ ରୂପ ଧାରଣ କରି ଲମ୍ଫ ପ୍ରଦାନ କଲା କୃତ୍ୟା ଉପରକୁ। ନିମିଷକ ମଧ୍ୟରେ କୃତ୍ୟାକୁ ଭସ୍ମୀଭୂତ କରି ପ୍ରଖର ବେଗରେ ଦୁର୍ବାସାଙ୍କ ପଛରେ ଗୋଡ଼ାଇଲା ଚକ୍ର ସୁଦର୍ଶନ। ରାଜା ଅମ୍ବରୀଷ ନିଜର ପ୍ରାଣରକ୍ଷା ପାଇଁ ଚକ୍ରକୁ ପ୍ରାର୍ଥନା କରି ନ ଥିଲେ, କିନ୍ତୁ ପ୍ରଭୁଙ୍କ ଦ୍ୱାରା ନିଯୁକ୍ତ ଚକ୍ର ଭକ୍ତ ଅମ୍ବରୀଷଙ୍କୁ ତ ସବୁଦିଗରୁ ରକ୍ଷା କରୁଥିଲା! ସେ ନିଜ କର୍ତ୍ତବ୍ୟରେ ଅବହେଳା କରିଥାନ୍ତା ବା କିପରି? ଆଗେ

ଆଗେ ଧାଇଁଥାନ୍ତି ଦୁର୍ବାସା, ତାଙ୍କର ପଛେ ପଛେ ଗୋଡ଼ାଇଥାଏ ଚକ୍ର। ଚକ୍ରର ଅସହ୍ୟ ତେଜରେ ସଂତପ୍ତ ହୋଇ ଋଷି ଦୁର୍ବାସା ଖୋଜି ବୁଲିଲେ ଆତ୍ମଗୋପନ ପାଇଁ ଆଶ୍ରୟ ସ୍ଥଳ। ସେ ଶରଣ ପାଇବା ଆଶାରେ ଯେଉଁଆଡ଼େ ଯାଉଥାନ୍ତି, ସୁଦର୍ଶନ ଚକ୍ର ତାଙ୍କର ଅନୁଧାବନ କରୁଥାଏ।

ଚକ୍ର ତେଜରେ ଅର୍ଦ୍ଧ ଦଗ୍ଧ ତପସ୍ୱୀ ଦୁର୍ବାସା ପହଞ୍ଚିଲେ ପିତାମହ ବ୍ରହ୍ମାଙ୍କ ନିକଟରେ। 'ତ୍ରାହି ମାମ୍, ତ୍ରାହି ମାମ୍!' କହି ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଏଭଳି ଦୁଃଖଦ ପରିସ୍ଥିତିରୁ ପରିତ୍ରାଣ ପାଇଁ ଯାଚନା କଲେ ତାଙ୍କ ପାଦପଦ୍ମରେ। କିନ୍ତୁ ବ୍ରହ୍ମା କିପରି ତାଙ୍କୁ ଶରଣ ଦେବେ? ସେ ଭଲଭାବେ ଜାଣନ୍ତି ଯେ ରାଜା ଅମ୍ବରୀଷ ଭଗବାନଙ୍କର ପରମ ଭକ୍ତ। ତାଙ୍କ ପ୍ରତି କରାଯାଇଥିବା ଅପରାଧ ଅକ୍ଷମ୍ୟ। ତେଣୁ ସେ ସଫାସଫା କହିଦେଲେ—"ବତ୍ସ ଦୁର୍ବାସା! ମୋର ଦୁଇ ପରାର୍ଦ୍ଧ ଆୟୁ ଶେଷ ହେବା ପରେ ଭଗବାନ କାଳରୂପରେ ଯେତେବେଳେ ଏ ସୃଷ୍ଟିଲୀଳା ସମ୍ବରଣ କରିବାକୁ ଚାହିଁବେ, ସେତେବେଳେ ତାଙ୍କର ଭ୍ରୂଭଙ୍ଗୀମାତ୍ରକେ ସମଗ୍ର ସଂସାର ସମେତ ମୋର ଏହି ବ୍ରହ୍ମଲୋକ କ୍ଷଣକେ ଭସ୍ମ ହୋଇଯିବ। ଆମେ ସମସ୍ତେ ତାଙ୍କର ନିୟମରୂପୀ ଶୃଙ୍ଖଳରେ ବନ୍ଧା। ତାଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ଆମେ ଜଗତର ହିତ କାର୍ଯ୍ୟରେ ତତ୍ପର ରହିଥାଉ। ତାଙ୍କ ଭକ୍ତ ପ୍ରତି ଦ୍ରୋହ ଆଚରଣ କରିଥିବା ଅପରାଧୀକୁ ଶରଣ ଦେବାର ସାମର୍ଥ୍ୟ ଆମ୍ଭର ନାହିଁ।"

ବ୍ରହ୍ମାଙ୍କ ଠାରୁ ଏଭଳି ନିରାଶ ବଚନ ଶୁଣି ଆତ୍ମଗୋପନ ଆଶାରେ ଋଷି ଦୁର୍ବାସା ଧାବମାନ ହୋଇ ପହଞ୍ଚିଲେ କୈଳାସବାସୀ ମହାଦେବଙ୍କ ନିକଟରେ। ତାଙ୍କୁ ନିଜର ଦୁଃଖ କଥା ଶୁଣାଇବାରୁ ସେ ମଧ୍ୟ ସ୍ପଷ୍ଟରୂପେ କହିଦେଲେ—"ହେ ଋଷିବର! ଯେଉଁ ପରମେଶ୍ୱରଙ୍କ ସଙ୍କଳ୍ପମାତ୍ରକେ ବ୍ରହ୍ମାଙ୍କ ଭଳି ଅନେକ ଜୀବ ଏବଂ ତାଙ୍କର ଆସନରୂପୀ ପଦ୍ମକୋଷ ତଥା ଏହି ବ୍ରହ୍ମାଣ୍ଡ ଭଳି ସହସ୍ର ବ୍ରହ୍ମାଣ୍ଡ କ୍ଷଣକେ ସୃଷ୍ଟି ହୋଇଯାଆନ୍ତି ଏବଂ କାଳର କବଳିତ ହୋଇ ବିଲୀନ ହୋଇଯାଆନ୍ତି, ତଥା ଯାହାଙ୍କ ରଚିତ ବିଭିନ୍ନ ବ୍ରହ୍ମାଣ୍ଡରେ ଆମ ଭଳି ହଜାର ହଜାର ଶିବ ଘୂରି ବୁଲୁଛନ୍ତି, ସେହି ପ୍ରଭୁଙ୍କ ବିରୋଧ କରିବାକୁ ଆମ୍ଭର ସାମର୍ଥ୍ୟ ବା କାହିଁ! ଏ ସୁଦର୍ଶନ ଚକ୍ର ତାଙ୍କ ଦ୍ୱାରା ନିଯୁକ୍ତ। ଏହା ଆମ୍ଭ ପାଇଁ ମଧ୍ୟ ଦୁର୍ବିସହ। କିଏ ବା ଏହାକୁ ପ୍ରଶମିତ କରିବାକୁ ସମର୍ଥ ହୋଇ ପାରିବ? ତୁମେ ସେହି ଶରଣାଗତବତ୍ସଳ ପ୍ରଭୁଙ୍କର ଶରଣ ପଶ। ସେ ତୁମର ମଙ୍ଗଳ କରିବେ—**ତମେବ ଶରଣଂ ଯାହି ହରିସ୍ତେ ଶଂ ବିଧାସ୍ୟତି ॥"**

ଋଷି ଦୁର୍ବାସା ନିରୁପାୟ ହୋଇ ଭଗବାନଙ୍କ ଅଭୟ ପାଦପଦ୍ମରେ ଶରଣ ପଶିଲେ । ଆର୍ତ୍ତସ୍ୱରରେ କହିଲେ—"ହେ ଦୟାମୟ ହରି! ତୁମ ଅଭୟ ଚରଣରେ ଏ ଅପରାଧୀ ଦୁର୍ବାସାକୁ ଶରଣ ଦିଅ । ତୁମ ଅସ୍ତ୍ର ତେଜରୁ ମୋତେ ରକ୍ଷା କରି ଆର୍ତ୍ତତ୍ରାଣ ନାମ ସାର୍ଥକ କର ।"

ଋଷି ଦୁର୍ବାସାଙ୍କ ବିନୀତ ବଚନ ଶୁଣି ଭଗବାନଙ୍କ କୋମଳ ହୃଦୟ ଦ୍ରବିତ ହୋଇଗଲା । ସେ ଚାହିଁଥିଲେ ଚକ୍ରର ପ୍ରଚଣ୍ଡ ତେଜକୁ ପ୍ରଶମନ କରି ପାରିଥାନ୍ତେ, କିନ୍ତୁ ଭକ୍ତର ମହିମା ବିସ୍ତାର କରିବା ପାଇଁ ଭଗବାନ କହିଲେ— ***'ମୁଁ ଯେ ଭକତ ପରାଧୀନ । ମୋ ତହୁଁ ଭକ୍ତ ନୋହେ ଭିନ୍ନ ।'*** ହେ ଦ୍ୱିଜ! ମୁଁ କାଳେ କାଳେ ଭକ୍ତର ଅଧୀନ; ମୋର ଲେଶମାତ୍ର ସ୍ୱତନ୍ତ୍ର ଶକ୍ତି ନାହିଁ । କୋମଳ ଓ ସରଳ ସ୍ୱଭାବର ଭକ୍ତମାନେ ମୋ ହୃଦୟକୁ କିଣି ନେଇଛନ୍ତି । ଭକ୍ତଜନ ଭଲ ପାଆନ୍ତି ମୋତେ ଆଉ ମୁଁ ଭଲ ପାଏ ସେମାନଙ୍କୁ । ଏହା ମୋର ଚିରାଚରିତ ରୀତି । ମୁଁ ଯୁଗେ ଯୁଗେ ଭକ୍ତଙ୍କ ନିମନ୍ତେ ଦେହ ଧାରଣ କରେ । ପ୍ରଣତ ଭକ୍ତଜନ ମୋ ଆଶ୍ରୟ ଛଡ଼ା ଅନ୍ୟ କିଛି ଜାଣନ୍ତି ନାହିଁ, ତେଣୁ ସେଭଳି ଭକ୍ତଙ୍କୁ ଛାଡ଼ି ମୁଁ ମୋ ପ୍ରାଣ ରଖିବାକୁ ଚାହେଁ ନାହିଁ କି ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀକୁ ମଧ୍ୟ ଚାହେଁ ନାହିଁ । ଏହା ସତ୍ୟ ଯେ ଲକ୍ଷ୍ମୀ ମୋର ଅତିଶୟ ପ୍ରିୟ; କିନ୍ତୁ ସେ ଯଦି କଦାଚିତ୍ ଭକ୍ତଙ୍କ ସହିତ ଦ୍ୱେଷ କରେ, ତେବେ ମୁଁ ତାକୁ ଅବିଳମ୍ବେ ପରିତ୍ୟାଗ କରିଦେଇ ପାରିବି, କିନ୍ତୁ ସ୍ୱପ୍ନରେ ବି ଭକ୍ତଙ୍କୁ ତ୍ୟାଗ କରିବା କଥା ଭାବି ପାରିବି ନାହିଁ । ଯେଉଁ ଭକ୍ତ ସ୍ତ୍ରୀ, ପୁତ୍ର, ଗୃହ, ଗୁରୁଜନ, ପ୍ରାଣ, ଧନ, ଇହଲୋକ ଓ ପରଲୋକ ସବୁକିଛିକୁ ଜଳାଞ୍ଜଳି ଦେଇ ମୋର ଆଶ୍ରିତ ହୋଇ ସାରିଛନ୍ତି, ତାଙ୍କୁ ପରିତ୍ୟାଗ କରିବାକୁ ମୁଁ ଭାବି ପାରିବି ବା କିପରି? ସତୀ ନାରୀ ଯେପରି ନିଜର ସତୀତ୍ୱ ବଳରେ ସଦାଚାରୀ ସ୍ୱାମୀଙ୍କୁ ବଶରେ ରଖିଥାଏ, ସେହିପରି ପ୍ରେମବନ୍ଧନରେ ମୋ ହୃଦୟକୁ ବାନ୍ଧି ରଖିଥିବା ସମଦର୍ଶୀ ସାଧୁଜନ ମୋତେ ବଶ କରି ରଖିଛନ୍ତି । ହେ ଋଷିରାଜ! ତୁମେ ଯେଉଁ କଥା କହିଲ ଯେ ମୋ ପାଖରେ ଆର୍ତ୍ତିବିନାଶନ, ବ୍ରହ୍ମଣ୍ୟତ୍ୱ ଓ ଶରଣାଗତରକ୍ଷକ ଗୁଣ ରହିଛି ତାହା ସତ୍ୟ, କିନ୍ତୁ ଏବେ ମୋର ସମସ୍ତ ଗୁଣ ପଙ୍ଗୁ ପାଲଟି ଯାଇଛି ଅମ୍ବରୀଷଙ୍କ ଭକ୍ତି ଆଗରେ । ମୁଁ ବୁଝି ପାରୁଛି ଯେ ସୁଦର୍ଶନର ପ୍ରଚଣ୍ଡ ତେଜରେ ତୁମେ ସନ୍ତପ୍ତ, କିନ୍ତୁ ଏହାକୁ ନିବାରଣ କରିବାର ସାମର୍ଥ୍ୟ ମୋ ପାଖରେ ନାହିଁ । ମୁଁ ସୁଦର୍ଶନକୁ ଅମ୍ବରୀଷ ସେବାରେ ନିଯୁକ୍ତ କରିଦେଇଛି । ତା'ଛଡ଼ା ତୁମେ ଅପରାଧ କରିଛ ଅମ୍ବରୀଷଙ୍କର, ତେଣୁ ସେ କ୍ଷମା କଲେ ଯାଇ

ଅପରାଧ ମୋଚନ ହେବ। ସେ ନିଜର ସାଧୁଗୁଣରେ ତୁମକୁ ସୁଦର୍ଶନ ତ୍ରାସରୁ ଅଭୟ ପ୍ରଦାନ କରିଦେବେ। ସେ ଅତ୍ୟନ୍ତ ଦୟାଳୁ ଏବଂ ଦୀନଜନ ପ୍ରତିପାଳକ। ତାଙ୍କ ରୋମ ରୋମରେ ମୋ ପ୍ରତି ପ୍ରେମଲକ୍ଷଣା ଭକ୍ତି ସ୍ଥାନ ପାଇଛି। ତେଣୁ ତାଙ୍କ ମନରେ ଲେଶମାତ୍ର ଦ୍ୱେଷ ଭାବନା ନାହିଁ। ବିନା ଦ୍ୱିଧାରେ ତୁମେ ତାଙ୍କ ଚରଣରେ ଶରଣ ପଶ। ଏହା ବିନା ତୁମ ଦୁଃଖ ନିବାରଣର ଅନ୍ୟ କୌଣସି ପନ୍ଥା ନାହିଁ।

ଶରଣାଗତ ପାଳକ ଭଗବାନ ଆଜି ଦୁର୍ବାସା ଋଷିଙ୍କ ଦୁଃଖ ନିବାରଣ କରିବାକୁ ନିଜକୁ ଅସମର୍ଥ କହିଦେଲେ ସତ, କିନ୍ତୁ ସେ କ'ଣ ନିଜ ଶରଣାଗତରକ୍ଷକ ସ୍ୱଭାବ ଛାଡ଼ିଦେଇ ପାରିବେ, ନିଜ ବଚନକୁ କାଟିଦେଇ ପାରିବେ? ସେ ପରା ନିଜ ମୁଖରେ କହିଛନ୍ତି ଯେ ଥରେ ଯିଏ ତାଙ୍କ ଶରଣକୁ ଚାଲିଯାଏ, ତାକୁ ସେ ଅଭୟ ଦାନ କରି ସମସ୍ତ ବିପତ୍ତିରୁ ରକ୍ଷା କରନ୍ତି। ସେଥିପାଇଁ ଭଗବାନ ଦୁର୍ବାସାଙ୍କ ଦୁଃଖ ନିବୃତ୍ତିର ଯଥାର୍ଥ ମାର୍ଗ ଦେଖାଇ ନିଜ ବଚନ ମଧ୍ୟ ରକ୍ଷା କଲେ। କହିଲେ—''ହେ ଋଷିବର! କେବଳ ହାତ ଯୋଡ଼ିଦେଲେ କାମ ଚଳିବ ନାହିଁ, ତାଙ୍କ ପାଦତଳେ ପଡ଼ି କ୍ଷମା ଯାଚନା କରିବାକୁ ପଡ଼ିବ। ତୁମେ ଗୋଟିଏ ନୁହେଁ, ଦୁଇ ଦୁଇଟା ଜଘନ୍ୟ ଅପରାଧ କରିଛ। ନିରପରାଧ ଭକ୍ତକୁ ଅପରାଧୀ ମାନି ତୁମେ ପ୍ରଥମ ଭୁଲ୍ କଲ। ତା' ବ୍ୟତୀତ ଏଭଳି ଅକିଞ୍ଚନ ଭକ୍ତକୁ ବଧ କରିବା ପାଇଁ କୃତ୍ୟା ପ୍ରେରିତ କରି ଦ୍ୱିତୀୟ ଭୁଲ୍ କଲ।''

ଦୁର୍ବାସା ଋଷି ଏବେ ନିଜର ଭୁଲ୍ ବୁଝି ପାରିଲେ। ପ୍ରଭୁଙ୍କୁ କହିଲେ—''କେଉଁ ମୁହଁ ନେଇ ଯିବି ମୁଁ ଅମ୍ବରୀଷଙ୍କ ନିକଟକୁ! ମୋ ଭଳି ଅପରାଧୀକୁ ସେ କ'ଣ କ୍ଷମା କରିଦେବେ?'' ଭଗବାନ କହିଲେ—''ତୁମେ ଚିନ୍ତା କର ନାହିଁ ଋଷିବର! ମୋ ଭକ୍ତର ମହିମା ତୁମେ ଜାଣି ନାହଁ। ସେ ମୋ' ଠାରୁ ମଧ୍ୟ ଅଧିକ ଦୟାଳୁ। ନବନୀତ ସମ ତା'ର କୋମଳ ହୃଦୟର ପ୍ରତି କଣିକାରେ ସର୍ବଦା ମୋ ଭକ୍ତି ବିରାଜମାନ କରିଛି, ତେବେ ସେଥିରେ ଅନ୍ୟର ଦୋଷ ଦେଖିବାକୁ ସ୍ଥାନ ନାହିଁ। ମୁଁ କଦାଚିତ୍ ଦୁଷ୍ଟ ଓ ଅପରାଧୀ ବ୍ୟକ୍ତିକୁ ଶୁଦ୍ଧ କରିବା ପାଇଁ ଦଣ୍ଡ ଦେଇପାରେ, କିନ୍ତୁ ମୋ ଭକ୍ତ ତାହା କରିପାରେ ନାହିଁ; ସେ ସ୍ନେହ ଜଳ ଅଭିସିଞ୍ଚନ କରି ଦୁଷ୍ଟ ହୃଦୟକୁ ଶୁଦ୍ଧ କରିଥାଏ।'' ଋଷିଙ୍କ ପାଇଁ ଦୁଃଖ ନିବୃତ୍ତିର ଅନ୍ୟ କୌଣସି ଉପାୟ ନ ଥିଲା। ଭକ୍ତବତ୍ସଳଙ୍କର ତାଙ୍କ ଭକ୍ତ ପ୍ରତି କେତେ ଯେ ସ୍ନେହ, ସେ ଆଜି ବୁଝି ପାରିଲେ। ରୌଦ୍ରତାପରେ ବରଫ ତରଳିଯିବା ପରି ତାଙ୍କର

ଅଭିମାନ ବିଗଳିତ ହୋଇଗଲା। ସେ ଆତୁର ହୋଇ ଫେରିଗଲେ ଅମ୍ବରୀଷଙ୍କ ନିକଟକୁ। 'ତ୍ରାହି ତ୍ରାହି' କହି ତାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ କ୍ଷମା ଭିକ୍ଷା କଲେ।

ମହାମହିମ ଋଷି ଦୁର୍ବାସାଙ୍କୁ ପାଦତଳେ ପଡ଼ିଥିବା ଦେଖି ଅମ୍ବରୀଷଙ୍କର ନବନୀତ ସମ ମୃଦୁଳ ହୃଦୟ ଲଜ୍ଜାରେ କୁଣ୍ଠିତ ହୋଇଗଲା। ତାଙ୍କର ପଙ୍କଜ ନେତ୍ରରୁ ଝରି ଆସିଲା ଲୋତକପ୍ରବାହ। ସକଳ ଜୀବଙ୍କ ମଧ୍ୟରେ ସେ ଅନୁଭବ କରୁଥିଲେ ନିଜର ଇଷ୍ଟଦେବଙ୍କୁ। ଅନ୍ୟକୁ ସମ୍ମାନ କରିବା ଥିଲା ତାଙ୍କର ସହଜ ସ୍ୱଭାବ। ତାଙ୍କର ପ୍ରେମରଞ୍ଜିତ ହୃଦୟକୁ କଟୁତାର ଛାୟା ଛୁଇଁ ନ ଥିଲା ! ତେବେ ଋଷିଙ୍କୁ ଏଭଳି ସ୍ଥିତିରେ ସେ ଦେଖି ପାରିବେ ବା କିପରି? ସେ ତତ୍‌କ୍ଷଣାତ୍ ଋଷିଙ୍କୁ କ୍ଷମା ଯାଚନା କରି ତାଙ୍କର ପାଦ ବନ୍ଦନା କଲେ।

ଚକ୍ର ସୁଦର୍ଶନ କିନ୍ତୁ ଘୋର ନାଦ କରି ଋଷିଙ୍କୁ ଭସ୍ମ କରିଦେବା ପାଇଁ ମାଡ଼ି ଆସୁଥାନ୍ତି। ତାଙ୍କୁ ପ୍ରଶମନ କରିବା ନିମନ୍ତେ ରାଜା ଅମ୍ବରୀଷ ହାତଯୋଡ଼ି ଅନେକ ବିନତି କଲେ। କିନ୍ତୁ କୌଣସି ପ୍ରକାରେ ସୁଦର୍ଶନ ନ ବୁଝିବାରୁ ପରିଶେଷରେ କହିଲେ—ହେ ଚକ୍ରରାଜ! ଆଜି ପର୍ଯ୍ୟନ୍ତ ମୁଁ ନିଷ୍କାମ ଭାବରେ ତୁମକୁ ଭଜିଛି, କେବେ କୌଣସି ଯାଚନା କରି ନାହିଁ। କାୟମନୋବାକ୍ୟରେ ମୋର ନିଷ୍କାମ ଭାବ ଯଦି ସତ୍ୟ, ତେବେ ତୁମେ କ୍ରୋଧ ସମ୍ବରଣ କର। ଚନ୍ଦ୍ର ସମ ସୁଶୀତଳ ହୋଇ ଋଷିଙ୍କୁ ତାପମୁକ୍ତ କରିଦିଅ। ଯଦି ମୁଁ ମୋ ଜୀବନରେ କିଛି ଯଜ୍ଞ-ଦାନାଦି କରିଥାଏ, ଯଦି ମୋ ମନ ସ୍ୱଧର୍ମରୁ କଦାପି ବିଚଳିତ ହୋଇ ନ ଥାଏ, ଯଦି ଆମ ବଂଶଜ ବ୍ରାହ୍ମଣଙ୍କୁ ଇଷ୍ଟଦେବ ଓ ଆରାଧ୍ୟ ବୋଲି ଭାବୁଥାନ୍ତି, ତେବେ ଋଷିଙ୍କର ଦୁଃଖ ଅବିଳମ୍ବେ ଦୂର ହୋଇଯାଉ। ସକଳ ପ୍ରାଣୀଙ୍କର ଆଶ୍ରୟସ୍ୱରୂପ ଭଗବାନଙ୍କୁ ଯଦି ମୁଁ ଆତ୍ମରୂପରେ ସର୍ବଭୂତରେ ଦର୍ଶନ କରୁଥାଏ ଏବଂ ମୋ ଉପରେ ଯଦି ଦୟାମୟ ଭଗବାନ ପ୍ରସନ୍ନ ଥାଆନ୍ତି, ତେବେ ଋଷିଙ୍କର ଦୁଃଖ ଦୂର ହୋଇଯାଉ। ହେ ଚକ୍ରରାଜ! ତୁମେ ଋଷିଙ୍କ ପାଇଁ ମଳୟ ଚନ୍ଦନ ସମ ସୁଶୀତଳ ହୋଇଯାଅ।''

ଅମ୍ବରୀଷଙ୍କର କରୁଣ ବଚନ ଶୁଣି ସୁଦର୍ଶନ ଭାବିଲେ—''ଋଷି ଦୁର୍ବାସା ସିନା ପୂର୍ବରୁ ମୋର ପ୍ରଚଣ୍ଡ ତେଜରେ ବ୍ୟାକୁଳ ଥିଲେ, କିନ୍ତୁ ଏବେ ମହାରାଜ ଅମ୍ବରୀଷ ତ ଋଷିଙ୍କର ଦୁଃଖଦ ସ୍ଥିତି ଦେଖି ଅଧିକ ବ୍ୟାକୁଳିତ! ପ୍ରଭୁ ମୋତେ ଭକ୍ତକୁ ସୁଖ ଦେବା ପାଇଁ ନିଯୁକ୍ତ କରିଛନ୍ତି। ମୋର କୌଣସି ବ୍ୟବହାରରେ

ଭକ୍ତଙ୍କୁ କଷ୍ଟ ହେଲେ ତାହା ମୋ ଦୟାମୟ ସ୍ୱାମୀଙ୍କୁ ନିଶ୍ଚୟ ବାଧିବ। ଏହା ମୋ ପକ୍ଷେ ଉଚିତ ହେବ ନାହିଁ, ମୁଁ ସ୍ୱାମୀଦ୍ରୋହୀ ହୋଇଯିବି।'' ଏତିକି ଭାବନା ଜାଗ୍ରତ ହେବା ମାତ୍ରେ ନିଜର ସମସ୍ତ ତେଜକୁ ନିଜ ମଧ୍ୟରେ ସମ୍ବରଣ କରିଦେଲେ ଚକ୍ର ସୁଦର୍ଶନ। ନିମିଷେକ ମଧ୍ୟରେ ପ୍ରଶମିତ ହୋଇଗଲା ତାଙ୍କର ଘନ ଘନ ଗର୍ଜନ। ସେ ନିଶାକର ଭଳି ସୁଶୀତଳ ହୋଇଗଲେ।

ରାଜା ଅମ୍ବରୀଷଙ୍କର ଏଭଳି ସଦ୍‌ବ୍ୟବହାର ଗଭୀର ରେଖାପାତ କଲା ଦୁର୍ବାସାଙ୍କ ହୃଦୟରେ। ତାଙ୍କ ମୁଖରୁ ଅଗ୍ରନକ ବାହାରି ପଡ଼ିଲା—

**ଦେଖ ଅନନ୍ତ ଦାସଙ୍କର। ମହାମହିମା ଅଗୋଚର ॥**
**ଅପ୍ରାଧ କଲେହେଁ ସହନ୍ତି। ବିଷ୍ଣୁଙ୍କୁ ସର୍ବଦେହେ ଚିନ୍ତି ॥**

ଧନ୍ୟ ପ୍ରଭୁ! ଧନ୍ୟ ତୁମ ଭକ୍ତଙ୍କ ମହିମା! ଆଜି ମୁଁ ବୁଝି ପାରିଲି ଯେ କେଉଁ ଗୁଣ ଯୋଗୁଁ ତୁମେ ସଦା ଭକ୍ତର ଅଧୀନ ହୋଇ ରହିଥାଅ। ଦୁର୍ବାସା ପୁଣି ଅମ୍ବରୀଷଙ୍କୁ କହିଲେ, ମହାରାଜ! ମୁଁ ତୁମକୁ କେତେ କଷ୍ଟ ନ ଦେଇଛି! ତଥାପି ତୁମେ ମୋର ପ୍ରାଣ ରକ୍ଷା କରିବା ପାଇଁ ଚେଷ୍ଟା କରିଛ? ଏହା ତୁମ ପକ୍ଷେ କିଛି ବଡ଼ କଥା ନୁହେଁ। ଯେଉଁ ସାଧୁ ପୁରୁଷ ଦୃଢ଼ ଭକ୍ତି ବଳରେ ଭକ୍ତବତ୍ସଳ ଭଗବାନଙ୍କ ଚରଣାରବିନ୍ଦକୁ ହୃଦୟରେ ଧାରଣ କରିଛନ୍ତି, ତାହାଙ୍କ ପାଇଁ ଏ ସଂସାରରେ କେଉଁ କାର୍ଯ୍ୟ ଅବା କଠିନ! ଉଦାରମନା ମହାତ୍ମାଜନ କେଉଁ ବସ୍ତୁ ଅବା ତ୍ୟାଗ କରି ନ ପାରନ୍ତି! ଯାହାଙ୍କର ମଙ୍ଗଳମୟ ନାମ ସ୍ମରଣ କରି ମନୁଷ୍ୟ ଅଚିରେ ପବିତ୍ର ହୋଇଯାଏ, ସେହି ତୀର୍ଥପାଦ ଅନନ୍ତ ଭଗବାନଙ୍କ ଭକ୍ତଙ୍କ ପାଇଁ କେଉଁ କର୍ତ୍ତବ୍ୟ ଅବା ଅବଶେଷ ରହିଯାଏ! ରାଜନ୍! ତୁମ ହୃଦୟ ଶ୍ରୀହରି ଭକ୍ତିରୂପୀ ମଳୟ ଚନ୍ଦନରେ ଅଭିରଞ୍ଜିତ। ତୁମେ ମୋ ଉପରେ ଅତ୍ୟନ୍ତ କରୁଣା କଲ। ମୋ ଭଳି ଅପରାଧୀର ଅପରାଧକୁ କ୍ଷମା ଦେଇ ମୋ ପ୍ରାଣ ରକ୍ଷା କରି ତୁମେ କେତେ ବଡ଼ ବଳିଦାନ ନ କରିଛ ସତେ!''

ଋଷିଙ୍କ ଚରଣରେ ପ୍ରଣାମ କରି ରାଜା ତାଙ୍କୁ ଗୃହକୁ ପାଛୋଟି ନେଲେ ଏବଂ ପାଦ ପ୍ରକ୍ଷାଳନ କରି ଆସନରେ ବିରାଜମାନପୂର୍ବକ ବିବିଧ ଅନ୍ନ-ବ୍ୟଞ୍ଜନରେ ତାଙ୍କର ଆତିଥ୍ୟ କଲେ। ଋଷିବର ଭୋଜନ କରି ସନ୍ତୁଷ୍ଟ ହେବାପରେ ଅମ୍ବରୀଷଙ୍କୁ ଭୋଜନ କରିବାକୁ ଆଜ୍ଞା ଦେଲେ ଏବଂ ପ୍ରସନ୍ନ ଚିତ୍ତରେ କହିଲେ—ରାଜନ୍! ତୁମର ଦର୍ଶନ, ସ୍ପର୍ଶ ଓ ଆତିଥ୍ୟ ପାଇ ମୁଁ ଅତ୍ୟନ୍ତ ପ୍ରୀତ ଓ ଅନୁଗୃହୀତ ହେଲି। ଆଜିଠାରୁ ସ୍ୱର୍ଗରେ ଦେବାଙ୍ଗନାବୃନ୍ଦ ତୁମର ଉଜ୍ଜ୍ୱଳ କୀର୍ତ୍ତି ଗାନ କରିବେ।

ପୃଥିବୀରେ ସର୍ବତ୍ର ତୁମର ନିର୍ମଳ କୀର୍ତ୍ତି ବିସ୍ତାରିତ ହେବ ।

ଚକ୍ର ତେଜରେ ସଂତପ୍ତ ଦୁର୍ବାସା ଆଶ୍ରୟ ଖୋଜିବା ଆଶାରେ ଅମ୍ବରୀଷଙ୍କ ନିକଟରୁ ଯିବାବେଳୁ ସେ ସେଇଠି ହାତଯୋଡ଼ି ଠିଆ ହୋଇ ତାଙ୍କ ଫେରିବା ବାଟ ଦେଖୁଥିଲେ । ଦୁର୍ବାସା ଫେରିବା ବେଳକୁ ପ୍ରାୟ ଏକ ବର୍ଷ ସମୟ ବିତି ଯାଇଥିଲା । ସେପର୍ଯ୍ୟନ୍ତ ରାଜା ଅମ୍ବରୀଷ କେବଳ ଜଳପାନ କରି ତାଙ୍କୁ ପ୍ରତୀକ୍ଷା କରିଥିଲେ । ସନ୍ତୁଷ୍ଟ ମନରେ ଆଶୀର୍ବାଦ ଦେଇ ଋଷି ଚ୍ଚଲିଯିବା ପରେ ଅବଶିଷ୍ଟ ପ୍ରସାଦ ସେବନ କରି ସେ ତୃପ୍ତ ହେଲେ । ଚକ୍ର କବଳରୁ ଋଷିଙ୍କ ମୁକ୍ତ ହେବାକୁ ସେ ଭଗବାନଙ୍କ କୃପା ଭାବି ତାଙ୍କ ପାଦପଦ୍ମରେ ଭକ୍ତିପୂତ ପ୍ରଣାମ ଜଣାଇଲେ ଏବଂ ପ୍ରଭୁଙ୍କର ଭକ୍ତବତ୍ସଳ ଗୁଣ ଅନୁଭବ କରି ତାଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା! ରାଜାଙ୍କୁ ଆଶୀର୍ବାଦ ଦେଇ ଋଷି ଦୁର୍ବାସା ମନଯାନ ଚଢ଼ି ଶୂନ୍ୟମାର୍ଗରେ ବ୍ରହ୍ମଲୋକରେ ପହଞ୍ଚି ପିତାମହ ବ୍ରହ୍ମାଙ୍କ ଆଗରେ ସବୁ କଥା ଶୁଣାଇଲେ ।

## (ଅମ୍ବରୀଷଙ୍କ ସାନ ରାଣୀ)

ରାଜା ଅମ୍ବରୀଷଙ୍କର ଉଜ୍ଜ୍ୱଳ କୀର୍ତ୍ତି ବ୍ରହ୍ମଲୋକ ସମେତ ତିନି ଭୁବନରେ ବିଜୁଳି ବେଗରେ ବ୍ୟାପିଗଲା । ଜୟ ଧ୍ୱନିରେ ଭକ୍ତ ରାଜାଙ୍କୁ ସମ୍ମାନ ଜଣାଇ ସଭିଏଁ ତାଙ୍କର କୀର୍ତ୍ତି ବାନା ଉଡ଼ାଇଲେ । ମିଥିଳା ନରେଶ ରାଜା ରାମମୋହନ ସିଂହଙ୍କ କନ୍ୟା ସୁବୁଦ୍ଧିନୀଙ୍କୁ ମଧ୍ୟ ଏହା ଅଛପା ରହିଲା ନାହିଁ । ପୂର୍ବଜନ୍ମର ସଂସ୍କାର କାରଣରୁ ତାଙ୍କ ହୃଦୟରେ ପିଲାଟି ଦିନରୁ ଭକ୍ତି ଲତିକା ଅଙ୍କୁରିତ ହୋଇଥିଲା । ସେ ବେଶ୍ ବୁଝି ସାରିଥିଲେ ଯେ ମୃତ୍ୟୁଭୟରୁ ରକ୍ଷା କରିବାରେ ଯିଏ ସମର୍ଥ, ସେ ହିଁ ତାର ସ୍ୱାମୀ ହେବାର ଯୋଗ୍ୟ, ସେଭଳି ସ୍ୱାମୀଙ୍କୁ ସେ ବରଣ କରିବେ । ଦେବର୍ଷି ନାରଦଙ୍କ ମୁଖରୁ ଅମ୍ବରୀଷଙ୍କର ଅଦ୍ଭୁତ ଭକ୍ତି କଥା ଶୁଣି ତାଙ୍କର ବିଶ୍ୱାସ ହୋଇଗଲା ଯେ ରାଜାଙ୍କର ପବିତ୍ର ଭକ୍ତି ହିଁ ତାଙ୍କୁ କାଳରୂପୀ ଅଜଗର ମୁଖରୁ ମୁକୁଳାଇବାକୁ ସମର୍ଥ । ସେ ତାଙ୍କୁ ମନେ ମନେ ସ୍ୱାମୀରୂପେ ବରଣ କରିନେଲେ ଏବଂ ସୁଯୋଗ ପାଇ ବିନମ୍ର ଭାବରେ ବାପାଙ୍କୁ ନିଜର ମନକଥା ଜଣାଇଲେ । ଯଦିବା ବର ବାଛିବା ଝିଅର କାମ ନୁହେଁ, ତା' ମନରେ ପୁଅ ପ୍ରତି ଆସକ୍ତି ରହିଥିବା ଯୋଗୁଁ ତା'ର ନିର୍ଣ୍ଣୟରେ ଭୁଲ୍ ହୋଇପାରେ, ତଥାପି ଏ କ୍ଷେତ୍ରରେ ସୁବୁଦ୍ଧିନୀ ଭୁଲ୍ କରି ନ ଥିଲେ; କାରଣ ତାଙ୍କର ଏହି ନିର୍ଣ୍ଣୟ ପଛରେ କାମବାସନା ନ ଥିଲା । ବରଂ ସେ ସଂସାରଜ୍ୱାଳାରୁ ମୁକ୍ତ ହୋଇ ଭକ୍ତିରସ ଆସ୍ୱାଦନ କରିବାକୁ

ଜଣେ ଭକ୍ତ ରାଜାଙ୍କର ଆଶ୍ରୟ ଲୋଡୁଥିଲେ ।

ରାଜା ରାମମୋହନ ସିଂହ ଝିଅର ଏଭଳି ପବିତ୍ର ନିଷ୍ଠାକୁ ପ୍ରଶଂସା କରି କୁଳପୁରୋହିତଙ୍କ ହାତରେ ଅମ୍ବରୀଷଙ୍କ ନିକଟକୁ ପତ୍ରିକା ପଠାଇଲେ । ବ୍ରାହ୍ମଣଙ୍କ ଠାରୁ ସମାଗ୍ରର ପାଇ ରାଜା ଅମ୍ବରୀଷ କହିଲେ—''ହେ ଭୂଦେବ! ମୁଁ ବୁଝି ପାରୁଛି ଯେ ରାଜକନ୍ୟାଙ୍କର ନିଷ୍ଠା ଅତି ଶୋଭନୀୟ, କିନ୍ତୁ ମୁଁ ଏଥିପାଇଁ ଯୋଗ୍ୟ ନୁହେଁ । ଠାକୁରଙ୍କ ସେବାରେ ମୋତେ ଏତେ ଆନନ୍ଦ ମିଳୁଛି ଯେ କାହା ସଙ୍ଗେ କଥାବାର୍ତ୍ତା ହେବାକୁ ବି ମୋ ମନ ହେଉ ନାହିଁ, ଅନ୍ୟ ଶହେ ରାଣୀଙ୍କୁ ବି ମୁଁ ଦେଖା କରିପାରୁ ନାହିଁ, ପୁଣି ମୁଁ ତୁମ ରାଜଜେମାଙ୍କର ସେବା କିପରି କରିବି? ତୁମେ ତାଙ୍କୁ କହିବ ମୋତେ କ୍ଷମା କରିଦେବେ ।'' ବ୍ରାହ୍ମଣଙ୍କ ଠାରୁ ଏହି ଅପ୍ରିୟ ସମାଗ୍ରର ପାଇ ଭକ୍ତିମତୀ ସୁବୁଦ୍ଧିନୀଙ୍କର ନିଷ୍ଠା ଆହୁରି ଦୃଢ଼ ହୋଇଗଲା । ରାଜାଙ୍କର ଅନାସକ୍ତି ଭାବରୁ ସେ ଜାଣିଗଲେ ଯେ ସେ ପରମ ବିରକ୍ତ ଓ ଧର୍ମଜ୍ଞ ଅଟନ୍ତି । ସେ ପ୍ରେମଭରା ହୃଦୟରେ କହିଲେ—''ମୁଁ ତାଙ୍କୁ ସ୍ୱାମୀରୂପେ ବରଣ କରି ସାରିଛି, ତାଙ୍କ ଛଡ଼ା ମୋ ହୃଦୟରେ ଅନ୍ୟ କାହା ପାଇଁ ସ୍ଥାନ ନାହିଁ । ତେଣୁ ହେ ବ୍ରାହ୍ମଣଦେବ! ଆପଣ ପୁଣି ଥରେ ଯାଇ ମୋ ତରଫରୁ ବିନତି କରନ୍ତୁ । ଯଦି ସେ ମୋତେ ଚରଣ ସେବିକାରୂପେ ଗ୍ରହଣ ନ କରନ୍ତି, ତେବେ ମୁଁ ପ୍ରାଣତ୍ୟାଗ କରିଦେବି ।''

ରାଜକନ୍ୟାଙ୍କର ସଂଦେଶ ନେଇ ବ୍ରାହ୍ମଣ ପହଞ୍ଚିଲେ ଅମ୍ବରୀଷଙ୍କ ଛାମୁରେ । ରାଜଜେମାଙ୍କର ନିଷ୍ଠା ଓ ପ୍ରତିଜ୍ଞା ଚିହ୍ନି ରାଜା ବେଶ୍ ଆନନ୍ଦିତ ହେଲେ ଏବଂ ନିଜର ବିଗ୍ରହକୁ ପଛକୁ ପକାଇ ବିବାହ ପ୍ରସ୍ତାବ ସ୍ୱୀକାର କରି ବ୍ରାହ୍ମଣଙ୍କୁ କହିଲେ—''ମହାତ୍ମନ୍! ମୁଁ ତ ଯାଇ ପାରିବି ନାହିଁ, ତୁମେ ମୋର ଏହି ଖଡ୍‌ଗଟିକୁ ଘେନିଯାଅ । ରାଜକୁମାରୀଙ୍କୁ କହିବ, ସେ ଏଥିରେ ବରଣମାଳା ଅର୍ପଣ କରି ଏହାକୁ ତିନିଥର ପ୍ରଦକ୍ଷିଣା କରିନେବେ ।'' ଏହି ବିଧିରେ ବିବାହ ସମ୍ପନ୍ନ ହେବାପରେ ରାଜକନ୍ୟା ସୁବୁଦ୍ଧିନୀ ମହା ସମାରୋହରେ ସହର୍ଷ ଚିତ୍ତରେ ରାଜାଙ୍କ ନଅରକୁ ଆସିଲେ । ରାଜା ଓ ରାଣୀ ଦୁହେଁ ଦୁହିଁଙ୍କର ଭକ୍ତିମୟୀ ଛବି ଦର୍ଶନ କରି ଚନ୍ଦ୍ରମଣ୍ଡଳକୁ ଦେଖି ସମୁଦ୍ର ଉଛୁଳି ଉଠିବା ପରି ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲେ । ରାଜା ଅନେକ ଦାସ-ଦାସୀଙ୍କୁ ସାନ ରାଣୀଙ୍କର ସେବାରେ ନିଯୁକ୍ତ କରିଦେଲେ । ଗୋଟିଏ ସୁନ୍ଦର ଉଆସରେ ତାଙ୍କ ରହିବାର ବ୍ୟବସ୍ଥା କରାଗଲା । ପ୍ରଥମ ସାକ୍ଷାତରେ ରାଜା ଅମ୍ବରୀଷ ସାନ ରାଣୀଙ୍କର ଭକ୍ତିରେ ଏତେ ପ୍ରଭାବିତ ହୋଇଗଲେ ଯେ ତାଙ୍କୁ ଲାଗିଲା ସତେ ଯେପରି ସେ ହେଉଛନ୍ତି ତାଙ୍କର ପୂର୍ବଜନ୍ମର ଭକ୍ତି ସହଚରୀ;

ଏବେ ତାଙ୍କୁ ପ୍ରଭୁଭକ୍ତିରେ ସହାୟତା କରିବା ପାଇଁ ରାଣୀ ହୋଇ ଆସିଛନ୍ତି।

ସାନ ରାଣୀ ତାଙ୍କ ଉଆସରେ ରହି ପ୍ରଭୁଭକ୍ତିରେ ଦିନ କାଟିଲେ। କିଛି ଦିନ ପରେ ସେ ନିଜର ଜଣେ ଅନ୍ତରଙ୍ଗ ଦାସୀକୁ ରାଜାଙ୍କ ସେବା ଅବସର ପାଇବାର ଉପାୟ ପଚ୍ଗରିଲେ। ଦାସୀ କହିଲା—"ରାଣୀ ମାଆ! ସେବା କଥା କିଏ ପଚ୍ଗରେ, ମହାରାଜଙ୍କର ଦର୍ଶନ ମିଳିବା ମଧ୍ୟ କଠିନ। ସେ ଦିବାନିଶି ଠାକୁର ସେବାରେ ମଗ୍ନ ରହନ୍ତି। ନିଜ ହାତରେ ସବୁ କାର୍ଯ୍ୟ କରନ୍ତି। ସେ କାହା ସଙ୍ଗେ ମିଶନ୍ତି ନାହିଁ କି କେହି ତାଙ୍କ ସଙ୍ଗେ ମିଶନ୍ତି ନାହିଁ।" ସାନ ରାଣୀ ଦାସୀଠାରୁ ରାଜାଙ୍କର ଦୈନିକ କାର୍ଯ୍ୟର ସୂଚନା ସଂଗ୍ରହ କରିନେଲେ ଏବଂ ରାଜାଙ୍କ ପୂଜା ମନ୍ଦିର ଦେଖିନେଲେ।

ରାଜା ପ୍ରତିଦିନ ପ୍ରଭାତରୁ ଠାକୁରଙ୍କ ସେବା ପାଇଁ ପୁଣ୍ୟତୋୟା ସରଜୂ ନଦୀରୁ ଜଳ ଆଣିବାକୁ ଯାଆନ୍ତି। ସେହି ସମୟରେ ରାଣୀ ଲୁଚି ଲୁଚି ଯାଇ ଠାକୁରଙ୍କ ମନ୍ଦିରରେ ଟହଲିଆ ସେବା କରି ରାଜା ଆସିବା ପୂର୍ବରୁ ନିଜ କକ୍ଷକୁ ଫେରି ଆସିଲେ। ରାଜା ଆସି ଦେଖିଲା ବେଳକୁ ପୂଜାଦ୍ରବ୍ୟ ସବୁ ଯୋଗାଡ଼ ହୋଇ ରହିଛି। ଘର ଧୁଆପୋଛା, ଫୁଲ-ତୁଳସୀ ତୋଳା, ଚନ୍ଦନ ଘୋରା ଇତ୍ୟାଦି ସବୁ କାର୍ଯ୍ୟ ସରିଛି। ଏପରି କିଏ କରିଛି ସେ ବୁଝି ପାରିଲେ ନାହିଁ। ତା'ପର ଦିନ ବି ସେଇ କଥା। ଏହିପରି ତିନି ଦିନ ଯିବା ପରେ ରାଜା ଭାବିଲେ ତାଙ୍କ ଭକ୍ତିକୁ ଚ୍ଗେରି କରି ନେଉଥିବା ଭକ୍ତିଚ୍ଗେର କିଏ? ତାଙ୍କ ଜୀବନର ପରମ ଧନ ହେଉଛି ଠାକୁର ସେବା। ସେ ଅନ୍ୟ ଦାସ-ଦାସୀଙ୍କୁ ସେବା ନ ଦେଇ ନିଜ ହାତରେ ସବୁ ସେବା କରନ୍ତି। ଏଥିପାଇଁ ତାଙ୍କର ସୁରକ୍ଷା କାର୍ଯ୍ୟରେ ଠାକୁରଙ୍କର ସୁଦର୍ଶନ ଚକ୍ର ନିଯୁକ୍ତ ହୋଇ ରହିଛି।

କଥିତ ଅଛି ଯେ ରାଜା ଅମ୍ବରୀଷଙ୍କର ଏହି ସେବା କାରଣରୁ ଥରେ ସେ ପ୍ରଭୁଙ୍କର ଦର୍ଶନ ପାଇଥିଲେ। ସେ ଠାକୁରଙ୍କର ମନ୍ଦିର ମାର୍ଜନା, ରୋଷେଇ ପ୍ରଭୃତି ସମସ୍ତ କାର୍ଯ୍ୟ ତ ସ୍ୱହସ୍ତରେ କରନ୍ତି, ଏପରି କି ଭୋଗରାଗ ପାଇଁ ନିଜେ ଅଟା ପେଷନ୍ତି ଓ ଧାନ କୁଟନ୍ତି। ଥରେ ଖରା ଦିନେ ସେ ଚକିରେ ଅଟା ପେଷୁଥିବା ସମୟରେ ଭକ୍ତବତ୍ସଳ ଭଗବାନ ତାଙ୍କ ପଛପଟେ ଠିଆ ହୋଇ ବିଞ୍ଚଣାରେ ବିଞ୍ଚି ତାଙ୍କର କ୍ଲେଶ ଦୂର କରୁଥିଲେ। ସେ ପଛକୁ ଚ୍ଗହିଁଦେବା ବେଳକୁ ଠାକୁରଙ୍କର ମୋହିନୀମୂର୍ତ୍ତି ଦେଖି ଚମକି ପଡ଼ିଲେ। ଲଜ୍ଜାରେ ତାଙ୍କ ମଥା ନଇଁଗଲା। ସେ ଅଧୀର ହୋଇ କହିଲେ—"ଜୟ ଜୟ ପ୍ରଭୁ! ତୁମକୁ କ'ଣ ଏ କାର୍ଯ୍ୟ ଶୋଭା ପାଉଛି?" ଭଗବାନ କହିଲେ—"ତେବେ ତୁମ ଭଳି ରାଜାକୁ କ'ଣ ଅଟା

ପେଷିବା ଶୋଭା ପାଉଛି?'' ଅମ୍ବରୀଷ କହିଲେ—''ଭକ୍ତବତ୍ସଳ! ମୁଁ ତ ତୁମ ଚରଣ କିଂକର, ଏହା ତ ମୋର କର୍ତ୍ତବ୍ୟ।'' ଠାକୁରେ କହିଲେ—''ସେଇଭଳି ଭକ୍ତର ସେବା କରିବା ତ ମୋର ଚିର ପ୍ରତିଜ୍ଞା। ତୁମେ ବ୍ୟସ୍ତ ହେଉଛ କାହିଁକି?''

ଯେଉଁ କାରଣରୁ ରାଜା ପ୍ରଭୁଙ୍କର ଏତେ ପ୍ରୀତି ଭାଜନ ହୋଇପାରିଛନ୍ତି, ସେ ତାହାକୁ ଛାଡ଼ିଦେବେ କେମିତି? ତାଙ୍କର ସେବାରୂପୀ ଅମୂଲ୍ୟ ଧନକୁ ସେ ଚୋରର ହାତରେ ଲୁଟାଇଦେବେ କିପରି? ସେ ଚୋରକୁ ଧରିବା ପାଇଁ ଗୋଟିଏ ଉପାୟ କଲେ। ପରଦିନ ସକାଳୁ ଶଙ୍ଖ, ମୃଦଙ୍ଗ, ଭେରୀ, ତୂରୀ ଇତ୍ୟାଦି ବଜାଇ, ଠାକୁରଙ୍କର ଜୟ ଧ୍ୱନି କରି ଜଳ ଆଣିବାକୁ ପାତ୍ର-ମନ୍ତ୍ରୀଙ୍କୁ ପଠାଇଦେଲେ ଏବଂ ନିଜେ ଅଧାରୁ ଫେରିଆସି ଲୁଚି ରହି ସେବାଚୋରର ତଦାରଖ କଲେ। ରାଣୀଙ୍କୁ ଏ କଥା ଜଣା ନ ଥିଲା। ସେ ସବୁଦିନ ପରି ସେଦିନ ମଧ୍ୟ ସେବା କରିବାକୁ ଆସିବାରୁ ରାଜା ହଠାତ୍ ଘରୁ ବାହାରି ଆସି ତାଙ୍କ ହାତ ଧରି ପକାଇ କହିଲେ—''ଏ କ'ଣ କରୁଛ ରାଣୀ! ମୋର ସେବାକୁ ତୁମେ ଚୋରି କରିନେଉଛ କାହିଁକି?'' ରାଣୀ ଟିକିଏ ଅଧୋବଦନରେ ଚପା କଣ୍ଠରେ କହିଲେ—''ମହାରାଜ! ମୁଁ ତୁମର ଅର୍ଦ୍ଧାଙ୍ଗିନୀ। ତୁମର ପ୍ରତ୍ୟେକ କାର୍ଯ୍ୟରେ ମୋର ଅଧିକାର ରହିଛି। ତେଣୁ ମୋତେ ଠାକୁରଙ୍କ ସେବାର କିଛି ସୌଭାଗ୍ୟ ଦିଅ। ଏ ଦାସୀକୁ ସେବାରୁ ବଞ୍ଚିତ କର ନାହିଁ।'' ରାଣୀଙ୍କ ଭକ୍ତି ଲକ୍ଷ୍ୟ କରି ପ୍ରସନ୍ନ ଚିତ୍ତରେ ରାଜା କହିଲେ—''ରାଣୀ! ଯଦି ତୁମର ଠାକୁର ସେବାରେ ଏତେ ପ୍ରୀତି, ତେବେ କିଛି ସେବା କାହିଁକି, ତୁମେ ତୁମ କକ୍ଷରେ ଠାକୁରଙ୍କର ସମ୍ପୂର୍ଣ୍ଣ ସେବାର ବ୍ୟବସ୍ଥା କରାଅ।'' ରାଜାଙ୍କର କୋମଳ ବାଣୀ ରାଣୀଙ୍କ ହୃଦୟରେ ସୁଶୀତଳ ଚନ୍ଦନ ବୋଳିଦେବା ଭଳି ଲାଗିଲା। ସେ ତା' ପରଦିନ ଅତି ଆଗ୍ରହରେ ମହା ମହୋତ୍ସବର ଆୟୋଜନ କରି ନିଜ କକ୍ଷରେ ଠାକୁରଙ୍କ ସେବା ସ୍ଥାପନା କଲେ। ନବଘନ ସମ ଚିକ୍କଣ କାଳିଆ ନନ୍ଦନନ୍ଦନଙ୍କୁ ସୁନ୍ଦର ବେଶରେ ମଣ୍ଡଣି କରି ସେ ଦୀର୍ଘ ସମୟ ଧରି ତାଙ୍କୁ ନିରେଖି ଚାହାନ୍ତି। ସେହି ରୂପରେ ତାଙ୍କର ମନ ଏଭଳି ଲାଖିଯାଏ ଯେ ତାଙ୍କର ବାହ୍ୟଜ୍ଞାନ ରହେ ନାହିଁ। ଚନ୍ଦ୍ର କିରଣ ସ୍ପର୍ଶରେ ଚନ୍ଦ୍ରକାନ୍ତ ମଣି ତରଳିଯିବା ପରି ତାଙ୍କ ହୃଦୟ ପ୍ରେମରସରେ ଦ୍ରବିତ ହୋଇଯାଏ ଓ ନେତ୍ର ଅଶ୍ରୁଳ ହୋଇଉଠେ। ନେତ୍ରର ପଲକପାତ ମଧ୍ୟ ତାଙ୍କୁ ଅସହ୍ୟ ବୋଧହୁଏ।

ସତରେ ଏହା ରାଣୀଙ୍କର ଅନେକ ଜନ୍ମକୃତ ଭକ୍ତିସାଧନାର ଫଳ। ପୂର୍ବର ଭକ୍ତି ପ୍ରଭାବରୁ ତାଙ୍କର ସକଳ କଲ୍ମଷ ନଷ୍ଟ ହୋଇସାରିଥିଲା। ତେଣୁ ଠାକୁରଙ୍କ

ସେବାରେ ତାଙ୍କର ଏଭଳି ଅନୁରାଗ ପ୍ରକାଶ ପାଇଥିଲା। ଶାସ୍ତ୍ର କହିଛନ୍ତି ଯେ ସହସ୍ର ଜନ୍ମର ତପ, ଧ୍ୟାନ, ସମାଧି ପ୍ରଭାବରେ ପାପରାଶି ଭସ୍ମୀଭୂତ ହୋଇଗଲେ ମନୁଷ୍ୟର କୃଷ୍ଣଙ୍କ ଚରଣରେ ଅନୁରାଗ ହୁଏ। ସାନ ରାଣୀଙ୍କ ଜୀବନରେ ତାହା ହିଁ ଘଟିଥିଲା। ତାଙ୍କର ଅନାବିଳ ପ୍ରଭୁଭକ୍ତି କାରଣରୁ ଠାକୁରଙ୍କର ଭୋଗ-ରାଗ ସେବା ଦିନକୁ ଦିନ ବଢ଼ି ଚାଲିଲା। ପୁରଜନଙ୍କ ଠାରୁ ଓ ନାରଦଙ୍କ ମୁଖରୁ ରାଣୀଙ୍କର ପ୍ରଶଂସା ଶୁଣି ରାଜା ଥରେ ତାଙ୍କର ଦର୍ଶନ କରିବାକୁ ମନ ବଳାଇଲେ। ସେ ଦୈନିକ ସେବାକାର୍ଯ୍ୟ ସମାପନ କରି ମନ ଉଲ୍ଲାସରେ ଏକାକୀ ରାଣୀଙ୍କ ପୂଜାଘର ଆଡ଼କୁ ଆଗେଇ ଚାଲିଲେ। ଯଦିବା ରାଣୀ ଉଆସକୁ ଯିବା ପାଇଁ ବ୍ୟାକୁଳ ହେବା ଜଣେ ଭକ୍ତ ରାଜା ପକ୍ଷେ ଅଶୋଭନୀୟ, ଏହା ତାଙ୍କ ଭକ୍ତିରେ କଳଙ୍କ ଭଳି ମନେହୁଏ, ତଥାପି ଏଠାରେ ରାଜାଙ୍କର ରାଣୀଙ୍କ ନିକଟକୁ ଯିବା ଦୋଷାବହ ନୁହେଁ। ସେ ରାଣୀ ନିକଟକୁ ଯିବାକୁ ବ୍ୟାକୁଳ ନୁହନ୍ତି, ସେ ବ୍ୟାକୁଳ ଜଣେ ଅନୁରାଗିଣୀ ଭକ୍ତା ସଙ୍ଗେ ଭେଟିବା ପାଇଁ। ସେ ଅନ୍ୟ ରାଣୀମାନଙ୍କ ଠାରୁ ଉଦାସୀନ ରହୁଥିଲେ, କିନ୍ତୁ ଭକ୍ତଙ୍କ ଠାରୁ କଦାପି ଉଦାସୀନ ରହୁ ନ ଥିଲେ। ଭକ୍ତଙ୍କ ପ୍ରତି ତ ତାଙ୍କର ଅଗାଧ ପ୍ରୀତି ଭାବନା ଥିଲା।

ରାଜା ଭାବିଲେ, ତାଙ୍କ ଆସିବାର ସୂଚନା ମିଳିଲେ ରାଣୀଙ୍କ ଭକ୍ତିରେ ବାଧା ଉପୁଜିପାରେ, ନାମ-ସଂକୀର୍ତ୍ତନରେ ବ୍ୟାଘାତ ଘଟିପାରେ, ସେଥିପାଇଁ ସେ ପାଦ ଚିପି ଚିପି ପଛରୁ ଯାଇ ରାଣୀଙ୍କ ପୂଜାକକ୍ଷର ଦ୍ୱାରରେ ଅପେକ୍ଷା କଲେ। ଦ୍ୱାରପାଳ ଜୟ ଘୋଷ କରି ରାଣୀଙ୍କୁ ରାଜାଙ୍କ ଆଗମନର ସଂକେତ ଦେବାକୁ ଉଦ୍ୟତ ହୁଅନ୍ତେ ସେ ତାକୁ ଇଙ୍ଗିତରେ ବାରଣ କଲେ। ରାଣୀଙ୍କର ପ୍ରେମରସ ଭରା ସୁମଧୁର କଣ୍ଠର ନାମ-ସଂକୀର୍ତ୍ତନ ଲହରୀ ଭାସି ଆସି ରାଜାଙ୍କ ହୃଦୟରେ ଶିହରଣ ସୃଷ୍ଟି କଲା। ସେ ଟିକିଏ ଭିତରକୁ ଯାଇ ପଛରୁ ରାଣୀଙ୍କର ଭାବବିହ୍ୱଳ ସ୍ଥିତି ଲକ୍ଷ୍ୟ କରି ଦ୍ରବିତ ହୋଇଗଲେ। ସେ ଦେଖିଲେ, ପ୍ରେମରସ ନିମଗ୍ନା ରାଣୀ ବୀଣା ବଜାଇ ତାଙ୍କ ଠାକୁରଙ୍କୁ ଜଣାଣ ଶୁଣାଉଛନ୍ତି। ତାଙ୍କ ନେତ୍ରରୁ ଅବିରଳ ଅଶ୍ରୁଧାରା ବହି ଚାଲିଛି। ତାଙ୍କ ମୁଖମଣ୍ଡଳରେ ଏକ ଅଦ୍ଭୁତ ଜ୍ୟୋତି। ସ୍ୱର୍ଗୀୟ ଦେବୀ ଭଳି ରାଣୀଙ୍କୁ ପ୍ରଭୁ ଆରାଧନାରେ ମଗ୍ନ ଦେଖି ରାଜା ଅମ୍ବରୀଷ ଖୁବ୍ ପ୍ରସନ୍ନ ହେଲେ। ଏଭଳି ଭକ୍ତି ପରାୟଣା ମହିୟସୀ ନାରୀକୁ ଅର୍ଦ୍ଧାଙ୍ଗିନୀରୂପେ ପାଇଥିବାରୁ ସେ ମନେ ମନେ ନିଜର ଭାଗ୍ୟକୁ ପ୍ରଶଂସା କଲେ। ସେ ଆଉ ଅଧିକ ସମୟ ନିଜକୁ ଗୁପ୍ତ ରଖି ନ ପାରି ରାଣୀଙ୍କ ନିକଟରେ ପହଞ୍ଚିଲେ। ରାଜାଙ୍କୁ ଆସିବା ଦେଖି ରାଣୀ

ଧଡ଼ପଡ଼ ହୋଇ ଆସନ ତେଜି ତାଙ୍କ ଚରଣରେ ଭକ୍ତିପୂତ ପ୍ରଣତି ଜଣାଇଲେ। ଏକାଧାରରେ ଜଣେ ରାଜା, ଭକ୍ତ, ଗୁରୁ ଓ ସ୍ୱାମୀଙ୍କୁ ନିକଟରେ ପାଇଥିବାରୁ ତାଙ୍କ ହୃଦୟ ଆନନ୍ଦରେ ନାଚ ଉଠୁଥାଏ। ସେ ରାଜାଙ୍କୁ ଠାକୁରଙ୍କ ଭଳି ଆଦର କରି ଆସନ ଦେବା ସହିତ ପାଦ୍ୟ, ଅର୍ଘ୍ୟ ଦେଇ ପୂଜା କଲେ ଏବଂ ପ୍ରଣୟ ମିଶା ଅଧୋମୁଖରେ ତାଙ୍କ ସମ୍ମୁଖରେ ଉଭା ହୋଇ ରହିଲେ। ସତ କହିବାକୁ ଗଲେ ରାଣୀଙ୍କର ଏହି ବିନମ୍ରତା କାରଣରୁ ତାଙ୍କ ହୃଦୟରେ ଭକ୍ତିଦେବୀ ବିରାଜିତ ହୋଇଥିଲେ। ଅବିନୀତ ବ୍ୟକ୍ତିଠାରୁ ଭକ୍ତିଦେବୀ ଦୂରେଇ ରହନ୍ତି। ଶାସ୍ତ୍ରରେ କୁହାଯାଇଛି ଯେ ଯାହାଙ୍କ ଠାରୁ ଗୋଟିଏ ଅକ୍ଷର ବି ଶିକ୍ଷା ମିଳିଥାଏ, ସେଭଳି ଗୁରୁଙ୍କୁ ହତାଦର କରୁଥିବା ଲୋକ ଶତ ଜନ୍ମପର୍ଯ୍ୟନ୍ତ କୁକୁର ହୋଇ ନରକ ଯାତନା ଭୋଗ କରେ।

ରାଜା ଅମ୍ବରୀଷ ତ ସାରଗ୍ରାହୀ। ତାଙ୍କ ପାଇଁ ବାହ୍ୟ ପୂଜା-ଉପଚାରର ମହତ୍ତ୍ୱ ନ ଥିଲା। ସେ ଚାହୁଁଥିଲେ ଭକ୍ତି ପ୍ରବାହରେ ବିଘ୍ନ ନ ହେଉ। ସେ ଅତି ସ୍ନେହରେ କହିଲେ—"ରାଣୀ! ଏ ସବୁ ଉପଚାର ଥାଉ। ପୂର୍ବପରି ତୁମେ ବୀଣା ବଜାଇ ପ୍ରଭୁଙ୍କ ଯଶ ଗାନ କର। ତୁମର ସୁମଧୁର କୀର୍ତ୍ତନ ଲହରୀ ମୋ କର୍ଣ୍ଣରେ ପ୍ରବେଶ କରି ମୋ ହୃଦୟକୁ ଆନନ୍ଦ ବିଭୋର କରିଦେଉଛି। ସେ ଆନନ୍ଦ ଭାଷାରେ କହିବାକୁ ମୁଁ ଅକ୍ଷମ। ଏବେ ତୁମେ ମୋତେ ସେହି ପ୍ରେମସିନ୍ଧୁରେ ଅବଗାହନ କରାଇଦିଅ।" ରାଣୀ ପୁଣି ଥରେ ବୀଣା ବଜାଇ ପ୍ରଭୁଙ୍କ ଗୁଣ କୀର୍ତ୍ତନ କଲେ। ଦୁଇ ଭକ୍ତ ପ୍ରଭୁଭକ୍ତିରେ ଏତେ ମଗ୍ନ ହୋଇଗଲେ ଯେ ରାତିଟା ତାଙ୍କ ପାଇଁ କ୍ଷଣକ ପରି ବିତିଗଲା। ତମୋଗୁଣ ପ୍ରଧାନ ରାତି ମଧ୍ୟ ପ୍ରେମୀଜନଙ୍କ ମିଳନରେ ପ୍ରେମରୂପା ହୋଇଗଲା।

ଥରେ ଭକ୍ତିରସ ଚାଖିବା ପରେ ରାଜାଙ୍କର ମନ ଆଉ କେଉଁଠି ଲାଗିଲା ନାହିଁ। ପ୍ରତିଦିନ ସକାଳୁ ସକାଳୁ ନିତ୍ୟକର୍ମ ଓ ଠାକୁରସେବା ସାରି ସାନ ରାଣୀଙ୍କ ପୂଜା କକ୍ଷକୁ ଚାଲିଯାଆନ୍ତି। ସେଠାରେ କୀର୍ତ୍ତନ, ଜଣାଣ ଚାଲେ। ଏଣେ ରାଜାଙ୍କ ସେବିତ ଠାକୁରଙ୍କର ମନ ବି ଏକାକୀ ଲାଗିଲା ନାହିଁ। ସେ ତାଙ୍କୁ ସାନ ରାଣୀଙ୍କ ନିକଟକୁ ନେଇଯିବାକୁ ରାଜାଙ୍କୁ ଆଜ୍ଞା ଦେଲେ। ଏଥର ରାଜାଙ୍କର ସବୁ ସମୟ କଟିଲା ରାଣୀଙ୍କ ଭବନରେ।

ରାଜା ଏବେ ସାନ ରାଣୀଙ୍କ ପୂଜା କକ୍ଷରେ ଅଧିକ ସମୟ ଭକ୍ତିମଗ୍ନ ହେଉଥିବା କଥା ଶୁଣି ଅନ୍ୟ ରାଣୀମାନେ ମଧ୍ୟ ରାଜାଙ୍କୁ ନିଜ ନିଜ ଉଆସକୁ

ଡାକିବାର ଉପାୟ ଖୋଜିଲେ। କେଉଁ କାରଣରୁ ରାଜା ସାନ ରାଣୀ ନିକଟକୁ ଯାଇଛନ୍ତି, ତାହାର ସନ୍ଧାନ ପାଇ ସେମାନେ ମଧ୍ୟ ନିଜ ନିଜ ଉଆସରେ ଠାକୁର ସେବା ଆରମ୍ଭ କରିଦେଲେ। ସେମାନଙ୍କ ମନରେ ସଉତୁଣୀ ଦ୍ରୋହ ନ ଥିଲା, ବରଂ ଏହି ମାଧ୍ୟମରେ ସେମାନେ ଭକ୍ତ ରାଜାଙ୍କର ପ୍ରୀତି ଭାଜନ ହେବା ପାଇଁ ଚାହୁଁଥିଲେ। ପ୍ରଥମେ ପ୍ରଥମେ ଠାକୁର ସେବାର ମହିମା ଜାଣି ନ ଥିଲେ ମଧ୍ୟ ଧୀରେ ଧୀରେ ପ୍ରଭୁଙ୍କ ପ୍ରତି ସେମାନଙ୍କର ଆନ୍ତରିକ ଭକ୍ତି ଜାଗରିତ ହେଲା। ରାଜା ସେମାନଙ୍କର ଭକ୍ତିଭରା ଆମନ୍ତ୍ରଣ ସ୍ୱୀକାର କଲେ। କାନକୁ ଦୁଇ କାନ ହୋଇ ଏ କଥା ପ୍ରଜାଜନଙ୍କ ଭିତରେ ଖେଳିଗଲା। ସେମାନେ ବିଷୟ ଭୋଗରୁ ମନକୁ ହଟାଇ ଠାକୁରଙ୍କ ସେବାରେ ଲାଗିଗଲେ। ଏହିପରି ଭାବେ ସେହି ରାଜ୍ୟରେ ଭକ୍ତିର ଡିଣ୍ଡିମ ବାଜି ଉଠିଲା। ପୂର୍ବରୁ ଯେଉଁଠାରେ କଳହ ହେଉଥିଲା, ସେଠାରୁ ଶୁଭିଲା ପୂଜା, ଆଳତି ଓ ନାମ-ସଂକୀର୍ତ୍ତନର ସୁଲଳିତ ସ୍ୱରଲହରୀ। ଘର ପରିଣତ ହୋଇଗଲା ମନ୍ଦିରରେ। ସାନରାଣୀଙ୍କ ଭକ୍ତି ପ୍ରଭାବରେ ସାରା ରାଜ୍ୟ ପ୍ରଭୁଭକ୍ତିରେ ଅନୁପ୍ରାଣିତ ହୋଇଗଲା। ଲାଗିଲା ସତେ ଅବା ଭକ୍ତିଦେବୀ ମୂର୍ତ୍ତିମତୀ ହୋଇ ସମଗ୍ର ନଗରରେ ନୃତ୍ୟ କରୁଛନ୍ତି। ସେମାନଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ପ୍ରଭୁ ସେମାନଙ୍କୁ ନିଜର ପ୍ରୀତିଛାୟା ଦାନ କଲେ।

## ଶ୍ୱପଚ ବାଲ୍ମୀକି

ଅହୋ ବତ ସ୍ୱପଚଽତୋ ଗରୀୟାନ୍
ଯଜ୍ଜିହ୍ୱାଗ୍ରେ ବର୍ତ୍ତତେ ନାମ ତୁଭ୍ୟମ୍।
ତେପୁସ୍ତପସ୍ତେ ଜୁହୁବୁଃ ଶସ୍ନୁରାର୍ଯ୍ୟା
ବ୍ରହ୍ମାନୂଚୁର୍ନାମ ଗୃଣନ୍ତି ଯେ ତେ ॥

"ଆହା! ଯାହାର ଜିହ୍ୱାଗ୍ରରେ ସର୍ବଦା ତୁମର ପରମ ପବିତ୍ର ନାମ ବିରାଜମାନ ଥାଏ, ସେହି ଶ୍ୱପଚ (ଚଣ୍ଡାଳ) ମଧ୍ୟ ଅତୀବ ଧନ୍ୟ। ଯେଉଁ ଶ୍ରେଷ୍ଠ ପୁରୁଷ ତୁମର ନାମ ଉଚ୍ଚାରଣ କରନ୍ତି, ସେ ହୋମ, ତୀର୍ଥସ୍ନାନ, ସଦାଚାର ପାଳନ ଓ ବେଦାଧ୍ୟୟନ ପ୍ରଭୃତି ସବୁକିଛି କରି ସାରିଛନ୍ତି ବୋଲି ଜାଣ।"

ଭକ୍ତ ସବୁବେଳେ ନିଜକୁ ଲୁଚାଇ ରଖେ, କିନ୍ତୁ ଭଗବାନ ଭକ୍ତର ମହିମା ଉଜାଗର କରି ଦିଅନ୍ତି। ଭକ୍ତ ନିଜକୁ ଅତି ଛୋଟ ଭାବେ, କିନ୍ତୁ ଭଗବାନ ତାକୁ

ନିଜ ହୃଦୟରେ ସ୍ଥାନ ଦେଇ ବଡ଼ କରି ଦିଅନ୍ତି। ଏହା କେବଳ ପ୍ରଭୁଙ୍କର ବାତ୍ସଲ୍ୟ ସ୍ନେହ। ସେ କେତେ ଯେ ଭଲ ପାଆନ୍ତି ନିଜ ଦାସଙ୍କୁ, ତାହା ଭାଷାରେ କହିବା କଦାପି ସମ୍ଭବ ନୁହେଁ। ଏହାର ଏକମାତ୍ର କାରଣ ହେଉଛି ଯେ ଭକ୍ତ ତା'ର ଜାତି, ବର୍ଣ୍ଣ, ବିଦ୍ୟା, ଯୋଗ୍ୟତା ଇତ୍ୟାଦି ସବୁ କିଛିକୁ ସମର୍ପଣ କରିଦେଇଥାଏ ତାଙ୍କ ପାଦ ତଳେ। ସେ ନିଜର କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ମାନେ ନାହିଁ। ପ୍ରଭୁଙ୍କ ବ୍ୟତୀତ ଜାତି, ବର୍ଣ୍ଣ ଆଦି କୌଣସି ଜିନିଷକୁ ନେଇ ନିଜକୁ ବଡ଼ ଭାବିବା ଭକ୍ତିରେ କଳଙ୍କ। ଉଚ୍ଚ ବର୍ଣ୍ଣର ହୋଇ ମଧ୍ୟ ବ୍ୟକ୍ତି ଯଦି ଭକ୍ତିହୀନ, ତେବେ ଜଳବିହୀନ ବାଦଲ ପରି ସେ ଶୋଭାପାଏ ନାହିଁ। ମାତ୍ର ନୀଚ କୁଳରେ ଜନ୍ମ ହୋଇ ବ୍ୟକ୍ତି ଯଦି ଭକ୍ତିରେ ଯୁକ୍ତ, ତେବେ ଭଗବାନଙ୍କ ଦରବାରରେ ତାକୁ ଆଦର ମିଳେ।

ଏହିଭଳି ଭଗବାନଙ୍କର ଜଣେ ଆଦର ଭାଜନ ଭକ୍ତ ଥିଲେ ଶ୍ୱପଚ ବାଲ୍ମୀକି। କୁହାଯାଏ ଯେ ମାଣ୍ଡବ୍ୟ ଋଷି କ୍ରୋଧିତ ହୋଇ ଯମରାଜଙ୍କୁ ଏକାବେଳେ ରାଜା, ଦାସୀପୁତ୍ର ଓ ଶୂଦ୍ର ହେବା ପାଇଁ ଅଭିଶାପ ଦେଇଥିଲେ। ତେଣୁ ଯମରାଜ ରାଜାରୂପରେ ଯୁଧିଷ୍ଠିର ହୋଇ, ଦାସୀପୁତ୍ର ରୂପରେ ବିଦୁର ହୋଇ ଓ ଶୂଦ୍ର ରୂପରେ ଶ୍ୱପଚ ବାଲ୍ମୀକି ହୋଇ ପୃଥିବୀରେ ଅବତରିତ ହୋଇଥିଲେ। ସେ ଗୁପ୍ତ ରୀତିରେ ଭକ୍ତି କରୁଥିଲେ। ହସ୍ତିନାପୁରରେ ରହୁଥିଲେ ମଧ୍ୟ ତାଙ୍କୁ ଭକ୍ତ ବୋଲି କେହି ଜାଣି ନ ଥିଲେ। ଭଗବାନ ଜାଣିଶୁଣି ଲୋକମାନଙ୍କୁ ଭକ୍ତିର ମହତ୍ତ୍ୱ ଶିକ୍ଷା ଦେବା ପାଇଁ ତାଙ୍କର ମହିମା ବିସ୍ତାର କଲେ। ଗୋଟିଏ ଘଟଣା ରଚି ଭଗବାନ ସଂସାରକୁ ଜଣାଇଦେଲେ ଯେ ତାଙ୍କ ଭକ୍ତି ପାଇଁ ଜାତି, ବର୍ଣ୍ଣ ଇତ୍ୟାଦିର କୌଣସି ବାଛବିଗ୍ଚର ନାହିଁ। ଆବ୍ରାହ୍ମଣ ଚଣ୍ଡାଳ ସମସ୍ତେ ତାଙ୍କୁ ଭକ୍ତିଡୋରିରେ ବାନ୍ଧି ପାରିବେ।

ଦ୍ୱାପର ଯୁଗର କଥା। ଧର୍ମପୁତ୍ର ରାଜା ଯୁଧିଷ୍ଠିର ହସ୍ତିନାର ସିଂହାସନରେ ଆସୀନ ଥିଲେ। ନିଷ୍କଣ୍ଟକ ରାଜ୍ୟ ପାଇ ସେ ଯଜ୍ଞ ଦ୍ୱାରା ଯଜ୍ଞପତି ଶ୍ରୀକୃଷ୍ଣଙ୍କ ଆରାଧନା ପାଇଁ ଇଚ୍ଛା ପ୍ରକାଶ କଲେ। ଅନ୍ୟ ପାଣ୍ଡବମାନେ ବଡ଼ଭାଇଙ୍କ ଇଚ୍ଛାକୁ ଶିରୋଧାର୍ଯ୍ୟ କରି ଅବିଳମ୍ବେ ଯଜ୍ଞ ପାଇଁ ସକଳ ବ୍ୟବସ୍ଥା କରିବାରେ ଲାଗି ପଡ଼ିଲେ। କ୍ଷଣକ ଭିତରେ ନଗର ସାରା ଏ ସମାଚ୍ଚର ପହଞ୍ଚିଗଲା। ସକଳ ପ୍ରଜା ଯଜ୍ଞମଣ୍ଡପରେ ଏକତ୍ରିତ ହେଲେ। ଋଷି-ମହର୍ଷିଙ୍କ ଆଗମନରେ ହସ୍ତିନାପୁର ଆନନ୍ଦରେ ଫୁଲି ଉଠୁଥାଏ। ଚତୁର୍ଦିଗ କୋଳାହଳ ପୂର୍ଣ୍ଣ। ବେଦଜ୍ଞ ବ୍ରାହ୍ମଣବୃନ୍ଦ ବିଧି-ବିଧାନରେ ଯଜ୍ଞମଣ୍ଡପର ସାଜସଜ୍ଜା ସହିତ ଯଜ୍ଞ ନିମନ୍ତେ ବିବିଧ ସାମଗ୍ରୀ ଏକତ୍ର କରି ପାଞ୍ଜି ଦେଖି ଶୁଭାରମ୍ଭର ଉଚିତ ସମୟ ନିର୍ଦ୍ଧାରଣ କରିଦେଲେ।

ସେହି ସମୟରେ ଯଜ୍ଞମଣ୍ଡପରେ ଭଗବାନ ଶ୍ରୀକୃଷ୍ଣ ଗୋଟିଏ ଶଙ୍ଖ ସ୍ଥାପନା କରି କହିଲେ—ଏହି ଶଙ୍ଖଟି ଯଜ୍ଞର ସକୁଶଳ ପୂର୍ଣ୍ଣତା ଓ ଅପୂର୍ଣ୍ଣତାକୁ ସୂଚିତ କରିବ। ଯଦି ସମୁଚିତ ଭାବେ ଯଜ୍ଞ ସମ୍ପାଦନ ହୋଇଯାଏ, ତେବେ ଶଙ୍ଖ ଆପେ ଆପେ ବାଜି ଉଠିବ। ଯଦି ଶଙ୍ଖ ନ ବାଜିଲା, ତେବେ ଜାଣିବାକୁ ହେବ ଯେ ଯଜ୍ଞରେ କୌଣସି ତ୍ରୁଟି ରହି ଯାଇଛି, ତାହା ପୂର୍ଣ୍ଣାଙ୍ଗ ହୋଇ ନାହିଁ।

ଯଥା ସମୟରେ ଯଜ୍ଞ ଆରମ୍ଭ ହେଲା। ସମସ୍ତ ବିଧି-ବିଧାନ ପାଳନ ସହିତ ଆନନ୍ଦରେ ଯଜ୍ଞ କାର୍ଯ୍ୟ ଚାଲିଲା। ଶେଷରେ ପୂର୍ଣ୍ଣାହୁତି, ତର୍ପଣ, ବ୍ରାହ୍ମଣ ଭୋଜନ, ଦାନ-ପୁଣ୍ୟ ଇତ୍ୟାଦି କାର୍ଯ୍ୟ ସୁଚାରୁରୂପେ ହେବା ପରେ ମଧ୍ୟ ଶଙ୍ଖ ବାଜିଲା ନାହିଁ। ସମସ୍ତେ ଚିନ୍ତିତ ହୋଇ ପଡ଼ିଲେ। ଏତେ ପରିଶ୍ରମ କରି ସତର୍କତାର ସହିତ ଯଜ୍ଞ କରାଗଲେ ମଧ୍ୟ କି ଅପୂର୍ଣ୍ଣତା ରହିଗଲା! ଶଙ୍ଖ ବାଜିଲା ନାହିଁ କାହିଁକି? ସକଳ ପ୍ରଜା ଭଗବାନଙ୍କୁ ପ୍ରାର୍ଥନା କଲେ—''ପ୍ରଭୁ! ଯଜ୍ଞରେ କେଉଁଠି କି ତ୍ରୁଟି ରହିଗଲା ଦୟା କରି କୁହନ୍ତୁ।'' ଭଗବାନ କହିଲେ—''ଶଙ୍ଖ ନ ବାଜିବାର ରହସ୍ୟ ଅତି ଗୁପ୍ତ। ତୁମେମାନେ ଯଦି ଜାଣିବାକୁ ଇଚ୍ଛୁକ, ଏ ରହସ୍ୟ ମୁଁ ଖୋଲି କହିବି। ମୋ କଥାରେ ବିଶ୍ୱାସ କରି ଦୃଢ଼ଭାବେ ମାନିନେବ, କଦାପି ଅନ୍ୟଥା ଭାବିବ ନାହିଁ। ଯଦିବା ଋଷି-ମହର୍ଷିଙ୍କ ସମାଗମରେ ଯଜ୍ଞସ୍ଥଳ ପରିପୂରିତ, ସେମାନଙ୍କ ଆଦର-ସତ୍କାରରେ କୌଣସି ଊଣା ହୋଇନାହିଁ, ସମସ୍ତେ ସ୍ୱାଦିଷ୍ଟ ଭୋଜନ ଓ ଭୂରି ଦକ୍ଷିଣା ପାଇ ଅତି ସନ୍ତୁଷ୍ଟ, ତଥାପି କୌଣସି ରସିକ ବୈଷ୍ଣବ ସନ୍ଥ ଏ ଯଜ୍ଞରେ ଭୋଜନ କରି ନାହାନ୍ତି। ତେଣୁ ଶଙ୍ଖ ବାଜିଲା ନାହିଁ। ତୁମେ ଭାବୁଥିବ ଯେ ଏ ଋଷି-ମହର୍ଷିମାନେ କଣ ଭକ୍ତ ନୁହନ୍ତି? ତେବେ ମୁଁ ଏ କଥା କେମିତି ବା କହିବି ଯେ ଭକ୍ତ ନୁହନ୍ତି ବୋଲି। ଏମାନଙ୍କ ମଧ୍ୟରେ ଅନେକ ଶ୍ରେଷ୍ଠତମ ଭକ୍ତ ବିରାଜମାନ ଅଛନ୍ତି। ମାତ୍ର ମୋ ହୃଦୟର ଗୋଟିଏ ଗୁପ୍ତ କଥା ଶୁଣିଥାଅ ଯେ ମୁଁ ତାହାକୁ ହିଁ ସର୍ବଶ୍ରେଷ୍ଠ ରସିକ ବୈଷ୍ଣବ ଭକ୍ତଭାବରେ ଅଙ୍ଗୀକାର କରେ, ଯାହା ମନରେ ନିଜର ଜାତି, ବିଦ୍ୟା, ଜ୍ଞାନ ଇତ୍ୟାଦି ପାଇଁ ଲେଶମାତ୍ର ଅଭିମାନ ନ ଥାଏ। ସେ ପ୍ରଭୁଙ୍କ ପାଦପଦ୍ମରେ ଶରଣାଗତ ହୋଇଥାଏ। ନିଜକୁ ତୃଣଠାରୁ ମଧ୍ୟ ନୀଚ ମନେକରେ। ତା' ମନରେ ଅଭିମାନର ଗନ୍ଧ ବି ରହେ ନାହିଁ। କହିବାର ଉଦ୍ଦେଶ୍ୟ ହେଲା ଯେ, ଅହଂକାର ଅତୀବ ସୂକ୍ଷ୍ମ। ଫୁଲ ତୋଳିସାରି ଚାଙ୍ଗୁଡ଼ିରେ ରଖିଦେବା ପରେ ମଧ୍ୟ ଯେପରି ହାତ ବାସୁଥାଏ, ସେହିପରି ଜାତି, ବିଦ୍ୟା ଇତ୍ୟାଦିର ଅଭିମାନ ଦୂରେଇ ଦେଲେ ମଧ୍ୟ ସ୍ମୃତିପଟରେ ତାହାର ସୂକ୍ଷ୍ମ ସଂସ୍କାର ରହିଯାଇଥାଏ।''

ପ୍ରଭୁଙ୍କ ବଚନ ଶୁଣି ଯୁଧିଷ୍ଠିର ପଗ୍ଚରିଲେ—''ପ୍ରଭୁ! ଆପଣଙ୍କ ବଚନ ନିରାଟ ସତ୍ୟ। କିନ୍ତୁ ଏଭଳି ଭକ୍ତ କେଉଁଠି ମିଳିବେ? ଆମ ନଗରର ଆଖପାଖରେ ତ ମିଳିବା ଅସମ୍ଭବ। ହୁଏତ ଅନ୍ୟ କୌଣସି ଲୋକରେ ମିଳି ପାରନ୍ତି। ଦୟା କରି ଆପଣ ତା'ର ଠିକଣା କୁହନ୍ତୁ।'' ଭଗବାନ କହିଲେ—''ଅନ୍ୟ ଲୋକରେ ନୁହେଁ, ସେ ତୁମ ନଗରରେ ରହୁଛନ୍ତି ଏବଂ ପ୍ରତିଦିନ ସକାଳ-ସଂଧ୍ୟାରେ ତୁମ ଦୁଆରକୁ ମଧ୍ୟ ଆସୁଛନ୍ତି। କିନ୍ତୁ ତାଙ୍କୁ କେହି ଚିହ୍ନି ପାରୁ ନାହାନ୍ତି ଏବଂ ସେ ନିଜେ ମଧ୍ୟ ଚିହ୍ନା ଦେବାକୁ ଗ୍ଚହୁଁ ନାହାନ୍ତି। ପ୍ରଭୁଙ୍କ କଥା ଶୁଣି ସମସ୍ତଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ହୃଦୟରେ ପ୍ରୀତି ଓ ଉତ୍ସୁକତା ଜାଗିଉଠିଲା। ସେଭଳି ଭକ୍ତକୁ ଜାଣିବା ପାଇଁ ଏବଂ ତାଙ୍କର ଦର୍ଶନ କରି ନେତ୍ର ସଫଳ କରିବା ପାଇଁ ସମସ୍ତେ ଅଧୀର ହୋଇ ଉଠିଲେ। ଶ୍ରୀକୃଷ୍ଣଙ୍କୁ କହିଲେ—''ଦୟାମୟ! ଶୀଘ୍ର ତାଙ୍କର ପରିଚୟ ଦିଅନ୍ତୁ! ତାଙ୍କର ନାମ କ'ଣ? କେଉଁଠି ତାଙ୍କର ନିବାସ ସ୍ଥାନ? ତାଙ୍କ ଦର୍ଶନରେ ଆମର ନେତ୍ର ସଫଳ ହେବ ଏବଂ ଅନେକ ଜନ୍ମର ପାପ ଭସ୍ମ ହୋଇଯିବ। ତାଙ୍କ ଚରଣରେ ଭକ୍ତିପୂତ ପ୍ରଣିପାତ ଜଣାଇ ଆମେ ଜୀବନ ଧନ୍ୟ କରିବୁ।''

ଭଗବାନ କହିଲେ—''ତୁମମାନଙ୍କ ବିଗ୍ଚର ଉତ୍ତମ! କିନ୍ତୁ ମୋର ପ୍ରକୃତ ଦାସ କଦାପି ନିଜକୁ ଭକ୍ତ ହିସାବରେ ଚିହ୍ନା ଦିଏ ନାହିଁ। ସଂସାର ଲୋକେ ନାନା ପ୍ରକାରେ ବଢ଼େଇ ଚଢ଼େଇ ନିଜକୁ ଦେଖେଇବାକୁ ଗ୍ଚହାନ୍ତି, କିନ୍ତୁ ମୋ ଭକ୍ତର ରହଣି ଏକବାରେ ଭିନ୍ନ। ଲୋକଲୋଚନକୁ ଆସିଗଲେ ତା'ର ମାନ-ସମ୍ମାନ ବଢ଼ିବ। ତାକୁ ନେଇ ତା' ମନରେ ଯଦି ଅଭିମାନ ଅଙ୍କୁରିତ ହେଲା, ତେବେ ଭକ୍ତିରୂପୀ ବୀଜ ଲୋପ ପାଇଯିବ। ତା'ଛଡ଼ା ଲୋକମାନଙ୍କ ଅଧିକ ସମାଗମରେ ଭକ୍ତର ସାଧନା ବାଧିତ ହେବା ସ୍ୱାଭାବିକ। ଏତଦ୍ଦ୍ୱାରା ଭକ୍ତିରେ ଅନ୍ତରାୟ ସୃଷ୍ଟି ହୁଏ। ପ୍ରଭୁଙ୍କ ବିସ୍ମୃତି ହୋଇଯାଏ। ଭକ୍ତ ସବୁ ସହିଯାଇ ପାରେ, କିନ୍ତୁ ଭଗବାନଙ୍କୁ ଭୁଲିଯିବା ତା' ପାଇଁ ମରଣ ଠାରୁ ବଳି ଦୁଃଖଦ ମନେହୁଏ। ତେଣୁ ଭକ୍ତ ସବୁବେଳେ ଏଥିରୁ ଦୂରେଇ ରହିବାକୁ ଚେଷ୍ଟା କରେ। ଯଦି ମୁଁ କେବେ ତା'ର ଖ୍ୟାତି ବିସ୍ତାର କରିଦିଏ, ତେବେ ସେ ମନ ଊଣା କରେ ଏବଂ ଦୁଃଖୀ ହୋଇଯାଏ। ତେଣୁ ମୁଁ ବର୍ତ୍ତମାନ ଦ୍ୱନ୍ଦ୍ୱରେ ପଡ଼ି ଭାବି ପାରୁ ନାହିଁ ଯେ କ'ଣ କରିବି? ଏଣେ ଯଜ୍ଞ ପୂର୍ଣ୍ଣ ହେଉ ବୋଲି ମୋର ଆନ୍ତରିକ ଇଚ୍ଛା ରହିଛି, ତେଣେ ସେ ଭୟ ମଧ୍ୟ ରହିଛି ଯେ ମୁଁ ଯଦି ଭକ୍ତର ନାମ କହିଦିଏ, ତେବେ ସେ ସଙ୍କୋଚବଶତଃ ହୁଏତ ନଗର ଛାଡ଼ି ପଳାଇଯାଇ ପାରେ। ଏଭଳି ସ୍ଥିତିରେ କ'ଣ କରିବା ଉଚିତ ହେବ

ଭାବି ପାରୁ ନାହିଁ।'' ଯୁଧିଷ୍ଠିର କହିଲେ--''ପ୍ରିୟ ବାସୁଦେବ! ତୁମେ ଏମିତି କାମ କର ଯେମିତି ସାପ ମରିବନି କି ବାଡ଼ି ଭାଙ୍ଗିବନି। ତୁମେ ଧରାପଡ଼ିବା ଦରକାର ନାହିଁ। ଖାଲି ତାଙ୍କ ପରିଚୟ ଦେଇଦେଲେ ଆମେ ଯାଇ ଆଦରର ସହିତ ତାଙ୍କୁ ଘେନି ଆସିବୁ ଏବଂ ଭୂରି ଭୋଜନ କରାଇ ଦାନପୁଣ୍ୟରେ ସନ୍ତୁଷ୍ଟ କରିଦେବୁ।''

ଭଗବାନ କହିଲେ—''ତେବେ ଶୁଣ ତାଙ୍କ ପରିଚୟ! ଏଇ ହସ୍ତିନାପୁରରେ ରହୁଥିବା ଶ୍ୱପଚ ବାଲ୍ମୀକି ହେଉଛନ୍ତି ମୋର ସେହି ଅକିଞ୍ଚନ ଭକ୍ତ। ସେ ଦିବାନିଶି ମୋ ଭକ୍ତି ଭାବରେ ନିମଗ୍ନ, କିନ୍ତୁ ତାଙ୍କ ମନରେ ଲେଶମାତ୍ର ଅଭିମାନ ନାହିଁ। ଭକ୍ତର ତିତିକ୍ଷା, କରୁଣା, ସୁହୃଦତା ପ୍ରଭୃତି ସମସ୍ତ ଗୁଣ ତାଙ୍କଠାରେ ମୂର୍ତ୍ତିମାନ୍ ହୋଇ ନିବାସ କରିଛି। କିନ୍ତୁ ବାହ୍ୟ ଆଡ଼ମ୍ବରଶୂନ୍ୟ ହୋଇଥିବାରୁ କେହି ତାଙ୍କୁ ଚିହ୍ନି ପାରିନ୍ତି ନାହିଁ। ତେଣୁ ତୁମେ ଅନ୍ୟ କାହାକୁ ନ ପଠାଇ ନିଜେ ଯାଇ ସାଦରେ ପାଛୋଟି ଆଣିବ। ଜଣେ ଚଣ୍ଡାଳ ଘରକୁ ଯିବାକୁ ତୁମ ବିବେକ ବାଧା ଦେଇପାରେ; ହେଲେ ମୋ କଥା ମନେ ରଖିଥାଅ ଯେ ସାଧୁ ଗୃହକୁ ଯିବାରେ କୌଣସି ଆପତ୍ତି ନାହିଁ। ସାଧୁ ସର୍ବଦା ପବିତ୍ର। ତା' ମନକୁ ଛଳକପଟର ଛାୟା ସ୍ପର୍ଶ କରି ନ ଥାଏ। ସେ ଅଚ୍ୟୁତ ଗୋତ୍ରୀୟ ହୋଇଯିବା ଦିନଠାରୁ ମୁଁ ତା' ଗୃହରେ ନିତ୍ୟ ନିବାସ କରେ। ସାଧୁର ଅନାବିଳ ଭାବନାରୂପୀ ଧନରେ ମୁଁ ସବୁଦିନ ପାଇଁ ତା'ର କିଣା ଚାକର ହୋଇଯାଏ।''

ଅର୍ଜୁନ ଓ ଭୀମସେନ ଭକ୍ତ ବାଲ୍ମୀକିଙ୍କୁ ନିମନ୍ତ୍ରଣ ଦେବା ପାଇଁ ବାହାରିବାର ଦେଖି ଭଗବାନ ପୁଣି ଥରେ ସତର୍କ କରାଇ କହିଲେ—''ମୋ ଭକ୍ତର ଭାବକୁ ଚିହ୍ନିବା ଅତି କଷ୍ଟକର। ଭକ୍ତର ଭାବ ସମୁଦ୍ର ଭଳି ଅଶେଷ, ଦୁର୍ଲଭ ଓ ଗମ୍ଭୀର—***ଅଶେଷ ପ୍ରକାର ଭଗତି।*** ତେଣୁ ମୋ କଥା ମନେ ରଖିଥିବ। କୌଣସି ବାହ୍ୟ କ୍ରିୟା ଦେଖି ଭାବ ଊଣା କରିବ ନାହିଁ, ନଚେତ୍ ତୁମ ଭାବରେ ମିଶିଯିବ ଆବିଳତା। ତା' ଛଡ଼ା ତାଙ୍କୁ ନିଜର ରାଜପଣିଆ ଦେଖାଇ ଜୋର୍ ଜବରଦସ୍ତି କରିବ ନାହିଁ। ଅଭିମାନ ଦେଖାଇଲେ ସବୁ ଚେଷ୍ଟା ନିରର୍ଥକ ହୋଇଯିବ। ଭକ୍ତିମାର୍ଗର ପଥିକ ହେବା କୌଣସି ସାଧାରଣ କଥା ନୁହେଁ। ତେଣୁ ତୁମେ ଅତି ସାବଧାନ ରହିବ।''

ଭଗବାନଙ୍କ ବଚନ ହୃଦୟରେ ଧାରଣ କରି ଅର୍ଜୁନ ଓ ଭୀମସେନ ଚାଲିଲେ ଭକ୍ତ ବାଲ୍ମୀକିଙ୍କ ନିକଟକୁ। ତାଙ୍କ ନିବାସ ସ୍ଥାନରେ ପହଞ୍ଚି ଆନନ୍ଦ ମନରେ ଗୃହକୁ ପ୍ରଦକ୍ଷିଣା କରି ଭୂମିକୁ ସାଷ୍ଟାଙ୍ଗ ପ୍ରଣିପାତ କଲେ। ଘର ଭିତରକୁ ଯାଇ ଦେଖନ୍ତି ତ ଠାକୁର ଘରଟି ଅତି ସ୍ୱଚ୍ଛ, ପବିତ୍ର ଓ ସୁନ୍ଦର ହୋଇଛି। ବାଲ୍ମୀକି ଧ୍ୟାନମଗ୍ନ

ହୋଇ ଭାବସମୁଦ୍ରରେ ଅବଗାହନ କରୁଛନ୍ତି। ଠାକୁରଙ୍କ ସେବାପୂଜା ଦେଖି ଦୁଇ ପାଣ୍ଡବଙ୍କ ମନରେ ଜାଗରିତ ହେଲା ପ୍ରଭୁପ୍ରେମ। ଭକ୍ତ ବାଲ୍ମୀକି ନିଜ କୁଟୀରରେ ରାଜା ମହାରାଜାଙ୍କ ପଦାର୍ପଣ ହୋଇଥିବାର ଦେଖି ଚନ୍ଦ୍ର ଦର୍ଶନରେ ଚକୋର ଆନନ୍ଦିତ ହେବା ପରି ଆନନ୍ଦରେ ନାଚି ଉଠିଲେ। ସେ କେବେ ଭାବି ନ ଥିଲେ ଯେ ଏଭଳି ସୌଭାଗ୍ୟ ବି ତାଙ୍କ ଜୀବନରେ କେବେ ଆସି ପାରିବ! ତାଙ୍କର ଅଙ୍ଗ-ପ୍ରତ୍ୟଙ୍ଗ ରୋମାଞ୍ଚିତ ହୋଇ ଉଠିଲା। ଲଜ୍ଜା ଓ ସଂକୋଚ କାରଣରୁ ତାଙ୍କ ମୁଖରୁ ବାକ୍ୟ ସ୍ଫୁରିତ ହେଉ ନ ଥାଏ। ବିହ୍ୱଳ ମନରେ ସେ ଆତ୍ମବିସ୍ମୃତ ହୋଇଗଲେ।

ସବୁ କାମ ଛାଡ଼ି ସଂଭ୍ରମରେ ଗୃହାଗତ ମହାନୁଭବ ଅତିଥିଙ୍କ ସେବାରେ ତତ୍ପର ହେଲେ ଭକ୍ତ ବାଲ୍ମୀକି। "ଏତେ ମହାନ୍ ହୋଇ ମଧ୍ୟ ଏମାନେ ମୋତେ ପ୍ରଣାମ କରୁଛନ୍ତି!"—ଏହି ଭାବନାରେ ତାଙ୍କ ହୃଦୟ ଭୟ ଓ ଲଜ୍ଜାରେ ଥରି ଉଠିଲା। ସେ ମନେ ମନେ ଭାବୁଥାନ୍ତି, ଏତେ ସମ୍ମାନ ପାଇ ଯଦି ମନରେ ଅଭିମାନ ଅଙ୍କୁରିତ ହୋଇଗଲା, ତେବେ ସବୁ ସରିଯିବ। ତେଣୁ ସେ ଅଧୀର ହୋଇ ଦୁଇ ପାଣ୍ଡବଙ୍କ ପାଦ ବନ୍ଦନା କରି ଦୈନ୍ୟ ଭାବରେ କହିଲେ—"ମଣିମା! ମୋ ଭଳି ତୁଚ୍ଛ ସେବକକୁ ସମ୍ମାନ ଦେଇ ଲଜ୍ଜିତ କରନ୍ତୁ ନାହିଁ। ମୁଁ ଆପଣଙ୍କ ଚରଣ କିଂକର। ମୋ ପାଇଁ କି ଆଜ୍ଞା କୁହନ୍ତୁ! ତାହା ମୁଁ ସାଦରେ ପାଳନ କରିବି।"

ଭୀମ ଓ ଅର୍ଜୁନ ସବିନୟେ ଏକ ସ୍ୱରରେ କହିଲେ—"ଭକ୍ତରାଜ! କାଲି ଆପଣ ଆମ ଗୃହରେ ପଦାର୍ପଣ କରି ଆମକୁ ଧନ୍ୟ କରିବା ହେବେ। ଆପଣଙ୍କ ଭଳି ଭକ୍ତଙ୍କ ପାଦ ଆମ ଗୃହରେ ପଡ଼ିଲେ ଆମର ସମସ୍ତ କଲୁଷ ଦୂର ହୋଇଯିବ। ଚଳନ୍ତି ତୀର୍ଥ ସମ ସମସ୍ତ ମନୋକାମନା ପୂର୍ଣ୍ଣ କରିବାରେ ଆପଣ ସମର୍ଥ। ଆପଣଙ୍କ ବାଣୀରୂପୀ ଜଳ ଅଭିସେଚନରେ ମଳିନ ହୃଦୟ ମଧ୍ୟ ଅଚିରେ ପବିତ୍ରତା ଲାଭ କରେ। ଆପଣଙ୍କ ଭଳି ବୈଷ୍ଣବ ଯେଉଁଠି କ୍ଷଣକ ପାଇଁ ବିଶ୍ରାମ କରନ୍ତି, ସେହି ସ୍ଥାନ ପରମ ତୀର୍ଥ ଓ ତପୋବନରେ ପରିଣତ ହୋଇଯାଏ। ତେଣୁ ନିଜର ସାଧୁଗୁଣରେ ଆମ ନିମନ୍ତ୍ରଣ ସ୍ୱୀକାର କରିବା ହୁଅନ୍ତୁ ଏବଂ ଆମର ଆତିଥ୍ୟ ସ୍ୱୀକାର କରି ଯଜ୍ଞ ମହୋତ୍ସବକୁ ପୂର୍ଣ୍ଣ କରନ୍ତୁ।"

ଦୁଇ ପାଣ୍ଡବଙ୍କର ଏଭଳି ନିମନ୍ତ୍ରଣ ଓ ବିନୀତ ବଚନ ଶୁଣି ଭକ୍ତ ବାଲ୍ମୀକି କହିଲେ—"ଏ କ'ଣ କହୁଛନ୍ତି ଆପଣ! ମୋ ଭଳି ଚଣ୍ଡାଳକୁ ପୁଣି ନିମନ୍ତ୍ରଣ! ଏହା ସମ୍ପୂର୍ଣ୍ଣ ଅନୁଚିତ ହେବ। ମଣିମା! ମୁଁ ତ ଆପଣଙ୍କର ନିତିଦିନିଆ ଚାକର। ଅଇଁଠାପତ୍ର ଉଠାଇବା ଓ ଝାଡୁ ଦେଇ ରାଜପ୍ରାସାଦ ମାର୍ଜନ କରିବା ମୋର

ସ୍ୱାଭାବିକ କର୍ମ । ଅନ୍ୟ କାର୍ଯ୍ୟ ପ୍ରତି ମୁଁ ସ୍ୱପ୍ନରେ ମଧ୍ୟ ମନ ବଳାଏ ନାହିଁ । ମୋତେ ମୋ ସେବା କାର୍ଯ୍ୟରୁ ବଞ୍ଚିତ କରନ୍ତୁ ନାହିଁ । ଆପଣମାନେ ଖାଇ ସାରିବା ପରେ ଯାହା ଉଚ୍ଛିଷ୍ଟ ବଳି ପଡ଼ିବ, ତାହାକୁ ପାଇ ମୁଁ ଆନନ୍ଦିତ ହେବି । ମୋ ଉପରେ ଏତିକି କୃପା କରିବେ ।''

ପାଣ୍ଡବ କହିଲେ—''ନା ଭକ୍ତରାଜ! ଆପଣଙ୍କୁ ନ ଖୁଆଇ ଆମେ ଆଦୌ ଖାଇ ପାରିବୁ ନାହିଁ । ଆପଣ ପ୍ରସାଦ ସେବନ କରିବା ପରେ ଆମେ ବସିବୁ । ଆପଣଙ୍କ ହୃଦୟର ଭକ୍ତି ଆଜି ଜଣାପଡ଼ିଲା । ସତରେ ପ୍ରଭୁଙ୍କ ଭକ୍ତ ନିଜକୁ କେତେ ଗୁପ୍ତ ରଖନ୍ତି!'' ବାଲ୍ମୀକି ଜାଣିଗଲେ ଯେ ଏହା ନିଶ୍ଚୟ ସେଇ ମାୟାଧରଙ୍କର ଲୀଳା । ନଚେତ୍ ମୋତେ କେମିତି ଏମାନେ ଜାଣିଥାନ୍ତେ । ସେ ନିଶ୍ଚୟ ଏମାନଙ୍କୁ ମୋର ପରିଚୟ ଦେଇଛନ୍ତି । ସେ ମନେ ମନେ ଠାକୁରଙ୍କ ଉପରେ କୁପିତ ହେଲେ, କିନ୍ତୁ ମନ ଭିତରେ ପ୍ରଣୟ କୋପକୁ ଲୁଗ୍ୱଇ ଦେଇ ପାଣ୍ଡବଙ୍କୁ କହିଲେ—''ଆପଣଙ୍କ ଭଳି ସର୍ବସମର୍ଥ ରାଜାଙ୍କ କଥାକୁ ତ ମୁଁ କାଟି ପାରିବି ନାହିଁ । ଆପଣଙ୍କ ସଙ୍ଗରେ ସବୁ ଲୋକ ଅଛନ୍ତି । ମୋ ପକ୍ଷରେ ତ କେହି ଜଣେ ହେଲେ ନାହିଁ, ତେବେ ମୁଁ କାହାକୁ ଆଶ୍ରା କରିବି । ଯାହାକୁ ଆଶ୍ରା କରିଥିଲି, ସେ ମଧ୍ୟ ଆପଣଙ୍କର ହୋଇଗଲେ । ତା' ଛଡ଼ା ଯଦି ଆପଣଙ୍କର ଏମିତି ମନୋବାଞ୍ଛା, ତେବେ ରାଜାଙ୍କ ଆଜ୍ଞାକୁ ଅବଜ୍ଞା କରିବାକୁ କିଏ ଅଛି? ଲାଗୁଛି ଆପଣମାନେ କାହାର ପ୍ରେରଣା ପାଇ ମୋ ପାଖକୁ ଆସିଛନ୍ତି । ଯଦି ମୋ ପ୍ରଭୁଙ୍କର ଏଇଆ ଇଚ୍ଛା, ତେବେ ମୋ ଭଳି ତୁଚ୍ଛ ସେବକ ତାହା ଅବଜ୍ଞା କରିବ କିପରି? ତାଙ୍କର ଓ ତାଙ୍କ ଭକ୍ତଙ୍କ ଇଚ୍ଛାର ହିଁ ବିଜୟ ହେବ । ତେଣୁ ଆପଣଙ୍କ ପ୍ରସନ୍ନତା ପାଇଁ ଏହି ଆଜ୍ଞା ଶିରୋଧାର୍ଯ୍ୟ କରୁଛି ।''

ଭୀମ ଅର୍ଜୁନ ଦୁଇ ଭାଇ ଫେରିଆସି ଧର୍ମରାଜ ଯୁଧିଷ୍ଠିରଙ୍କୁ ସକଳ ବୃତ୍ତାନ୍ତ ଶୁଣାଇଲେ । ତାଙ୍କ କଥା ଶୁଣି ଯୁଧିଷ୍ଠିରଙ୍କ ମନରେ ଶ୍ୱପଚ ଭକ୍ତଙ୍କ ପ୍ରତି ଅପାର ପ୍ରେମ ଜାଗରିତ ହେଲା । ଏଥର ତାଙ୍କୁ ବିଶ୍ୱାସ ହୋଇଗଲା ଯେ ତାଙ୍କ ଯଜ୍ଞର ପୂର୍ଣ୍ଣତାରେ କୌଣସି ସନ୍ଦେହ ନାହିଁ । ସେ ଭକ୍ତର ଆଦର ସମ୍ମାନ ପାଇଁ ବିବିଧ ବ୍ୟବସ୍ଥାରେ ଲାଗି ପଡ଼ିଲେ ।

ବାଲ୍ମୀକିଙ୍କ ଭଳି ପରମ ଭକ୍ତଙ୍କ ପାଇଁ କୌଣସି ସାଧାରଣ ଲୋକ ରୋଷେଇ କଲେ ଚଳିବ ନାହିଁ । ଏଥିପାଇଁ ସେଭଳି ଭକ୍ତିମତୀ ନାରୀ ହୋଇଥିବା ଦରକାର । ଭଗବାନ ଶ୍ରୀକୃଷ୍ଣ ଦ୍ରୌପଦୀଙ୍କୁ ସଂକେତ କରି କହିଲେ—''କୃଷ୍ଣେ! ତୁମେ ଏଭଳି ସୁଯୋଗକୁ ହାତ ଛଡ଼ା କର ନାହିଁ । ମହାନ୍ ଭକ୍ତଙ୍କ ସେବାର ସୌଭାଗ୍ୟ ଲାଭ

କରି ନିଜର ହାତକୁ ଧନ୍ୟ କର। ଆଜି ତୁମେ ରନ୍ଧନକୌଶଳ ଦ୍ୱାରା ଷଡ଼ରସ ବ୍ୟଞ୍ଜନ ପ୍ରସ୍ତୁତ କରି ନିଜର ପାକବିଦ୍ୟା ସଫଳ କର। ମୋତେ ସମର୍ପଣ କରାଯାଇଥିବା ନୈବେଦ୍ୟକୁ ମୁଁ ନେତ୍ର ଦ୍ୱାରା ଗ୍ରହଣ କରେ ଅର୍ଥାତ୍ ଦୃଷ୍ଟିଭୋଗ କରେ। କିନ୍ତୁ ସେହି ଦ୍ରବ୍ୟର ରସ ଆସ୍ୱାଦନ କରେ ଭକ୍ତର ଜିହ୍ୱା ଦ୍ୱାରା।''

ପର ଦିନ ନିର୍ଦ୍ଧାରିତ ସମୟରେ ମହାରାଜ ଯୁଧିଷ୍ଠିର ନିଜେ ଯାଇ ଭକ୍ତଙ୍କୁ ପାଛୋଟି ଆଣିଲେ ରାଜପ୍ରାସାଦକୁ। ଭକ୍ତଙ୍କ ଆଗମନ ପାଇଁ ବିବିଧ ସାଜସଜ୍ଜା କରାଯାଇଥାଏ। ଅଦ୍ଭୁତ ସ୍ୱାଗତ ସମ୍ମାନ ପାଇ ଭକ୍ତରାଜଙ୍କ ମସ୍ତକ ଲଜ୍ଜାରେ ଅବନତ ହୋଇଯାଉଥାଏ। ସେ ଅତି ଦୈନ୍ୟର ସହ କହିଲେ—''ମଣିମା! ଏଇ ଦାଣ୍ଡପିଣ୍ଡାରେ ମୋତେ ଦେଇ ଦିଅନ୍ତୁ। ମୁଁ ଏଇଠି ପ୍ରସାଦ ପାଇ ଫେରିଯିବି।'' ଭଗବାନ ଯୁଧିଷ୍ଠିରଙ୍କୁ ଏକାନ୍ତକୁ ଡାକି ନେଇ କହିଲେ—ନା ନା, ଏହା ଅଶୋଭନୀୟ ହେବ। ଏ ବୈଷ୍ଣବ ହୋଇଥିବାରୁ ତୁମର ଭାଇ ଅଟନ୍ତି। ଯଦି ତୁମର ଭାଇ ଦାଣ୍ଡରେ ଭୋଜନ କରିବାକୁ କହନ୍ତି, ତୁମେ ରାଜି ହୋଇ ପାରିବ କି? ତୁମକୁ କ'ଣ ଲଜ୍ଜାବୋଧ ହେବ ନାହିଁ। ତେଣୁ ଏହାଙ୍କୁ ଆଦରରେ ପାକଶାଳାରେ ବସାଇ ଭୋଜନ କରାଅ। ମୋ ଭକ୍ତର ସମ୍ମାନରେ ମୁଁ ଅତି ଆନନ୍ଦିତ ହେବି ଏବଂ ମୋ ଆନନ୍ଦ ହିଁ ତୁମ ଯଜ୍ଞ ସଫଳତାର ପ୍ରଧାନ କାରଣ ହେବ। ଭକ୍ତରାଜ ବାଲ୍ମୀକି ଯେତେ ବାଧ୍ୟ କଲେ ମଧ୍ୟ ନିଜେ ପାକଶାଳାକୁ ଆସିବେ ନାହିଁ। ତେଣୁ ତୁମେ ତାଙ୍କୁ କୋଳ କରି ଉଠାଇ ନେଇଆସ।''

ଯୁଧିଷ୍ଠିର ପ୍ରଭୁଙ୍କ ଆଜ୍ଞାରେ ବାଲ୍ମୀକିଙ୍କୁ କୋଳ କରି ଘେନି ଆସିଲେ ପାକଶାଳାକୁ। ପାଦପ୍ରକ୍ଷାଳନ କରି ତାଙ୍କୁ ପବିତ୍ର ଆସନରେ ବିରାଜମାନ କରାଇଲେ। ତାଙ୍କ ସମ୍ମୁଖରେ ରତ୍ନଜଟିତ ସୁବର୍ଣ୍ଣ ଥାଳିରେ ଅନ୍ନ ଓ ସୁନ୍ଦର ସୁନ୍ଦର ଗିନାରେ ଡାଲି, ତରକାରି, ଦଧି, ଘୃତ ପ୍ରଭୃତି ବିବିଧ ବ୍ୟଞ୍ଜନ ପୃଥକ୍ ପୃଥକ୍ କରି ବାଢ଼ିଦେଲେ ଏବଂ ପ୍ରସାଦ ସେବନ କରିବାକୁ ନିବେଦନ କଲେ। ଭକ୍ତରାଜ ବାଲ୍ମୀକି ପ୍ରଭୁଙ୍କୁ ସମର୍ପଣ କରି ସବୁ ଏକାଠି ଗୋଳାଇ ପ୍ରଥମ ଗ୍ରାସ ମୁଖରେ ଦେବା କ୍ଷଣି ଶଙ୍ଖ ବାଜି ଉଠିଲା। କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ଥରେ ଦୁଇଥର ବାଜି ହଠାତ୍ ବନ୍ଦ ହୋଇଗଲା। ଭକ୍ତ ଓ ଭଗବାନଙ୍କ ମହିମାର ଅନୁରୂପ ବାଜିଲା ନାହିଁ।

ଶଙ୍ଖର ଏଭଳି ଅବହେଳନାରେ ଭଗବାନ କ୍ଷୁବ୍ଧ ହୋଇ ଉଠିଲେ। ସେ ହଠାତ୍ ଯଷ୍ଟି ପ୍ରହାର କଲେ ଶଙ୍ଖ ମସ୍ତକରେ। କହିଲେ—''ରେ ଦୁଷ୍ଟବୁଦ୍ଧି! ତୁ କ'ଣ ଭକ୍ତର ମହିମା ଜାଣି ନାହୁଁ। ମନରେ ଏଭଳି ଲଜ୍ଜାବୋଧ କରୁଛୁ କାହିଁକି?

ମନେରଖ, ଯଦି ତୁ ମୋ ଭକ୍ତ ଓ ଭକ୍ତିକୁ ଉଚିତ ସମ୍ମାନ ନ ଦେଉ, ମୁଁ ତୋତେ ନିଶ୍ଚୟ ପରିତ୍ୟାଗ କରିଦେବି। ତୋର ମସ୍ତକ ଚୂର୍ଣ୍ଣ-ବିଚୂର୍ଣ୍ଣ କରି ତୋତେ ଉଚିତ ଶାସ୍ତି ଦେବି।'' ପ୍ରଭୁଙ୍କ ବଚନ ଶୁଣି ଶଙ୍ଖ ବ୍ୟାକୁଳ ହୋଇ କହିଲା—''ପ୍ରଭୁ! ଏଥିରେ ମୋର କିଛି ଦୋଷ ନାହିଁ। ଦ୍ରୌପଦୀଙ୍କୁ ପଚ୍ଚାରି ବୁଝି ପାରନ୍ତି ଏହାର କାରଣ।'' ଭଗବାନ ଦ୍ରୌପଦୀ ଆଡ଼କୁ ସଧୀରେ ଚ୍ଚାହିଁ ଇଙ୍ଗିତରେ କାରଣ ଜାଣିବାକୁ ଚ୍ଚାହିଁଲେ। ଦ୍ରୌପଦୀ କହିଲେ—''ଶଙ୍ଖ ବଚନ ସତ୍ୟ। ଭକ୍ତଙ୍କ ପ୍ରତି ମୋ ଭାବ ଊଣା ହେବାରୁ ଏ ଅଘଟଣ ଘଟିଲା। ଭକ୍ତରାଜ ଷଡ଼ରସ ବ୍ୟଞ୍ଜନକୁ ଗୋଟିଏ ପାତ୍ରରେ ଗୋଳେଇ ମିଶେଇ ଖାଇବାରୁ ମୋ ମନରେ ଏଭଳି କୁଭାବନା ଜାଗରିତ ହେଲା ଯେ ହାୟ! ମୁଁ ଏତେ ପରିଶ୍ରମ କରି ନାନାବିଧ ବ୍ୟଞ୍ଜନ ପ୍ରସ୍ତୁତ କଲି, ଅଥଚ ସବୁ ମିଶେଇ ଦେଇ ମୋର ପାକବିଦ୍ୟାକୁ ଭକ୍ତବର ଧୂଳିରେ ମିଶେଇ ଦେଲେ! ଯେତେ ଯାହା ହେଲେ କ'ଣ ହେବ, ଜାତିରେ ତ ଶ୍ୱପଚ। ବ୍ୟଞ୍ଜନରୁ ସ୍ୱାଦ ଗ୍ରହଣ କରିବାର କୌଶଳ ଜାଣନ୍ତେ ବା କେମିତି?''

ଏହି କ୍ରିୟା ପଛରେ ଲୁଚି ରହିଥିବା ଭକ୍ତ ବାଲ୍ମୀକିଙ୍କ ଭାବକୁ ସମସ୍ତଙ୍କ ସମକ୍ଷରେ ପରିପ୍ରକାଶ କରିବା ପାଇଁ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ଜାଣି ଜାଣି ଏହାର କାରଣ ପଚ୍ଚାରିଲେ। ଭକ୍ତରାଜ କହିଲେ—''ଏ ସବୁ ବ୍ୟଞ୍ଜନ ଦ୍ରବ୍ୟ ତ ଆଗରୁ ପ୍ରଭୁଙ୍କୁ ଅର୍ପଣ ହୋଇସାରିଛି। ତେବେ ମୁଁ ପଦାର୍ଥ ଭାବନା ରଖି ବ୍ୟଞ୍ଜନରୁ ଭିନ୍ନ ଭିନ୍ନ ସ୍ୱାଦ ଗ୍ରହଣ କରିବି କେମିତି? ଏଭଳି କଲେ ଆଉ ପ୍ରସାଦ ଭାବନା ରହି ପାରିବ କି? ଏହା ତ ଭକ୍ତିରେ ଘୋର କଳଙ୍କ ହୋଇଯିବ! ମୁଁ ଷଡ଼ରସ ବ୍ୟଞ୍ଜନ ଖାଉ ନାହିଁ, ବରଂ ପ୍ରସାଦ ସେବନ କରୁଛି। ତେଣୁ ଏଭଳି କଲି ପ୍ରଭୁ!''

ଭକ୍ତର ଆନ୍ତରିକ ଭାବନା ବୁଝିପାରି ସମସ୍ତେ ଧନ୍ୟ ଧନ୍ୟ କହିଲେ। ଜୟ ଧ୍ୱନିରେ ରାଜ ପ୍ରାସାଦ ଗୁଞ୍ଜାୟମାନ ହୋଇ ଉଠିଲା। ଭକ୍ତିର ଏଭଳି ଗୂଢ଼ ମର୍ମ ଜାଣି ଦ୍ରୌପଦୀ ଆଚମ୍ବିତ ହୋଇଗଲେ। ଭକ୍ତରାଜଙ୍କ ପ୍ରତି ଜାଗ୍ରତ ହେଲା ତାଙ୍କ ହୃଦୟରେ ଅଗାଧ ପ୍ରୀତି ଓ ସଦ୍ଭାବନା। ତା'ପରେ ଶଙ୍ଖ ଘନ ଘନ ନାଦରେ ପ୍ରକମ୍ପିତ କଲା ଯଜ୍ଞର ସମ୍ପୂର୍ଣ୍ଣ ପରିସରକୁ। ଭଗବାନ ଶ୍ୱପଚ ବାଲ୍ମୀକିଙ୍କୁ କୋଳେଇ ନେଇ ତାଙ୍କ ମସ୍ତକରେ ଚୁମ୍ବନ ପ୍ରଦାନ କଲେ। ଭକ୍ତ-ଭଗବାନଙ୍କ ମିଳନ ଦୃଶ୍ୟ ଦେଖି ସକଳ ପ୍ରଜା ନିଜର ଜୀବନ ଧନ୍ୟ କରିବା ସହିତ ନେତ୍ର ଧାରଣର ଫଳ ପାଇ କୃତାର୍ଥ ହେଲେ।



# ଯଜ୍ଞପତ୍ନୀ

**ଅହୋ ପଶ୍ୟତ ନାରୀଣାମପି କୃଷ୍ଣେ ଜଗଦ୍‌ଗୁରୌ ।**
**ଦୁରନ୍ତଭାବଂ ଯୋଽବିଧ୍ୟନ୍ ମୃତ୍ୟୁପାଶାନ୍ ଗୃହାଭିଧାନ୍ ॥**

"ସତରେ କି ଆଶ୍ଚର୍ଯ୍ୟ! ଜାତିରେ ନାରୀ ହୋଇ ମଧ୍ୟ ଜଗଦ୍‌ଗୁରୁ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଏମାନଙ୍କ ହୃଦୟରେ କିଭଳି ଅଗାଧ ପ୍ରେମ ଓ ଅଖଣ୍ଡ ଅନୁରାଗ ରହିଛି! ଗୃହସ୍ଥାଶ୍ରମର ଯେଉଁ ବନ୍ଧନ-ପାଶ ମୃତ୍ୟୁ ପରେ ମଧ୍ୟ କଟେ ନାହିଁ, ତାହାକୁ ଏମାନେ ତୃଣ ସମ ଛେଦନ କରି ପ୍ରାଣଧନ ଶ୍ରୀକୃଷ୍ଣଙ୍କୁ ଭଜିଲେ!"

ଯାହା ହୃଦୟରେ ଭୁବନମୋହନ ଶ୍ରୀକୃଷ୍ଣଙ୍କ ଛବି ଥରେ ଆଙ୍କି ହୋଇଯାଏ, ତା' ପାଇଁ କୌଣସି କାର୍ଯ୍ୟ ଦୁଷ୍କର ରହେ ନାହିଁ । ସେ ଶ୍ରୀକୃଷ୍ଣଙ୍କ ପାଇଁ ସବୁ କିଛି ତ୍ୟାଗ କରିବାକୁ ସମର୍ଥ ହୋଇଯାଏ । ସାଂସାରିକ ବନ୍ଧନ ତ ଅତି ସାଧାରଣ କଥା, ତିନିଲୋକର ବୈଭବ, ଏପରି କି ସ୍ୱର୍ଗ ଓ ମୋକ୍ଷ ସୁଖକୁ ମଧ୍ୟ ସେ ତୃଣ ସମ ତ୍ୟାଗ କରିପାରେ । ପ୍ରତ୍ୟେକ ଜୀବକୁ ନିଜ ପ୍ରାଣ ସବୁଠୁ ପ୍ରିୟ । କିନ୍ତୁ ଭକ୍ତ ପ୍ରଭୁଙ୍କ ପାଇଁ ଆନନ୍ଦରେ ହସି ହସି ପ୍ରାଣକୁ ମଧ୍ୟ ବଳିଦାନ କରିବାକୁ କୁଣ୍ଠାବୋଧ କରେ ନାହିଁ । କାରଣ ପ୍ରଭୁ ହେଉଛନ୍ତି ପ୍ରାଣେଶ୍ୱର! ତାଙ୍କ କାରଣରୁ ହିଁ ଜୀବକୁ ପ୍ରାଣ ପ୍ରିୟ ଲାଗୁଛି । ନଚେତ୍ ପ୍ରାଣର କୌଣସି ମହତ୍ତ୍ୱ ନାହିଁ ।

ପ୍ରାଣେଶ୍ୱର ଶ୍ରୀକୃଷ୍ଣଙ୍କ ପାଇଁ ଗୃହବନ୍ଧନକୁ କାଟି ଦେଇଥିବା ଭକ୍ତଙ୍କ ମଧ୍ୟରେ ମଥୁରାପୁରବାସିନୀ ବ୍ରାହ୍ମଣ-ପତ୍ନୀମାନେ ଥିଲେ ଅନ୍ୟତମ । ବ୍ରାହ୍ମଣମାନେ ଅଧିକାଂଶ ସମୟ ଯଜ୍ଞ କାର୍ଯ୍ୟରେ ବ୍ୟତୀତ କରୁଥିବାରୁ ତାଙ୍କ ପତ୍ନୀଙ୍କୁ ଲୋକେ 'ଯଜ୍ଞପତ୍ନୀ' କୁହନ୍ତି । ସେମାନଙ୍କ ହୃଦୟରେ ସ୍ଥାନ ପାଇଥିଲା ଶ୍ରୀକୃଷ୍ଣ ପ୍ରତି ଅଗାଧ ପ୍ରେମ । ନାରୀ ଜାତିର ହୋଇଥିଲେ ମଧ୍ୟ ଏଭଳି ସୌଭାଗ୍ୟ ଏମାନଙ୍କୁ କେଉଁ କାରଣରୁ ମିଳିଲା? କି ପୁଣ୍ୟ କରିଥିଲେ ଏମାନେ? ବ୍ରତୋପନୟନ ପ୍ରଭୃତି ଦ୍ୱିଜାତି ସଂସ୍କାରଶୂନ୍ୟ ହୋଇ, ଗୁରୁକୁଳରେ ନିବାସ ନ କରି, ତପସ୍ୟା, ଆତ୍ମବିଗ୍ରହ ଆଦି ନ କରି ମଧ୍ୟ ଏଭଳି ଭକ୍ତି ଜାଗରିତ ହେଲା କିପରି? ଏସବୁ ତ ବଡ଼ ବଡ଼ କଥା, ପବିତ୍ରତାଦି ଗୁଣ ଏବଂ ଶୁଭକର୍ମ ମଧ୍ୟ ନ ଥିଲା ଏମାନଙ୍କ ଜୀବନରେ । ତେବେ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ପ୍ରେମର ସୌଭାଗ୍ୟ ଭାଜନ ହେଲେ କିପରି? ଏ ସବୁର ମୂଳରେ ଥିଲା ଋଷିଙ୍କ ଆଶୀର୍ବାଦ ଓ ଭଗବତ୍‌ପ୍ରେମୀଙ୍କର ସଙ୍ଗଲାଭ । ତେବେ କିଏ ଥିଲେ ସେହି ଋଷି ଓ ପ୍ରେମୀଜନ, ଯାହାଙ୍କର ସାନ୍ନିଧ୍ୟ ଏମାନଙ୍କୁ

ମିଳିଥିଲା! ଏମାନଙ୍କ ମସ୍ତକରେ ଥିଲା ସପ୍ତଋଷିଙ୍କର ବରଦହସ୍ତ ଓ ଗୋପାଙ୍ଗନାଙ୍କର ସଙ୍ଗ ଲାଭ।

ବ୍ରହ୍ମବୈବର୍ତ୍ତ ପୁରାଣରେ କଥିତ ଅଛି ଯେ ବ୍ରାହ୍ମଣପତ୍ନୀମାନେ ପୂର୍ବରୁ ସପ୍ତର୍ଷିଙ୍କର ସଦ୍‌ଗୁଣସମ୍ପନ୍ନା ତଥା ପତିବ୍ରତା ସ୍ତ୍ରୀ ଥିଲେ। ଥରେ ଅଗ୍ନିଦେବ ଏମାନଙ୍କ ଅଙ୍ଗ ସ୍ପର୍ଶ କରିଦେବାରୁ ସପ୍ତର୍ଷିଙ୍କ ମଧ୍ୟରୁ ଅଙ୍ଗିରା ରାଗିଯାଇ ଅଗ୍ନିଙ୍କୁ କହିଲେ, "ତୁମେ ସର୍ବଭକ୍ଷୀ ହୁଅ"; ତତ୍‌ସହିତ ଋଷି ପତ୍ନୀମାନଙ୍କୁ କହିଲେ—"ତୁମ୍ଭେମାନେ ମନୁଷ୍ୟଯୋନିରେ ଜାତ ହୁଅ।" ସପ୍ତର୍ଷିଙ୍କ ପତ୍ନୀମାନେ ଅନୁନୟ ବିନୟ ହୋଇ ଶାପମୁକ୍ତି ପାଇଁ ପ୍ରାର୍ଥନା କରିବାରୁ ଅଙ୍ଗିରା କହିଲେ—"ତୁମ୍ଭେମାନେ ମନୁଷ୍ୟଯୋନିରେ ନିଶ୍ଚୟ ଜନ୍ମ ଲାଭ କରିବ, କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ ଦର୍ଶନ କରି ଗୋଲକ ଧାମକୁ ଯିବ।"

ଦ୍ୱିତୀୟତଃ ପ୍ରେମର ଧ୍ୱଜାସ୍ୱରୂପା ଗୋପୀଜନଙ୍କ ସଙ୍ଗରୁ ଯଜ୍ଞପତ୍ନୀଙ୍କ ହୃଦୟରେ ରୋପଣ ହୋଇଥିଲା କୃଷ୍ଣଭକ୍ତିର ବୀଜ। ଦହି, କ୍ଷୀର ବିକିବା ପାଇଁ ଗୋପୀମାନେ ପ୍ରତିଦିନ ଯାଆନ୍ତି ମଥୁରାପୁରୀକୁ। କୃଷ୍ଣପ୍ରେମରେ ସେମାନେ ଏଭଳି ପାଗଳିନୀ ହୋଇଯାନ୍ତି ଯେ "ଦହି ନିଅ, କ୍ଷୀର ନିଅ" କହିବା ପରିବର୍ତ୍ତେ କହି ଉଠନ୍ତି— "କୃଷ୍ଣ ନିଅ କୃଷ୍ଣ! ମୋହନ ନିଅ ମୋହନ! କଳାକାହ୍ନୁ ନିଅ କଳାକାହ୍ନୁ!" ଏଭଳି ପ୍ରେମଗଦ୍‌ଗଦ ସ୍ଥିତି ଦେଖି ବ୍ରାହ୍ମଣୀମାନେ ତାଙ୍କ ଠାରୁ ଦହି, କ୍ଷୀର କିଣିଲାବେଳେ ପଚାରନ୍ତି—"ଆଲୋ ଗୋପାଳୁଣୀ! ସେ କୃଷ୍ଣ କିଏ? କାହାର ପୁଅ ସିଏ? ତୁମକୁ ସେ ଏଭଳି ପାଗଳୀ କରି ଦେଇଛି କାହିଁକି? କି ଗୁଣ ଅଛି ସେ କଳାକାହ୍ନୁ ପାଖରେ? ସେ କଣ କିଛି କିମିଆ ଜାଣିଛି? ତୁମେ ଦହି ନିଅ, କ୍ଷୀର ନିଅ କହିବା ବଦଳରେ କୃଷ୍ଣ ନିଅ, କଳାକାହ୍ନୁ ନିଅ କହି ଲୋକହସା ହେଉଛ କାହିଁକି?" ଗୋପୀମାନେ କହନ୍ତି—"ରେ ମିତଣି! ବିଧାତା ଜନ୍ମଜନ୍ମରେ ଆମକୁ ଏଭଳି ଲୋକହସା କରୁଥାଉ। ତା' ପ୍ରେମରେ ପାଗଳିନୀ ହୋଇ ଆମେ ଏମିତି ବୁଲୁଥାଉ ଯୁଗେ ଯୁଗେ। ତୁମେ ଚିହ୍ନିନ ସେଇ କୃଷ୍ଣକୁ? ସେ ପରା ନନ୍ଦରାଜାର ପୁଅ! କି ଅପୂର୍ବ ତା'ର ଅଙ୍ଗକାନ୍ତି! ମସ୍ତକରେ ମୟୂର ଚନ୍ଦ୍ରିକା, ତ୍ରିଭଙ୍ଗୀ ସୁନ୍ଦର ଠାଣି. କର୍ଣ୍ଣରେ କନିଅର ଫୁଲର କୁଣ୍ଡଳ, ପଦ୍ମପରାଗ ସମ ପୀତବାସ, ଗଳାରେ ବୈଜୟନ୍ତୀ ମାଳା, ଅଧରରେ ମୋହନ ବଂଶୀ! ସେ ଯେତେବେଳେ ଗୋପସଖାଙ୍କ ମେଳରେ ବେଣୁ ବଜାଇ ବଜାଇ, ନୃତ୍ୟଗୀତ କରି ଗୋଚାରଣ ପାଇଁ ବନକୁ ଯାଏ, ସେତେବେଳେ ତା'ର ଲାବଣ୍ୟ ଅଙ୍ଗରେ ଆମ ମନ ଲାଖିଯାଏ। ଆମେ

ଭୁଲିଯାଉ ନିଜ ଘରଧନ୍ଦାକୁ । ସଖି! ଆମ ଗୋପପୁରରେ ସେଇ ନନ୍ଦପୁଅ ସମସ୍ତଙ୍କ ମନ କିଣି ନେଇଛି । ପାଖରୁ କ୍ଷଣେ ଅନ୍ତର ହେଲେ ମନ ବ୍ୟାକୁଳ ହେଉଛି ଆମର । ସେ ପାଦରେ ନୂପୁର ବାନ୍ଧି ଯେତେବେଳେ ଗୋପଦାଣ୍ଡରେ ବୁଲୁଥାଏ, ଏମତି କିଏ ଅଛି ଯିଏ ତାକୁ କୋଳେଇ ନେବାକୁ ମନ ନ ବଳାଇବ!''

ଅନ୍ୟ ଜଣେ ଗୋପୀ କହେ—''ହଁ ଲୋ ସଙ୍ଗାତ! କାଲି ରାତି କଥା କ'ଣ କହିବି? ଗୋପ ସଖାଙ୍କୁ ସଙ୍ଗରେ ଧରି ଲହୁଣୀ ଚୋରି କରିବା ପାଇଁ କାହ୍ନୁ ଅଧା ରାତିରେ ପଶିଲା ମୋ ଘରେ । ମୁଁ ଚେଇଁ ଶୋଇଥାଏ । ଭାବିଲି, ତାକୁ ବାନ୍ଧିବା ଆଳରେ ଆଜି ତା'ର ଅଙ୍ଗ ସ୍ପର୍ଶ କରି ମୁଁ ଜୀବନ ସଫଳ କରିବି । ପାଦ ଚୁପି ଚୁପି ଯାଇ ତାକୁ ଝଟକରି ଧରି ପକାଇଲି । ଅନ୍ୟ ଗୋପକୁମାରମାନେ ଯିଏ ଯୁଆଡ଼େ ପାରିଲେ ଦୌଡ଼ି ପଳାଇଗଲେ । କିନ୍ତୁ ସଖି! ମୁଁ ତାକୁ ବାନ୍ଧିବା ପାଇଁ ଯେତେ ଚେଷ୍ଟା କଲେ ସୁଦ୍ଧା ପାରିଲି ନାହିଁ । ସେ ମୋତେ କହିଲା—''ତୋ ମାଆ ତୋତେ ବାନ୍ଧିବା ଶିଖାଇନି ଯଦି ପ୍ରଥମେ ମୋ'ଠାରୁ ଶିଖ୍, ତା'ପରେ ମୋତେ ବାନ୍ଧିବୁ । ଗୁରୁ ନ କରି ସଂସାରରେ କିଏ କ'ଣ ବିଦ୍ୟା ପାଇଲାଣି?'' ମୁଁ ତା' କଥାରେ ରାଜି ହୋଇ ତା' ହାତକୁ ଦଉଡ଼ିଟି ଦେଇ କହିଲି-''ଦେଖ ମୋହନ! ଶିଖାଇ ସାରିବା ପରେ ମୋତେ ଖୋଲିଦେବୁ । ସଖି! ଖୋଲିବା କଥା କିଏପଚାରେ, ବାନ୍ଧିସାରି ମୋତେ ବୁଢ଼ା ଆଙ୍ଗୁଠି ଦେଖାଇ କହୁଛି—ତୁ ତ ବଡ଼ ଚତୁର! ଗୁରୁ ବିଦ୍ୟା ଗୁରୁଙ୍କ ଉପରେ ପ୍ରୟୋଗ କରିବାକୁ ଚାହୁଁଛୁ? ସେମିତି ବନ୍ଧା ହୋଇଥା, ମୁଁ ଯାଉଛି ।''

ଏହିଭଳି ଗୋପୀମାନେ କୃଷ୍ଣଙ୍କ ଲୀଳାଖେଳା ବର୍ଣ୍ଣନା କରନ୍ତି । ଧୀରେ ଧୀରେ ବ୍ରାହ୍ମଣୀ ଓ ଗୋପୀଙ୍କ ମଧ୍ୟରେ ସ୍ଥାପିତ ହୁଏ ସତ୍ସଙ୍ଗତିର ମଧୁର ସମ୍ପର୍କ । ଗୋପୀଙ୍କ ସଙ୍ଗ ପ୍ରଭାବରେ ବ୍ରାହ୍ମଣୀଙ୍କ ହୃଦୟ ରଞ୍ଜିତ ହୋଇଗଲା କୃଷ୍ଣ ରଙ୍ଗରେ । ପରଶମଣି ସ୍ପର୍ଶରେ ଲୌହ ସ୍ୱର୍ଣ୍ଣରେ ପରିଣତ ହୋଇଯିବା ପରି ତାଙ୍କର ହୃଦୟ କୃଷ୍ଣପ୍ରୀତିମୟ ହୋଇଗଲା । ସେମାନଙ୍କ ମନରେ ଧୀରେ ଧୀରେ ଅନେକ ଭାବ-ଅଙ୍କୁର ଫୁଟି ଉଠିଲା । କୃଷ୍ଣଙ୍କ ସାନ୍ନିଧ୍ୟ ଲାଭ ନିମିତ୍ତ ସେମାନଙ୍କ ହୃଦୟ ବ୍ୟାକୁଳ ହୋଇ ଉଠିଲା । ସେମାନେ ମନେ ମନେ ଭାବୁଥାନ୍ତି—''ସତରେ ଆମର କ'ଣ ଏ ସୌଭାଗ୍ୟ ହେବ! ଯଶୋଦାସୁତ କଳାକାହ୍ନୁ କ'ଣ କେବେ ଆମ କୋଳ ମଣ୍ଡନ କରିବେ? ତାଙ୍କର ସୁନ୍ଦର କୋମଳ ବଦନ ଦର୍ଶନ କରି ଆମେ କେବେ ଏ ପାପନେତ୍ର ସଫଳ କରିବୁ? ତାଙ୍କୁ କୋଳରେ ଧରି ଖୁଆଇବାର ସୌଭାଗ୍ୟ ଆମକୁ କେବେ ମିଳିବ? ନା, ଏହା କଦାପି ସମ୍ଭବ ହେବ ନାହିଁ । ତାଙ୍କ ଘରେ

କ'ଣ ବା ଅଭାବ ଅଛି ଯେ ସେ କାହିଁକି ଆମ ହାତରୁ କିଛି ଖାଇବାକୁ ମନ ବଳାଇବେ? ନାଇଁ, ନାଇଁ; ଅଭାବ ନ ଥିଲେ କ'ଣ ହେଲା, ସେ ତ ଭାବଗ୍ରାହୀ! ଆମ ଅନ୍ତର ଭାବକୁ ସେ କ'ଣ ଜାଣିପାରୁ ନ ଥିବେ? ନିଶ୍ଚୟ ସେ ଆମର ମନୋବାଞ୍ଛା ପୂର୍ଣ୍ଣ କରିବେ।'' ଏହିପରି ଅନେକ ଭାବତରଙ୍ଗ ସୃଷ୍ଟି ହେଉଥାଏ ବ୍ରାହ୍ମଣୀମାନଙ୍କ ପବିତ୍ର ହୃଦୟ ସରିତାରେ।

ଭାବଗ୍ରାହୀ ଭଗବାନଙ୍କୁ ଭକ୍ତଙ୍କ ମନ କଥା ଅଛପା ରହିଲା ନାହିଁ। ତାଙ୍କର ବଚନ ଯେ, ଯିଏ ତାଙ୍କୁ ଯେଉଁ ଭାବରେ ଭଜେ ସେ ତାକୁ ସେହିଭାବରେ ଆଶ୍ରୟ ଦିଅନ୍ତି। ତେବେ ଯଜ୍ଞପତ୍ନୀଙ୍କର ଭାବକୁ ସେ ପୂର୍ଣ୍ଣ ନ କରନ୍ତେ କିପରି? ଶ୍ରୀକୃଷ୍ଣ ଗୋପସଖାଙ୍କ ଗହଣରେ ଖାଇବାକୁ ଭାରି ଭଲ ପାଆନ୍ତି। ତେଣୁ ସବୁ ସଖାଙ୍କୁ ଡାକି ଦିନେ ସେ କହିଲେ—''ମୋର ପ୍ରିୟ ସଖାଗଣ! କାଲି ଆମେ ପ୍ରଭାତରୁ ଗାଈ ବାଛୁରୀଙ୍କୁ ଘେନି ମଥୁରା ନିକଟସ୍ଥ ବନକୁ ଯିବା। ସେଠାରେ କାଲି ବଣଭୋଜିର ବ୍ୟବସ୍ଥା ରହିଛି। ତେଣୁ କେହି ଘରୁ କିଛି ଖାଦ୍ୟ ନେବା ଦରକାର ନାହିଁ।''

ବଣଭୋଜି କଥା ଶୁଣି ପିଲାମାନଙ୍କ ଆନନ୍ଦର ଠିକଣା ରହିଲା ନାହିଁ। ରାତି ସାରା ଚିନ୍ତା କରୁଥାନ୍ତି, ଭୋଜିରେ କେତେ କ'ଣ ଭଲ ଭଲ ଜିନିଷ ରନ୍ଧା ହୋଇଥିବ। ଆଗ କାହ୍ନୁ ଖାଇବା ପରେ ଆମେ ଭୋଜନ ଆରମ୍ଭ କରିଦେବୁ ବାଃ ବାଃ, କହ୍ନେଇ ସାଙ୍ଗରେ ବଣଭୋଜିର କି ମଜା! ସତେ ଯେପରି ସେମାନେ ମନ ଭିତରେ ବଣଭୋଜି ଖାଇବା ଆରମ୍ଭ କରିଦେଲେଣି! ଧନ୍ୟ ସେହି ଗୋପାଳଙ୍କ ଭାଗ୍ୟ! ଯେଉଁ ପ୍ରଭୁଙ୍କ ମୂର୍ତ୍ତିକୁ ଯୋଗୀଜନ ଧ୍ୟାନରେ ମଧ୍ୟ ଚିନ୍ତା କରି ପାରନ୍ତି ନାହିଁ, ତାଙ୍କ ସଙ୍ଗେ ଏମାନେ କିଭଳି ସଖ୍ୟଲୀଳା କରି ଜୀବନ କାଟୁଛନ୍ତି!

ପ୍ରଭାତ ହୋଇଗଲା। ସମସ୍ତେ ଆନନ୍ଦ ମନରେ ବଂଶୀ, ଶିଙ୍ଗା ଇତ୍ୟାଦି ବଜାଇ, ପରସ୍ପରକୁ ଡକାଡ଼କି ହୋଇ ଗାଈ-ବାଛୁରୀମାନଙ୍କୁ ସଙ୍ଗରେ ଘେନି ବାହାରିଲେ ସେହି ବନକୁ, ଯେଉଁଠି ବଣଭୋଜି ପାଇଁ ପ୍ରସ୍ତାବ ହୋଇଥିଲା। ସେଠାରେ ଯାଇ ଦେଖନ୍ତି ତ କିଛି ବ୍ୟବସ୍ଥା ନାହିଁ। ସଖାମାନେ କୃଷ୍ଣଙ୍କୁ ବାରମ୍ବାର ପଚ୍ଚାରୁଥାନ୍ତି, କେବେ ଆରମ୍ଭ ହେବ ଭୋଜି? କୃଷ୍ଣ କହନ୍ତି, ତୁମେ ଚିନ୍ତା କରୁଛ କାହିଁକି, ରୋଷେଇ ଚୂଲିଛି। ଗାଈ ବାଛୁରୀଙ୍କୁ ପ୍ରଥମେ କଅଁଳିଆ ଘାସ ପାଖରେ ଛାଡ଼ିଦେଇ ଆସ। ତା'ପରେ ଆମେ ମିଳିମିଶି ଖେଳିବା। ଖେଳି ସାରିଲେ ଯାଇ ଖାଇବା। ସଖାଗଣ କୃଷ୍ଣଙ୍କ ସହିତ ଖେଳରେ ମାତିଗଲେ।

ମଧ୍ୟାହ୍ନ ହୋଇଗଲା। ସେତେବେଳକୁ ରୌଦ୍ରାତାପରେ ସମସ୍ତେ ଝାଉଁଳି

ଗଲେଣି । ଏଣେ ଭୋଜି ନାଁଆରେ ଘରୁ କେହି କିଛି ଖାଇକରି ଆସି ନ ଥାନ୍ତି । ଭୋକରେ ସମସ୍ତଙ୍କ ପେଟ ଜଳୁଥାଏ । ଭୋକ ଦାଉ ସହି ନ ପାରି ଗୋପପୁଅମାନେ କହିଲେ—"ହେ ନୟନାଭିରାମ ବଳରାମ! ହେ ଚିତ୍ତଚୋର ଶ୍ୟାମସୁନ୍ଦର! ତୁମେ ଏତେ ବଡ଼ ବଡ଼ ଦୁଷ୍ଟ ରାକ୍ଷସଙ୍କୁ ବଧ କରିଛ, ଆଜି ଏ କ୍ଷୁଧାରୂପୀ ରାକ୍ଷସ ଆମ୍ଭକୁ କଷ୍ଟ ଦେଉଛି । ଏହାକୁ ଦମନ କରିବାକୁ କୌଣସି ଉପାୟ କର ।" ଗୋପପୁଅଙ୍କର ଦୀନ ବଚନ ଶୁଣି ଭଗବାନ ଶ୍ରୀକୃଷ୍ଣ ମଥୁରାପୁର ବ୍ରାହ୍ମଣୀଙ୍କ ଉପରେ କୃପା କରିବା ନିମନ୍ତେ କହିଲେ—ପ୍ରିୟ ସଖାଗଣ! ଅନତି ଦୂରରେ ବେଦଜ୍ଞ ବ୍ରାହ୍ମଣମାନେ ସ୍ୱର୍ଗ କାମନାରେ ଆଙ୍ଗିରସ ନାମକ ଯଜ୍ଞ କରୁଛନ୍ତି । ତୁମେ ତାଙ୍କ ଯଜ୍ଞଶାଳାକୁ ଯାଅ । ବିନମ୍ର ଭାବରେ ଆମ ଦୁହିଙ୍କ ନାମ କହି କିଛି ଅନ୍ନ ମାଗି ନେଇ ଆସିବ ।

ଗୋପବାଳକମାନେ ଶ୍ରୀକୃଷ୍ଣଙ୍କ ଆଜ୍ଞା ପାଇ ପହଞ୍ଚିଲେ ଯଜ୍ଞଶାଳାରେ । ବ୍ରାହ୍ମଣମାନଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ—"ହେ ଭୂଦେବ! ଆମେ ବ୍ରଜର ଗୋପାଳ ତୁମକୁ ପ୍ରଣାମ ଜଣାଉଛୁ । କୃଷ୍ଣ-ବଳରାମଙ୍କ ଆଜ୍ଞାରେ ଆମେ ତୁମ ନିକଟକୁ ଆସିଛୁ । ଅନତି ଦୂରରେ କୃଷ୍ଣ-ବଳରାମ ଗୋଚାରଣ କରି ଆସି ପହଞ୍ଚିଛନ୍ତି । ଆଜି ଆମେ ଘରୁ କିଛି ଖାଦ୍ୟ ନ ଆଣି ପଳାଇ ଆସିଛୁ । ତେଣୁ ଆମ୍ଭେ ଅତି କ୍ଷୁଧିତ । ଆଶା କରୁ କିଛି ଅନ୍ନ ଦେଇ ଆମ କ୍ଷୁଧା ନିବାରଣ କରିବେ । ଆପଣମାନେ ଧର୍ମଜ୍ଞ । ତେଣୁ ଯଦି ମନରେ ଶ୍ରଦ୍ଧା ଥାଏ, ଆମ୍ଭ ଭଳି ଯାଚକଙ୍କୁ କିଛି ଅନ୍ନ ଦିଅନ୍ତୁ ।"

ବ୍ରାହ୍ମଣମାନେ ଦେବତାଙ୍କୁ ଆରାଧନା କରି ସ୍ୱର୍ଗ ଚାହୁଁଥିଲେ । ଭଗବାନ ଯେ ସବୁ ରୂପରେ ଅଭିବ୍ୟକ୍ତ, ତାଙ୍କ ସେବାରେ ଯେ ସମସ୍ତଙ୍କ ସେବା ହୋଇଯାଏ, ଏ କଥା ତାଙ୍କ ମୁଣ୍ଡରେ ପଶିଲା ନାହିଁ । ସେ ପରବ୍ରହ୍ମ ଶ୍ରୀକୃଷ୍ଣଙ୍କୁ ସାଧାରଣ ଗୋପାଳ ଭାବି ତାଙ୍କର ସମ୍ମାନ କଲେ ନାହିଁ । ଶୁଣି ନ ଶୁଣିଲା ଭଳି ପ୍ରଭୁଙ୍କୁ ଅବଜ୍ଞା କରି 'ହଁ, ନାହିଁ' କିଛି ନ କହି ମୁହଁ ବୁଲାଇ ଚାଲିଗଲେ ।

ବ୍ରାହ୍ମଣମାନଙ୍କ ଏପରି ଦୁର୍ବ୍ୟବହାରରେ ପିଲାମାନଙ୍କ ଆଶାଲତା ଭାଙ୍ଗିଗଲା । ସେମାନଙ୍କୁ ଅସହ୍ୟ ଦୁଃଖ ହେଲା । ଏକେ ତ ସକାଳୁ କିଛି ଖାଇ ନାହାନ୍ତି, ତା' ସହିତ ଯେଉଁଠିକି ଭିକ୍ଷା ପାଇଁ ଗଲେ, ସେମାନଙ୍କ ବ୍ୟବହାର ଏଭଳି! ମନଦୁଃଖରେ ଫେରିଆସି ଶ୍ରୀକୃଷ୍ଣଙ୍କୁ ସବୁ କଥା ଜଣାଇଲେ । ସେମାନଙ୍କ କଥା ଶୁଣି ଅନ୍ତର୍ଯାମୀ ଭଗବାନ ଶ୍ରୀକୃଷ୍ଣ ହସି ହସି କହିଲେ—ଏଥିରେ ଏତେ ବ୍ୟସ୍ତ ହେବାର କ'ଣ ଅଛି? ସଂସାରରେ ସଫଳତା ଓ ବିଫଳତା ତ ଲାଗି ରହିଛି । ବାରମ୍ବାର ଚେଷ୍ଟା କଲେ ନିଶ୍ଚୟ ସଫଳତା ମିଳିବ । ତୁମେ ପୁଣି ଥରେ ମୋ କଥା ମାନି ଯଜ୍ଞଶାଳାକୁ

ଯାଅ। ଏଥର ବ୍ରାହ୍ମଣମାନଙ୍କୁ କିଛି ନ କହି ବ୍ରାହ୍ମଣୀମାନଙ୍କ ନିକଟକୁ ଯିବ। ତାଙ୍କୁ କହିବ, 'ରାମ ଓ ଶ୍ୟାମ ଏଇ ବନକୁ ଗାଈ ଚରାଇବାକୁ ଆସିଛନ୍ତି।' ଯଥେଷ୍ଟ ଭୋଜନ ଦେଇ ସେମାନେ ନିଶ୍ଚୟ ତୁମକୁ ସନ୍ତୁଷ୍ଟ କରିଦେବେ। ସେମାନେ ମୋର ପ୍ରେମୀ ଭକ୍ତ। ସେମାନଙ୍କ ମନ ସର୍ବଦା ମୋ'ଠାରେ ଲାଗି ରହିଛି।

ଏଥର ଗୋପବାଳକମାନେ ଯାଇ ପହଞ୍ଚିଲେ ଯଜ୍ଞପତ୍ନୀଙ୍କ ନିକଟରେ। ପତ୍ନୀଶାଳାରେ ବ୍ରାହ୍ମଣୀମାନେ ସୁନ୍ଦର ସୁନ୍ଦର ବସ୍ତ୍ରାଭୂଷଣ ପିନ୍ଧି ଦେବୀ ଭଳି ଶୋଭା ପାଉଥାନ୍ତି। ସେମାନଙ୍କ ପାଦରେ ବିନୀତ ପ୍ରଣାମ ଜଣାଇ ପିଲାମାନେ କହିଲେ—"ବିପ୍ରପତ୍ନୀଙ୍କ ଚରଣରେ ଆମର ବିନୀତ ବନ୍ଦନ ସ୍ୱୀକାର ହେଉ! ଦୟା କରି ଆମ୍ଭ ନିବେଦନ ଶୁଣିବା ହୁଅନ୍ତୁ। ଅନତି ଦୂରରେ କୃଷ୍ଣ ବଳରାମ ଗୋଚାରଣ ପାଇଁ ଆସି ପହଞ୍ଚିଛନ୍ତି। ତାଙ୍କ ଆଜ୍ଞା ଘେନି ଆମ୍ଭେ ତୁମ୍ଭ ପାଖକୁ ଆସିଛୁ। ଅତ୍ୟନ୍ତ କ୍ଷୁଧାରେ ଆମ୍ଭେମାନେ ପୀଡ଼ିତ। ମାତେଶ୍ୱରୀ! ଆମ୍ଭଙ୍କୁ କିଛି ଅନ୍ନ ଦେଇ କ୍ଷୁଧା ନିବାରଣ କରନ୍ତୁ—**'ଅନ୍ନ ପୁଡ଼ାଏ ମାଏ ଦେବ। ଭୁଞ୍ଜିବେ ଶ୍ରୀରାମ ମାଧବ।।'**

ଯଜ୍ଞପତ୍ନୀଙ୍କ ମନ ତ ଚାତକ ଭଳି ଦୀର୍ଘ ଦିନରୁ କୃଷ୍ଣ ବଳରାମଙ୍କ ଦର୍ଶନ ପାଇଁ ବ୍ୟାକୁଳ ଥିଲା। ସେମାନେ ଗୋପୀମାନଙ୍କ ମୁଖରୁ କୃଷ୍ଣ ଲୀଳା ଶୁଣି ସବୁ ଦିନ ପାଇଁ ହୋଇଯାଇଥିଲେ ତାଙ୍କର କିଣା ଚାକର। ଅନେକ ଦିନର ଆଶାଲତା ଆଜି ପଲ୍ଲବିତ ହେବା ଜାଣି ସେମାନେ ଅଧୀର ହୋଇ ଉଠିଲେ। ନଦ-ନଦୀ ସମୁଦ୍ରରେ ମିଶିବା ପାଇଁ ତୀବ୍ର ଗତିରେ ପ୍ରବାହିତ ହେବାପରି ସେମାନେ ବଡ଼ ବଡ଼ ଥାଳିରେ ସ୍ୱାଦିଷ୍ଟ ଓ ସୁମଧୁର ଅନ୍ନବ୍ୟଞ୍ଜନ ଧରି ବାହାରି ପଡ଼ିଲେ ଶ୍ରୀକୃଷ୍ଣରୂପୀ ସମୁଦ୍ର ସଙ୍ଗେ ମିଶିବା ପାଇଁ। ବ୍ରାହ୍ମଣୀଙ୍କ ଜୀବନ ଆଜି ଧନ୍ୟ ହେବ। ପ୍ରଭୁଙ୍କୁ ଦର୍ଶନ କରି ସେମାନେ ଆଜି ଲାଭ କରିବେ ନେତ୍ର ଧାରଣ କରିବାର ଚରମ ଫଳ। କାହିଁକି ବା ନ ହୁଅନ୍ତା! ସେମାନେ ତ ଦୀର୍ଘ ଦିନରୁ ପବିତ୍ରକୀର୍ତ୍ତି ଭଗବାନ ଶ୍ରୀକୃଷ୍ଣଙ୍କ ଗୁଣ, ଲୀଳା, ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଶ୍ରବଣ କରି ତାଙ୍କ ଚରଣରେ ମନପ୍ରାଣ ବିକି ଦେଇଛନ୍ତି! ବ୍ରାହ୍ମଣମାନେ ତାଙ୍କ ମାର୍ଗ ରୋକିବାକୁ ଚେଷ୍ଟା କଲେ, କିନ୍ତୁ ଜଗତରେ ଏଭଳି କେଉଁ ଶକ୍ତି ଅଛି, ଯିଏ ଭକ୍ତ ଓ ଭଗବାନଙ୍କ ମିଳନରେ ବାଧା ସୃଷ୍ଟି କରି ପାରିବ!

ଯମୁନାକୂଳର ପବିତ୍ର ରମଣୀୟ ଅଶୋକ ବନ। ଗୋପବାଳକଙ୍କ ସଙ୍ଗରେ ସୌନ୍ଦର୍ଯ୍ୟନିଧି ଶ୍ରୀକୃଷ୍ଣ ସ୍ୱଚ୍ଛନ୍ଦ ବିହାରରତ। ବ୍ରାହ୍ମଣୀମାନଙ୍କୁ ପ୍ରଥମ ଦର୍ଶନ ଦେଇ ସବୁ ଦିନ ପାଇଁ ନିଜର କରି ନେବାକୁ ଭଗବାନ ଅତି ମନୋହର ବେଶରେ

ନିଜକୁ ସୁସଜ୍ଜିତ କରିଥାନ୍ତି। ଶ୍ୟାମ ଅଙ୍ଗକାନ୍ତିରେ ପୀତବସ୍ତ୍ର ଶ୍ୟାମଘନ ଉପରେ ବିଜୁଳି ଚମକିବା ଭଳି ଝଲମଲ କରୁଥାଏ। କରରେ କଙ୍କଣ ଓ କର୍ଣ୍ଣରେ କୁଣ୍ଡଳ, ବକ୍ଷସ୍ଥଳରେ ବନମାଳା ଓ ମସ୍ତକରେ ମୟୂର ଚନ୍ଦ୍ରିକା। ଲାଗୁଥାଏ ସତେ ଯେପରି କଳା ମେଘରେ ତାରାପଂକ୍ତି। ରଙ୍ଗ ବେରଙ୍ଗ ମୃତ୍ତିକାରେ ଚିତ୍ରିତ ଅଙ୍ଗର ସୌନ୍ଦର୍ଯ୍ୟରେ ନିଉଛାଳି ହେଉଥାନ୍ତି କୋଟି କୋଟି ଅନଙ୍ଗ। ଆମ୍ବବଉଳ ଓ ନବ ପଲ୍ଲବରେ ସୁସଜ୍ଜିତ ହୋଇ ନୃତ୍ୟକାର ଭଳି ଲାଗୁଥାନ୍ତି ପ୍ରାଣପ୍ରିୟ ମୋହନ। ଗୋଟିଏ ହାତ ସଖାଙ୍କ କନ୍ଧରେ ରଖି ଅନ୍ୟ ହାତରେ ପଦ୍ମ ଫୁଲଟିଏ ବୁଲାଇ ବୁଲାଇ ବିହାର କରୁଥାନ୍ତି ସେ ଅଶୋକ ବିପିନରେ। ମୁଖରୁ ଝରି ପଡୁଥାଏ ମନ୍ଦସ୍ମିତର ଅଦ୍ଭୁତ ହାସ୍ୟ ରେଖା। ନନ୍ଦନନ୍ଦନଙ୍କ ଅପୂର୍ବ ଶୋଭାକୁ ଭକ୍ତ କବି ଶ୍ରୀଜଗନ୍ନାଥ ଦାସ ଅତି ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି—

**ଶ୍ୟାମସୁନ୍ଦର ଦେହ ବର୍ଣ୍ଣ। କଟିରେ ପୀତ ଯେ ବସନ ॥**
**କଙ୍କଣ କୁଣ୍ଡଳ ବିରାଜେ। ରୂପେ କୋଟିଏ କାମ ଗଞ୍ଜେ ॥**
**ରଙ୍ଗମୃତ୍ତିକା ଦେହେ ବୋଳି। ମୟୂରପୁଚ୍ଛ ଗୁଞ୍ଜମାଳି ॥**
**ଆମ୍ବ ବଉଳ ରଙ୍ଗଡାଳ। ହୃଦେ ଲମ୍ବଇ ବନମାଳ ॥**
**ପାଦେ କଠାଉ ରଙ୍ଗସାର। ସୁଦାମ କନ୍ଧେ ଦେଇ କର ॥**
**ଦକ୍ଷିଣ କରେ ପଦ୍ମ ଘେନି। ଧୀରେ ଘୂରାନ୍ତି ଅନ୍ତର୍ଯାମୀ ॥**
**କର୍ଣ୍ଣରେ ନୀଳ ଯେ ଉତ୍ପଳ। ସୁନ୍ଦର ଅଳକା କପୋଳ ॥**
**ଯେସନେ ନଟବର ବେଶ। ରଙ୍ଗ ଅଧରେ ମନ୍ଦହାସ ॥**

ଯଜ୍ଞପତ୍ନୀମାନଙ୍କର ଚିର ଅଭିଳାଷ ଆଜି ପୂର୍ଣ୍ଣ ହେଲା। ଅଦ୍ୟାବଧି ସେମାନେ କର୍ଣ୍ଣରନ୍ଧ୍ରରେ ଶ୍ରୀକୃଷ୍ଣଙ୍କ ଗୁଣ ଓ ଲୀଳା ଶ୍ରବଣ କରି ତାଙ୍କ ପ୍ରେମରେ ନିଜକୁ ଅଭିରଞ୍ଜିତ କରି ଦେଇଥିଲେ; ଆଜି କିନ୍ତୁ ସାକ୍ଷାତ୍ ଅପଲକ ନେତ୍ରରେ ଶ୍ରୀକୃଷ୍ଣଙ୍କର ମୋହିନୀ ମୂର୍ତ୍ତିକୁ ଦର୍ଶନ କରିବାର ସୌଭାଗ୍ୟ ବ୍ରାହ୍ମଣୀମାନଙ୍କୁ ପ୍ରାପ୍ତ ହେଲା। ସେମାନେ ମୋହନଙ୍କୁ ନେତ୍ରମାର୍ଗରେ ହୃଦୟକୁ ନେଇଯାଇ ଗାଢ଼ ଆଲିଙ୍ଗନପୂର୍ବକ ଅନ୍ତରର ସନ୍ତାପକୁ ସେହିପରି ଦୂର କରିଦେଲେ, ଯେପରି 'ମୁଁ ଓ ମୋର' ଭାବନାରେ ଦିବାନିଶି ସନ୍ତପ୍ତ ହେଉଥିବା ମନୁଷ୍ୟର ମନୋବୃତ୍ତି ସୁଷୁପ୍ତି ଅବସ୍ଥାରେ ଶାନ୍ତି ଅନୁଭବ କରେ।

ଯଜ୍ଞପତ୍ନୀଙ୍କ ଅନ୍ତର ଭାବନା ଜାଣି ପାରିଲେ ଅନ୍ତର୍ଯାମୀ ଶ୍ରୀକୃଷ୍ଣ। ଭାଇ, ବନ୍ଧୁ, ପତି, ପୁତ୍ର ପ୍ରଭୃତିଙ୍କ ବାରଣ ସତ୍ତ୍ୱେ ସମସ୍ତ ସାଂସାରିକ ସମ୍ବନ୍ଧ ଓ ବିଷୟ ଆଶା

ତ୍ୟାଗ କରି ଆସିଥିବା ବ୍ରାହ୍ମଣୀମାନଙ୍କୁ ଦେଖି ସେ ଅତି ପ୍ରସନ୍ନ ହେଲେ। ବାଙ୍କ ଗ୍ରହାଣିରେ ସେମାନଙ୍କୁ ସ୍ୱାଗତ କରି ହସ ହସ ବଦନରେ କହିଲେ—"ହେ ମହାଭାଗ୍ୟବତୀ ଦେବୀଗଣ! ସ୍ୱାଗତମ୍। ଆସ, ଏଇଠି ଟିକିଏ ବିଶ୍ରାମ କର। କି ସେବା କରିବା ତୁମ୍ଭର? ତୁମେ ମୋତେ ଦର୍ଶନ କରିବା ପାଇଁ ଯେଉଁ ଅଭିଳାଷ ଘେନି ଆସିଥିଲ, ଆଜି ତାହା ପୂର୍ଣ୍ଣ ହେଲା। ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ଯେ ଚତୁର ଓ ବୁଦ୍ଧିମାନ୍ ଲୋକେ ମୋତେ ନିଜର ପ୍ରିୟତମ ଭାବେ ସ୍ୱୀକାର କରନ୍ତି। ମୋ ସହିତ ସେମାନେ ଛଳ, କପଟ, ସଙ୍କୋଚ, ଓ ଦ୍ୱୈଧଭାବ ରହିତ ବ୍ୟବଧାନଶୂନ୍ୟ ପ୍ରେମ ସମ୍ବନ୍ଧ ସ୍ଥାପନ କରନ୍ତି। ପ୍ରାଣ, ବୁଦ୍ଧି, ମନ, ଦେହ, ସ୍ୱଜନ, ସ୍ତ୍ରୀ, ପୁତ୍ର ଓ ଧନ ପ୍ରଭୃତି ଯେଉଁ ଆତ୍ମା କାରଣରୁ ପ୍ରିୟ ମନେ ହୁଅନ୍ତି, ସେହି ଆତ୍ମା ହେଉଛି ମୁଁ। ତେବେ ସଂସାରରେ ମୋ'ଠାରୁ ବଳି ପ୍ରିୟ ଆଉ କିଏ ବା ହୋଇ ପାରିବ? ତେଣୁ ତୁମ୍ଭର ଆଗମନ ଅତି ଶୋଭନୀୟ। ମୁଁ ତୁମ୍ଭକୁ ଅଭିନନ୍ଦନ କରୁଛି। ତୁମେ ତ ମୋର ଦର୍ଶନ ପାଇଲ। ଏଥର ଫେରିଯାଅ ଯଜ୍ଞଶାଳାକୁ। ତୁମର ସ୍ୱାମୀମାନେ ତୁମମାନଙ୍କ ବାଟ ଗ୍ରହିଁ ବସିଥିବେ। ତୁମ୍ଭ ବିହୁନେ ସେମାନଙ୍କର ଯଜ୍ଞ କାର୍ଯ୍ୟ ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ।

ଭଗବାନଙ୍କ ବଚନ ଶୁଣି ବ୍ରାହ୍ମଣୀମାନଙ୍କ ମୁଖ ଝାଉଁଳି ପଡ଼ିଲା। ସେମାନେ କହିଲେ—ହେ ଅନ୍ତର୍ଯାମୀ ଶ୍ୟାମସୁନ୍ଦର! ଏଭଳି କଠୋର ବଚନ କହି ଆମକୁ ମର୍ମାହତ କର ନାହିଁ। ଶ୍ରୁତିମାନେ କହିଛନ୍ତି ଯେ ଥରେ ଯିଏ ତୁମକୁ ପାଇଯାଏ, ସେ ଆଉ ସଂସାରକୁ ଲେଉଟେ ନାହିଁ। ତୁମେ ତୁମର ବେଦବାଣୀ ସତ୍ୟ କର ମୋହନ! ଆମେ ଆମର ସମସ୍ତ ବନ୍ଧୁବାନ୍ଧବଙ୍କ କଥା ଉଲ୍ଲଙ୍ଘନ କରି ତୁମ ଚରଣରେ ଦାସୀ ହୋଇଯାଇଛୁ। ତୁମ ପାଦପଦ୍ମର ଫୁଲତୁଳସୀକୁ ନିଜ କେଶ ଜୁଡ଼ାରେ ଖୋସି ଆମ୍ଭେ ଜୀବନ ଧନ୍ୟ କରିବୁ। ହେ ସ୍ୱାମୀ! ଅନ୍ୟମାନଙ୍କ କଥା ଛାଡ଼, ଆମର ପତି, ପୁତ୍ର, ପିତା, ମାତା ଓ ବନ୍ଧୁବାନ୍ଧବ ଆମକୁ ଆଉ ଅଙ୍ଗୀକାର କରିବେ ନାହିଁ। ତେବେ ଆମର ଆଉ ଆଶ୍ରୟ ବୋଲି କିଏ ଅଛି? ଏଭଳି କିଛି ବ୍ୟବସ୍ଥା କର, ଯେପରି ତୁମ୍ଭ ଚରଣ ଛାଡ଼ି ଯିବାକୁ ନ ପଡ଼ିବ।

ଭଗବାନ ଶ୍ରୀକୃଷ୍ଣ କହିଲେ—"ହେ ଦେବୀବୃନ୍ଦ! ପତି-ପୁତ୍ର, ପିତା-ମାତା, ଭାଇ-ବନ୍ଧୁ କେହିହେଲେ ତୁମକୁ ତିରସ୍କାର କରିବେ ନାହିଁ। ଏବେ ଜଗତରେ ତୁମର ନାମ ଉଜ୍ଜ୍ୱଳ ହୋଇଯିବ। ଆଜିଠାରୁ ତୁମେ ମୋର ଆପଣାର ହୋଇଗଲ; ତେଣୁ ଦେବଗଣ ମଧ୍ୟ ତୁମକୁ ସମ୍ମାନ କରିବେ। ତୁମ୍ଭେମାନେ ମନ ଆନନ୍ଦରେ

ଗୃହକୁ ଫେରିଯାଅ । କେବଳ ମୋ ନିକଟରେ ରହିବା ଯେ ପ୍ରୀତିର କାରଣ, ତା' ନୁହେଁ । କମଳିନୀ ବହୁ ଦୂରରେ ଥାଇ ମଧ୍ୟ ଚନ୍ଦ୍ରକୁ ଦେଖି ଆନନ୍ଦିତ ହେଉଥିବା ପରି ତୁମେମାନେ ମୋ'ଠାରେ ମନୋନିବେଶ କରି ଶୀଘ୍ର ମୋତେ ପାଇ ପାରିବ ।''

ଅନିଚ୍ଛାସତ୍ତ୍ୱେ ବ୍ରାହ୍ମଣୀମାନଙ୍କୁ ଯଜ୍ଞଶାଳାକୁ ଫେରିବାକୁ ପଡ଼ିଲା । ଶ୍ରୀକୃଷ୍ଣଙ୍କ ମୋହିନୀମୂର୍ତ୍ତିକୁ ହୃଦୟରେ ବସାଇ ସେମାନେ ଗୃହରେ ଉପନୀତ ହେଲେ । କୃଷ୍ଣଭକ୍ତିରେ ଓତପ୍ରୋତ ବ୍ରାହ୍ମଣୀମାନଙ୍କୁ ଦର୍ଶନ କରି ବ୍ରାହ୍ମଣଙ୍କ ହୃଦୟରେ ମଧ୍ୟ ଭଗବତ୍‌ପ୍ରେମ ଜାଗ୍ରତ ହୋଇଗଲା । ସେମାନେ ନିଜର ମନ୍ଦକୃତ୍ୟ ପାଇଁ ପଶ୍ଚାତ୍ତାପ କରି କହିଲେ—''ଭଗବାନଙ୍କ ମୋହିନୀ ମାୟାର ବଶୀଭୂତ ହୋଇ ଆମେ ଏଭଳି ସୁବର୍ଣ୍ଣ ସୁଯୋଗ ହାତଛଡ଼ା କରିଦେଲୁ । ଆମେ ମନୁଷ୍ୟଙ୍କର ଗୁରୁ ସ୍ଥାନୀୟ ଓ ଶ୍ରେଷ୍ଠ ବ୍ରାହ୍ମଣ ହୋଇ ମଧ୍ୟ ପରମାର୍ଥ ବିଷୟରେ ଅନ୍ଧ ହୋଇଗଲୁ । କି ଆଶ୍ଚର୍ଯ୍ୟ! ଆମ୍ଭ ସ୍ତ୍ରୀମାନଙ୍କର ଜୀବନ ପ୍ରକୃତରେ ଧନ୍ୟ । ଜାତିରେ ନାରୀ ହୋଇ ମଧ୍ୟ ଭଗବାନଙ୍କ ପ୍ରତି ଏମାନଙ୍କ ହୃଦୟରେ କେତେ ଅଲୌକିକ ପ୍ରୀତି! ସମସ୍ତ ସଂସ୍କାର ବିବର୍ଜିତ ଓ ପବିତ୍ରତାଶୂନ୍ୟ ହୋଇଥିଲେହେଁ କେବଳ ପ୍ରେମ ବଳରେ ଏମାନେ ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗ ଲାଭ କରି ପାରିଲେ । ଧିକ୍ ଆମର ଯଜ୍ଞକୁ, ଧିକ୍ ଆମ ବୁଦ୍ଧିମତ୍ତାକୁ । ଗୃହବନ୍ଧନରେ ବାନ୍ଧି ହୋଇ ନିଜକୁ ଜ୍ଞାନୀ କୁହାଉଥିବା ଆମ ଭଳି ଅଜ୍ଞମାନଙ୍କୁ ଧିକ୍ । ପ୍ରଭୁ ଆମ ଉପରେ କରୁଣା କରିବା ପାଇଁ ଅନ୍ନ ବାହନାରେ ଗୋପବାଳକଙ୍କୁ ପଠାଇଥିଲେ; ନଚେତ୍ ଆତ୍ମାରାମ ଭଗବାନଙ୍କ ନିକଟରେ ଆମ ଭଳି ଗୃହାସକ୍ତ ବ୍ୟକ୍ତିର ମୂଲ୍ୟ ବା କେତେ! ଆମେ ତାଙ୍କର କି ସେବା ଅବା କରି ପାରିବୁ! ତଥାପି ଆମେ ତାଙ୍କୁ ସାମାନ୍ୟ ଗୋପାଳ ଭାବି ଅବଜ୍ଞା କଲୁ । ସେହି ଯୋଗେଶ୍ୱର ଭଗବାନ ବିଷ୍ଣୁ ଶ୍ରୀକୃଷ୍ଣରୂପରେ ଯଦୁବଂଶରେ ଅବତରିତ ହୋଇଥିବା କଥା ଆମେ ଶୁଣିଥିଲୁ, ତଥାପି ମୂଢ଼ତା କାରଣରୁ ତାଙ୍କୁ ଚିହ୍ନି ପାରିଲୁ ନାହିଁ । ଏତେ ମୂଢ଼ ଓ ଅପରାଧୀ ହୋଇଥିବା ସତ୍ତ୍ୱେ ଆମେ ଆଜି ପରମ ଧନ୍ୟ ଓ ସୌଭାଗ୍ୟଶାଳୀ ଯେ ଏଭଳି ଭକ୍ତିମତୀ ନାରୀଙ୍କୁ ଆମେ ସ୍ତ୍ରୀରୂପରେ ପାଇଛୁ । ଏହାଙ୍କ ଭକ୍ତି ପ୍ରଭାବରୁ ଶ୍ରୀକୃଷ୍ଣଙ୍କ ପଦାରବିନ୍ଦରେ ଆମର ମଧ୍ୟ ଅବିଚଳ ପ୍ରେମ ଜାଗ୍ରତ ହୋଇ ପାରିଲା ।''

ଏହିଭଳି ପଶ୍ଚାତ୍ତାପପୂର୍ବକ ବ୍ରାହ୍ମଣମାନେ ନିଜର ଅପରାଧ ମାର୍ଜନା ନିମନ୍ତେ ଭଗବାନଙ୍କ ଚରଣରେ ବନ୍ଦନା କରି କହିଲେ—''ହେ ଅନନ୍ତ ଐଶ୍ୱର୍ଯ୍ୟପତି ଶ୍ରୀକୃଷ୍ଣ! ହେ ଶରଣାଗତ ରକ୍ଷକ! ଆମେ ତୁମ ପାଦତଳେ ବାରମ୍ବାର ଶରଣ ପଶୁଛୁ । ତୁମ ମାୟାରେ ଆମର ବୁଦ୍ଧି ମୋହିତ ହୋଇ କର୍ମରେ ଘୂରି ବୁଲୁଛି ।

ଆମେ ଅଜ୍ଞାନୀ ତୁମ୍ଭ ପ୍ରଭାବ ଜାଣି ପାରିଲୁ ନାହିଁ । ପ୍ରଭୁ! ଆମର ସବୁ ଅପରାଧ କ୍ଷମା କରି ଚରଣରେ ଆଶ୍ରୟ ଦିଅ ।''

ଭକ୍ତି ଭକ୍ତକୁ ତ ପବିତ୍ର କରିଦିଏ, ଭକ୍ତଙ୍କ ସାନ୍ନିଧ୍ୟ ଓ ସଂସ୍ପର୍ଶରେ ଆସୁଥିବା ଅନ୍ୟ ଜୀବମାନଙ୍କର ହୃଦୟକୁ ମଧ୍ୟ ବଦଳାଇଦିଏ । ଏ ଜନ୍ମରେ ବ୍ରାହ୍ମଣୀ ହୋଇଥିବା ଋଷିପତ୍ନୀମାନଙ୍କର ଭଗବାନଙ୍କ ଚରଣରେ ଏଭଳି ଦୃଢ଼ ଭକ୍ତି ପ୍ରଭାବରେ ବ୍ରାହ୍ମଣମାନଙ୍କ ହୃଦୟରେ ମଧ୍ୟ ସେହି ଦିନଠାରୁ ଭକ୍ତି ସଂଗ୍ରର ହେଲା । ସତରେ, ଭକ୍ତିର ମହିମା ଅତ୍ୟନ୍ତ ଅଦ୍ଭୁତ! ସେହି ଦିନଠାରୁ ଋଷିପତ୍ନୀମାନେ ଭକ୍ତିମୟ ଜୀବନ ବ୍ୟତୀତ କଲେ । ସେମାନଙ୍କର ଶାପଜନିତ ଭୋଗାଭୋଗ ପୂର୍ଣ୍ଣ ହୋଇଯିବା ପରେ ସେମାନେ ଦେହତ୍ୟାଗ କରି ପୁନଃ ଦିବ୍ୟ ଲୋକକୁ ଗ୍ଲିଗଲେ ।



## ଭକ୍ତ ଚନ୍ଦ୍ରହାସ

**ପଥି ଚ୍ୟୁତଂ ତିଷ୍ଠତି ଦିଷ୍ଟରକ୍ଷିତଂ**
**ଗୃହେ ସ୍ଥିତଂ ତଦ୍‌ବିହତଂ ବିନଶ୍ୟତି ।**
**ଜୀବତ୍ୟନାଥୋଽପି ତଦୀକ୍ଷତୋ ବନେ**
**ଗୃହେଽପି ଗୁପ୍ତୋଽସ୍ୟ ହତୋ ନ ଜୀବତି ॥**

''ଭାଗ୍ୟ ଅନୁକୂଳ ଥିଲେ ମାର୍ଗରେ ପଡ଼ିଥିବା ଦ୍ରବ୍ୟ ମଧ୍ୟ ସେହିଭଳି ସୁରକ୍ଷିତ ପଡ଼ି ରହେ, କିନ୍ତୁ ଭାଗ୍ୟ ପ୍ରତିକୂଳ ହୋଇଗଲେ ଘରେ ସିନ୍ଦୁକରେ ବନ୍ଦ କରି ରଖିଥିବା ଦ୍ରବ୍ୟ ମଧ୍ୟ ନଷ୍ଟ ହୋଇଯାଏ । ପ୍ରଭୁଙ୍କ ଦୟାଦୃଷ୍ଟି ଥିଲେ ଅରକ୍ଷିତ ଜୀବ ମଧ୍ୟ ଜଙ୍ଗଲରେ ଦୀର୍ଘ ଦିନ ଜୀବିତ ରହିପାରେ, କିନ୍ତୁ ପ୍ରଭୁଙ୍କ ଇଚ୍ଛା ନ ଥିଲେ ଗୃହ ମଧ୍ୟରେ ସୁରକ୍ଷିତ ଥାଇ ମଧ୍ୟ ସେ ମୃତ୍ୟୁର କବଳିତ ହୋଇଯାଏ ।''

***ଯାହାକୁ ରଖିବେ ଅନନ୍ତ । କି କରିପାରେ ବଳବନ୍ତ ॥***—ଏହି ଉକ୍ତିଟି ଅନେକ ଭକ୍ତଙ୍କ ଜୀବନରେ ସାକାର ହୋଇଥିବାର ଦେଖାଯାଏ । ଭକ୍ତବତ୍ସଳ ଭଗବାନ କେଉଁ ଉପାୟରେ ଯେ ଭକ୍ତକୁ ବିପତ୍ତିରୁ ରକ୍ଷା କରନ୍ତି, ତାହା ଜାଣିବା ମାନବୀୟ ବୌଦ୍ଧିକ ଶକ୍ତିର ବାହାରେ । ତାଙ୍କ ଲୀଳା ବ୍ରହ୍ମାଦି ଦେବଙ୍କୁ ମଧ୍ୟ ଅଗୋଚର । ସେ ସବୁ କିଛି କରୁଥିଲେହେଁ ନିଜକୁ ଅଭିବ୍ୟକ୍ତ କରନ୍ତି ନାହିଁ । ନାଟ୍ୟର ସୂତ୍ରଧାର କଣ୍ଢେଇଗୁଡ଼ିକୁ ନଗ୍ଉଥିଲେ ମଧ୍ୟ ଯେପରି ପରଦା ଆଢୁଆଳରେ ଲୁଚି ରହିଥାଏ, ସେହିପରି ଭଗବାନ ସବୁ ଲୀଳାର ସୂତ୍ରଧାର ହୋଇ ମଧ୍ୟ ନିଜେ

ଗୁପ୍ତ ରହନ୍ତି । ଏହା ହିଁ ତାଙ୍କ ଲୀଳାର ବୈଚିତ୍ର୍ୟ! ଏହି ବୈଚିତ୍ର୍ୟକୁ ବୁଝିପାରେ କେବଳ ତାଙ୍କର ଶରଣାପନ୍ନ ଭକ୍ତ । ସେ ସବୁ ଘଟଣାରେ ତାଙ୍କୁ ଅନୁଭବ କରି ଆନନ୍ଦିତ ହେଉଥାଏ । ଏଭଳି ଶରଣାଗତ ଭକ୍ତଙ୍କ ଭିତରେ ଅଗ୍ରଣୀ ଥିଲେ ଭକ୍ତ ଚନ୍ଦ୍ରହାସ । ପିଲାଟି ଦିନରୁ ବାପମାଆ ଛେଉଣ୍ଡ ହୋଇ ମଧ୍ୟ ସେ କିପରି ଜଣେ ମହାନ୍ ଭକ୍ତ ହୋଇପାରିଥିଲେ, ତାହା ସ୍ପଷ୍ଟ ପରିଲକ୍ଷିତ ହୁଏ ତାଙ୍କ ଜୀବନ ଚରିତରୁ ।

କେରଳ ରାଜ୍ୟରେ ଜଣେ ଅତ୍ୟନ୍ତ ମହନୀୟ ରାଜା ଥିଲେ । ତାଙ୍କର ନାମ ଥିଲା ସୁଧାର୍ମିକ । ସୁଧାର୍ମିକ ନାମଟିକୁ ସାର୍ଥକ କରିଥିଲା ତାଙ୍କର ମହାନ୍ କର୍ମ । ପ୍ରଭୁ ଭକ୍ତିରେ ସେ ଅହର୍ନିଶ ମଗ୍ନ ରହୁଥିଲେ । ରାଜା ଯେପରି ମହାନ୍, ରାଣୀ ମଧ୍ୟ ସେହିପରି ମହିୟସୀ । ଏଭଳି ଭକ୍ତଦମ୍ପତିଙ୍କ ଗୃହରେ ଜନ୍ମ ହେଲେ ଭକ୍ତ ଚନ୍ଦ୍ରହାସ । ସେ ପିତା-ମାତାଙ୍କ ଭକ୍ତିସଂସ୍କାର ବ୍ୟତୀତ ଅଧିକ ବାତ୍ସଲ୍ୟ ଭାଜନ ହୋଇପାରି ନ ଥିଲେ । ତାଙ୍କ ଜନ୍ମ ହେବାର ଖୁବ୍ କମ୍ ଦିନ ପରେ ତାଙ୍କର ପିତା ସଂଗ୍ରାମ ଭୂମିରେ ବୀରଗତି ଲାଭ କରିଥିଲେ । ପଡ଼ୋଶି ଦେଶର ରାଜା ତାଙ୍କ ସରଳତାର ସୁଯୋଗ ନେଇ ସସୈନ୍ୟ ଯୁଦ୍ଧ ପାଇଁ ମାଡ଼ି ଆସିଲା । ଯୁଦ୍ଧ ପାଇଁ ରାଜା ସୁଧାର୍ମିକଙ୍କର କୌଣସି ଅଭିଳାଷ ନ ଥିଲା । ଭକ୍ତିରେ ନିମଗ୍ନ ରହିବା ଥିଲା ତାଙ୍କର ସହଜାତ ସ୍ୱଭାବ, କିନ୍ତୁ କର୍ତ୍ତବ୍ୟ ଦୃଷ୍ଟିରୁ ଏବଂ ପ୍ରଭୁଙ୍କ ସମ୍ପତ୍ତିର ସୁରକ୍ଷା ପାଇଁ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିଥିଲା । ରାଜାଙ୍କ ସହିତ ପତିପରାୟଣା ରାଣୀ ମଧ୍ୟ ସତୀ ହୋଇଗଲେ ।

ରାଜବଂଶର କୌଣସି ନାରୀ ବା ବାଳକ ଯେପରି ରାଜ୍ୟ ବାହାରକୁ ଯାଇ ନ ପାରିବ, ସେଥିପାଇଁ ପଡ଼ୋଶି ଦେଶର ରାଜା ସୀମାର ଚାରି ପାଖରେ ସୈନ୍ୟମାନଙ୍କୁ ଜଗାଇ ରଖିଥାଏ । ସେ ଚାହୁଁଥିଲା ରାଜବଂଶକୁ ସମୂଳେ ନଷ୍ଟ କରିବା ପାଇଁ । ହେଲେ ଭଗବାନଙ୍କ ପାଖରେ ତ ଉପାୟର ଅଭାବ ନାହିଁ । ସେ ଯାହାକୁ ରଖିବାକୁ ଚାହିଁବେ, ତାକୁ ମାରିବାକୁ କିଏ ଅଛି? ପ୍ରଭୁଙ୍କ ପ୍ରେରଣାରୁ ଚନ୍ଦ୍ରହାସକୁ ପାଳନ କରୁଥିବା ଧାଈ ମାଆ ମନରେ ସହସା ଗୋଟିଏ ଉପାୟ ସ୍ଫୁରିତ ହେଲା । ସେ ଧୋବଣୀ ବେଶରେ ଚନ୍ଦ୍ରହାସକୁ ଝୁଡ଼ି ଭିତରେ ରଖି ତା' ଉପରେ ଅଇଁଠା ପତ୍ର ଓ ଅଳିଆ ଆବର୍ଜନା ଘୋଡ଼ାଇ ଦେଇ ଝୁଡ଼ିଟିକୁ ନେଇ ରାଜ୍ୟ ବାହାରକୁ ଚାଲିଗଲା । ଭଗବାନଙ୍କ ମାୟା ଦେଖ! କାହାରି ମନରେ ଝୁଡ଼ିଟିକୁ ତଲାସ କରିବାର ଭାବନା ଜାଗ୍ରତ ହେଲା ନାହିଁ । କିଏ ଜାଣେ ଯେ ଅଳିଆ ଆବର୍ଜନା

ଝୁଡ଼ିର ସହାୟତାରେ ଭଗବାନ ଭକ୍ତ ବାଳକର ପ୍ରାଣ ରକ୍ଷା କରିବେ! ସେ ଯାହାହେଉ ନା କାହିଁକି, ଭକ୍ତ ଚନ୍ଦ୍ରହାସଙ୍କ ପ୍ରାଣରକ୍ଷା କରି ଧାଈ ମାଆ ବେଶ୍ ତାଙ୍କର କର୍ତ୍ତବ୍ୟ ପାଳନ କରି ମହନୀୟା ହୋଇଗଲେ।

ଚନ୍ଦ୍ରହାସକୁ ଧରି ଧାଈ ମାଆ ପହଞ୍ଚିଲେ କୁନ୍ତଳପୁର ରାଜ୍ୟର ମନ୍ତ୍ରୀ ଦୁଷ୍ଟବୁଦ୍ଧି ଗୃହରେ। ସେତେବେଳେ ରାଜା କୁନ୍ତଳକ କୁନ୍ତଳପୁର ରାଜ୍ୟର ରାଜା ଥିଲେ ସତ, କିନ୍ତୁ ***'କୀଚକ ବାହୁବଳେ ବିରାଟ ରାଜା'*** ଭଳି ମନ୍ତ୍ରୀ ଦୁଷ୍ଟବୁଦ୍ଧିର ପ୍ରଭାବ କାମ କରୁଥିଲା। ରାଜାଙ୍କ ଭଳି ତା' ଗୃହରେ ଯଥେଷ୍ଟ ସମ୍ପତ୍ତି ପୂରି ରହିଥାଏ। ***'ଯଥା ନାମ ତଥା ଗୁଣ'*** ଅନୁସାରେ ମନ୍ତ୍ରୀ ଦୁଷ୍ଟବୁଦ୍ଧି ପାଖରେ ଦୁଷ୍ଟତାର ଅଭାବ ନ ଥିଲା। ନାସ୍ତିକ ହୋଇଥିବାରୁ ସାଧୁ-ସନ୍ଥଙ୍କ ସମାଗମ ଓ ପ୍ରଭୁଭକ୍ତି ତାକୁ ଲାଗୁଥିଲା ବିଷପରି। ସେ ଅଧିକ ସମୟ ବିଷୟଚର୍ଚ୍ଚା ଓ ବିଳାସବ୍ୟସନରେ କାଟେ। ମାତ୍ର ତା'ର ପୁତ୍ର ମଦନ ଥିଲା ମହାନ୍ ଭକ୍ତ। ବାପାଙ୍କର ବ୍ୟବହାର ତାକୁ ଆଦୌ ଭଲ ଲାଗୁ ନ ଥାଏ। ସେ ଅନେକ ଥର ସନ୍ଥ-ମହାତ୍ମାଙ୍କୁ ଆମନ୍ତ୍ରଣ କରି ସତ୍ସଙ୍ଗ ଅନୁଷ୍ଠାନ ଓ ନାମ-ସଂକୀର୍ତ୍ତନ ଇତ୍ୟାଦି କରାଉଥାଏ। ଦୁଷ୍ଟବୁଦ୍ଧିକୁ ଏ ସବୁ ସତ୍କାର୍ଯ୍ୟ ଦେହରେ କଣ୍ଟା ଫୋଡ଼ି ହେବାଭଳି ସୁହାଉ ନ ଥିଲେ ମଧ୍ୟ ପୁତ୍ରର ଅପ୍ରୀତି ଭୟରେ ସେ କିଛି କହି ପାରୁ ନ ଥାଏ।

ଧାଈ ମାଆ କୋଳରେ ଅତି ସ୍ନେହରେ ଚନ୍ଦ୍ରହାସ ଲାଳିତ ପାଳିତ ହୋଇ ଚନ୍ଦ୍ରକଳା ଭଳି ଧୀରେ ଧୀରେ ବଢ଼ି ଚାଲିଲା। କିନ୍ତୁ ବିଧିର ବିଧାନ ବଡ଼ ବିଚିତ୍ର! ସେତେବେଳକୁ ସେ ପ୍ରାୟ ତିନି ବର୍ଷର ହୋଇଥାଏ କି ନାହିଁ ଧାଈ ମାଆ ଅଗ୍ନକ ପରଲୋକ ଗମନ କଲେ। ଏଥର ବାଳକ ହୋଇଗଲା ସମ୍ପୂର୍ଣ୍ଣ ଅସହାୟ। ବିପଦରେ ଆହା ପଦେ କହିବାକୁ ନିଜର କେହି ନାହିଁ। ଅନେକ ଶୁଭ ଲକ୍ଷଣରେ ଯୁକ୍ତ, ଗୌର ବର୍ଣ୍ଣର ସେହି ସୁନ୍ଦର ବାଳକଟିକୁ ଗାଆଁ ଲୋକେ ଅତି ଆଦରରେ ପାଳନ କଲେ। ସ୍ନେହମୟୀ ମାଆମାନଙ୍କ ମଧ୍ୟରୁ କେହି ଗାଧୋଇ ଦିଏ ତ ଆଉ କେହି ସୁନ୍ଦର ସୁନ୍ଦର ବସ୍ତ୍ର ତିଆରି କରି ପିନ୍ଧାଇ ଦିଏ; କେହି ଖୁଆଇ ଦିଏ ତ ଆଉ କେହି ଟୋପି ତିଆରି କରି ବେଶ କରିଦିଏ; ପୁଣି ଆଉ କେହି କୋଳକୁ ନେଇ ଖୁବ୍ ସ୍ନେହ କରେ। ଏହିଭଳି ବାଳକ ଚନ୍ଦ୍ରହାସଙ୍କ ଜୀବନ ଆନନ୍ଦରେ କଟିଲା।

ତୁଳସୀ ଦୁଇ ପତ୍ରରୁ ବାସିଲା ପରି ଚନ୍ଦ୍ରହାସଙ୍କ ଜୀବନରେ ପିଲାଟିବେଳୁ ଭକ୍ତିର ଲକ୍ଷଣ ପ୍ରସ୍ଫୁଟିତ ହେବାକୁ ଲାଗିଲା। ପିଲାମାନଙ୍କ ଗହଣରେ ଖେଳିଲାବେଳେ

ସେ ନାମ-ସଂକୀର୍ତ୍ତନ କରନ୍ତି ଏବଂ ମାଟିରେ ଠାକୁରଙ୍କ ମୂର୍ତ୍ତି ଗଢ଼ି ପ୍ରଭୁଙ୍କର ବିବିଧ ଲୀଳା ଅନୁକରଣ କରନ୍ତି । ଏଭଳି ପବିତ୍ର ସଂସ୍କାରକୁ ଅନ୍ୟ କେହି ଜାଣିପାରୁ ବା ନ ପାରୁ, କିନ୍ତୁ ଦେବର୍ଷି ନାରଦଙ୍କ ପାଇଁ ଏ କଥା ଅଛପା ରହିଲା ନାହିଁ । ଅନାଥ ବାଳକଟିକୁ ଆଶ୍ରୟ ଦେଇ ଭକ୍ତିମାର୍ଗରେ ଅଗ୍ରଗତି କରାଇବା ଉଦ୍ଦେଶ୍ୟରେ ଚଉଦ ଭୁବନରେ ସ୍ୱଚ୍ଛନ୍ଦ ବିଚରଣ କରୁଥିବା ଦେବର୍ଷି ଯାଇ ପହଞ୍ଚିଲେ କୁନ୍ତଳପୁରରେ । ସେ ଯାଇ ଦେଖନ୍ତି ତ ବାଳକ ନେତ୍ର ବନ୍ଦ କରି ଧ୍ୟାନମୁଦ୍ରାରେ ପ୍ରଭୁଭକ୍ତିରେ ନିମଗ୍ନ ହୋଇଯାଇଛି । ତାକୁ ଚିହ୍ନିବାକୁ ଦେବର୍ଷିଙ୍କୁ କୌଣସି ଅସୁବିଧା ହେଲା ନାହିଁ । ଭବିଷ୍ୟତରେ ପିଲାଟି ଭକ୍ତରାଜ ହେବ, ତେଣୁ ତାକୁ ଉତ୍ସାହ ଦେବା ପାଇଁ ଦେବର୍ଷିଙ୍କ ମନ ବଳିଲା । ସେ ତାକୁ ଶାଳଗ୍ରାମଙ୍କ ମୂର୍ତ୍ତି ପ୍ରଦାନ କରି ସଂକ୍ଷେପରେ ପୂଜାବିଧି ଶିଖାଇ ଦେଲେ । ସେ କହିଲେ—"ବତ୍ସ! କଳିଯୁଗରେ ଶାଳଗ୍ରାମ ପ୍ରତ୍ୟକ୍ଷ ଠାକୁର । ଏହାଙ୍କୁ ପୂଜା କଲେ ବ୍ୟକ୍ତି ଅତି ମହାନ୍ ହୋଇଥାଏ । ଏହାଙ୍କ ପୂଜାବିଧି ମଧ୍ୟ ଅତି ସଂକ୍ଷିପ୍ତ । ***'ଧୋଇ ପିଇବ ଏବଂ ଦେଖାଇ ଖାଇବ'*** ଏତିକିରେ ଶାଳଗ୍ରାମ ଭଗବାନ ପ୍ରସନ୍ନ ହୋଇଯିବେ । ତୁମେ ଏହାଙ୍କୁ ସଦାବେଳେ ନିଜ ପାଖରେ ରଖିବ । ନିଜ ମନ କଥା କହିବ । ଇଏ ତୁମର ଅତି ଆପଣାର । କୌଣସି ବିପତ୍ତି ପଡ଼ିଲେ ଏହାଙ୍କୁ ସ୍ମରଣ କରିବ । ସବୁ ବିପତ୍ତିରୁ ଇଏ ତୁମକୁ ରକ୍ଷା କରିବେ ।"

ଦେବର୍ଷି ନାରଦ ପୂଜାବିଧି, ମନ୍ତ୍ର ଓ ଗାଲରେ ଜାକି ରଖିବାର କୌଶଳ ବତାଇ ଚାଲିଯିବା ପରେ ବାଳକର ଉତ୍ସାହ ବହୁଗୁଣିତ ହୋଇଗଲା । ପ୍ରତିଦିନ ଶାଳଗ୍ରାମଙ୍କୁ ଗାଲ ଭିତରୁ ବାହାର କରି ପୂଜା କରେ ଏବଂ ପୂଜାପୂଜି ସରିଲେ ପୁଣି କଳରେ ଜାକି ରଖେ । ଶାଳଗ୍ରାମ ଭଗବାନଙ୍କ ଅହରହ ସ୍ପର୍ଶ ପାଇବାରୁ ତା'ର ସ୍ଥିତି ବିଚିତ୍ର ହୋଇଗଲା! ଶାଳଗ୍ରାମମାହାତ୍ମ୍ୟରେ କୁହାଯାଇଛି ଯେ ଗୋଲାକାର ଶାଳଗ୍ରାମ ଶିଳା ପୂଜା କଲେ ବ୍ୟକ୍ତିର ଆଚରଣ ପବିତ୍ର ଓ ସୁଶୀଳ ହୋଇଥାଏ— **'ବୃତ୍ତା ସୁବୃତ୍ତଦା ପ୍ରୋକ୍ତା ।'** ଚନ୍ଦ୍ରହାସ ଏକାନ୍ତରେ ବସି ଭଗବାନଙ୍କୁ ପୂଜା କଲାବେଳେ ଭାବପୂରିତ ହୃଦୟରେ ନାମ ସଂକୀର୍ତ୍ତନ କରି ନୃତ୍ୟ କରେ । ସେତେବେଳେ ତା' ଦେହରେ ଏତେ ଦିବ୍ୟତ୍ୱ ଦେଖାଯାଏ ଯେ ଲୋକେ ସେଭଳି ମନୋହାରିଣୀ ସ୍ଥିତି ଦେଖି ଆତ୍ମବିସ୍ମୃତ ହୋଇଯାଆନ୍ତି । ବର୍ଣ୍ଣନା ଆସେ ଯେ ତନ୍ମୟ ମନରେ ଚନ୍ଦ୍ରହାସ କୀର୍ତ୍ତନ କରିବା ବେଳେ ତାକୁ ପ୍ରତ୍ୟକ୍ଷ ବୋଧହୁଏ ସତେ ଯେପରି ଚନ୍ଦନ ଚର୍ଚ୍ଚିତ ନୀଳ କଳେବରଧାରୀ ଶ୍ୟାମ ବର୍ଣ୍ଣର ବାଳକଟିଏ ମଧୁର

ସ୍ୱରରେ ବଂଶୀ ବାଦନ କରି ତା' ସହିତ ନୃତ୍ୟ କରୁଛି । ଶ୍ରୀକୃଷ୍ଣଙ୍କ ଏଭଳି ରୂପ ଦର୍ଶନ କରିବାରୁ ଚନ୍ଦ୍ରହାସର ତନ୍ମୟତା ଆହୁରି ପ୍ରବଳ ହୋଇଉଠେ । ସେ ନଜେ ନିଜକୁ ଭୁଲିଯାଇ ଆନନ୍ଦସାଗରରେ ଅବଗାହନ କରୁଥାଏ ।

ଚନ୍ଦ୍ରହାସର ଏଭଳି ଭକ୍ତିଭାବରେ ମନ୍ତ୍ରୀ ପୁଅ ମଦନ ଅତ୍ୟନ୍ତ ପ୍ରୀତ ହୋଇ ତାକୁ ପ୍ରାଣ ଭଳି ଭଲ ପାଆନ୍ତି । ମଦନର ସାଧୁସ୍ୱଭାବ କାରଣରୁ ମନ୍ତ୍ରୀଗୃହରେ ସମୟେ ସମୟେ ନାନା ପ୍ରକାର ସତ୍ସଙ୍ଗ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥାଏ । ସେଥିପାଇଁ ଅନବରତ ସାଧୁ-ସନ୍ଥଙ୍କ ସମାଗମ ଲାଗି ରହିଥାଏ । ଦିନେ ସତ୍ସଙ୍ଗ ସମୟରେ ବାଳକ ଚନ୍ଦ୍ରହାସ ସାଙ୍ଗମାନଙ୍କ ଗହଣରେ କୀର୍ତ୍ତନ କରି ସେହି ମାର୍ଗରେ ଯାଉଥାଏ । ଅତି ସୁମଧୁର ଲଳିତ ସ୍ୱରରେ ନାମ ସଂକୀର୍ତ୍ତନ ଧ୍ୱନି ଶୁଣି ସାଧୁ-ବ୍ରାହ୍ମଣଙ୍କ ମନ ଟାଣି ହୋଇଗଲା ସେଆଡ଼କୁ । ସେ ମନ୍ତ୍ରମୁଗ୍ଧ ହେବାଭଳି କୀର୍ତ୍ତନ ଶୁଣି ଆଚମ୍ବିତ ହୋଇଗଲେ! ସେମାନେ କୀର୍ତ୍ତନ ସରିବା ପରେ ଚନ୍ଦ୍ରହାସକୁ ଡାକି ସ୍ନେହରେ ତା' ମୁଣ୍ଡ ଆଉଁସି ପାଖରେ ବସାଇ ଭୋଜନ କରାଇଲେ । ପିଲାଟିର ଶୁଭ ଲକ୍ଷଣ ଓ ଭକ୍ତିରେ ସେମାନଙ୍କ ମନ ଅଟକିଗଲା । ସେମାନେ ବାରମ୍ବାର ତା'ର ହାତ ଦେଖୁଥାନ୍ତି ଓ ଭାଗ୍ୟ ରେଖା ଦେଖି ଆନନ୍ଦିତ ହେଉଥାନ୍ତି । ଠିକ୍ ସେତିକିବେଳେ ମନ୍ତ୍ରୀ ଦୁଷ୍ଟବୁଦ୍ଧି ତା'ର 'ବିଷୟା' ନାମ୍ନୀ କନ୍ୟାକୁ ସଙ୍ଗରେ ଘେନି ସାଧୁଙ୍କ ଚରଣରେ ପ୍ରଣାମ ଜଣାଇଲା ଏବଂ ତା'ର ବିବାହ ସମ୍ବନ୍ଧରେ ପ୍ରଶ୍ନ କଲା । ସାଧୁଜନ ଏକ ସ୍ୱରରେ କହିଲେ—''ମନ୍ତ୍ରୀବର! ଆମେ ଯୋଗ ଦେଖି ଜାଣି ପାରୁଛୁ ଯେ ଏହି ଭକ୍ତ ବାଳକ ଚନ୍ଦ୍ରହାସ ନିଶ୍ଚୟ ତୁମ କନ୍ୟାର ସ୍ୱାମୀ ହେବ । ଏହା ହିଁ ବିଧିର ବିଧାନ । ଏହାକୁ କେହି ଲଙ୍ଘନ କରି ପାରିବ ନାହିଁ ।'' ସାଧୁଙ୍କର ଏ କଥା ତା' ହୃଦୟରେ ତୀକ୍ଷ୍ଣ ବାଣ ପରି ଆଘାତ ଦେଲା । ଗୋଟାଏ ଅନାଥ ଦାସୀ ପିଲା ତା' ଭଳି ମନ୍ତ୍ରୀର ଜ୍ୱାଇଁ ହେବ, ଏ କଥା ତାକୁ ଆଦୌ ପସନ୍ଦ ନ ଥିଲା । ତେଣୁ ସେ ମନ ଊଣା କରିବା ସହିତ ଭୀଷଣ ଲଜ୍ଜା ବୋଧ କଲା । ସେତେବେଳେ ସାଧୁଙ୍କ ଆଗରେ କିଛି କହି ପାରିଲା ନାହିଁ, କିନ୍ତୁ ମନ ଭିତରେ ଶପଥ କରିନେଲା ଯେ ସେ ଏଭଳି କଦାପି ହେବାକୁ ଦେବ ନାହିଁ । ତା'ର ଅଭିମାନରେ ବିଘ୍ନରୂପେ ମୁଣ୍ଡ ଟେକିବାକୁ ଯାଉଥିବା ଚନ୍ଦ୍ରହାସକୁ କୌଣସି ପ୍ରକାରେ ବଧ କରିବା ପାଇଁ ସେ ସଙ୍କଳ୍ପ ବଦ୍ଧ ହୋଇଗଲା ।

ନିଜର ସଂକଳ୍ପ ସାକାର କରିବା ଉଦ୍ଦେଶ୍ୟରେ ମନ୍ତ୍ରୀ ଦୁଷ୍ଟବୁଦ୍ଧି ଅନେକ ଘାତକଙ୍କୁ ଡାକି ଚନ୍ଦ୍ରହାସକୁ ବଧ କରିବା ପାଇଁ କଠୋର ଆଜ୍ଞା ଦେଲା । ଇଚ୍ଛା

ନ ଥିଲେ ମଧ୍ୟ ଘାତକଙ୍କୁ ମନ୍ତ୍ରୀଙ୍କ ଆଜ୍ଞା ସ୍ୱୀକାର କରିବାକୁ ପଡ଼ିଲା । ସେମାନେ ଚନ୍ଦ୍ରହାସକୁ ଦୂରାତିଦୂର ନିର୍ଜନ ବନକୁ ନେଇଗଲେ, ହେଲେ ତାକୁ ମାରିବା ପାଇଁ ସେମାନଙ୍କ ମନ ବଳିଲା ନାହିଁ । ଭଗବାନ ଘାତକମାନଙ୍କ ବୁଦ୍ଧିରେ ଭରି ଦେଲେ ବାତ୍ସଲ୍ୟ ସ୍ନେହ ଓ ମମତା । ସେମାନେ ଭକ୍ତ ବାଳକର ରୂପ ଓ ଗୁଣରେ ବିମୋହିତ ହୋଇ ପରସ୍ପରକୁ କହିଲେ—ଭାଇମାନେ! କି ସୁନ୍ଦର ସୁକୁମାର ବାଳକ । ଦେଖୁଛ ତ ଏହାର ପଦ୍ମପତ୍ର ଭଳି ବିଶାଳ ନୟନ, ଲମ୍ବା ଲମ୍ବା ବଳିଷ୍ଠ ବାହୁ । ପିଲାଟିର ମନମୋହକ ରୂପ ଆମ ମନ କିଣି ନେଉଛି । ହେଲେ ଏଭଳି ସୁକୋମଳ ବାଳକକୁ ବଧ କରିବା ପାଇଁ ଦୁଷ୍ଟବୁଦ୍ଧି ଆଜ୍ଞା ଦେଲା କାହିଁକି? ଆମ ଜୀବନକୁ ଧିକ୍ । ବିଧାତା କେଉଁ ପାପ ଯୋଗୁଁ ଆମକୁ ଏଭଳି ନୀଚ କୁଳରେ ଜନ୍ମ ଦେଲା କେଜାଣି? ପୂର୍ବଜନ୍ମରେ ଅନେକ ପାପ କରିଥିବାରୁ ଆଜି ଆମକୁ ଘାତକ କୁଳରେ ଜନ୍ମ ମିଳିଲା । ପୁଣି ଏ ଜନ୍ମରେ ଯଦି ପାପ କରିବା, ତେବେ ନରକ ଛଡ଼ା ଆଉ କୌଣସି ଗତି ନାହିଁ! ଆଉ ଜଣେ କହୁଥାଏ, ଇଏ ଏଭଳି କି କର୍ମ କରିଥିଲା ଯେ ପିଲାଟି ଦିନରୁ ବାପା-ମାଆ ଛେଉଣ୍ଡ ହୋଇ ଅଳ୍ପ ବୟସରେ ମରଣ ମୁଖରେ ପଡ଼ିଲା!

ବାଳକର ସୌନ୍ଦର୍ଯ୍ୟ ଦେଖି ତାକୁ ମାରିବା ପାଇଁ ଘାତକଙ୍କ ମନ ବଳୁ ନ ଥାଏ । ଏପଟେ ମନ୍ତ୍ରୀ ଦୁଷ୍ଟବୁଦ୍ଧିର ଆଜ୍ଞା ମଧ୍ୟ ପାଳନ କରିବାକୁ ବାଧ୍ୟ । କ'ଣ କରିବେ କିଛି ଭାବି ପାରୁ ନ ଥାନ୍ତି । ଶେଷକୁ ମନ୍ତ୍ରୀ ଆଜ୍ଞାକୁ ପ୍ରବଳ ମନେକରି ଅତି ମନ ଦୁଃଖରେ ପିଲାଟିକୁ କହିଲେ—''ବାଳକ! ତୋର ଶେଷ ଇଚ୍ଛା କ'ଣ କୁହ । ବର୍ତ୍ତମାନ ଆମେ ତୋତେ ମାରିବାକୁ ବାଧ୍ୟ ହେଉଛୁ । ଯଦି ତୋର କେହି ସହାୟକ ଥାଏ, ତାକୁ ସ୍ମରଣ କରିବାର ଶେଷ ସୁଯୋଗ ତୋତେ ଦେଉଛୁ ।''

ଭକ୍ତ ଚନ୍ଦ୍ରହାସ ତ ସବୁଆଡୁ ନିରାଶ୍ରୟ ହୋଇ ସାରିଥିଲା । ସଂସାରରେ ତା'ର ଆପଣାର କହିବା ଭଳି ଆଉ କିଏ ଥିଲା ଯେ ସେ କାହାକୁ ସ୍ମରଣ କରିବ । ସେ କହିଲା—ମୁଁ ସବୁ ଦୃଷ୍ଟିରୁ ଅନାଥ! କିନ୍ତୁ ସଭଙ୍କ ମୁଖରୁ ଶୁଣିଛି ଯେ ଯାହାର କେହି ନ ଥାଏ, ତାକୁ ଭଗବାନ ସାହା ହୁଅନ୍ତି । ସେହି ଜଗତନାଥ ଶ୍ରୀହରି ହିଁ ମୋର ଆଶ୍ରୟ । ତୁମେମାନେ ଦୟାକରି ମୋତେ କିଛି ସମୟ ଦିଅ । ମୁଁ ମୋ ଶାଳଗ୍ରାମ ଭଗବାନଙ୍କୁ ସେବା କରି ସାରିବା ପରେ ମୋତେ ମାରିବ ।'' ତା'ପରେ ସେ କଳରେ ଜାକିଥିବା ଶାଳଗ୍ରାମଙ୍କୁ ବାହାର କରି ମାନସିକ ସ୍ନାନ ଓ ପୂଜା କରି ଭକ୍ତି ଗଦ୍‌ଗଦ ହୃଦୟରେ ଧ୍ୟାନ କରି ସ୍ତୁତି କଲେ—

**କୃଷ୍ଣ କୃଷ୍ଣ ଜଗନ୍ନାଥ ବାସୁଦେବ ଜନାର୍ଦ୍ଦନ ।**
**ଘୃଣ୍ଡାଳାଃ ଶିତ ଧାରୈଶ୍ଚ ଖଡ୍‌ଗୈର୍ଘ୍ନନ୍ତି ଜଗଦ୍‌ପତେ ॥**
**ପାହି ମାଂ ପରମାନନ୍ଦ ସର୍ବବ୍ୟାପିନ୍ ନମୋଽସ୍ତୁ ତେ ।**
**ଧ୍ରୁବଶ୍ଚ ରକ୍ଷିତୋମେନ ପ୍ରହ୍ଲାଦୋ ଗଜରାଟ୍ ତଥା ॥**

"ହେ ଭକ୍ତଚିତ୍ତହାରୀ ଶ୍ରୀକୃଷ୍ଣ! ହେ ଜଗଦୀଶ୍ୱର ହେ ବାସୁଦେବ! ହେ ଜନାର୍ଦ୍ଦନ! ହେ ସର୍ବସ୍ୱରୂପ ପ୍ରଭୁ! ମୋତେ ଏ ଘୋର ସଙ୍କଟରୁ ରକ୍ଷା କର। ଯିଏ ଧ୍ରୁବ, ପ୍ରହ୍ଲାଦ ଓ ଗଜରାଜକୁ ବିପଦରୁ ରକ୍ଷା କରିଥିଲା, ସେହି ସର୍ବବ୍ୟାପୀ ନାରାୟଣଙ୍କ ପାଦତଳେ ମୁଁ ଶରଣ ପଶୁଛି। ତାଙ୍କ ଚରଣରେ ମୋର କୋଟି କୋଟି ପ୍ରଣାମ।"

ଏହିଭଳି ସ୍ତୁତି କରି କରି ଭକ୍ତ ଚନ୍ଦ୍ରହାସ ଧ୍ୟାନରେ ଏତେ ନିମଗ୍ନ ହୋଇଗଲା ଯେ ତା'ର ଆଉ ବାହ୍ୟଜ୍ଞାନ ରହିଲା ନାହିଁ। ସେ ହୃଦୟ ସିଂହାସନରେ ବସାଇ ଦେଲା ଭବଭୟହାରୀ ଶ୍ରୀକୃଷ୍ଣଙ୍କୁ। ପ୍ରଭୁଙ୍କ ଦର୍ଶନ ପାଇ ତା' ନେତ୍ରରୁ ବିଗଳିତ ହେଲା ଆନନ୍ଦାଶ୍ରୁର ଅବିରତ ଧାରା। ତା ସର୍ବାଙ୍ଗ ପୁଲକିତ ହୋଇ ଉଠିଲା। ରୋମ ରୋମରେ ଦେଖାଦେଲା ଅପାର ଜ୍ୟୋତି ଓ ଅମିତ ପ୍ରକାଶ। ଭକ୍ତର ଭକ୍ତିପ୍ରଭାବ ଘାତକଙ୍କ ହୃଦୟରେ ଏଭଳି ରେଖାପାତ କଲା ଯେ ସେମାନେ ସହସା ସେଇଠି ମୂର୍ଚ୍ଛିତ ହୋଇ ପଡ଼ିଗଲେ। ସେମାନେ ବି ଭକ୍ତି-ରଙ୍ଗରେ ରଞ୍ଜିତ ହୋଇଗଲେ। ଦୟା ଓ ପ୍ରଭୁଭକ୍ତିରୂପୀ ସ୍ୱଚ୍ଛ ପାବନ ଜଳ ଧୋଇଦେଲା ସେମାନଙ୍କ ଜୀବହତ୍ୟାରୂପୀ ମହା ପାତକ ଓ କଠୋର ଭାବନାକୁ। ସେମାନଙ୍କ ହୃଦୟରେ ଉଦୟ ହେଲା ଶୁଭ ସଂସ୍କାର। ଚନ୍ଦ୍ରହାସକୁ ମାରିବା ପାଇଁ ମନ ବଳୁ ନ ଥିଲେ ମଧ୍ୟ ମନ୍ତ୍ରୀର କଠୋର ଆଜ୍ଞାକୁ ମନେ ପକାଇ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ଏବଂ ପ୍ରଭୁଙ୍କ ଚରଣରେ ପ୍ରାର୍ଥନା ଜଣାଇ କହିଲେ—ହେ ଦୟାମୟ! ଏଭଳି ବିଷମ ସ୍ଥିତିରେ ଆମେ କ'ଣ କରିବୁ କିଛି ବୁଦ୍ଧି ଦିଶୁ ନାହିଁ। ସେପଟେ ରାଜାଜ୍ଞା ଏବଂ ଏପଟେ ଭକ୍ତ ବାଳକ ପ୍ରତି ଦୟା ଓ ସ୍ନେହ ଭାବନା! ଆମକୁ ମାର୍ଗ ଦେଖାଅ ପ୍ରଭୁ!"

ଭଗବାନ ଘାତକଙ୍କର ଗୁହାରୀ ଶୁଣିଲେ। ସେମାନଙ୍କ ମନରେ ବାତ୍ସଲ୍ୟ ସ୍ନେହ ଓ ଦୟା ଭାବନା ଭରି ଦେଇଥିବା ଅନ୍ତର୍ଯାମୀ ପ୍ରଭୁଙ୍କ ପାଖରେ ଉପାୟର ତ ଅଭାବ ନାହିଁ। ପ୍ରଭୁଙ୍କ ପ୍ରେରଣାରୁ ସେମାନେ ଚନ୍ଦ୍ରହାସକୁ ନିରେଖି ଦେଖୁ ଦେଖୁ ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ତା'ର ବାଆଁ ପାଦରେ ଥିବା ଅଦରକାରୀ

ଅଶୁଭ ଷଷ୍ଠ ଅଙ୍ଗୁଳି ଉପରେ । ଏଥର ସେମାନଙ୍କୁ ତାକୁ ରକ୍ଷା କରିବାର ଉପାୟ ମିଳିଗଲା । ସେମାନେ ଭାବିଲେ, ଏହି ଅମଙ୍ଗଳ ବଳକା ଅଙ୍ଗୁଳିଟିକୁ କାଟିନେଇ ମନ୍ତ୍ରୀକୁ ଦେଖାଇଦେବା ଏବଂ ବାଳକକୁ ଛାଡ଼ିଦେବା । ସେହିଭଳି କରି ମନ୍ତ୍ରୀ ଦୁଷ୍ଟବୁଦ୍ଧିକୁ ଅଙ୍ଗୁଳିଟି ଦେଖାଇଦେଲେ । ସେ ମଧ୍ୟ ବିଶ୍ୱାସ କରି ଭାରି ଖୁସୀ ହେଲା । ଭାବିଲା, ନିଶ୍ଚୟ ଆଜି ତା'ର କଣ୍ଟକ ଗଲା ।

ଭକ୍ତ ପାଇଁ ସବୁବେଳେ ଅଶୁଭ ମଧ୍ୟ ଶୁଭରେ ପରିଣତ ହୋଇଯାଏ । ଯେଉଁ ଷଷ୍ଠ ଅଙ୍ଗୁଳିକୁ ଲୋକେ ଅମଙ୍ଗଳ କହନ୍ତି, ତାହା ଆଜି ନିଜକୁ ଉତ୍ସର୍ଗ କରି ଭକ୍ତର ପ୍ରାଣରକ୍ଷା କରିବାରେ ସହାୟକ ହେଲା । ଏସବୁ ପ୍ରଭୁଙ୍କର ବିଧାନ । ସେ କେତେବେଳେ ଯେ କ'ଣ କରିବାକୁ ଚାହାନ୍ତି, ତାହା ତାଙ୍କୁ ହିଁ ଜଣା; ନଚେତ୍ କ୍ରୁର, ହିଂସ୍ରକ ଘାତକମାନଙ୍କ ମନରେ ଏଭଳି ସଦ୍ଭାବନା ଜାଗ୍ରତ ହେବା କ'ଣ ସହଜ କଥା! ସେ ଯାହା ହେଉ ନା କାହିଁକି, ଭକ୍ତ ଚନ୍ଦ୍ରହାସର ପ୍ରାଣରକ୍ଷା କରି ପ୍ରଭୁ ଜଗତର ଅତି ମଙ୍ଗଳ କଲେ । ସେ ଜାଣିଥିଲେ ଯେ ଏହି ବାଳକ ଭବିଷ୍ୟତରେ ମହାନ୍ ଭକ୍ତ ହେବ ଏବଂ ସମଗ୍ର ଦେଶବାସୀଙ୍କ ହୃଦୟରେ ଭକ୍ତି ଭାବନା ଅଙ୍କୁରିତ କରିବ ।

କୁନ୍ତଳପୁର ରାଜ୍ୟର ଅଧୀନରେ ଆଉ ଗୋଟିଏ ଛୋଟ ରାଜ୍ୟ ଥିଲା । ତାହାର ରାଜଧାନୀ ଥିଲା 'ଚନ୍ଦନାବତୀ' ନଗରୀ । ସେହି ରାଜ୍ୟର କରଦ ରାଜା ଥିଲେ ମହାରାଜ କୁଳିନ୍ଦ । ସେ ପ୍ରତି ବର୍ଷ କୁନ୍ତଳପୁର ରାଜାଙ୍କୁ କର ଦେଉଥାନ୍ତି । ସେ ଭଗବାନଙ୍କର ଭକ୍ତ ହୋଇଥିବାରୁ ତାଙ୍କ ରାଜ୍ୟରେ ସୁଖ-ସମ୍ପତ୍ତିର ପ୍ରାଚୁର୍ଯ୍ୟ ରହିଥାଏ । ମନେ ହେଉଥାଏ ସତେ ଯେପରି ଭକ୍ତିମାନ୍ ରାଜା ହୃଦୟରେ ପ୍ରଭୁଙ୍କ ନିବାସ ହେବାର ଦେଖି ପଦ୍ମିନୀ ଲକ୍ଷ୍ମୀ ସେଠାରେ ନିତ୍ୟ ନିବାସ କରିଛନ୍ତି । ଏତେ ଧନ-ସମ୍ପଦ ରହିଥିଲେ ମଧ୍ୟ ରାଜାଙ୍କର କୌଣସି ସନ୍ତାନ ନ ଥିବାରୁ ସେ ସବୁବେଳେ ଏଥିପାଇଁ ଚିନ୍ତିତ ରହୁଥାନ୍ତି । ପ୍ରଭୁଙ୍କ ଚରଣରେ ବଂଶରକ୍ଷା ପାଇଁ ବାରମ୍ବାର ଗୁହାରୀ ଜଣାଉ ଥାଆନ୍ତି । ଏଇ ଅଳ୍ପ କିଛି ଦିନ ହେଲା ସନ୍ତାନ ଉଦ୍ଦେଶ୍ୟରେ ବେଦଜ୍ଞ ବ୍ରାହ୍ମଣଙ୍କ ଦ୍ୱାରା ସେ ପୁତ୍ରେଷ୍ଟି ଯଜ୍ଞ ମାଧ୍ୟମରେ ଭଗବାନଙ୍କୁ ପୂଜା ମଧ୍ୟ କରାଉଥିଲେ । ଆଜି ଥିଲା ତାଙ୍କ ଯଜ୍ଞର ପୂର୍ଣ୍ଣାହୁତି । ବ୍ରାହ୍ମଣମାନେ ଯଜ୍ଞର ପରିଶେଷରେ ରାଜାଙ୍କୁ ଅଭିମନ୍ତ୍ରିତ ପାୟସ ଓ ଆଶୀର୍ବାଦ ଦେଇ କହିଲେ— "ରାଜନ୍! ତୁମକୁ ନିଶ୍ଚୟ ପରମ ଭାଗ୍ୟବାନ୍ ପୁତ୍ରରତ୍ନଟିଏ ପ୍ରାପ୍ତ ହେବ ।"

ବ୍ରାହ୍ମଣଙ୍କ ବଚନ ଶିରୋଧାର୍ଯ୍ୟ କରିବାକୁ ରାଜା ଆନନ୍ଦ ମନରେ ପ୍ରଭୁଙ୍କ ନାମ ଜପି ଜପି ରାଜ୍ୟର ଦେଖାରେଖା କରି ଜଙ୍ଗଲର ସେହି ରାସ୍ତାରେ

ଯାଉଥାନ୍ତି, ଯେଉଁଠି ଘାତକମାନେ ଚନ୍ଦ୍ରହାସର ଅଙ୍ଗୁଳିଟିକୁ କାଟିଦେଇ ତାକୁ ଏକାକୀ ଛାଡ଼ି ଚାଲିଯାଇଥାନ୍ତି। ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ଚନ୍ଦ୍ରହାସ ଉପରେ। ଅଙ୍ଗୁଳି କଟିଯାଇଥିବାରୁ ତାକୁ ଅସହ୍ୟ ପୀଡ଼ା ହେଉଥାଏ ଏବଂ ରକ୍ତସ୍ରାବରେ ଆଖପାଖ ଭୂଇଁ ରକ୍ତାକ୍ତ ହୋଇ ଯାଇଥାଏ। ଅସହାୟ ଅବସ୍ଥାରେ ସେ ବ୍ୟାକୁଳ ହୋଇ ପ୍ରଭୁଙ୍କୁ କରୁଣ ସ୍ୱରରେ ଡାକୁଥାଏ—

**ତ୍ରାହି ମାଂ କରୁଣାସିନ୍ଧୋ ଦ୍ରୌପଦୀ ଚ ଯଥା ପୁରା।**
**କିମୁପେକ୍ଷସି ମାଂ ବାଳଂ ବନେ ମାତ୍ରା ବିବର୍ଜିତମ୍॥**

"ହେ କରୁଣାସିନ୍ଧୁ! ଦୁଷ୍ଟ କୌରବଙ୍କ ସଭାରେ ତୁମେ ବସ୍ତ୍ର ପ୍ରଦାନ କରି ଯେପରି ଦ୍ରୌପଦୀଙ୍କର ଲଜ୍ଜା ନିବାରଣ କରିଥିଲ, ଆଜି ମୋତେ ସେହିପରି ଆଶ୍ରୟ ଦିଅ। ମୁଁ ପିତୃମାତୃହୀନ ହୋଇ ଅରକ୍ଷିତ ଭଳି ଘୋର ବନରେ ପଡ଼ିଛି। ଏଭଳି ସ୍ଥିତିରେ ତୁମେ ମୋତେ ହତାଦର କରି କୁଆଡ଼େ ଛାଡ଼ି ଚାଲିଗଲ ପ୍ରଭୁ!"

**କରୁଣାସିନ୍ଧୁ ଦଇତାରି। ତୋ ପାଦେ ଘେନ ମୋ ଗୁହାରି॥**
**ଯେମନ୍ତେ ଦ୍ରୌପଦୀକୁ ହରି। ବିପଦୁଁ କରିଥିଲ ପାରି॥**
**ଅଗାଧ ଜଳେ ଗଜରାଜ। ଡାକିଲା ଆହେ ଚତୁର୍ଭୁଜ॥**
**ଗରୁଡ଼ ତେଜିଣ ତକ୍ଷଣ। ଯେସନେ ରଖିଲ ତା ପ୍ରାଣ॥**
**ଯେସନେ ମୃଗୁଣୀର ଦୁଃଖ। ସହି ନ ପାରି ପଦ୍ମମୁଖ॥**
**ତାହାରେ ତୁମେ ସାହା ହେଲ। କ୍ଷଣକେ ସଂକଟୁ ତାରିଲ॥**
**ତେସନେ ମୋ ଆରତ ବାଣୀ। ଶୁଣିମା ହେଉ ଚକ୍ରପାଣି॥**
**ଏ ଘୋର ବନେ ମୋର କେହି। ତୋ ବିନୁ ଆପଣାର ନାହିଁ॥**
**ଜନ୍ମରୁ ପିତୃମାତୃ ହୀନ। ସ୍ୱଭାବେ ବାଳକ ମୁଁ ଦୀନ॥**
**କିମ୍ପାଇଁ ହେଳା କର ହରି। କର୍ଣ୍ଣେ କି ନ ପଡ଼େ ଗୁହାରି॥**

ଏହା କେବେ କ'ଣ ସମ୍ଭବ ହୋଇପାରେ ଯେ ଭକ୍ତର ଭକ୍ତିଭରା ଗୁହାରି ପ୍ରଭୁଙ୍କ କର୍ଣ୍ଣରେ ନ ପଡ଼ିବ! ସେ କ'ଣ ଭକ୍ତ ପାଇଁ ବଧିର ହୋଇଯିବେ? ଯଦି ହୋଇଯାଆନ୍ତି, ତେବେ ତାଙ୍କର ଭକ୍ତବତ୍ସଳ ବାନା ଆଉ କେତେବେଳେ ସାର୍ଥକ ହେବ। କିଏ ତାଙ୍କୁ ଆଉ ଦୀନବନ୍ଧୁ ବୋଲି ଡାକିବ। ନା, ସେ ନିରାଶ୍ରୟ ଭକ୍ତ ବାଳକକୁ କଦାପି ଉପେକ୍ଷା କରି ପାରିବେ ନାହିଁ। ନିଜେ କରନ୍ତୁ ଅଥବା କାହା ଦ୍ୱାରା କରାନ୍ତୁ, ସେ ନିଶ୍ଚୟ ତାକୁ ଆଶ୍ରୟ ଦେଇ ରକ୍ଷା କରିବେ।

ବାଳକର କୋମଳ ଅଙ୍ଗକାନ୍ତିରେ ଅଟକିଗଲା ରାଜାଙ୍କର ମନ। ସତେ

ଯେପରି ନିରାଶ୍ରୟ ବାଳକ ପାଇଁ ରାଜାଙ୍କୁ ଭଗବାନ ପଠାଇଲେ ଆଶ୍ରୟଦୂତ ରୂପରେ । ସେ ସହସା ରଥରୁ ଓହ୍ଲାଇ ତା' ପାଖକୁ ଯାଇ ଦେଖନ୍ତି ତ ଚନ୍ଦ୍ରକାନ୍ତି ଭଳି ଆଭା ଯୁକ୍ତ ଅତି ମନୋହର ପିଲାଟିଏ କରୁଣ ସ୍ୱରରେ ପ୍ରଭୁଙ୍କୁ ଡାକୁଛି ଏବଂ ଧାର ଧାର ଲୋତକ ପ୍ରବାହରେ ଆଖପାଖର ଭୂଇଁ ଓଦା ହୋଇ ସାରିଛି । ମୃଗ ଶାବକମାନେ ପିଲାଟିର କୋମଳ କୋମଳ ତଳିପାଦକୁ ଚାଟୁଥାନ୍ତି । ଅନେକ ପକ୍ଷୀ ଡେଣା ମେଲାଇ ଛତ୍ର ଭଳି ତାକୁ ରକ୍ଷା କରିବା ପାଇଁ ଛାୟା କରି ବସିଥାନ୍ତି ତା' ଚାରି କଡ଼ରେ ।

ରାଜା କୁଳିନ୍ଦ ଦେଖିଲେ, ଯେଉଁ ପକ୍ଷୀର ଛାଇ ପଡ଼ିଲେ ବ୍ୟକ୍ତି ରାଜା ହୁଏ, ସେଭଳି ଅନେକ ପକ୍ଷୀ ବାଳକଟିକୁ ଛାୟା କରି ବସିଛନ୍ତି । ସତେ ଯେପରି ସେମାନେ ବାଳକର ଶୁଭ ଲକ୍ଷଣ ଓ ଉଜ୍ଜ୍ୱଳ ଭବିଷ୍ୟକୁ ସୂଚିତ କରି ଦେଉଛନ୍ତି ଯେ ଏ ବାଳକ ନିଶ୍ଚୟ ଜଣେ ଚକ୍ରବର୍ତ୍ତୀ ସମ୍ରାଟ ହେବ । ମୃଗ ଓ ମୃଗୁଣୀମାନେ ଦଳ ଦଳ ହୋଇ ଚାରି କଡ଼ରେ ଗୋଲାକାରରେ ଠିଆ ହୋଇ ବାଳକଟିକୁ ରକ୍ଷା କରୁଥାନ୍ତି । ବାଳକ ସୁମଧୁର ସ୍ୱରରେ ପ୍ରଭୁଙ୍କ ନାମ ସଂକୀର୍ତ୍ତନ କରୁଥାଏ । ଚନ୍ଦନାବତୀ ନରେଶ ତା' ନିକଟକୁ ଯାଇ ପଚାରିଲେ—"ବତ୍ସ! ତୋର ପିତାମାତା କିଏ? ସେ ତୋତେ ଏଭଳି ଏକାକୀ ଛାଡ଼ି କୁଆଡ଼େ ଚାଲିଗଲେ? ତୁ ଏତେ ବ୍ୟାକୁଳ ହୋଇ କାନ୍ଦୁଛୁ କାହିଁକି?" ବାଳକ ଚନ୍ଦ୍ରହାସ ଉତ୍ତର ଦେଲା—

**ମମ ମାତା ପିତା କୃଷ୍ଣସ୍ତେନାହଂ ପରିପାଳିତଃ ।**
**ତମପଶ୍ୟନ୍ ମହାରାଜ ରୋଦନଂ କ୍ରିୟତେ ମୟା ॥**

"ହେ ମହାରାଜ! ଶ୍ରୀକୃଷ୍ଣ ହିଁ ମୋର ପିତାମାତା । ସେ ଆଜିଯାଏ ମୋତେ ପାଳିପୋଷି ବଡ଼ କରିଛନ୍ତି, କିନ୍ତୁ ଆଜି ମୁଁ ତାଙ୍କ ଦର୍ଶନ ନ ପାଇ ବ୍ୟାକୁଳ ହେଉଛି ।"

ବାଳକ ମୁଖରୁ ଏ କଥା ଶୁଣି ରାଜା ଭାବିଲେ ବୋଧହୁଏ ତାଙ୍କ ପୁତ୍ରେଷ୍ଟି ଯଜ୍ଞର ଫଳ ସାକାରରୂପ ଧାରଣ କରି ଆଜି ତାଙ୍କୁ ବନରେ ମିଳିଗଲା । ସେ ମନେ ମନେ ଭାବିଲେ, "ଲାଗୁଛି, ଭଗବାନ ମୋ ଗୁହାରି ଶୁଣି ମୋତେ ଏଭଳି ଭକ୍ତ ବାଳକଟିଏ ପ୍ରଦାନ କଲେ । ଯଦି ଏହି ବିଷ୍ଣୁଭକ୍ତ ବାଳକ ପୁତ୍ରରୂପରେ ମୋ କୋଳ ମଣ୍ଡନ କରନ୍ତା ମୁଁ ନିଜକୁ ଧନ୍ୟ ମଣନ୍ତି ।"

ରାଜା କୁଳିନ୍ଦ ଏଭଳି ମନସ୍ଥ କରି ବାଳକଟିକୁ କୋଳରେ ଧରିଲେ ଏବଂ ମସ୍ତକରେ ଚୁମ୍ବନ ଦେଇ ଘୋଡ଼ା ଉପରେ ବସାଇ ନଗରକୁ ନେଇ ଆସିଲେ ।

ପ୍ରଭୁଙ୍କ ଇଚ୍ଛାରୁ ସୁନ୍ଦର ବାଳକଟିଏ ପାଇ ରାଣୀ ତା' ଉପରେ ନିଜର ସମସ୍ତ ବାତ୍ସଲ୍ୟ ସ୍ନେହ ଢାଳିଦେଲେ ଏବଂ ପ୍ରଭୁଙ୍କ ଚରଣରେ ବିନୀତ ସାଷ୍ଟାଙ୍ଗ ବନ୍ଦନା କରି ଭକ୍ତଦମ୍ପତି ବାଳକର ପାଳନପୋଷଣରେ ମନ ଦେଲେ। ସେତେବେଳକୁ ଚନ୍ଦ୍ରହାସର ବୟସ ଥିଲା ସାତ ବର୍ଷ। ତା'ର ଶିକ୍ଷା ପାଇଁ ରାଜା ଗୁରୁକୁଳରେ ଯଥେଷ୍ଟ ବ୍ୟବସ୍ଥା କରିଦେଲେ। କିନ୍ତୁ ସେ ତ ସାଧାରଣ ବାଳକ ନ ଥିଲା, ପିଲାଟି ଦିନରୁ ସର୍ବ ଶ୍ରୁତିଶାସ୍ତ୍ରର ସାରସ୍ୱରୂପ **'ଶ୍ରୀହରିଃ ଶରଣଂ ମମ'** ମନ୍ତ୍ରଟିକୁ ସେ ହୃଦୟରେ ଧାରଣ କରି ସାରିଥିଲା। ମାତ୍ର ଚନ୍ଦ୍ରହାସର ଦିବ୍ୟ ସ୍ଥିତିକୁ ବିଦ୍ୟାଗୁରୁ ବୁଝି ନ ପାରି ରାଜାଙ୍କ ଆଗରେ ଅଭିଯୋଗ କଲେ ଯେ "ମଣିମା! ରାଜକୁମାରଙ୍କୁ ବୋଧହୁଏ କୌଣସି ଭୂତପ୍ରେତ ଲାଗିଛି। ଇଏ ହରିନାମ ଛଡ଼ା ଆଉ କିଛି ଉଚ୍ଚାରଣ କରୁ ନାହାନ୍ତି। କୌଣସି ଗୁଣିଆକୁ ଡାକି ଏହାଙ୍କର ସମୁଚିତ୍ ଚିକିତ୍ସା କରାନ୍ତୁ।" ବ୍ରାହ୍ମଣଙ୍କ କଥା ଶୁଣି ରାଜା ମନେ ମନେ ହସିଲେ। ସେ ଚନ୍ଦ୍ରହାସର ଭକ୍ତିନିଷ୍ଠା ସମ୍ପର୍କରେ ବେଶ୍ ପରିଚିତ ଥିଲେ, ତେଣୁ ତାଙ୍କୁ ପୁତ୍ରର ସ୍ଥିତି ବୁଝିବାକୁ ଆଦୌ ବିଳମ୍ବ ହେଲା ନାହିଁ। ସେ ବ୍ରାହ୍ମଣଙ୍କୁ ଦକ୍ଷିଣା ରୂପରେ ଯଥେଷ୍ଟ ଧନରତ୍ନ ଦେଇ ବିଦା କରିଦେଲେ ଏବଂ ଚନ୍ଦ୍ରହାସକୁ ଆଲିଙ୍ଗନ କରି ନିଜର ଜୀବନକୁ ଧନ୍ୟ ମନେକଲେ। କିଛି ଦିନ ମଧ୍ୟରେ ଚନ୍ଦ୍ରହାସ ପ୍ରାପ୍ତ ବୟସ୍କ ହୁଅନ୍ତେ ଶୁଭ ଲଗ୍ନ ଦେଖି ରାଜା ତାଙ୍କୁ ରାଜପଦରେ ଅଭିଷିକ୍ତ କରି ନିଜେ ଭଗବଦ୍ଭଜନରେ ସମୟ ଅତିବାହିତ କଲେ।

ଚନ୍ଦ୍ରହାସଙ୍କ ଭଳି ଭକ୍ତ ରାଜାକୁ ପାଇ ଚନ୍ଦନାବତୀ ନଗରୀ ସମେତ ସମଗ୍ର ରାଜ୍ୟ ଧନ୍ୟ ହୋଇଗଲା। ସେ ପ୍ରଜାଜନଙ୍କୁ ମଧ୍ୟ ପ୍ରେମ ସହକାରେ ସଦୁପଦେଶ ଦେଇ ଭଜନ କୀର୍ତ୍ତନରେ ପ୍ରବୃତ୍ତ କଲେ। ମାତ୍ର ଯେଉଁମାନେ ସେଭଳି କଲେ ନାହିଁ, ସେମାନଙ୍କୁ ଆଜ୍ଞା ଦେଇ ବାଧ୍ୟତାମୂଳକ ଭଜନ କରାଇଲେ। ସେ ଜାଣିଥିଲେ ଯେ କିଛି ଦିନ ଏହିଭଳି ବାଧ୍ୟତାର ସହିତ ଭଜନ କଲେ ତାଙ୍କର ମନ ଆପେ ଆପେ ପ୍ରଭୁ ଚରଣରେ ଲାଗିଯିବ ଏବଂ ସେମାନେ ଭଜନ କୀର୍ତ୍ତନର ଆନନ୍ଦ ପାଇଗଲେ ଆଉ ଛାଡ଼ି ପାରିବେ ନାହିଁ। ସମୟେ ସମୟେ ପୁରବାସୀମାନଙ୍କୁ ଡାକି ରାଜା ଚନ୍ଦ୍ରହାସ ସତ୍ସଙ୍ଗ ଚର୍ଚ୍ଚା ମଧ୍ୟ କରାନ୍ତି। ସେମାନଙ୍କର ମଙ୍ଗଳ ପାଇଁ ଉପଦେଶ ଦେଇ କହନ୍ତି—"ମୋର ଆତ୍ମୀୟ ପ୍ରଜାଜନ! ମନୁଷ୍ୟର ଆୟୁ ପାଣି ଫୋଟକା ଭଳି କ୍ଷଣିକ। ଏଭଳି ଦେବଦୁର୍ଲଭ ମାନବ ଦେହ ପାଇ ଆମ ସମସ୍ତଙ୍କୁ ମାଧବଙ୍କ ଧ୍ୟାନ କରିବା ଉଚିତ। ଅନିତ୍ୟ ଓ ସୁଖବିହୀନ ସଂସାରରେ ଯିଏ

ଭଗବାନଙ୍କୁ ନ ଭଜିଲା ତା'ର ଜନ୍ମ ପଶୁଠାରୁ ମଧ୍ୟ ହୀନ । ହେ ମୋର ପ୍ରଜାଜନ! ଏହା ମୋର ଆନ୍ତରିକ ଇଚ୍ଛା ଓ ଆଦେଶ ଯେ ଆଜିଠାରୁ ସମସ୍ତେ ଏକାଦଶୀ ବ୍ରତ ପାଳନ କରିବା ହେବେ । ଆଜିଠୁ ଯେଉଁ ଲୋକ ଦଶମୀ ଦିନ ଏକ ବକ୍ତ ଭୋଜନ କରି ନାମ ସଂକୀର୍ତ୍ତନ ପ୍ରଭୃତି ଉତ୍ସବରେ ସମ୍ମିଳିତ ନ ହେବ, ସେ ମୋର ଶତ୍ରୁ ଭଳି ଦଣ୍ଡନୀୟ ହେବ । ବିଷ୍ଣୁବାସ ଏକାଦଶୀ ଦିନ ଯିଏ ଅନ୍ନ ଖାଇବ, ତାକୁ ମୁଁ ମୋର ମହା ଶତ୍ରୁ ମଣିବି ।'' ଏହିଭଳି ସେ ସମସ୍ତ ନଗରବାସୀଙ୍କ ଉପରେ ଭକ୍ତିରଙ୍ଗ ବିସ୍ତାର କଲେ । ତାଙ୍କର ଆନ୍ତରିକ ଭାବନା ଏତେ ସ୍ୱଚ୍ଛ ଓ ନିଃସ୍ୱାର୍ଥ ଥିଲା ଯେ ଲୋକଙ୍କୁ ତାଙ୍କ କଥା ମାନିବାରେ କୌଣସି କଷ୍ଟ ହେଉ ନ ଥିଲା । ସମସ୍ତେ ଆନନ୍ଦରେ ତାଙ୍କ ବାଣୀକୁ ଅଙ୍ଗୀକାର କରି ଏକାଦଶୀ ବ୍ରତ ପାଳନ କରୁଥିଲେ ।

ଚନ୍ଦନାବତୀ ନଗରୀ କୁନ୍ତଳପୁର ରାଜାଙ୍କ ଅଧୀନରେ ଥିଲା । ତେଣୁ ସେଠାକାର ରାଜା କୁନ୍ତଳପୁର ନରେଶଙ୍କୁ କରରୂପରେ ପ୍ରତି ବର୍ଷ ଦଶ ହଜାର ସ୍ୱର୍ଣ୍ଣମୁଦ୍ରା ଦେଉଥିଲେ । କିନ୍ତୁ ଚନ୍ଦ୍ରହାସ ରାଜପଦରେ ଅଭିଷିକ୍ତ ହେବା ଦିନଠାରୁ କର ଦେବା ବନ୍ଦ ହୋଇଗଲା । କାରଣ ଚନ୍ଦ୍ରହାସଙ୍କ ଦେହରେ ଜଣେ ଚକ୍ରବର୍ତ୍ତୀ ସମ୍ରାଟର ସମସ୍ତ ଲକ୍ଷଣ ବିରାଜମାନ ଥିଲା । ଚକ୍ରବର୍ତ୍ତୀ ସମ୍ରାଟ କାହାକୁ କର ଦିଏ ନାହିଁ । ତା' ବ୍ୟତୀତ ଚନ୍ଦ୍ରହାସ ଏତେ ଉଦାରମନା ଥିଲେ ଯେ ଭଗବାନଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ଯାଚକମାନଙ୍କୁ ଯଥେଷ୍ଟ ଦ୍ରବ୍ୟ ଦେଉଥିଲେ । ତାଙ୍କର ଦାତବ୍ୟ ଆଗରେ ଯାଚକଜନ କୁବେରଙ୍କୁ ବି ଉପହାସ କରି ନଗଣ୍ୟ ଭାବୁଥିଲେ । ତା' ସହିତ ରାଜା ଚନ୍ଦ୍ରହାସ ରାଜ୍ୟରେ ସ୍ଥାନେ ସ୍ଥାନେ କୂଅ, ପୋଖରି, ବିଷ୍ଣୁ ମନ୍ଦିର, ଶିବାଳୟ ଇତ୍ୟାଦି ନିର୍ମାଣରେ ଧନ ବ୍ୟୟ କରୁଥିଲେ । ସାଧୁ-ବ୍ରାହ୍ମଣଙ୍କ ସେବାରେ ଧନ ଉପଯୋଗ କରି ସେ ଧନର ସାର୍ଥକତା ଅନୁଭବ କରୁଥିଲେ । ତେଣୁ କୁନ୍ତଳପୁରକୁ କର ଦେଇ ଅଯଥା ଧନ ଅପବ୍ୟୟ କରିବା ତାଙ୍କୁ ଉଚିତ ବୋଧ ହେଉ ନ ଥିଲା ।

ଯଥାସମୟରେ କର ନ ମିଳିବାରୁ ମନ୍ତ୍ରୀ ଦୁଷ୍ଟବୁଦ୍ଧି ଯାଇ ପହଞ୍ଚିଲା ଚନ୍ଦନାବତୀ ରାଜ୍ୟରେ । ରାଜା ଚନ୍ଦ୍ରହାସ ଓ ମହାରାଜ କୁଳିନ୍ଦ ଯଥୋଚିତ ସମ୍ମାନ ଦେବା ସହିତ ଯଥେଷ୍ଟ ସତ୍କାର ଜଣାଇଲେ ମନ୍ତ୍ରୀଙ୍କୁ । ଏକେ ତ ଇଏ ତାଙ୍କର ଅଧୀନସ୍ଥ ଥିଲେ, ତା'ଛଡ଼ା ବିପଦ ବେଳେ ତାଙ୍କଠାରୁ ଆଶ୍ରୟ ମିଳିଥିଲା । ତା' ବ୍ୟତୀତ ଏହା ଏକ ସାମାନ୍ୟ ଶିଷ୍ଟାଚାର ଯେ ଅତିଥି ରୂପରେ ଘରକୁ ଆସିଥିବା ଶତ୍ରୁକୁ

ମଧ୍ୟ ସମ୍ମାନ ଜଣାଇବା ଉଚିତ। ଉଚିତ ସତ୍କାର ପାଇ ମନ୍ତ୍ରୀ ସୁଖପୂର୍ବକ ବିରାଜମାନ ହେବାପରେ ରାଜାଙ୍କର ହାବଭାବ ଓ ବାର୍ତ୍ତାଳାପରୁ ମନ୍ତ୍ରୀ ଚିହ୍ନିଗଲା ଯେ ସେ ଯାହାକୁ ମାରିବା ପାଇଁ ଘାତକମାନଙ୍କୁ ଦେଇଥିଲା, ଇଏ ସେହି ବାଳକ ଚନ୍ଦ୍ରହାସ। ମନ୍ତ୍ରୀ ଦୁଷ୍ଟବୁଦ୍ଧି ବିସ୍ମିତ ହୋଇ ଭାବିଲା ଯେ ଇଏ ବଞ୍ଚିଗଲା କିପରି! ସେ ଯାହାହେଉ, ପଛ କଥା ଭାବି ଆଉ କି ଲାଭ। ଏବେ ଏହାକୁ କଳେ-ବଳେ-କୌଶଳେ ମାରିବାକୁ ହେବ। ଯୁଦ୍ଧରେ ଚନ୍ଦ୍ରହାସଙ୍କୁ ଜିତିବା ଦୁଷ୍ଟବୁଦ୍ଧି ପକ୍ଷେ ଆଦୌ ସମ୍ଭବ ନ ଥିଲା, ତେଣୁ ସେ ଆଶ୍ରୟ ନେଲା କପଟର। **'ବିଷକୁମ୍ଭ ପୟୋମୁଖମ୍'** ଭଳି ରାଜା ଚନ୍ଦ୍ରହାସ ଓ ରାଜା କୁଳିନ୍ଦଙ୍କ ପ୍ରତି ଉପରେ ଉପରେ ସଦ୍ଭାବନା ଦେଖାଇ ଭିତରେ କପଟ ଛୁରୀ ଚଳାଇଲା। କହିଲା—''ଯଦିବା ଆମ ରାଜା ଆପଣଙ୍କୁ ଚନ୍ଦନାବତୀ ରାଜ୍ୟ ପ୍ରଦାନ କରି ଦେଇଛନ୍ତି, ତଥାପି ଯେପର୍ଯ୍ୟନ୍ତ ତାଙ୍କଠାରୁ ଲିଖିତ ପ୍ରମାଣ ନ ମିଳିଛି, ସେପର୍ଯ୍ୟନ୍ତ ତୁମେ ସ୍ୱତନ୍ତ୍ର ହୋଇ ପାରିବ ନାହିଁ। ଦ୍ୱିତୀୟତଃ ତୁମେ ରାଜା କୁଳିନ୍ଦରଙ୍କର ଔରସ ପୁତ୍ର ମଧ୍ୟ ନୁହଁ, ତେଣୁ ତୁମକୁ ଆମ ମହାରାଜଙ୍କ ଅନୁମତି ନେବାକୁ ପଡ଼ିବ। ତୃତୀୟତଃ ଆମ ମହାରାଜଙ୍କ ସୁରକ୍ଷାରେ ରହିଲେ ତୁମେ ନିର୍ଭୟ ରହି ପାରିବ। ବିପଦ ପଡ଼ିଲେ ସେ ଧନ, ବଳ ଇତ୍ୟାଦି ମାଧ୍ୟମରେ ଆପଣଙ୍କୁ ସହାୟତା କରିବେ, ନଚେତ୍ ବଳବାନ୍ ରାଜାମାନେ ଆପଣଙ୍କର ଅନିଷ୍ଟ କରି ପାରନ୍ତି।''

କର ଆଦାୟ କରିବା କଥା ସେତିକିରେ ରହିଗଲା। ମନ୍ତ୍ରୀ ଦୁଷ୍ଟବୁଦ୍ଧି ମଧୁର ବଚନ କହି ଚନ୍ଦ୍ରହାସକୁ ମାରିବା ପାଇଁ ଷଡ଼ଯନ୍ତ୍ର ରଚିଲା। ଗୋଟିଏ ଚିଠି ଲେଖି ଚନ୍ଦ୍ରହାସ ହାତରେ ନିଜ ପୁତ୍ର ମଦନ ପାଖକୁ ପଠାଇଲା।

ଚନ୍ଦ୍ରହାସ ଚିଠି ନେଇ ପହଞ୍ଚିଲେ କୁନ୍ତଳପୁର ରାଜ୍ୟରେ। ମନ୍ତ୍ରୀର ମହଲ ନିକଟରେ ଗୋଟିଏ ସୁନ୍ଦର ବଗିଚା ଥିଲା। ଭକ୍ତ ଚନ୍ଦ୍ରହାସ ଉଦ୍ୟାନର ରମଣୀୟତା ଓ ମନଲୋଭା ଦୃଶ୍ୟ ଦେଖି ତା' ଭିତରେ ପ୍ରବେଶ କଲେ। ପ୍ରାକୃତିକ ସୁନ୍ଦର ପରିବେଶ କାରଣରୁ ତାଙ୍କ ମନ ସେଇଠି ଲାଗିଗଲା। ଶୀତଳ ବୃକ୍ଷ ଛାୟାରେ ସେ କିଛି ସମୟ ବିଶ୍ରାମ କରୁ କରୁ ପଥଶ୍ରମ ପାଇଥିବାରୁ ତାଙ୍କୁ ନିଦ ଆସିଗଲା। ଚିଠିଟି ପଗଡ଼ିରେ ଖୋସି ସେ ସେଇଠି ଶୋଇଗଲେ। ଦୈବଯୋଗକୁ ଖେଳିବା ପାଇଁ ଦୁଷ୍ଟବୁଦ୍ଧିର କନ୍ୟା ସଖୀମାନଙ୍କୁ ସଙ୍ଗରେ ଘେନି ଆସି ପହଞ୍ଚିଲା ସେହି ଉଦ୍ୟାନରେ। ଭକ୍ତ ଚନ୍ଦ୍ରହାସଙ୍କ ରୂପ ଲାବଣ୍ୟରେ ତା'ର ମନ ପଦ୍ମଫୁଲରେ ଭ୍ରମର ପରି ଅଟକି ଗଲା। ସେ ସଖୀମାନଙ୍କ ଅଜ୍ଞାତରେ ତାଙ୍କ ନିକଟକୁ ଯାଇ

ତାଙ୍କର ରୂପକୁ ନିରେଖି ଦେଖିଲା । ଦେଖୁ ଦେଖୁ ଏତେ ପ୍ରେମାସକ୍ତ ହୋଇଗଲା ଯେ ନିଜକୁ ମଧ୍ୟ ଭୁଲିଗଲା । ଶୋଭା ସୌନ୍ଦର୍ଯ୍ୟ ମଦରେ ଉନ୍ମତ୍ତ କନ୍ୟା ଚନ୍ଦ୍ରହାସଙ୍କ ପଗଡ଼ିରେ ଖୋସା ହୋଇଥିବା ଚିଠିଟିକୁ ଆସ୍ତେ ଆସ୍ତେ କାଢ଼ିନେଲା ଏବଂ କୌତୁହଳବଶତଃ ଖୋଲି ପଢ଼ିବାକୁ ଚେଷ୍ଟା କଲା । ସେଥିରେ ଲେଖାଥିଲା— "ପୁଅ ମଦନ! ଉଚିତ ଅନୁଚିତ ବିଗ୍ଚର ନ କରି ଚିଠି ନେଇ ଯାଇଥିବା ଲୋକଟିକୁ ଅବିଳମ୍ବେ ବିଷ ଦେଇଦେବୁ । ଏହା ମୋର ଆଜ୍ଞା ଓ ଅତି ପ୍ରିୟ କାର୍ଯ୍ୟ ମଧ୍ୟ । ଏଥିରେ କ୍ଷଣେମାତ୍ର ହେଳା କରିବୁ ନାହିଁ ।"

ଚିଠିଟି ପଢ଼ି ମନ୍ତ୍ରୀର କନ୍ୟା ବିଷୟା ଅତ୍ୟନ୍ତ ଦୁଃଖୀ ହୋଇଗଲା । ବାପାଙ୍କ ଉପରେ ବିରକ୍ତ ହୋଇ ମନେ ମନେ ଭାବିଲା, ଏଭଳି ସୁନ୍ଦର ସୁକୁମାର ଯୁବରାଜକୁ ବାପା ବିଷ ଦେବା ପାଇଁ କାହିଁକି ଆଜ୍ଞା ଦେଇଛନ୍ତି? ନା, ନା, ବାପାଙ୍କ ଲେଖିବାରେ ବୋଧହୁଏ କିଛି ତ୍ରୁଟି ରହିଯାଇଛି । ସେ 'ବିଷୟା' ଲେଖୁ ଲେଖୁ ବୋଧେ ଭୁଲ୍‌ରେ 'ବିଷ' ଲେଖି ଦେଇଛନ୍ତି । ମୋ ପାଇଁ ଅନେକ ଦିନ ହେଲା ବାପା ସୁନ୍ଦର ବରଟିଏ ଖୋଜୁଥିଲେ । ବୋଧହୁଏ ଏହି ରାଜକୁମାର ତାଙ୍କୁ ପସନ୍ଦ ଆସିଯାଇଛି । ତେଣୁ ସେ ମୋ ଭାଇ ମଦନକୁ ଅବିଳମ୍ବେ କାର୍ଯ୍ୟ କରିବାକୁ ଆଜ୍ଞା ଦେଇଛନ୍ତି ।"ଏଭଳି ଭାବି ମନ୍ତ୍ରୀକନ୍ୟା ନେତ୍ରର କଜ୍ଜଳରେ 'ବିଷ' ଶବ୍ଦ ଡାହାଣରେ 'ୟା' ଯୋଡ଼ିକରି ଲେଖିଦେଲା ଏବଂ ପୂର୍ବପରି ଚିଠିଟିକୁ ଚନ୍ଦ୍ରହାସଙ୍କ ପଗଡ଼ିରେ ରଖିଦେଇ ସଖୀମାନଙ୍କ ଗହଣରେ ମନ ଆନନ୍ଦରେ ଖେଳିଲା । ବିଷୟା ମନରେ ଆଗରୁ ଦୁଃଖ ଥିଲା ଯେ ତା'ର ଅନ୍ୟ ସଙ୍ଗାତମାନଙ୍କ ନାମ ଏତେ ସୁନ୍ଦର, ଅଥଚ ତା' ନାଁଆ ଏତେ କୁତ୍ସିତ କାହିଁକି । କିନ୍ତୁ ଆଜି ତାକୁ ନିଜର ନାଆଁ ପାଇଁ ଆନନ୍ଦ ଅନୁଭବ ହେଲା; କାରଣ ଏହାଦ୍ୱାରା ସେ ଏକ ସୁନ୍ଦର ଓ ସୁଯୋଗ୍ୟ ସ୍ୱାମୀ ପାଇ ପାରିଲା ।

ନିଦ ଭାଙ୍ଗିବା ପରେ ଭକ୍ତ ଚନ୍ଦ୍ରହାସ ମନ୍ତ୍ରୀପୁତ୍ର ମଦନ ନିକଟକୁ ଗଲେ । ଚନ୍ଦ୍ରହାସଙ୍କୁ ଦେଖି ମଦନ ଅତି ଆନନ୍ଦିତ ହେଲା । ଭକ୍ତର ପବିତ୍ର ସ୍ୱଭାବକୁ ସେ ବେଶ୍ ଚିହ୍ନି ପାରିଥିଲା, ତେଣୁ ସେ ତାଙ୍କୁ ହୃଦୟରେ ଲଗାଇ ଗାଢ଼ ଆଲିଙ୍ଗନ କଲା । ଚଠିଟି ପାଇ ମଦନ ମନଯୋଗପୂର୍ବକ ପଢ଼ିଲା ଏବଂ ପତ୍ରରୁ ପିତାଙ୍କ ଆଦେଶ ଦେଖି ଭଗିନୀ ବିଷୟା ସହିତ ଚନ୍ଦ୍ରହାସଙ୍କର ବିବାହ ପାଇଁ ସମସ୍ତ ବନ୍ଦୋବସ୍ତ କରିବାରେ ଲାଗି ପଡ଼ିଲା । **'ଶୁଭସ୍ୟ ଶୀଘ୍ରମ୍'** ଯୁକ୍ତି ଅନୁସାରେ ସେହିଦିନ ଗୋଧୂଳିଲଗ୍ନରେ ବଡ଼ ଆନନ୍ଦ ଉଲ୍ଲାସରେ ସମ୍ପନ୍ନ ହେଲା ବିବାହ

କାର୍ଯ୍ୟ । ସେ ଦୃଶ୍ୟ ଦେଖି ମନେ ହେଉଥାଏ ସତେ ଯେପରି ମନ୍ତ୍ରୀକନ୍ୟାର ବିବାହ ପାଇଁ ଗୋଧୂଳିଲଗ୍ନ ଅପେକ୍ଷା କରିଥିଲା ଏବଂ ଆଗରୁ ସବୁ ଯୋଗାଡ଼ ହୋଇ ସାରିଥିଲା । ମଦନ ଏତେ ଧୁମ୍‌ଧାମ୍‌ରେ ଭଗିନୀର ବିବାହ କାର୍ଯ୍ୟ କଲା ଯେ ବଡ଼ ବଡ଼ ରାଜା ମଧ୍ୟ ଆଚମ୍ବିତ ହୋଇଗଲେ! ଏତେ ଧନରତ୍ନ ଖର୍ଚ୍ଚ କରିବା ପରେ ମଧ୍ୟ ତା'ର ମନ ସନ୍ତୁଷ୍ଟ ହେଲା ନାହିଁ । ସବୁ ଲୋକଙ୍କ ଆଗରେ ସେ ସପଥ କରି କହିଲା ଯେ—"ଆଜିଠାରୁ ଚନ୍ଦ୍ରହାସଙ୍କ ପାଇଁ ମୋର ଏହି ମସ୍ତକ ମଧ୍ୟ ସମର୍ପିତ ହୋଇଗଲା । କେବେ ସେଭଳି ପରିସ୍ଥିତି ଆସିଲେ ଏହାଙ୍କ ପାଇଁ ମୁଁ ଏ ମସ୍ତକକୁ ହସି ହସି ଉତ୍ସର୍ଗ କରିଦେବି ।"

ସେପଟେ ତିନିଦିନ ହେଲା ଦୁଷ୍ଟବୁଦ୍ଧି ପ୍ରତୀକ୍ଷା କରିଥାଏ ଚନ୍ଦ୍ରହାସଙ୍କ ମୃତ୍ୟୁ ସମାଚାରକୁ । କିନ୍ତୁ ମୃତ୍ୟୁ ହେବ କ'ଣ, ସେ ତ ତା'ର ଜ୍ୱାଇଁ ହୋଇ ସାରିଲେଣି । ରାଜ୍ୟରେ ଆସି ଦେଖିଲା ବେଳକୁ ଯାହା ମୁଖରୁ ଶୁଣିବ ସେଇ ଗୋଟିଏ କଥା ଯେ ମନ୍ତ୍ରୀ ଦୁଷ୍ଟବୁଦ୍ଧି ତାଙ୍କ କନ୍ୟା ପାଇଁ ଉତ୍ତମ ବରଟିଏ ଖୋଜିଛନ୍ତି । ବରକନ୍ୟାଙ୍କ ଯୋଡ଼ି କି ସୁନ୍ଦର! ଏହାଙ୍କୁ ଦେଖି ରତି ଓ କାମଦେବ ମଧ୍ୟ ଲଜ୍ଜିତ ହୋଇଯିବେ! ମନ୍ତ୍ରୀକୁ ଯିଏ ଦେଖୁଥାଏ ଜୁହାର ଜଣେଇ ଏହି କଥା କହୁଥାଏ । ସେଥିପାଇଁ କୁହାଯାଇଛି ଯେ **'ରଖେ ହରି ମାରେ କିଏ'** । ଏଭଳି ସମାଚାର ପାଇ ଦୁଷ୍ଟବୁଦ୍ଧିର ହୋସ୍ ଉଡ଼ିଗଲା । କୁମ୍ଭାରର ଭାଟି ଭଳି ଦିନରାତି ସେ ଜଳିଲା ମନସ୍ତାପର ଅଗ୍ନିରେ । ପୁତ୍ର ମଦନକୁ ଏକାନ୍ତରେ ସବୁ କଥା ପଚାରିବାରୁ ସେ କହିଲା—"ପିତାଶ୍ରୀ! ଆପଣଙ୍କ କହିବା ଅନୁସାରେ ହିଁ ମୁଁ ସବୁ କାର୍ଯ୍ୟ କରିଛି । ଏଇ ଦେଖନ୍ତୁ ପତ୍ର । ଆପଣ ଲେଖିଥିଲେ ଯେ ଏହାକୁ ବିଷୟା ଦେଇଦେବ । ତେଣୁ ମୁଁ ଏହାଙ୍କ ସହିତ ବିଷୟାର ବିବାହ କରିଦେଲି ।" ମୁଣ୍ଡକୋଡ଼ି ନିଜର ଭାଗ୍ୟକୁ ଦୋଷ ଦେବା ଛଡ଼ା ସେ ଆଉ କରନ୍ତା ବା କ'ଣ । ବାହାରେ କିଛି ପ୍ରକଟ ନ କରି ଅନ୍ତର ବେଦନା ଅନ୍ତରରେ ପିଇଯିବାକୁ ଚେଷ୍ଟା କଲା ଦୁଷ୍ଟବୁଦ୍ଧି ।

ଭକ୍ତକୁ ଭଗବାନ କେମିତି ଯେ ପାଦେ ପାଦେ ରକ୍ଷା କରନ୍ତି, ଅନେକ ଘଟଣାରୁ ତାହା ଦେଖିବା ପରେ ମଧ୍ୟ ତାକୁ ହୋସ୍ ହେଲା ନାହିଁ । ତା'ର ଦୁଷ୍ଟତା ଆଜି ସୀମା ପାର କରିଗଲା । ସେ ମନେ ମନେ ଭାବିଲା "ଝିଅ ବିଧବା ହୋଇଯାଉ ପଛେ, କିନ୍ତୁ ଏହାକୁ ନ ମାରିଲା ପର୍ଯ୍ୟନ୍ତ ମୋ ମନ ଶାନ୍ତ ହେବ ନାହିଁ । ଏଭଳି ଦାସୀପୁତ୍ର ପ୍ରତି ଆସକ୍ତ ଝିଅ କଣ୍ଟା ଭଳି ଜୀବନ ସାରା ମୋତେ ଦୁଃଖ ଦେଉଥିବ । ତେଣୁ ଇଏ ବିଧବା ହୋଇଯିବା ବରଂ ଭଲ । ଜୀବନଯାକ

ମୋ ପ୍ରତିଷ୍ଠାରେ କଣ୍ଟା ଗଛ ଭଳି ଦୁଃଖ ଦେବାକୁ ଅଙ୍କୁରିତ ହେଉଥିବା ଚନ୍ଦ୍ରହାସକୁ ମାରି ସାରିଲା ପରେ ଯାଇ ମୁଁ ଶାନ୍ତିରେ ନିଶ୍ୱାସ ନେବି।''

ଏଥର ଆଉ ଗୋଟିଏ ଷଡ଼ଯନ୍ତ୍ର ରଚିଲା ଦୁଷ୍ଟବୁଦ୍ଧି। ଗୁପ୍ତଭାବରେ ବଧିକଙ୍କୁ ଲାଞ୍ଚର ଲୋଭ ଦେଖାଇ କହିଲା ଯେ ତୁମେମାନେ ଆଗୁଆ ଯାଇ ଦେବୀ ମନ୍ଦିରରେ ଥିବ; ଯିଏ ପୂଜା କରିବାକୁ ପ୍ରଥମେ ଆସିବ, ତୀକ୍ଷ୍ଣ ଖଡ଼୍ଗରେ ତା'ର ଗଣ୍ଡିରୁ ମୁଣ୍ଡ ଅଲଗା କରିଦେବ। ଯଦି ମୋର କାର୍ଯ୍ୟ ସଫଳ ହୋଇଯାଏ, ମୁଁ ତୁମକୁ ଧନରେ ପୋତିଦେବି। ଏପଟେ ଚନ୍ଦ୍ରହାସକୁ ଡାକି ବଡ଼ ସ୍ନେହରେ କହିଲା—''ହେ ବୁଦ୍ଧିମାନ୍ ଚନ୍ଦ୍ରହାସ! ତୁମେ ମୋର ହିତକର ବଚନ ମନଦେଇ ଶୁଣ। ଆମ କୁଳର ଏହା ପାରମ୍ପରିକ ରୀତି ଯେ ବିବାହ ପରେ ବର ଏକାକୀ ଯାଇ ଚଣ୍ଡୀଦେବୀଙ୍କୁ ପୂଜା କରେ। ତେଣୁ ତୁମେ ମଧ୍ୟ ଯାଅ ସଂକଟହାରିଣୀ ଭଗବତୀଙ୍କୁ ପୂଜାବନ୍ଦନା କରି ଆସିବ।''

ସରଳ ସ୍ୱଭାବର ଭକ୍ତ ଚନ୍ଦ୍ରହାସ ଏଭଳି ଷଡ଼ଯନ୍ତ୍ରକାରୀର କପଟକୁ କେମିତି ବା ବୁଝି ପାରନ୍ତେ। ସେ ଆନନ୍ଦରେ ପୂଜା ଦ୍ରବ୍ୟ ଧରି ବାହାରିଲେ ଚଣ୍ଡୀପୂଜା ପାଇଁ। ଯୋଗକୁ ସେଦିନ କୁନ୍ତଳପୁରର ରାଜା କୁଳପୁରୋହିତ ଗାଲବ ମୁନିଙ୍କ ପାଖକୁ ଯାଇ ନିଜ ଦେହର ଜରାଜୀର୍ଣ୍ଣ ସ୍ଥିତି ବିଷୟରେ କହିଲେ ଏବଂ ରାଜ୍ୟ ଭାର କାହା ଉପରେ ନ୍ୟସ୍ତ କରାଯିବ, ସେଥିପାଇଁ ଉଚିତ ବ୍ୟବସ୍ଥାର ମାର୍ଗ ପଗ୍ଭରୁଥିଲେ। ଗାଲବ ମୁନି କହିଲେ—ରାଜନ୍! ତୁମର ଏ ବିଗ୍ଭର ଅତି ଶ୍ରେଷ୍ଠ। ପିତାମହ ବ୍ରହ୍ମାଙ୍କ ସଂକେତକ୍ରମେ ଜଣାପଡୁଛି ଯେ ମନ୍ତ୍ରୀ ଦୁଷ୍ଟବୁଦ୍ଧିର ଜାମାତା ଚନ୍ଦ୍ରହାସ ଏ ଦେଶର ଭାବୀ ରାଜା ହେବେ। ତେଣୁ ତୁମର କନ୍ୟା ଚମ୍ପକମାଳିନୀକୁ ତାଙ୍କ ସହିତ ବିବାହ କରାଇ ତାଙ୍କୁ ରାଜ୍ୟ ଭାର ଦିଅ ଏବଂ ତୁମେ ଆନନ୍ଦରେ ଭଗବାନଙ୍କୁ ଭଜି ଶେଷ ଜୀବନକୁ ସୁଖମୟ କର।

ଗାଲବ ମୁନିଙ୍କ ଆଜ୍ଞାରେ ରାଜା ଯଥାଶୀଘ୍ର ବିବାହ କାର୍ଯ୍ୟ ଓ ରାଜ୍ୟାଭିଷେକ କରିବା ପାଇଁ ଚନ୍ଦ୍ରହାସଙ୍କୁ ସାଦରେ ପାଛୋଟି ଆଣିବାକୁ ମନ୍ତ୍ରୀପୁତ୍ର ମଦନକୁ ପଠାଇଲେ। ସେତେବେଳକୁ ଚଣ୍ଡିପୂଜା କରିବାକୁ ଚନ୍ଦ୍ରହାସ ପୂଜା ଥାଳି ଘେନି ଯାଉଥାନ୍ତି। ମଦନ ତାଙ୍କୁ ମାର୍ଗରେ ଭେଟି ତାଙ୍କ ହାତରୁ ପୂଜା ଦ୍ରବ୍ୟ ଘେନି ନିଜେ ଦେବୀ ମନ୍ଦିରକୁ ଗଲେ ଏବଂ ଚନ୍ଦ୍ରହାସଙ୍କୁ ପଠାଇ ଦେଲେ ରାଜାଙ୍କ ନିକଟକୁ। ବଧିକମାନେ ତ ଆଗରୁ ମନ୍ଦିରରେ ଖଡ଼୍ଗ ଧରି ପ୍ରସ୍ତୁତ ହୋଇ ଗ୍ଭହିଁ ବସିଥିଲେ। ମନ୍ତ୍ରୀପୁତ୍ର ମଦନ ପହଞ୍ଚିବା କ୍ଷଣି ଏକା ଗ୍ଭେଟକେ ତା'ର ଗଣ୍ଡିରୁ ମୁଣ୍ଡ ଅଲଗା

କରିଦେଲେ। ବିଧିର ବିଧାନ ଏଇଆ ଥିଲା। ମଣିଷ ଯେତେ ଚେଷ୍ଟା କଲେ ବି କ'ଣ ତାହାକୁ ଅନ୍ୟଥା କରି ପାରିବ? ଯାହାକୁ ମାରିବା ପାଇଁ ଷଡ଼ଯନ୍ତ୍ର କରାଯାଇଥିଲା ସେ ରାଜକନ୍ୟାର ସ୍ୱାମୀ ହୋଇ ରାଜ୍ୟ ପାଇଲା, ଅଥଚ ଷଡ଼ଯନ୍ତ୍ର କରିଥିବା ମନ୍ତ୍ରୀର ପୁତ୍ର ମଦନ ତାଙ୍କର ପ୍ରାଣ ପାଇଁ ମୃତ-ସଂଜୀବନୀ ହୋଇ ଭଗିନୀର ବିବାହ ବେଳେ କରିଥିବା ଶପଥକୁ ପୂର୍ଣ୍ଣ କଲା। ସେଥପାଇଁ କୁହାଯାଇଛି—**'ଯାହାକୁ ରଖିବେ ଅନନ୍ତ। କି କରିପାରେ ବଳବନ୍ତ ॥'**

ଲୋକମୁଖରୁ ଦେବୀ ମନ୍ଦିରରେ ମଦନର ମୃତ୍ୟୁ ସମାଗ୍ଭର ପାଇ ଦୁଷ୍ଟବୁଦ୍ଧି ମୁଣ୍ଡକୋଡ଼ି ହୋଇ କାନ୍ଦି କାନ୍ଦି ମୂର୍ଚ୍ଛିତ ହୋଇଗଲା। କିଛି ସମୟ ଅନ୍ତେ ଚେତନା ଫେରିବା ପରେ ସେ ଅଧୀର ହୋଇ ଦୌଡ଼ିଲା ଦେବୀ ମନ୍ଦିରକୁ। ସେଠାରେ ପ୍ରିୟ ପୁତ୍ର ମଦନର ମୃତ ଦେହ ଦେଖି ସେ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ। ସହସା ବିରାଟ ଶିଳା ଉପରେ ମୁଣ୍ଡ ପିଟି ପିଟି ପ୍ରାଣ ଛାଡ଼ିଦେଲା।

ଦେବୀ ମନ୍ଦିର ଆଜି ପରିଣତ ହୋଇଗଲା ଶ୍ମଶାନରେ। ଏ ସବୁ ଘଟଣା ଘଟିଗଲା ସନ୍ଧ୍ୟାବେଳୁ ଆରମ୍ଭ କରି ଅଳ୍ପ କିଛି ରାତ୍ରି ମଧ୍ୟରେ। ପରଦିନ ସକାଳୁ ଜଣେ ତପସ୍ୱୀ ବ୍ରାହ୍ମଣ ପୂଜା କରିବାକୁ ଦେବୀ ମନ୍ଦିରକୁ ଯାଇ ଦେଖନ୍ତି ତ ବିକରାଳ ଦୃଶ୍ୟ! ସେ କ'ଣ କରିବେ କିଛି ଭାବି ନ ପାରି ଆକୁଳ ମନରେ ଦୌଡ଼ି ଆସି ଏ ସମାଗ୍ଭର ଦେଲେ ଜାମାତା ଚନ୍ଦ୍ରହାସଙ୍କୁ। ଭକ୍ତ ଚନ୍ଦ୍ରହାସ ଏଭଳି ଦୁଃଖଦ ସମାଗ୍ଭର ପାଇ ଯାଇ ପହଞ୍ଚିଲେ ଦେବୀ ମନ୍ଦିରରେ। ତାଙ୍କ ମନରେ ଏ ଦୁଃଖ ଥିଲା ଯେ ତାଙ୍କ କାରଣରୁ ଦୁଇ ଜଣ ନିର୍ବୋଧ ଜୀବ ପ୍ରାଣ ହରାଇଲେ। ସେ ଦେବୀଙ୍କ ନିକଟରେ ଯୋଡ଼ହସ୍ତ ହୋଇ ଆକୁଳ ମନରେ ପ୍ରାର୍ଥନା କଲେ ଯେ "ହେ ମାଆ ଭଗବତି! ତୁମ ଚରଣରେ ମୋର ଶତ ଶତ ବିନତି। ସତରେ ମୁଁ କେଡ଼େ ଅଭାଗା! ଜୀବନରେ କାହାକୁ ସୁଖ ଦେଇ ପାରିଲି ନାହିଁ। ମୁଁ ମୋର ମସ୍ତକ ତୁମ ପାଦତଳେ ବଳି ଚଢ଼ାଇ ଦେଉଛି। ଏହାକୁ ସ୍ୱୀକାର କରି ତୁମେ ଏ ଦୁହିଙ୍କୁ ଜୀବିତ କରିଦିଅ।" ଚନ୍ଦ୍ରହାସର କରୁଣ ପ୍ରାର୍ଥନା ଶୁଣି ଭଗବତୀ ପ୍ରକଟ ହୋଇ କହିଲେ—"ଚନ୍ଦ୍ରହାସ! ତୁମେ ଦୁଃଖୀ ହେଉଛ କାହିଁକି? ଏ ଦୁଷ୍ଟବୁଦ୍ଧି ତ ତୁମର ଦ୍ରୋହୀ। ତୁମକୁ ମାରିବା ପାଇଁ ଇଏ କେତେ କେତେ ଷଡ଼ଯନ୍ତ୍ର ନ କରିଛି! ସେଥିପାଇଁ କ୍ରୋଧ କରି ମୁଁ ଏହାକୁ ମାରିଦେଇଛି।" ଚନ୍ଦ୍ରହାସ କହିଲେ—"ମାଆ! ମୃତ୍ୟୁ ତ ମୋ ଭାଗ୍ୟରେ ଲେଖାଥିଲା। ମୋ ବଦଳରେ ମଦନ ଆସି ମୃତ୍ୟୁର ଶିକାର ହେଲେ ଏବଂ ପୁତ୍ରର ମୃତ୍ୟୁରେ ତାଙ୍କ ପିତା ମଧ୍ୟ ପ୍ରାଣ ହାରିଲେ। ତେଣୁ

ଏ ଦୁହେଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷୀ । ଯଦି ତୁମେ ମୋ ଉପରେ ପ୍ରସନ୍ନ, ତେବେ ଦୟା କରି ମୋତେ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ଭକ୍ତି ପ୍ରଦାନ କରିବା ସହିତ ଏ ଦୁହିଙ୍କୁ ଜୀବିତ କରିଦିଅ ।''

ଚନ୍ଦ୍ରହାସଙ୍କ ପ୍ରାର୍ଥନା ସ୍ୱୀକାର କରି ଦେବୀ ସେ ଦୁହିଙ୍କୁ ଜୀବିତ କରିଦେଲେ । ମୃତ୍ୟୁଲୋକରୁ ଫେରି ଆସିବା ଭଳି ଦୁହେଁ ଅତି ଆନନ୍ଦରେ ଉଠି ବସିଲେ । ମନ୍ତ୍ରୀ ଦୁଷ୍ଟବୁଦ୍ଧି ନିଜର ଅପରାଧ ପାଇଁ ଚନ୍ଦ୍ରହାସଙ୍କ ପାଦତଳେ ପଡ଼ି କ୍ଷମା ଭିକ୍ଷା କଲେ । ଚନ୍ଦ୍ରହାସ ତାଙ୍କୁ ଉଠାଇ ନେଇ ଗାଢ଼ ଆଲିଙ୍ଗନ କରିବା ସହିତ ପ୍ରଭୁଭକ୍ତିରେ ଓତପ୍ରୋତ କରିଦେଲେ । ପ୍ରେମାଶ୍ରୁ ସିଞ୍ଚନରେ ଦୁଷ୍ଟବୁଦ୍ଧିର ଅନେକ ଜନ୍ମର ପାପ ମାର୍ଜନା କରି ସେ ତାକୁ ପରମ ପବିତ୍ର କରିଦେଲେ । ପିତାପୁତ୍ର ଦୁହେଁ ଆଜି ଏଭଳି ପରମ ଭକ୍ତଙ୍କ ସଙ୍ଗେ ଆତ୍ମୀୟତା ଲାଭ କରି ନିଜକୁ ଧନ୍ୟ ମଣିଲେ । ଚତୁର୍ଦ୍ଦିଗ ଗୁଞ୍ଜି ଉଠିଲା ଚନ୍ଦ୍ରହାସଙ୍କ ଜୟଗାନରେ । ଲୋକେ ତାଙ୍କର ଏଭଳି ସହିଷ୍ଣୁତାକୁ ଧନ୍ୟ ଧନ୍ୟ କହି ରାଜ୍ୟ ସାରା ବଖାଣ କଲେ ।

ଚନ୍ଦ୍ରହାସ ଏଭଳି ରାଜ କାର୍ଯ୍ୟ କଲେ ଯେ ତାଙ୍କ ରାଜ୍ୟରେ ଜଣେ ହେଲେ ଅଭକ୍ତ ରହିଲେ ନାହିଁ । ରାଜକର୍ମଚାରୀ ଓ ତାଙ୍କ ନିକଟସ୍ଥ ଲୋକଙ୍କ କଥା କ'ଣ ବା କହିବା, ଘରେ ଘରେ ପ୍ରବାହିତ ହେଲା ଭକ୍ତିର କଲ୍ଲୋଳ । ଯେଉଁଠି ଶୁଣିବ ହରିନାମ ସଂକୀର୍ତ୍ତନ । ସମସ୍ତଙ୍କ ମନରେ ଭକ୍ତିର ଅଭିଳାଷ । କାମ, କ୍ରୋଧ, ଲୋଭ, ମୋହ, ଅହଂକାର ପ୍ରଭୃତି ମାୟିକ ବିକାରରୁ ଊର୍ଦ୍ଧ୍ୱକୁ ଯାଇ ସମସ୍ତେ ପ୍ରଭୁପ୍ରାପ୍ତି ପାଇଁ ଅନେକ ଶୁଭ କାର୍ଯ୍ୟରେ ଲାଗି ରହିଲେ । କାହିଁକି ବା ନ ହୁଅନ୍ତା, ତାଙ୍କୁ ଚନ୍ଦ୍ରହାସଙ୍କ ଭଳି ଭକ୍ତରାଜା ମିଳିଛନ୍ତି ଯେ! ସକଳ ଜନତା ଚନ୍ଦ୍ରହାସଙ୍କୁ ନେତ୍ର ପିତୁଳି କରି ରଖିଲେ । ସେଥିପାଇଁ କୁହାଯାଏ ଯେ ଶ୍ରେଷ୍ଠ ପୁରୁଷଙ୍କ ଆଚରଣର ପ୍ରଭାବ ଅନ୍ୟ ଲୋକଙ୍କ ଉପରେ ପଡ଼େ—

**ମହତେ ଯାହା ଆଚରିବେ । ଇତରେ ତାହା ହିଁ କରିବେ ॥**
**ସେ ଯାହା ପ୍ରମାଣ କରିବେ । ଲୋକେ ସେ ପଥେ ପ୍ରବର୍ତ୍ତିବେ ॥**

ଯୁଧିଷ୍ଠିରଙ୍କ ଯଜ୍ଞ-ଅଶ୍ୱର ସୁରକ୍ଷା ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଓ ଭକ୍ତ ଅର୍ଜୁନ କରୁଛନ୍ତି ଜାଣି ଚନ୍ଦ୍ରହାସଙ୍କ ମନରେ ତାଙ୍କ ଦର୍ଶନ ପାଇଁ ଅଭିଳାଷ ଜାଗ୍ରତ ହେଲା । ଅଶ୍ୱ ଦେଶ ସାରା ଭ୍ରମଣ କରି କରି କୁନ୍ତଳପୁର ରାଜ୍ୟରେ ପହଞ୍ଚିବା ଦେଖି ସେ ଭାବିଲେ ଯେ ଭକ୍ତ ଓ ଭଗବାନଙ୍କୁ ଦର୍ଶନ କରିବାର ଏହା ଏକ ସୁନ୍ଦର ଅବସର । ପ୍ରଭୁଙ୍କ ଦର୍ଶନ ଆଶାରେ ସେ ଜାଣିଶୁଣି ଅଶ୍ୱକୁ ଧରି ରଖିଲେ ଏବଂ ଯୁଦ୍ଧ ପାଇଁ

ନିଜେ ପ୍ରସ୍ତୁତ ହୋଇଗଲେ। ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଚନ୍ଦ୍ରହାସଙ୍କ ଭକ୍ତିଭାବର ପ୍ରଶଂସା ଶୁଣାଇ ତାଙ୍କ ସହିତ ମେଳମିଳାପ କରିବାକୁ କହିଲେ। ଅର୍ଜୁନ ଓ ଚନ୍ଦ୍ରହାସ ପରସ୍ପରକୁ ଗାଢ଼ ଆଲିଙ୍ଗନ କରି ପ୍ରେମ ବିଭୋର ହୋଇଗଲେ। ଭକ୍ତଙ୍କ ଭାବନା ଦେଖି ଭଗବାନ ତାଙ୍କୁ ଚତୁର୍ଭୁଜ ରୂପରେ ଦର୍ଶନ ଦେଇ କୃତାର୍ଥ କଲେ। ତା'ପରେ ଭକ୍ତ ଚନ୍ଦ୍ରହାସ ପ୍ରଭୁଙ୍କ ପାଦପଦ୍ମରେ ସର୍ବସ୍ୱ ଅର୍ପଣ କରି ଆନନ୍ଦିତ ହେଲେ। ଭଗବାନ ଶ୍ରୀକୃଷ୍ଣ ଚନ୍ଦ୍ରହାସଙ୍କ ଜ୍ୟେଷ୍ଠ ପୁତ୍ର ମକରଧ୍ୱଜକୁ ରାଜପଦରେ ଅଭିଷିକ୍ତ କରାଇ ଅଭୟ ପ୍ରଦାନ କଲେ। ତା'ପରେ ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ଯଜ୍ଞ-ଅଶ୍ୱର ରକ୍ଷା କାର୍ଯ୍ୟରେ ନିଜେ ନିଯୁକ୍ତ ହୋଇ ପ୍ରଭୁଙ୍କ ସାନ୍ନିଧ୍ୟସୁଖ ଲାଭ କରି ନିଜର ଜନ୍ମ ସଫଳ କରିଥିଲେ।

ଜୈମିନୀୟ ପୁରାଣରେ ଭକ୍ତ ଚନ୍ଦ୍ରହାସଙ୍କ ଚରିତ ଶ୍ରବଣ ଓ ପଠନର ମହିମା ବର୍ଣ୍ଣନ ପ୍ରସଙ୍ଗରେ କୁହାଯାଇଛି ଯେ ଯେଉଁ ମନୁଷ୍ୟ ଭକ୍ତିଭାବରେ ଏହାକୁ ପଢ଼ିବ ଓ ଶୁଣିବ, ସେ ଇହଲୋକରେ ନାନାପ୍ରକାର ସୁଖସମ୍ପଦ ଲାଭ କରି ମୃତ୍ୟୁ ପରେ ବିଷ୍ଣୁଲୋକକୁ ଯିବ। ତାକୁ ଆୟୁ, ବଳ ଓ ସଦାଗ୍ରସମ୍ପନ୍ନ ବିଷ୍ଣୁଭକ୍ତ ପୁତ୍ରରତ୍ନ ଲାଭ ହେବ। ଅନ୍ତକାଳରେ ଭଗବାନ ଶ୍ରୀକୃଷ୍ଣଙ୍କ ଚରଣକମଳରେ ତା'ର ଅନନ୍ୟ ଭକ୍ତି ସୁଦୃଢ଼ ହେବ ଏବଂ ଭଗବାନ ବାସୁଦେବ ତାକୁ ଏ ଭବସାଗରରୁ ଉଦ୍ଧାର କରି ଆପଣାର କରିନେବେ।



## ଭକ୍ତରାଜ ଧ୍ରୁବ

ଯେ ଧର୍ମ ଅର୍ଥ କାମ ମୋକ୍ଷ। ବାଞ୍ଛା ଯେ କରନ୍ତି ପ୍ରତ୍ୟକ୍ଷ॥
ତାଙ୍କର ଶ୍ରୀହରି ଚରଣ। ବିନୁ ନାହିଁଟି ପରିତ୍ରାଣ॥

ପ୍ରଭୁଙ୍କ ବିନୁ ଏ ସଂସାରରେ ଧର୍ମ, ଅର୍ଥ, କାମ, ମୋକ୍ଷରୂପୀ ଚତୁର୍ବର୍ଗ ଫଳ ଦେବାକୁ କାହାରି ସାମର୍ଥ୍ୟ ନାହିଁ। କିନ୍ତୁ ପ୍ରଭୁଙ୍କ ଆଶ୍ରିତ ଭକ୍ତକୁ ଏସବୁ ଅନାୟାସରେ ମିଳିଯାଏ। ସଂସାରର ଲୋକେ ଯାହାକୁ ଅଦରକାରୀ ଭାବି ହୀନ ଦୃଷ୍ଟିରେ ଦେଖୁଥାନ୍ତି, ସେ ଅନନ୍ୟ ଭାବରେ ଭକ୍ତବତ୍ସଳ ପ୍ରଭୁଙ୍କର ଚରଣାଶ୍ରିତ ହୋଇଗଲେ ସମସ୍ତେ ତାହାର ଚରଣ ବନ୍ଦନା କରନ୍ତି। ସଂସାର କଥା କିଏ ପଚାରେ, ସ୍ୱୟଂ ଭଗବାନ ମଧ୍ୟ ତାକୁ ଆଦର ଦେଇ ହୃଦୟର ଧନ କରି ରଖନ୍ତି। ଏ କଥା ସମସ୍ତେ ଜାଣନ୍ତି ଯେ ଭକ୍ତ ଭଗବାନଙ୍କ ଦର୍ଶନ ପାଇଁ ଯାଏ, କିନ୍ତୁ ଭଗବାନ ଯେ

ଭକ୍ତକୁ ଦର୍ଶନ କରିବା ପାଇଁ ଆସନ୍ତି, ଏ ରହସ୍ୟ ଅତି ଗୋପନୀୟ। କିନ୍ତୁ ଏହା କିଛି ବଡ଼ କଥା ନୁହେଁ। ସନ୍ତାନର ପ୍ରତ୍ୟେକ କ୍ରିୟାକଳାପକୁ ଯେପରି ପିତାମାତା ପ୍ରତ୍ୟକ୍ଷ ଓ ପରୋକ୍ଷରେ ଦେଖିବା ପାଇଁ ଲାଳାୟିତ ଥାଆନ୍ତି, ସେହିପରି ଭଗବାନ ମଧ୍ୟ ଲୁଚି ଲୁଚି ଭକ୍ତକୁ ଦେଖୁଥାନ୍ତି। ନିଜ ସନ୍ତାନକୁ ଦେଖି ସେ ଏତେ ଖୁସି ହୁଅନ୍ତି, ସତେ ଯେପରି ରଙ୍କକୁ ପରଶମଣି ମିଳିଗଲା! ପ୍ରଭୁ ଆନନ୍ଦରେ ଏତେ ବିଭୋର ହୋଇଯାଆନ୍ତି ଯେ ଆଉ ନିଜକୁ ଲୁଚେଇ ରଖି ନ ପାରି ତା' ଆଗରେ ସାକ୍ଷାତ୍ ପ୍ରକଟ ହେବା ପାଇଁ ବାଧ୍ୟ ହୁଅନ୍ତି।

ଭକ୍ତରାଜ ଧ୍ରୁବଙ୍କ ଜୀବନରେ ଠିକ୍ ଏହିପରି ଘଟିଥିଲା। ସେ ବାଳୁତ ଅବସ୍ଥାରେ ଭଗବାନଙ୍କର ପ୍ରୀତି ଭାଜନ ହୋଇ ଏଭଳି ପଦ ପାଇ ପାରିଲେ, ଯାହାକି ବଡ଼ ବଡ଼ ରାଜର୍ଷି ଅଥବା ତପସ୍ୱୀଙ୍କ ପକ୍ଷେ ମଧ୍ୟ ଅତି ଦୁଷ୍କର। ଏହା ପଛରେ ଥିଲା ତାଙ୍କର ଦୃଢ଼ ନିଷ୍ଠା ଓ ମାଆ ସୁନୀତିଙ୍କର ସତ୍‌ପ୍ରେରଣା। ଧନ୍ୟ ସେ ମାଆ, ଯିଏ ପାଞ୍ଚ ବର୍ଷର ପୁଅକୁ ଭଗବାନଙ୍କୁ ପାଇବା ପାଇଁ ପ୍ରେରଣା ଦେଇଥିଲା। ଦେବର୍ଷି ନାରଦ ଧ୍ରୁବଙ୍କର ପ୍ରଶଂସା କରିବା ପୂର୍ବରୁ ପତିବ୍ରତା ସୁନୀତିଙ୍କୁ ସ୍ମରଣ କରି କହିଛନ୍ତି—

**କି ପତିବ୍ରତା ଏ ସୁନୀତି। କିବା ତା ସୁତ ଧ୍ରୁବ ଗତି ॥**
**କିବା ତା ତପର ପ୍ରଭାବ। ବେଦବାଦୀଙ୍କି ଅସମ୍ଭବ ॥**

ସନ୍ତାନ ଉପରେ ମାଆର ପ୍ରଭାବ ସବୁଠୁ ଅଧିକ ପଡ଼େ। ଭକ୍ତ ସନ୍ତାନଟିଏ ଗଢ଼ି ତୋଳିବାରେ ମାଆର ଭୂମିକା ସର୍ବାଧିକ। ମାଆ ସନ୍ତାନର ପ୍ରଥମ ଗୁରୁ। ଆମ ଭାରତୀୟ ସଂସ୍କୃତିରେ ସର୍ବାଧିକ ସନ୍ଥ ଓ ଭକ୍ତ ଜନ୍ମ ହେବା ପଛରେ ମାଆମାନଙ୍କ ଭକ୍ତିସଂସ୍କାର ଲୁଚି ରହିଛି। ମାଆଙ୍କର ସତୀତ୍ୱ, ଦୟା, କ୍ଷମା, ସୁଶୀଳତା ଇତ୍ୟାଦି ସଦ୍‌ଗୁଣର ପ୍ରଭାବ ଗର୍ଭସ୍ଥ ସନ୍ତାନକୁ ବଡ଼ମଣିଷ କରି ଗଢ଼ି ତୋଳିବାରେ ଯଥେଷ୍ଟ ସାହାଯ୍ୟ କରେ। ସନ୍ତାନ ଜନ୍ମ ହେବାପରେ ଯେ କେବଳ ତାହାକୁ ଶିକ୍ଷା ଦିଆଯାଏ, ତା' ନୁହେଁ। ସଂସ୍କାର ରୂପରେ ସେ ଗର୍ଭାଧାନ ସମୟରେ ହିଁ ସୁସଂସ୍କୃତ ହୋଇଯାଏ। ଆଜିର ସମାଜ ଏହି ଗୂଢ଼ ରହସ୍ୟ ବୁଝି ନ ପାରିବାରୁ ଋଷି-ମହର୍ଷିଙ୍କ ଦ୍ୱାରା କଥିତ ନାନାବିଧ ସଂସ୍କାରକୁ ପୁରୁଣାକାଳିଆ କଥା କହି ଉପେକ୍ଷା କରୁଛି। ଫଳତଃ ଗର୍ଭାଧାନ ଓ ଜାତକର୍ମ ପ୍ରଭୃତି ସଂସ୍କାର ବିନା ଜନ୍ମ ହେଉଥିବା ସନ୍ତାନମାନଙ୍କ ହୃଦୟରେ ପ୍ରଭୁଭକ୍ତି ଜାଗରିତ ହେଉ ନାହିଁ କି ପିତାମାତାଙ୍କ ପ୍ରତି ଶ୍ରଦ୍ଧା ଭାବନା ମଧ୍ୟ ଦେଖାଯାଉ ନାହିଁ।

ଲୋକେ ଧ୍ରୁବଙ୍କର ଭକ୍ତି ମହିମା ତ ବେଶ୍ ଗାନ କରନ୍ତି, କିନ୍ତୁ ତାଙ୍କୁ ପ୍ରଭୁଭକ୍ତି ପାଇଁ ପ୍ରେରଣା ଯୋଗାଇଥିବା କାରଣସ୍ୱରୂପା ସୁନୀତିଙ୍କୁ ପ୍ରାୟ କେହି ଜାଣନ୍ତି ନାହିଁ। ରାଜା ଉତ୍ତାନପାଦଙ୍କର ଦୁଇ ରାଣୀଙ୍କ ମଧ୍ୟରେ ଇଏ ଥିଲେ ବଡ଼ ଏବଂ ସୁରୁଚି ଥିଲେ ସାନ। ସତୀ ସୁନୀତିଙ୍କ ଆଚରଣ ତାଙ୍କ ନାମର ଅନୁରୂପ ଥିଲା। ସେ ରାଜାଙ୍କୁ ସର୍ବଦା ସତ୍‌ମାର୍ଗରେ ପ୍ରେରିତ କରୁଥିଲେ। ସ୍ୱାମୀଙ୍କୁ ଭଗବାନ ଭାବି ନିତ୍ୟ ପୂଜା କରୁଥିଲେ। କିନ୍ତୁ କନିଷ୍ଠା ରାଣୀ ସୁରୁଚିର ବଶୀଭୂତ ଥିବା କାରଣରୁ ରାଜା ତାଙ୍କୁ ବେଶୀ ଭଲ ପାଉ ନ ଥିଲେ।

ଏକଦା ସୁରୁଚିକୁମର ଉତ୍ତମକୁ ରାଜା କୋଳରେ ଧରି ଗେଲ କରୁଥିଲେ। ଉତ୍ତମ ରାଜାଙ୍କ କୋଳରେ ବସିଥିବା ଦେଖି ଧ୍ରୁବ ମଧ୍ୟ ତାଙ୍କ କୋଳରେ ବସିବାକୁ ମନ ବଳାଇଲେ। ଯଦିବା ରାଜାଙ୍କର ଧ୍ରୁବ ପ୍ରତି ସ୍ନେହ ଥିଲା, କିନ୍ତୁ ସୁରୁଚି ଭୟରେ ସେ ତାକୁ କୋଳେଇ ନେବାକୁ ସାହସ କଲେ ନାହିଁ। ଏସବୁ ଘଟଣା ଦେଖୁଥାଏ କନିଷ୍ଠ ରାଣୀ ସୁରୁଚି। ଧ୍ରୁବ ରାଜାଙ୍କ କୋଳରେ ବସିବାକୁ ଚେଷ୍ଟା କରୁଥିବା ଦେଖି ସୁରୁଚି ସଉତୁଣୀ ପୁଅ ଭାବି ହତାଦରପୂର୍ବକ ଅନେକ କଟୁ ଶବ୍ଦରେ ବ୍ୟଙ୍ଗ ବାଣ ଛାଡ଼ିଲା। କହିଲା—"ରେ ଅବୋଧ ବାଳକ! ରାଜସିଂହାସନରେ ବସିବାକୁ ତୁ ଯୋଗ୍ୟ ନୋହୁଁ। ତୁ ମଧ୍ୟ ରାଜାଙ୍କର ପୁଅ, କିନ୍ତୁ ତାଙ୍କ କୋଳରେ ବସିବା ପାଇଁ କେବଳ ଏତିକି ହେବା ଯଥେଷ୍ଟ ନୁହେଁ। ଯେହେତୁ ତୁ ମୋ ପେଟରୁ ଜନ୍ମ ନ ହୋଇ ମୋର ସଉତୁଣୀ ସୁନୀତି ପେଟରୁ ଜନ୍ମ ହୋଇଛୁ, ତେଣୁ ଏଭଳି ଦୁର୍ଲଭ ଆଶା ଛାଡ଼ିଦେ। ଯଦି ତୋ ମନରେ ରାଜ୍ୟସିଂହାସନ ପାଇବାକୁ ଇଚ୍ଛା ଥାଏ, ତେବେ ପ୍ରଥମେ ତପସ୍ୟା ବଳରେ ପରମ ପୁରୁଷ ନାରାୟଣଙ୍କୁ ପ୍ରସନ୍ନ କର ଏବଂ ତାଙ୍କ ଆଶୀର୍ବାଦରୁ ମୋ ପେଟରୁ ଜନ୍ମ ହୁଅ। ତା'ପରେ ତୋତେ ସିଂହାସନ ମିଳିବ।"

**ତପରେ ତୋଷି ଭଗବାନ । ମୋର ଉଦରେ ହେବୁ ଜନ୍ମ ॥**
**ତେବେ ଇଚ୍ଛିବୁ ନୃପାସନ । ଏ ଜନ୍ମେ ନୋହୁ ତୁ ଭାଜନ ॥**

ଯଷ୍ଟି ମାଡ଼ରେ ଆହତ ନାଗ ସାପ ଭଳି ସାବତ ମାଆର କଟୁ ବଚନରେ ଆହତ ଧ୍ରୁବ ଅସହ୍ୟ କ୍ରୋଧରେ ଜର୍ଜରିତ ହୋଇ ଛାଡ଼ିଲେ ଦୀର୍ଘ ଶ୍ୱାସ। ତାଙ୍କ ମନରେ ଜାଗରିତ ହେଲା ଭଗବାନଙ୍କୁ ପାଇବାର ତୀବ୍ର ଅଭିଳାଷ। ତାଙ୍କ ମନ ମଧ୍ୟରେ ମାଆର ଏ କଥାଟି ବାରମ୍ବାର ଗୁଞ୍ଜିତ ହେଉଥିଲା ଯେ "ପ୍ରଥମେ ଭଗବାନଙ୍କୁ ପ୍ରସନ୍ନ କରି ମୋ ପେଟରୁ ଜନ୍ମ ହେବାର ସୌଭାଗ୍ୟ ଲାଭ କର, ତା'ପରେ ସିଂହାସନ ପାଇବୁ।" ସେ ମନେ ମନେ ପ୍ରଭୁଙ୍କୁ ପ୍ରସନ୍ନ କରିବାର

ଦୃଢ଼ନିଶ୍ଚୟ କରିନେଲେ । ଭକ୍ତ ପାଇଁ ସବୁ ପରିସ୍ଥିତି ଯେ ପ୍ରଭୁଙ୍କର ମଙ୍ଗଳମୟ ବିଧାନ, ଏ କଥା ଆଜି ସତ୍ୟ ହେଲା । ସୁରୁଚି ଦ୍ୱେଷଭାବନାରେ ବ୍ୟଙ୍ଗ ବଚନ କହିଥିଲେ ମଧ୍ୟ ଧ୍ରୁବଙ୍କ ସାଧନା ମାର୍ଗରେ ତାହା ପାଥେୟ ଭଳି କାମ କଲା । ସେ କାହାକୁ କିଛି ନ କହି ତଳକୁ ମୁହଁ ପୋତି ସିଧା ଚାଲିଲେ ମାଆ ସୁନୀତିଙ୍କ ନିକଟକୁ । ରାଜା ଉତ୍ତାନପାଦଙ୍କ ଆଖି ଆଗରେ ଏସବୁ ଘଟିଗଲା, କିନ୍ତୁ ସେ ନୀରବରେ ସବୁ କିଛି ସହିଗଲେ ।

ମର୍ମବେଦନାର ପ୍ରାବଲ୍ୟରେ ଧ୍ରୁବର ଓଠ ବାରମ୍ବାର ଫଡ଼କୁଥାଏ । ସେ ଆଉ ନିଜ କୋହକୁ ସମ୍ଭାଳି ରଖି ପାରିଲା ନାହିଁ । କଇଁ କଇଁ ହୋଇ କାନ୍ଦି ପକାଇଲା ମାଆ ସୁନୀତି ଆଗରେ । ଏ ସମାଚାର ଅନ୍ୟ ଲୋକଙ୍କ ଠାରୁ ସୁନୀତିକୁ ଆଗରୁ ମିଳି ସାରିଥିଲା । ସେ ଧ୍ରୁବକୁ ଅତି ସ୍ନେହରେ କୋଳେଇ ନେଇ ନିଜର ପଣତ କାନିରେ ଆଖିର ଲୁହ ପୋଛି ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ । କିନ୍ତୁ ଧ୍ରୁବର କୋହ ବନ୍ଦ ହେବା ପରିବର୍ତ୍ତେ ଅଧିକାଧିକ ବଢ଼ି ଚାଲିଲା । ବାଳକର ଏଭଳି ଦୁଃଖଦ ସ୍ଥିତିରେ ମାଆ ସୁନୀତିଙ୍କର ଧୈର୍ଯ୍ୟସେତୁ ଭାଙ୍ଗିଗଲା । ସେ ଦାବାନଳରେ ସନ୍ତପ୍ତ ଗାଈ ଭଳି ମୂର୍ଚ୍ଛିତ ପ୍ରାୟ ହୋଇଗଲେ । ସଉତୁଣୀର ଅସହ୍ୟ କଟୁ ବଚନ ଆଘାତରେ ମାଆ ସୁନୀତିଙ୍କ ନୟନରୁ ମଧ୍ୟ ଧାର ଧାର ଲୋତକ ବହି ଚାଲିଲା । ସେ ଏଭଳି ଦୁଃଖସାଗରର ଅନ୍ତ ଦେଖି ପାରୁ ନ ଥିଲେ । କୌଣସି ପ୍ରକାରେ ହୃଦୟର ସନ୍ତାପକୁ ସମ୍ଭାଳି ମାତା ସୁନୀତି ଧ୍ରୁବ ଆଖିରୁ ଲୁହ ପୋଛି ସ୍ନେହରେ କହିଲେ—"ଧନ ରେ! ଅନ୍ୟର ଅନିଷ୍ଟ କାମନାକୁ କଦାପି ମନ ମଧ୍ୟରେ ସ୍ଥାନ ଦିଅ ନାହିଁ । ଯିଏ ଅନ୍ୟକୁ ଦୁଃଖ ଦିଏ, ତାକୁ ନିଶ୍ଚୟ ଦୁଃଖ ଭୋଗିବାକୁ ପଡ଼େ । ବାପ ରେ! ମାଆ ସୁରୁଚି ଯାହା କିଛି କହିଲେ, ସବୁ ଅକ୍ଷରେ ଅକ୍ଷରେ ସତ୍ୟ । ମୁଁ ମହାରାଜଙ୍କର ସହଧର୍ମିଣୀ ଓ ବଡ଼ ରାଣୀ ହୋଇଥିଲେହେଁ ସେ ମୋତେ ଦାସୀରୂପରେ ସ୍ୱୀକାର କରିବା ପାଇଁ ମଧ୍ୟ ଲଜ୍ଜା ବୋଧ କରୁଛନ୍ତି । ମୋ ଭଳି ଅଭାଗିନୀ କୋଳରୁ ତୁ ଜନ୍ମହୋଇ ମୋ ଦୁଗ୍ଧରେ ପାଳିତ ହୋଇଛୁ । ଧନ! ତୋର ସାବତ ମାଆ ସୁରୁଚି ଦ୍ୱେଷଭାବରେ କହିଥିଲେ ମଧ୍ୟ ତା' କଥା ଏକବାରେ ସତ୍ୟ । ତୁ ଯଦି ରାଜକୁମାର ଉତ୍ତମ ଭଳି ରାଜସିଂହାସନରେ ବସିବାକୁ ଚାହୁଁ, ତେବେ ଦ୍ୱେଷଭାବ ତେଜି ଅଶରଣଶରଣ ପ୍ରଭୁଙ୍କର ଅଭୟ ପାଦପଦ୍ମର ଆରାଧନା କର । ତାଙ୍କ ଆରାଧନାରୁ ତୋର ଅଣଜେଜବାପା ବ୍ରହ୍ମା ଆଜି ସର୍ବଶ୍ରେଷ୍ଠ ପଦରେ ଆସୀନ ହୋଇପାରିଛନ୍ତି । ତୋର ଜେଜବାପା ସ୍ୱାୟମ୍ଭୁବ ମନୁ ଯଜ୍ଞ ଦ୍ୱାରା ତାଙ୍କୁ

ଆରାଧନା କରିବାରୁ ଲୌକିକ, ପାରଲୌକିକ ଓ ମୋକ୍ଷସୁଖ ଲାଭ କରିଛନ୍ତି। ସଂସାରର ଜନ୍ମ-ମୃତ୍ୟୁରୂପୀ ଘୋର ଦୁଃଖରୁ ମୁକ୍ତି କାମନା କରୁଥିବା ମୁନିଜନ ତାଙ୍କ ପାଦପଦ୍ମରେ ଶରଣ ପଶନ୍ତି। ତୁ ପବିତ୍ର ମନରେ ପୁରୁଷୋତ୍ତମ ଭଗବାନଙ୍କୁ ହୃଦୟ ସିଂହାସନରେ ବିରାଜମାନ କରାଇ ଅନନ୍ୟ ଭାବରେ ଅନ୍ୟ ସବୁ ଚିନ୍ତା ଛାଡ଼ି ତାଙ୍କୁ ସ୍ମରଣ କର। ବାବୁ ରେ! କମଳନୟନ ଶ୍ରୀହରିଙ୍କ ବ୍ୟତୀତ ତୋ ଦୁଃଖ ହରଣକାରୀ ସଂସାରରେ ଆଉ କେହି ନାହିଁ। ଯେଉଁ ମହାଲକ୍ଷ୍ମୀଙ୍କୁ ତୋଷିବା ପାଇଁ ବ୍ରହ୍ମାଦି ଦେବଗଣ ଅହର୍ନିଶ ତତ୍ପର ରହନ୍ତି, ସେ ନିଜ ହାତରେ ଦୀପଟିଏ ପରି ପଦ୍ମଫୁଲଟିଏ ଧରି ନିରନ୍ତର ଶ୍ରୀହରିଙ୍କୁ ଖୋଜି ବୁଲୁଛନ୍ତି। ତୁ ସେହି ଶ୍ରୀହରିଙ୍କ ଚରଣରେ ମନ ନିବେଶ କରି ଜୀବନ ଧନ୍ୟ କର।"

ମାଆ ସୁନୀତିଙ୍କ ବଚନ ଧ୍ରୁବର ଅଭୀଷ୍ଟ ପ୍ରାପ୍ତି ମାର୍ଗରେ ପାଥେୟ ରୂପେ କାମ କଲା। ତାଙ୍କର ଜୀବନ ମାର୍ଗ ପ୍ରଶସ୍ତ ହୋଇଗଲା। ମାତାଙ୍କ ବଚନରୂପୀ ଶୀତଳ ଜଳରେ ଧ୍ରୁବଙ୍କ ମନରେ ହୁ ହୁ ହୋଇ ଜଳୁଥିବା କ୍ରୋଧାଗ୍ନି ଧୀରେ ଧୀରେ ଶମନ ହୋଇଗଲା। ସେ ମାଆ ସୁନୀତିଙ୍କ ପାଦ ବନ୍ଦନା କରି ଘୋର ବନରେ ଶ୍ରୀହରିଙ୍କ ଆରଧନା ପାଇଁ ଆଜ୍ଞା ମାଗିଲେ। ମାଆ ସୁନୀତି ଧ୍ରୁବକୁ କୋଳେଇ ତା'ର ମୁଣ୍ଡ ଆଉଁସି ଦେଲେ। ପାଞ୍ଚ ବର୍ଷର ବାଳକ। ବାତ୍ସଲ୍ୟ ସ୍ନେହରେ ମାଆଙ୍କ ହୃଦୟ ଉଚ୍ଛୁଳି ଉଠିଲା। ନେତ୍ରରୁ ଧାର ଧାର ଅଶ୍ରୁ ପ୍ରବାହିତ ହୋଇ ଧ୍ରୁବର ମସ୍ତକ ଆର୍ଦ୍ର କରି ଗ୍ଳିଲା। ତଥାପି ସେ ବାତ୍ସଲ୍ୟ ସ୍ନେହକୁ ପଛ କରି ଧ୍ରୁବକୁ ତା' ଲକ୍ଷ୍ୟ ପଥରେ ପ୍ରେରିତ କଲେ। ଧନ୍ୟ ସେ ଜନନୀ! ଧନ୍ୟ ତାଙ୍କ ଈଶ୍ୱର ନିଷ୍ଠା।

ମାଆଙ୍କ ଆଦେଶରେ ଧ୍ରୁବ ବାହାରି ପଡ଼ିଲେ ଘୋର ବନରେ ତପସ୍ୟା କରିବାକୁ। କିନ୍ତୁ ସାଧନାର ସଫଳତା ପାଇଁ ତ ଉଚିତ ମାର୍ଗଦର୍ଶକ ଅନୁଭବୀ ଗୁରୁଙ୍କର ଆବଶ୍ୟକତା ଅନିବାର୍ଯ୍ୟ। ଏ ବାଳୁତ ଅବସ୍ଥାରେ ଧ୍ରୁବ କେଉଁଠି ବା ଯାଇ ଗୁରୁ ଖୋଜିବେ? ପ୍ରଭୁଙ୍କ ଅବ୍ୟକ୍ତ ପ୍ରେରଣାରୁ ଦେବର୍ଷି ନାରଦଙ୍କ ମନରେ ସ୍ଫୁରିତ ହେଲା ଧ୍ରୁବକୁ ମାର୍ଗଦର୍ଶନ ଦେବାର ପ୍ରେରଣା। ସେ ସହସା ତା' ନିକଟରେ ଆସି ଉପସ୍ଥିତ ହେଲେ। ସତେ ଯେପରି ଦେବର୍ଷି ନାରଦ ଏତଦ୍ଦ୍ୱାରା ଗୁରୁ ଖୋଜି ବୁଲୁଥିବା ଆଜିର ସମାଜକୁ ଜଣାଇଦେଲେ ଯେ ହୃଦୟରେ ଅସଲି ଭାବନା ଓ ଉଦ୍ଦେଶ୍ୟ ଦୃଢ଼ ଥିଲେ ଗୁରୁଙ୍କୁ ଖୋଜିବାକୁ ପଡ଼େ ନାହିଁ। ଫଳ ପାଚିବା ଜାଣି ଶୁଆ ଯେପରି ନିମନ୍ତ୍ରଣ ବିନା ନିଜେ ଯାଇ ତାହାକୁ ଆସ୍ୱାଦନ କରେ, ସେହିପରି ଗୁରୁ ନିଜେ ଆସି ଶିଷ୍ୟର ମାର୍ଗ ପରିଷ୍କୃତ କରି ଦିଅନ୍ତି। ଗୁରୁଙ୍କୁ ଖୋଜି ଚିହ୍ନି ପାରିବାର

ଶକ୍ତି ଶିଷ୍ୟର ନ ଥାଏ। ଯଦି ଏ ଭଳି ଶକ୍ତି ତା'ର ଥାଆନ୍ତା, ତେବେ ତା' ପାଇଁ ଗୁରୁଙ୍କର କ'ଣ ବା ଆବଶ୍ୟକତା ରହନ୍ତା! କାରଣ ସେ ତ ତାଙ୍କ ଠାରୁ ଶ୍ରେଷ୍ଠ ହୋଇ ସାରିଛି। ଶିଷ୍ୟ କେବଳ ଗୁରୁଙ୍କ ଆବଶ୍ୟକତା ଅନୁଭବ କରିପାରେ। ବାକି ସବୁ କାମ କରନ୍ତି ଜଗଦ୍‌ଗୁରୁ ଶ୍ରୀକୃଷ୍ଣ। ସେ ସମସ୍ତଙ୍କର ଗୁରୁ ହୋଇଥିବାରୁ କାହାକୁ କେତେବେଳେ କ'ଣ ଦରକାର, ସବୁ ବ୍ୟବସ୍ଥା ନିଜେ କରନ୍ତି।

ଦେବର୍ଷି ନାରଦଙ୍କ ଚରଣରେ ଧ୍ରୁବ ଭକ୍ତିପୂତ ପ୍ରଣାମ ଜଣାଇଲେ। ଧ୍ରୁବ ତାଙ୍କୁ ନାରଦ ବୋଲି ଚିହ୍ନି ନ ଥିଲେ ମଧ୍ୟ ପିଲାଟିବେଳୁ ସନାତନ ସଂସ୍କୃତିର ପବିତ୍ର ପରମ୍ପରା ବିଷୟରେ ବେଶ୍ ଅବଗତ ଥିଲେ। ରାଜଦରବାରରେ ପଦାର୍ପଣ କରୁଥିବା ସାଧୁ-ସନ୍ଥଙ୍କୁ କିଭଳି ସମ୍ମାନ କରାଯାଏ, ଏହା ସେ ଜନ୍ମରୁ ଶିଖି ଆସିଥିଲେ। ତେଣୁ ସତେ ଯେପରି ପ୍ରଥମ ପ୍ରଣାମରେ ସେ ହୋଇଯାଇଥିଲେ ତାଙ୍କର ଶିଷ୍ୟ। ଦେବର୍ଷି ନାରଦ ନିଜର ପାପବିନାଶକ ବରଦ ହସ୍ତରେ ଧ୍ରୁବର ମୁଣ୍ଡ ଆଉଁସି ଦେଇ ମନେ ମନେ ବିସ୍ମିତ ହୋଇ ଭାବିଲେ—ଓହୋ! କ୍ଷତ୍ରିୟ ଜାତିର କେତେ ଅଦ୍ଭୁତ ତେଜ ନୁହେଁ ସତେ! ସାମାନ୍ୟ ମାନଭଙ୍ଗରେ କୁପିତ ହୋଇ ବାଳୁତ ଅବସ୍ଥାରେ ବାହାରି ପଡ଼ିଲା ତପସ୍ୟା କରିବାକୁ, ଯାହା କି ଚତୁର୍ଥାବସ୍ଥାରେ ପହଞ୍ଚିଥିବା ଲୋକେ ମଧ୍ୟ ସହଜେ ନିର୍[illegible] କରି ପାରନ୍ତି ନାହିଁ। ସାବତ ମାଆର କଟୁ ବଚନ ଏହାକୁ କେତେ ନ ବାଧିଲା! ତା'ପରେ ସେ ଧ୍ରୁବର ଦୃଢ଼ ନିଷ୍ଠା ଜାଣିବା ପାଇଁ ତାକୁ କହିଲେ, "ବତ୍ସ! ଏବେ ତୁ ଅବୋଧ ଶିଶୁ। ଏହା ତୋର ଖେଳକୁଦରେ ମାତିବା ସମୟ। ତୋ ଭଳି ବାଳୁତର ପୁଣି ମାନ-ସମ୍ମାନ କ'ଣ? ଯଦି ତୋତେ ମାଆ କଥା ବାଧିଲା, ତେବେ ମୋ କଥା ମନ ଦେଇ ଶୁଣ। ବାପ ରେ! ମୋହ ବ୍ୟତୀତ ମନୁଷ୍ୟର ସୁଖ-ଦୁଃଖର କାରଣ ଅନ୍ୟ କିଛି ହୋଇ ନ ପାରେ। ମନୁଷ୍ୟକୁ ତା' କର୍ମ ଅନୁସାରେ ସୁଖ-ଦୁଃଖ ଓ ମାନ-ଅପମାନ ମିଳେ। ତେଣୁ ବୁଦ୍ଧିମାନ୍ ଲୋକେ ଦୈବସୃଷ୍ଟ ପରିସ୍ଥିତିରେ ସନ୍ତୁଷ୍ଟ ରହନ୍ତି। ମାଆ ସୁନୀତିଙ୍କ କଥାରେ ତୁ ଭଗବାନଙ୍କୁ ପାଇବାକୁ ବାହାରି ପଡ଼ିଲୁ ସିନା, କିନ୍ତୁ ତାଙ୍କୁ ପାଇବା କ'ଣ ଏତେ ସହଜ! ଯୋଗୀଜନ ଜନ୍ମ ଜନ୍ମ ଧରି ତପ ବଳରେ ମଧ୍ୟ ଯାହାଙ୍କୁ ଖୋଜି ପାରନ୍ତି ନାହିଁ, ସେଠାରେ ତୋ ଭଳି ବାଳକର କି ଗଣନା ଅବା! ତୁ ଅଯଥା ହଠ ଛାଡ଼ିଦେଇ ଘରକୁ ଫେରିଯାଆ। ବଡ଼ ହେଲେ ବରଂ ଚେଷ୍ଟା କରିବୁ। ଏଥିରେ ବି ଯଦି ତୋର ମନ ମାନୁ ନାହିଁ, ତେବେ ମୋ ସାଙ୍ଗରେ ଚାଲ। ତୋର ବାପା ମୋତେ ଭଲ ଭାବେ ଜାଣନ୍ତି।

ମୁଁ ତାଙ୍କୁ କହି ତୋତେ ରାଜସିଂହାସନ ଦେଇଦେବି । ତୁ ଆନନ୍ଦରେ ରାଜ୍ୟସୁଖ ଭୋଗ କରିବୁ ।"

ଦେବର୍ଷିଙ୍କ କଥା ଧ୍ରୁବଙ୍କୁ ଅଡୁଆ ଅଡୁଆ ଲାଗୁଥାଏ । ସେ ଭାବି ପାରୁ ନ ଥାନ୍ତି ଯେ ଏ ମହାଶୟ କିଏ? ଏ ମୋତେ ସାଧନା ମାର୍ଗରୁ ଓହରାଉଛନ୍ତି କାହିଁକି? ତଥାପି ସେ କହିଲେ—"ମହାମୁନ୍! ଆପଣ ଶାନ୍ତି ଲାଭର ଯେଉଁ ଶ୍ରେଷ୍ଠ ଉପାୟ କହିଲେ, ତାହା ସୁଖ-ଦୁଃଖରେ ସନ୍ତାପିତ ପ୍ରାଣୀ ପାଇଁ ଅମୃତ ତୁଲ୍ୟ । କିନ୍ତୁ ସାବତ ମାଆର କଟୁବଚନ ରୂପୀ ତୀକ୍ଷ୍ଣ ଶରରେ ଆବିଦ୍ଧ ମୋ ହୃଦୟରେ ଆପଣଙ୍କ ଉପଦେଶ ସେହିପରି ତିଷ୍ଠି ରହୁ ନାହିଁ, ଯେପରି ଛିଦ୍ର ଘଟରେ ଜଳ ରହିପାରେ ନାହିଁ । କ୍ଷତ୍ରିୟ ସ୍ୱଭାବ କାରଣରୁ ମୁଁ ପାଶ୍ଚାଦ୍‌ଗମନ କରିବାରେ ଅକ୍ଷମ । ମହାମୁନ୍! ମୁଁ ଏଭଳି ଏକ ପଦ ପାଇବାକୁ ଚାହୁଁଛି, ଯାହାଠାରୁ ବଳି ଶ୍ରେଷ୍ଠ ଅନ୍ୟ କିଛି ନ ଥିବ ଏବଂ ଯେଉଁଠି ମୋର ବାପା ଓ ଜେଜବାପାମାନେ ମଧ୍ୟ ପହଞ୍ଚି ପାରି ନ ଥିବେ । ଦୟା କରି ମୋତେ ତାହାର ମାର୍ଗ ଦେଖାଇ ଦିଅନ୍ତୁ । କିନ୍ତୁ ଆପଣ କିଏ? ମୋତେ ଏପରି ଭୟ ଓ ପ୍ରଲୋଭନ ଦେଖାଉଛନ୍ତି କାହିଁକି? ମୁଁ ଥରେ ଗୋଡ଼ କାଢ଼ିଛି ମାନେ ଭଗବାନଙ୍କୁ ନ ପାଇବା ପର୍ଯ୍ୟନ୍ତ ଆଉ ଘରକୁ ଫେରିବି ନାହିଁ । ଯଦି କିଛି ନେବି ତେବେ କେବଳ ତାଙ୍କ ଠାରୁ ହିଁ ନେବି । ତା'ଛଡା ଆପଣ ଯେଉଁ ରାଜ୍ୟ ଦେବା କଥା କହୁଛନ୍ତି, ତାହା ଆଗରୁ କାହିଁକି ନ କହିଲେ? ଆପଣ ଆଗରୁ କୁଆଡ଼େ ଯାଇଥିଲେ? ଏବେ କାହିଁକି ମୋତେ ପଥଭ୍ରାନ୍ତ କରାଉଛନ୍ତି?" ଧ୍ରୁବର ନିଷ୍ଠାରେ ପ୍ରୀତ ହୋଇ ଦେବର୍ଷି କହିଲେ—"ମୁଁ ହେଉଛି ପିତାମହ ବ୍ରହ୍ମାଙ୍କର ପୁତ୍ର! ମୋର ନାମ ନାରଦ । କିନ୍ତୁ ଏଭଳି ପଚାରିବାର କାରଣ?" ଧ୍ରୁବ କହିଲେ—"ଲାଗୁଛି, ଆପଣ ଅସଲି ନାରଦ ନୁହନ୍ତି? ମୁଁ ଗୁରୁଜନଙ୍କ ଠାରୁ ଶୁଣିଥିଲି ଯେ ଭଗବାନଙ୍କୁ ପାଇବା ପଥରେ ଅଗ୍ରସର ହେଉଥିବା ଲୋକକୁ ଦେବର୍ଷି ନାରଦ ଆଶୀର୍ବାଦ ଦେଇ ଉଚିତ ମାର୍ଗ ଦେଖାନ୍ତି । କିନ୍ତୁ ଆପଣ ତ ମୋତେ ଭୟ ଓ ଲୋଭ ଦେଖାଇ ସାଧନାରୁ ବିଚ୍ୟୁତ କରାଇବାକୁ ଚେଷ୍ଟା କରୁଛନ୍ତି!"

ଧ୍ରୁବଙ୍କ କଥା ଶୁଣି ଦେବର୍ଷି ନାରଦ ମନେ ମନେ ହସିଲେ । ତାଙ୍କୁ ଆଦରରେ କୋଳେଇ ନେଇ କହିଲେ—"ବତ୍ସ! ତୁମେ ଆଜି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲ । ତୁମର ମନୋଭାବନା ଓ ଦୃଢ଼ ନିଷ୍ଠାର ପରୀକ୍ଷା ନେବା ପାଇଁ ମୁଁ ଏପରି କହୁଥିଲି । ମାଆ ସୁନୀତିଙ୍କ କଥିତ ମାର୍ଗ ତୁମ ପାଇଁ ପରମ ଉତ୍କୃଷ୍ଟ । ଯେ ନିଜ ଜୀବନରେ ଧର୍ମ, ଅର୍ଥ, କାମ, ମୋକ୍ଷ ରୂପୀ ଚତୁର୍ବର୍ଗ ଫଳ ପାଇବାକୁ ଚାହେଁ, ତା' ପାଇଁ

ଶ୍ରୀହରିଙ୍କ ଚରଣ ସେବା ହିଁ ଏକମାତ୍ର ଅବଲମ୍ବନ। ବତ୍ସ! ତୁମର ମଙ୍ଗଳ ହେଉ। ଏବେ ତୁମେ ଯମୁନା ତଟବର୍ତ୍ତୀ ମଧୁବନକୁ ଚାଲିଯାଅ। ପରମ ପବିତ୍ର ମଧୁବନରେ ନିବାସ କରି ଭକ୍ତିଦାୟିନୀ କାଳିନ୍ଦୀର ନିର୍ମଳ ଜଳରେ ତ୍ରିକାଳ ସ୍ନାନ କରିବା ସହିତ ନିତ୍ୟକର୍ମ ସାରି ପ୍ରଭୁଙ୍କୁ ଧ୍ୟାନ କର। ଧ୍ୟାନ କରିବାର ବିଧି ଓ ମନ୍ତ୍ର ମଧ୍ୟ ମୁଁ ତୁମକୁ ପ୍ରଦାନ କରୁଛି। କେବେହେଲେ ଧୈର୍ଯ୍ୟହରା ହେବ ନାହିଁ। ନିଷ୍ଠାର ସହିତ ପ୍ରଭୁଙ୍କୁ ଭଜିଲେ ଦୟାମୟ ଶ୍ରୀହରି ନିଶ୍ଚୟ ଦର୍ଶନ ଦେବେ।''

''ଦିବାନିଶି ଭଗବାନଙ୍କର ପ୍ରସନ୍ନ ବଦନ ଓ ମୁଖ କମଳକୁ ଚିନ୍ତା କରିବ। ସତେ ଯେପରି ତାଙ୍କ ନୟନରୁ ସ୍ନିଗ୍ଧ ସୁଧା ଝରି ପଡୁଛି। ସେ ହସ ହସ ମୁଖରେ ଭକ୍ତକୁ ବର ଦେବାପାଇଁ ପ୍ରସ୍ତୁତ ଅଛନ୍ତି। ତାଙ୍କର ନାସିକା, ଭ୍ରୂଲତା ଓ କପୋଳ ଅତି ଲାବଣ୍ୟମୟ। ସେ ସକଳ ଦେବତାଙ୍କ ମଧ୍ୟରେ ଅତି ଶୋଭାୟମାନ ହେଉଛନ୍ତି। ତାଙ୍କର ତରୁଣ ଅଙ୍ଗକାନ୍ତି ଅତି କମନୀୟ। ବିମ୍ବଫଳ ସମ ରକ୍ତିମ ଅଧର ଓ ଅରୁଣ ନେତ୍ର ଜନମନ ହରଣକାରୀ! ସେ ପ୍ରଣତଜନଙ୍କ ଆଶ୍ରୟଦାତା, ଅପାର ସୁଖଦାତା ଓ ଶରଣାଗତବତ୍ସଳ, ସତେ ଯେପରି ଦୟାର ସାଗର। ତାଙ୍କ ବକ୍ଷସ୍ଥଳ ଶ୍ରୀବତ୍ସ ଚିହ୍ନରେ ମଣ୍ଡିତ। ନବ ଜଳଧର ସମ ସୁନ୍ଦର ଅଙ୍ଗକାନ୍ତି ଅତ୍ୟନ୍ତ ଦୀପ୍ତିମନ୍ତ। ତାଙ୍କ କଣ୍ଠରେ ବନମାଳା ଓ ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଶୋଭା ପାଉଛି। ତାଙ୍କର ଅଙ୍ଗ-ପ୍ରତ୍ୟଙ୍ଗ କିରୀଟ, କୁଣ୍ଡଳ, କେୟୂର ଓ କଙ୍କଣ ପ୍ରଭୃତି ବିଭିନ୍ନ ଆଭୂଷଣରେ ବିଭୂଷିତ। କଣ୍ଠରେ କୌସ୍ତୁଭ ମଣି ଓ କଟିରେ ପୀତାମ୍ବର ଏଭଳି ଦାଉ ଦାଉ କରୁଛି, ସତେ ଯେପରି ତ୍ରିଭୁବନର କମନୀୟତା ଏକତ୍ର ସମାବେଶ ହୋଇଛି। କଟିରେ ସ୍ୱର୍ଣ୍ଣ ଅଣ୍ଟାସୂତା ଓ ପାଦରେ ସୁବର୍ଣ୍ଣମୟ ନୂପୁରର ଧ୍ୱନି କଳହଂସଙ୍କ କଳରବ ଭଳି ବୋଧ ହେଉଛି। ସେ ଅତି ଦର୍ଶନୀୟ, ଶାନ୍ତ ତଥା ମନ ଓ ନୟନର ଆନନ୍ଦପ୍ରଦାତା। ମାନସପଟରେ ପ୍ରଭୁଙ୍କୁ ପୂଜା କରୁଥିବା ଭକ୍ତଙ୍କ ହୃଦୟକର୍ଣ୍ଣିକାରେ ପ୍ରଭୁଙ୍କର ନଖମଣିମଣ୍ଡିତ ମନୋହର ପଦାରବିନ୍ଦ ବିରାଜମାନ ହୋଇଥାଏ। ବତ୍ସ! ଏଭଳି ମୂରତି ଧାରଣା କରି କରି ଚିତ୍ତ ଏକାଗ୍ର ହୋଇଯିବା ପରେ ପ୍ରଭୁଙ୍କର ବରଦ ଲାବଣ୍ୟ ରୂପ ମାଧୁରୀକୁ ମନ ମଧ୍ୟରେ ଧ୍ୟାନ କରିବ। ଭାବିବ ସତେ ଯେପରି ସେ ସ୍ମିତହାସ୍ୟରେ ତୁମକୁ ଦେଖୁଛନ୍ତି। ଏହାଦ୍ୱାରା ତୁମର ମନ ଅତି ଶୀଘ୍ର ପରମାନନ୍ଦରେ ଅବଗାହନ କରିବ।

ରାଜକୁମାର! ଏହିପରି ଧ୍ୟାନ ସହିତ **'ଓଁ ନମୋ ଭଗବତେ ବାସୁଦେବାୟ'** ମନ୍ତ୍ରଟି ଜପ କରିବ। ବିବେକୀ ପୁରୁଷ ମନ୍ତ୍ର ଦ୍ୱାରା ବିବିଧ ସାମଗ୍ରୀରେ ଭଗବାନଙ୍କ

ଦ୍ରବ୍ୟମୟୀ ପୂଜା କରିବା ବିଧେୟ। ବିଶୁଦ୍ଧ ଜଳ, ବନ ଫୁଲ, ଫଳ ଓ ଦୁର୍ବାଙ୍କୁର, ତୁଳସୀ ଇତ୍ୟାଦି ଅର୍ପଣ କରିବ। ଶିଳା ମୂର୍ତ୍ତିରେ ଅଥବା ପୃଥିବୀ, ଜଳ ଇତ୍ୟାଦିରେ ପ୍ରଭୁଙ୍କୁ ଭାବନା କରି ପୂଜା କରିବ। ସର୍ବଦା ସଂଯତମନା ହୋଇ ଶାନ୍ତ ଓ ମୌନ ରହିବା ସହିତ କନ୍ଦମୂଳ, ଫଳ ଇତ୍ୟାଦି ପରିମିତ ଆହାର କରିବ। ତା' ଛଡ଼ା ପ୍ରଭୁଙ୍କ ଅବତାର ସମ୍ବନ୍ଧୀୟ ବିବିଧ ମନୋହର ଲୀଳାଚରିତ୍ର ଗାନ କରିବ। ଏହି ରୀତିରେ ନିଷ୍କପଟ ଭାବରେ ପ୍ରଭୁଙ୍କୁ ହୃଦୟରେ ବସାଇଦେଲେ ସେ ଅଚିରେ ଧର୍ମ, ଅର୍ଥ, କାମ, ମୋକ୍ଷ ରୂପୀ ଚତୁର୍ବର୍ଗ ଫଳ ପ୍ରଦାନ କରିବେ। ଇନ୍ଦ୍ରିୟାଦି ବିଷୟ ପ୍ରତି ମନରେ ବୈରାଗ୍ୟ ଥିଲେ ମୋକ୍ଷ ନିମନ୍ତେ ଶ୍ରୀହରିଙ୍କୁ ଭଜିବା ଉଚିତ।

ଦେବର୍ଷି ନାରଦଙ୍କ ଉପଦେଶକୁ ରାଜକୁମାର ଧ୍ରୁବ ସାଦରେ ଗ୍ରହଣ କଲେ ଏବଂ ତାଙ୍କୁ ପରିକ୍ରମା କରି ବାହାରି ପଡ଼ିଲେ ପ୍ରଭୁଙ୍କ ଚରଣ ଚିହ୍ନରେ ସୁଶୋଭିତ ମଧୁବନ ଅଭିମୁଖେ। ତା' ପରେ ଦେବର୍ଷି ଯାଇ ପହଞ୍ଚିଲେ ରାଜାଙ୍କ ନିକଟରେ। ରାଜା ପାଦ୍ୟ ଅର୍ଘ୍ୟରେ ଦେବର୍ଷିଙ୍କର ଯଥୋଚିତ ପୂଜା କଲେ ଏବଂ ସାଦରେ ଆସନରେ ବିରାଜମାନ କରାଇଲେ। ଧ୍ରୁବ ଯିବା ପର ଠାରୁ ଉତ୍ତାନପାଦଙ୍କ ମନ ଅସ୍ଥିର ହେଉଥାଏ। ପ୍ରାଣ ବିହୁନେ ଦେହ ପରି ସେ କାହାକୁ କିଛି ନ କହି ପୁତ୍ର ଚିନ୍ତାରେ ପଡ଼ିଥାନ୍ତି। କାହିଁକି ବା ନ ହୁଅନ୍ତା, ଭକ୍ତ ପୁତ୍ର ଯେ ତାଙ୍କୁ ଛାଡ଼ି ଚାଲିଗଲା! ଦେବର୍ଷି ନାରଦ ତାଙ୍କୁ ଭଲମନ୍ଦ ପଚାରିବାରୁ ତାଙ୍କ ଅନ୍ତରର କୋହକୁ ସେ ଆଉ ରୋକି ପାରିଲେ ନାହିଁ। ସେ କାନ୍ଦି କାନ୍ଦି କହିଲେ—ମହାତ୍ମନ୍! ମୁଁ ବଡ଼ କାମୁକ ଓ ନିର୍ଦ୍ଦୟ। ନାରୀ ମୋହରେ ପଡ଼ି ଧ୍ରୁବ ଭଳି ପାଞ୍ଚ ବର୍ଷର ବୁଦ୍ଧିମାନ୍ ବାଳକକୁ ମୁଁ ଘରୁ ବାହାର କରିଦେଲି। ସେ କି ସ୍ନେହରେ ମୋ କୋଳରେ ବସିବାକୁ ଚାହୁଁଥିଲା! କିନ୍ତୁ ମୁଁ ତାକୁ କୋଳ କରି ପାରିଲି ନାହିଁ। ଧିକ୍ ମୋ ଜୀବନକୁ। ସେ ଜଙ୍ଗଲରେ କେଉଁଠି ଥିବ? କିଛି ନ ଖାଇ ନ ପିଇ ନିଶ୍ଚୟ ତା'ର ମୁହଁ ଶୁଖିଯାଇଥିବ। ଲାଗୁଛି ବାଘ, ଭାଲୁ ପ୍ରଭୃତି ବନ୍ୟଜନ୍ତୁ ତାକୁ ଖାଇ ସାରିବେଣି। ଏବେ ମୁଁ କ'ଣ ବା କରି ପାରିବି?

ଦେବର୍ଷି କହିଲେ—"ରାଜନ୍! ତୁମେ ଧ୍ରୁବ ପାଇଁ ଚିନ୍ତା କର ନାହିଁ। ସେ ଆଉ ତୁମ ପୁଅ ହୋଇ ନାହିଁ। ସେ ହୋଇ ସାରିଛି ଭଗବାନଙ୍କର ସ୍ନେହଭାଜନ। ଭକ୍ତବତ୍ସଳ ଯାହାକୁ ରକ୍ଷା କରନ୍ତି, ତା'ର କ'ଣ ଅନିଷ୍ଟ ହେବା ସମ୍ଭବ? ସେ ଏଭଳି ପଦ ଲାଭ କରିବ, ଯେଉଁଠି ଆଜି ପର୍ଯ୍ୟନ୍ତ କେହି ପହଞ୍ଚି ନାହାନ୍ତି ଏବଂ

ପହଞ୍ଚିବା ଅତ୍ୟନ୍ତ ଦୁଷ୍କର। ତିନି ଲୋକରେ ଯଶ ବିସ୍ତାର କରି ସେ ଶୀଘ୍ର ତୁମ ପାଖକୁ ଫେରି ଆସିବ।''

ରାଜା ଉତ୍ତାନପାଦ ନାରଦଙ୍କ ଉପଦେଶକ୍ରମେ ସମସ୍ତ ଭୋଗ-ବିଳାସରୁ ଉଦାସୀନ ହୋଇ ପୁତ୍ର ଚିନ୍ତାରେ ବୁଡ଼ି ରହିଲେ। ସେପଟେ ଧ୍ରୁବ ନାରଦଙ୍କ ଉପଦେଶ ଅନୁସାରେ ମଧୁବନକୁ ଯାଇ ମନ ଲଗାଇଦେଲେ ପ୍ରଭୁଭକ୍ତିରେ। ତାଙ୍କର ଉପାସନା ଧୀରେ ଧୀରେ କଠୋର ରୂପ ଧାରଣ କଲା। ଦିନ ପରେ ଦିନ, ମାସ ପରେ ମାସ ବିତି ଚାଲିଲା। ସେ କ୍ରମଶଃ କଇଁଥ, ବରକୋଳି, ଶୁଖିଲା ଘାସ ଓ ପତ୍ର ଖାଇ ଭଜନ କଲେ। ତୃତୀୟ ମାସରେ ନଅ ନଅ ଦିନ ଅନ୍ତରରେ କେବଳ ଜଳ ପାନ କରି ଓ ଚତୁର୍ଥ ମାସରେ କେବଳ ବାୟୁ ପାନ କରି ସମାଧିରେ ସ୍ଥିତ ହୋଇଗଲେ। ପଞ୍ଚମ ମାସରେ ଧ୍ରୁବ ଗୋଟିଏ ଗୋଡ଼ରେ ଠିଆ ହୋଇ ପ୍ରଭୁଙ୍କ ଚିନ୍ତନପୂର୍ବକ ଏଭଳି ଶ୍ୱାସ ରୁଦ୍ଧ କରିଦେଲେ ଯେ ତାଙ୍କ ଅସହ୍ୟ ତେଜରେ ତିନି ଲୋକ କମ୍ପମାନ ହେଲା। ତାଙ୍କ ପାଦ ଭାରରେ ପୃଥିବୀ ଏଭଳି କମ୍ପି ଉଠିଲା, ଯେପରି ଗୋଟିଏ ଛୋଟ ନୌକା ଉପରେ ବିରାଟ କାୟ ହାତୀ ଚଢ଼ିଗଲେ ନୌକା ଟଳମଳ ହୁଏ। ପ୍ରଭୁଙ୍କ ସହିତ ତାଙ୍କର ଅଭିନ୍ନତା ହୋଇଯିବା କାରଣରୁ ତାଙ୍କ ଶ୍ୱାସ ରୁଦ୍ଧ କରିବାର ପ୍ରଭାବରେ ତିନି ଲୋକର ଶ୍ୱାସ ରୁଦ୍ଧ ହୋଇଗଲା। ସମସ୍ତ ଲୋକ ଓ ଲୋକପାଳମାନେ ବ୍ୟାକୁଳ ହୋଇ ଶ୍ରୀହରିଙ୍କ ଶରଣ ପଶିଲେ। ଭଗବାନ ଦେବଗଣଙ୍କୁ ଆଶ୍ୱାସନା ଦେଇ କହିଲେ—''ତୁମେ ଚିନ୍ତିତ ହୁଅ ନାହିଁ। ଉତ୍ତାନପାଦର ପୁତ୍ର ଧ୍ରୁବର ତପ ପ୍ରଭାବରୁ ଏ ସବୁ ଘଟୁଛି। ମୁଁ ନିଜେ ଯାଇ ତା'ର ମନୋବାଞ୍ଛା ପୂର୍ଣ୍ଣ କରିବି।''

ଭଗବାନଙ୍କ ଠାରୁ ଆଶ୍ୱାସନା ପାଇ ଦେବଗଣ ନିଜ ନିଜ ଲୋକକୁ ପ୍ରସ୍ଥାନ କଲେ। ତା' ପରେ ଭକ୍ତବତ୍ସଳ ଶ୍ରୀହରି ନିଜର ପ୍ରିୟ ଭକ୍ତ ଧ୍ରୁବକୁ ଦେଖିବା ଲାଳସାରେ ଗରୁଡ଼ ପୃଷ୍ଠରେ ଆରୂଢ଼ ହୋଇ ପହଞ୍ଚିଲେ ଧ୍ରୁବଙ୍କ ତପସ୍ଥଳୀ ମଧୁବନରେ। ସେତେବେଳେ ଧ୍ରୁବ ଯୋଗାଭ୍ୟାସ ବଳରେ ପ୍ରଭୁଙ୍କର ବିଜୁଳି ସମ ଦୀପ୍ତିମନ୍ତ ମୂର୍ତ୍ତିକୁ ହୃଦୟରେ ଚିନ୍ତା କରୁଥିଲେ। ସହସା ସେ ରୂପ ବିଲୀନ ହୋଇଯିବାରୁ ସେ ମଣି ବିନା ଫଣୀ ପରି ବ୍ୟାକୁଳ ହୋଇ ଉଠିଲେ। ଆଖି ଖୋଲି ଦେଖିଲାବେଳକୁ ଚତୁର୍ଭୁଜଧାରୀ ମୂରତି ତାଙ୍କ ସମ୍ମୁଖରେ ବିରାଜମାନ।

ପ୍ରଭୁଙ୍କ ଦର୍ଶନ ପାଇ ଧ୍ରୁବଙ୍କର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା। ଜୀବନର ଚରମ ଲକ୍ଷ୍ୟକୁ ପାଇ ତାଙ୍କ ମନରେ ଅପାର କୁତୂହଳ ଜାତ ହେଲା।

ପ୍ରଭୁଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କର ମନପ୍ରାଣ ପ୍ରେମରେ ଅଧୀର ହୋଇ ଉଠିଲା। ସେ ଅପଲକ ନୟନରେ ପ୍ରଭୁଙ୍କର ରୂପ ଲାବଣ୍ୟକୁ ଏଭଳି ଦର୍ଶନ କରି ଚ୍ଛାଲିଲେ, ମନେ ହେଉଥିଲା ସତେ ଯେପରି ସେ ତାଙ୍କୁ ନେତ୍ର ମାଧ୍ୟମରେ ପିଇଯିବେ, ମୁଖରେ ଚୁମ୍ବନ ଦେବେ ଏବଂ ବାହୁରେ ଆଲିଙ୍ଗନ କରି ନିଜ ସହିତ ମିଶାଇ ଦେବେ। ସେ ଯୋଡ଼ହସ୍ତ ହୋଇ ପ୍ରଭୁଙ୍କୁ ସ୍ତୁତି କରିବାକୁ ଚ୍ଛାହୁଁଥାନ୍ତି, କିନ୍ତୁ ତାଙ୍କର ବାଣୀ ସ୍ଫୁରୁ ନ ଥାଏ। ଅନ୍ତର୍ଯାମୀ ଭଗବାନ ଧ୍ରୁବଙ୍କ ମନ କଥା ଜାଣିପାରି ହଠାତ୍ ବେଦମୟ ଶଙ୍ଖଟିକୁ ତାଙ୍କ ଗାଲରେ ଛୁଆଁଇ ଦେଲେ। ଶଙ୍ଖର ସ୍ପର୍ଶମାତ୍ରେ ବେଦମୟୀ ଦିବ୍ୟବାଣୀ ପ୍ରସ୍ଫୁଟିତ ହେଲା ତାଙ୍କ ଅନ୍ତର୍ହୃଦୟରେ। ସେ ଅତ୍ୟନ୍ତ ଭକ୍ତିପୂତ ଚିତ୍ତରେ ଗଦ୍‌ଗଦ କଣ୍ଠରେ ପ୍ରଭୁଙ୍କୁ ସ୍ତୁତି କରି କହିଲେ— ହେ ସର୍ବଶକ୍ତିମାନ୍ ପ୍ରଭୁ! ତୁମେ ମୋର ଅନ୍ତରରେ ପ୍ରବେଶ କରି ନିଜର ଅମିତ ଶକ୍ତି ପ୍ରଭାବରେ ମୋର ପ୍ରସୁପ୍ତ ବାଣୀ ସମେତ ସମସ୍ତ ଇନ୍ଦ୍ରିୟ ଓ ପ୍ରାଣରେ ଚେତନା ଭରିଦେଲ। ମୁଁ ତୁମ ପାଦତଳେ ବାରମ୍ବାର ବନ୍ଦନା କରୁଛି! ହେ ଦୟାମୟ! ଯେପରି କାଠ ବଙ୍କାଟଙ୍କା ଓ ସିଧାସଳଖ ହୋଇଥିବାରୁ ତହିଁରେ ଲାଗିଥିବା ନିଆଁ ମଧ୍ୟ ବଙ୍କା ଓ ସିଧା ଜଣାପଡ଼େ, ସେହିପରି ତୁମେ ଏକ ହୋଇ ମଧ୍ୟ ବିଭିନ୍ନ ପ୍ରାଣୀଙ୍କ ମଧ୍ୟରେ ଅନେକ ରୂପରେ ଦେଖାଯାଉଛ। ହେ ନାଥ! ପିତାମହ ବ୍ରହ୍ମାଙ୍କ ପ୍ରାର୍ଥନା କ୍ରମେ ତୁମେ ତାଙ୍କ ହୃଦୟରେ ଜ୍ଞାନ ପ୍ରକାଶ କରିଦେଲ। ତୁମ ଭଳି ଦୀନବନ୍ଧୁଙ୍କୁ କୌଣସି କୃତଜ୍ଞ ବ୍ୟକ୍ତି କେମିତି ବା ଭୁଲି ପାରିବ? ପ୍ରଭୁ! ଇନ୍ଦ୍ରିୟଙ୍କ ବିଷୟ ଓ ତହିଁରୁ ଜାତ ସୁଖ ତ ନରକରେ ମଧ୍ୟ ମିଳିଥାଏ। ମନୁଷ୍ୟ ଦେହ ପାଇ ଯିଏ ତୁମକୁ ଛାଡ଼ି ସେହି ସୁଖରେ ଆସକ୍ତ ହୁଏ, ସେ ନିଶ୍ଚିତ ରୂପେ ଅଭାଗା। ମାୟାରୂପୀ ପିଶାଚିନୀ ଅବଶ୍ୟ ତା'ର ମତିକୁ ହରଣ କରିନେଇଛି ବୋଲି ଜାଣ। ହେ ସ୍ୱାମୀ! ତୁମ ପାଦପଦ୍ମକୁ ଧ୍ୟାନ କରି ଭକ୍ତଜନଙ୍କୁ ଯେଉଁ ସୁଖ ମିଳେ, ତାହା ନିଜାନନ୍ଦସ୍ୱରୂପ ବ୍ରହ୍ମରେ ମଧ୍ୟ ନାହିଁ। ତେବେ କାଳରୂପୀ ତୀକ୍ଷ୍ଣ ଖଡ଼୍‌ଗ ପ୍ରହାର ପ୍ରତି ଭୟଭୀତ ଦେବଗଣଙ୍କୁ ସେ ସୁଖ ମିଳିବ ବା କିପରି?

ହେ ଦୟାମୟ! ତୁମେ ମୋତେ ସେଭଳି ସାଧୁ-ମହାତ୍ମାଙ୍କର ସାନ୍ନିଧ୍ୟ ଦିଅ, ଯେଉଁମାନେ ଦିବାନିଶି ତୁମ ଭକ୍ତିରେ ବିଲୀନ ରହନ୍ତି। ସେମାନଙ୍କ ସଙ୍ଗରେ ମୁଁ ତୁମ ଲୀଳା କଥା ରୂପୀ ସୁଧା ପାନ କରି କରି ଏଭଳି ପାଗଳ ହୋଇଯିବି, ଯଦ୍ଦ୍ୱାରା ନାନା ପ୍ରକାର ଦୁଃଖପୂରିତ ସଂସାରସାଗରକୁ ଅନାୟାସରେ ପାର ହୋଇଯିବି। ହେ କମଳନାଭ! ତୁମ ଚରଣକମଳ ମକରନ୍ଦ ସୌରଭରେ ଯେଉଁ ମହାତ୍ମାଙ୍କ ମନରୂପୀ

ଭ୍ରମର ଲୁବ୍ଧ ହୋଇଛି, ସେମାନଙ୍କ ସଙ୍ଗ ଲାଭ କରିଥିବା ମନୁଷ୍ୟ ତା'ର ନଶ୍ୱର ଦେହ ଏବଂ ତତ୍‌ସମ୍ବନ୍ଧିତ ପୁତ୍ର, ମିତ୍ର, ଗୃହ ଓ ସ୍ତ୍ରୀ ପ୍ରଭୃତିଙ୍କୁ ମନେ ପକାଏ ନାହିଁ। ହେ ପରମେଶ୍ୱର! ମୋ ଭଳି ଅବୋଧ ବାଳକ ତୁମର ପରମ ସ୍ୱରୂପକୁ କେମିତି ବା ଜାଣି ପାରିବ? କଳ୍ପ ଶେଷରେ ସମଗ୍ର ବିଶ୍ୱକୁ ନିଜ ଉଦରରେ ବିଲୀନ କରି ତୁମେ ଶେଷଶଯ୍ୟାରେ ବିଶ୍ରାମ କର ଏବଂ କଳ୍ପ ଆରମ୍ଭରେ ତୁମ ନାଭିପଦ୍ମରୁ ଏକ ସ୍ୱର୍ଣ୍ଣିମ ପଦ୍ମ ଜାତ ହୁଏ, ଯେଉଁଥିରୁ ପିତାମହ ବ୍ରହ୍ମା ସମେତ ସମଗ୍ର ଲୋକସୃଷ୍ଟି ବିସ୍ତାରିତ ହୋଇଥାଏ। ତୁମକୁ ମୋର ବାରମ୍ବାର ନମସ୍କାର। ତୁମେ ନାରାୟଣ ରୂପରେ ସକଳ ପ୍ରାଣୀଙ୍କ ହୃଦୟରେ ନିବାସ କରିଅଛ। ତୁମେ ସମସ୍ତ ଶକ୍ତିର ମୂଳ ଉତ୍ସ। ମୁଁ ତୁମ ଚରଣରେ ଶରଣ ପଶୁଛି। ତୁମ ପରମାନନ୍ଦମୂର୍ତ୍ତିରୂପୀ ଶ୍ରୀବିଗ୍ରହକୁ ଚିନ୍ତା କରି ଯେଉଁ ଭକ୍ତଜନ ନିଷ୍କାମ ଭାବରେ ତୁମକୁ ଭଜନ୍ତି, ସେମାନଙ୍କ ପାଇଁ ରାଜ୍ୟାଦି ଭୋଗ ମହତ୍ତ୍ୱହୀନ ହୋଇଯାଏ। ହେ ପ୍ରଭୁ! ଏହା ନିତାନ୍ତ ସତ୍ୟ ହୋଇଥିଲେହେଁ ଗାଈ ଯେପରି ତା'ର ନବଜାତ ଶିଶୁକୁ ଦୁଗ୍ଧ ପାନ କରାଇବା ସହିତ ବ୍ୟାଘ୍ର-ସିଂହାଦିଙ୍କ କବଳରୁ ସତତ ରକ୍ଷା କରିଥାଏ, ସେହିପରି ତୁମେ ଭକ୍ତ ପ୍ରଣତଜନଙ୍କ ଉପରେ କରୁଣା କରିବା ନିମନ୍ତେ ଆମ ଭଳି ସକାମ ଜୀବଙ୍କର କାମନା ପୂର୍ଣ୍ଣ କରି ଭବଭୟରୁ ରକ୍ଷା କରୁଥାଅ। ତୁମ ଚରଣରେ ମୋର ଶତ ଶତ ପ୍ରଣତି।

ସତ୍ୟସଙ୍କଳ୍ପ ଧ୍ରୁବଙ୍କର ଏଭଳି ସ୍ତୁତି ଶୁଣି ଭକ୍ତବତ୍ସଳ ଭଗବାନ ତାକୁ ପ୍ରଶଂସା କରିବା ସହିତ ହସି ହସି କହିଲେ—ରାଜକୁମାର! ତୁମର ମଙ୍ଗଳ ହେଉ। ମୁଁ ତୁମର ହାର୍ଦ୍ଦିକ ଇଚ୍ଛାକୁ ଭଲଭାବେ ଜାଣେ। ଏହି ସାମାନ୍ୟ ରାଜ୍ୟ ସୁଖ କ'ଣ, ମୁଁ ତୁମକୁ ଏଭଳି ପଦ ପ୍ରଦାନ କରିବି, ଯାହାକୁ ପାଇବା ଅନ୍ୟମାନଙ୍କ ପକ୍ଷେ ଅତ୍ୟନ୍ତ ଦୁଷ୍କର। ମୋ ଆଶୀର୍ବାଦରୁ ତୁମେ ସେହି ତେଜୋମୟ ଧ୍ରୁବଲୋକର ଅଧିକାରୀ ହେବ, ଯାହାକୁ ଆଶ୍ରୟ କରି ମେଢ଼ି ଚାରିପାଖେ ବଳଦ ଘୂରି ବୁଲିବା ପରି ଗ୍ରହ, ନକ୍ଷତ୍ର ଓ ତାରାଗଣ ଘୂରି ବୁଲନ୍ତି। କଳ୍ପ କ୍ଷୟରେ ଅନ୍ୟାନ୍ୟ ଲୋକ ବିନଷ୍ଟ ହୋଇଯିବା ପରେ ମଧ୍ୟ ସେହି ଧ୍ରୁବଲୋକ ବିନଷ୍ଟ ହେବ ନାହିଁ। ତାରାଗଣ ସହିତ ଧର୍ମ, ଅଗ୍ନି, କଶ୍ୟପ ଓ ଶୁକ୍ର ପ୍ରଭୃତି ନକ୍ଷତ୍ର ଓ ଋଷିଗଣ ମଧ୍ୟ ତାହାକୁ ପ୍ରଦକ୍ଷିଣା କରୁଥିବେ।

ହେଲେ ତୁମକୁ ମୋର ଗୋଟିଏ କଥା ମାନିବାକୁ ପଡ଼ିବ। ତୁମ ମନରେ ରାଜପଦର ଅଭିଳାଷ ଥିଲା। ତେଣୁ ତାହା ମଧ୍ୟ ମୁଁ ପୂର୍ଣ୍ଣ କରିଦେବାକୁ ଚାହେଁ।

ତୁମ ବାପା ତୁମକୁ ରାଜ୍ୟ ସିଂହାସନ ଅର୍ପଣ କରି ବନକୁ ଚାଲିଯିବା ପରେ ତୁମକୁ ଛତିଶ ହଜାର ବର୍ଷ ପର୍ଯ୍ୟନ୍ତ ଧର୍ମପୂର୍ବକ ପୃଥିବୀକୁ ପାଳନ କରିବାକୁ ପଡ଼ିବ। ମୋ କୃପାରୁ ତୁମର ଇନ୍ଦ୍ରିୟରେ ଯଥେଷ୍ଟ ଶକ୍ତି ବିଦ୍ୟମାନ ରହିବ। ଏଠାକାର କାର୍ଯ୍ୟ ସମ୍ପାଦନ କରି ତୁମେ ପୁନଃ ମୋତେ ପାଇ ପାରିବ।

ଏହିଭଳି ଧ୍ରୁବ ଦ୍ୱାରା ପୂଜିତ ହୋଇ ଏବଂ ତାକୁ ଅନେକ ବର ଦେବା ସହିତ ନିଜ ଲୋକ ପ୍ରଦାନ କରି ଗରୁଡ଼ଧ୍ୱଜ ଶ୍ରୀହରି ଦେଖୁ ଦେଖୁ ସ୍ୱଧାମକୁ ଫେରିଗଲେ। ପାଇଥିବା ଧନ ଚାଲିଗଲେ ଯେପରି ବ୍ୟକ୍ତି ଅଧୀର ହୋଇଉଠେ, ନେତ୍ର ସମ୍ମୁଖରୁ ପ୍ରଭୁ ଚାଲିଯିବାରୁ ଧ୍ରୁବ ସେହିପରି ବ୍ୟାକୁଳ ହୋଇ ଉଠିଲେ। ସେ ସେହିଠାରେ ଭୂମିଷ୍ଠ ହୋଇ ପ୍ରଭୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ। ପ୍ରଭୁଙ୍କ ଚରଣ ସେବାରୁ ଧ୍ରୁବଙ୍କ ମନୋବାଞ୍ଛିତ ବସ୍ତୁ ମିଳିଯିବା କାରଣରୁ ତାଙ୍କ ସଙ୍କଳ୍ପ ନିବୃତ୍ତ ହୋଇଗଲା ସତ, କିନ୍ତୁ ତାଙ୍କ ଚିତ୍ତ ଅଧିକ ପ୍ରସନ୍ନ ହେଲା ନାହିଁ। ସେ ମନେ ମନେ ଅପାର ଗ୍ଲାନି ଅନୁଭବ କଲେ। ଭାବିଲେ, ହାୟ! ସତରେ ମୁଁ କେଡ଼େ ହତଭାଗ୍ୟ! ଊର୍ଦ୍ଧ୍ୱରେତା ମୁନିଗଣ ଯାହାଙ୍କୁ ସମାଧି ବଳରେ ଅନେକ ଜନ୍ମ ତପସ୍ୟା କରି ମଧ୍ୟ ପାଇ ପାରନ୍ତି ନାହିଁ, ତାଙ୍କ ପଦାରବିନ୍ଦକୁ ମୁଁ ମାତ୍ର ଛଅ ମାସ ଭିତରେ ପାଇଗଲି। କିନ୍ତୁ ମନ ମଧ୍ୟରେ ବାସନା ଭରି ରହିଥିବା କାରଣରୁ ମୋତେ ତାଙ୍କଠାରୁ ଏତେ ଦିନ ଦୂରେଇ ରହିବାକୁ ପଡ଼ିଲା। ନଚେତ୍ ଏବେ ମୁଁ ପ୍ରଭୁଙ୍କ ସଙ୍ଗରେ ପରମ ଧାମକୁ ଚାଲିଯାଇଥାନ୍ତି। ଦେବଗଣ ଈର୍ଷା ଭାବ ରଖି ନିଶ୍ଚୟ ମୋ ବୁଦ୍ଧିକୁ ମୋହିତ କରିଦେଲେ। ମୁଁ ଦୁଷ୍ଟ ଦେବର୍ଷି ନାରଦଙ୍କ ହିତ କଥା ମାନିଲି ନାହିଁ। ମୁଁ ଅଯଥା ନିଜର ସାବତ ମାଆ ଓ ଭାଇକୁ ଶତ୍ରୁ ଭାବି ତାଙ୍କ ପ୍ରତି ଦ୍ୱେଷ ଭାବ ପୋଷଣ କଲି। ଯେଉଁ ଶ୍ରୀହରିଙ୍କୁ ପ୍ରସନ୍ନ କରିବା ଅତି କଠିନ, ତାଙ୍କୁ ତପସ୍ୟା ବଳରେ ପ୍ରସନ୍ନ କରି ମୁଁ ଯାହା ବି ଯାଚନା କଲି, ସେସବୁ ଆୟୁହୀନ ପ୍ରାଣୀକୁ ଚିକିତ୍ସା କରିବା ଭଳି ବ୍ୟର୍ଥ ଅଟେ। ମୁଁ ସତରେ କେଡ଼େ ଅଭାଗା! ସଂସାର ବନ୍ଧନ ବିନାଶକ ପ୍ରଭୁଙ୍କୁ ମୁଁ ମାଗିଲି ସଂସାର ସୁଖ। ମୋ ଭଳି ହୀନକର୍ମା ଆଉ କିଏ ବା ହୋଇପାରେ! ଆଜନ୍ମ କାଙ୍ଗାଳ ଜଣେ ଚକ୍ରବର୍ତ୍ତୀ ସମ୍ରାଟଙ୍କୁ ପ୍ରସନ୍ନ କରି ତାଙ୍କୁ ଖୁଦ ମୁଠାଏ ମାଗିବା ପରି ଆତ୍ମାନନ୍ଦ ପ୍ରଦାତା ଶ୍ରୀହରିଙ୍କୁ ମୁଁ ଅଭିମାନ ପୋଷଣ କରୁଥିବା ଉଚ୍ଚପଦ ମାଗିଲି!

ଭକ୍ତରାଜ ଧ୍ରୁବ ମନ ମଧ୍ୟରେ ଏଭଳି ଅନେକ ପଶ୍ଚାତ୍ତାପ କରି ଚାଲିଥାନ୍ତି। ସତେ ଯେପରି ଏତଦ୍ୱାରା ସେ ସମସ୍ତଙ୍କୁ ଜଣାଇ ଦେବାକୁ ଚାହୁଁଥାନ୍ତି ଯେ ଭଗବାନଙ୍କ

ଭଜନରେ ମନ ଦେଉଥିବା ବ୍ୟକ୍ତି କାହା ପ୍ରତି ଦ୍ୱେଷଭାବ ରଖିବା ଉଚିତ ନୁହେଁ। ଏହା ଭକ୍ତିରେ ଅନ୍ତରାୟ ସୃଷ୍ଟି କରେ। ତା' ଛଡ଼ା ତୁଚ୍ଛ ସଂସାର କାମନାରେ ପ୍ରଭୁଙ୍କୁ ଭଜିବା ଘୋର ମୂର୍ଖତାର ଚିହ୍ନ। ପ୍ରଭୁଙ୍କୁ ପାଇବା ଉଦ୍ଦେଶ୍ୟରେ ତାଙ୍କୁ ଭଜିବା ଉଚିତ। ପ୍ରଭୁଙ୍କୁ ପ୍ରସନ୍ନ କରିଦେଲେ ଆଉ କ'ଣ ବା ପାଇବା ବାକି ରହିଯିବ!

ଧ୍ରୁବ ଏଥର ତପସ୍ୟାରୁ ବିରତ ହୋଇ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ। ଏଣେ ରାଜା ଉତ୍ତାନପାଦ ପୁତ୍ରର ଆଗମନ ଖବର ପାଇ ଆନନ୍ଦରେ ବିଭୋର ହୋଇ ପଡୁଥାନ୍ତି। ଯମଲୋକରୁ ମଣିଷ ଫେରି ଆସିବା କଥା ବିଶ୍ୱାସ ନ ହେବା ଭଳି ରାଜାଙ୍କୁ ଏ କଥା ବିଶ୍ୱାସ ହେଉ ନ ଥାଏ। କିନ୍ତୁ ଦେବର୍ଷିଙ୍କ କଥା ମନେ ପଡ଼ିବାରୁ ତାଙ୍କୁ ବିଶ୍ୱାସ ହୋଇଗଲା। ସମାଚାର ଶୁଣାଇଥିବା ବ୍ୟକ୍ତିକୁ ସେ ଉପହାରସ୍ୱରୂପ ବହୁମୂଲ୍ୟ ହାର ପ୍ରଦାନ କଲେ ଏବଂ ଅନେକ ପାତ୍ରମନ୍ତ୍ରୀ, ବେଦପାଠୀ ବ୍ରାହ୍ମଣ ଓ କୁଳବୃଦ୍ଧଙ୍କୁ ସଙ୍ଗରେ ଧରି ଧ୍ରୁବଙ୍କୁ ପାଛୋଟି ଆଣିବା ପାଇଁ ନଗରରୁ ବାହାରି ପଡ଼ିଲେ। ଶଙ୍ଖ, ଦୁନ୍ଦୁଭି, ମୃଦଙ୍ଗ ପ୍ରଭୃତି ବିବିଧ ମାଙ୍ଗଳିକ ବାଦ୍ୟରେ ନଗର ଆନନ୍ଦମୁଖର ହୋଇଉଠିଲା। ମାଆ ସୁନୀତି ଓ ସୁରୁଚି ଦୁହେଁ ସ୍ୱର୍ଣ୍ଣଆଭୂଷଣ ବିମଣ୍ଡିତ ହୋଇ ରାଜକୁମାର ଉତ୍ତମଙ୍କ ସଙ୍ଗରେ ପାଲିଙ୍କି ଚଢ଼ି ଧ୍ରୁବଙ୍କୁ ପାଛୋଟି ଆଣିବାକୁ ଯାଉଥାନ୍ତି। ନଗର ବାହାର ଉଦ୍ୟାନ ନିକଟରେ ଧ୍ରୁବଙ୍କୁ ଦେଖିଦେବା କ୍ଷଣି ରାଜା ଉତ୍ତାନପାଦ ସହସା ରଥରୁ ଡେଇଁପଡ଼ି ତାଙ୍କୁ ଦୁଇ ଭୁଜ ବଢ଼ାଇ କୋଳକୁ ଉଠାଇନେଲେ। ତାଙ୍କ ନୟନରୁ ଶୀତଳ ଆନନ୍ଦାଶ୍ରୁ ବହି ଚାଲିଲା। ସେ ଧ୍ରୁବଙ୍କର ମସ୍ତକ ଶୁଙ୍ଘି ପ୍ରେମାଶ୍ରୁରେ ତାଙ୍କର ମସ୍ତକ ଧୋଇଦେଲେ। ତାଙ୍କୁ ଲାଗିଲା ସେ ପୁତ୍ରକୁ ନୁହେଁ, ଜଣେ ପରମ ଭକ୍ତକୁ କୋଳ କରି ଧନ୍ୟ ହୋଇଛନ୍ତି! ତାଙ୍କର ବହୁ ଦିନର ଅଭିଳାଷ ଆଜି ପୂର୍ଣ୍ଣ ହୋଇଛି।

ଭକ୍ତ ଅଗ୍ରଣୀ ଧ୍ରୁବ ବାପାଙ୍କ ପାଦତଳେ ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଇ ତା'ପରେ ଦୁଇ ମାଆଙ୍କର ଚରଣ ବନ୍ଦନା କଲେ। ସାନ ମାଆ ସୁରୁଚି ତାଙ୍କୁ ଉଠାଇ ଆଣି ବହୁ ସମୟ ପର୍ଯ୍ୟନ୍ତ ହୃଦୟରେ ଲଗାଇ ରଖିଲେ ଏବଂ ଅଶ୍ରୁଗଦ୍‌ଗଦ କଣ୍ଠରେ ଆଶୀର୍ବାଦ ଦେଇ କହିଲେ—"ବତ୍ସ! ଚିରଞ୍ଜୀବୀ ହୁଅ!" ଆହାଃ! ପ୍ରଭୁଙ୍କ ଭକ୍ତିର କେଡ଼େ ପ୍ରଭାବ! ଯେଉଁ ମାଆ ଦିନେ ଧ୍ରୁବଙ୍କୁ ବାପାଙ୍କ କୋଳରୁ ହାତ ଧରି ଟାଣି ତଳକୁ ଓହ୍ଲାଇ ଦେଇଥିଲା, ସେ ଆଜି ତାଙ୍କୁ କୋଳକରି ନିଜକୁ ଧନ୍ୟ ମଣୁଛି! ଏହା କୌଣସି ଆଶ୍ଚର୍ଯ୍ୟର କଥା ନୁହେଁ। ସେଇଥିପାଇଁ ତ କୁହାଯାଇଛି ଯେ ଜଳ ଯେପରି ସ୍ୱାଭାବିକ ନିମ୍ନ ଆଡ଼କୁ ଗତି କରେ, ସେହିପରି ମୈତ୍ରୀ ପ୍ରଭୃତି ଗୁଣ

କାରଣରୁ ଭଗବାନ ଯାହା ଉପରେ ସନ୍ତୁଷ୍ଟ ହୋଇଯାଆନ୍ତି, ସକଳ ପ୍ରାଣୀ ତା' ନିକଟରେ ନତମସ୍ତକ ହୁଅନ୍ତି।

ଧ୍ରୁବ ଓ ଉତ୍ତମ ଦୁଇ ଭାଇ ପରସ୍ପରକୁ କୁଣ୍ଢେଇ ପକାଇଲେ। ଦୁହିଁଙ୍କର ନେତ୍ର ଲୋତକପୂର୍ଣ୍ଣ ହୋଇଗଲା ଓ ରୋମ ଟାଙ୍କୁରି ଉଠିଲା। ତା'ପରେ ମାଆ ସୁନୀତି ଧ୍ରୁବଙ୍କୁ କୋଳେଇ ନେଇ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଆଉଁସି ପକାଇଲେ। ପୁତ୍ରସ୍ନେହ ହେତୁ ତାଙ୍କ ନେତ୍ରରୁ ଆନନ୍ଦାଶ୍ରୁ ଓ ସ୍ତନରୁ ଦୁଗ୍ଧ ଧାର ବହି ଗ୍ଲିଲା। ସେ ଧ୍ରୁବଙ୍କର ସୁକୋମଳ ଅଙ୍ଗ ସ୍ପର୍ଶ କରି ପୂର୍ବର ସବୁ ଦୁଃଖ ଭୁଲିଗଲେ। ସୁନୀତିଙ୍କୁ ଲକ୍ଷ୍ୟ କରି ପୁରବାସୀ କହିଲେ—''ରାଣୀ ମାଆ! ତୁମେ ଧନ୍ୟ! ବଡ଼ ଭାଗ୍ୟର କଥା ଯେ ରାଜକୁମାର ଶରଣାଗତଭୟହାରୀ ଶ୍ରୀହରିଙ୍କ ସାନ୍ନିଧ୍ୟ ଲାଭ କରି ଫେରିଛନ୍ତି। ସେ ନିଶ୍ଚୟ ଆମର ରକ୍ଷକ ହେବେ।''

ଏହିପରି ବହୁମାନ ପାଇ ଭକ୍ତରାଜ ଧ୍ରୁବ ପ୍ରଜା-ପରିଜନଙ୍କ ସହିତ ନଗରରେ ପ୍ରବେଶ କଲେ। ନଗରର ସାଜସଜ୍ଜା ଦେଖି ଲାଗୁଥାଏ ସତେ ଅବା ଧରାପୃଷ୍ଠକୁ ଇନ୍ଦ୍ରପୁରୀ ଓହ୍ଲାଇ ଆସିଛି କି? ପ୍ରତି ଦ୍ୱାରରେ ପୂର୍ଣ୍ଣ କଳସ ବସିଥାଏ, ଦୀପ ଜଳୁଥାଏ। ସଧବା ନାରୀମାନେ ଦଳ ଦଳ ହୋଇ ହୁଳହୁଳି ପକାଇ ଧ୍ରୁବଙ୍କୁ ବନ୍ଦାପନା କରୁଥାନ୍ତି। କେହି କେହି ଦୁବ, ଅକ୍ଷତ ଓ ନାନା ଜାତିର ଫୁଲରେ ତାଙ୍କୁ ସ୍ୱାଗତ ଜଣାଉଥାନ୍ତି ତ ଆଉ କେହି କହି ତାଙ୍କ ଭକ୍ତିକୁ ପ୍ରଶଂସା କରୁଥାନ୍ତି। ଏହିଭଳି ନାନା ସମ୍ଭାରରେ ଧ୍ରୁବ ରାଜବାଟୀରେ ପ୍ରବେଶ କଲେ।

ରାଜା ଉତ୍ତାନପାଦ ଦେବର୍ଷି ନାରଦଙ୍କ ମୁଖରୁ ପୁତ୍ରର ଯେଉଁ ଅଦ୍ଭୁତ ପ୍ରଭାବ କଥା ଶୁଣିଥିଲେ, ତାହା ଏବେ ସ୍ୱଚକ୍ଷୁରେ ଦେଖି ଆଚମ୍ବିତ ହୋଇଗଲେ। ରାଜକୁମାର ଧ୍ରୁବ ତରୁଣାବସ୍ଥା ପ୍ରାପ୍ତ ହୁଅନ୍ତେ ପ୍ରଜାଜନଙ୍କର ତାଙ୍କ ପ୍ରତି ଅନୁରାଗ ଲକ୍ଷ୍ୟ କରି ରାଜା ଉତ୍ତାନପାଦ ତାଙ୍କୁ ଅଖିଳ ଭୂମଣ୍ଡଳର ରାଜପଦରେ ଅଭିଷିକ୍ତ କରାଇଦେଲେ ଏବଂ ନିଜେ ସଂସାରରୁ ବିରକ୍ତ ହୋଇ ପ୍ରଭୁଭକ୍ତିରେ ମନ ନିବେଶ କଲେ। ପ୍ରଜାବତ୍ସଳ ଧ୍ରୁବ ଭଗବାନଙ୍କ ଆଜ୍ଞା ମନେକରି ଗୁରୁଜନଙ୍କ ପରାମର୍ଶକ୍ରମେ ଅତି ସୁନ୍ଦରଭାବେ ରାଜ୍ୟ ଶାସନ କଲେ। ତାଙ୍କ ଔରସରୁ ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ଜନ୍ମ ହେଲେ।

ଧ୍ରୁବଙ୍କ ରାଜତ୍ୱ କାଳରେ ତାଙ୍କର ସାନ ଭାଇ ଉତ୍ତମ ମୃଗୟାକୁ ଯାଇଥିବାବେଳେ ଅକସ୍ମାତ୍ ଯକ୍ଷଙ୍କ ଦ୍ୱାରା ନିହତ ହେବାରୁ ସେ କୁପିତ ହୋଇ ଯକ୍ଷମାନଙ୍କ ଉପରେ ଭୀଷଣ ଆକ୍ରମଣ କଲେ। ଅସଂଖ୍ୟ ଯକ୍ଷ ପ୍ରାଣ ହରାଇଲେ। ତାଙ୍କର ଅମିତ

ପ୍ରଭାବରେ ଯକ୍ଷଗଣ 'ତ୍ରାହି ତ୍ରାହି' କହି ପଳାୟନ କଲେ । ପରିଶେଷରେ ସ୍ୱାୟଂଭୁବ ମନୁ ଆସି ଧ୍ରୁବଙ୍କୁ ବୁଝାଇ କହିଲେ—''ବତ୍ସ ଧ୍ରୁବ! ସର୍ବାତ୍ମା ଶ୍ରୀହରି ତିତିକ୍ଷା, କରୁଣା, ମୈତ୍ରୀ ଓ ସମତ୍ୱ ଗୁଣରେ ପ୍ରସନ୍ନ ହୁଅନ୍ତି । ତେଣୁ ତୁମ ଭଳି ଶ୍ରୀହରିଙ୍କର ପରମ ଭକ୍ତକୁ ଯୁଦ୍ଧରେ ଏଭଳି ଅସଂଖ୍ୟ ନିରୀହ ଯକ୍ଷଙ୍କୁ ସଂହାର କରିବା ଶୋଭନୀୟ ନୁହେଁ । ତୁମ ଭାଇର ମୃତ୍ୟୁରେ ତୁମେ ସନ୍ତପ୍ତ ହେବା ସ୍ୱାଭାବିକ, ମାତ୍ର ହିଂସା ଏହାର ପ୍ରତିକାର ହୋଇ ନ ପାରେ । ଜୀବ କର୍ମାଧୀନ ହୋଇ କାଳ କବଳରେ ସୁଖ-ଦୁଃଖ ଭୋଗୁଥାଏ । ତୁମ ଭାଇ ପ୍ରତି ଯାହା କିଛି ଘଟିଗଲା, ସେସବୁ ଈଶ୍ୱରସୃଷ୍ଟ । ତୁମେ ଅଯଥା କୁବେରଙ୍କ ଅନୁଚରଙ୍କୁ ସଂହାର କର ନାହିଁ ।'' ଏହିପରି ଉପଦେଶ ଦେଇ ସ୍ୱାୟଂଭୁବ ମନୁ ଧ୍ରୁବଙ୍କ ଦ୍ୱାରା ପୂଜିତ ହୋଇ ଋଷି-ମହର୍ଷିଙ୍କ ସଙ୍ଗେ ନିଜ ଲୋକକୁ ଚାଲିଗଲେ । ମନୁଙ୍କର ଉପଦେଶରେ ଧ୍ରୁବଙ୍କ କ୍ରୋଧ ଶାନ୍ତ ହେଲା । ସେ ତାଙ୍କ ବଚନ ଶିରୋଧାର୍ଯ୍ୟ କରି ଯୁଦ୍ଧରୁ ବିରତ ହୋଇଗଲେ ।

ଧ୍ରୁବଙ୍କର ଏଭଳି ବିନୀତ ଭାବ ଓ ଆଜ୍ଞା ପାଳନରେ ପ୍ରସନ୍ନ ହୋଇ ଯକ୍ଷରାଜ କୁବେର ତାଙ୍କୁ ବର ମାଗିବାକୁ କହିଲେ । ଧ୍ରୁବ କିନ୍ତୁ ସାବଧାନ ହୋଇ ସାରିଥାନ୍ତି । ସେ ସକାମଭାବର ଅପକାର ଆଗରୁ ବୁଝି ସାରିଥିଲେ, ତେଣୁ କୌଣସି ସାଂସାରିକ ପଦାର୍ଥ ନ ମାଗି ଶ୍ରୀହରିଙ୍କ ଜନ୍ମ-ମୃତ୍ୟୁବିନାଶକ ଅଖଣ୍ଡ ସ୍ମୃତି ମାଗିଲେ । କୁବେରଙ୍କ ଠାରୁ ହରିଭକ୍ତିର ବରଦାନ ପାଇ ଭକ୍ତରାଜ ଧ୍ରୁବ ନିଜ ରାଜବାଟୀକୁ ଫେରି ଆସିଲେ । ସେଠାରେ ଭୂରି ଦକ୍ଷିଣାବିଶିଷ୍ଟ ଅନେକ ଯଜ୍ଞ ଦ୍ୱାରା ଯଜ୍ଞପୁରୁଷ ଭଗବାନଙ୍କୁ ଆରାଧନା କଲେ । ଏହିପରି ଐଶ୍ୱର୍ଯ୍ୟଭୋଗ ଦ୍ୱାରା ପୁଣ୍ୟ ଏବଂ ଭୋଗ ପରିତ୍ୟାଗପୂର୍ବକ ଯାଗଯଜ୍ଞ ଦ୍ୱାରା ପାପ କ୍ଷୟ କରି ଛତିଶ ହଜାର ବର୍ଷ ପର୍ଯ୍ୟନ୍ତ ରାଜ୍ୟ ଶାସନ ସାରି ପରିଶେଷରେ ନିଜର ପୁଅ ଉତ୍କଳକୁ ରାଜା କରିଦେଲେ । ତା'ପରେ ସେ ସଂସାରର ନଶ୍ୱରତା ଅନୁଭବ କରି ବଦରିକାଶ୍ରମରେ ପ୍ରଭୁଙ୍କ ଆରାଧନା କରିବାକୁ ଚାଲିଗଲେ । ସେଠାରେ ଅହର୍ନିଶ ସାଧନାରତ ହେବାରୁ ତାଙ୍କ ହୃଦୟରେ ଏଭଳି ପ୍ରଭୁଭକ୍ତି ଜାଗ୍ରତ ହେଲା ଯେ ଆନନ୍ଦାଶ୍ରୁରେ ତାଙ୍କର ନେତ୍ର ବାରମ୍ବାର ପୂରିତ ହୋଇଯାଉଥିଲା । ହୃଦୟ ଦ୍ରବୀଭୂତ ଓ ଦେହ ରୋମାଞ୍ଚିତ ହୋଇ ଉଠୁଥିଲା । ତାଙ୍କର ଦେହାଭିମାନ ବିଗଳିତ ହୋଇଯିବାରୁ 'ସେ ଯେ ଧ୍ରୁବ'—ତାଙ୍କର ଏ ଜ୍ଞାନ ରହିଲା ନାହିଁ, ସେ ନିଜକୁ ଭୁଲିଗଲେ ।

କିଛି ଦିନ ଅନ୍ତେ ହଠାତ୍ ଧ୍ରୁବଙ୍କ ସମ୍ମୁଖରେ ଚତୁର୍ଦିଗକୁ ଆଲୋକିତ କରି ଗୋଟିଏ ବିମାନ ଆସି ପହଞ୍ଚିଲା, ଲାଗୁଥିଲା ସତେ ଯେପରି ପୂର୍ଣ୍ଣ ଚନ୍ଦ୍ର ଉଦୟ

ହୋଇଗଲେ କି? ସେଥିରେ ବିରାଜମାନ ଥିଲେ କିରୀଟ, କୁଣ୍ଡଳ ଓ ଗଦାଧାରୀ ଭଗବାନଙ୍କର ଦୁଇ ଜଣ ପାର୍ଷଦ। ତାଙ୍କୁ ଦେଖି ଧ୍ରୁବ ଧଡ଼ପଡ଼ ହୋଇ ଉଠିପଡ଼ି ପ୍ରଭୁଙ୍କ ନାମ ଉଚ୍ଚାରଣପୂର୍ବକ ଦୁହିଙ୍କୁ ପ୍ରଣାମ ଜଣାଇ ଅବନତ ମସ୍ତକରେ ଯୋଡ଼ହସ୍ତପୂର୍ବକ ତାଙ୍କ ସମ୍ମୁଖରେ ଠିଆ ହୋଇ ରହିଲେ। ଭଗବଦ୍‌ପାର୍ଷଦ ସୁନନ୍ଦ ଓ ନନ୍ଦ ମୃଦୁ ମୃଦୁ ହସି ଧ୍ରୁବଙ୍କୁ କହିଲେ—"ରାଜନ୍! ଆମେ ଦୁହେଁ ଭଗବାନ ବିଷ୍ଣୁଙ୍କର ପାର୍ଷଦ। ପ୍ରଭୁଙ୍କ ଆଜ୍ଞାରେ ତୁମକୁ ପ୍ରଭୁଙ୍କ ନିକଟକୁ ନେଇଯିବାକୁ ଆସିଛୁ। ଯେଉଁ ଦିବ୍ୟ ଲୋକକୁ ତୁମର ପୂର୍ବପୁରୁଷମାନେ ଯାଇପାରି ନାହାନ୍ତି, ତୁମେ ସେଭଳି ଧ୍ରୁବ ଲୋକର ଅଧିକାରୀ ହୋଇଛ। ସୂର୍ଯ୍ୟ, ଚନ୍ଦ୍ର ଓ ତାରକାଗଣ ତୁମକୁ ନିତ୍ୟ ପ୍ରଦକ୍ଷିଣା କରିବେ। ଏବେ ଦୟାକରି ପ୍ରଭୁଙ୍କ ପ୍ରେରିତ ବିମାନରେ ବିରାଜମାନ ହୁଅ।"

ଭଗବଦ୍‌ପାର୍ଷଦଙ୍କ ବଚନ ଶୁଣି ଧ୍ରୁବ ସଂଧ୍ୟାବନ୍ଦନ ପ୍ରଭୃତି ନିତ୍ୟ କର୍ମ ସାରି ବଦ୍ରିକାଶ୍ରମର ସକଳ ମୁନି-ଋଷିଙ୍କୁ ପ୍ରଣତି ଜଣାଇ ଯୋଡ଼ହସ୍ତରେ ବିଦାୟ ମାଗିଲେ। ସେମାନଙ୍କର ଅକୁଣ୍ଠ ଆଶୀର୍ବାଦ ଲାଭ କରି ସେ ବିମାନକୁ ପୂଜା ଓ ପ୍ରଦକ୍ଷିଣା କରିବା ସଙ୍ଗେ ସଙ୍ଗେ ପାର୍ଷଦମାନଙ୍କୁ ପ୍ରଣାମ ଜଣାଇଲେ। ତା'ପରେ ସୁଦୀପ୍ତ କାନ୍ତି ଧାରଣ କରି ବିମାନରେ ଆରୂଢ଼ ହେବାକୁ ବାହାରିଛନ୍ତି କି ନାହିଁ ତାଙ୍କ ସମ୍ମୁଖରେ କାଳଦେବ ମୂର୍ତ୍ତିମନ୍ତ ହୋଇ ଉଭା ହୋଇଗଲେ। କହିଲେ—"ଭକ୍ତରାଜ! ତୁମେ ମୋ ମସ୍ତକରେ ପାଦ ଦେଇ ବିମାନରେ ଆସୀନ ହୁଅ। ଏହାଦ୍ୱାରା ମର୍ତ୍ତ୍ୟଲୋକର ମର୍ଯ୍ୟାଦା ରହିଯିବ ଏବଂ ତୁମର ସମ୍ମାନ ମଧ୍ୟ ବଢ଼ିବ।" ଧ୍ରୁବ ମୃତ୍ୟୁର ମସ୍ତକରେ ପାଦ ଦେଇ ବିମାନରେ ଆରୂଢ଼ ହୁଅନ୍ତେ ଆକାଶରେ ଦୁନ୍ଦୁଭି, ମୃଦଙ୍ଗ, ଶଙ୍ଖ, ଢୋଲ ପ୍ରଭୃତି ବାଜା ବାଜି ଉଠିଲା, ଗନ୍ଧର୍ବଗଣ ପୁଷ୍ପବୃଷ୍ଟି ସହିତ ନୃତ୍ୟଗାନ କଲେ।

ଧ୍ରୁବ ବିମାନ ଚଢ଼ି ଭଗବାନଙ୍କ ଧାମକୁ ଯିବାକୁ ବାହାରିଛନ୍ତି କି ନାହିଁ ତାଙ୍କର ହଠାତ୍ ମାଆ ସୁନୀତିଙ୍କ କଥା ମନେପଡ଼ିଗଲା। ସେ ଦୁଃଖିନୀ ମାଆକୁ ଏକାକୀ ଛାଡ଼ି ଯିବାକୁ ମନା କରିବାରୁ ପାର୍ଷଦଗଣ ତାଙ୍କୁ ତାଙ୍କ ବିମାନ ଆଗରେ ଯାଉଥିବା ସୁନୀତିଙ୍କ ବିମାନ ଦେଖାଇଦେଲେ। ତା'ପରେ ଧୀରେ ଧୀରେ ଧ୍ରୁବଙ୍କ ବିମାନ ତ୍ରିଲୋକକୁ ପାର କରି ସପ୍ତର୍ଷିମଣ୍ଡଳର ଉର୍ଦ୍ଧ୍ୱସ୍ଥ ଭଗବାନଙ୍କର ନିତ୍ୟ ଧାମରେ ପହଞ୍ଚିଲା। ଧ୍ରୁବ ପରମପଦ ଲାଭ କରି ସମସ୍ତଙ୍କର ବନ୍ଦନୀୟ ହୋଇଗଲେ।

ଏ ଘଟଣାରେ ଚକିତ ହୋଇ ଦେବର୍ଷି ନାରଦ ପ୍ରଚେତାଙ୍କ ସଭାରେ ବୀଣା

କଲାଇ ଧ୍ରୁବଙ୍କର କୀର୍ତ୍ତିଗାନ ପୂର୍ବକ କହିଲେ—"ମତରେ, ମୋର ଶିଷ୍ୟ ଧ୍ରୁବ ତପସ୍ୟା ବଳରେ ପ୍ରଭୁଭକ୍ତି କରି ସେହି ଧାମ ଲାଭ କଲା, ଯାହା ବେଦବାଦୀ ମୁନିଙ୍କ ପାଇଁ ମଧ୍ୟ ଦୁର୍ଲଭ। ସେ ମାତ୍ର ପାଞ୍ଚ ବର୍ଷ ବୟସରେ ସାବତ ମାଆର କଠୋର ବଚନରେ ମର୍ମାହତ ହୋଇ ଦୁଃଖ-ସନ୍ତପ୍ତ ହୃଦୟରେ ବନଗମନ କଲା ଏବଂ ମୋ'ଠାରୁ ଉପଦେଶ ପାଇ ସେହି ଅଜେୟ ପ୍ରଭୁଙ୍କୁ ମଧ୍ୟ ଜିତିଗଲା, ଯିଏ କେବଳ ଭକ୍ତଙ୍କର ଭକ୍ତିରେ ହିଁ ବଶୀଭୂତ ହୁଅନ୍ତି। ଧନ୍ୟ ସେ ଧ୍ରୁବ! ଧନ୍ୟ ତାଙ୍କ ମାତା ସୁନୀତି!"



# ଶ୍ରୀ ମାଧବେନ୍ଦ୍ର ପୁରୀ

**ଯସ୍ମୈ ଦାତୁଂ ଚୋରୟନ୍ କ୍ଷୀରଭାଣ୍ଡଂ**
**ଗୋପୀନାଥଂ କ୍ଷୀରଚୋରାଭିଧୋଽଭୂତ୍ ।**
**ଶ୍ରୀଗୋପାଳଃ ପ୍ରାଦୁରାସୀଦ୍ ବଶଃ ସନ୍**
**ଯତ୍ ପ୍ରେମ୍ଣା ତଂ ମାଧବେନ୍ଦ୍ରଂ ନତୋଽସ୍ମି ॥**

"ଯାହାଙ୍କର ମନୋବାଞ୍ଛା ପୂର୍ଣ୍ଣ କରିବା ନିମନ୍ତେ ଠାକୁର କ୍ଷୀର ଚୋରି କରିଥିବା ଯୋଗୁଁ କ୍ଷୀରଚୋରା ଗୋପୀନାଥ ନାମରେ ପ୍ରସିଦ୍ଧ ହେଲେ, ଯାହାଙ୍କ ପ୍ରେମପରବଶ ହୋଇ ଶ୍ରୀଗୋପାଳ ଜୀଉ ପ୍ରକଟରୂପରେ ସେବା ସ୍ୱୀକାର କଲେ, ଭକ୍ତ ଶିରୋମଣି ସେହି ମାଧବେନ୍ଦ୍ର ପୁରୀଙ୍କ ଚରଣରେ ମୋର ଶତ ଶତ ପ୍ରଣାମ।"

ଠାକୁରଙ୍କର ପ୍ରତିଟି ନାମ ପଛରେ ତାଙ୍କର ଗୁଣ ଓ କର୍ମର ଲୀଳା ଲୁଚି ରହିଥାଏ। ପ୍ରଭୁଙ୍କର ଗୋବିନ୍ଦ, ଗୋପାଳ, ଦୀନବନ୍ଧୁ, ଦଇତାରି ପ୍ରଭୃତି ନାମ ତାଙ୍କର ଗୁଣ ଓ ଲୀଳାକୁ ସଂକେତ କରୁଛି। ତେବେ ଶ୍ରୀଗୋପୀନାଥ ଜୀଉଙ୍କ ନାମ ସଙ୍ଗେ ଯୋଡ଼ା ହୋଇଥିବା 'କ୍ଷୀରଚୋରା' ବିଶେଷଣଟି କ'ଣ ଚୋରି କର୍ମର ପ୍ରମାଣସ୍ୱରୂପ? ଭଗବାନ କ'ଣ କେଉଁଠି କ୍ଷୀର ଚୋରି କରିଥିଲେ? ଯଦି ହଁ, ତେବେ କେଉଁଠି, କାହିଁକି, କେତେବେଳେ ଓ କାହା ପାଇଁ? ଦ୍ୱାପର ଯୁଗରେ ଗୋପୀମାନଙ୍କ ଭାବନା ରକ୍ଷା କରିବା ପାଇଁ ଗୋପୀନାଥ ବାଳକୃଷ୍ଣ ରୂପରେ ତାଙ୍କ ଘରୁ କ୍ଷୀର, ଦହି, ଲହୁଣୀ ପ୍ରଭୃତି ଚୋରି କରିଥିବା କଥା ତ ସମସ୍ତେ ଜାଣନ୍ତି, କିନ୍ତୁ କଳିଯୁଗରେ ଯେ ସେ ଏଭଳି ବିଚିତ୍ର ଲୀଳା କରି ପାରନ୍ତି, ତାହା ଶୁଣି କାହାକୁ ବା ଆଶ୍ଚର୍ଯ୍ୟ ନ ଲାଗିବ! କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

ସକଳ ବିଦ୍ୟାରେ ପ୍ରବୀଣ ଶ୍ରୀଗୋପୀନାଥ ଜୀଉ ଏ କାର୍ଯ୍ୟ କାହିଁକି ବା ନ କରି ପାରିବେ! ଭକ୍ତ ପାଇଁ ତ ସେ ସବୁକିଛି କରିବାକୁ ପ୍ରସ୍ତୁତ ଅଛନ୍ତି ବୋଲି ସ୍ୱୟଂ ନିଜ ମୁଖରେ ଘୋଷଣା କରି ଦେଇଛନ୍ତି । ତେବେ ସେହି ଭାଗ୍ୟବାନ୍ ଭକ୍ତ କିଏ, ଯାହା ପାଇଁ ପ୍ରଭୁ ନିଜ ନାମ ଆଗରେ 'କ୍ଷୀରଚୋରା' ବିଶେଷଣ ଯୋଡ଼ିବାକୁ ମଧ୍ୟ କୁଣ୍ଠାବୋଧ କଲେ ନାହିଁ?

ପରିବ୍ରାଜକ-ବ୍ରତଧାରୀ ମାଧବେନ୍ଦ୍ର ପୁରୀ ହେଲେ ସେହି ଭାଗ୍ୟବାନ୍ ଭକ୍ତ । ସେ ଥିଲେ ପରମ ଅକିଞ୍ଚନ ସନ୍ନ୍ୟାସୀ । ଅଯାଚକ ବୃତ୍ତିରେ ଜୀବନ ବିତାଇ ପ୍ରଭୁଭକ୍ତିରେ ମଗ୍ନ ରହନ୍ତି । ଥରେ ସେ ବୃନ୍ଦାବନ ଦର୍ଶନ କରିବା ସମୟରେ ଗୋବର୍ଦ୍ଧନଙ୍କ ମହିମା ଶୁଣିଲେ । ଗିରିରାଜ ଗୋବର୍ଦ୍ଧନ କେବଳ ଗୋଟିଏ ପାହାଡ଼ ନୁହେଁ, ଶ୍ରୀକୃଷ୍ଣଙ୍କ ଲୀଳାରେ ସହଭାଗିତା କରିଥିବା ଜଣେ ମହାନ୍ ଭକ୍ତ । ଗୋପାଳ ରୂପରେ ଭଗବାନ ଶ୍ରୀକୃଷ୍ଣ ଗୋଚାରଣ କରିବା ସମୟରେ ପ୍ରଭୁଙ୍କ ପାଦସ୍ପର୍ଶ ପାଇ ସେ ଧନ୍ୟ ହୋଇଥିଲେ । ଗୋବର୍ଦ୍ଧନ ତାଙ୍କ ଗୃହରେ ପଦାର୍ପଣ କରିଥିବା ଗୋପାଳଙ୍କୁ ଓ ଗୋପବାଳକମାନଙ୍କୁ ଯଥେଷ୍ଟ ସେବା କରିଥିବାରୁ ହରିଭକ୍ତଙ୍କ ମଧ୍ୟରେ ମୁକୁଟମଣି ଅଟନ୍ତି । ଗୋପୀଜନ ଏହାଙ୍କୁ ପ୍ରଶଂସା କରି କହିଛନ୍ତି—

**ଦେଖ ଗୋ ଗିରି ଗୋବର୍ଦ୍ଧନ । ପୂର୍ବେ ଅନେକ କଲା ପୁଣ୍ୟ ॥**
**ହରି ଭକତ ଶିରୋମଣି । କୋମଳ କନ୍ଦ ତୃଣ ପାଣି ॥**
**ଏମାନ ଘେନିଣ ଆନନ୍ଦେ । ପୂଜିଲା ଗୋବିନ୍ଦର ପାଦେ ॥**

ଏଭଳି ଭକ୍ତରାଜଙ୍କୁ ପରିକ୍ରମା କରି ସମ୍ମାନ ଜଣାଇବା ପାଇଁ ମାଧବେନ୍ଦ୍ର ପୁରୀଙ୍କ ମନ ବଳିଲା । ସେ ବୃନ୍ଦାବନରୁ ଗୋବର୍ଦ୍ଧନ ଅଭିମୁଖେ ବାହାରିଲେ । ଗିରିରାଜଙ୍କୁ ଦର୍ଶନ କରି ଅତି ଆନନ୍ଦରେ ତାଙ୍କର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା । ନେତ୍ରରୁ ଆନନ୍ଦାଶ୍ରୁ ବହି ଚାଲିଲା । ଭାବିଲେ, ''ଇଏ ପ୍ରଭୁଙ୍କର ପରମ ଭକ୍ତ ଗୋବର୍ଦ୍ଧନ । ଏ ସମସ୍ତଙ୍କ ମନବାଞ୍ଛା ପୂର୍ଣ୍ଣ କରନ୍ତି । ତେଣୁ ମୋତେ ନିଶ୍ଚୟ ପ୍ରଭୁଭକ୍ତି ଦାନ କରିବେ ।''ଦେହରେ ବ୍ରଜଧୂଳି ବୋଳି ହୋଇ ସେ ଭକ୍ତିଭରା ହୃଦୟରେ ଗୋବର୍ଦ୍ଧନ ପରିକ୍ରମା କଲେ । ପରିକ୍ରମା ପୂର୍ଣ୍ଣ ହେବା ବେଳକୁ ପାଖାପାଖି ଦିନ ବାରଟା ହୋଇଗଲା । ଖରା ଦିନ । ଝାଞ୍ଜି ପବନ ବହୁଥାଏ । ମାଧବେନ୍ଦ୍ର ଗୋସାଇଁ ଗୋବିନ୍ଦ କୁଣ୍ଡର ଶୀତଳ ଜଳ ପିଇ ସେଇଠି ବସି ପ୍ରଭୁଙ୍କ ନାମ ଜପିଲେ । ଅନେକ ଦିନରୁ ଅଯାଚକ ବ୍ରତ ପାଳନ କରୁଥିବାରୁ କାହାକୁ କିଛି ନ ମାଗି ଉପବାସରେ ବସିଆଛନ୍ତି । ସହସା ସେ ଦେଖିବାକୁ ପାଇଲେ ଗୋଟିଏ

ଶ୍ୟାମଳ ରଙ୍ଗର ଗୋପବାଳକଟିଏ । ହାତରେ ଗୋଟିଏ କ୍ଷୀର ଢାଳ ଧରି ସେ ଠିଆ ହୋଇଛି । କଳା କଳା କୁଞ୍ଚିତ କେଶ । ଅତି ସୁନ୍ଦର ଅଙ୍ଗକାନ୍ତି । ଅଞ୍ଜନ ରଞ୍ଜିତ ବିଶାଳ ନେତ୍ର । ମନମୋହନ ରୂପ । ଏଭଳି ଉଦୁଉଦିଆ ଖରାରେ କୌଣସି ଲୋକ ସେପଟେ ଯାଆଆସ କରିବାର କଳ୍ପନା ମଧ୍ୟ କେହି କରି ପାରିବ ନାହିଁ । ପିଲାଟିକୁ ଦେଖି ମାଧବେନ୍ଦ୍ର ଗୋସାଇଁ ଆଚମ୍ୱିତ ହୋଇ ଅପଲକ ନେତ୍ରରେ ଚାହିଁ ରହିଲେ!

ପିଲାଟି ମୁରୁକି ମୁରୁକି ହସି ଚାଲିଆସି କହିଲା—"ବାବା! ଏମିତି କଟମଟ କରି ମୋତେ ଦେଖୁଛ କ'ଣ? ନିଅ, ତୁମ ପାଇଁ ମୁଁ କ୍ଷୀର ନେଇ ଆସିଛି । ଏମିତି ଉପବାସରେ କେତେ ଦିନ ପଡ଼ି ରହିବ? ନ ଖାଇ ନ ପିଇ ତୁମେ ସଦାବେଳେ କାହାକୁ ଧ୍ୟାନ କରୁଛ? ଏଇ ଗାଁରୁ ଭିକ୍ଷା କରି କିଛି କ୍ଷୀର-ଦହି ମାଗି ନ ଆଣୁଛ କାହିଁକି? ଗୋପାଳଙ୍କ ଘରେ କଣ କ୍ଷୀର-ଦହିର ଅଭାବ ଅଛି? ହଉ, ଉଠ! ମନବୋଧ କରି କ୍ଷୀର ପିଅ ।"

ପିଲାଟିର ରୂପ ସୌନ୍ଦର୍ଯ୍ୟ ଦର୍ଶନ କରି ମାଧବେନ୍ଦ୍ର ଗୋସାଇଁ ଭୋକ-ଶୋଷ ଭୁଲିଗଲେ । ପଚାରିଲେ—"ବାବୁ! ତୁ କିଏ? ତୋ ଘର କେଉଁଠି? ତୁ କେମିତି ଜାଣିଲୁ ଯେ ମୁଁ ଏଠି ଭୋକରେ ପଡ଼ିଛି ବୋଲି?"

"ବାବା! ଏଇ ପାଖରେ ଆମର ଗାଁଆ । ତୁମେ ଜାଣିନ କି? ଆମ ଗାଁକୁ ଆସି କେହି ଅଖିଆ ଲେଉଟେ ନାହିଁ । ଘରୁ ଅତିଥି ଭୋକିଲା ଫେରିଯିବା କେତେ ବଡ଼ ପାପ ଜାଣିଛଟି? ଦୁଆରୁ ଅତିଥି ଫେରିଗଲେ ସେ ସବୁତକ ପାପ ସେଇଠି ଛାଡ଼ିଦେଇ ପୁଣ୍ୟ ନେଇ ଚାଲିଯାଆନ୍ତି । କେହି ଯଦି କାହାକୁ କିଛି ନ ମାଗି ଅଯାଚକ ବ୍ରତ ଧରି ଭ୍ରମଣ କରୁଥାଏ, ତା'ର ଭୋଜନର ବନ୍ଦୋବସ୍ତ ମୁଁ କରେ । ଆମ ଗାଁର ସ୍ତ୍ରୀଲୋକେ ପାଣି ନେବାକୁ ଏଇ କୁଣ୍ଡକୁ ଆସିଥିଲେ । ସେମାନେ ଯାଇ ମୋତେ ତୁମ କଥା କହିଲେ । ମୁଁ ତାଙ୍କରି ଘରୁ ଗାଈ କ୍ଷୀର ନେଇ ଆସିଛି । ନିଅ, କ୍ଷୀର ପିଅ । ଏତିକି କହି ବାଳକଟି ବାବାଙ୍କ ହାତକୁ କ୍ଷୀର ଢାଳଟି ବଢ଼ାଇ ଦେଇ କହିଲା, "ହଉ ବାବା! ମୁଁ ଏବେ ଯାଉଛି । ଗାଈ ଦୁହିଁବାରେ ଡେରି ହେଲାଣି । ବାଛୁରୀମାନଙ୍କୁ ବାନ୍ଧି ଆସିଛି, ସେମାନେ ରଡ଼ି ଛାଡୁଥିବେ । ଚିନ୍ତା କରିବ ନାହିଁ, କିଛି ସମୟ ପରେ ମୁଁ ଆସି ଢାଳ ନେଇଯିବି ।"

ଏତିକି କହି ଶ୍ୟାମଳ ବାଳକଟି ଚାଲିଗଲା । ମାଧବେନ୍ଦ୍ର ଗୋସାଇଁ ଠାକୁରଙ୍କୁ ଭୋଗ ଲଗାଇ ସବୁ କ୍ଷୀର ପିଇଗଲେ । ଅନେକ ଦିନ ହେଲା କିଛି ଖାଇ ନ

ଥିବାରୁ ପ୍ରବଳ ଭୋକ ଲାଗୁଥିଲା। କ୍ଷୀର ତ ସେ ଜୀବନରେ ଅନେକ ଥର ପିଇଥିଲେ, କିନ୍ତୁ ଆଜି ତାଙ୍କୁ ଏ କ୍ଷୀରରେ ଏକ ଅଦ୍ଭୁତ ସ୍ୱାଦ ଅନୁଭବ ହେଲା। ଭାବିଲେ, "ଏଭଳି କ୍ଷୀର ତ ମୁଁ ମୋ ଜୀବନରେ ପିଇ ନାହିଁ। କଣ ମୋତେ ବେଶୀ ଭୋକ ଲାଗୁଥିଲା ବୋଲି ଏତେ ସ୍ୱାଦ ମିଳିଲା, ନା ସତରେ କ୍ଷୀର ଏତେ ସ୍ୱାଦିଷ୍ଟ? ଏହା ଗାଈ କ୍ଷୀର ନୁହେଁ, ନିଶ୍ଚୟ ଅମୃତ।" ସେ କାଳିଆ ପିଲାଟିର ବାଟ ଚାହିଁ ବସିଥାନ୍ତି। ଭାବୁଥାନ୍ତି, ଢାଳ ନେବାକୁ ଆସିଲେ ତାକୁ ସବୁ କଥା ପଚାରିବେ। କିନ୍ତୁ ଦୀର୍ଘ ସମୟ ଅପେକ୍ଷା କରିବା ସତ୍ତ୍ୱେ ପିଲାଟି ଫେରିଲା ନାହିଁ। ବେଳ ଗଡ଼ିଗଲା। ସଂଧ୍ୟା ପାଖେଇ ଆସିଲା। ଧୀରେ ଧୀରେ ରାତି ହୋଇଗଲା, କିନ୍ତୁ ପିଲାଟିର ଦେଖା ନାହିଁ। ତାଙ୍କ ମନରେ ନାନା ପ୍ରକାର ତର୍କ ସୃଷ୍ଟି ହେଲା। ଭାବିଲେ, "ସେ ପିଲାଟି କିଏ? ମୋତେ ଏଭଳି ଅମୃତ ତୁଲ୍ୟ କ୍ଷୀର ଦେଇ କୁଆଡ଼େ ଉଭେଇଗଲା। କହୁଥିଲା ଆସିବ ବୋଲି। ରାତି ହୋଇଗଲାଣି। ଲାଗୁଛି ଆଉ ସେ ଆସିବ ନାହିଁ। ଏ ଘଞ୍ଚ ଜଙ୍ଗଲକୁ ରାତିରେ ଆସିବାକୁ କାହାର ସାହସ ହେବ। କି ସୁନ୍ଦର ତା'ର ମୁଖମଣ୍ଡଳ! କି ସୁନ୍ଦର ତା'ର ମଧୁର ବଚନ!"

ମାଧବେନ୍ଦ୍ର ଗୋସାଇଁ ବସି ବସି ଏହିଭଳି ନାନା କଥା ଚିନ୍ତା କରୁଥାନ୍ତି। ତାଙ୍କ ଆଖିକୁ ନିଦ ନାହିଁ। ଭଗବାନଙ୍କ ନାମ ଜପୁଥାନ୍ତି, କିନ୍ତୁ ମଝିରେ ମଝିରେ ବାରମ୍ବାର ପିଲାଟି କଥା ମନେ ପଡୁଥାଏ। ଭାବିଲେ, ଭଲ ଅସୁବିଧା ହେଲା। ମୁଁ ଠାକୁରଙ୍କ ନାମ ଜପୁଛି, ଅଥଚ ପିଲାଟିର ରୂପ ମନେ ପଡୁଛି କାହିଁକି? ବାରମ୍ବାର ପିଲାଟିର ଚିନ୍ତନରେ ମନ ଚଞ୍ଚଳ ହୋଇ ପଡୁଥାଏ। ଏ ସବୁ କ'ଣ ହେଉଛି କିଛି ଭାବି ପାରୁ ନ ଥାନ୍ତି। ଏମିତି ଚିନ୍ତା କରି କରି ରାତି ବିତିଗଲା। ପାହାନ୍ତିଆ ପହରକୁ ଟିକିଏ ଆଖି ଲାଗିଗଲା। ପରିକ୍ରମାର ପଥଶ୍ରମ ଯୋଗୁଁ ସେ ସେଇ କୁଣ୍ଡ ପାହାଚରେ ଗାମୁଛା ପାରି ଶୋଇଗଲେ। ସହସା ସେ ଗୋଟିଏ ସ୍ୱପ୍ନ ଦେଖିଲେ। କ୍ଷୀର ଆଣି ଆସିଥିବା କାଳିଆ ପିଲାଟି ଆସି ତାଙ୍କ ହାତ ଧରି ନିଘଞ୍ଚ ବଣ ଭିତରକୁ ନେଇଯାଉଛି। ସେ ଦୁହେଁ ଯାଇ ଗୋଟିଏ କୁଞ୍ଜରେ ପହଞ୍ଚିଛନ୍ତି ପିଲାଟି କୁଞ୍ଜ ଆଡ଼କୁ ହାତ ଠାରି କହୁଛି—"ବାବା! ମୁଁ ଖରା କାକର ସହି ବହୁ ଦିନରୁ ଏଇ ଲତା ଗହଳରେ ପଡ଼ିଛି। ଗାଁଆ ଲୋକଙ୍କୁ ଡାକି ମୋତେ ଏଠାରୁ ବାହାର କରି ଭଲ ଜାଗାରେ ରଖ। ଗୋଟିଏ ମନ୍ଦିର ତୋଳି ସେଠାରେ ମୋତେ ସ୍ଥାପନ କରାଅ। ଶୀତଳ ଜଳରେ ମୋତେ ସ୍ନାନ କରାଇ ମୋ ଦେହର ଜ୍ୱାଳା ଶାନ୍ତ କର। ମୁଁ ବହୁ ଦିନରୁ ତୁମ ବାଟ ଚାହିଁ ବସିଥିଲି। ଭାବୁଥିଲି, କେବେ ଆସି

ମାଧବେନ୍ଦ୍ର ବାବା ମୋର ସେବା କରିବେ। ତୁମ ଭକ୍ତିରେ ବଶ ହୋଇ ମୁଁ ଆଜି ତୁମ ସେବା ଅଙ୍ଗୀକାର କଲି। ମୁଁ ଗୋପାଳ ରୂପରେ ଦର୍ଶନ ଦେଇ ସଂସାରକୁ ଉଦ୍ଧାର କରିବି। ମୋ ନାଆଁ ହେବ ଗୋବର୍ଦ୍ଧନବାସୀ ଗୋପାଳ। ପୂର୍ବେ ମୋଗଲମାନଙ୍କ ଭୟରେ ମୋ ସେବକମାନେ ମୋତେ ଏଇ ପାହାଡ଼ରେ ବସାଇ ଛାଡ଼ି ଚାଲିଯାଇଥିଲେ। ସେହି ଦିନଠାରୁ ମୁଁ ଏଠାରେ ଦୁଃଖରେ ପଡ଼ିଛି। ଭଲ ହେଲା, ତୁମେ ଆସିଗଲ। ଏବେ ମୋତେ ଏଠାରୁ କାଢ଼ିବାର ଉପାୟ କର।''

ଏତିକି କହି ଶ୍ୟାମଳ ରଙ୍ଗର ପିଲାଟି ଅନ୍ତର୍ଦ୍ଧାନ ହୋଇଗଲା। ଚାହିଁ କରି ମାଧବେନ୍ଦ୍ର ଗୋସାଇଁଙ୍କ ନିଦ ଭାଙ୍ଗିଗଲା। ସେ ଧଡ଼ପଡ଼ ହୋଇ ଉଠି ଚାରିଆଡ଼କୁ ଚାହିଁ ଦେଖିଲା ବେଳକୁ ପାଖରେ କେହି କେଉଁଠି ନାହାନ୍ତି। ମନେ ମନେ ଭାବିଲେ, କିଏ ମୋତେ ସ୍ୱପ୍ନରେ ଏ ଆଦେଶ ଦେଲା? ଇଏ ତ ସେଇ ପିଲାଟି ଭଳି ଲାଗୁଛି, ଯିଏ ମୋତେ କ୍ଷୀର ଆଣି ଦେଇଥିଲା। ଚେହେରା, କଥାବାର୍ତ୍ତା, ଚାଲିଚଳଣ ସବୁ ତାହାରି ପରି ଲାଗୁଛି। ତେବେ ସେ କ'ଣ ମୋର ପ୍ରଭୁ ଥିଲେ! ମୋତେ ଭୋକିଲା ଜାଣି ପିଇବାକୁ କ୍ଷୀର ଆଣି ଦେଲେ! ଏତିକିରେ ତାଙ୍କର ହୃଦୟ ଗଦ୍‌ଗଦ ହୋଇଗଲା। ଆଖିରୁ ଝର୍ ଝର୍ ଲୁହ ବହି ଆସିଲା। ମନକୁ ଧିକ୍କାର କରି କହିଲେ—''ହାୟରେ ମାଧବେନ୍ଦ୍ର! ତୁ କେଡ଼େ ଅଭାଗା। ପ୍ରଭୁଙ୍କୁ ଚିହ୍ନି ପାରିଲୁ ନାହିଁ। ପ୍ରଭୁ ତୋର କେତେ ସେବା କଲେ। ଅଥଚ ତୁ ତାଙ୍କୁ ପ୍ରଣାମଟିଏ ବି ଜଣାଇ ପାରିଲୁ ନାହିଁ।'' ଏଭଳି ଭାବି ଭାବି ସେ ପ୍ରେମରେ ବିହ୍ୱଳ ହୋଇଗଲେ। କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ପ୍ରଭୁଙ୍କ ଆଜ୍ଞା ପାଳନ ନିମନ୍ତେ ମନକୁ ସ୍ଥିର କଲେ। ପ୍ରଭାତରୁ ଯାଇ ଗାଁ ଲୋକଙ୍କୁ ରାତିର ସ୍ୱପ୍ନ କଥା ଶୁଣାଇ କହିଲେ— ''ହେ ଭାଇମାନେ! ତୁମ ଗାଁଆର ଠାକୁର ଗୋବର୍ଦ୍ଧନବାସୀ ନିଘଞ୍ଚ ଜଙ୍ଗଲ ଭିତରେ ପଡ଼ିଛନ୍ତି। ସେ ରାତିରେ ମୋତେ ସ୍ୱପ୍ନରେ ସବୁ ବୃତ୍ତାନ୍ତ ଶୁଣାଇଲେ। ଚାଲ, ଆମେ ସମସ୍ତେ ଯାଇ ପ୍ରଭୁଙ୍କୁ ସେଠାରୁ ଉଦ୍ଧାର କରିବା।''

ଗାଁ ଲୋକେ ପୁରୀ ଗୋସାଇଁଙ୍କ କଥା ମାନି କଟୁରି, ଟାଙ୍ଗିଆ, କୋଦାଳ, ଶାବଳ, ଗଇଁତି ଇତ୍ୟାଦି ଧରି ଯାଇ ପହଞ୍ଚିଲେ ସେହି ନିଛାଟିଆ ଜଙ୍ଗଲରେ। କଣ୍ଟାଝଟା ସଫା କରି ପ୍ରଥମେ ଲଟା ଗହଳି ଭିତରକୁ ଯିବାକୁ ରାସ୍ତା ତିଆରି କଲେ। ତା'ପରେ ଖୋଳି ଦେଖିଲାବେଳକୁ ଠାକୁରଙ୍କର ଅତ୍ୟନ୍ତ ସୁନ୍ଦର ଶ୍ରୀବିଗ୍ରହଟିଏ ମାଟିରେ ପୋତି ହୋଇଥିବାର ଦେଖାଗଲା। ଧୂଳି ଧୂସରିତ ଅଙ୍ଗ। ହସ ହସ ମୁହଁ। ଅତି ବିଶାଳ ମୂର୍ତ୍ତି। ଉଠେଇ ହେଉ ନ ଥାଏ। କେତେ ଜଣ ବଳିଷ୍ଠ ଲୋକ

ମିଶି ଠାକୁରଙ୍କୁ ମାଟି ଭିତରୁ ବାହାର କଲେ। ପର୍ବତ ଉପରେ ଗୋଟିଏ ବଡ଼ ପଥର ଉପରେ ତାଙ୍କୁ ସ୍ଥାପନା କରି ପଛରୁ ଗୋଟିଏ ପଥର ଡେରିଦେଲେ।

ଗୋବର୍ଦ୍ଧନବାସୀ ଗୋପାଳଙ୍କ ପ୍ରକଟ ହେବା କଥା କ୍ଷଣକ ଭିତରେ ଗାଁ ସାରା ବ୍ୟାପିଗଲା। ମହା ଅଭିଷେକର ଆୟୋଜନ ଚାଲିଲା। ସମସ୍ତେ ନିଜ ନିଜର ଶକ୍ତି ଅନୁସାରେ ବ୍ୟବସ୍ଥାରେ ଜୁଟିଗଲେ। ବେଦପାଠୀ ବ୍ରାହ୍ମଣମାନେ ବେଦମନ୍ତ୍ର ଉଚ୍ଚାରଣ ସହିତ ଶହେଟି ନୂଆ କଳଶରେ ଗୋବିନ୍ଦକୁଣ୍ଡରୁ ପବିତ୍ର ଜଳ ଘେନି ଆସିଲେ। ଗାଁର ସବୁ ଲୋକ ଶଙ୍ଖ, ଭେରୀ, ତୂରୀ ଇତ୍ୟାଦି ନାନା ପ୍ରକାର ମଙ୍ଗଳ ବାଦ୍ୟ ବଜାଇ ଅନେକ ସମ୍ଭାର ସହିତ ପ୍ରଭୁଙ୍କୁ ଅଭ୍ୟର୍ଥନା ଜଣାଇଲେ। ଛତ୍ର, ଆଲଟ, ଚାମର ଢାଳି ବିବିଧ ଉପଚାରରେ ପୂଜାବିଧି ସମ୍ପନ୍ନ ହେଲା। ସମସ୍ତଙ୍କ ମନରେ ଆପାର ଆନନ୍ଦ। ଠାକୁରଙ୍କ ପ୍ରାକଟ୍ୟ ଉତ୍ସବରେ ଆନନ୍ଦିତ ହୋଇ କେହି ନାଚୁଥାଏ ତ ଆଉ କେହି ଗାଉଥାଏ। ହରିବୋଲ ହୁଳହୁଳି ନାଦରେ ଖଣ୍ଡମଣ୍ଡଳ କମ୍ପି ଉଠୁଥାଏ। ସଂକୀର୍ତ୍ତନ ମଣ୍ଡଳୀ ଦଳ ଦଳ ହୋଇ ନାମ ସଂକୀର୍ତ୍ତନ କରୁଥାନ୍ତି। ଠାକୁରଙ୍କ ଭୋଗ ପାଇଁ ଦହି, ଦୁଗ୍ଧ, ପାୟସ, ପିଠାପଣା ଇତ୍ୟାଦି ବିବିଧ ବ୍ୟଞ୍ଜନ ତିଆରି ଚାଲିଥାଏ। ସେହି ଆନନ୍ଦ-ଉତ୍ସବରେ ଲୋକେ ଆତ୍ମବିସ୍ମୃତ ହୋଇଗଲେ। ପ୍ରଭୁଙ୍କ ଅଙ୍ଗରୁ ଧୂଳି ପୋଛିପାଛି ଗୋବିନ୍ଦ କୁଣ୍ଡର ପବିତ୍ର ଜଳରେ ତାଙ୍କୁ ସ୍ନାନ କରାଗଲା। ତା'ପରେ ପଞ୍ଚାମୃତ ଇତ୍ୟାଦିରେ ସ୍ନାନ କରାଯାଇ ସୁନ୍ଦର ବସ୍ତ୍ରାଭୂଷଣରେ ମଣ୍ଡିତ କରି ଦିଆଗଲା। ଗୋପାଳଙ୍କର ଶ୍ୟାମଳ ସୁନ୍ଦର ଅଙ୍ଗକାନ୍ତିରେ ଚୁଆ, ଚନ୍ଦନ ଲେପନର ଶୋଭା ସତେ ଯେପରି କଳା ମେଘରେ ଶୁଭ୍ର ବାଦଲ ଭଳି ମନେ ହେଉଥାଏ। ଚମ୍ପା, ମାଧବୀ, ମାଳତୀ, କନିଅର, ପଦ୍ମ ଇତ୍ୟାଦି ଫୁଲମାଳ ଦାଉ ଦାଉ ହୋଇ ଝଟକୁଥାଏ ପ୍ରଭୁଙ୍କ ଶ୍ୟାମଳ ଶ୍ରୀଅଙ୍ଗରେ। ଶ୍ରୀଅଙ୍ଗ ମଣ୍ଡିତ ତୁଳସୀ, ଦୟଣା ଇତ୍ୟାଦି ମାଳାରେ ମଧୁଲୋଭୀ ଭ୍ରମର ଗୁଣୁ ଗୁଣୁ ହୋଇ ଗୁଞ୍ଜନ କରୁଥାନ୍ତି। ଏଭଳି ଉତ୍ସବରେ ଲୋକମାନଙ୍କୁ ଦିନରାତି ଜଣା ପଡ଼ିଲା ନାହିଁ। ଗୋବର୍ଦ୍ଧବାସୀ ଗୋପାଳ ତାଙ୍କର ସୁଭଗ ଠାଣିରେ ଭକ୍ତଜନଙ୍କ ମନପ୍ରାଣ କିଣିନେଲେ।

ଏହିମତେ ଠାକୁରଙ୍କ ସେବାପୂଜାରେ ମାଧବେନ୍ଦ୍ର ଗୋସାଇଁ ନିଜର ମନପ୍ରାଣକୁ ବାନ୍ଧି ରଖିଲେ। ଦିନେ ରାତିରେ ହଠାତ୍ ସେ ଆଉ ଗୋଟିଏ ସ୍ୱପ୍ନ ଦେଖିଲେ। ଗୋପାଳ ତାଙ୍କୁ କହୁଛନ୍ତି—"ଗୋସାଇଁ! ତୁମେ ମୋତେ ସବୁ ପ୍ରକାରେ ସୁଖୀ ଦେଲ। ଗୋବିନ୍ଦକୁଣ୍ଡର ଶୀତଳ ଜଳରେ ସ୍ନାନ କରାଇଲ। ବିବିଧ ସମ୍ଭାରରେ ମୋତେ ପୂଜା କଲ। କିନ୍ତୁ ଅନେକ ଦିନରୁ ମାଟି ତଳେ ପୋତି ହୋଇ

ରହିଥିବାରୁ ମୋ ଦେହର ଜ୍ୱାଳା ଶମନ ହୋଇ ପାରିଲା ନାହିଁ। ଯଦି ମୋ ଅଙ୍ଗରେ ମଳୟଜ ଚନ୍ଦନ ଲେପନ କରିଦେବ, ତେବେ ମୋତେ ନିଶ୍ଚୟ ଶାନ୍ତି ମିଳିବ! କିନ୍ତୁ ତୁମକୁ ଏଥିପାଇଁ ଟିକିଏ କଷ୍ଟ କରିବାକୁ ପଡ଼ିବ। ଏଭଳି ସୁଗନ୍ଧିତ ଚନ୍ଦନ ମିଳିବ ନୀଳାଚଳ ଧାମ ପୁରୀରେ। ଏବେ ତୁମେ ଶ୍ରୀକ୍ଷେତ୍ରକୁ ଯାଇ ମୋ ସୁଖ ପାଇଁ ଚନ୍ଦନ ଘେନି ଆସ।''

ପ୍ରଭୁଙ୍କ ଠାରୁ ସ୍ୱପ୍ନାଦେଶ ପାଇ ଗୋସାଇଁଙ୍କ ହୃଦୟରେ ସୃଷ୍ଟି ହେଲା ଆନନ୍ଦ କଲ୍ଲୋଳ। ତାଙ୍କ ନେତ୍ରରୁ ଝରି ଆସିଲା ଶୀତଳ ଆନନ୍ଦାଶ୍ରୁ। ସେ ମନେ ମନେ ଭାବିଲେ, ସତରେ ଠାକୁରଙ୍କର ମୋ ଉପରେ କେଡ଼େ କୃପା! ମୋ ଭଳି ଅଧମକୁ ଚରଣରେ ସ୍ଥାନ ଦେଇ ସେବା ମାଧ୍ୟମରେ ମୋତେ ଆପଣାର କରିନେବାକୁ ସେ ଏତେ ସବୁ କରୁଛନ୍ତି। ସତରେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲେପନ କରାଗଲେ ସେ କେତେ ଆନନ୍ଦିତ ହେବେ! ଏଭଳି ଭାବନାରେ ଭାବିତ ହୋଇ ଶ୍ରୀକ୍ଷେତ୍ର ପୁରୀ ଯିବା ପାଇଁ ସ୍ଥିର କରିନେଲେ।

ପ୍ରଭୁଙ୍କ ସେବାପୂଜାରେ ଯେପରି କୌଣସି ଅସୁବିଧା ନ ହେବ, ସେଥିପାଇଁ କେତେଜଣ ପୂଜାରୀଙ୍କ ଉପରେ ସେବା ଦାୟିତ୍ୱ ଅର୍ପଣ କରି ସେ ଠାକୁରଙ୍କୁ ବିନୀତ ଦଣ୍ଡବତ ଜଣାଇ ବାହାରିଲେ ଶ୍ରୀକ୍ଷେତ୍ର ଯାତ୍ରାରେ। ଦେହରେ ସେତେ ଶକ୍ତି ନ ଥିଲେ ମଧ୍ୟ ମନରେ ଅପାର ଉତ୍ସାହ! ପ୍ରଭୁ ମୋତେ ଆପଣାର ଭାବି ସେବାର ସୌଭାଗ୍ୟ ପ୍ରଦାନ କଲେ, ଏଥିପାଇଁ ତାଙ୍କ ହୃଦୟରେ ତୁହାଇ ତୁହାଇ ଉଠୁଥାଏ ପ୍ରେମର ତରଙ୍ଗ। ସେ ବଡ଼ ଆନନ୍ଦ ମନରେ ସୁଦୂର ମାର୍ଗ ଅତିକ୍ରମ କରି ଚାଲିଲେ। ମାର୍ଗରେ ଶାନ୍ତିପୁର ଗ୍ରାମରେ ଅଦ୍ୱୈତାଚାର୍ଯ୍ୟଙ୍କ ସହ ଭେଟ ହେଲେ। ମାଧବେନ୍ଦ୍ର ଗୋସାଇଁଙ୍କ ପ୍ରେମଭାବ ଦେଖି ଅଦ୍ୱୈତାଚାର୍ଯ୍ୟଙ୍କ ମନ ଅତି ଆନନ୍ଦିତ ହେଲା। ସେଠାରୁ ବିଦାୟ ମାଗି ପ୍ରଭୁଙ୍କ ନାମଗୁଣ କୀର୍ତ୍ତନ କରି କରି ସେ ଯାଇ ପହଞ୍ଚିଲେ ରେମୁଣା ଗୋପୀନାଥଙ୍କ ମନ୍ଦିରରେ। ଗୋପୀନାଥଙ୍କୁ ଦର୍ଶନ କରି ପ୍ରେମାବେଶରେ ତାଙ୍କର ସ୍ଥିତି ବିଚିତ୍ର ହୋଇଗଲା। ସେ ଆନନ୍ଦରେ ନାଚି ଉଠିଲେ। କି ସୁନ୍ଦର ପ୍ରଭୁଙ୍କ ତ୍ରିଭଙ୍ଗ ଲଳିତ ଠାଣି! ମସ୍ତକରେ ବାଙ୍କ ଚୂଳ। ଲଲାଟରେ ଚନ୍ଦନ କସ୍ତୁରୀର ଚିତା। ଅଧରରେ ମୋହନବଂଶୀ। କଣ୍ଠଦେଶରେ ମୁକ୍ତା ମାଳ। ଶ୍ୟାମଳ ବକ୍ଷସ୍ଥଳରେ ଝୁଲୁଥିବା ସ୍ୱର୍ଣ୍ଣ ଚମ୍ପାର ମାଳ ନୀଳ ମେଘରେ ସୌଦାମିନୀ ଭଳି ଝଟକୁଥାଏ। ତୁଳସୀ ମାଳରେ ପ୍ରଭୁଙ୍କ ବକ୍ଷସ୍ଥଳ ମଣ୍ଡଣି ହୋଇଥାଏ। କଟିରେ ଝୀନ ବସନର କାଛେଣି। ତା' ଉପରେ କଷା ହୋଇଥିବା କ୍ଷୁଦ୍ର ଘଣ୍ଟିକା

ତାଙ୍କ ମନକୁ ମୋହିନେଲା । କାହିଁକି ବା ମୋହି ନ ନେବ! ତାଙ୍କଠାରେ ତ ମୋହିନୀ ଶକ୍ତି ସାକ୍ଷାତ୍ ମୂର୍ତ୍ତିମନ୍ତ ହୋଇ ପ୍ରକଟ ହୋଇଛି । ତେବେ ଏଭଳି ଶକ୍ତି ତାଙ୍କଠାରେ କେଉଁଠୁ ଆସିଲା? ତ୍ରିଭୁବନ ମୋହନ ଗୋପୀନାଥ ଜୀଉଙ୍କ ଠାରେ ଏଭଳି ମୋହିନୀ ଶକ୍ତି ରହିବାର କାରଣ ହେଲା, ସେ ନିଜେ ଜଗତ ଜୀବଙ୍କର ଉଦ୍ଧାର ପାଇଁ ସ୍ୱହସ୍ତରେ ନିଜର ମୂର୍ତ୍ତି ଆଙ୍କି ଦେଇଥିଲେ ।

ନିଜ ମୂର୍ତ୍ତି ନିଜ ହାତରେ! ଏ କଥା ଶୁଣି ମନରେ କୌତୁହଳ ଜାତ ହୁଏ । କଥାଟି ତ୍ରେତୟାଯୁଗର ରାମବନବାସ ସମୟର । ପ୍ରଭୁ ଶ୍ରୀରାମଚନ୍ଦ୍ର ଚିତ୍ରକୂଟରେ ଥିବାବେଳେ ଥରେ ମାତା ଜାନକୀଙ୍କ ମନରେ ପ୍ରଭୁଙ୍କ ପରବର୍ତ୍ତୀ ଅବତାର ସମ୍ବନ୍ଧରେ ଜାଣିବାକୁ ଇଚ୍ଛା ହେଲା । ସେ ଅତି ବିନୀତ ଭାବରେ ପଚ୍ଚାରିଲେ— "ସ୍ୱାମୀ! ଦୁଃଖୀ ଜୀବଙ୍କ ଉଦ୍ଧାର ନିମନ୍ତେ ପରବର୍ତ୍ତୀ ଯୁଗରେ ଆପଣ କେଉଁ ରୂପ ଧରି ଅବତରିତ ହେବେ?" ରାମଚନ୍ଦ୍ର ମନ୍ଦ ମନ୍ଦ ହସି କହିଲେ—"ସୀତେ! ତୁମର ଅଭିଳାଷ ଅତି ଉତ୍ତମ । ମୁଁ ନିଜ ମୁଖରେ ତାହାର ସମ୍ପୂର୍ଣ୍ଣ ବର୍ଣ୍ଣନା ତ କରି ପାରିବି ନାହିଁ, ତେଣୁ ମୁଁ ମୋ ପରବର୍ତ୍ତୀ ଅବତାରର ଛବିଟିଏ ଆଙ୍କି ଦେଉଛି ।" ରାମଚନ୍ଦ୍ର ପ୍ରତିଦିନ ଏକାନ୍ତ ସ୍ଥାନରେ ବସି ଗୋଟିଏ ସ୍ନିଗ୍ଧ, ଶ୍ୟାମଳ ପ୍ରସ୍ତର ଖଣ୍ଡରେ ଖୋଦେଇ କରି ନିଜର ମୂର୍ତ୍ତି ଅଙ୍କନ କରୁଥାନ୍ତି । ମାତା ଜାନକୀଙ୍କ ମନରେ ସ୍ୱାମୀ ଏକାନ୍ତରେ ବସି କ'ଣ କରୁଛନ୍ତି ବୋଲି ଜାଣିବା ପାଇଁ କୌତୁହଳ ସୃଷ୍ଟି ହେଲା । ସେ ସ୍ୱାମୀଙ୍କ ଅଜ୍ଞାତରେ ଯାଇ ପହଞ୍ଚିଲେ ସେ ସ୍ଥାନରେ । ଦେଖିଲା ବେଳକୁ ସର୍ବାଙ୍ଗ ସୁନ୍ଦର ଶ୍ରୀବିଗ୍ରହଟିଏ । ଅଙ୍ଗ ଅଙ୍ଗରେ ଅପୂର୍ବ ସୌଷ୍ଠବ । ହେଲେ ଏପର୍ଯ୍ୟନ୍ତ ନେତ୍ର ଉନ୍ମୀଳନ ହୋଇ ନାହିଁ । ମାତା ଜାନକୀଙ୍କ ମନରୂପୀ ଭ୍ରମର ତହିଁରେ ଲୁବ୍ଧ ହୋଇଗଲା । ସେ ନିଜର ନେତ୍ର ଅଞ୍ଜନରେ ବିଗ୍ରହଙ୍କ ନେତ୍ର ଉନ୍ମୀଳନ କରି ଦୀର୍ଘ ସମୟ ଧରି ଅପଲକ ନେତ୍ରରେ ନିରେଖି ଚାହିଁ ରହିଲେ । ନେତ୍ରଦାନ ଦ୍ୱାରା ବିଗ୍ରହଙ୍କ ଠାରେ ପ୍ରାଣ ସଞ୍ଚାର କରିଦେଇ ସେ କୁଟୀରକୁ ଫେରି ଆସିଲେ । ତା'ପର ଦିନ ପ୍ରଭୁ ଯାଇ ଖୋଲିଲା ବେଳକୁ ମୂର୍ତ୍ତିଙ୍କ ଅଙ୍ଗରୁ ଧାର ଧାର ହୋଇ ରକ୍ତ ବହି ଚାଲିଲା । ପ୍ରଭୁଙ୍କୁ କୌଣସି ତଥ୍ୟ ଅଛପା ରହିଲା ନାହିଁ । ଜାନକୀ ସ୍ୱହସ୍ତରେ ନେତ୍ରଦାନ କରିବା କଥା ଜାଣି ସେ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ କହିଲେ—"ସୀତେ! ତୁମେ ଭଲ କଲ । ମୋ କାର୍ଯ୍ୟଟି ତୁମ ହସ୍ତରେ ସମ୍ପନ୍ନ ହୋଇଥିବାରୁ ମୁଁ ଅତ୍ୟନ୍ତ ପ୍ରୀତ । ଏ ହେଉଛି ମୋ ପରବର୍ତ୍ତୀ ଅବତାରର ପ୍ରତିମୂର୍ତ୍ତି । ତ୍ରିଭଙ୍ଗ ଲଳିତ ଠାଣିରେ ଦଣ୍ଡାୟମାନ ହୋଇ ମୁଁ ଗୋପୀନାଥରୂପରେ ଜଗତକୁ

ଉଦ୍ଧାର କରିବି। ମୋର ରୂପ ସୌନ୍ଦର୍ଯ୍ୟ ଦେଖି ସମସ୍ତେ ମନ୍ତ୍ରମୁଗ୍ଧ ହୋଇଯିବେ। ସୁନାରେ ସୁଗନ୍ଧ ମିଶିବା ଭଳି ତୁମ ହସ୍ତର କୋମଳ ସ୍ପର୍ଶ ପାଇ ଇଏ ଆଜିଠାରୁ ଜୀବନ୍ତ ହୋଇଗଲେ। ତୁମେ ମୋର ଆହ୍ଲାଦିନୀ ଶକ୍ତି। ତୁମର ସ୍ପର୍ଶ କାରଣରୁ ଆଜିଠାରୁ ଇଏ ସମସ୍ତଙ୍କୁ ଆହ୍ଲାଦ ପ୍ରଦାନ କରିବେ।'' ପ୍ରଭୁ ରାମଚନ୍ଦ୍ରଙ୍କ ଏହି ସଙ୍କଳ୍ପ ଯୋଗୁଁ ଗୋପୀନାଥ ସମସ୍ତଙ୍କୁ ଆନନ୍ଦିତ କରନ୍ତି। ତାଙ୍କୁ ଥରେ ଯିଏ ନିରେଖି ଚାହିଁଦିଏ, ସେ ଆଉ ନିଜର ମନ ଓ ନୟନକୁ ଫେରାଇ ନେଇ ପାରେ ନାହିଁ। କ୍ଷୀରଚୋର ତା'ର ମନକୁ ବି ଚୋରି କରି ନିଅନ୍ତି।

ଜଣେ ପ୍ରଭୁପ୍ରେମୀ ଭକ୍ତ ପଥିକମାନଙ୍କୁ ସାବଧାନ କରାଇ କହିଲେ—''ରେ ପଥିକ! ସେ ରାସ୍ତା ଅତି ଭୟଙ୍କର। ଭୁଲ୍‌ରେ ବି ସେପଟେ ଯାଅ ନାହିଁ। ଶ୍ୟାମତମାଳ ତୁଲ୍ୟ ଶ୍ୟାମ ବପୁଧାରୀ ଲଙ୍ଗଳା ପିଲାଟିଏ ନିଜର ନିତମ୍ବ ଉପରେ ହାତ ରଖି ସେଠାରେ ଠିଆ ହୋଇଛି। ସେ ଦେଖିବାକୁ ଅତି ସରଳ, କିନ୍ତୁ ସେପଟେ ଯାଉଥିବା କୌଣସି ଯାତ୍ରୀର ମନକୁ ଚୋରି ନ କରି ସେ ଛାଡ଼େ ନାହିଁ। ଯଦି ତା' ଫାନ୍ଦରେ ଥରେ ପଡ଼ିଗଲ, ତେବେ ସବୁ ଦିନ ପାଇଁ ତା'ର ହୋଇଗଲ ବୋଲି ଜାଣ।''

ସେଭଳି ଜଗତ ମୋହନ ଗୋପୀନାଥ ଜୀଉଙ୍କ ଫାନ୍ଦରେ ପଡ଼ିଗଲେ ସନ୍ନ୍ୟାସୀ ମାଧବେନ୍ଦ୍ର ପୁରୀ। ଜଗମୋହନରେ ଭକ୍ତଙ୍କ ଗହଣରେ କୀର୍ତ୍ତନ ସାରି ସେ ଆନନ୍ଦ ମନରେ ବିରାଜମାନ ହୋଇଥାନ୍ତି। ତାଙ୍କ ମନରେ ଉତ୍କଣ୍ଠା ହେଲା ଗୋପୀନାଥଙ୍କ ପୂଜା ଆରାଧନାର ବିଧି-ବିଧାନ ଜାଣିବା ପାଇଁ। ସେ ପୂଜାରୀଙ୍କ ଠାରୁ ପ୍ରଭୁଙ୍କ ଭୋଗରାଗ ବିଷୟ ପଚାରି ବୁଝିଲେ। ପୂଜାରୀ କହିଲେ—''ବାବା! ଠାକୁରଙ୍କ ଭୋଗର ତ ହିସାବ ନାହିଁ। ନାନା ପ୍ରକାର ଭୋଗରାଗରେ ସେବାପୂଜା ହେଉଛି। କିନ୍ତୁ ଏଠିକାର 'ଅମୃତକେଳି ଖିରି' ପ୍ରସିଦ୍ଧ। ନାମ ଯେପରି, ସ୍ୱାଦ ମଧ୍ୟ ସେହିପରି। ସ୍ୱାଦୁ ପଣରେ ଅମୃତକୁ ମଧ୍ୟ ସେ ପଛରେ ପକାଇଦେବ। ପୃଥିବୀରେ ଏଭଳି ଖିରି ଭୋଗ ଅନ୍ୟ କେଉଁଠି ମିଳେ ନାହିଁ।'' ଅମୃତକେଳି ଖିରି ନାଆଁ ଶୁଣି ତାହାର ସ୍ୱାଦ ଜାଣିବା ପାଇଁ ଗୋସାଇଁଙ୍କ ମନ ବଳିଲା। ମନେ ଭିତରେ ଭାବିଲେ—''ଟିକିଏ ଖିରି ପ୍ରସାଦ ମିଳନ୍ତା କି? ଖିରିର ସ୍ୱାଦ ଜାଣିଗଲେ ମୁଁ ମୋ ଗୋପୀନାଥଙ୍କୁ ମଧ୍ୟ ସେହିପରି ଖିରି ଭୋଗ ଅର୍ପଣ କରନ୍ତି। ତାଙ୍କୁ ସୁଖୀ କରି ମୁଁ ଆନନ୍ଦିତ ହୁଅନ୍ତି।''

ଏହା ହେଉଛି ଜଣେ ସାଧାରଣ ଲୋକ ଓ ଭକ୍ତ ଭିତରେ ପାର୍ଥକ୍ୟ।

ସାଧାରଣ ଲୋକେ ଜିହ୍ୱା ଲାଳସା ଚରିତାର୍ଥ କରିବାକୁ ବିଷୟ ସେବନ କରୁଥିବା ବେଳେ ଭକ୍ତ ପ୍ରଭୁଙ୍କୁ ସୁଖ ଦେବା ଲାଗି ପ୍ରଭୁଙ୍କ ପ୍ରସାଦ ସେବନ କରେ। ପିତାମାତା ସନ୍ତାନକୁ ସୁଖୀ ଦେଖି ଯେପରି ସୁଖ ଅନୁଭବ କରନ୍ତି, ଭକ୍ତଜନ ସେହିପରି ଭଗବାନଙ୍କୁ ସୁଖ ଦେଇ ସୁଖୀ ହୁଅନ୍ତି। ତାଙ୍କର ବିଷୟ ସେବନ ନିଜ ସୁଖ ପାଇଁ ନ ହୋଇ ପ୍ରଭୁଙ୍କ ପ୍ରୀତି ନିମନ୍ତେ ଉଦ୍ଦିଷ୍ଟ ହୋଇଥାଏ।

କିଛି ସମୟ ପରେ ଠାକୁରଙ୍କ ମଣୋହି ହେଲା। ତା'ପରେ ଅତି ସୁନ୍ଦର ଭାବରେ ଆଳତି ହେଲା। ଭକ୍ତଜନ ଅତି ସୁଲଳିତ ସ୍ୱରରେ ଆଳତି ଗାନ କଲେ। ଆଳତି ଦର୍ଶନ କରି ଗୋସାଇଁଙ୍କ ମନ ଅତି ଆନନ୍ଦିତ ହେଲା। ଠାକୁରଙ୍କୁ ଭକ୍ତିଭାବରେ ପ୍ରଣାମ ଜଣାଇଲେ। ସେ ଖିରି ପ୍ରସାଦ କଥା କାହାକୁ ମୁହଁ ଖୋଲି କହି ପାରିଲେ ନାହିଁ। ମନ କଥା ମନରେ ରହିଗଲା। ଠାକୁରଙ୍କର ପହଡ଼ ପଡ଼ିଲା। ତା'ପରେ ସେ ଗ୍ଲଲିଗଲେ ମନ୍ଦିର ପଛପଟ ଆମ୍ବ ତୋଟାକୁ। ମନରେ ଖିରି ଭୋଗ ପାଇବାକୁ ଇଚ୍ଛା ଜାଗ୍ରତ ହେବାରୁ ସେ ଭାବିଲେ, "ହାୟ! ମୋର ବଡ଼ ଅପରାଧ ହୋଇଗଲା! ମୁଁ ଜଣେ ଅଯାଚକ ପରିବ୍ରାଜକ ହୋଇ ଏପରି ଅଭିଳାଷ କରିବା ମୋ ପକ୍ଷେ ଉଚିତ ନ ଥିଲା।" ଏଥିନେଇ ତାଙ୍କୁ ଲଜ୍ଜା ବୋଧ ହେଲା। ତା'ପରେ ସେ ମନକୁ ସ୍ଥିର କରି ପ୍ରାୟଶ୍ଚିତ୍ତ ଦୃଷ୍ଟିରୁ ଭଗବାନଙ୍କ ନାମ ଜପିଲେ।

ମନ କଥା ଭାଷାରେ ନ କହିଲେ କ'ଣ ହେଲା, ଭଗବାନଙ୍କୁ ତ କୌଣସି କଥା ଅଛପା ରହେ ନାହିଁ। ସେ ଭକ୍ତର ମନ ଜାଣି ଖିରି ଭୋଗ ଲାଗିବା ବେଳେ ଗୋଟିଏ କୁଡୁଆ ଖିରି ଉତ୍ତରୀ ତଳେ ଲୁଗ୍ଇ ରଖିଦେଲେ। ସତରେ ଭଗବାନ କେଡ଼େ ଭାବଗ୍ରାହୀ! ସେ ଭକ୍ତକୁ ସୁଖୀ କରିବା ପାଇଁ ନିଜର ନାଁ ସଙ୍ଗେ କୌଣସି ବି ବିଶେଷଣକୁ ଯୋଡ଼ିବା ପାଇଁ କୁଣ୍ଠାବୋଧ କରନ୍ତି ନାହିଁ।

ପୂଜାରୀ ଠାକୁରଙ୍କୁ ଶୟନ କରାଇ ପହଡ଼ ପକାଇ ଯାଇ ବିଶ୍ରାମ କଲା। ଗୋପୀନାଥ କିନ୍ତୁ ଶୋଇ ପାରିଲେ ନାହିଁ। ମାଧବେନ୍ଦ୍ର ଗୋସାଇଁଙ୍କ ପାଖକୁ ଖିରି ଭୋଗ ପଠାଇବା ପାଇଁ ସେ ଗୋଟିଏ ଉପାୟ କଲେ। ପୂଜାରୀକୁ ସ୍ୱପ୍ନରେ କହିଲେ—"ଉଠ ପୂଜାରୀ! ଶୀଘ୍ର ଉଠ! ମନ୍ଦିର ଖୋଲି ଆସି ଦେଖିବ ମୋ ଉତ୍ତରୀ ତଳେ ଗୋଟିଏ ଖିରି କୁଡୁଆ ରଖାଯାଇଛି। ଖିରି ଭୋଗ ଲାଗିବା ବେଳେ ମୁଁ ମୋ ଭକ୍ତ ପାଇଁ ଗୋଟିଏ କୁଡୁଆ ଲୁଗ୍ଇ ରଖିଛି। ଏହା ନେଇ ମୋର ଅକିଞ୍ଚନ ଭକ୍ତ ମାଧବେନ୍ଦ୍ରକୁ ଦେଇ ଆସିବ। ଖିରି ଭୋଗ ପାଇବାକୁ ତା'ର ଭାରି ମନ ଥିଲା, କିନ୍ତୁ ମନ କଥା କାହାକୁ ନ କହି ଆମ୍ବ ତୋଟାରେ ଯାଇ ଶୋଇଛି।"

ସ୍ୱପ୍ନରେ ଗୋପୀନାଥଙ୍କ ଆଜ୍ଞା ପାଇ ଗ୍ଳାନି କରି ପୂଜାରୀର ନିଦ ଭାଙ୍ଗିଗଲା । ପ୍ରଭୁଙ୍କ ଭକ୍ତବାତ୍ସଲ୍ୟ ଗୁଣ ଦେଖି ଆନନ୍ଦରେ ତା'ର ହୃଦୟ ଗଦ୍‌ଗଦ ହୋଇ ଉଠିଲା । ଶୌଚ, ସ୍ନାନ ସାରି ମନ୍ଦିର କବାଟ ଖୋଲି ଦେଖିଲା ବେଳକୁ ସତକୁ ସତ ଠାକୁରଙ୍କ ଉତ୍ତରୀ ତଳେ ଖିରି କୁଡୁଆଟିଏ ରଖାଯାଇଛି । ଏ ଚମତ୍କାର ଦେଖି ତା' ରୋମ ରୋମରେ ଶିହରଣ ଖେଳିଗଲା । ପ୍ରଭୁଙ୍କ ପାଦତଳେ ଦଣ୍ଡବତ ଜଣାଇ ସେ ଖିରି କୁଡୁଆଟିକୁ ଘେନି ଆମ୍ବ ତୋଟାରେ ପହଞ୍ଚିଲା । ପ୍ରେମାଶ୍ରୁରେ ନେତ୍ର ଛଳ ଛଳ । ଦେହରେ ଅପୂର୍ବ ରୋମାଞ୍ଚ । ଉଚ୍ଚସ୍ୱରରେ ଡାକ ଛାଡ଼ିଲା—''ପୁରୀ ଗୋସାଇଁ! ପୁରୀ ଗୋସାଇଁ!! ଏଠାରେ କେହି ପୁରୀ ଗୋସାଇଁ ଅଛନ୍ତି କି? ମୋ ଡାକ ଶୁଣୁଥିଲେ ଆସି ମୋ'ଠାରୁ ପ୍ରସାଦ ନେଇଯାଅ । ତୁମ ପାଇଁ ଠାକୁର ଗୋପୀନାଥ ମୋ ହାତରେ ଖିରି ପ୍ରସାଦ ପଠାଇଛନ୍ତି । ଆସ! ଶୀଘ୍ର ଆସି ନିଅ ତୁମର ଭୋଗ ।''

ପୂଜାରୀଙ୍କ ଡାକ ପଡ଼ିଲା ଗୋସାଇଁଙ୍କ କାନରେ । ସେ ବିଶ୍ୱାସ କରି ପାରୁ ନ ଥାନ୍ତି ଯେ ତାଙ୍କ ପାଇଁ ଠାକୁର ଖିରି ପଠାଇଥିବେ ବୋଲି । ପୂଜାରୀଙ୍କ ନିକଟକୁ ଆସି ବିନମ୍ର ଭାବରେ ସମ୍ମାନ ଜଣାଇ କହିଲେ—''ଏ ଦାସକୁ କି ଆଜ୍ଞା, କହିବା ହୁଅନ୍ତୁ । ମୋ ନାଁ ମାଧବେନ୍ଦ୍ର ପୁରୀ ।'' ଏତିକି ଶୁଣିବା କ୍ଷଣି ପୂଜାରୀ ମହାଶୟ ତାଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲେ । ତାଙ୍କ ଦେହରେ ବିଜୁଳି ଭଳି ଭକ୍ତିର ଶିହରଣ ଖେଳିଗଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ—''ଧନ୍ୟ ଗୋସାଇଁ! ଧନ୍ୟ ତୁମେ! ତୁମ ଭଳି ଭାଗ୍ୟବନ୍ତ ଏ ଜଗତରେ ଆଉ କେହି ନାହିଁ । ପ୍ରଭୁଙ୍କର ତୁମ ଉପରେ ଅସୀମ କରୁଣା । ଏଇ ନିଅ ଖିରି ଭୋଗ । ତୁମ ପାଇଁ ଗୋପୀନାଥ ଖିରି ଚୋରି କରି ମୋ ହାତରେ ପଠାଇଛନ୍ତି ।'' ଏତିକି କହୁ କହୁ ପୂଜାରୀର ବାଣୀ କୁଣ୍ଠିତ ହୋଇଗଲା । ରୋମରାଜି ପଣସ କଣ୍ଟା ଭଳି ଟାଙ୍କୁରି ଉଠିଲା । ସେ ବାରମ୍ବାର ତାଙ୍କ ପାଦରେ ପ୍ରଣାମ ଜଣାଇ ନିଜର କକ୍ଷକୁ ଫେରିଗଲେ ।

ମାଧବେନ୍ଦ୍ରଙ୍କ ହାତରେ ପ୍ରଭୁଙ୍କ ପ୍ରଦତ୍ତ ଖିରି କୁଡୁଆ । ବାରମ୍ବାର ପ୍ରସାଦକୁ ଦର୍ଶନ କରି ଆନନ୍ଦିତ ହେଉଥାନ୍ତି । ଭାବୁଥାନ୍ତି—''ସତରେ ପ୍ରଭୁ! ତୁମେ କେଡ଼େ କରୁଣାମୟ! ମୋ ଭଳି ପାମର ମନରେ ପ୍ରସାଦ ପାଇବା ପାଇଁ ଇଚ୍ଛା ହେବା କ୍ଷଣି ତୁମେ ସବୁ ବ୍ୟବସ୍ଥା କରିଦେଲ! ତୁମ ଭଳି ପ୍ରଭୁ ଥାଉ ଥାଉ ମୋର କି ଚିନ୍ତା? କିନ୍ତୁ ପ୍ରଭୁ ତୁମକୁ ମୋ ପାଇଁ ଏତେ କଷ୍ଟ କରିବାକୁ ପଡ଼ିଲା! ମୁଁ ଟିକିଏ ପ୍ରସାଦ ମାଗି ପାଇ ଦେଇଥିଲେ କି ଧର୍ମ ଗ୍ଳାନି ଯାଇଥାନ୍ତା ଅବା? ମୋତେ କ୍ଷମା

କରିଦିଅ ଦୟାମୟ!'' ପ୍ରଭୁଙ୍କ ପାଦତଳେ ଏପରି ଅନେକ ଭାବ କୁସୁମ ସମର୍ପଣ କରୁ କରୁ ତାଙ୍କ ଆଖିରୁ ଧାରା ଶ୍ରାବଣ ଭଳି ଅବିରଳ ଅମାନିଆ ଲୋକତଧାର ବହି ଗ୍ଲିଲା। ତାଙ୍କୁ ଆଜି ତାଙ୍କର ଅଯାଚକ ଧର୍ମ ପାଇଁ ଦୁଃଖ ଅନୁଭବ ହେଲା। କିନ୍ତୁ ପ୍ରଭୁଙ୍କ କରୁଣା ଅନୁଭବ କରି ସେ ଆନନ୍ଦ ମନରେ ବିହ୍ୱଳ ହୋଇଗଲେ। ପୋଛିପାଛି ସବୁ ଖିରି ପାଇଗଲେ ଏବଂ ଧୋଇଧାଇ କୁଡୁଆଟିକୁ ଗାମୁଛାରେ ବାନ୍ଧି ରଖିଲେ। ମନରେ ଥିଲା, କୁଡୁଆରୁ ଟିକିଏ ଟିକିଏ ଭାଙ୍ଗି ସେ ସବୁଦିନ ପ୍ରସାଦଭାବେ ଗ୍ରହଣ କରିବେ।

ମାଧବେନ୍ଦ୍ର ଗୋସାଇଁ ପୁଣି ଥରେ ଶୋଇବାକୁ ଚେଷ୍ଟା କଲେ। କିନ୍ତୁ ତାଙ୍କ ଆଖିକୁ ଆଉ ନିଦ ଆସିଲା ନାହିଁ। ଭାବିଲେ, ସକାଳ ହେଲେ ଲୋକମାନଙ୍କୁ ଏ କଥା ଜଣା ପଡ଼ିଯିବ। କେତେ କିଏ ଆସି ସମ୍ମାନ ଜଣାଇବେ। ନାନା ପ୍ରକାର ଆଦର ସତ୍କାର କରିବେ। ହୃଦୟର ଭକ୍ତିଭାବନା ଲୋକମୁଖରେ ପ୍ରକାଶ ପାଇଯିବ। ତେଣୁ ସେ ପାହାନ୍ତିଆ ପହରରୁ ନିତ୍ୟକର୍ମ ସାରି ବାହାରି ପଡ଼ିଲେ ଶ୍ରୀକ୍ଷେତ୍ର ପୁରୀ ଉଦ୍ଦେଶ୍ୟରେ। ଯିବା ବାଟରେ ପ୍ରଭୁଙ୍କ ଖିରି ଭୋଗ କଥା ବାରମ୍ବାର ମନେ ପଡୁଥାଏ। ଗୋପୀନାଥଙ୍କ ଅସୀମ କରୁଣା ମନେ ପଡ଼ି ଆଉ ଦେହଜ୍ଞାନ ରହେ ନାହିଁ। ପ୍ରଭୁପ୍ରେମରେ ପାଗଳଟିଏ ପରି ସେ କେତେବେଳେ ଭୂମିରେ ଲୋଟୁଥାନ୍ତି ତ ଆଉ କେତେବେଳେ ଉନ୍ମତ୍ତ ହୋଇ ନାଚୁଥାନ୍ତି। ଏଭଳି ପ୍ରେମବୈଚିତ୍ର୍ୟ ସ୍ଥିତିରେ ମଗ୍ନ ହୋଇ ସେ ପହଞ୍ଚିଲେ ନୀଳାଚଳ ଧାମରେ। ଗରୁଡ଼ ପଛରେ ଠିଆ ହୋଇ ମହାବାହୁଙ୍କ ଦର୍ଶନ କରି ସେ ନିଜର ନେତ୍ର କୃତାର୍ଥ କଲେ। ପ୍ରଭୁଙ୍କ ଚକା ଚକା ନୟନ ଓ ରଙ୍ଗିମା ଅଧର ଦେଖି ତାଙ୍କର ସର୍ବାଙ୍ଗ ପୁଲକିତ ହୋଇ ଉଠିଲା।

ମାଧବେନ୍ଦ୍ର ପୁରୀଙ୍କ ଭକ୍ତିଭାବନା ଶ୍ରୀକ୍ଷେତ୍ର ନିବାସୀଙ୍କ ପାଇଁ ଅଛପା ରହିଲା ନାହିଁ। କ୍ଷଣକ ଭିତରେ ଏ କଥା ପ୍ରଚ୍ୟର ହୋଇଗଲା ଯେ ଗୋପୀନାଥ ଯାହାଙ୍କ ପାଇଁ ଖିରି ଚ୍ୟେରି କରିଥିଲେ, ଇଏ ସେହି ମାଧବେନ୍ଦ୍ର ପୁରୀ। ଏହା ଜାଣି ଭକ୍ତଜନଙ୍କ ମନରେ ତାଙ୍କ ପ୍ରତି ଶ୍ରଦ୍ଧା ଜାଗ୍ରତ ହେଲା। ସମସ୍ତେ ତାଙ୍କ ମୁହଁରୁ କିଛି ହରିକଥା ଶୁଣିବା ପାଇଁ ଏକତ୍ର ହେଲେ। ଯଦିବା ପ୍ରତିଷ୍ଠା ଭୟରେ ସେ ଶ୍ରୀକ୍ଷେତ୍ର ଛାଡ଼ି ଅନ୍ୟ କୁଆଡ଼େ ପଳାଇଯାଇ ଆତ୍ମଗୋପନ କରିବାକୁ ଭାବୁଥିଲେ, କିନ୍ତୁ ମନକୁ ବୁଝାଇଲେ, ''ନା, ଠାକୁରଙ୍କ ସେବା ପାଇଁ ମୋତେ ଚନ୍ଦନ ଯୋଗାଡ଼ କରିବାକୁ ହେବ। ଏଥିରେ ମୋର ପ୍ରତିଷ୍ଠା କ'ଣ ଅଛି? ସବୁ ତ ପ୍ରଭୁଙ୍କର ଲୀଳା।

ତାଙ୍କରି ଯୋଗୁଁ ଆଜି ଲୋକେ ମୋତେ ଆଦର ଦେଉଛନ୍ତି। ନହେଲେ ମୁଁ କିଏ? ତେଣୁ ମୁଁ ଏଥିରେ ସୁଖୀ ଅଥବା ଦୁଃଖୀ ହେବି କାହିଁକି?'' ଏଭଳି ନିର୍ଣ୍ଣୟ କରି ସେଠାରେ ରୁଣ୍ଡ ହୋଇଥିବା ପୂଜାରୀ, ସେବକ ଓ ମହନ୍ତମାନଙ୍କୁ ସଭା ମଝିରେ ସବୁ ବୃତ୍ତାନ୍ତ ଶୁଣାଇଲେ। 'ଗୋପାଳ ଚନ୍ଦନ ମଗାଇଛନ୍ତି' ବୋଲି ଜାଣି ସମସ୍ତେ ଆନନ୍ଦରେ ବିହ୍ୱଳ ହୋଇଗଲେ। ମାଧବେନ୍ଦ୍ରଙ୍କ ପ୍ରତି ପ୍ରଭୁଙ୍କର କେତେ ସ୍ନେହ ତାହା ବିଗ୍ଭର କରି ସମସ୍ତଙ୍କ ହୃଦୟ ଗଦ୍‌ଗଦ ହୋଇଗଲା। ଭକ୍ତିପୂତ ଚିତ୍ତରେ ସଭିଏଁ ଚନ୍ଦନ କର୍ପୂର ଆଣି ଗଦା କରିଦେଲେ। ଏତେ ଚନ୍ଦନ ତ ଗୋସାଇଁ ନିଜେ ବୋହି ନେଇ ପାରିବେ ନାହିଁ। ତେଣୁ ବୃନ୍ଦାବନରେ ଛାଡ଼ି ଆସିବାକୁ କେତେଜଣ ସେବକଙ୍କୁ ତାଙ୍କ ସାଙ୍ଗରେ ପଠାଗଲା। ଚନ୍ଦନ ଭାର ଧରି ହରିଗୁଣ ଗାନପୂର୍ବକ ପଦବ୍ରଜରେ ପୁରୀ ଗୋସାଇଁ ବୃନ୍ଦାବନ ବାହାରିଲେ। ବାଟରେ ରେମୁଣାରେ ପହଞ୍ଚୁ ପହଞ୍ଚୁ ହଠାତ୍ ତାଙ୍କ ମନରେ ଗୋପୀନାଥଙ୍କ ସ୍ମୃତି ଜାଗି ଉଠିଲା। ସେ ପ୍ରଭୁଙ୍କ ଦର୍ଶନ ପାଇଁ ଅଧୀର ହୋଇଗଲେ। ଭାବିଲେ, ଦର୍ଶନ କରି ସାରି ବୃନ୍ଦାବନ ଫେରିବେ। ମନ୍ଦିରରେ ପ୍ରଭୁଙ୍କ ହସ ହସ ବଦନ, କୁଞ୍ଚିତ କେଶ ଓ ତ୍ରିଭଙ୍ଗ ଲଳିତ ଠାଣି ଦର୍ଶନ କରି ତାଙ୍କ ମନ ଭ୍ରମର ସେହି ମୁଖକମଳରେ ଅଟକିଗଲା। ସେ ପ୍ରଭୁଙ୍କ ଆଗରେ ପ୍ରେମାବେଶରେ ବିଭୋର ହୋଇ ନାମସଂକୀର୍ତ୍ତନ ଓ ନୃତ୍ୟଗୀତ ଆରମ୍ଭ କରିଦେଲେ। ପୂଜାରୀମାନେ ଅତି ଆଦର ସହିତ ପୁରୀ ଗୋସାଇଁଙ୍କୁ ସ୍ୱାଗତ ସତ୍କାର କରି ଖିରି ପ୍ରସାଦ ଦେଲେ ଏବଂ ରାତ୍ରି ବିଶ୍ରାମ ପାଇଁ ମନ୍ଦିରରେ ବ୍ୟବସ୍ଥା କଲେ। ସେ ଅତି ଆନନ୍ଦରେ ପ୍ରାଙ୍ଗଣରେ ବିଶ୍ରାମ କରିଥାନ୍ତି। ପାହାନ୍ତିଆ ପ୍ରହରକୁ ହଠାତ୍ ଗୋଟିଏ ସ୍ୱପ୍ନ ଦେଖିଲେ। ଗୋପାଳ ଜୀଉ ବୃନ୍ଦାବନରୁ ଆସି ତାଙ୍କୁ କହୁଛନ୍ତି—''ମାଧବ! ମୋ କଥା ମନଦେଇ ଶୁଣ। ତୁମ ଭକ୍ତିରେ ମୁଁ ଅତ୍ୟନ୍ତ ପ୍ରୀତ। ତୁମର ଦେହ ଜରାଜୀର୍ଣ୍ଣ ହୋଇଗଲାଣି। ତେଣୁ ଏତେ ଚନ୍ଦନ ଧରି ବୃନ୍ଦାବନକୁ ଆସିବା ତୁମ ପକ୍ଷେ କଷ୍ଟକର ହେବ। ତେଣୁ ତୁମେ ସେଇଠି ରହି ଗୋପୀନାଥଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲାଗି କରାଅ। ଗୋପୀନାଥ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ। ଆମେ ଦୁହେଁ ଏକ ଅଙ୍ଗ। ତାଙ୍କୁ ଚନ୍ଦନ ଲାଗି କରାଇଲେ ଏଠାରେ ମୁଁ ପାଇଯିବି; ମୋର ଦେହ ଶୀତଳ ହେବ। ମନରେ ଦ୍ୱିଧା ଭାବ ନ ରଖି ବିଶ୍ୱାସପୂର୍ବକ ମୋ ଆଜ୍ଞା ପାଳନ କର।'' ଏତିକି କହି ଗୋପାଳ ଜୀଉ ଅନ୍ତର୍ଦ୍ଧାନ ହୋଇଗଲେ। ପୁରୀ ଗୋସାଇଁଙ୍କ ନିଦ ଭାଙ୍ଗିଗଲା। ଗୋପୀନାଥଙ୍କ ପୂଜାରୀଙ୍କୁ ଡାକି ସେ ପ୍ରଭୁଙ୍କର ଆଜ୍ଞା ଜଣାଇ କହିଲେ—''ଏହି କର୍ପୂର ଚନ୍ଦନ

ଗୋପୀନାଥଙ୍କ ଅଙ୍ଗରେ ଲଗାଇ ଶୀତଳ କରାଅ। ଗ୍ରୀଷ୍ମକାଳରେ ଆଜିଠାରୁ ଗୋପୀନାଥଙ୍କୁ ପ୍ରତ୍ୟହ ଚନ୍ଦନ ଲାଗିର ବ୍ୟବସ୍ଥା କରାଅ। ଏଥିପାଇଁ ଆଜିଠାରୁ ଦୁଇ ଜଣ ସେବକଙ୍କୁ ନିଯୁକ୍ତି କରିଦିଅ।" ପ୍ରଭୁଙ୍କ ଆଜ୍ଞା ପାଇ ସେବକଗଣ ଅପାର ଆନନ୍ଦରେ ଉଲ୍ଲସିତ ହୋଇ ଗୋପୀନାଥଙ୍କୁ ଚନ୍ଦନ ଲାଗି କରାଇଲେ। ଭକ୍ତର ଭାବରେ ବଶ ହୋଇ ଗୋପାଳ ଜୀଉ ବୃନ୍ଦାବନରେ ଥାଇ ଚନ୍ଦନର ଶୀତଳତା ଅନୁଭବ କଲେ।

କିଛି ଦିନ ଗୋପୀନାଥଙ୍କ ସେବା ସୌଭାଗ୍ୟ ଲାଭ କରି ପୁରୀ ଗୋସାଇଁ ପୁଣି ଥରେ ନୀଳାଚଳ ଧାମ ଯାତ୍ରା କଲେ। ସେଠାରେ ପ୍ରତିଦିନ କଳା ଶ୍ରୀମୁଖଙ୍କୁ ଦର୍ଶନ କରି ବର୍ଷା ଚ଼ରିମାସ କଟାଇଲେ। ପ୍ରତ୍ୟହ ହରିକଥା କୀର୍ତ୍ତନ ଓ ଭକ୍ତ-ଭଗବାନଙ୍କ ଚର୍ଚ୍ଚାରେ ଭକ୍ତଜନଙ୍କୁ ଆନନ୍ଦିତ କରି ସେ ସମସ୍ତଙ୍କ ହୃଦୟରେ ଭକ୍ତି ସଞ୍ଚାର କରୁଥାନ୍ତି। ଭକ୍ତିରସମୟ ଅନେକ ଶ୍ଳୋକ ରଚନା କରି ସେ ନିତ୍ୟ ଠାକୁରଙ୍କୁ ଶୁଣାନ୍ତି। ମଳୟଜ ଚନ୍ଦନରୁ ସୁଗନ୍ଧ ପ୍ରସାରିତ ହେବା ପରି ତାଙ୍କ ଶ୍ଳୋକରୁ ମଧ୍ୟ ଭକ୍ତିରସ ପ୍ରସାରିତ ହୋଇ ଜଗତକୁ ପ୍ଲାବନ କରୁଥାଏ। ତାଙ୍କ ପ୍ରଣୀତ ଶ୍ଳୋକଗୁଡ଼ିକ ଭକ୍ତିକାବ୍ୟରେ ଗ୍ରଥିତ ରତ୍ନ ମଧ୍ୟରେ କୌସ୍ତୁଭମଣି ଭଳି। ରାଧାରାଣୀଙ୍କ କୃପାରୁ ତାଙ୍କ ଶ୍ଳୋକରେ ଭକ୍ତଜନଙ୍କୁ ଭକ୍ତିରସ ପ୍ରଦାନ କରିବାର ଶକ୍ତି ଭରିଗଲା। ଜୀବନର ଶେଷ ସମୟରେ ଭକ୍ତ ମାଧବେନ୍ଦ୍ର ଗୋସାଇଁ ଠାକୁରଙ୍କ ପାଦପଦ୍ମରେ ଭକ୍ତିଭରା ନିବେଦନ ଜଣାଇ କହିଲେ—ହେ ଦୀନବାନ୍ଧବ! ହେ ମଥୁରାନାଥ! ମୋତେ କେବେ ତୁମର ଦର୍ଶନ ମିଳିବ ପ୍ରଭୁ! ହେ ପ୍ରିୟତମ! ତୁମ ଦର୍ଶନ ବିନା ମୋର ହୃଦୟ ବ୍ୟାକୁଳ ହୋଇ ଉଠୁଛି। ଏବେ ତୁମେ ହିଁ କୁହ, ମୁଁ କ'ଣ କରିବି—

**ଅୟି ଦୀନଦୟାର୍ଦ୍ର ନାଥ ହେ ମଥୁରାନାଥ କଦାବଲୋକ୍ୟସେ।**
**ହୃଦୟଂ ତ୍ୱଦଲୋକକାତରଂ ଦୟିତ ଭ୍ରାମ୍ୟତି କିଂ କରୋମ୍ୟହମ୍॥**

ଏହି ଶ୍ଳୋକଟି ପଢ଼ି ପଢ଼ି ସେ ଶେଷ ନିଶ୍ୱାସ ତ୍ୟାଗ କରି ପ୍ରଭୁଙ୍କ ଚରଣକମଳର ଚଞ୍ଚରିକ ହୋଇଗଲେ। ଧନ୍ୟ ମାଧବେନ୍ଦ୍ର ଗୋସାଇଁ! ଧନ୍ୟ ତୁମର ଭକ୍ତି! ତୁମ ଚରଣରେ ଶତ ଶତ ପ୍ରଣାମ।



# ଭକ୍ତ ଅଙ୍ଗଦ ସିଂହ

ସନ୍ଥଜନ କହନ୍ତି—ସତ୍ସଙ୍ଗରୁ ଅନାୟାସ ଉନ୍ନତି ହୁଏ ଏବଂ କୁସଙ୍ଗରୁ ଅନାୟାସ ପତନ ହୁଏ। କାମୁକ ବ୍ୟକ୍ତିର ସଙ୍ଗରୁ ମନରେ ଯେପରି କାମ ବିକାର ସୃଷ୍ଟି ହୁଏ, ସେହିପରି ଭକ୍ତଙ୍କ ସାନ୍ନିଧ୍ୟ ଲାଭ କରି ଜଣେ ଅତି ନାସ୍ତିକ ଲୋକ ମଧ୍ୟ ପରମ ଆସ୍ତିକ ହୋଇପାରେ। ସେଥିପାଇଁ ଭକ୍ତଜନ ପ୍ରଭୁଙ୍କ ନିକଟରେ ଅଳି କରି ସତ୍ସଙ୍ଗ ଓ ସାଧୁ-ସନ୍ଥଙ୍କ ସାନ୍ନିଧ୍ୟ ମାଗନ୍ତି। ଭଗବାନ କପିଳ ମାତା ଦେବହୂତିଙ୍କୁ କହିଛନ୍ତି— "ହେ ମାଆ! ଜୀବକୁ ବନ୍ଧନରେ ପକାଉଥିବା ଆସକ୍ତିରୂପୀ ରଜ୍ଜୁପାଶ କେବେ ଜରାଜୀର୍ଣ୍ଣ ହୁଏ ନାହିଁ। କିନ୍ତୁ ସେହି ଆସକ୍ତିକୁ ଭକ୍ତଙ୍କ ସଙ୍ଗେ ଯୋଡ଼ି ଦେଲେ ତାହା ଉନ୍ମୁକ୍ତ ମୋକ୍ଷଦ୍ୱାର ସ୍ୱରୂପ ହୋଇଯାଏ।" କାମ, କ୍ରୋଧ, ଭୟ, ଲୋଭ ଇତ୍ୟାଦି ଯେକୌଣସି ପ୍ରକାରେ ଭଗବାନଙ୍କ ସଙ୍ଗେ ସମ୍ବନ୍ଧ ହୋଇଯିବା ଦରକାର। ତେଣିକି ସବୁ କିଛି ଆପେ ଆପେ ହୋଇଯିବ। କିନ୍ତୁ ଜୀବ ତ ଅଜ୍ଞାନରେ ପଡ଼ିଛି, ଆପେ ଆପେ ତା'ର ଚେତନା ଜାଗ୍ରତ ହେବା ସହଜ କଥା ନୁହେଁ। ତେବେ ଏହି ସମ୍ବନ୍ଧ ସ୍ଥାପନ କରାଇଦେବ କିଏ? ସମ୍ବନ୍ଧ ସ୍ଥାପନ କରିବାକୁ ଭକ୍ତଙ୍କ ସଙ୍ଗ ନିତାନ୍ତ ଆବଶ୍ୟକ। ଭକ୍ତଙ୍କ ସଙ୍ଗ ଲାଭ କଲେ ମନରୁ ସାଂସାରିକ ଆସକ୍ତି ଦୂର ହୋଇ ହୃଦୟରେ ରୋପଣ ହେବ ଭକ୍ତିବୀଜ। ଏହାର ଜ୍ୱଳନ୍ତ ଉଦାହରଣ ହେଉଛି ଭକ୍ତ ଅଙ୍ଗଦ ସିଂହଙ୍କ ଚରିତ।

ଅଙ୍ଗଦ ସିଂହ ଥିଲେ ରାୟସେନଗଡ଼ର ରାଜା ସିଲାହଦୀ ସିଂହଙ୍କ କକା। କ୍ଷତ୍ରିୟ ହୋଇଥିବାରୁ ତାଙ୍କ ଠାରେ ବୀରତ୍ୱ ଓ ଶୌର୍ଯ୍ୟ ପ୍ରତ୍ୟକ୍ଷ ପ୍ରତିଫଳିତ ହେଉଥିଲା। ତାଙ୍କ ହୃଦୟର ଭକ୍ତିରୂପୀ ମଣିକୁ ଆଚ୍ଛାଦିତ କରିଦେଇଥିଲା କୁସଙ୍ଗ ଓ କୁପରିବେଶରୂପୀ ଧୂଳିକଣା। କିନ୍ତୁ ଭଗବାନଙ୍କ ଲୀଳା ବଡ଼ ବିଚିତ୍ର! ଯିଏ ତାଙ୍କୁ ମାନେ ନାହିଁ, ସଂସାରରୁ ତାଙ୍କ ନାଆଁ ମୂଳପୋଛ କରିଦେବାକୁ ଚାହେଁ, ସେ କେବେ କେବେ ତାହାକୁ ଆପଣାର କରିନେବା ପାଇଁ କୌଣସି ଲୀଳା ରଚନ୍ତି। ସେହିପରି ଏକ ଅଲୌକିକ ଲୀଳା ଘଟିଥିଲା ଅଙ୍ଗଦ ସିଂହଙ୍କ ଜୀବନରେ। ଭଗବାନଙ୍କ ଇଚ୍ଛାରୁ ତାଙ୍କର ବିବାହ ହେଲା ଜଣେ ଭକ୍ତି ପରାୟଣା ମହୀୟସୀ ନାରୀଙ୍କ ସଙ୍ଗେ। ସେ ଗୃହରେ ପଦାର୍ପଣ କରିବା ଦିନଠାରୁ ତାଙ୍କ ଘରେ ଠାକୁର ସେବା ଆରମ୍ଭ ହେଲା। ଅଙ୍ଗଦ ସିଂହଙ୍କ ସଂସ୍କାର କିନ୍ତୁ ସମ୍ପୂର୍ଣ୍ଣ ବିପରୀତ। ସେ ଏ ସବୁକୁ ପସନ୍ଦ କରନ୍ତି ନାହିଁ। ଠାକୁର ସେବା ଓ ସାଧୁ-ସନ୍ଥଙ୍କ ସେବାରେ ତାଙ୍କର

ବିଶ୍ୱାସ ନ ଥାଏ । ଦୁହିଙ୍କ ସ୍ୱଭାବ ୨୧ ଅଙ୍କ ଭଳି ପରସ୍ପରଠାରୁ ସମ୍ପୂର୍ଣ୍ଣ ବିପରୀତ । ଜଣକର ମୁହଁ ପୂର୍ବକୁ ହେଲେ ଆଉ ଜଣକର ପଶ୍ଚିମକୁ । ଅନେକ ଦିନ ପର୍ଯ୍ୟନ୍ତ ଦୁହିଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଲାଗି ରହିଲା । ତାଙ୍କ ପତ୍ନୀ କିନ୍ତୁ ଧର୍ମ ପରାୟଣା । ପାତିବ୍ରତ ଧର୍ମକୁ ସେ ଦୃଢ଼ତାର ସହ ପାଳନ କରନ୍ତି । ତାଙ୍କର ସୁଶୀଳତା ଓ ସେବାପରାୟଣ ସ୍ୱଭାବ ଅତ୍ୟନ୍ତ ପ୍ରଶଂସନୀୟ । ସେ କୌଣସି ଉପାୟରେ ସ୍ୱାମୀଙ୍କୁ ସତ୍‌ମାର୍ଗକୁ ଟାଣି ଆଣିବା ପାଇଁ ଚେଷ୍ଟା କରୁଥିଲେ ।

ବାଲ୍ମୀକି, ଅଜାମିଳ, ବିଲ୍ୱମଙ୍ଗଳ ପ୍ରଭୃତି ଭକ୍ତଙ୍କ ଜୀବନ ଧାରା ଭଗବାନଙ୍କ ଆଡ଼କୁ ମୋଡ଼ି ହେବା ପଛରେ ଯେପରି ସନ୍ଥଙ୍କ ବରଦହସ୍ତ ଲୁଚି ରହିଥିଲା, ସେହିପରି ଅଙ୍ଗଦ ସିଂହଙ୍କ ଜୀବନ ବଦଳିବା ପଛରେ ଲୁଚି ରହିଥିଲା ତାଙ୍କ ସ୍ତ୍ରୀଙ୍କର ଶୁଭ ସଙ୍କଳ୍ପ । ଭଗବାନ ଭକ୍ତର ସଙ୍କଳ୍ପ କଦାପି ଅପୂର୍ଣ୍ଣ ରଖନ୍ତି ନାହିଁ । କେଉଁ ଉପାୟରେ ସେ କାହା ଜୀବନକୁ ମୋଡ଼ି ଦିଅନ୍ତି, ତାହା କହିବା ସମ୍ଭବ ନୁହେଁ ।

ଅଙ୍ଗଦ ସିଂହଙ୍କ ଜୀବନ ଧାରା ବଦଳିବାର ସମୟ ଆସି ପହଞ୍ଚିଲା । ଏଭଳି ମହତ୍ କାର୍ଯ୍ୟର ମୁଖ୍ୟ ନାୟିକା ହେଲେ ତାଙ୍କର ସତୀ ସାଧ୍ୱୀ ପତ୍ନୀ । ସେ ଗୃହରେ ପଦାର୍ପଣ କରିବା ଦିନଠାରୁ ତାଙ୍କ ଘରେ ଠାକୁର ସେବା ଚାଲିଲା । ଧୀରେ ଧୀରେ ଠାକୁର ସେବା ତାଙ୍କ ଜୀବନର ଏକ ଅଭିନ୍ନ ଅଙ୍ଗ ହୋଇଗଲା । ଦୈନିକ ଠାକୁର ସେବା ହେଉଥିବାରୁ ସନ୍ଥ-ମହାତ୍ମାଙ୍କ ସମ୍ମେଳନ ଓ ନାମ ସଂକୀର୍ତ୍ତନରେ ତାଙ୍କର ଘର ଉଚ୍ଛୁଳି ଉଠୁଥାଏ । ଏ ସବୁ ସତ୍ତ୍ୱେ ଅନେକ ଦିନ ହେଲା ଗୁରୁଙ୍କ ଆଗମନ ହୋଇ ନ ଥିବାରୁ ତାଙ୍କ ମନ ଗୁରୁଙ୍କ ଦର୍ଶନ ପାଇଁ ବ୍ୟାକୁଳ ହୋଇ ଉଠିଲା । ସେ ମନେ ମନେ ଗୁରୁଙ୍କୁ ଧ୍ୟାନ କରି ଗୃହରେ ପଦାର୍ପଣ କରିବାକୁ ନିମନ୍ତ୍ରଣ ଦେଲେ । ଭକ୍ତ ଓ ଭଗବାନ ତ ଭାବର ଅଧୀନ । ଗୁରୁ ତାଙ୍କ ମନ କଥା ଜାଣି ଅଚିରେ ଆସି ଦର୍ଶନ ଦେଲେ । ଗୁରୁଙ୍କ ଦର୍ଶନ ପାଇ ଅଙ୍ଗଦ ସିଂହଙ୍କ ପତ୍ନୀ ନିଜର ଜୀବନ ଧନ୍ୟ କଲେ । ଗୁରୁଙ୍କ ପାଦ ପ୍ରକ୍ଷାଳନ କରି ସାଦରେ ଘରକୁ ପାଛୋଟି ନେଲେ ଏବଂ ସୁନ୍ଦର ଆସନ ଦେଇ ଭକ୍ତିପୂତ ଚିତ୍ତରେ ପାଦ ବନ୍ଦନା କଲେ ତା'ପରେ ଦୁହିଙ୍କ ମଧ୍ୟରେ ପ୍ରଭୁଙ୍କ ଗୁଣଲୀଳା ଚର୍ଚ୍ଚା ଚାଲିଲା । ଶ୍ରୋତା ବକ୍ତା ଦୁହେଁ ପ୍ରଭୁଙ୍କ ଗୁଣ କୀର୍ତ୍ତନରେ ମଗ୍ନ ଥାଆନ୍ତି, ଠିକ୍ ସେହି ସମୟରେ କେଉଁଆଡୁ ବୁଲି ବୁଲି ଆସି ଅଙ୍ଗଦ ସିଂହ ଘରେ ପହଞ୍ଚିଗଲେ । ତାଙ୍କର ଏସବୁ ପ୍ରତି ଆଗ୍ରହ ନ ଥିଲା । କୁସଙ୍ଗ ପ୍ରଭାବରୁ ତାଙ୍କ ହୃଦୟ ଶୁଷ୍କ ହୋଇଯାଇଥିଲା । ଯଦିବା ସତ୍ସଙ୍ଗ

ସମସ୍ତଙ୍କ ପାଇଁ ପାଥେୟ ଭଳି କାମ କରେ; ବ୍ରହ୍ମଜ୍ଞାନୀ, ସାଧକ ଓ ସଂସାରାସକ୍ତ ସବୁ ପ୍ରକାର ମନୁଷ୍ୟ ପାଇଁ ତାହା ପରମ ଉପଯୋଗୀ, ତଥାପି ତାହା ତାଙ୍କୁ ଅନୁଭବ ହୋଇ ନ ଥିଲା । ସେ ସତ୍ସଙ୍ଗ ଓ ସାଧୁ-ସନ୍ଥଙ୍କ ମହିମା ବୁଝି ପାରି ନ ଥିଲେ । ନିଜେ ଯେପରି ବିଷୟାସକ୍ତ, ସାଧୁଙ୍କୁ ମଧ୍ୟ ସେହିପରି ଭାବି ଭର୍ତ୍ସନା କରି କହିଲେ—''ମୋ ଘରେ ଏଇଟା କିଏ ବସିଛି? ବାବାଙ୍କର ଗୃହସ୍ଥ ଲୋକଙ୍କ ଘରେ କି କାମ? ଏଭଳି ଏକାନ୍ତରେ ସ୍ତ୍ରୀଲୋକଙ୍କ ସହିତ ବସାଉଠା କରିବା ସାଧୁଙ୍କ ପକ୍ଷେ ଅଶୋଭନୀୟ । ଶୀଘ୍ର ଚାଲିଯାଅ ମୋ ଘରୁ । ସାବଧାନ! ମୋ ଘରେ ଯେପରି ଆଉ ଥରେ ତୁମର ପାଦ ନ ପଡ଼େ । ନଚେତ୍ ଭଲ ହେବ ନାହିଁ ।''

ଏହିପରି ଅନେକ କଟୁ ବଚନ କହିବା ସତ୍ତ୍ୱେ ଗୁରୁଦେବଙ୍କ ମନରେ କୌଣସି ଦୁଃଖ ହେଲା ନାହିଁ । ତାଙ୍କର ସ୍ଥିତି ସଂସାରରୁ ଅତି ଉଚ୍ଚରେ ଥିଲା । ସେ ଥିଲେ ଜଣେ ଗୁଣାତୀତ ମୁକ୍ତ ପୁରୁଷ । ମାନ-ଅପମାନ ଓ ମିତ୍ର-ଶତ୍ରୁଙ୍କ ପ୍ରତି ସମଭାବ ଥିଲା ତାଙ୍କର । ସେ କାହାକୁ କିଛି ନ କହି ଉଠି ଚାଲିଗଲେ । କିନ୍ତୁ ସେହି ଭକ୍ତିପରାୟଣା ନାରୀପକ୍ଷେ ଗୁରୁଦେବଙ୍କର ଏଭଳି ଅପମାନ ଅସହ୍ୟ ହୋଇ ପଡ଼ିଲା । ନିଜ ଅପମାନରେ ଭକ୍ତ କଦାପି ବ୍ୟତିବ୍ୟସ୍ତ ହୁଏ ନାହିଁ, କିନ୍ତୁ ଗୁରୁ ଯେ କି ପ୍ରାଣଠାରୁ ବଳି ପ୍ରିୟ, ତାଙ୍କର କିଏ ଅପମାନ କଲେ ଜଣେ ଭକ୍ତିମତୀ ନାରୀକୁ କିପରି ସହ୍ୟ ହୁଅନ୍ତା ଅବା! ଏ ପରିପ୍ରେକ୍ଷୀରେ ବଳ ଥିଲେ ନିନ୍ଦୁକର ଜିଭ କାଟିଦେବା ଉଚିତ, ନହେଲେ କାନ ବନ୍ଦ କରି ସେଠାରୁ ଚାଲିଯିବା ଉଚିତ । ଏ ଦୁଇଟି କାର୍ଯ୍ୟ କରିବାକୁ ସେ ଅସମର୍ଥ । ସ୍ୱାମୀର ଜିଭ କାଟିବା ସମ୍ଭବ ନୁହେଁ ଏବଂ ଘର ଛାଡ଼ି କୁଆଡ଼େ ପଳାଇଲେ ଲୋକନିନ୍ଦାର ଭୟ! ତେଣୁ ସେ ଭାବିଲେ, ଏ ଜୀବନକୁ ତିଳ ତିଳ ନଷ୍ଟ କରିଦେବା ଶ୍ରେୟସ୍କର ହେବ । ଖିଆପିଆ ଛାଡ଼ିଦେଇ ପ୍ରାଣ ତ୍ୟାଗ କରିବାକୁ ନିର୍ଣ୍ଣୟ କରି ସେ ଗୁରୁଙ୍କ ଚିନ୍ତନରେ ଘରକୋଣରେ ପଡ଼ି ରହିଲେ ।

ଘଟଣାଟି ଅତି ଦୁଃଖଜନକ ଥିଲା, କିନ୍ତୁ ଏହାଦ୍ୱାରା ଅଙ୍ଗଦ ସିଂହଙ୍କର ସମ୍ପର୍କ ହେଲା ସନ୍ଥଙ୍କ ସହିତ । କୌଣସି ପ୍ରକାରେ ହେଲେ ବି ନିଆଁରେ ହାତ ଲାଗିବା ମାତ୍ରେ ତାହା ହାତକୁ ପୋଡ଼ିଦିଏ । ସନ୍ଥଙ୍କ ସହିତ ଏତିକି ସମ୍ବନ୍ଧ ଅଙ୍ଗଦ ସିଂହଙ୍କ ଜୀବନ ବଦଳାଇ ଦେବାକୁ ଯଥେଷ୍ଟ ଥିଲା । ଅବଶ୍ୟ ତାଙ୍କ ମନରେ ସନ୍ଥଙ୍କ ପ୍ରତି ଶ୍ରଦ୍ଧା ନ ଥିଲା; ତେଣୁ ସନ୍ଥଙ୍କ ଅପରାଧ ଓ ଅପମାନ ହୋଇଯିବାର କୌଣସି ପ୍ରଭାବ ତାଙ୍କ ଉପରେ ପଡ଼ିଲା ନାହିଁ । କିନ୍ତୁ ସ୍ତ୍ରୀ ପ୍ରତି ଆସକ୍ତି ଥିବାରୁ ତା'ଦୁଃଖରେ

ସେ ଭାଙ୍ଗି ପଡ଼ିଲେ। ତାକୁ ବୁଝାଇବା ପାଇଁ ପ୍ରାଣପଣେ ଚେଷ୍ଟା କଲେ। ଅନେକ କାକୁତି ମିନତି ହୋଇ ଗୋଡ଼ ଧରି କ୍ଷମା ମାଗିଲେ। କିନ୍ତୁ ତାହାର କୌଣସି ଅନୁକୂଳ ଫଳ ହେଲା ନାହିଁ। ଯଦିବା ସ୍ତ୍ରୀର ଗୋଡ଼ ଧରିବା ସ୍ୱାମୀ ପକ୍ଷେ ଶୋଭା ପାଏ ନାହିଁ, କିନ୍ତୁ କାମୁକ ହୋଇଥିବାରୁ ଅଙ୍ଗଦ ସିଂହ ତାହା ବି କରିବାକୁ କୁଣ୍ଠା ପ୍ରକାଶ କଲେ ନାହିଁ। ମାତ୍ର ସେହି ଭକ୍ତା ନାରୀ ତା' ବିଗ୍ରରରେ ଅଟଳ।

ତିନି ଦିନ ବିତିଗଲା। ତା' ଦେହ ଶୁଖି କଣ୍ଟା ଭଳି ହୋଇଗଲା। କ୍ରୋଧରେ ତା'ର ହୃଦୟ ଜଳୁଥାଏ। ଏ ସବୁ ସତ୍ତ୍ୱେ ସେ ସ୍ୱାମୀଙ୍କର ଅମଙ୍ଗଳ ଇଚ୍ଛା ନ କରି ପ୍ରଭୁଙ୍କ ପାଦତଳେ ବିନତି ଜଣାଇ କହୁଥାଏ—"ହେ ପ୍ରଭୁ! ଯାଙ୍କ ବୁଦ୍ଧି ବଦଳାଇଦିଅ। ଇଏ ନାସ୍ତିକ ଭାବ ଛାଡ଼ି ତୁମର ଭକ୍ତ ହୋଇଯାଆନ୍ତୁ। ଏହାଙ୍କ କୁସଙ୍ଗତି ଦୂର ହେଉ। ତୁମ ଭକ୍ତଜନଙ୍କ ପ୍ରତି ଯାଙ୍କ ହୃଦୟରେ ଶ୍ରଦ୍ଧା ସ୍ଥାନ ପାଉ। ଯଦି ମୁଁ ମୋ ଜୀବନରେ ତୁମକୁ ଟିକିଏ ଭଲ ପାଇଥାଏ, ତେବେ ମୋର ଏଇ ଇଚ୍ଛାଟି ପୂର୍ଣ୍ଣ କର ଦୟାମୟ!"

ଭଗବାନ ଭକ୍ତର ଗୁହାରୀ ଶୁଣିଲେ। ଅଙ୍ଗଦ ସିଂହଙ୍କ ମନ ବଦଳିଗଲା। ସେ ଭାବିଲେ, ଯଦି ଇଏ ଏପରି ଜିଦ୍ ଧରି ଅଖିଆ ଅପିଆ ମରିଯାଏ, ତାଙ୍କ ସୁଖର ସଂସାର ଉଜୁଡ଼ିଯିବ। ତାଙ୍କୁ ଆଉ ଏପରି ସୁନ୍ଦର, ସୁଶୀଳା, ସେବାପରାୟଣା ସ୍ତ୍ରୀ ମିଳିବ ନାହିଁ। ତାଙ୍କର ଜୀବନ ଦୁଃଖମୟ ହୋଇଯିବ। ସ୍ତ୍ରୀ ବିନା ତାଙ୍କୁ ଆଉ କିଛି ରୁଚିଲା ନାହିଁ। ସେ ନିରୁପାୟ ହୋଇ ପାଦ ଧରି ବିନତି କଲେ—"ପ୍ରିୟେ! ତୁମେ ଯାହା କହିବ ମୁଁ ମାନିବାକୁ ରାଜି ଅଛି। ତୁମର ନୀରବତା ମୋ ହୃଦୟରେ ଭୟ ସୃଷ୍ଟି କରୁଛି। ଥରେ ମାତ୍ର ତୁମର ଚନ୍ଦ୍ରବଦନ ଦେଖାଅ। ତୁମର ଦୁଃଖ ମୁଁ ଆଉ ସହି ପାରୁ ନାହିଁ।"

ସ୍ତ୍ରୀ ଭାବିଲା, ସ୍ୱାମୀଙ୍କ ଜୀବନଧାରାକୁ ବଦଳାଇବାର ଏହା ଏକ ସ୍ୱର୍ଣ୍ଣିମ ଅବସର। ଏହି ମାଧ୍ୟମରେ ସେ ସ୍ୱାମୀଙ୍କୁ ସନ୍ଥଙ୍କ ଶରଣାପନ୍ନ କରାଇଦେବ। ସେ ଅଙ୍ଗଦସିଂହଙ୍କ ନିର୍ଣ୍ଣୟକୁ ଆହୁରି ମଜବୁତ କରିବା ପାଇଁ ଉପର ମନରେ କହିଲା—"ମୋତେ କିଛି କୁହ ନାହିଁ। ଯେଉଁ ଘରେ ମୋ ଗୁରୁଦେବଙ୍କର ଅପମାନ ହେଲା, ମୁଁ ସେଠାରେ ଆଉ ଜୀବିତ ରହିବାକୁ ଚ୍ାହେଁ ନାହିଁ। ଏ ଅଭାଗା ପ୍ରାଣ ରଖି ମୁଁ ଆଉ କରିବି ବା କ'ଣ? ମୋ ଦେହର ଅର୍ଦ୍ଧ ଅଙ୍ଗ ଗୁରୁଙ୍କ ଅପମାନ କରିଛି, ତେଣୁ ମୁଁ ଏହାକୁ ଶୁଖାଇ ଶୁଖାଇ ମାରିଦେବି। ତେବେ ଯାଇ ଏଭଳି ଅପରାଧର ପ୍ରାୟଶ୍ଚିତ୍ତ ହେବ।" ଅଙ୍ଗଦ ସିଂହ ଦୁଃଖ ମନରେ କହିଲେ—"ଯଦି ତୁମର ଏପରି

ବିଗ୍ଭର, ତେବେ ମୁଁ ମଧ୍ୟ ତୁମ ଭଳି ଅନ୍ନଜଳ ତ୍ୟାଗ କରିଦେଉଛି। ତୁମ ବିନା ମୁଁ ମଧ୍ୟ ପ୍ରାଣ ରଖିବାକୁ ଗ୍ଭହେଁ ନାହିଁ। ପ୍ରିୟେ! ଏବେ ମୁଁ ମୋର ଭୁଲ୍ ବୁଝି ପାରିଲିଣି। କିନ୍ତୁ ମୋ ହାତରେ ଆଉ କ'ଣ ବା ଅଛି? ଯାହା ହେବାର ଥିଲା ହୋଇ ସାରିଲାଣି। ସେତେବେଳେ ମୋର ବୁଦ୍ଧି କିଛି କାମ କଲା ନାହିଁ। ପ୍ରିୟେ! ମୁଁ କ୍ରୋଧବଶତଃ ନିଜର ହିତାହିତ ଜ୍ଞାନ ହରାଇ ବସିଲି। ଗୁରୁଦେବଙ୍କୁ ଅତି କଟୁ କଥା କହି ତାଙ୍କ ହୃଦୟକୁ ମୁଁ ନିଶ୍ଚୟ କଷ୍ଟ ଦେଇଛି। ମୁଁ ତାଙ୍କ ଠାରେ ଅପରାଧୀ। ଏବେ କ'ଣ କରିବି ମୋତେ କୁହ। ତୁମେ କହିବ ଯଦି ତାଙ୍କ ପାଦତଳେ ପଡ଼ି ମୁଁ କ୍ଷମା ଭିକ୍ଷା ମାଗିବାକୁ ପ୍ରସ୍ତୁତ ଅଛି।"

ସ୍ୱାମୀଙ୍କ ହୃଦୟ ପବିତ୍ର ହେବା ଦେଖି ଭକ୍ତ ନାରୀ ଦୁଇ ଧାର ଲୋତକ ଅର୍ପଣ କରି ପ୍ରଭୁଙ୍କୁ ଧନ୍ୟବାଦ ଜଣାଇଲା। ଗଦ୍‌ଗଦ ଚିତ୍ତରେ କହିଲା—"ପ୍ରଭୁ! ସତରେ ତୁମେ କେଡ଼େ ଦୟାଳୁ! ମୋ ଅନ୍ତର କଥା ଜାଣି ତୁମେ ସ୍ୱାମୀଙ୍କ ଭାବନା ବଦଳାଇଦେଲ। ତୁମ ପାଦତଳେ ମୋର କୋଟି କୋଟି ପ୍ରଣାମ। ଏହାର ପ୍ରତିବଦଳରେ ମୋ ପାଖରେ ତୁମକୁ ଦେବାକୁ କିଛି ନାହିଁ। ଏ ଉପକାର ପାଇଁ ଜନ୍ମ ଜନ୍ମରେ ଏ ଦାସୀ ତୁମର ସେବିକା ହୋଇ ରହିବ।" ତା'ପରେ ସେ ଦୟାର୍ଦ୍ର ଚିତ୍ତରେ ସ୍ୱାମୀଙ୍କୁ ଆଶ୍ୱାସନା ଦେଇ କହିଲା—"ତୁମେ ତ କେତେବେଳେ କିଛି ପୂଜା-ପାଠ କରୁ ନାହଁ, ଆଉ ମୁଁ ଯଦି ସନ୍ଥ-ଗୁରୁଙ୍କ କୃପାରୁ କିଛି କରିବାକୁ ଚେଷ୍ଟା କରୁଛି ସେଥିରେ ବାଧା ଦେଉଛ। ମୋ ଅନ୍ତର ଭାବନାକୁ ତୁମେ ଟିକିଏ ବୁଝିବାକୁ ଚେଷ୍ଟା କର। କେଡ଼େ କରୁଣା କରି ଗୁରୁଦେବ ଆମ ଘରେ ପାଦ ପକାଇଥିଲେ। ତୁମେ ତାଙ୍କର ଅପମାନ କରି କେତେ ଅପରାଧ ନ କଲ! ସେ ତ କ୍ଷମାଶୀଳ, କିଛି କହିଲେ ନାହିଁ। କିନ୍ତୁ ଭଗବାନ ଏହା କଦାପି କ୍ଷମା କରିବେ ନାହିଁ। ଯଦି ତୁମେ ମୋର ପ୍ରାଣ ରଖିବାକୁ ଗ୍ଭହଁ, ତେବେ ତାଙ୍କ ଶରଣକୁ ଯାଅ। ତାଙ୍କ ପାଦତଳେ ପଡ଼ି କ୍ଷମା ଯାଚନା କର। ଆଜିଠୁ ତାଙ୍କ ଉପଦେଶ ଧାରଣ କରି ତାଙ୍କୁ ଗୁରୁରୂପେ ବରଣ କର।"

ସ୍ତ୍ରୀର କୋମଳ ମଧୁର ପରାମର୍ଶ ପ୍ରଭାବରେ ଅଙ୍ଗଦ ସିଂହଙ୍କ ହୃଦୟ ତରଳିଗଲା। ତାଙ୍କର ସମସ୍ତ କଲ୍ମଷ କ୍ଷଣକ ମଧ୍ୟରେ ଦୂର ହୋଇଗଲା। ଆଖିର ଲୁହରେ ପାପ କାଳିମା ଧୋଇଦେଇ ସେ ବ୍ୟାକୁଳ ମନରେ ସ୍ତ୍ରୀକୁ ପଗ୍ଭରିଲେ— "ମୁଁ ତ ତାଙ୍କର ଘୋର ଅପମାନ କରିଛି। ସେ ତ ମୋ ଉପରେ ଅତି ରୁଷ୍ଟ ହୋଇଯାଇଥିବେ। ତାଙ୍କୁ ମୁଁ ମୁହଁ ଦେଖାଇବି କେମିତି?" ସ୍ତ୍ରୀ ସାନ୍ତ୍ୱନା ଦେଇ

କହିଲା—''ନା ସ୍ୱାମୀ! ସନ୍ଥ ବଡ଼ ଦୟାବନ୍ତ! ପରଦୁଃଖରେ ଦୁଃଖୀ ହେବା ତାଙ୍କର ସହଜ ସ୍ୱଭାବ। ସନ୍ଥ ହୃଦୟ ନବନୀତ ପରି କୋମଳ। ସେ ଅପକାରୀର ମଧ୍ୟ ଉପକାର କରନ୍ତି। ତୁମେ ଯଦି ଠାକୁରଙ୍କ ଭଜନରେ ମନଦେବ, ସେ ଅତି ପ୍ରସନ୍ନ ହେବେ, ତୁମର ସବୁ ଅପରାଧ ଭୁଲିଯିବେ। ତାଙ୍କୁ ନିଜ ଅପମାନର ତିଳେମାତ୍ର ଦୁଃଖ ନାହିଁ। ଏହାଦ୍ୱାରା ତୁମର ଯେ କେଡ଼େ ଅହିତ ହେଲା ସେଥିପାଇଁ ସେ ନିଶ୍ଚୟ ବ୍ୟାକୁଳ ଥିବେ। ମୋ କଥା ମାନି ତୁମେ ତାଙ୍କ ଶରଣକୁ ଯାଅ। ସେ ତୁମକୁ ନିଶ୍ଚୟ କୋଳେଇ ନେବେ।''

ଶୁଭ କାର୍ଯ୍ୟରେ କଦାପି ବିଳମ୍ବ କରିବା ଉଚିତ ନୁହେଁ। କେତେବେଳେ ଏ ଚଗଲା ମନ ବଦଳିଯିବ, କିଏ ଜାଣେ। ତେଣୁ ଅଙ୍ଗଦ ସିଂହ ଆଉ କାଳବିଳମ୍ବ ନ କରି ସେଇଠୁ ସିଧା ଚାଲିଲେ ଗୁରୁଙ୍କ ନିକଟକୁ। ଅତି କରୁଣଭାବରେ ଗୁରୁଙ୍କ ପାଦତଳେ ଦଣ୍ଡବତ୍ ପ୍ରଣିପାତପୂର୍ବକ ତ୍ରାହି ମାମ୍! ତ୍ରାହି ମାମ୍! କହି ନିଜର ଭୁଲ୍ ପାଇଁ କ୍ଷମା ଯାଚନା କଲେ। ନେତ୍ରରୁ ଲୋତକ ଝରି ପଡୁଥାଏ। କଣ୍ଠ କୁଣ୍ଠିତ ହୋଇ ଯାଉଥାଏ। ଗୁରୁଦେବ ଅତ୍ୟନ୍ତ ସ୍ନେହରେ ଡାକି ନିକଟରେ ବସାଇଲେ। ଆଶ୍ୱାସନା ଦେଇ କୋମଳ କରରେ ତାଙ୍କର ମୁଣ୍ଡ ଆଉଁସି ଦେଲେ। ସତେ ଯେପରି ପ୍ରଥମ ସ୍ପର୍ଶରେ ସେ ତାଙ୍କ ହୃଦୟକୁ କରିଦେଲେ ନାସ୍ତିକରୁ ମହାନ୍ ଆସ୍ତିକ। ତାଙ୍କର କୋଟି ଜନ୍ମର ପାପରାଶି ଭସ୍ମସାତ୍ ହୋଇଗଲା। ସେ ଭଗବାନଙ୍କର ପରମ ଭକ୍ତ ହୋଇଗଲେ। ପ୍ରଥମେ ଭକ୍ତପତ୍ନୀର ସମ୍ବନ୍ଧରୁ ଗୁରୁଦେବଙ୍କ ସାନ୍ନିଧ୍ୟ ଲାଭ ହେଲା। ତା'ପରେ ଗୁରୁଦେବଙ୍କ ସଙ୍ଗ ପାଇ ପ୍ରଭୁଙ୍କ ପାଇଁ ମନ ବ୍ୟାକୁଳ ହୋଇ ଉଠିଲା। ଯାହା ଫଳରେ ସମସ୍ତ କାଲୁଷ୍ୟ ଦୂର ହୋଇ ପ୍ରଭୁଙ୍କ ପ୍ରତି ନବୀନ ପ୍ରେମ ଉଦୟ ହେଲା। ଗୁରୁଦେବଙ୍କ ଠାରୁ ମନ୍ତ୍ର ଲାଭ କରି ଏବେ ସେ ହୋଇଗଲେ ମହାନ୍ ବୈଷ୍ଣବ।

ବୈଷ୍ଣବ ହେବା ପରେ ଅଙ୍ଗଦ ସିଂହଙ୍କ ଜୀବନର ପ୍ରତ୍ୟେକ ଘଟଣାରେ ପ୍ରଭୁଭକ୍ତି ଦାଉ ଦାଉ ଝଲକି ଉଠିଲା। ଥରେ ଜଣେ ପଡ଼ୋଶି ରାଜା ରାୟସେନଗଡ଼ ଉପରେ ଆକ୍ରମଣ କଲା। ଅଙ୍ଗଦ ସିଂହ ଥିଲେ ରାୟସେନଗଡ଼ର ରାଜା ସିଲାହଦୀସିଂହଙ୍କର ଶୁଭ ଚିନ୍ତକ ଓ ସେନାପତି। ସେ ମହାନ୍ ତେଜସ୍ୱୀ ଓ ବୀରଙ୍କ ମଧ୍ୟରେ ଅଗ୍ରଣୀ ଥିଲେ। ତାହାଙ୍କ ବୀରତ୍ୱ ସହିତ ପ୍ରଭୁଭକ୍ତିର ଶକ୍ତି ଭରିଦେଲା ତାଙ୍କ ଅଙ୍ଗ ଅଙ୍ଗରେ ଅମିତ ସାହସ। ସତ୍ୟର ବିଜୟ ପାଇଁ କାହାକୁ ଭୟ ନ କରି ଅଙ୍ଗଦ ସିଂହ ନିର୍ବାହ କଲେ ସେନାପତି ଦାୟିତ୍ୱ। ବୀରତ୍ୱର ସହିତ ଯୁଦ୍ଧ

କରି ପଡ଼ୋଶୀ ରାଜାଙ୍କୁ ଅକ୍ଳେଶରେ ପରାଜିତ କରିବା ସହିତ ତା'ର ରାଜଧାନୀ ଉପରେ ଆକ୍ରମଣ କରି ତା' ଦେଶ ଅଧିକାର କରିନେଲେ। ସୈନ୍ୟ-ସାମନ୍ତଗଣ ପରାଜିତ ରାଜାଙ୍କ ରାଜଭବନରେ ପଶି ଧନସମ୍ପତ୍ତି ଲୁଟପାଟ୍ କରିନେଇଗଲେ। ନିୟମ ଅନୁସାରେ ସବୁ ସମ୍ପତ୍ତି ବିଜୟୀ ରାଜାଙ୍କ ଆଗରେ ରଖାଗଲା। ସେଥିମଧ୍ୟରୁ ଅଧା ଧନ ସୈନ୍ୟଙ୍କୁ ବାଣ୍ଟି ଦିଆଗଲା ଏବଂ ଅଧା ରଖାଗଲା ରାଜକୋଷରେ। ଅଙ୍ଗଦ ସିଂହଙ୍କୁ ଗୋଟିଏ ଏଭଳି ଟୋପି ମିଳିଥିଲା, ଯେଉଁଥିରେ ୧୦୦ଟି ମୂଲ୍ୟବାନ୍ ହୀରା ଥିଲା। ତା'ଭିତରେ ଗୋଟିଏ ହୀରା ଥିଲା ସବୁଠୁ ମୂଲ୍ୟବାନ୍। ସେ ସେହି ହୀରାଟିକୁ ସବୁବେଳେ ନିଜର ପଗଡ଼ିରେ ଖୋସି ରଖିଲେ। ଜଗତର ଶ୍ରେଷ୍ଠ ବସ୍ତୁ ଭଗବାନଙ୍କ ସେବାରେ ଲାଗିବା ଦରକାର। ତେଣୁ ସେ ମନସ୍ଥ କଲେ ଯେ ଦେବଗଣ ଯେପରି ଭଗବାନଙ୍କୁ କୌସ୍ତୁଭ ମଣି ଭେଟି ଦେଇଥିଲେ, ସେହିପରି ସେ ସେହି ମୂଲ୍ୟବାନ୍ ହୀରାଟିକୁ ପୁରୁଷୋତ୍ତମ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚରଣରେ ଅର୍ପଣ କରିବେ। ଏଭଳି ହୀରାର ପ୍ରକୃତ ଅଧିକାରୀ ଜଗତ ଠାକୁର ଜଗନ୍ନାଥ। କିଏ କାଳେ ତାଙ୍କ ଠାରୁ ହୀରା ଚୋରି କରିନେବ, ସେଥିପାଇଁ ସେ ପଗଡ଼ିରେ ଯତ୍ନରେ ରଖିଲେ। ଭାବିଲେ, ପ୍ରଭୁଙ୍କ ବସ୍ତୁର ସ୍ଥାନ ମସ୍ତକରେ ହେବା ଉଚିତ ଏବଂ କେହି ଏହାକୁ ନେବାକୁ ଚାହିଁଲେ ମୋ ମୁଣ୍ଡ କାଟି ନେଇ ପାରିବ, ନଚେତ୍ ସମ୍ଭବ ନୁହେଁ।

ଶୁଭ କାର୍ଯ୍ୟରେ ନିଶ୍ଚୟ କିଛି ନା କିଛି ବିଘ୍ନ ଆସେ। ଅଙ୍ଗଦ ସିଂହ ଶ୍ରୀକ୍ଷେତ୍ର ଯାଇ ପ୍ରଭୁଙ୍କୁ ହୀରା ଅର୍ପଣ କରିବାକୁ ସଂକଳ୍ପ କରିଥିଲେ, କିନ୍ତୁ ତାଙ୍କର ସେ ସଂକଳ୍ପ ପୂର୍ଣ୍ଣ ହୋଇ ପାରିଲା ନାହିଁ। ତାଙ୍କ ପ୍ରତି ଦ୍ୱେଷଭାବ ରଖୁଥିବା କେତେକ କପଟୀ ଲୋକ ରାଜାଙ୍କ ମନରେ ଦ୍ୱେଷ ଜାତ କରାଇବା ପାଇଁ ବାରକଥା କହି ରାଜାଙ୍କ ଆଗରେ ଚୁଗୁଲି କଲେ। କହିଲେ, "ଦେଖ ହେ! ରାଜାଙ୍କ ଧନରେ ଇଏ ମାଲିକ ହେଲାଣି। ଯ୍ୟା ମୁହଁ ଉପରକୁ ହୋଇଗଲାଣି। ଇଏ ନିଜକୁ କ'ଣ ଭାବୁଛି କେଜାଣି? ଆମ ମଣିମା ଯେଉଁ ହୀରାର ଅଧିକାରୀ, ଇଏ ଲୋଭରେ ତାହାକୁ ଲୁଚାଇ ରଖିଛି। ରାଜାଙ୍କ ଧନ ତାଙ୍କୁ ନ ଦେଇ ଲୁଚାଇ ରଖିବା ଦଣ୍ଡନୀୟ ଅପରାଧ ଏବଂ ଏକ ପ୍ରକାର ଚୋରି।" ଏହିପରି ନାନା କଥା କହି ରାଜାଙ୍କୁ ଉକୁସେଇଲେ। ରାଜାଙ୍କର ମତି ବଦଳିଗଲା। ସେ ହୀରା ପ୍ରତି ଲୋଭାସକ୍ତ ହୋଇଗଲେ।

ରାଜା ଗୋଜା। ଯାହା ବୁଝିଯିବେ ଫାଳେ। ସେ ଭଲଭାବେ ଜାଣିଥିଲେ

ଯେ ଅଙ୍ଗଦ ସିଂହ ବିନା ତାଙ୍କର ବିଜୟ କଦାପି ସମ୍ଭବ ହୋଇ ନ ଥାନ୍ତା। ତାଙ୍କ ବୀରତ୍ୱ ସହିତ ସେ ବେଶ୍ ପରିଚିତ ଥିଲେ। ପୁଣି ସେ ଏ କଥା ମଧ୍ୟ ଜାଣିଥିଲେ ଯେ ଶତଚେଷ୍ଟା କଲେ ମଧ୍ୟ ଅଙ୍ଗଦଙ୍କୁ ଅକ୍ତିଆର କରି ପାରିବେ ନାହିଁ, ତଥାପି ଲୋକଙ୍କ କଥାରେ ପଡ଼ି କଳେବଳେକୌଶଳେ ତାଙ୍କ ଠାରୁ ହୀରାଟି ଛଡ଼ାଇ ଆଣିବାକୁ ଚେଷ୍ଟା କଲେ। ସାମ, ଦାମ, ଦଣ୍ଡ, ଭେଦ ପ୍ରଭୃତି ସବୁ ପ୍ରକାର ନୀତି ପ୍ରୟୋଗ କରି ସେ ଅଙ୍ଗଦ ସିଂହଙ୍କୁ ବଶୀଭୂତ କରିବାକୁ ନିରନ୍ତର ପ୍ରୟାସ କରୁଥାନ୍ତି। ଲୋକଙ୍କ ହାତରେ ତାଙ୍କ ନିକଟକୁ ଖବର ପଠାଇଲେ ଯେ, "କକା! ଯଦି ତୁମେ ମୋତେ ସେହି ଗୋଟିକ ହୀରା ଦେଇଦେବ, ତୁମକୁ ଆଉ ଅନେକଶତଟି ହୀରା ଛାଡ଼ କରିଦିଆଯିବ। ଯଦି ମୋର ଏହି ସର୍ତ୍ତରେ ତୁମେ ରାଜି ନହୁଅ, ତେବେ ମୁଁ ଦଣ୍ଡନୀତି ଆଦରି ନେବାକୁ ବାଧ୍ୟ ହେବି। ତୁମର ସବୁ ସମ୍ପତ୍ତି ଜବତ କରିନିଆଯିବ।"

ମନ୍ତ୍ରୀମାନେ ନାନାପ୍ରକାରେ ଅଙ୍ଗଦ ସିଂହଙ୍କୁ ବୁଝାଇବାକୁ ଚେଷ୍ଟା କଲେ; କିନ୍ତୁ ସେ ତାଙ୍କ ବଚନରେ ଅଟଳ। ସେ କହିଲେ, "ମୁଁ ଥରେ ପ୍ରତିଜ୍ଞା କରି ଜଗନ୍ନାଥଙ୍କୁ ହୀରା ସମର୍ପଣ କରିଦେଇଛି ମାନେ ଏଥିରେ ଆଉ କାହାରି ଅଧିକାର ନାହିଁ। କାହାକୁ କିଛି ଦେବାକୁ ପ୍ରତିଜ୍ଞା କରି ସେଥିରୁ ଓହରିଯିବା ଘୋର ପାପ। ଏତଦ୍ଦ୍ୱାରା ସକଳ ପୁଣ୍ୟ ଧୂଳିସାତ୍ ହୋଇଯିବ। ପ୍ରତିଜ୍ଞା ତ୍ୟାଗ କରିବା ଏକ ପ୍ରକାରେ ଅସତ୍ୟ ଏବଂ ଅସତ୍ୟ ଠାରୁ ବଳି ପାପ ଏ ସଂସାରରେ ଆଉ କିଛି ନାହିଁ।"

ତା'ପରେ ରାଜା ସିଲାହଦୀ ସିଂହ ଭେଦ ନୀତିର ଆଶ୍ରୟ ନେଲେ। ଅଙ୍ଗଦ ସିଂହଙ୍କର ଗୋଟିଏ ବିଧବା ଭଉଣୀ ଥିଲା। ସେ ତାକୁ ହାତ କରି ତା' ସହିତ ଅନେକ ଗୁପ୍ତ ମନ୍ତ୍ରଣା କଲେ। କହିଲେ—"ପିଉସୀ ନାନୀ! ତୁମ ବାପା ତୁମକୁ ବିବାହ ସମୟରେ ଯଉତୁକ ରୂପେ ଗୁଡ଼ାଏ ଗାଁଆ ଦେଇଥିଲେ, କିନ୍ତୁ ତୁମର ଏ ଭାଇ ଅଙ୍ଗଦ ସିଂହ ଏତେ ଦୁଷ୍ଟ ଯେ ତୁମକୁ କିଛି ନ ଦେଇ ସବୁ ନିଜ ଅକ୍ତିଆରରେ ରଖିଲା। ସେତେବେଳେ ତା' ମୁହଁରେ ତୁମ ବାପା କିଛି କହି ପାରିଲେ ନାହିଁ। କିନ୍ତୁ ଏବେ ମୁଁ ଏ ଦେଶର ରାଜା। ତୁମେ ଯଦି ଏହାକୁ ବିଷ ଦେଇ ମାରି ଦିଅନ୍ତ, ମୁଁ ସବୁ ସମ୍ପତ୍ତି ତୁମ ନାଆଁରେ ଲେଖି ଦିଅନ୍ତି।" ରାଜା ସିଲାହଦୀସିଂହ ଏହିପରି ଆହୁରି ଅନେକ କଥା କହି ତା' ପାଦରେ ପଡ଼ି ବହୁ ପ୍ରକାରେ ଅନୁନୟ ବିନୟ ହୋଇ ତାଙ୍କ କାର୍ଯ୍ୟରେ ଟିକିଏ ସାହାଯ୍ୟ କରିବାକୁ

ଅନୁରୋଧ କଲେ। ସ୍ତ୍ରୀ ଜାତି ତ! ଏତେ ହିତାହିତ ଜ୍ଞାନ ନ ଥାଏ। ତା' ସାଙ୍ଗକୁ ଲୋଭ ତା'ର ବୁଦ୍ଧିକୁ ନଷ୍ଟ କରିସାରିଥାଏ। ସେ ଆଉ ଭଲମନ୍ଦ ବିଗ୍ଭର ନ କରି ରାଜାଙ୍କ କଥାରେ ସହମତ ହୋଇଗଲା। ସୁଯୋଗ ଦେଖି ସେ ଅଙ୍ଗଦ ସିଂହଙ୍କ ଖାଦ୍ୟରେ ବିଷ ଗୋଳେଇ ଦେବାର କୂଟ ଚକ୍ରାନ୍ତ ରଚିଲା। ଅଙ୍ଗଦ ସିଂହ ଖାଇଲା ବେଳେ ସବୁଦିନ ଭାଣିଜାକୁ ସାଙ୍ଗରେ ବସାଇ ଖୁଆନ୍ତି। କିନ୍ତୁ ସେ ଦିନ ତାଙ୍କ ଭଉଣୀ ଖାଦ୍ୟରେ ବିଷ ମିଶେଇବା ପାଇଁ ନିଜ ଝିଅକୁ ଅନ୍ୟ କୁଆଡ଼େ ପଠାଇ ଦେଇଥାଏ। ବିଷ ମିଶା ଭୋଜନ ବାଢ଼ିଦେଇ ସେ ଭାଇକୁ ଖାଇବାକୁ ଡାକିଲା। ଅଙ୍ଗଦ ସିଂହଙ୍କୁ ଏ ଷଡ଼ଯନ୍ତ୍ର ବିଷୟରେ କିଛି ଜଣା ନ ଥାଏ। ସେ ଠାକୁରଙ୍କୁ ଅର୍ପଣ କରିସାରି କହିଲେ—"ଝିଅକୁ ଡାକ। ଆମେ ସାଙ୍ଗ ହୋଇ ପ୍ରସାଦ ପାଇବୁ। ସେ କୁଆଡ଼େ ଗଲା?"

ଭଉଣୀ କହିଲା—"ତୁମେ ଆଗ ପାଅ। ସିଏ କୁଆଡ଼େ ବୁଲୁଛି, ଆସିଲେ ମୁଁ ତାକୁ ଖୁଆଇ ଦେବି।" ଅଙ୍ଗଦ ସିଂହ କିନ୍ତୁ ହାତ ଟେକି ବସିଥାନ୍ତି। ଯେତେ ବୁଝାଇଲେ ବୁଝୁ ନ ଥାନ୍ତି। କହୁଥାନ୍ତି ସିଏ ନ ଆସିବା ଯାଏ ମୁଁ ଖାଇବି ନାହିଁ। ସିଏ ପୁଣି କହିବ ମାମୁଁ ମୋତେ ନ ଡାକି ଆଗ ଖାଇଦେଲେ ବୋଲି। ଭାଣିଜୀ ପ୍ରତି ଭାଇର ଏଭଳି ସ୍ନେହ ଦେଖି ତା' ହୃଦୟରେ ଭ୍ରାତୃପ୍ରେମ ଉଛୁଳି ଉଠିଲା। ତା'ର ହୃଦୟ ତରଳିଗଲା। ସେ ଭାଇର ମୃତ୍ୟୁଭୟରେ ଭୟଭୀତ ହୋଇ ଭୋ ଭୋ ହୋଇ କାନ୍ଦି ପକାଇଲା। ଅଧୀରତାର କାରଣ ପଗ୍ଭରିବାରୁ ଭାଇର ଛାତିରେ ମୁଣ୍ଡ ରଖି ସବୁ ଷଡଯନ୍ତ୍ର ଖୋଲି କହିଦେଲା। ତାହା ଶୁଣି ଅଙ୍ଗଦ ସିଂହଙ୍କ ମୁଣ୍ଡରେ ବଜ୍ର ପଡ଼ିଲା ଭଳି ଲାଗିଲା। ସେ ଭାବିଲେ, ହାୟ! ଏ କ'ଣ ହେଲା! ମୁଁ ପ୍ରଭୁଙ୍କୁ ବିଷ ମିଶା ଖାଦ୍ୟ ଭୋଗ ଲଗାଇଦେଲି! ମୋ ପାଇଁ ମୋ ପ୍ରାଣଧନଙ୍କୁ ବିଷ ଖାଇବାକୁ ପଡ଼ିଲା! କେତେ କଷ୍ଟ ନ ପାଇଲେ ମୋ ଠାକୁର! ଅଙ୍ଗଦ ସିଂହଙ୍କ ହୃଦୟ ଦୁଃଖରେ ଫାଟି ପଡ଼ିଲା। ସେ ଆଉ ଧୈର୍ଯ୍ୟ ଧରି ନ ପାରି ଭଉଣୀକୁ କହିଲେ—"ଅଭାଗିନୀ! ପାପିନୀ! ତୁ ଏ କ'ଣ କଲୁ। ମୋ ପ୍ରଭୁଙ୍କୁ ବିଷ ଭୋଗ ଲଗାଇଦେଲୁ। ଧିକ୍ ତୋ ଜୀବନକୁ। ଏବେ ଆଉ କାନ୍ଦିଲେ କ'ଣ ହେବ। ମୋ ପ୍ରଭୁ ଯେତେବେଳେ ଭୋଗ ମଣୋହି କରି ସାରିଛନ୍ତି, ମୁଁ ତାହା ନ ପାଇ ଛାଡ଼ିଦେବି କେମିତି? ପ୍ରଭୁଙ୍କ ଠାରୁ କ'ଣ ମୋ ଜୀବନ ଏତେ ମୂଲ୍ୟବାନ୍! ନା, କଦାପି ସମ୍ଭବ ନୁହେଁ। ଯାହା ହୋଇଯାଉ ବରଂ ମୁଁ ନିଶ୍ଚୟ ପ୍ରସାଦ ପାଇବି।"

ଏତିକି କହି ଅଙ୍ଗଦ ସିଂହ ପ୍ରସାଦ ପାଇବା ପାଇଁ ଉଦ୍ୟତ ହୁଅନ୍ତେ ଭଗବାନ୍

ପ୍ରକଟ ହୋଇ ତାଙ୍କ ହାତକୁ ଧରି ପକାଇଲେ। ବାରଣ କରି କହିଲେ, "ନା ଭକ୍ତବର! ଜାଣିବୁଝି ବିଷ ଭକ୍ଷଣ କରିବା ଉଚିତ ନୁହେଁ।" ଅଙ୍ଗଦ ଅଧୀର ମନରେ କହିଲେ—"ହେ ପ୍ରିୟତମ! ଏ ଜୀବନରେ ମୋର ଆଉ କି ପ୍ରୟୋଜନ। ତୁମକୁ ଭୋଗ ଅର୍ପଣ କରିଦେଇଛି ଯେତେବେଳେ ମୁଁ ଏହା ପରିତ୍ୟାଗ କରି ପାରିବି ନାହିଁ। ଯେତେବେଳେ ହେଲେ ମୃତ୍ୟୁ ହେବା ତ ସୁନିଶ୍ଚିତ। ପୁଣି ପ୍ରସାଦ ପାଇ ନ ମରିବି କାହିଁକି? ମୃତ୍ୟୁ ଡରରେ ଏ ଭଳି ସୁବର୍ଣ୍ଣ ସୁଯୋଗ କାହିଁକି ହାତଛଡ଼ା କରିବି? ପ୍ରସାଦ ନ ପାଇଲେ କ'ଣ ମୋ ଜୀବନ ଅମର ହୋଇଯିବ। ଆଉ ଅମର ହୋଇ ମୁଁ କରିବି ବା କ'ଣ?" ଏହିପରି କହି ଅଙ୍ଗଦ ସିଂହ ଆନନ୍ଦ ମନରେ ସବୁ ପ୍ରସାଦ ପାଇଗଲେ। କିନ୍ତୁ ଭଗବାନଙ୍କ କୃପାରୁ ତାଙ୍କ ପାଇଁ ବିଷ ପ୍ରଭାବହୀନ ହୋଇଗଲା। ଯାହାର ଭୟରେ କାଳ ଡରେ, ତାଙ୍କର ଭକ୍ତ ପାଇଁ ଏହି ତୁଚ୍ଛ ବିଷ ଅବା କି ଜିନିଷ?

ରାଜାଙ୍କର ସବୁ ଷଡ଼ଯନ୍ତ୍ର ପଣ୍ଡ ହୋଇଗଲା। ଅଙ୍ଗଦ ସିଂହ ପ୍ରକୃତ ଭକ୍ତ ଥିଲେ। ତାଙ୍କ ନିଷ୍ଠାରେ କେଉଁଠି ତିଳେମାତ୍ର ଊଣା ନ ଥିଲା। ସେ ତାଙ୍କ ପଣରୁ ପାଦେ ହେଲେ ଘୁଞ୍ଚିଲେ ନାହିଁ। ହୀରାଟିକୁ ଜଗତର ନାଥ ଜଗନ୍ନାଥଙ୍କ ଚରଣରେ ଅର୍ପଣ କରିବା ନିମନ୍ତେ ସେ ଶ୍ରୀକ୍ଷେତ୍ର ଅଭିମୁଖେ ଗ୍ଭଲିଲେ। ଏ ଖବର ପାଇ ରାଜା ଅନେକ ସୈନ୍ୟ ସାମନ୍ତ ପଠାଇଦେଲେ ହୀରା ଛଡ଼ାଇ ଆଣିବା ପାଇଁ। ସେମାନେ ଦ୍ରୁତ ଗତିରେ ଦୌଡ଼ି ଯାଇ ତାଙ୍କ ପାଖରେ ପହଞ୍ଚି କହିଲେ— "ସାବଧାନ! ଆଉ ପାଦେ ହେଲେ ଆଗକୁ ଯାଇ ପାରିବ ନାହିଁ। ପ୍ରଥମେ ହୀରାଟିକୁ ଏଇଠି ରଖିଦିଅ, ତା'ପରେ କଥାବାର୍ତ୍ତା। ଯଦି ଏହା ନ କର, ତେବେ ତୁମକୁ ଆମ ସହିତ ଯୁଦ୍ଧ କରିବାକୁ ପଡ଼ିବ। ଆମେ ରାଜାଜ୍ଞା ପାଳନ କରିବାକୁ ବାଧ୍ୟ।" ଅଙ୍ଗଦ ସିଂହ ବିନମ୍ର ଭାବରେ କହିଲେ—"ତୁମେମାନେ ଟିକିଏ ଅପେକ୍ଷା କର, ମୁଁ ଏଇ ସରୋବରରେ ସ୍ନାନ ସାରି ହୀରାଟିକୁ ଦେଇଦେବି।" ତାଙ୍କର ଗୂଢ଼ ବଚନ ସୈନ୍ୟଗଣ ବୁଝି ପାରିଲେ ନାହିଁ। ସେମାନେ ଭାବିଲେ, ଗାଧୋଇ ସାରି ଆସି ଆମକୁ ହୀରା ଦେଇଦେବ ବୋଲି କହୁଛି। କିନ୍ତୁ ତାଙ୍କ ଭାବନା ଥିଲା ଯେ ସେ ସ୍ନାନ ସାରି ଜଗନ୍ନାଥଙ୍କୁ ହୀରା ଅର୍ପଣ କରିଦେବେ। ତାଙ୍କ କଥାରେ ସୈନ୍ୟମାନେ ସହମତ ହୋଇ ତାଙ୍କୁ ଛାଡ଼ିଦେଲେ। ସେ ପ୍ରଥମେ ସ୍ନାନ ସାରି ସେହି ଜଳରେ ଠିଆ ହୋଇ ଭକ୍ତିପୂତ ଚିତ୍ତରେ ମହାବାହୁ ଜଗନ୍ନାଥଙ୍କୁ ଧ୍ୟାନ କଲେ ଏବଂ ହାତଯୋଡ଼ି କହିଲେ—"ପ୍ରଭୁ! ତୁମେ ତ ଅନ୍ତର୍ଯାମୀ। ମୋ ମନ କଥା ତୁମକୁ କ'ଣ

ଅଛପା ଅଛି? ଅନେକ ଦିନରୁ ଅଭିଳାଷ ଥିଲା ଶ୍ରୀକ୍ଷେତ୍ର ଯାଇ ତୁମକୁ ହୀରାଟି ଅର୍ପଣ କରିବା ପାଇଁ। କିନ୍ତୁ ମୋ ଭଳି ହତଭାଗ୍ୟକୁ ସେ ସୁଯୋଗ କୁଆଡୁ ବା ମିଳିବ! ଏବେ ମୁଁ ନିରୁପାୟ। ରାଜା ଆଗରେ ମୋର ବଳ କାମ କରୁ ନାହିଁ। ତୁମେ ତ ସର୍ବବ୍ୟାପୀ! ସବୁଠି ତୁମର ହାତ, ଗୋଡ଼, ନାକ, କାନ ରହିଛି। ତେଣୁ ତୁମେ ମୋ ଅଭିଳାଷ ପୂର୍ଣ୍ଣ କରି ତୁମର ଏହି ଦ୍ରବ୍ୟକୁ ସ୍ୱୀକାର କର।'' ଏହିଭଳି ଭକ୍ତିଭାବରେ ପ୍ରାର୍ଥନା ଜଣାଇ ସେ ହୀରାଟିକୁ ସେହି ଜଳରେ ଅର୍ପଣ କରିଦେଲେ। ତାଙ୍କୁ ସର୍ବତ୍ର ଭଗବାନଙ୍କର ସର୍ବବ୍ୟାପକତା ଅନୁଭବ ହୋଇ ସାରିଥିଲା। 'ଜଳେ ବିଷ୍ଣୁ ସ୍ଥଳେ ବିଷ୍ଣୁ ବିଷ୍ଣୁ ପର୍ବତ ମସ୍ତକେ' ଭାବନା ଦୃଢ଼ ହୋଇ ସାରିଥିଲା। ତେଣୁ ତାଙ୍କର ବିଶ୍ୱାସ ଥିଲା ଯେ ଏହାକୁ ମହାପ୍ରଭୁ ଜଗନ୍ନାଥ ନିଶ୍ଚୟ ସ୍ୱୀକାର କରିବେ।

ଭଗବାନ ତ ଭାବଗ୍ରାହୀ! ତାଙ୍କ ପାଇଁ ଏହା କେଉଁ ବଡ଼ କଥା ଅବା? ମହାବାହୁ ତାଙ୍କର ବିଶାଳ ଭୁଜ ବଢ଼ାଇ ଦାସିଆର ନଡ଼ିଆ ସ୍ୱୀକାର କରିବା ଭଳି ଭକ୍ତ ଅଙ୍ଗଦ ସିଂହଙ୍କ ମନୋବାଞ୍ଛା ପୂର୍ଣ୍ଣ କଲେ। ଭକ୍ତର ପ୍ରଦତ୍ତ ହୀରା ଖଣ୍ଡିକ ଭଗବାନଙ୍କୁ ଏତେ ପ୍ରିୟ ଲାଗିଲା ଯେ ସେ ତାହାକୁ ନିଜେ ନିଜେ ହୃଦୟରେ ଧାରଣ କରିନେଲେ। ସତେ ଯେପରି ସେ ଏହି ମାଧ୍ୟମରେ ଭକ୍ତକୁ ଆଲିଙ୍ଗନ ସୁଖ ପ୍ରଦାନ କରୁଛନ୍ତି। କିନ୍ତୁ ଏ ଭାବକୁ ନ ବୁଝିବା ଲୋକେ ଭାବିଲେ ଅଙ୍ଗଦ ସିଂହ ପୋଖରୀ ପାଣିରେ ହୀରାଟିକୁ ପକାଇଦେଲେ ବୋଲି।

ଅଙ୍ଗଦ ସିଂହ ପ୍ରଭୁଙ୍କୁ ହୀରା ସମର୍ପଣ କରି ଘରକୁ ଫେରି ଆସିଲେ। ତାଙ୍କ ପାଖରେ ହୀରା ନ ଥିଲା। ତେଣୁ ସୈନ୍ୟମାନେ ତାଙ୍କୁ ଛାଡ଼ି ପୋଖରୀରୁ ହୀରା ଖୋଜିବାର ଯୋଗାଡ଼ରେ ଲାଗିଗଲେ। ଅବିଳମ୍ବେ ରାଜାଙ୍କ ପାଖରେ ଖବର ପହଞ୍ଚିଗଲା। ସେ ପୋଖରୀର ସବୁ ପାଣି ଶୁଖାଇବାକୁ ଆଦେଶ ଦେଲେ ଏବଂ ପଙ୍କ ଭିତରୁ ହୀରା ଖୋଜି ବାହାର କରିବା ପାଇଁ ଶହ ଶହ ଲୋକଙ୍କୁ ଲଗାଇଦେଲେ। ଅକ୍ଲାନ୍ତ ପରିଶ୍ରମ ସତ୍ତ୍ୱେ କାହାକୁ ହୀରା ମିଳିଲା ନାହିଁ। ମିଳନ୍ତା ବା କୁଆଡୁ? ପୋଖରୀରେ ପଡ଼ିଥିଲେ ସିନା ମିଳନ୍ତା, ତାହାକୁ ତ ଜଗନ୍ନାଥ ସାଦରେ ଅଙ୍ଗୀକାର କରି ହୃଦୟରେ ଧାରଣ କରି ସାରିଛନ୍ତି। ଅକୃତକାର୍ଯ୍ୟ ହେବାରୁ ରାଜା ଦୁଃଖରେ ଭାଙ୍ଗି ପଡ଼ିଲେ। ମନେ ମନେ ଭାବିଲେ, "ଦୁଇ ପାଞ୍ଚିରୁ ଗଲି। ଏଣେ ହୀରା ମିଳିଲା ନାହିଁ, ତେଣେ କକାଙ୍କ ସହିତ ବୃଥାରେ ଶତ୍ରୁତା କଲି। ପରମାତ୍ମାଙ୍କ ଦରବାରରେ ମୋତେ କେବେ ବି କ୍ଷମା ମିଳିବ ନାହିଁ। ଏବେ କ'ଣ କରିବି? କେଉଁ ମୁହଁ ନେଇ କକାଙ୍କ ଆଗକୁ ଯିବି?'' ସେପଟେ ଭକ୍ତ ଅଙ୍ଗଦ ସିଂହଙ୍କୁ ମଧ୍ୟ

ବଡ଼ ଦୁଃଖ ଲାଗିଲା। ଭାବିଲେ, "ସତରେ ମୁଁ କେଡ଼େ ଅଭାଗା! ପ୍ରଭୁଙ୍କୁ ସ୍ୱହସ୍ତରେ ହୀରା ଅର୍ପଣ କରି ପାରିଲି ନାହିଁ। ପ୍ରଭୁଙ୍କୁ ଥରେ ମାତ୍ର ହୀରା ଧାରଣ କରିଥିବାର ଦେଖିଥିଲେ ମୋ ଜୀବନ ସଫଳ ହୋଇଯାଇଥାନ୍ତା, ନେତ୍ର ପବିତ୍ର ହୋଇଯାଇଥାନ୍ତା। କିନ୍ତୁ ସେ ଭାଗ୍ୟ ମୋର କାହିଁ? ତାଙ୍କ ମନ ଆତ୍ମଗ୍ଲାନିରେ ଭରିଗଲା। ମନ ଭିତରେ ନାନା ପ୍ରକାର ତର୍କ କରି ଭାବୁଥାନ୍ତି ସତରେ ମୋ ଉପହାର କ'ଣ ପ୍ରଭୁଙ୍କ ନିକଟରେ ପହଞ୍ଚିଗଲା? କିଏ ଜାଣେ, ପ୍ରଭୁଙ୍କୁ ତାହା ଭଲ ଲାଗିଲା କି ନାହିଁ? ମୋ ଆଶା ଉଜୁଡ଼ିଗଲା।" ଆଉ ବେଳେ ବେଳେ ନିଜକୁ ଧିକ୍କାର କରି କହୁଥାନ୍ତି—"ରେ ଦୁଷ୍ଟ ଅଙ୍ଗଦ! ତୁ ନିଶ୍ଚୟ ଗୋଟାଏ ପାଷଣ୍ଡ। ନିଶ୍ଚୟ ତୋ ଭକ୍ତିରେ କେଉଁଠି କପଟ ଭାବନା ରହିଛି। ତୋର ଭକ୍ତି ନିର୍ମଳ ହୋଇଥିଲେ ମହାପ୍ରଭୁ ଜଗନ୍ନାଥ କ'ଣ ତୋ ଉପହାରକୁ ସ୍ୱୀକାର କରି ନ ଥାନ୍ତେ!"

ଏହିପରି ଆତ୍ମଗ୍ଲାନିରେ ଭକ୍ତ ଅଙ୍ଗଦ ସିଂହ ଭାଙ୍ଗି ପଡ଼ିଲେ। ତାଙ୍କୁ ଏ ଦୁଃଖ ସାଗରକୁ ପାରି କରିବାକୁ କେହି ନାବିକ ମିଳୁ ନ ଥିଲେ। ଜଗତର ନାଥ ଜଗନ୍ନାଥ ଆଉ ଭକ୍ତର ବେଦନା ସହି ପାରିଲେ ନାହିଁ। ସେ ତାଙ୍କୁ ସାଦରେ ପାଛୋଟି ଆଣିବା ପାଇଁ ପୂଜାରୀମାନଙ୍କୁ ଆଜ୍ଞା ଦେଲେ। କହିଲେ, "ଅବିଳମ୍ବେ ଯାଇ ମୋ ଭକ୍ତକୁ କହିବ ଯେ ପ୍ରଭୁ ତୁମ ଉପହାର ସ୍ୱୀକାର କରି ସାରିଛନ୍ତି। ତୁମେ ଆଦୌ ମନ ଦୁଃଖ କର ନାହିଁ। ଜଗନ୍ନାଥ ତୁମକୁ ଭେଟିବାକୁ ଅତି ବ୍ୟାକୁଳ।" ପୂଜାରୀମାନେ ଯାଇ ଅଙ୍ଗଦ ସିଂହଙ୍କୁ ଏ ସମାଚାର ଜଣାଇଲେ। ପ୍ରଭୁଙ୍କର ଭକ୍ତବତ୍ସଳ ଗୁଣ ଅନୁଭବ କରି ତାଙ୍କର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା। ସେ ସେଇଠୁ ବାହାରି ପଡ଼ିଲେ ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ। ଶ୍ରୀକ୍ଷେତ୍ରରେ ପହଞ୍ଚି ଅପଲକ ନେତ୍ରରେ ପ୍ରଭୁଙ୍କୁ ଦର୍ଶନ କରି ସେ କୃତାର୍ଥ ହୋଇଗଲେ। ପ୍ରଭୁଙ୍କ ହୃଦୟରେ ଶୋଭା ପାଉଥିବା ହୀରାଟିକୁ ଦେଖି ତାଙ୍କ ନେତ୍ରରୁ ଆନନ୍ଦାଶ୍ରୁ ଝରି ଆସିଲା। ସେ ପ୍ରଭୁଙ୍କର ଅପୂର୍ବ ଅଙ୍ଗକାନ୍ତି ଓ ସୌନ୍ଦର୍ଯ୍ୟ ଦର୍ଶନ କରି କରି ଆତ୍ମବିଭୋର ହୋଇଗଲେ ଏବଂ ଆଜୀବନ ଶ୍ରୀକ୍ଷେତ୍ରରେ ରହି ଭକ୍ତିମୟ ଜୀବନ ବିତାଇବାକୁ ସ୍ଥିର କଲେ।

ସେପଟେ ରାଜାଙ୍କ ସ୍ଥିତି ଧୀରେ ଧୀରେ ଅସମ୍ଭାଳ ହୋଇ ପଡ଼ିଲା। ଅଙ୍ଗଦ ସିଂହଙ୍କ ପ୍ରତି ଭଗବାନଙ୍କର କରୁଣା ଓ ଅଦ୍ଭୁତ ଚମତ୍କାର ଦେଖି ଭାବିଲେ, "ମୁଁ ନିଶ୍ଚୟ ଭକ୍ତ-ଅପରାଧୀ। ଏଥିପାଇଁ ନିଶ୍ଚୟ ପ୍ରଭୁ ଜଗନ୍ନାଥ ମୋ ଉପରେ ରୁଷ୍ଟ ହୋଇଥିବେ। ସେ ତ ଭକ୍ତ ପାଇଁ ସବୁ କିଛି କରି ପାରନ୍ତି। ଭକ୍ତ ଅପରାଧ ପାଇଁ

ମୋତେ କେଉଁ ଦଣ୍ଡ ଭୋଗିବାକୁ ହେବ କେଜାଣି। ଭଗବାନ ଯେପରି ପ୍ରହ୍ଲାଦ ପାଇଁ ହିରଣ୍ୟକଶିପୁକୁ ଏବଂ ବିଭୀଷଣ ପାଇଁ ରାବଣକୁ ମାରିଥିଲେ, ସେହିପରି ମୋର ମରଣ ସୁନିଶ୍ଚିତ। ଏହାର ଏକମାତ୍ର ଉପାୟ ହେଉଛି ଭକ୍ତକୁ ସନ୍ତୁଷ୍ଟ କରିବା।'' ଏଭଳି ସଦ୍‌ବୁଦ୍ଧି ଜାଗ୍ରତ ହେବାରୁ ସେ ଅନେକ ବ୍ରାହ୍ମଣଙ୍କୁ ଶ୍ରୀକ୍ଷେତ୍ରକୁ ପଠାଇଲେ। କହିଲେ, ''କୌଣସି ପ୍ରକାରେ ମୋ କକାଙ୍କୁ ଫେରାଇ ଆଣିବ। ସେ ବ୍ରାହ୍ମଣ ଭକ୍ତ। ତୁମ କଥା କଦାପି ଏଡାଇବେ ନାହିଁ। ତାଙ୍କ ଯିବା ଦିନଠାରୁ ଦେଶରେ ନାନା ପ୍ରକାର ଅମଙ୍ଗଳ ସୂଚକ ଘଟଣା ଘଟୁଛି। ମୋର ପ୍ରତିଜ୍ଞା ଯେ ସେ ନ ଆସିବାଯାଏ ମୁଁ ମଧ୍ୟ ଅନ୍ନଜଳ ଗ୍ରହଣ କରିବି ନାହିଁ। ଏ ହତଭାଗା ପ୍ରାଣକୁ ରଖି ଆଉ କି ଲାଭ! ଏହାଠାରୁ ବରଂ ଭଲ ହେବ ଯେ ମୁଁ ଅଖିଆ ଅପିଆ ପ୍ରାଣ ଛାଡ଼ିଦେବି।''

ବ୍ରାହ୍ମଣମାନେ ଯାଇ ଶ୍ରୀକ୍ଷେତ୍ରରେ ଅଙ୍ଗଦ ସିଂହଙ୍କୁ ରାଜାଙ୍କ ଦୁଃଖ କାହାଣୀ ଶୁଣାଇଲେ। କିନ୍ତୁ ସେ ତ ପ୍ରଭୁପ୍ରେମରେ ବିଭୋର ଥାଆନ୍ତି। ରାଜକାର୍ଯ୍ୟ ଭିତରକୁ ପଶିବାକୁ ତାଙ୍କର ମନ ନ ଥାଏ। ତେଣୁ ସେ ଫେରିବାକୁ ସ୍ପଷ୍ଟ ମନା କରିଦେଲେ। ବ୍ରାହ୍ମଣମାନେ ମନଦୁଃଖରେ କହିଲେ—''ଯଦି ତୁମେ ଯିବ ନାହିଁ, ତେବେ ଆମ୍ଭେମାନେ ଏଇଠି ଅନଶନ କରି ପ୍ରାଣ ଛାଡ଼ିଦେବୁ। ଆମର ମଧ୍ୟ ଆଉ ସେ ରାଜ୍ୟରେ କିଛି କାମ ନାହିଁ।'' ସନ୍ଥ ତ ସ୍ୱଭାବତଃ ଦୟାଳୁ। ପରଦୁଃଖରେ କାତର ହୋଇଯିବା ତାଙ୍କର ସହଜ ସ୍ୱଭାବ। ତେଣୁ ତାଙ୍କୁ ଆଉ ଏମାନଙ୍କର ଦୁଃଖ ସହ୍ୟ ହେଲା ନାହିଁ। ସେ ଠାକୁରଙ୍କୁ ଆଜ୍ଞା ମାଗି ନଅରକୁ ଫେରି ଆସିଲେ। ଏ ସୁଖଦ ସମାଗ୍ରର ପାଇ ରାଜାଙ୍କ ଅଙ୍ଗ ପୁଲକିତ ହୋଇ ଉଠିଲା। ସେ ଅନେକ ସମ୍ଭାର ସହିତ ଭକ୍ତଙ୍କୁ ପାଛୋଟି ନେବାର ବ୍ୟବସ୍ଥା କଲେ। ନିଜେ ଆସି ତାଙ୍କ ପାଦତଳେ ପଡ଼ି କ୍ଷମା ଭିକ୍ଷା କଲେ। ନେତ୍ର ଲୋତକରେ ତାଙ୍କର ପାଦ ଧୋଇଦେଲେ ଏବଂ ପ୍ରଭୁଙ୍କ ସେବାରେ ସମସ୍ତ ରାଜସମ୍ପଦ ଅର୍ପଣ କରିଦେଲେ। ରାଜାଙ୍କର ଏଭଳି ଅଲୌକିକ ପ୍ରୀତି ଦେଖି ଅଙ୍ଗଦ ସିଂହ ପୂର୍ବର ସବୁ କଥା ଭୁଲି ଯାଇ ତାଙ୍କୁ ବକ୍ଷ ଉପରକୁ ଟାଣିନେଇ ଗାଢ଼ ଆଲିଙ୍ଗନ କଲେ। ରାଜାଙ୍କୁ ନବଜୀବନ ଲାଭ ହେଲା। ସେ ଭକ୍ତିମୟ ଜୀବନ ଯାପନ କରି ସମସ୍ତ ପ୍ରଜାଙ୍କୁ ମଧ୍ୟ ଭକ୍ତି-ରସରେ ନିମଗ୍ନ କରିଦେଲେ। ଅଙ୍ଗଦ ସିଂହ ପ୍ରଭୁଙ୍କର ଅପାର କରୁଣା ଭାଜନ ହୋଇ ନିଜ ଜୀବନର ଅବଶିଷ୍ଟ ସମୟ ପ୍ରଭୁ ଭକ୍ତିରେ ବିତାଇ ପ୍ରଭୁଙ୍କ ପରମଧାମ ଗମନ କଲେ।



# ଭକ୍ତବର ଲାଖା

ଭକ୍ତବତ୍ସଳ ଜଗନ୍ନାଥଙ୍କ ପ୍ରୀତି ଭାଜନ ହୋଇଥିବା ଭକ୍ତଙ୍କ ମଧ୍ୟରେ ଭକ୍ତବର ଲାଖା ଥିଲେ ଅନ୍ୟତମ। ରାଜସ୍ଥାନ ପ୍ରାନ୍ତର ମୁରଧରଖଣ୍ଡ ଗ୍ରାମରେ ତାଙ୍କର ଜନ୍ମ। ଜାତିରେ ଛୋଟ ହୋଇଥିଲେ ମଧ୍ୟ ତାଙ୍କ ହୃଦୟ ଥିଲା ଅତ୍ୟନ୍ତ ବିଶାଳ। ଶୂଦ୍ର ଜାତିରେ ଉତ୍ପନ୍ନ ହୋଇଥିଲେହେଁ ଭକ୍ତି ପ୍ରଭାବରୁ ସେ ବ୍ରାହ୍ମଣଙ୍କର ମଧ୍ୟ ପୂଜ୍ୟ ହୋଇ ପାରିଥିଲେ। ନଦ-ନଦୀର ଜଳରାଶି ଯେତେ ଅପବିତ୍ର ସ୍ଥାନ ଦେଇ ଆସିଥିଲେ ମଧ୍ୟ ଗଙ୍ଗାରେ ସମ୍ମିଳିତ ହେବାପରେ ଯେପରି ପରମ ପବିତ୍ର ହୋଇଯାଏ, ସେହିପରି ବ୍ୟକ୍ତି ଯେତେ ନୀଚ ବର୍ଣ୍ଣରେ ଜନ୍ମ ହୋଇଥିଲେ ବି ଭକ୍ତିରୂପୀ ଗଙ୍ଗାରେ ଅବଗାହନ କରିବା ମାତ୍ରେ ସେ ପରମ ପବିତ୍ର ହୋଇଯାଏ। ଏହି ଭକ୍ତିରୂପୀ ଗଙ୍ଗାର ସାନ୍ନିଧ୍ୟ ଲାଭ ହୁଏ ସତ୍ସଙ୍ଗରୁ। ସାଧୁ ସମାଗମ ଦେବନଦୀ ଗଙ୍ଗାର ପାବନ ଧାରା ତୁଲ୍ୟ ଅତି ପବିତ୍ରମୟ। କିନ୍ତୁ ଜାତି, ବର୍ଣ୍ଣ ଇତ୍ୟାଦିର ଶ୍ରେଷ୍ଠତ୍ୱ କାରଣରୁ ସୃଷ୍ଟି ହେଉଥିବା ଅଭିମାନ ଭକ୍ତିଧାରାର ଅବାଧ ଗତିରେ ଅନ୍ତରାୟ ସୃଷ୍ଟି କରେ। ଅନ୍ୟ ସବୁ ଦୃଷ୍ଟିରୁ ସମ୍ପନ୍ନ ହୋଇଥିଲେ ମଧ୍ୟ ଭକ୍ତିହୀନ ମନୁଷ୍ୟର ଜୀବନ ଜଳବିହୀନ ବାଦଲ ପରି ବ୍ୟର୍ଥ। ଜାତି, ଗୁଣ ଇତ୍ୟାଦି ଯଦି ଆଭୂଷଣ ହୁଏ, ତେବେ ଭକ୍ତି ହେଉଛି ବସ୍ତ୍ର। ବସ୍ତ୍ର ବିହୁନେ ଆଭୂଷଣ ଯେପରି ଶୋଭାପାଏ ନାହିଁ, ଭକ୍ତି ବିହୁନେ ଜାତି, ଗୁଣ ଇତ୍ୟାଦି ସେହିଭଳି। ଏସବୁ କେବେ କେବେ ଘୋର ଅନର୍ଥ ସୃଷ୍ଟି କରିବାରେ ସହାୟକ ହୋଇଥାନ୍ତି। ଭକ୍ତବର ଲାଖା କିନ୍ତୁ ସମ୍ପୂର୍ଣ୍ଣ ନିରଭିମାନୀ ଥିଲେ। ମହାପ୍ରଭୁ ଜଗନ୍ନାଥ ତାଙ୍କ ଉପର ଏତେ କରୁଣାଶୀଳ ହେବା ପଛରେ ପ୍ରଧାନ କାରଣ ଥିଲା ସନ୍ଥସେବା ପ୍ରତି ତାଙ୍କର ଆନ୍ତରିକ ନିଷ୍ଠା। ସନ୍ଥସେବା ତାଙ୍କ ଜୀବନର ଏକ ଅଭିନ୍ନ ଅଙ୍ଗ ହୋଇଯାଇଥିଲା। ସାଧୁସନ୍ଥ ଥିଲେ ତାଙ୍କର ପ୍ରାଣଠାରୁ ବଳି ପ୍ରିୟ। ସେ ସନ୍ଥଙ୍କ ଚରଣର ପାବନ ଧୂଳିକୁ ପ୍ରତିଦିନ ମସ୍ତକରେ ଧାରଣ କରନ୍ତି। ନାନା ପ୍ରକାର ସ୍ୱାଦିଷ୍ଟ ଅନ୍ନ-ବ୍ୟଞ୍ଜନ ତିଆରି କରି ନିତ୍ୟ ସାଧୁ-ସେବା କରିବା ଥିଲା ମୁଖ୍ୟ ଧର୍ମ। ତାଙ୍କର ବିଶ୍ୱାସ ଥିଲା ଯେ ଭକ୍ତଙ୍କ ମୁଖରେ ଭଗବାନ ଆହାର କରନ୍ତି। ଭାଗବତର ନିମ୍ନ ଉକ୍ତିଟି ଉପରେ ତାଙ୍କର ଗଭୀର ନିଷ୍ଠା ଥିଲା—

**ଅଗ୍ନି ସେବନେ ଯେହ୍ନେ ଶୀତ। ତେମନ୍ତ ସାଧୁଙ୍କ ସଙ୍ଗତ ॥**
**କର୍ମବାସନା ନାଶ କରେ। ନ ପୁଣି ପଡ଼ଇ ସଂସାରେ ॥**

ଏକଥା ଅକ୍ଷରେ ଅକ୍ଷରେ ସତ୍ୟ ମଧ୍ୟ। ଅଗ୍ନି ସମୀପକୁ ଗଲେ ଯେପରି ବ୍ୟକ୍ତିର ଶୀତ, ଭୟ ଓ ଅନ୍ଧକାର ଦୂରେଇଯାଏ, ସେହିପରି ସାଧୁସେବାରେ ନିମଗ୍ନ ବ୍ୟକ୍ତିର ବିଷୟରୂପୀ ଶୀତ, ଜନ୍ମ-ମୃତ୍ୟୁର ଭୟ ଏବଂ ମୋହରୂପୀ ଅନ୍ଧକାର ଆପଣା ଛାଏଁ ଦୂରେଇଯାଏ। ଶୀତରେ ଥରୁଥିବା ଲୋକ ଯେତିକି ସମୟ ନିଆଁ ପାଖରେ ବସେ, ତାକୁ ସେତିକି ସମୟ ପାଇଁ ଆରାମ ମିଳେ, କିନ୍ତୁ ସାଧୁସେବାର ଫଳସ୍ୱରୂପ ଲୌକିକ ଓ ପାରଲୌକିକ କ୍ଲେଶ ସବୁଦିନ ପାଇଁ ସମାପ୍ତ ହୋଇଯାଏ।

ସାଧାରଣ ଲୋକେ କିନ୍ତୁ ଭକ୍ତ ଲାଖାଙ୍କର ଏଭଳି ଉଚ୍ଚତମ ଭାବନାକୁ ବୁଝି ପାରନ୍ତି ନାହିଁ। ଗାଁକୁ ଆସିଥିବା ସାଧୁ-ସନ୍ଥମାନଙ୍କୁ ଭିକାରି ଭାବି ନାନା ପ୍ରକାର ଥଟ୍ଟା-ପରିହାସ କରନ୍ତି। କହନ୍ତି, ଏ ବାବାଗୁଡ଼ାକ ଖାଲି ଅନ୍ନ ଧ୍ୱଂସ କରୁଛନ୍ତି। କାମଧନ୍ଦା କରି ନ ପାରିବାରୁ ସହଜ ଉପାୟ ବାଛିନେଇଛନ୍ତି। କିନ୍ତୁ ସେମାନଙ୍କୁ ଜଣା ନ ଥାଏ ଯେ ପ୍ରଭୁଙ୍କୁ ପାଇବା ପାଇଁ ବାବାମାନେ ଏଭଳି ବୈରାଗୀ ବେଶ ଧାରଣ କରିଛନ୍ତି ବୋଲି। ନ ବୁଝିବା ଲୋକେ ସିନା ପରିହାସ କରିଦିଅନ୍ତି, କିନ୍ତୁ ଜଗତ ଠାକୁର ତାଙ୍କ ପ୍ରିୟ ପୁତ୍ରଙ୍କର ଅପମାନକୁ ମଥାପାତି କିପରି ଅବା ସହିବେ! ସେ ଭକ୍ତଙ୍କୁ ମହିମାମଣ୍ଡିତ କରିବା ପାଇଁ ଏକ ଲୀଳା ରଚିଲେ। ଶାସ୍ତ୍ରବାଣୀକୁ ସତ୍ୟ କରି ଦେଖାଇଦେଲେ ଯେ ଯେଉଁଠି ପୂଜ୍ୟ ଲୋକଙ୍କୁ ତିରସ୍କାର କରାଯାଏ ଏବଂ ଦୁଷ୍ଟ ଲୋକଙ୍କୁ ସମ୍ମାନ ଦିଆଯାଏ, ସେଠାରେ ଅକାଳ, ମରଣ ଓ ଭୟ ଉପସ୍ଥିତ ହୁଏ। ପ୍ରଭୁଙ୍କ ଆନ୍ତରିକ ଭାବ ଜାଣି ପ୍ରକୃତି ପ୍ରକୁପିତ ହେଲା; ଫଳସ୍ୱରୂପ ସେ ଅଞ୍ଚଳରେ ଘୋର ଦୁର୍ଭିକ୍ଷ ପଡ଼ିଲା। ଅନ୍ନ ବିହୁନେ ଲୋକମାନେ ହା-ହା-କାର କଲେ। କେଉଁଠି କିଛି ଆଶ୍ରୟ ନ ପାଇ ଶେଷକୁ ଭକ୍ତ ଲାଖାଙ୍କ ଦ୍ୱାରରେ ପହଞ୍ଚିଲେ। ସେମାନେ ଜାଣିଥିଲେ ଯେ ତିଳକ ଓ କଣ୍ଠି ଧାରଣ କରିଥିବା ବୈଷ୍ଣବମାନଙ୍କୁ ଭକ୍ତ ଲାଖା କେବେ ଖାଲି ହାତରେ ଲେଉଟାଇବେ ନାହିଁ। ବୈଷ୍ଣବଙ୍କ ସେବା ପାଇଁ ସେ ନିଜର ସର୍ବସ୍ୱ ତ୍ୟାଗ କରିଦେବେ। ତେଣୁ ସମସ୍ତେ ନିଜକୁ ନିଜେ କଣ୍ଠିମାଳ ପିନ୍ଧି ଓ ତିଳକ ଲଗାଇ ସାଧୁ ବେଶ ଧାରଣ କରିନେଲେ। ଅଧିକ ସାଧୁ-ସନ୍ଥଙ୍କ ଆଗମନ ଦେଖି ଲାଖାଙ୍କ ମନ ପରମ ଆନନ୍ଦ। ପୂର୍ଣ୍ଣଚନ୍ଦ୍ରକୁ ଦେଖି ସମୁଦ୍ର ଉଛୁଳି ଉଠିବା ପରି ସେ ଏହାକୁ ପ୍ରଭୁଙ୍କର ପରମ ଅନୁଗ୍ରହ ମନେକଲେ। ଭାବିଲେ, ଯାହାହେଉ ଭଲ ହେଲା; ଏଥର ପ୍ରଭୁଙ୍କ ଭଜନ-କୀର୍ତ୍ତନରେ ଗ୍ରାମ କମ୍ପି ଉଠିବ। ଏହି ଦୁର୍ଭିକ୍ଷ ମାଧ୍ୟମରେ ଲୋକେ ପ୍ରଭୁଭକ୍ତିରେ ମନ ଦେଇ ବୈଷ୍ଣବତା ସ୍ୱୀକାର କରିବେ। ସକାମ, ନିଷ୍କାମ ଯେକୌଣସି ଭାବରେ

ହେଉ ନା କାହିଁକି ପ୍ରଭୁଙ୍କ ସହିତ ସମ୍ବନ୍ଧ ହୋଇଗଲେ ସେମାନଙ୍କର ନିଶ୍ଚୟ କଲ୍ୟାଣ ହୋଇଯିବ। ଏପରି ପବିତ୍ର ଭାବନାରେ ସେ ସାଧୁ-ସନ୍ଥଙ୍କ ଭୋଜନର ସବୁ ପ୍ରକାର ବ୍ୟବସ୍ଥା କରିଦେଲେ। ଚାରିଆଡ଼େ ଦୁର୍ଭିକ୍ଷର ହା-ହାକାର ଚିତ୍କାର ଶୁଭୁଥିଲେ ମଧ୍ୟ ଭକ୍ତଙ୍କ ନିକଟରେ କାଳର ପ୍ରଭାବ ବ୍ୟାପିଲା ନାହିଁ। ସେ ପିତାମାତାଙ୍କ ଭଳି ଜନତାଙ୍କ ସେବାରେ ମନପ୍ରାଣ ଢାଳିଦେଲେ। ଅଖଣ୍ଡ ସାଧୁସେବା ଚାଲିଲା। ଭଜନ-କୀର୍ତ୍ତନରେ ଖଣ୍ଡ ମଣ୍ଡଳ କମ୍ପି ଉଠିଲା। ଚାରିଆଡ଼େ ଭକ୍ତ ଲାଖାଙ୍କ ବିମଳ କୀର୍ତ୍ତି ପତକା ଫର ଫର ହୋଇ ଉଡ଼ିଲା। ଯାହା ମୁଖରୁ ଶୁଣିବ ତାଙ୍କ ସେବା ଭାବନାର ପ୍ରଶଂସା।

ପ୍ରଭୁ ଜଗନ୍ନାଥ ଭକ୍ତର ପ୍ରଶଂସା ପତକାକୁ ଆହୁରି ବିସ୍ତାର କରିବାକୁ ଚାହିଁଲେ। ସେଥିପାଇଁ ତାଙ୍କୁ ଆଉ ଗୋଟିଏ ଲୀଳା ରଚିବାକୁ ପଡ଼ିଲା। ସାଧୁସନ୍ଥଙ୍କ ଭିଡ଼ ବଢ଼ି ବଢ଼ି ଚାଲିଥାଏ। ଏପଟେ ଲାଖାଙ୍କ ଭଣ୍ଡାରର ସବୁ ସମ୍ପତ୍ତି ସରିବାକୁ ବସିଲା। ଯେଉଁଠି କାଳର ପ୍ରଭାବ କାମ କରେ ନାହିଁ, ସେଠାରେ ଭଗବାନଙ୍କ ଲୀଳା କାମ କଲା। ଭକ୍ତ ଲାଖାଙ୍କ ଲଲାଟରେ ଦେଖାଦେଲା ଚିନ୍ତାର ରେଖା। ସେ କ'ଣ କରିବେ, କିଛି ଭାବି ପାରିଲେ ନାହିଁ। ସାଧୁସନ୍ଥଙ୍କ ଅଭ୍ୟର୍ଥନା ନ କରି ଖାଲି ହାତରେ ଫେରାଇ ଦେବାର ଦୁଃଖ ତାଙ୍କୁ ସହ୍ୟ ହେବ ନାହିଁ। ଏଣେ ଘରେ ଆଉ କୌଣସି ଦ୍ରବ୍ୟ ନାହିଁ। ଏଭଳି ଦ୍ୱିଧାରେ ତାଙ୍କ ଆଖିକୁ ନିଦ ଆସୁ ନ ଥାଏ। ଏ ସମସ୍ୟାର ଅନ୍ୟ କୌଣସି ସମାଧାନ ମଧ୍ୟ ମୁଣ୍ଡକୁ ଢୁକୁ ନ ଥାଏ। ଭାବୁଥାନ୍ତି, ସକାଳ ହେଲେ ସନ୍ଥମଣ୍ଡଳୀ ଆସି ସତରେ କଣ ତାଙ୍କ ଦ୍ୱାରରୁ ଫେରିଯିବେ! ଏଭଳି ଦୃଶ୍ୟ ଆଖି ଆଗରେ ଦେଖି ସେ କିପରି ନୀରବ ରହିଯିବେ? ଏହା ତାଙ୍କ ପାଇଁ ମୃତ୍ୟୁଠାରୁ ବଳି କଷଣର ବିଷୟ ହେବ। ସେ କେମିତି ସେମାନଙ୍କୁ କହିବେ ଆଜି ପ୍ରସାଦର ବ୍ୟବସ୍ଥା ନାହିଁ ବୋଲି! ରାତି ସାରା ଭାବି ଭାବି ଶେଷକୁ ସେ ଏହି ନିଷ୍ପତ୍ତିରେ ପହଞ୍ଚିଲେ ଯେ ସକାଳ ହେବା ପୂର୍ବରୁ ଘର ଛାଡ଼ି କୌଣସି ତୀର୍ଥସ୍ଥାନକୁ ଚାଲିଯିବେ। କିନ୍ତୁ ଜଗତଠାକୁର ଏଭଳି କରିବାକୁ ଦିଅନ୍ତେ ବା କିପରି? ସେ ଭାବିଲେ, "ମୁଁ ଜଗନ୍ନାଥ ନାମ ବହିଛି। ଜଗତର ପାଳନ କରିବା ମୋର ଦାୟିତ୍ୱ। ଯଦି ମୁଁ ତାହା ନ କରେ, ତେବେ ମୋ ପବିତ୍ର କୀର୍ତ୍ତିରେ ନିଶ୍ଚୟ କଳଙ୍କ ଲାଗିବ। ସେହିପରି ମୋ କାର୍ଯ୍ୟରେ ସହଯୋଗ କରି ସାଧୁ-ସେବାରେ ଜୀବନ ଅର୍ପଣ କରିଥିବା ଲାଖା ଭକ୍ତ ଯଦି ତା' ପ୍ରତିଜ୍ଞା ରଖି ପାରିବ ନାହିଁ, ତା' ହୃଦୟକୁ ନିଶ୍ଚୟ ଆଘାତ ଲାଗିବ ଏବଂ ଭକ୍ତକୁ କଷ୍ଟ ଦେବାରେ ମୁଁ ହେବି

ଭାଗୀଦାର। ତେଣୁ ମୋତେ ନିଶ୍ଚୟ ସାଧୁସେବା ପାଇଁ କିଛି କରିବାକୁ ପଡ଼ିବ। କିନ୍ତୁ ବ୍ୟବସ୍ଥା କରିବା ପୂର୍ବରୁ ଲାଖା ଭକ୍ତ ଯଦି ଘର ଛାଡ଼ି ଚାଲିଯାଏ, ତେବେ ତ ଘୋର ଅନର୍ଥ ହୋଇଯିବ। ତାକୁ ଆଗ ସାନ୍ତ୍ୱନା ଦେବା ନିହାତି ଆବଶ୍ୟକ।''

ଏହିପରି ଭାବି ଜଗତଠାକୁର ମହାପ୍ରଭୁ ଜଗନ୍ନାଥ ସ୍ୱପ୍ନରେ ଲାଖାଙ୍କୁ କହିଲେ—''ଭକ୍ତବର! ତୁମେ ଗୃହ ତ୍ୟାଗ କରିବାର ବିଚାର ଛାଡ଼ିଦିଅ। ଆଦୌ ଚିନ୍ତା କର ନାହିଁ; ତୁମର ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହେବ। ଘରେ ରହି ଆନନ୍ଦ ମନରେ ସାଧୁସେବା କର। ତୁମ ଭଳି ସାଧୁସେବୀ ଭକ୍ତ ଚାଲିଗଲେ ସାଧୁ-ସନ୍ଥଙ୍କ ମନରେ ଅପାର କଷ୍ଟ ହେବ। ସେମାନେ ମୋର ପ୍ରିୟ ସନ୍ତାନ। ସନ୍ତାନର ସେବାରେ ପିତାମାତା ଯେପରି ସନ୍ତୁଷ୍ଟ ହୁଅନ୍ତି, ସେହିପରି ମୋ ଭକ୍ତମାନଙ୍କର ସେବା କରି ତୁମେ ମୋତେ ସନ୍ତୁଷ୍ଟ କରି ପାରିଛ। କେହି ମୋର ସେବା କଲେ ମୁଁ ଯେତେ ସୁଖୀ ହୁଏ ନାହିଁ, ମୋ ଭକ୍ତଜନଙ୍କ ସେବା କରୁଥିବା ବ୍ୟକ୍ତି ଉପରେ ମୁଁ ଅଧିକ ଖୁସୀ ହୁଏ। ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରୀତ। ସକାଳ ହେଲେ ଗାଡ଼ିଏ ଗହମ ଏବଂ ଗୋଟିଏ ମଇଁଷି ଆସି ତୁମ ପାଖରେ ପହଞ୍ଚିଯିବ। ଗହମକୁ ଅମାରରେ ଭରି ଦେବ। ଉପରୁ ମୁହଁ ବନ୍ଦ କରିଦେବ। କେତେ ଖର୍ଚ୍ଚ ହେଲା ବୋଲି ବାରମ୍ବାର ଖୋଲି ଦେଖିବ ନାହିଁ। ତଳ ମୁହଁରୁ ଗହମ କାଢ଼ି ସାଧୁସେବାରେ ଲଗାଇ ଚାଲିବ। ମଇଁଷିଟି ମଧ୍ୟ ଖୁବ୍ ଦୁଧିଆଳୀ ହେବ। କ୍ଷୀର, ଦହି, ଘିଅରେ ସେ ତୁମ ଘର ଭସାଇଦେବ। କେତେ କ୍ଷୀର ଦେଉଛି ତା'ର ହିସାବ ରଖିବା ଦରକାର ନାହିଁ। ତୁମର କାମ ହେଲା ସାଧୁସେବା। ଯେତେ ସାଧୁବୈଷ୍ଣବ ଘରକୁ ଆସିବେ, ଆନନ୍ଦ ମନରେ ତାଙ୍କର ସେବା କରି ସୁଖରେ ଜୀବନ ଯାପନ କର।''

ଏତିକି କହି ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ। ଚାଇଁ କରି ଲାଖାଙ୍କର ନିଦ ଭାଙ୍ଗିଗଲା। ସେ ଏଭଳି ଦିବ୍ୟ ସ୍ୱପ୍ନ ଦେଖି ଆଚମ୍ବିତ ହୋଇଗଲେ! କରୁଣାମୟ ପ୍ରଭୁଙ୍କ ଅଭୟ ବାଣୀ ଶୁଣି ତାଙ୍କ ହୃଦୟ ଦ୍ରବିତ ହୋଇ ଉଠିଲା। ସେ ଯୋଡ଼ହସ୍ତରେ ପ୍ରଭୁଙ୍କୁ ବିନତି ଜଣାଇ କହିଲେ—''ହେ ଦୟାମୟ! ମୋ ଭଳି ଅଧମର କି ସାମର୍ଥ୍ୟ ଅବା ଅଛି ଯେ ସାଧୁସନ୍ଥଙ୍କର ସେବା କରି ପାରିବ? ପ୍ରଭୁ! ସବୁ କିଛି କରୁଛ ତୁମେ, କିନ୍ତୁ ଏ ସେବକର ସମ୍ମାନ ବଢ଼ାଇବା ପାଇଁ ଏଭଳି ଲୀଳା ରଚୁଛ। ହଉ ପ୍ରଭୁ! ମୁଁ ତ ତୁମ ହାତର କଣ୍ଢେଇ। ଆପଣାର କରି ମୋତେ ହୃଦୟରେ ଲଗାଅ କିମ୍ବା ହତାଦର କରି ପାଦରେ ଦୂରକୁ ଠେଲିଦିଅ, ତୁମର ଇଚ୍ଛା। କିନ୍ତୁ ତୁମ ଶ୍ରୀରଙ୍ଗାଚରଣ ଛାଡ଼ି ଏ କିଂକର ଆଉ କୁଆଡ଼େ ଯିବ ନାହିଁ। ଯେତେ

ହତାଦର କରି ତଡ଼ିଦେଲେ ମଧ୍ୟ ତୁମ ଅଭୟ ଚରଣରେ ପଡ଼ି ରହିବ। ଯୁଗେ ଯୁଗେ ଏ ଦାସ ଉପରେ ତୁମର ଏହିପରି କରୁଣା ଥାଉ। ତୁମ ପାଦତଳେ ଏ ସେବକର ଏତିକି ଗୁହାରୀ ଯେ ମୋତେ ଏହିଭଳି ତୁମ ଭକ୍ତଙ୍କ ଚରଣ ସେବାର ଅବସର ମିଳୁଥାଉ। ଭକ୍ତଜନଙ୍କ ଗହଣରେ ତୁମ୍ଭ ଯଶକୀର୍ତ୍ତି ଗାଇ ଗାଇ ମୁଁ ଏହି ଅପାର ମୃତ୍ୟୁସାଗରକୁ ଅକ୍ଳେଶରେ ତରିଯିବି।''

ପ୍ରଭୁଙ୍କ ପାଦତଳେ ପ୍ରଣତି ଜଣାଇ ଭକ୍ତ ଲାଖା ଯାଇ ଆନନ୍ଦ ମନରେ ତାଙ୍କ ସ୍ତ୍ରୀକୁ ସ୍ୱପ୍ନ କଥା ଶୁଣାଇଲେ। ଭକ୍ତ ଦମ୍ପତିଙ୍କ ମନରେ ଅପାର ହର୍ଷ। ପ୍ରଭୁଙ୍କ ଅନୁକମ୍ପା ଅନୁଭବ କରି ଦୁହେଁ ଆନନ୍ଦରେ ନାଚି ଉଠିଲେ। ଏପଟେ ଜଗତଠାକୁର ଗହମ ଓ ମଇଁଷି ପଠାଇବା ପାଇଁ ଆଉ ଗୋଟିଏ ଲୀଳା ରଚିଲେ। ପାଖ ଗାଁର ଗୋଟିଏ ପରିବାରରେ ଅନେକ ଭାଇ ଏକ ସଙ୍ଗେ ରହୁଥିଲେ। ତାଙ୍କ ଭିତରୁ ଜଣେ ଭାରି ଗରିବ ହୋଇଗଲା। ତା'ର ବେପାରବଣିଜ, ଜମିବାଡ଼ି ଇତ୍ୟାଦି ସବୁ କିଛି ଉଜୁଡ଼ି ଗଲା। ତେଣୁ ଭଦ୍ରଲୋକମାନେ ଏହାର ସମାଧାନ ପାଇଁ ଗୋଟିଏ ସଭା ଡକାଇଲେ। ତଳିତଳାନ୍ତ ହୋଇଯାଇଥିବା ଭାଇକୁ କିଭଳି ଉପରକୁ ଉଠାଇବାକୁ ହେବ ଏବଂ ସକଳ ଗ୍ରାମବାସୀଙ୍କର ପରମାର୍ଥ ମାର୍ଗରେ ଉନ୍ନତି କେମିତି ହେବ, ତାହା ଥିଲା ସଭାର ଆଲୋଚ୍ୟ ବିଷୟ। ଗାଁଆ ସାରା ଡେଙ୍ଗୁରା ପିଟି ଦିଆଗଲା। ଯଥାସମୟରେ ସବୁ ଲୋକ ଆସି ଏକାଠି ହେଲେ। ଗରିବ ଭାଇର ସହାୟତା ପାଇଁ ଲୋକେ କେତେ କ'ଣ ବ୍ୟବସ୍ଥା କଲେ। ସଭା ଭଙ୍ଗ ହେବାକୁ ଯାଉଥିଲା, ସେହି ସମୟରେ ଜଣେ ବିଜ୍ଞ ଲୋକ ଠିଆ ହୋଇ କହିଲେ—ରୁହନ୍ତୁ! ରୁହନ୍ତୁ!! ଏବେ ସଭା ପୂର୍ଣ୍ଣ ହୋଇ ନାହିଁ। ଆମେ ଯେଉଁଥିପାଇଁ ଏକତ୍ର ହୋଇଥିଲେ, ସେ ବିଷୟରେ ତ ଏପର୍ଯ୍ୟନ୍ତ ଆଦୌ ଆଲୋଚନା ହୋଇପାରି ନାହିଁ। ଗରିବ ଭାଇର ଉନ୍ନତି ପାଇଁ ଚେଷ୍ଟା କରିବା ଅନୁଚିତ ନୁହେଁ, ଏହା ଅତି ପବିତ୍ର ଭାବନା; କିନ୍ତୁ ଏହାକୁ ପରମାର୍ଥ କୁହାଯାଇ ନ ପାରେ। ଏହା ଏକ ପ୍ରକାର ବ୍ୟବହାର। ଆଜି ତା'ର ଅସମୟରେ ତୁମେ ଠିଆ ହେଲ, କାଲି ତୁମର ଅସମୟରେ ସେ ଠିଆ ହେବ। ଏହା ତ ସ୍ୱାର୍ଥ ସିଦ୍ଧିର କଥା। ଏହାଦ୍ୱାରା ଭବସାଗରରୁ ପାରି ହେବା ସମ୍ଭବ ନୁହେଁ। ପ୍ରତ୍ୟୁପକାର ଭାବନାରେ କରାଯାଇଥିବା ସେବା ପ୍ରକୃତରେ ସେବା ନୁହେଁ, ଏହା ଏକ ପ୍ରକାର ବେପାର। ଏତଦ୍ୱାରା ସ୍ୱାର୍ଥ ସିଦ୍ଧି ହୋଇପାରେ, କିନ୍ତୁ ପରମାର୍ଥ ସିଦ୍ଧି ହେବା ଅସମ୍ଭବ। କଥାଟି ସମସ୍ତଙ୍କ ମନକୁ ପାଇଲା। କ'ଣ କରାଯିବ ବୋଲି ବିଗ୍ଭର ପଡ଼ିବାରୁ ସେ ବ୍ୟକ୍ତି ଜଣକ କହିଲେ—''ଆମ ଆଖପାଖ

ମଉଜା ଭିତରେ ଲାଖା ଭାଲ ନେଉଛନ୍ତି ପାରମାର୍ଥିକ ଲୋକ। ଏଭଳି ଦୁର୍ଭିକ୍ଷ ବେଳେ ସେ ସମସ୍ତଙ୍କର ପ୍ରାଣ ରକ୍ଷା କରିଛନ୍ତି। ଯଦି ତାଙ୍କ ସେବାରେ କିଛି ଦ୍ରବ୍ୟ ଅର୍ପଣ କରାଯାଏ, ତାହା ସିଧା ଭଗବାନଙ୍କ ସେବାରେ ପହଞ୍ଚିଯିବ। ଗଛର ମୂଳରେ ପାଣିଦେଲେ ଯେପରି ତାହାର ଶାଖା-ପ୍ରଶାଖା ସବୁଜ ହୁଏ ଏବଂ ପ୍ରାଣକୁ ଆହାର ଯୋଗାଇଲେ ଯେପରି ଦେହର ସମସ୍ତ ଇନ୍ଦ୍ରିୟ ସତେଜ ହୋଇଯାଆନ୍ତି, ସେହିପରି ଲାଖା ଭକତଙ୍କ ପାଖରେ ପହଞ୍ଚିଥିବା ଦ୍ରବ୍ୟ ମାଧ୍ୟମରେ ଠାକୁର ସେବା ଓ ସନ୍ଥସେବା ହେଲେ ତାହା ସମସ୍ତଙ୍କର ପରମାର୍ଥ ମାର୍ଗକୁ ପ୍ରଶସ୍ତ କରିଦେବ।''

ଏଭଳି ସଠିକ ଉପାୟ ଶୁଣି ସମସ୍ତେ ଆନନ୍ଦିତ ହେଲେ। ବଡ଼ ଉତ୍ସାହର ସହିତ ନିଜ ନିଜ ଘରୁ ଗହମ ଆଣି ଗୋଟିଏ ଜାଗାରେ ଏକାଠି କଲେ। ପଚିଶ ମହଣ ଗହମ ଗଦା ହୋଇଗଲା। ଲୋକଙ୍କ ଉତ୍ସାହ ଦେଖି ଗ୍ରାମସଭାର ସଭାପତି ଗୋଟିଏ ଦୁଧିଆଳୀ ମଇଁଷି ଦେବାକୁ ସ୍ଥିର କଲେ। ଗହମ ଓ ମଇଁଷି ନେଇ ସକାଳୁ ସକାଳୁ ଲୋକେ ଲାଖାଙ୍କ ଦୁଆରେ ପହଞ୍ଚି ଡାକ ଛାଡ଼ିଲେ—''ଲାଖା ଭକତ ଘରେ ଅଛନ୍ତି କି? ଟିକିଏ ବାହାରକୁ ଆସି ଦେଖନ୍ତୁ। ସାଧୁସେବା ପାଇଁ ଠାକୁରେ କେତେ କ'ଣ ପଠାଇଛନ୍ତି।'' ସେ ସେତେବେଳେ ଠାକୁର ଘରେ ବସି ଦିଅଁ ସେବା କରୁଥିଲେ। ତାଙ୍କ ସ୍ତ୍ରୀ ଆସି ଦେଖିଲା ବେଳକୁ ସ୍ୱାମୀଙ୍କ ସ୍ୱପ୍ନ କଥା ସାକାର ହୋଇଯାଇଛି। ସେ ଶୀଘ୍ର ଯାଇ ଆନନ୍ଦ ମନରେ ସ୍ୱାମୀଙ୍କୁ ସବୁ କଥା ଜଣାଇଲେ। ପ୍ରଭୁଙ୍କ କୃପା ଅନୁଭବ କରି ଲାଖାଙ୍କ ନେତ୍ରରୁ ଦୁଇ ଧାର ଲୋତକ ଝରି ପଡ଼ିଲା। ସେ ପ୍ରଭୁଙ୍କୁ କୃତଜ୍ଞତା ଜଣାଇ କହିଲେ—''ଦୟାନିଧି! ତୁମ ଭଳି ପ୍ରଭୁ ଥାଉ ଥାଉ ମୁଁ ଚିନ୍ତା କରି ତୁମର ଅପମାନ କରିଛି। ଏହା ଜଣେ ଶରଣାଗତ ପାଇଁ କଳଙ୍କ। କିନ୍ତୁ ପ୍ରଭୁ! ଯାହାହେଲେ ବି ମୁଁ ତ ତୁମର ସନ୍ତାନ। ପିତା ପୁତ୍ରର, ମିତ୍ର ମିତ୍ରର ଓ ସ୍ୱାମୀ ପତ୍ନୀର ଦୋଷକୁ କ୍ଷମା କରିଦେବା ପରି ମୋତେ କ୍ଷମା କରିଦିଅନ୍ତୁ ପ୍ରଭୁ! ମୁଁ ଛାର ମାନବ ତୁମ କରୁଣାକୁ କିପରି ବୁଝିବି ଅବା!'' ଏହିଭଳି ପ୍ରଭୁଙ୍କ ପାଦପଦ୍ମରେ ବିନତି ଜଣାଇ ସନ୍ଥସେବା ପାଇଁ ସବୁ ଦ୍ରବ୍ୟ ସ୍ୱୀକାର କଲେ। ଦିନକୁ ଦିନ ସେବା ବଢ଼ି ବଢ଼ି ଚାଲିଲା। ତାଙ୍କ ଦ୍ୱାରରୁ କେହି ଭୋକିଲା ଫେରିଲା ନାହିଁ। ସମସ୍ତେ ଆନନ୍ଦ ମନରେ ପ୍ରଭୁଙ୍କ ପ୍ରସାଦ ପାଇ ବିହ୍ୱଳ ହୋଇ ହରିଗୁଣ ଗାନ କଲେ।

ଏହିଭଳି କିଛି ଦିନ ଯିବା ପରେ ଥରେ ଲାଖାଙ୍କ ମନରେ ଜଗନ୍ନାଥଙ୍କ ଦର୍ଶନ ପାଇଁ ପ୍ରବଳ ଭାବ ଉଦୟ ହେଲା। ଭାବିଲେ, ''କେତେ ଦିନ ହୋଇଗଲା ପ୍ରଭୁଙ୍କୁ

ଟିକିଏ ଦର୍ଶନ କରି ପାରିଲି ନାହିଁ। ଏମିତି କ'ଣ ଏ ଜୀବନଟା ଚାଲିଯିବ? ମୋ ନେତ୍ର ଅନ୍ତରାଳରେ ରହି ସବୁ ପ୍ରକାର ଯୋଗକ୍ଷେମ ବହନ କରୁଥିବା ମୋର ପ୍ରାଣଧନ କ'ଣ ମୋତେ ଦର୍ଶନ ଦେବେ ନାହିଁ?'' ଏହିଭଳି ଅନେକ କଥା ଭାବି ଭାବି ତାଙ୍କ ମନପ୍ରାଣ ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ପାଇଁ ବ୍ୟାକୁଳ ହୋଇ ଉଠିଲା। ସେ ତତ୍‌କ୍ଷଣାତ୍ ସେହି ରାଜସ୍ଥାନରୁ ସାଷ୍ଟାଙ୍ଗ ଦଣ୍ଡବତ୍ ପ୍ରଣାମ କରି କରି ଶ୍ରୀକ୍ଷେତ୍ର ପୁରୀରେ ଚକାଡୋଳାଙ୍କୁ ଦର୍ଶନ କରିବାକୁ ଦୃଢ଼ ସଙ୍କଳ୍ପ କରିନେଲେ। ସେଠାରୁ ନୀଳାଚଳ ଧାମ ପ୍ରାୟ ସାତ ଶହ କୋଶ ହେବ। ସେ ମନ ଉଲ୍ଲାସରେ ପ୍ରଭୁଙ୍କୁ ସ୍ମରଣ କରି ଚାଲିଥାନ୍ତି ଏବଂ ଗୋଟିଏ ଗୋଟିଏ ଦଣ୍ଡବତ୍‌ରେ ଅପାର ପୁଣ୍ୟ ଅର୍ଜନ କରୁଥାନ୍ତି। ଶାସ୍ତ୍ରରେ ଅଛି ଯେ ଶ୍ରୀକୃଷ୍ଣ ପାଦପଦ୍ମରେ ଥରେମାତ୍ର ପ୍ରଣାମ କରିବାର ଫଳ ଦଶ ଅଶ୍ୱମେଧ ଯଜ୍ଞର ସମତୁଲ। ତଥାପି ଏ ଦୁଇଟି ମଧ୍ୟରେ ଅନେକ ତଫାତ୍ ରହିଛି। ଦଶ ଅଶ୍ୱମେଧ ଯଜ୍ଞ କରିଥିବା ବ୍ୟକ୍ତିକୁ ବାରମ୍ବାର ଜନ୍ମ ନେବାକୁ ପଡ଼େ, କିନ୍ତୁ ଶ୍ରୀକୃଷ୍ଣ ଚରଣରେ ଥରେମାତ୍ର ପ୍ରଣାମ କରିଥିବା ବ୍ୟକ୍ତି ଭବବନ୍ଧନରୁ ମୁକ୍ତ ହୋଇଯାଏ—

**ଏକସ୍ୟ କୃଷ୍ଣସ୍ୟ କୃତୋ ପ୍ରଣାମୋ**
**ଦଶାଶ୍ୱମେଧାବଭୃଥେନ ତୁଲ୍ୟଃ।**
**ଦଶାଶ୍ୱମେଧୀ ପୁନରେତି ଜନ୍ମ**
**କୃଷ୍ଣପ୍ରଣାମୀ ନ ପୁନର୍ଭବାୟ॥**

ଦଣ୍ଡବତ୍ ପ୍ରଣାମରେ ଛାତି, ମସ୍ତକ, ଦୃଷ୍ଟି, ମନ, ବଚନ, ଦୁଇ ଗୋଡ଼, ଦୁଇ ହାତ ଓ ଦୁଇ ଆଣ୍ଠୁ ଭୂମିରେ ସ୍ପର୍ଶ ହେବା ବିଧେୟ—

**ଉରସା ଶିରସା ଦୃଷ୍ଟ୍ୟା ମନସା ବଚସା ତଥା।**
**ପଦ୍ଭ୍ୟାଂ କରାଭ୍ୟାଂ ଜାନୁଭ୍ୟାଂ ପ୍ରଣାମୋଽଷ୍ଟାଙ୍ଗ ଉଚ୍ୟତେ॥**

ଦଣ୍ଡବତ୍ ପ୍ରଣାମ କରିବା ବେଳେ ତାଙ୍କ ମନରେ ପ୍ରଭୁଙ୍କ ଦର୍ଶନର ଅଭିଳାଷ ତୀବ୍ରରୁ ତୀବ୍ରତର ହୋଇ ଉଠୁଥାଏ। ବ୍ରଜଯାତ୍ରା ସମୟରେ ଅକ୍ରୂର ଯେପରି ଭଗବାନଙ୍କ ଚରଣ ଚିହ୍ନ ଦେଖି ଭାବ ବିହ୍ୱଳ ସ୍ଥିତିରେ ଦେହଜ୍ଞାନ ଭୁଲି ଯାଇଥିଲେ, ଠିକ୍ ସେହି ସ୍ଥିତି ଥିଲା ଲାଖାଙ୍କର। ସେ ନିଜର ଭାଗ୍ୟକୁ ପ୍ରଶଂସା କରି ମନେ ମନେ କହୁଥାନ୍ତି—''ଧନ୍ୟ ଲାଖା! ଧନ୍ୟ ତୋର ଭାଗ୍ୟ! ନୀଚ ଜାତିରେ ଜନ୍ମ ହୋଇ ମଧ୍ୟ ପ୍ରଭୁଙ୍କର ତୋ ଉପରେ କେତେ ବାତ୍ସଲ୍ୟ ସ୍ନେହ। ଏହାର ପ୍ରତିବଦଳରେ ତୁ ତାଙ୍କୁ କ'ଣ ଦେବୁ? ତୋ ପାଖରେ ଅଛି ବା କ'ଣ? ତୁ କେଉଁ ଜନ୍ମରେ

କି ଶୁଭକର୍ମ କରିଥିଲୁ କେଜାଣି, ଯାହାର ଫଳସ୍ୱରୂପ ତୋତେ ଠାକୁରଙ୍କର ଦର୍ଶନ ମିଳିବ! ତୋ ଭଳି ଅଧମ ବିଷୟୀ ଲୋକକୁ ପୁଣି ଏଭଳି ସୌଭାଗ୍ୟ! ଶୂଦ୍ରବାଳକ ବେଦାଧ୍ୟୟନର ପାତ୍ର ହେବା ପରି ଏବଂ ଅତି କ୍ଷୁଧାର୍ତ୍ତକୁ ଅମୃତ ମିଳିବା ପରି ତୋର ଭାଗ୍ୟ ନିଶ୍ଚୟ ଉଦୟ ହୋଇଗଲା। ପ୍ରଭୁଙ୍କ କଳାଶ୍ରୀମୁଖ ଦର୍ଶନ କରି ତୋର ପାପରାଶି ସମୂଳେ ନଷ୍ଟ ହୋଇଯିବ। ତୋର କେତେ ଭାଗ୍ୟ! ଯେଉଁ ପାଦଯୁଗଳକୁ ଯୋଗୀଯତିମାନେ କେବେ କେମିତି ଧ୍ୟାନରେ ଚିନ୍ତା କରି ପାରନ୍ତି, ଯେଉଁ ଚରଣରେ ଲକ୍ଷ୍ମୀ ଦିବାନିଶି ସେବାରତ, ତାହାକୁ ତୁ ପାଇ ପାରିବୁ। ପୁଣି କେତେବେଳେ ଭାବନ୍ତି—ଆହା! ମୋ ପ୍ରଭୁ କେଡ଼େ ଦୟାଳୁ! କଳିଯୁଗର କଳୁଷ କାଳିମା ଲିପ୍ତ ଜୀବଙ୍କୁ ଅଭୟ ଦେବା ପାଇଁ ଶ୍ରୀକ୍ଷେତ୍ରରେ ଦାରୁବ୍ରହ୍ମ ରୂପରେ ବିରାଜମାନ ହୋଇଛନ୍ତି। କେବେ ମୋର ସେହି ପୁଣ୍ୟ ଉଦୟ ହେବ, ଯେତେବେଳେ ମୁଁ ତାଙ୍କୁ ଦର୍ଶନ କରି ନିଜ ଅନ୍ତର କଥା ଖୋଲି କହି ପାରିବି। ସତରେ ମୁଁ ତାଙ୍କ ରଙ୍ଗ ଅଧରକୁ ଚାହିଁଦେବା ମାତ୍ରେ ମୋର ସବୁ ଦୁଃଖ ଭୁଲିଯିବି। ମହାବାହୁ ନିଶ୍ଚୟ ମୋତେ ଆପଣାର କରି ହୃଦୟରେ ଲଗାଇବେ। ତାଙ୍କ ଅଭୟ ବାହୁଛାୟାରେ ମୋର ସନ୍ତାପିତ ପ୍ରାଣ ନିଶ୍ଚୟ ଶୀତଳ ହୋଇଯିବ। ଆହା! ମୋ ପ୍ରଭୁ କେଡ଼େ ସୁନ୍ଦର। କି ଅପୂର୍ବ ତାଙ୍କର ରଙ୍ଗ ଅଧର। ମରକତ ମଣି ତୁଲ୍ୟ ସୁସ୍ନିଗ୍ଧ କପୋଳରେ ପ୍ରତିବିମ୍ବିତ ମନ୍ଦ ହାସ୍ୟର ରେଖା କେଡ଼େ ମନୋହାର। ମୁଁ ନିଶ୍ଚୟ ତାଙ୍କର ମୁଖପଙ୍କଜ ଦର୍ଶନ କରି କୃତାର୍ଥ ହୋଇଯିବି। ଆହା! ମୋର ଏ ପାପ ନେତ୍ର ପ୍ରଭୁଙ୍କ ଚତୁର୍ଦ୍ଧା ମୂରତି ଦର୍ଶନ କରି ଧନ୍ୟ ହୋଇଯିବ। ପୁଣି କେବେ କେବେ ଭାବନ୍ତି—ମୋତେ ନୀଚ ଜାତିର ଭାବି ପ୍ରଭୁ କାଳେ ଦୂରେଇ ଦେବେ ନାହିଁ ତ? ପୁଣି ଭାବନ୍ତି—ନା, ନା! ତାଙ୍କ ନାଆଁ ପରା ଅନ୍ତର୍ଯାମୀ, ସେ କ'ଣ ମୋର ଅନ୍ତର ଭାବନା ଜାଣି ପାରିବେ ନାହିଁ। ସେ ନିଶ୍ଚୟ ମୋତେ ତାଙ୍କ ଶ୍ରୀଚରଣରେ ସ୍ଥାନ ଦେବେ। ଗରୁଡ଼ସ୍ତମ୍ଭ ପଛରେ ଚକାଡୋଳାଙ୍କୁ ଦର୍ଶନ କରି ମୁଁ ସାଷ୍ଟାଙ୍ଗ ପ୍ରଣିପାତ ହେବି। ସେ ମୋତେ ଆଜାନୁଲମ୍ବିତ ଭୁଜ ବଢ଼ାଇ କୋଳକୁ ଟାଣିନେବେ। ମୁଁ ତାଙ୍କ ହୃଦୟରେ ମସ୍ତକ ରଖି ସବୁ ମନ କଥା ଖୋଲି କହିଦେବି। ସେ ତାଙ୍କର କୋମଳ କରରେ ମୋର ମୁଣ୍ଡ ଆଉଁସି ଦେବେ। ଆହା! ସେତେବେଳେ ମୋର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିବ। ସେ ମୃଦୁ ମୃଦୁ ହସି ମୋତେ କୋମଳ ଦୃଷ୍ଟିରେ ଯେତେବେଳେ ଚାହିଁଦେବେ, ମୁଁ ଲଜ୍ଜାରେ ମସ୍ତକ ଅବନତ କରି ତାଙ୍କ ସମ୍ମୁଖରେ ଯୋଡ଼ହସ୍ତ ହୋଇ ଠିଆ ହୋଇଯିବି। ସେ ତାଙ୍କର ଆଜାନୁ ଲମ୍ବିତ ବାହୁରେ

ମୋତେ କୁଣ୍ଢାଇ ପକାଇ କହିବେ—'ମୋର ପ୍ରିୟ ଲାଖା! ଏତେ ସଂକୋଚ କରୁଛୁ କାହିଁକି? ଆ... ମୋ ପାଖକୁ ଚ୍ଲିଆ। ମୁଁ କେତେ ଦିନରୁ ତୋତେ ଚ୍ହିଁ ରହିଥିଲି। ତାଙ୍କ ଆଲିଙ୍ଗନ ପାଇ ମୋର ପାପ ଦେହ ପବିତ୍ର ହୋଇଯିବ। ମୋର ସମସ୍ତ କର୍ମବନ୍ଧନ କ୍ଷଣକ ମଧ୍ୟରେ ନଷ୍ଟ ହୋଇଯିବ। ମୋର ମାନବଜୀବନ ସଫଳ ହୋଇଯିବ। ଏହିପରି ଭାବନାର ଆବେଗରେ ସେ କେତେ କ'ଣ ଭାବି ଭାବି ଦଣ୍ଡବତ୍ ପ୍ରଣାମ କରି କରି ଶ୍ରୀକ୍ଷେତ୍ର ଅଭିମୁଖେ ଆଗେଇ ଚ୍ଲିଲେ।

ନୀଳାଚଳ ଧାମରେ ପହଞ୍ଚିବାକୁ ଆଉ ଦିନେ ଦୁଇଦିନର ରାସ୍ତା ବାକିଥାଏ। ପ୍ରଭୁଙ୍କ ଦର୍ଶନ ପାଇଁ ଲାଖାଙ୍କର ଉତ୍କଣ୍ଠା ତରଙ୍ଗ ବହୁଗୁଣିତ ହୋଇ ଧୈର୍ଯ୍ୟରୂପୀ ସମୁଦ୍ରର କୂଳ ଲଘଂନ କରିଗଲା। ପ୍ରଭୁଙ୍କ ବିରହରେ ପ୍ରତିଟି ନିମିଷ ତାଙ୍କୁ ଯୁଗ ସମ ମନେହେଲା, ଜଗତ ଶୂନ୍ୟମୟ ଦେଖାଗଲା ଏବଂ ନେତ୍ରରୁ ଅବିରଳ ଅଶ୍ରୁଧାରା ବହି ଚ୍ଲିଲା। ତାଙ୍କୁ ଲାଗିଲା ହୃଦୟରେ ପ୍ରଜ୍ୱଳିତ ବିରହ-ଅଗ୍ନି ତାଙ୍କର ଏ ପଞ୍ଚଭୌତିକ ଦେହକୁ ନଷ୍ଟ କରି ପ୍ରଭୁଙ୍କ ମିଳନରେ ବାଧା ସୃଷ୍ଟି କରିବ। ମହାପ୍ରଭୁ ଜଗନ୍ନାଥ ଲାଖାଙ୍କର ଅନ୍ତର ଭାବନାକୁ ବୁଝି ପାରିଲେ। ତାଙ୍କୁ ସମ୍ମାନ ଦେବା ପାଇଁ ସେ ଆଉ ଗୋଟିଏ ଲୀଳା ରଚିଲେ। ସେ ପୂଜାରୀମାନଙ୍କୁ ଆଜ୍ଞା ଦେଲେ ଯେ ତୁମେମାନେ ଯାଇ ମୋର ପ୍ରିୟ ଭକ୍ତକୁ ପାଲିଙ୍କିରେ ବସାଇ ସମ୍ମାନପୂର୍ବକ ମୋ ନିକଟକୁ ପାଛୋଟି ଆଣ। ବିବାହ ସମୟରେ ପୁଅକୁ ପାଲିଙ୍କିରେ ବସିଥିବା ଦେଖି ବାପାର ଛାତି କୁଣ୍ଢେ ମୋଟ ହୋଇଯିବା ପରି ମୋର ପ୍ରିୟ ଭକ୍ତକୁ ପାଲିଙ୍କରେ ବସିଥିବା ଦେଖି ମୁଁ ଅତି ଆନନ୍ଦ ଲାଭ କରିବି। ସେ ମୋ ପାଇଁ ତା'ର ଦେହକୁ ସମର୍ପଣ କରି ଦେଇଛି, ତେଣୁ ତୁମେମାନେ ଯାଇ ତାକୁ ସମ୍ମାନର ସହିତ ଘେନି ଆସ।

ମହାପ୍ରଭୁ ଜଗନ୍ନାଥଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ପୂଜାରୀମାନେ ସୁନ୍ଦର ପାଲିଙ୍କିଟିଏ ନେଇ ଆଗେଇ ଚ୍ଲିଲେ ଲାଖାଙ୍କ ନିକଟକୁ। ବାଟରେ ତାଙ୍କ ନାଆଁ ଡାକି ଡାକି ଚ୍ଲିଥାନ୍ତି। କିନ୍ତୁ ଲାଖାଙ୍କର ତ ବାହ୍ୟଜ୍ଞାନ ନ ଥାଏ। ପ୍ରଭୁପ୍ରେମରେ ସେ ଏତେ ବିଭୋର ଥାଆନ୍ତି ଯେ ତାଙ୍କୁ କିଏ କ'ଣ କହୁଛି ଓ କରୁଛି ତାଙ୍କର କିଛି ଜ୍ଞାନ ନ ଥାଏ। ତାଙ୍କୁ ଦେଖି ଲାଗୁଥାଏ ସତେ ଯେପରି ଗୋଟିଏ ପ୍ରେମ-ନଦୀ ଅବିଶ୍ରାନ୍ତ ଗତିରେ ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ ନୀଳ ଅଙ୍ଗକାନ୍ତିରୂପୀ ପ୍ରେମ-ସମୁଦ୍ରରେ ସମ୍ମିଳିତ ହେବା ପାଇଁ ଆଗେଇ ଚ୍ଲିଛି। ପୂଜାରୀମାନେ ଲୋକମାନଙ୍କୁ ଲାଖା ଭକ୍ତଙ୍କର ପରିଚୟ ପଚ୍ରି ପଚ୍ରି ଯାଉଥାନ୍ତି। ଏତିକିରେ ଜଣେ ତାଙ୍କ

ଆଡ଼କୁ ହାତ ଠାରି କହିଲେ ଏ ହେଉଛନ୍ତି ସେହି ପ୍ରେମୀ ଭକ୍ତ, ଯାହାଙ୍କୁ ତୁମେ ଖୋଜୁଛ । ପୂଜାରୀମାନେ ଯାଇ ତାଙ୍କ ଚରଣରେ ଲୋଟିଗଲେ । ତାଙ୍କର ସୌଭାଗ୍ୟକୁ ପ୍ରଶଂସା କରି କହିଲେ—"ଭକ୍ତବର! ତୁମ ଜୀବନ ଧନ୍ୟ! ଆସ ଏଇ ପାଲିଙ୍କିରେ ବିରାଜମାନ ହୁଅ । ତୁମକୁ ପାଛୋଟି ନେବା ପାଇଁ ମହାବାହୁ ଆମ୍ଭଙ୍କୁ ଆଜ୍ଞା ଦେଇଛନ୍ତି । ଠାକୁରେ ତୁମ ବିୟୋଗରେ ଅତ୍ୟନ୍ତ ବ୍ୟାକୁଳ । ସେ ତୁମର ଦର୍ଶନ ପାଇଁ ଆକୁଳ ମନରେ ଅପେକ୍ଷା କରି ବସିଛନ୍ତି । ତେଣୁ ପାଲିଙ୍କିରେ ଆରୂଢ଼ ହୋଇ ଶୀଘ୍ର ଯାଇ ଠାକୁରଙ୍କୁ ଦର୍ଶନ କର ।"

ପଣ୍ଡାମାନଙ୍କ ମୁଖରୁ ଏଭଳି ଆଶ୍ଚର୍ଯ୍ୟଜନକ କଥା ଶୁଣି ଭକ୍ତବର ବିନମ୍ର ଭାବରେ କହିଲେ—"ଗୋସେଇଁ! ଆପଣମାନେ ପ୍ରଭୁଙ୍କ ଶ୍ରୀଅଙ୍ଗ ସେବକ ହୋଇଥିବାରୁ ତାଙ୍କ ଭଳି ମୋର ପୂଜନୀୟ । ଆପଣମାନଙ୍କ ଚରଣରେ ମୋର ସାଦର ପ୍ରଣିପାତ । ମୋ ଭଳି ତୁଚ୍ଛ ଅଧମ ଦାସ ପାଇଁ ଏଭଳି ଦିବ୍ୟ ପାଲିଙ୍କି! ଏଥିରେ ମୁଁ ବସିବାର ଅଧିକାରୀ ନୁହେଁ । ମୁଁ ତ ଆପଣମାନଙ୍କ ଚରଣକିଂକର । ଆପଣମାନେ ଦିବ୍ୟଦର୍ଶୀ ପଣ୍ଡିତ । ଠାକୁରଙ୍କ ମନ୍ଦିରକୁ ଯାନରେ ଚଢ଼ି ଓ ପାଦୁକା ପିନ୍ଧି ଯିବା ବତିଶଟି ସେବା ଅପରାଧ ମଧ୍ୟରେ ଗୋଟିଏ ବଡ଼ ଅପରାଧ—**'ଯାନୈର୍ବା ପାଦୁକାଭିର୍ବା ଗମନଂ ଭଗବଦ୍‌ଗୃହେ ।'** ତା'ଛଡ଼ା ଦଣ୍ଡବତ୍ ପ୍ରଣାମ କରି ମହାବାହୁଙ୍କ ଦର୍ଶନ କରିବାକୁ ଏ ଦାସ ମନ ଭିତରେ ପ୍ରତିଜ୍ଞା କରି ସାରିଛି । ମୋର ତ ପ୍ରତିଜ୍ଞା ନିର୍ବାହ କରିବାର କ୍ଷମତା ନାହିଁ, ଆପଣମାନେ ଦୟା କରି ମୋର ପଣକୁ ରକ୍ଷା କରନ୍ତୁ । ମୁଁ ତ କେବଳ ନିଷ୍ପ୍ରାଣ ଯନ୍ତ୍ର ଭଳି । ଆପଣମାନେ ଯନ୍ତ୍ରୀ ତୁଲ୍ୟ ମୋତେ ଉଚିତ ମାର୍ଗଦର୍ଶନ କରାନ୍ତୁ । ପ୍ରଭୁଙ୍କର ଏ ଭୃତ୍ୟ ଉପରେ ଅପାର ବାତ୍ସଲ୍ୟ, ତେଣୁ ସେ ପାଲିଙ୍କି ପଠାଇଦେଲେ । କିନ୍ତୁ ମୁଁ ତ ତାଙ୍କର ଦାସ । ମୋ ପାଇଁ ଏହା ଉଚିତ ହେବ କି?"

ଭକ୍ତ ଲାଖାଙ୍କ ମନରେ ପ୍ରତିଜ୍ଞା ପାଳନ ପାଇଁ ହଠ ଅଥବା ଅହଂକାର ନ ଥିଲା । ଭଗବାନଙ୍କ ଭଳି ତାଙ୍କ ପାର୍ଷଦମାନେ ମଧ୍ୟ ପୂଜ୍ୟ । ତେଣୁ ପଣ୍ଡାମାନଙ୍କୁ ସେ ହାତଯୋଡ଼ି ଦୈନ୍ୟର ସହିତ ନିବେଦନ ଜଣାଇଲେ । ତାଙ୍କ ଦୈନ୍ୟ ବଚନ ଶୁଣି ପଣ୍ଡାମାନଙ୍କ ହୃଦୟ ତରଳିଗଲା । ସେମାନେ ଯାଇ ଠାକୁରଙ୍କୁ ସବୁ କଥା ଜଣାଇଲେ । ମହାପ୍ରଭୁ ଜଗନ୍ନାଥ କହିଲେ—"ଯଦି ସେ ସେମିତି ପାଲିଙ୍କିରେ ବସିବାକୁ ରାଜି ହେଉ ନାହାନ୍ତି, ତେବେ ତାଙ୍କୁ ଆଉ ଗୋଟିଏ ଗୁପ୍ତ ସୂଚନା ଦେବ । କହିବ, ପ୍ରଭୁ ଜଗନ୍ନାଥ କହିଛନ୍ତି ତାଙ୍କ ପାଇଁ ତୁମେ ଯେଉଁ ଭକ୍ତନାମ ଅଙ୍କିତ କରମାଳାଟି ତିଆରି କରି ଆଣିଛ, ତାହା ପିନ୍ଧିବାକୁ ସେ ବହୁତ ବ୍ୟାକୁଳ ।

ଶୀଘ୍ର ପାଲିଙ୍କିରେ ବସି ଚାଲ, ପ୍ରଭୁ ତୁମକୁ ଅପେକ୍ଷା କରି ବସିଛନ୍ତି ।'' ପଣ୍ଡାମାନଙ୍କ ମୁଖରୁ ଏଭଳି ଗୁପ୍ତ କଥା ଶୁଣି ଲାଖାଙ୍କ ମନପ୍ରାଣ କୃତାର୍ଥ ହୋଇଗଲା । ସେ ଭାବିଲେ, ଏ ରହସ୍ୟ ତ କାହାକୁ ହେଲେ ଜ୍ଞାତ ନ ଥିଲା । ପ୍ରଭୁଙ୍କୁ ତାଙ୍କ ଭକ୍ତଙ୍କ ନାମ ପ୍ରିୟ ଭାବି ଉପହାରସ୍ୱରୂପ ମୁଁ ଗୁପ୍ତରୂପେ ତାଙ୍କ ପାଇଁ ଏ ମାଳାଟି ଆଣିଥିଲି । ତେବେ ସତରେ ପ୍ରଭୁ କ'ଣ ଏହାକୁ ଧାରଣ କରିବାକୁ ଏତେ ବ୍ୟାକୁଳ! ଯଦି ଏହାଦ୍ୱାରା ମୋ ପ୍ରାଣଧନଙ୍କୁ ସୁଖ ମିଳିବ, ତେବେ ମୋର ପ୍ରତିଜ୍ଞାରେ କି ପ୍ରୟୋଜନ? ସବୁ କିଛି ନିୟମ ତ ତାଙ୍କର ସୁଖ ପାଇଁ । ଯଦି ସେ ତାଙ୍କର ତୁଚ୍ଛ ସେବକକୁ ପାଲିଙ୍କିରେ ବସାଇ ସୁଖୀ ହେବେ, ତେବେ ଏଥିରେ ମୋର ଆପତ୍ତି କାହିଁକି?

ପ୍ରଭୁଙ୍କ ଆଜ୍ଞା ଆଗରେ ନିୟମର ଆଗ୍ରହ ରଖିଲେ ଭକ୍ତି ନଷ୍ଟ ହୁଏ । କୁହାଯାଇଛି—ଅଧିକ ଭୋଜନ, ସାଂସାରିକ କାର୍ଯ୍ୟରେ ଅତି ନିମଗ୍ନତା, ବୃଥା ବାର୍ତ୍ତାଳାପ, ନିୟମର ଦୁରାଗ୍ରହ, ବିଷୟୀ ଲୋକଙ୍କର ସଙ୍ଗ ଓ ବିଷୟ ଲୋଲୁପତା ପ୍ରେମାଭକ୍ତିରୂପୀ ଲତାର ମୂଳକୁ ଉଇ ଭଳି ଖାଇଯାଆନ୍ତି । ଚିତ୍ରକୂଟରେ ଶ୍ରୀରାମଙ୍କୁ ଭେଟିବାକୁ ଯିବାବେଳେ, ତୀର୍ଥରାଜ ପ୍ରୟାଗରେ ଭରତ କ୍ଷତ୍ରିୟ ହୋଇଥିଲେ ମଧ୍ୟ ଋଷିଙ୍କ ବଚନ ମାନି ତାଙ୍କର ଆତିଥ୍ୟ ସ୍ୱୀକାର କରିଥିଲେ । ଦେବାଧିଦେବ ମହାଦେବ ଭଗବାନଙ୍କ ଆଜ୍ଞାକୁ ପରମ ଧର୍ମ ଭାବି ପାର୍ବତୀଙ୍କ ପାଣିଗ୍ରହଣ କରିଥିଲେ । ତେବେ ମୁଁ ଛାର ସେବକ ହୋଇ ତାଙ୍କ ବଚନକୁ ହତାଦର କରିବି କିପରି? ତା' ଛଡ଼ା ମୋର ନିଜର ବୋଲି କ'ଣ ଅଛି? ମୁଁ ତ ତାଙ୍କ ହାତର ଖେଳଣା । ସେ ଯେପରି ସୁଖୀ ହେବେ ତାହା ମୋ ପାଇଁ ପରମ ଧର୍ମ ।''

ଏଭଳି ସ୍ଥିର କରି ସେ ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କଲେ । ଅତି ସଂକୋଚ ମନରେ ପାଲିଙ୍କିର ବସିଲେ । ଯିବା ବାଟରେ ତାଙ୍କ ହୃଦୟରେ କେତେ କ'ଣ ଭାବନା ଉଙ୍କି ମାରୁଥାଏ । ଭାବୁଥାନ୍ତି, ''ମୋ ପ୍ରଭୁ କେଡ଼େ ଦୟାବନ୍ତ! ସେ ମୂକକୁ ବାଚାଳ କରି ଦିଅନ୍ତି ଓ ରଙ୍କକୁ ରାଜା କରି ଦିଅନ୍ତି । ତାଙ୍କ କୃପାରୁ ପଙ୍ଗୁ ଦୁର୍ଗମ ଗିରି ଲଙ୍ଘନ କରିଯାଏ । ସେହି ଦୟାମୟ ଆଜି ମୋ ଭଳି ନଗଣ୍ୟ ଦାସକୁ ପାଲିଙ୍କିରେ ଚଢ଼ାଇ ବଡ଼ କରିବା ପାଇଁ ଏତେ ଆଦର ଦେଲେ । ଏବେ ମୁଁ ବୁଝିଗଲି ଯେ ଏହାଦ୍ୱାରା ମୋ ପ୍ରଭୁ ଏ ଦାସର କୀର୍ତ୍ତି ଉଜାଗର କରିବାକୁ ଚାହାନ୍ତି । ଆଜିଯାଏ ମୁଁ କେବଳ ଲୋକମୁଖରୁ ଶୁଣୁଥିଲି ଓ ଶାସ୍ତ୍ରରୁ ପଢୁଥିଲି । ଆଜି କିନ୍ତୁ ତାଙ୍କ କରୁଣା ପ୍ରତ୍ୟକ୍ଷ ଅନୁଭବ କଲି । ଜଗତରେ ଯାହାକୁ କେହି ପଚାରେ ନାହିଁ,

ତାଙ୍କୁ ଆଶ୍ରୟ ଦିଅନ୍ତି ମୋର ଠାକୁର। ସେ ନିଜର ଈଶତ୍ୱ ଭୁଲିଯାଇ ଦାସ ଉପରେ ପ୍ରୀତି କରନ୍ତି। ଏଭଳି ପ୍ରଭୁଙ୍କୁ ଭୁଲି ଯିଏ ସଂସାରକୁ ଆପଣାର କରେ, ତା'ଠାରୁ ମୂର୍ଖ ଆଉ କିଏ ହୋଇପାରେ। ରେ ମନ ଭ୍ରମର! ସଂସାରର ବିଷୟ ଆଶା ଛାଡ଼ି ଏଭଳି ଦୀନବନ୍ଧୁଙ୍କ ପାଦପଦ୍ମ ମକରନ୍ଦ ପାନ କରି ତୁ ନିଜର ଜୀବନ ଧନ୍ୟ କର।" ଏହିଭଳି ପାଲିଙ୍କିରେ ବସି ରହି ମନରେ କେତେ କଣ ଭାବୁଥାନ୍ତି। ଲାଗୁଥାଏ ସେ ପାଲିଙ୍କିରେ ଚଢ଼ି ନାହାନ୍ତି, ବରଂ ଭଗବାନଙ୍କ କୃପାସମୁଦ୍ରର ପାଲିଙ୍କିରୂପୀ ତରଙ୍ଗରେ ଆରୂଢ଼ ହୋଇ ଭାବରାଜ୍ୟରେ କେବେ ବୁଡ଼ୁଛନ୍ତି ତ ଆଉ କେବେ ଉଠୁଛନ୍ତି।

ଏହିପରି ଭାବରେ ଅରୁଣସ୍ତମ୍ଭ ନିକଟରେ ପହଞ୍ଚିବା କ୍ଷଣି ପଣ୍ଡାମାନଙ୍କୁ ହାତଯୋଡ଼ି ନିବେଦନ ଜଣାଇଲେ—"ମହାଶୟ! ମୋତେ ଏଇଠି ଓହ୍ଲାଇ ଦିଅନ୍ତୁ। ଏଇଠୁ ମୁଁ ଦଣ୍ଡବତ୍ କରି ଯାଇ ପ୍ରଭୁଙ୍କୁ ଦର୍ଶନ କରିବି।" ବାରମ୍ବାର ଅନୁରୋଧ କରିବାରୁ ପଣ୍ଡାପୂଜାରୀମାନେ କହିଲେ—"ନା ନା, ମହାବାହୁ ତୁମକୁ ପାଲିଙ୍କିରେ ବସାଇ ତାଙ୍କ ସମ୍ମୁଖକୁ ନେବାକୁ ଆଜ୍ଞା ଦେଇଛନ୍ତି। ସେ ତୁମକୁ ପାଲିଙ୍କିରେ ବସିଥିବାର ଦେଖିବାକୁ ଚାହାନ୍ତି। ଆମକୁ ତାଙ୍କ ଆଜ୍ଞା ପାଳନ କରିବାକୁ ହେବ।" ଏଭଳି କହି ସେମାନେ ଲାଖାଭକ୍ତଙ୍କୁ ଜଗମୋହନରେ ପହଞ୍ଚାଇଦେଲେ। ଭକ୍ତବର ଆଉ କରନ୍ତେ ବା କ'ଣ? ତାଙ୍କ କଥା ମାନିବାକୁ ବାଧ୍ୟ ହେଲେ। ଜଗମୋହନରେ ପହଞ୍ଚିବା ମାତ୍ରେ ସେ ପାଲିଙ୍କିରୁ ଡେଇଁ ପଡ଼ିଲେ। କଳାଶ୍ରୀମୁଖକୁ ଦର୍ଶନ କରି ତାଙ୍କର ମନପ୍ରାଣ ବିଭୋର ହୋଇଗଲା। ସେ କିଏ, କେଉଁଠି ଠିଆ ହୋଇଛନ୍ତି, ତାଙ୍କର ଏ ଜ୍ଞାନ ରହିଲା ନାହିଁ। ଆତ୍ମବିଭୋର ହୋଇ ଗଛ କାଟିଲା ଭଳି ଅଚେତ ହୋଇ ଜଗମୋହନରେ ପଡ଼ିଗଲେ। ଦଣ୍ଡବତୀ ଯାତ୍ରାରେ ତାଙ୍କର ଦେହ ପ୍ରଭୁଙ୍କୁ ସମର୍ପିତ ହୋଇଥିଲା, ଏବେ ତନୁ-ମନ-ପ୍ରାଣ ସବୁକିଛି ଅର୍ପଣ ହୋଇଗଲା। ବାହ୍ୟଚେତନା ଶୂନ୍ୟ ହୋଇ ସେ ପହଞ୍ଚିଗଲେ ପ୍ରଭୁଙ୍କ ସାନ୍ନିଧ୍ୟରେ। ତାଙ୍କୁ ଲାଗିଲା, ଜଗନ୍ନାଥ ତାଙ୍କୁ କୋଳରେ ଶୁଆଇ କୋମଳ କରରେ ତାଙ୍କର ମୁଣ୍ଡ ଆଉଁସୁଛନ୍ତି। ପ୍ରଭୁଙ୍କ ନେତ୍ରରୁ ଝରି ପଡୁଛି ବାତ୍ସଲ୍ୟସ୍ନେହର ଅଶ୍ରୁ। ସେ ଆଶ୍ୱାସନା ଦେଇ କହୁଛନ୍ତି, ଏଥର ତୁ ମୋ ପାଖରେ ରହ। ତୋତେ ଦେଖି ମୁଁ ଭାରି ଆନନ୍ଦିତ ହେଉଛି। ଭାବରାଜ୍ୟରେ ଭକ୍ତବର ଲାଖା ମଧ୍ୟ ପ୍ରଭୁଙ୍କ ଚରଣରେ ନିଜ ମନକଥା ଖୋଲି କହୁଥାନ୍ତି। ବହୁ ଦିନ ପରେ ତାଙ୍କର ଦର୍ଶନ ଅଭିଳାଷ ପୂର୍ଣ୍ଣ ହୋଇଥିବାରୁ ତାଙ୍କର ପିପାସୁ ନେତ୍ର ଚାହୁଁଛି ପ୍ରଭୁଙ୍କ ସୁନ୍ଦର ମୂରତିକୁ ପିଇଯିବାକୁ।

ସକଳ ଇନ୍ଦ୍ରିୟ, ମନ, ବୁଦ୍ଧି, ପ୍ରାଣ ପ୍ରଭୁଙ୍କୁ ଆତ୍ମସାତ୍ କରିନେବା ପାଇଁ ବ୍ୟାକୁଳ ହୋଇ ଉଠୁଛନ୍ତି । କିନ୍ତୁ ଏମାନଙ୍କର ଏତେ ଶକ୍ତି କାହିଁ ଯେ ସେ ଜଗତନିୟନ୍ତାଙ୍କୁ ଆତ୍ମସାତ୍ କରି ପାରିବେ? କ୍ଷୁଦ୍ର ନଦୀ କ'ଣ କେବେ ସମୁଦ୍ରକୁ ନିଜ ଭିତରେ ସମାବିଷ୍ଟ କରି ପାରିବ? ବରଂ ସେ ନିଜେ ନିଜର ଅସ୍ତିତ୍ୱକୁ ସମୁଦ୍ର ନିକଟରେ ହଜାଇ ଦେଇପାରେ । ସେହିପରି ଲାଖା ଭକ୍ତଙ୍କ ଇନ୍ଦ୍ରିୟ, ମନ, ବୁଦ୍ଧି, ପ୍ରାଣ ସବୁ କିଛି ନିଜର ଅସ୍ତିତ୍ୱ ହରାଇ ପ୍ରଭୁଙ୍କ ଠାରେ ସମ୍ମିଳିତ ହୋଇଗଲେ । କିଛି ସମୟ ପରେ ତାଙ୍କର ବାହ୍ୟଚେତନା ଫେରି ଆସିଲା । ସେ ପ୍ରଭୁଙ୍କ ପ୍ରେମବନ୍ଧନରେ ବାନ୍ଧି ହୋଇ ଶ୍ରୀକ୍ଷେତ୍ରରେ ଅନେକ ଦିନ ନିବାସ କଲେ ।

ଭକ୍ତ ପ୍ରଭୁଙ୍କ ଚରଣରେ ନିଜକୁ ସର୍ବାତ୍ମଭାବରେ ସମର୍ପଣ କରିଦେଇଥିବାରୁ ଭଗବାନ ମଧ୍ୟ ନିଜକୁ ତା' ହାତରେ ବିକି ଦେଇଥାନ୍ତି । ନବଜାତ ବାଛୁରୀକୁ ଗାଈ ଯେପରି ଚାଟି ପକାଏ, ତାକୁ କ୍ଷଣେମାତ୍ର ନେତ୍ରରୁ ଅନ୍ତର କରେ ନାହିଁ, ସେହିପରି ପ୍ରଭୁ ଜଗନ୍ନାଥ ଲାଖାକୁ ମନ୍ଦିରରେ ନିଜ ପାଖରେ ବସାଇ ରଖିବାକୁ ଚାହାନ୍ତି । ଭଗବାନଙ୍କ ଆଗ୍ରହକୁ ଭକ୍ତ ଟାଳି ପାରନ୍ତି ନାହିଁ । ମାଧବ ଦାସ ଯେପରି କେବେ କେବେ ମନ୍ଦିରରେ ରହିଯାଆନ୍ତି, ତାଙ୍କୁ କେହି ଦେଖି ପାରନ୍ତି ନାହିଁ, ସେହି ସ୍ଥିତି ଲାଖାଙ୍କର । କଥା ପ୍ରସଙ୍ଗରେ କେବେ କେବେ ଭଗବାନ କହନ୍ତି—"ଲାଖା! ମୋ ମନ କହୁଛି ତୋତେ ସବୁଦିନ ପାଇଁ ମୋ ସାଙ୍ଗରେ ମିଶାଇ ଦିଅନ୍ତି । ତୁ କ୍ଷଣେମାତ୍ର ମୋର ନେତ୍ର ଅନ୍ତରାଳକୁ ଚାଲିଗଲେ ମୋତେ ଭଲ ଲାଗୁ ନାହିଁ ।" ଲାଖା କହନ୍ତି—"ପ୍ରଭୁ ଏହା କିପରି ସମ୍ଭବ ହେବ? ପଞ୍ଚଭୂତର ଦେହ ଧରିଛି ଯେତେବେଳେ ଶୌଚସ୍ନାନାଦି ନିତ୍ୟକର୍ମ ପାଇଁ ତ ବାହାରକୁ ଯିବାକୁ ପଡ଼ିବ ।" ଭଗବାନ ପ୍ରେମପରବଶ ହୋଇ କହନ୍ତି—"ମୁଁ ଯେପରି ଚିଦାନନ୍ଦ, ତୁ ଯଦି ସେହିପରି ହୋଇଯାଉ, ତେବେ ଆଉ ଏ ବିଚ୍ଛେଦ ବିଘ୍ନ ରହନ୍ତା ନାହିଁ । ଭାବୁଛି, ତୋତେ ମଧ୍ୟ ମୁଁ ମୋ ଭଳି କରିଦେବି । ମୋ ସାମୀପ୍ୟ ଯୋଗୁଁ ତୋର ପାଞ୍ଚଭୌତିକ ଦେହ ମଧ୍ୟ ଚିନ୍ମୟ ହୋଇଯିବ ।" ଲାଖା କହନ୍ତି—"ନା ପ୍ରଭୁ! ମୁଁ ତୁଚ୍ଛ ମାନବ କେଉଁଠି, ଆଉ ତୁମର ଚିନ୍ମୟ ଦିବ୍ୟବପୁ କେଉଁଠି! ତୁମ ସଙ୍ଗେ ମୁଁ କିପରି ସମାନତା କରି ପାରିବି । ମୋତେ ଚରଣକିଂକର ହୋଇ ରହିବାକୁ ଦିଅ । ମୋର ସେଥିରେ ଭାରି ଆନନ୍ଦ । ତୁମ ଭଳି ହୋଇଗଲେ ଆଉ ସେବକ-ସେବ୍ୟ ଭାବ ରହିବ ନାହିଁ । ମୋ ଭକ୍ତିରେ ତ୍ରୁଟି ହେବ । ମୁଁ କଦାପି ତୁମର ସମକକ୍ଷ ହେବାକୁ ଚାହେଁନା ।"ଭଗବାନ ଭକ୍ତର ଭାବକୁ କାଟି ନ ପାରି ଚୁପ୍ ରହି ଯାଆନ୍ତି ।

ଏକାନ୍ତରେ ଲାଖାଙ୍କର ମହାପ୍ରଭୁ ଜଗନ୍ନାଥଙ୍କ ସହିତ କେତେ କ'ଣ ବାର୍ତ୍ତାଳାପ ଚାଲେ । କେତେବେଳେ କେମିତି ଠାକୁର ଭକ୍ତଙ୍କୁ ତା' ଘରର ଭଲମନ୍ଦ ପଚାରନ୍ତି । ପ୍ରଭୁଙ୍କର ତାଙ୍କ ଠାରେ ଏକାନ୍ତ ପ୍ରୀତି ଦେଖି ସେ ମନେ ମନେ ପ୍ରମୁଦିତ ହେଉଥାନ୍ତି । କଥା ଛଳରେ ଥରେ ଜଗନ୍ନାଥ ତାଙ୍କ ଝିଅ କଥା ପଚାରିବାରୁ ସେ କହିଲେ—"ପ୍ରଭୁ! ଝିଅଟି ତୁମକୁ ଭାରି ସ୍ନେହ କରେ । ମୁଁ ଆସିଲା ବେଳକୁ ସମସ୍ତେ ତୁମକୁ ପ୍ରଣାମ ଜଣାଇଥିଲେ । ବିଶେଷ ଭାବରେ ଝିଅଟି କାନ୍ଦି କାନ୍ଦି ତୁମକୁ କହିବା ପାଇଁ କହିଥିଲା । ମୁଁ କହିବାକୁ ଭୁଲି ଯାଇଥିଲି ।" ଭଗବାନ ପଚାରିଲେ—"ତାକୁ ସଙ୍ଗରେ ଆଣିଲୁ ନାହିଁ କାହିଁକି?" ସେ କହିଲେ—"ପ୍ରଭୁ! ସେ ବିବାହ ଯୋଗ୍ୟା ହୋଇଗଲାଣି । ତା'ର ବିବାହ ପାଇଁ କେତେ କୁଆଡ଼ୁ ବରପାତ୍ର ଆସୁଛନ୍ତି, ତେଣୁ ସେ ଆସି ପାରିଲା ନାହିଁ ।" ଭଗବାନ କହିଲେ—"ହଉ, ହେଲା । ଉଚିତ ବରପାତ୍ର ଦେଖି ତା'ର ବିବାହ କାର୍ଯ୍ୟ ମହା ସମାରୋହରେ କରାଇବୁ । ସେ ମୋର ନାତୁଣୀ ଭଳି । ତା'ର ଯେପରି କୌଣସି ଅଭାବ ନ ହୁଏ ।" ଭକ୍ତ ଲାଖା ଭଗବାନଙ୍କ କଥା ଶୁଣୁଥାନ୍ତି, କିନ୍ତୁ କିଛି ନ କହି ଚୁପ୍ ହୋଇଯାଆନ୍ତି । ସେ ମନେ ମନେ ଭାବନ୍ତି—"ମୋର ତନୁ-ମନ-ଧନ ସବୁ କିଛି ତ ଭକ୍ତ ଓ ଭଗବାନଙ୍କ ସେବାରେ ଅର୍ପିତ ହୋଇ ସାରିଛି । ଘରର କୌଣସି ସମ୍ପତ୍ତି ମୋର ନୁହେଁ । ତେବେ ପ୍ରଭୁଙ୍କ ସମ୍ପତ୍ତିକୁ ମୁଁ କିପରି ଝିଅର ବାହାଘରରେ ଲଗାଇବି!" ସେଥିପାଇଁ ସେ ବାହାଘର ପ୍ରସ୍ତାବକୁ ଲେଉଟାଇ ଦେଉଥାନ୍ତି । ଭଗବାନ ତାଙ୍କ ମନ କଥା ବୁଝିପାରି କହିଲେ—"ଯେତେ ଧନ ଖର୍ଚ୍ଚ ହେବ, ମୋଠାରୁ ନେଇଯିବୁ । ସଂକୋଚ କରିବୁ ନାହିଁ । ତୁ ମୋର ହୋଇଗଲୁ ଯେତେବେଳେ ମୋର ସବୁ ସମ୍ପତ୍ତିରେ ତୋର ସମ୍ପୂର୍ଣ୍ଣ ଅଧିକାର ହୋଇଗଲା ।" ଠାକୁରଙ୍କ କଥା ଶୁଣି ଲାଖା କାନ ବନ୍ଦ କରିଦେଲେ । କହିଲେ—"ପ୍ରଭୁ! ତୁମେ କଣ ସବୁ ନିୟମ-ନୀତି ଭୁଲିଗଲ? ଦେବ-ସମ୍ପତ୍ତିକୁ ମଣିଷ ଉପଭୋଗ କରିବାର ବିଧାନ କେଉଁଠି ଦେଖିଛ? ଏହା ଆଦୌ ଉଚିତ ହେବ ନାହିଁ । ମୁଁ ତୁମକୁ ଦେବାକୁ ଭକ୍ତ ହୋଇଛି କି ତୁମଠାରୁ ନେବାକୁ? ମୁଁ କ'ଣ ବା ନ ପାଇଛି! ତୁମେ ମୋତେ ଆପଣାର କରି ହୃଦୟରେ ସ୍ଥାନ ଦେଲ, ଏହାଠାରୁ ବଳି ସମ୍ପତ୍ତି ଆଉ କ'ଣ ବା ଅଛି? ତୁମ ପାଦପଦ୍ମର ସାନ୍ନିଧ୍ୟରେ ମୋର ମନଭ୍ରମର ସର୍ବଦା ମଧୁ ପାନ କରୁଥାଉ, ତୁମ ପାଦତଳେ ଏ ଦାସର ଏତିକି ମାତ୍ର ମାଗୁଣି ।"

ମହାପ୍ରଭୁ ଜଗନ୍ନାଥଙ୍କ ମନ କିନ୍ତୁ ମାନୁ ନ ଥାଏ । ସେ ଚାହୁଁଥାନ୍ତି ଭକ୍ତଙ୍କୁ କିଛି

ଦେବା ପାଇଁ । ଭକ୍ତ କିନ୍ତୁ ତା' ନିଷ୍ଠାରେ ଅଟଳ । ଯାହାହେଲେ ବି ଶେଷକୁ ତ ଭକ୍ତକୁ ହିଁ ଭଗବାନଙ୍କ ଆଦେଶ ମାନିବାକୁ ପଡ଼ିବ । ମନ ନ ଥିଲେ ମଧ୍ୟ ଯେପରି ଦଣ୍ଡବତର ପ୍ରତିଜ୍ଞା ଛାଡ଼ି ପ୍ରଭୁଙ୍କ କଥା ରକ୍ଷା କରିବାକୁ ପଡ଼ିଲା, ସେହିପରି ପ୍ରଭୁଙ୍କ ଆଜ୍ଞା ଆଗରେ ନିଜର ପ୍ରତିଜ୍ଞା ଚଳିବ ନାହିଁ । ଏଥିନେଇ ଲାଖାଙ୍କ ମନରେ ଭାରି ସଂକୋଚ ଥାଏ । ଦିନେ ସେ ଏ ଧର୍ମସଂକଟରୁ ମୁକୁଳିବା ପାଇଁ ଗୋଟିଏ ଉପାୟ ପାଞ୍ଚିଲେ । ଭାବିଲେ, ପ୍ରଭୁଙ୍କୁ ନ କହି ଘରକୁ ଚାଲିଯିବେ । କିନ୍ତୁ ଏହା ତାଙ୍କ ପକ୍ଷେ କିପରି ସମ୍ଭବ ହୋଇପାରିବ? ପ୍ରାଣଧନଙ୍କ ଠାରୁ ବିଦାୟ ନ ନେଇ ସେ ଲୁଚି ଚାଲିଯିବେ କିପରି? ମାତ୍ର ତାଙ୍କ ପାଖରେ ଆଉ କୌଣସି ଉପାୟ ନ ଥିଲା । ଭାବିଲେ, ପ୍ରଭୁଙ୍କୁ କହିଲେ ସେ ଜଣା ନାହିଁ କେତେ କ'ଣ ଦେଇଦେବେ? ନିଜର ଗହଣାଗାଣ୍ଠି ଦେଇଦେବା ବି ତାଙ୍କ ପାଇଁ କିଛି ବଡ଼ କଥା ନୁହେଁ । ଭାବନାର ଆବେଗରେ ସେ ଆଗପଛ ଦେଖିବେ ନାହିଁ । ଅପରପକ୍ଷେ ଯେଉଁ ପ୍ରଭୁଙ୍କୁ ସେ ଏତେ ଦିନପରେ ପାଇଛନ୍ତି, ତାଙ୍କଠାରୁ ବିଦାୟ ମାଗିବା ତାଙ୍କ ପକ୍ଷେ ଅସମ୍ଭବ ଥିଲା । ବିଦାୟ ମାଗିବାମାତ୍ରେ ପ୍ରଭୁଙ୍କ ସଦ୍ୟ ପ୍ରସ୍ଫୁଟିତ ପଦ୍ମତୁଲ୍ୟ ମୁଖ ଭକ୍ତର ବିୟୋଗ ଆଶଙ୍କାରେ ମଉଳି ଯିବ । ସେ ଆଉ ପ୍ରଭୁଙ୍କ ମଳିନ ମୁଖକୁ ଦେଖି ଧୈର୍ଯ୍ୟ ଧରିବେ କିପରି? ଉଭୟ ପକ୍ଷରୁ ବିଚାର କରି ଶେଷକୁ ସେ ନ କହି ଚାଲିଯିବାକୁ ସ୍ଥିର କଲେ । ପ୍ରଭୁଙ୍କ ଛଡ଼ା ତୁଳସୀମାଳ, ଅଙ୍ଗ ଲାଗି ଚନ୍ଦନ ଓ ଗୋଟିଏ ଶ୍ରୀଅଙ୍ଗଉତ୍ତରୀ ନେବାକୁ ତାଙ୍କର ମନ ବଳିଲା । ଭାବିଲେ, ପ୍ରଭୁଙ୍କୁ ତ ନ କହି ଚାଲିଯିବି । ହେଲେ ଆଉ କେତେଦିନ ପରେ ପୁଣି ଦର୍ଶନର ସୌଭାଗ୍ୟ ମିଳିବ କ'ଣ ଜଣା, ତେଣୁ ପ୍ରତିଦିନ ଏହାକୁ ଦେଖି ଦେଖି ମନକୁ ବୁଝାଉଥିବି । ଏତଦ୍ଦ୍ୱାରା ମୋତେ ପ୍ରଭୁଙ୍କ ଅଖଣ୍ଡ ସାନ୍ନିଧ୍ୟ ଅନୁଭବ ହେଉଥିବ ।

ବିଚାର ସିନା କରିନେଲେ, କିନ୍ତୁ କାର୍ଯ୍ୟରେ ପରିଣତ କରିଦେବା ତ ସାଧାରଣ କଥା ନୁହେଁ । ଶୟନ ଆଳତିରେ ପ୍ରଭୁଙ୍କ ପ୍ରସାଦ ଧରି ମନଦୁଃଖରେ ଦର୍ଶନ କରୁଥାନ୍ତି । ଭାବୁଥାନ୍ତି, ଆଉ ଏ ଅଭାଗାକୁ କେବେ ଦର୍ଶନ ମିଳିବ କେଜାଣି? ଏ ନେତ୍ର କ'ଣ ପୁଣି କେବେ ପ୍ରଭୁଙ୍କ ଦର୍ଶନର ସୌଭାଗ୍ୟ ପାଇବ? ଭକ୍ତକୁ ବିଷଣ୍ଣ ଲକ୍ଷ୍ୟ କରି ମହାବାହୁ ପଚାରିଲେ—"ଲାଖା! ତୁମ ମନ ଆଜି କାହିଁକି ବିଷଣ୍ଣ ଲାଗୁଛି? ଏ ତୁଳସୀ ମାଳ, ଉତ୍ତରୀ ଇତ୍ୟାଦି କ'ଣ କରିବ?" ସେ କଥା ଲୁଚାଇ କହିଲେ—"କିଛି ନାହିଁ ପ୍ରଭୁ! ସେମିତି ଟିକିଏ ମନ ହେଲା ତ, ସେଥିପାଇଁ କାନିରେ ବାନ୍ଧି ପକାଇଛି ।" ଭଗବାନ ତାଙ୍କୁ ବିଶ୍ରାମ କରିବାକୁ

ଆଜ୍ଞା ଦେଇ ନିଜେ ରତ୍ନପଲଙ୍କରେ ଶୟନ କଲେ। କିନ୍ତୁ ଭକ୍ତ ଆଖିକୁ ନିଦ ନ ଥାଏ। ପ୍ରଭୁଙ୍କର ବାତ୍ସଲ୍ୟ ସ୍ନେହ ତାଙ୍କ ଆଖି ଆଗରେ ନାଚି ଯାଉଥାଏ। ମନେ ମନେ ପଶ୍ଚାତ୍ତାପ କରୁଥାନ୍ତି—ଘର ଜଞ୍ଜାଳ କାରଣରୁ ପ୍ରଭୁଙ୍କୁ ଛାଡ଼ି ଯିବାକୁ ପଡୁଛି, ନ ହେଲେ ଏଇଠି ରହି ଆନନ୍ଦରେ ଦିନ କାଟନ୍ତି। ଯିବାବେଳେ ଠାକୁରଙ୍କୁ ଦେଖା ନ କରିବାର ଦୁଃଖ ତାଙ୍କ ମନକୁ ଭାଙ୍ଗି ପକାଉଥାଏ। ମନ୍ଦିରରୁ ବାହାରିବାକୁ ଚେଷ୍ଟା କରୁଥାନ୍ତି, କିନ୍ତୁ ପାଦ ଆଗକୁ ପଡୁ ନ ଥାଏ। ଗୋଟିଏ ହାତରେ ଅଙ୍ଗ ଲାଗି ଚନ୍ଦନ ଧରିଥାନ୍ତି, ଅନ୍ୟ ହାତରେ ଧରିଥାନ୍ତି ଛଡ଼ା ତୁଳସୀ ମାଳ। କାନ୍ଧରେ ପକାଇଥାନ୍ତି ଉତ୍ତରୀଟିକୁ। ବିୟୋଗ ଦୁଃଖରେ ଧାରାଶ୍ରାବଣ ଭଳି ଧାର ଧାର ଲୋତକ ପ୍ରବାହିତ ହୋଇ ତାଙ୍କ ବକ୍ଷସ୍ଥଳକୁ ସିକ୍ତ କରିଚାଲିଥାଏ। ନେତ୍ର ଲୋତକପୂରିତ ହୋଇଯିବାରୁ ଚାଲିବା ପଥ ଦେଖାଯାଉ ନ ଥାଏ। ଦୁଇ ହାତରେ ପ୍ରଭୁଙ୍କ ପ୍ରସାଦ, ତେଣୁ ଦୁଇ ବାହୁରେ ଲୁହ ପୋଛି ପୋଛି ଚାଲିଥାନ୍ତି। ମନ ଭିତରେ ପ୍ରଭୁଙ୍କୁ କେତେ କଣ ବିନତି ଜଣାଉଥାନ୍ତି।

ଭକ୍ତର ବିୟୋଗ ହେବା କ୍ଷଣି ଭଗବାନଙ୍କ ନିଦ୍ରା ଭାଙ୍ଗିଗଲା। ସେ ଗଜପତି ମହାରାଜାଙ୍କୁ ସ୍ୱପ୍ନରେ ଭକ୍ତର ଯଥେଷ୍ଟ ସତ୍କାର କରିବାକୁ ଆଜ୍ଞା ଦେଲେ। ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଗଜପତି ରାଜମାର୍ଗରେ ଜଗୁଆଳିମାନଙ୍କୁ ଠିଆ କରିଦେଲେ। ଭକ୍ତ ଲାଖାଙ୍କୁ ଚିହ୍ନିପାରି ସେମାନେ ତାଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲେ ଏବଂ ରାଜାଙ୍କ ନିକଟକୁ ଯିବାକୁ ଅନୁରୋଧ କଲେ। ଲାଖାଭକ୍ତ ତାଙ୍କ କଥାକୁ ଅସ୍ୱୀକାର କରିଦେବାରୁ ସେମାନେ କହିଲେ—ଭକ୍ତବର! ତେବେ ଆପଣ ଏଇଠି ଟିକିଏ ଅପେକ୍ଷା କରନ୍ତୁ। ଆମେ ଯଥାଶୀଘ୍ର ଗଜପତିଙ୍କୁ ଡାକି ଆଣୁଛୁ। ତାଙ୍କୁ ଦର୍ଶନ ଦେବାପରେ ଆପଣ ନିଜ ଦେଶକୁ ଯିବେ। ଲାଖା ଭାବିଲେ—"ବୋଧହୁଏ ଏହା ମୋ ପ୍ରଭୁଙ୍କର ଇଚ୍ଛା। ଆସିଲା ବେଳେ ତାଙ୍କୁ ଦର୍ଶନ କରି ପାରିଲି ନାହିଁ, ତେଣୁ ସେ ନିଜର ଚଳନ୍ତି ପ୍ରତିମା ଗଜପତିଙ୍କ ଦର୍ଶନର ସୌଭାଗ୍ୟ ପ୍ରଦାନ କରୁଛନ୍ତି। ଭକ୍ତର ଦର୍ଶନ କଲେ ହୁଏତ ପ୍ରଭୁଙ୍କ ଠାରୁ ବିଦାୟ ନ ମାଗି ଲୁଚି ପଳାଇ ଆସିଥିବାରୂପୀ ଅପରାଧ ଲାଘବ ହୋଇଯିବ।" ଏହିପରି ଭାବୁ ଭାବୁ ଗଜପତି ମହାରାଜ ଦୂତଙ୍କ ଠାରୁ ସୂଚନା ପାଇ ଅବିଳମ୍ବେ ଛତ୍ର, ଚାମର, ହାତୀ, ଘୋଡ଼ା, ପାଲିଙ୍କି ଇତ୍ୟାଦି ଘେନି ଆସି ପହଞ୍ଚିଗଲେ। ଭାବିଲେ, ଯାହାଙ୍କ ପାଇଁ ମୋ ଆରାଧ୍ୟ ଠାକୁର ପାଲିଙ୍କି ପଠାଇଥିଲେ, ତାଙ୍କର ଯଥେଷ୍ଟ ସମ୍ମାନ ହେବା ଆବଶ୍ୟକ। ଶଙ୍ଖ ଧ୍ୱନି ସହିତ ନାମ ସଂକୀର୍ତ୍ତନ ଓ ଜୟକାର ଧ୍ୱନି କରି ପାଦ୍ୟଅର୍ଘ୍ୟରେ ଭକ୍ତଙ୍କ

ପାଦ ବନ୍ଦନା କଲେ ଏବଂ ଗୃହକୁ ପାଛୋଟି ନେଇ ମହାପ୍ରସାଦ ସେବନ କରାଇ ଲକ୍ଷେ ଟଙ୍କାର ହୁଣ୍ଡି (ରସିଦ୍) ଲେଖିଦେଲେ। ଭକ୍ତବର ତାହାକୁ ଅସ୍ୱୀକାର କରି କହିଲେ—"ରାଜନ୍! ଏ ଭଳି ଅନୀତି କରନ୍ତୁ ନାହିଁ। ମୁଁ ଆପଣଙ୍କ ଭାବନାକୁ ସମ୍ମାନ କରୁଛି, କିନ୍ତୁ ଏ ହୁଣ୍ଡି ସ୍ୱୀକାର କରି ପାରିବି ନାହିଁ।" ଗଜପତି କହିଲେ—"ଭକ୍ତବର! ଆଉ ହଠ କର ନାହିଁ। ଏହା ପ୍ରଭୁଙ୍କର ଆଜ୍ଞା। ତାଙ୍କ ଆଜ୍ଞା ଆମ ସମସ୍ତଙ୍କ ପାଇଁ ପାଳନୀୟ। ମହାବାହୁ ମୋତେ ସ୍ୱପ୍ନରେ କହିଲେ ତୁମର କନ୍ୟା ବିବାହ ଯୋଗ୍ୟା ହୋଇଗଲାଣି। ତାହାର ବିବାହର ବ୍ୟବସ୍ଥା କରିବା ଦରକାର। ପ୍ରଭୁ ତୁମକୁ ଧନ ଦେବାକୁ ଚାହୁଁଥିଲେ, ତୁମେ ଦେଖା ନ କରି ଚାଲିଆସିଲ। ସେଥିପାଇଁ ତାଙ୍କ ମନ ଭାରି ଦୁଃଖୀ। ତୁମେ ଯଦି ଦେବସମ୍ପତ୍ତି ବିବାହ କାର୍ଯ୍ୟରେ ଲଗାଇବାକୁ ସଂକୋଚ କରୁଥାଅ, ତେବେ ଏ ସେବକ ଉପରେ କରୁଣା କରି ଏହି ଧନ ଦ୍ୱାରା ମହାସମାରୋହରେ କନ୍ୟାର ବିବାହ କାର୍ଯ୍ୟ ସମ୍ପନ୍ନ କର। ଏଥିରେ ପ୍ରଭୁ ନିଶ୍ଚୟ ସନ୍ତୁଷ୍ଟ ହେବେ।

ଭକ୍ତବର ଲାଖୀ ରାଜାଙ୍କ ମୁଖରୁ ଏଭଳି ଗୁପ୍ତ ରହସ୍ୟ ଶୁଣି ଅଧୀର ହୋଇ ପଡ଼ିଲେ। ତାଙ୍କର ନେତ୍ରରୁ ଲୋତକ ବହି ଆସିଲା। ପ୍ରଭୁଙ୍କ ବାତ୍ସଲ୍ୟ ସ୍ନେହ ଅନୁଭବ କରି ସେ କୃତାର୍ଥ ହୋଇଗଲେ। ତାଙ୍କୁ ବିଶ୍ୱାସ ହୋଇଗଲା ଯେ ଏହା ପ୍ରଭୁଙ୍କର ଇଚ୍ଛା। ଯଦି ସେ ଧନ ସ୍ୱୀକାର କରିବେ ନାହିଁ, ତେବେ ଭକ୍ତ ଓ ଭଗବାନ ଉଭୟଙ୍କର ଅସମ୍ମାନ ହେବ। ଏଭଳି ସ୍ଥିର କରି ସେ ଠାକୁରଙ୍କ ସୁଖ ପାଇଁ ହୁଣ୍ଡି ଗ୍ରହଣ କଲେ ଏବଂ କିଛି ଦିନ ପର୍ଯ୍ୟନ୍ତ ଗଜପତିଙ୍କ ସଙ୍ଗେ ସତ୍ସଙ୍ଗ ଆଲୋଚନା କରି ତାଙ୍କ ଠାରୁ ବିଦାୟ ନେଲେ।

ଭକ୍ତବର ହୁଣ୍ଡି ଆଣି ଘରକୁ ଫେରିଲେ ସତ, କିନ୍ତୁ କନ୍ୟାର ବିବାହରେ କେବଳ ଶହେ ଟଙ୍କା ଖର୍ଚ୍ଚ କରି ବାକି ସବୁ ସାଧୁସନ୍ଥଙ୍କ ସେବାରେ ଲଗାଇଦେଲେ। ଅନ୍ନ-ବସ୍ତ୍ର ଦ୍ୱାରା ସନ୍ଥଜନଙ୍କୁ ଯଥେଷ୍ଟ ସମ୍ମାନ ଜଣାଇ ତାଙ୍କର ଚରଣ ସ୍ପର୍ଶ କରି ସୁଖୀ ଅନୁଭବ କଲେ। ଗଜପତି ଧନ ଦେବା ପୂର୍ବରୁ ଆହୁରି ଅନେକ ଲୋକ ଝିଅର ବିବାହ ପାଇଁ କିଛି କିଛି ଧନ ଦେଇଥିଲେ। ସେ ସବୁକୁ ମଧ୍ୟ ସେ ସାଧୁସନ୍ଥଙ୍କ ସେବାରେ ବିନିଯୋଗ କରି ପରମାନନ୍ଦ ଅନୁଭବ କଲେ। ସାଧୁସନ୍ଥ ଥିଲେ ତାଙ୍କର ଇଷ୍ଟଦେବ। ତାଙ୍କର ଧାରଣା ଥିଲା ଯେ ଯେଉଁ ନର କଫ, ବାତ, ପିତ୍ତ ଇତ୍ୟାଦିରେ ଗଠିତ ଶବତୁଲ୍ୟ ଦେହକୁ ଆତ୍ମା ଭାବି ସେଥିପ୍ରତି 'ମୁଁ' ଭାବ ରଖେ ଏବଂ ସ୍ତ୍ରୀ-ପୁତ୍ରାଦିଙ୍କୁ 'ମୋର' ଭାବେ; କେବଳ ମୃତ୍ତିକା, କାଷ୍ଠ ଆଦି ପାର୍ଥିବ

ବିକାରକୁ ଇଷ୍ଟଦେବ ଭାବେ ଓ ଜଳପୂର୍ଣ୍ଣ ସରୋବରକୁ ତୀର୍ଥ ମନେକରେ; ଅଥଚ ଭକ୍ତ ଓ ଜ୍ଞାନୀ ମହାପୁରୁଷଙ୍କୁ ଆଦର କରେ ନାହିଁ, ସେ ମନୁଷ୍ୟ ରୂପ ଧାରଣ କରିଥିଲେ ମଧ୍ୟ ନୀଚପଶୁ ଗଧ ଭଳି ଅତ୍ୟନ୍ତ ନିନ୍ଦନୀୟ। ସେଥିପାଇଁ ଭକ୍ତବର ଲାଖା ଦେହ ଓ କୁଟୁମ୍ବଙ୍କ ସେବା ନ କରି ସେମାନଙ୍କ ମଙ୍ଗଳ ପାଇଁ ସନ୍ଥବୈଷ୍ଣବଙ୍କ ସେବା କଲେ। ଋଣୀ ବ୍ୟକ୍ତି ଯେପରି ଋଣ ପରିଶୋଧ କରି ନିଜକୁ କୃତାର୍ଥ ମଣେ, ସେହିପରି ସେ ସନ୍ଥସେବାରେ ଧନ ଲଗାଇ ଏକପ୍ରକାରେ ଜଗତର ଋଣ ପରିଶୋଧ କରିବାକୁ ଚେଷ୍ଟା କଲେ। ପ୍ରକୃତରେ ଏ ଜଗତ ସାଧୁସନ୍ଥଙ୍କର ଋଣୀ। ସାଧୁ-ସନ୍ଥ ଆମକୁ ଅଜ୍ଞାନ ଅନ୍ଧକାରରୁ ମୁକ୍ତ କରି ଭଗବାନଙ୍କ ଶରଣାଗତ କରାଇ ଦିଅନ୍ତି, ଭଗବାନଙ୍କ କଥା ଶ୍ରବଣ କରାଇ ଭକ୍ତିରେ ଓତପ୍ରୋତ କରାଇ ଦିଅନ୍ତି। ଯେତେ ଚେଷ୍ଟା କଲେ ବି ଜଗତ ତାଙ୍କର ଋଣ ଶୁଝାଇ ପାରିବ ନାହିଁ। ସଂସାରୀ ଲୋକେ କାହା ଉପରେ ପ୍ରସନ୍ନ ହେଲେ ତାକୁ ପାର୍ଥିବ ଦ୍ରବ୍ୟ ଦିଅନ୍ତି, କିନ୍ତୁ ସାଧୁ-ସନ୍ଥ ପ୍ରସନ୍ନ ହେଲେ ଦିଅନ୍ତି ଯୋଗୀଦୁର୍ଲଭ ବୈକୁଣ୍ଠ ଧାମ। ତେଣୁ ଏଭଳି ଉଦାରମନା ସନ୍ଥଙ୍କ ନିକଟରେ ଏ ଜଗତ ସର୍ବଦା ଋଣୀ। ଏଥିଯୋଗୁଁ ସେ ସାଧୁସନ୍ଥଙ୍କ ସେବାରେ ଧନ ଉପଯୋଗ କରିଦେଲେ।

ଲାଖାଙ୍କର ଧର୍ମପତ୍ନୀ ଥିଲେ ଜେବାବାଈ। ସନ୍ଥସେବା ପାଇଁ ତାଙ୍କ ହୃଦୟରେ ଅତ୍ୟନ୍ତ ପ୍ରୀତି ରହିଥିଲା। ଶ୍ରଦ୍ଧାର ଫଳସ୍ୱରୂପ ତାଙ୍କର ପୁଅବୋହୂ ମଧ୍ୟ ସଚ୍ଚରିତ୍ରବାନ୍ ଓ ଭକ୍ତିବନ୍ତ ଥିଲେ। ପୁଅର ନାମ ଥିଲା ଦେବା ଓ ବୋହୂର ନାମ ଲକ୍ଷ୍ମୀଦେବୀ। ତାଙ୍କର ଝିଅ ଗଙ୍ଗାବାଈ ମଧ୍ୟ ପିଲାଦିନରୁ ଅତ୍ୟନ୍ତ ଭକ୍ତିମତୀ ଥିଲା। ବିବାହର କିଛି ଦିନ ମଧ୍ୟରେ ତା' ସ୍ୱାମୀ ପରଲୋକ ଗମନ କରିଗଲେ। ଏଭଳି ଅପ୍ରିୟ ଘଟଣାରେ ସମସ୍ତଙ୍କ ମନ ଶୋକମଗ୍ନ ହୋଇ ପଡ଼ିଲା। ଜ୍ୱାଇଁଙ୍କ ମୃତ୍ୟୁ ସମାଚ୍ର ପାଇ ଲାଖା ଝିଅକୁ ଓ ତା'ପରିବାରକୁ ଦୁଃଖସାଗରରୁ ପାରି କରିବା ପାଇଁ ନୌକା ଭଳି ଅବିଳମ୍ବେ ତାଙ୍କ ଘରେ ପହଞ୍ଚିଗଲେ। କିନ୍ତୁ ସେଠାରେ ସେ ଯାଇ ଦେଖିଲେ ବିପରୀତ। ଗଙ୍ଗାବାଈର ଅନ୍ତରରେ ଅସହ୍ୟ ବେଦନା ଥିଲେହେଁ ସେ ଶୋକାକୁଳ ଶାଶୁ-ଶ୍ୱଶୁରଙ୍କୁ ଭାଗବତ ଶୁଣାଇ ଧୈର୍ଯ୍ୟ ଦେଉଛି। ପୁତ୍ର ବିୟୋଗରେ ଶୋକାକୁଳ ଚିତ୍ରକେତୁ ରାଜାଙ୍କୁ ଦେବର୍ଷି ନାରଦ ଓ ଅଙ୍ଗିରା ଋଷି ଦେଇଥିବା ଉପଦେଶ ସ୍ମରଣ କରାଇ ସେମାନଙ୍କ ହୃଦୟର ଦୁଃଖ ଶାନ୍ତ କରିବାକୁ ଚେଷ୍ଟା କରୁଛି।

ବୋହୂର ସଦୁପଦେଶ ଶୁଣି ଶାଶୁ-ଶ୍ୱଶୁରଙ୍କ ଦୁଃଖ ଲାଘବ ହେଲା। ଶୋକନଦୀର ପ୍ରଖର ସ୍ରୋତରେ ଭାସିଯାଉଥିବା ତାଙ୍କର ବୁଦ୍ଧିକୁ ଏ ଉପଦେଶ

ତରଣୀ ଭଳି କାମ କଲା । ତୁହେଁ ଭଗବଦ୍ ଆରାଧନା ଓ ଭକ୍ତିରେ ଜୀବନ ଅର୍ପଣ କରି ଆନନ୍ଦ ଅନୁଭବ କଲେ । ଝିଅର ଏଭଳି ଅଦ୍ଭୁତ ପ୍ରତିଭା, ଧୈର୍ଯ୍ୟ ଓ ଦିବ୍ୟଜ୍ଞାନ ଦେଖି ଲାଖା ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଏସବୁକୁ ପ୍ରଭୁଙ୍କ ପ୍ରେରଣା ଭାବି ସେ ଗଙ୍ଗାବାଈକୁ ଆଜୀବନ ଠାକୁରଙ୍କ ସେବାରେ ନିମଗ୍ନ ହେବା ପାଇଁ ପ୍ରେରଣା ଦେଲେ । ପ୍ରଭୁଙ୍କ ଇଚ୍ଛାରୁ ତାଙ୍କର ସମସ୍ତ ପରିବାର ଭକ୍ତିରସରେ ନିମଗ୍ନ ହୋଇ ଜଗତ ପାଇଁ ଆଦର୍ଶ ହୋଇପାରିଲା ।

## ପ୍ରସାଦନିଷ୍ଠ ରାଜା

ଅନନ୍ୟ ନିଷ୍ଠା ହେଉଛି ଭକ୍ତର ପ୍ରଧାନ ଆଭୂଷଣ । ନିଷ୍ଠା ବଳରେ ସେ ଭଗବାନଙ୍କର ଏଭଳି କୃପା ଭାଜନ ହୋଇପାରେ, ଯାହାକି ଜଗତ ଦୃଷ୍ଟିରେ ଅତ୍ୟନ୍ତ ଅସମ୍ଭବ ମନେହୁଏ । ତା' ନିଷ୍ଠାରେ ଦ୍ରବିତ ହୋଇ କରୁଣାନିଧାନ ଭଗବାନ ଅନେକ ଅଲୌକିକ ଲୀଳା କରିଥାନ୍ତି । ଏହିପରି ଏକ ଘଟଣା ଘଟିଥିଲା ଶ୍ରୀକ୍ଷେତ୍ର ପୁରୀର ଜଣେ ରାଜାଙ୍କ ଜୀବନରେ । ସେ ଥିଲେ ପ୍ରସାଦନିଷ୍ଠ । ମହାପ୍ରସାଦ ପାଇଁ ତାଙ୍କର ମନ ଦିବାନିଶି ବ୍ୟାକୁଳ ରହୁଥିଲା । ପ୍ରସାଦ ଅର୍ଥ ଭଗବାନଙ୍କର ପ୍ରସନ୍ନତା । ଯେଉଁ ଦ୍ରବ୍ୟ ମାଧ୍ୟମରେ ପ୍ରଭୁଙ୍କ ପ୍ରସନ୍ନତା ଲାଭ କରି ହୁଏ, ତାହାର ନାମ ପ୍ରସାଦ । ଗୀତାରେ କଥିତ ଅଛି ଯେ ପ୍ରସାଦ ବା ପ୍ରସନ୍ନତାରୁ ମନୁଷ୍ୟର ସକଳ ଦୁଃଖ ସମୂଳେ ନଷ୍ଟ ହୋଇଯାଏ—**'ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ ।'** ଜଗତର ନାଥ ଜଗନ୍ନାଥଙ୍କ ଅଧର ସ୍ପର୍ଶ ଯୋଗୁଁ ମହାପ୍ରସାଦରେ ଜୀବକୁ ପରମ ଆନନ୍ଦ ପ୍ରଦାନ କରିବାର ଶକ୍ତି ନିହିତ । ଏଭଳି ଆନନ୍ଦଦାୟକ ପ୍ରସାଦ ସେବନ କରିବା ରାଜାଙ୍କ ଜୀବନର ଏକ ଅଭିନ୍ନ ନିୟମ ହୋଇଯାଇଥିଲା । ପୂଜାରୀମାନେ ପ୍ରତ୍ୟହ ତାଙ୍କ ପାଇଁ ମହାପ୍ରସାଦ ଘେନି ଆସନ୍ତି । ସେ ବଡ଼ ଆନନ୍ଦ ମନରେ ପ୍ରସାଦ ସେବନ କରି ନିଜକୁ କୃତାର୍ଥ ମଣନ୍ତି । ମହାପ୍ରସାଦ ସେବନ ନ କରିବା ପର୍ଯ୍ୟନ୍ତ ସେ ଅନ୍ୟ କୌଣସି ପଦାର୍ଥ ଗ୍ରହଣ କରନ୍ତି ନାହିଁ । ଏହି ନିଷ୍ଠା କାରଣରୁ ସେ ଭଗବାନଙ୍କର ପ୍ରୀତି ଭାଜନ ହୋଇପାରିଥିଲେ ।

ରାଜାଙ୍କ ଠାରେ ଅନେକ ସଦ୍‌ଗୁଣ ଥିଲେ ମଧ୍ୟ ଗୋଟିଏ ଅବଗୁଣ ତାଙ୍କୁ କୁମାର୍ଗକୁ ଟାଣି ନେଉଥିଲା । ତାହା ହେଲା କୁସଙ୍ଗ । ଜୁଆଖେଳରୂପୀ କୁଅଭ୍ୟାସ ଯୋଗୁଁ ତାଙ୍କ ଭକ୍ତିମାର୍ଗ ପରିଷ୍କୃତ ହୋଇ ପାରୁ ନ ଥିଲା । ତେଣୁ ବାତ୍ସଲ୍ୟମୟୀ

ମାଆ ସନ୍ତାନ ଦେହରେ ଲାଗିଥିବା ମଇଳାକୁ ଧୋଇଧାଇ ସଫା କରିଦେବା ପରି ଭଗବାନ ଗୋଟିଏ ଲୀଳା ରଚି ତାଙ୍କର ଅବଗୁଣକୁ ଦୂର କରିଦେଲେ ।

ଦିନକର କଥା । ରାଜା ପଶା ଖେଳୁଥିବା ସମୟରେ ପୂଜାରୀ ମହାଶୟ ପ୍ରସାଦ ଘେନି ପହଞ୍ଚିଲେ । ପ୍ରସାଦ ପ୍ରତି ତାଙ୍କର ଅନନ୍ୟ ନିଷ୍ଠା ଥିଲା । ସେ ପ୍ରଥମେ ମହାପ୍ରସାଦକୁ ଦଣ୍ଡବତ କରି ତା'ପରେ ମସ୍ତକରେ ଧାରଣପୂର୍ବକ ସମ୍ମାନ ଜଣାଉଥିଲେ । କିନ୍ତୁ ଆଜିର ଘଟଣାଚକ୍ର ବିପରୀତ ହୋଇଗଲା । ଡାହାଣ ହାତରେ ପଶା କାଠି ଧରିଥିବାରୁ ବାମ ହାତରେ ପ୍ରସାଦକୁ ଛୁଁଇଦେଇ ପୁଣି ଖେଳରେ ମାତିଗଲେ । ତାଙ୍କର ଏ ବିବେକ ରହିଲା ନାହିଁ ଯେ ଏହା ମହାପ୍ରସାଦର ଘୋର ଅପମାନ । ମହାପ୍ରସାଦକୁ ଅପମାନ କରିବା ଅର୍ଥ ମହାବାହୁ ଜଗନ୍ନାଥଙ୍କର ଅପମାନ । ଏ ସବୁର ମୂଳ କାରଣ ଥିଲା ଜୁଆଖେଳ । ଏହା ଏଭଳି ଏକ କୁସଙ୍ଗ, ଯାହାକି ମନୁଷ୍ୟର ମତିକୁ ଭ୍ରଷ୍ଟ କରିଦିଏ । ଜୁଆରେ କଳିଯୁଗର ନିବାସ । ତା' ସାଙ୍ଗକୁ ଜୁଆଖୋରମାନଙ୍କ ସହିତ ବସାଉଠା ଓ ବାର୍ତ୍ତାଳାପ ଯୋଗୁଁ ରାଜାଙ୍କ ବିବେକ ନଷ୍ଟ ହୋଇଗଲା । ସେଥିପାଇଁ କୁହାଯାଇଛି ଯେ 'କୁସଙ୍ଗତି କାହାକୁ ବା ନଷ୍ଟ କରି ନ ଦିଏ! କେହି ଯେତେ ବଡ଼ ଚତୁର ହୋଇଥିଲେ ମଧ୍ୟ କୁସଙ୍ଗତିରେ ପଡ଼ି ନିଜର ହିତାହିତ ଜ୍ଞାନ ହରାଇ ବସେ । ବୁଦ୍ଧିରେ ତାମସ ଭାବ ପ୍ରଭାବ ବିସ୍ତାର କରିବାରୁ ତାକୁ ସବୁକିଛି ବିପରୀତ ଜଣାପଡ଼େ । ଯେଉଁ ରାଜା ପ୍ରସାଦକୁ ପ୍ରାଣଠାରୁ ବଳି ପ୍ରିୟ ମଣୁଥିଲେ, କୁସଙ୍ଗତି ଯୋଗୁଁ ତାହାକୁ ସେ ବାଆଁ ହାତରେ ଛୁଇଁବାକୁ କୁଣ୍ଠା ପ୍ରକାଶ କଲେ ନାହିଁ । ଏଥିନେଇ ନୀତି ଶାସ୍ତ୍ରରେ କୁହାଯାଇଛି—

**ହ୍ରୀୟତେ ହି ମତିସ୍ତାତ ହୀନୈଃ ସହ ସମାଗମାତ୍ ।**
**ସମୈସ୍ତୁ ସମତାଂ ଯାତି ବିଶିଷ୍ଟୈସ୍ତୁ ବିଶିଷ୍ଟତାମ୍ ॥**

ଅର୍ଥାତ୍ "ହୀନ ଲୋକଙ୍କ ସଙ୍ଗେ ମିଳାମିଶା କଲେ ବୁଦ୍ଧି ହୀନ ହୋଇଯାଏ, ସମାନ ଗୁଣର ଲୋକଙ୍କ ସଙ୍ଗରେ ସମାନତା ରହେ ଏବଂ ଶ୍ରେଷ୍ଠ ପୁରୁଷଙ୍କ ସାନ୍ନିଧ୍ୟ ଲାଭ କଲେ ଜୀବନରେ ଶ୍ରେଷ୍ଠତ୍ୱ ପ୍ରକାଶ ପାଏ ।" ରାବଣ ଭଳି ଦୁଷ୍ଟ ରାକ୍ଷସ ପଡ଼ୋଶୀ ହୋଇଥିବାରୁ, ସମୁଦ୍ର ବିଚରା ନିର୍ଦୋଷ ହୋଇଥିଲେ ମଧ୍ୟ ବନ୍ଧା ହେଲା । ସେହିଭଳି ରାଜାଙ୍କ ହୃଦୟରେ ପ୍ରଭୁପ୍ରୀତି ଥିଲେ ମଧ୍ୟ ଜୁଆଖେଳରୂପୀ କୁସଙ୍ଗତି ତାଙ୍କ ମତିକୁ ପ୍ରସାଦ ଅବମାନନାରୂପୀ ଅପରାଧ ଆଡ଼କୁ ଟାଣିନେଲା ।

ରାଜାଙ୍କର ଏଭଳି ଦୁର୍ବ୍ୟବହାର ପୂଜାରୀଙ୍କ ମନକୁ ଘୋର ଆଘାତ ଦେଲା । ଏହାକୁ ସେ ଜଗନ୍ନାଥଙ୍କର ଅପମାନ ବୋଲି ଭାବିଲେ । ତାଙ୍କ ଆଖିରୁ ଧାର ଧାର

ଲୁହ ଝରି ପଡ଼ିଲା । ସେ ପ୍ରତିଦିନ ରାଜାଙ୍କୁ ପ୍ରସାଦ ଦେବାପରେ ଅବଶିଷ୍ଟ ପ୍ରସାଦ ମହଲରେ ପହଞ୍ଚାଇ ଦେଉଥିଲେ । କିନ୍ତୁ ଆଜି ତାହା କରିବାକୁ ତାଙ୍କ ବିବେକ ବାଧା ଦେଲା । ଭାବିଲେ, ଯିଏ ପ୍ରଭୁଙ୍କ ପ୍ରସାଦକୁ ବାଆଁ ହାତରେ ଛୁଇଁ ଅପମାନ କରୁଛି, ସେ କଦାପି ଏହାର ଅଧିକାରୀ ହୋଇ ପାରିବ ନାହିଁ । ଯେଉଁ ମହାପ୍ରସାଦ କଣିକାଏ ପାଇଁ ପିତାମହ ବ୍ରହ୍ମା ଓ ଦେବାଧିଦେବ ଇନ୍ଦ୍ର ମଧ୍ୟ ଲାଳାୟିତ, ରାଜା ଆଜି ତାହାକୁ ଏଭଳି ଅପମାନ କଲା! ଆଜିଠାରୁ ଆଉ କଦାପି ରାଜବାଟୀକୁ ପ୍ରସାଦ ପଠାଯିବ ନାହିଁ । ଏଭଳି ସ୍ଥିର କରି ସେ ପ୍ରସାଦ ଫେରାଇ ନେଲେ ।

ପଶାଖେଳରୁ ଉଠିବା ମାତ୍ରେ ରାଜାଙ୍କର ବିବେକ ଫେରି ଆସିଲା । ସେ ନିଜର ମନ୍ଦକୃତ୍ୟ ପାଇଁ ଘୋର ପଶ୍ଚାତ୍ତାପ କଲେ । ବିଷାଦ ଅଗ୍ନିରେ ତାଙ୍କ ହୃଦୟ ସନ୍ତାପିତ ହୋଇ ଉଠିଲା । ସେ ତାଙ୍କର ଭୁଲ୍ ବୁଝି ପାରିଲେ । ଅଧୀର ମନରେ ଯାଇ ମହଲରେ ପହଞ୍ଚି ପ୍ରସାଦ ମାଗିବାରୁ ସେବକମାନେ କହିଲେ, ଆଜି ପ୍ରସାଦ ଆସି ନାହିଁ । ଲାଗୁଛି ପୂଜାରୀ ଆଣିବାକୁ ଭୁଲିଯାଇଛନ୍ତି । କିନ୍ତୁ ରାଜାଙ୍କୁ ଏହାର ରହସ୍ୟ ବୁଝିବାକୁ ବେଶୀ ସମୟ ଲାଗିଲା ନାହିଁ । ସେ ଜାଣିଗଲେ ଯେ ପୂଜାରୀ ମହାଶୟ ପ୍ରସାଦ ନେଇ ଫେରିଗଲେ । ପ୍ରସାଦକୁ ଅବମାନନା କରିବାରୁ ଆଜିଠାରୁ ତାଙ୍କ ପାଇଁ ମନ୍ଦିରରୁ ମହାପ୍ରସାଦ ଆସିବା ବନ୍ଦ ହୋଇଗଲା । ଏପରି ଭାବି ଭାବି ରାଜା ସମ୍ପୂର୍ଣ୍ଣ ନିସ୍ତବ୍ଧ ହୋଇଗଲେ । ତାଙ୍କର ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇଗଲା । ଦେହ କମ୍ପି ଉଠିଲା । ମୁଖରୁ ବାକ୍ୟ ସ୍ଫୁରିଲା ନାହିଁ । ଏ କି ଅଘଟଣ ଘଟିଗଲା ବୋଲି ଭାବି ସେ ମୂର୍ତ୍ତିଭଳି ଜଡ଼ ପାଲଟି ଗଲେ । ମନ ଭିତରେ ନିର୍ଣ୍ଣୟ କରିନେଲେ, ଏସବୁ ମୋ କୁସଙ୍ଗତିର ଫଳ । ଏହି ଜୁଆଖେଳ ମୋତେ ଏତେ ପତନ ଗର୍ତ୍ତକୁ ଟାଣିନେଲା । ଆଜିଠାରୁ ଏ ହାତରେ ଆଉ ପଶାକାଠି ଧରିବି ନାହିଁ ।

କିନ୍ତୁ ଏତିକିରେ ତାଙ୍କ ମନ ବୁଝିଲା ନାହିଁ । ପ୍ରସାଦ ଅବମାନନାରୂପୀ ମହା ଅପରାଧର ପ୍ରାୟଶ୍ଚିତ୍ତ ନ କରିବା ପର୍ଯ୍ୟନ୍ତ ଅନ୍ନଜଳ ଗ୍ରହଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରିନେଲେ । ତା'ପରେ ବିଦ୍ୱାନ୍ ବ୍ରାହ୍ମଣମାନଙ୍କୁ ଡାକି ବିନମ୍ର ଭାବରେ ପଚାରିଲେ—"ବରେଣ୍ୟ ବିଦ୍ୱତ୍‌ମଣ୍ଡଳୀ! ଯଦି ବ୍ୟକ୍ତିର କୌଣସି ଅଙ୍ଗ ଦ୍ୱାରା କିଛି ଭଗବତ୍ ଅପରାଧ ହୋଇଯାଏ, ତେବେ ତାହାର ପ୍ରାୟଶ୍ଚିତ୍ତ କ'ଣ? ଆପଣମାନେ ଶାସ୍ତ୍ର ଅବଲୋକନ କରି ମୋତେ କୁହନ୍ତୁ।" ବ୍ରାହ୍ମଣମାନେ ଭାବିଲେ, ରାଜା ବୋଧହୁଏ ଆଉ କାହା ପାଇଁ ଉପାୟ ପଚାରୁଛନ୍ତି। ସେମାନଙ୍କୁ ଜଣା ନ ଥିଲା ଯେ ସେ ନିଜେ ସେହି ଉପାୟକୁ କାର୍ଯ୍ୟକାରୀ କରିବେ ବୋଲି । ସେମାନେ

ସହଜ ଭାବରେ କହିଦେଲେ—''ମଣିମା! ଶାସ୍ତ୍ରରେ କୁହାଯାଇଛି, **'ପ୍ରତିକୂଳସ୍ୟ ବର୍ଜନମ୍।'** କେହି ଯେତେ ପ୍ରିୟ ହୋଇଥିଲେ ବି ଭଗବଦ୍‌ବିମୁଖକୁ ପରିତ୍ୟାଗ କରିଦେବା ଉଚିତ। ଦକ୍ଷ ଯଜ୍ଞରେ କୈଳାଶବାସୀ ଶିବଙ୍କୁ ଅପମାନିତ କରିଥିବା ଲୋକଙ୍କୁ ତାଙ୍କ ଅନୁଚରଗଣ ଉଚିତ ଦଣ୍ଡ ଦେଇଥିଲେ। ଭୃଗୁ ଦାଢ଼ି ହଲାଇ ସମ୍ମତି ଦେଇଥିବାରୁ ତାଙ୍କ ଦାଢ଼ି ଉପାଡ଼ି ଦିଆଗଲା। ଭଗ ଦେବତା ଓ ଅନ୍ୟ କେତେକ ସଦସ୍ୟ ଆଖିଠାର ମାରି ଥଟ୍ଟା-ପରିହାସ କରିଥିବାରୁ ସେମାନଙ୍କ ଆଖି ଖୋଳି ନିଆଗଲା। ପୂଷା ଦେବତା ଦାନ୍ତ ଦେଖାଇ ଉପହାସ କରିଥିବାରୁ ତାଙ୍କ ଦାନ୍ତ ଭାଙ୍ଗି ଦିଆଗଲା। ଅଧ୍ୱର୍ଯ୍ୟୁଗଣ ହାତଠାରି ସଂକେତ କରିଥିବାରୁ ସେମାନଙ୍କ ହାତ ଭାଙ୍ଗି ଦିଆଗଲା। ଦକ୍ଷର ତ ମୁଣ୍ଡ ହାଣି ଯଜ୍ଞକୁଣ୍ଡରେ ସ୍ୱାହା କରି ଦିଆଯାଇଥିଲା। ଏହିସବୁ ପ୍ରମାଣରୁ ମନେହୁଏ ଯେ ଯେଉଁ ଅଙ୍ଗ ଭଗବାନଙ୍କର ଅପରାଧରେ ସହଭାଗୀ ହୁଏ, ତାହା ନିଜ ଦେହର ଅଭିନ୍ନ ଅଙ୍ଗ ହୋଇଥିଲେହେଁ ତାହାକୁ ଛେଦନ କରିଦେବା ବିଧେୟ।''*

ଭଗବତ୍‌ପ୍ରସାଦର ଅବମାନନା ହେତୁ ରାଜାଙ୍କର ହୃଦୟ ଅପରାଧ ଅଗ୍ନିରେ ଦିବାନିଶି ଜଳୁଥାଏ। ତେଣୁ ସେ ଦଗ୍ଧ ହୃଦୟକୁ ଶୀତଳ କରିବା ପାଇଁ ଏଭଳି କଠୋର ପ୍ରାୟଶ୍ଚିତ୍ତ କରିବାକୁ ମଧ୍ୟ କୁଣ୍ଠା ପ୍ରକାଶ କଲେ ନାହିଁ। ମନ ଭିତରେ ସ୍ଥିର କରିନେଲେ ଯେ ନିଶ୍ଚୟ ସେ ଅପରାଧୀ ହାତଟିକୁ କାଟି ପରିତ୍ୟାଗ କରିଦେବେ। କିନ୍ତୁ ରାଜାଙ୍କ ହାତ କାଟିଦେବା ଭଳି କଠୋର ଆଦେଶ ପାଳନ କରିବାକୁ କେଉଁ ସେବକ ବା ସାହସ କରିବ? ନିଜର ମନୋରଥ ବିଫଳ ହେବା ଜାଣି ରାଜା ଚିନ୍ତିତ ହୋଇପଡ଼ିଲେ। ଅନ୍ତର୍ମନର ବିଷାଦ ରେଖା ପ୍ରକାଶିତ ହେଲା ତାଙ୍କ ଲଲାଟରେ। ରାଜକାର୍ଯ୍ୟରେ ଆଉ ତାଙ୍କର ମନ ଲାଗୁ ନ ଥାଏ। ସବୁବେଳେ ବିଷଣ୍ଣ ମନରେ ଗାଲରେ ହାତ ଦେଇ ବସି ରହୁଥାନ୍ତି। ରକ୍ତିମ ହାତ ପାପୁଲି ଉପରେ ରାଜାଙ୍କର ବଦନ ଚନ୍ଦ୍ରମା ସତେ ଯେପରି ଲୋହିତ ରଙ୍ଗର ଘନ ଆକାଶରେ ସଂଧ୍ୟାକାଳୀନ ଚନ୍ଦ୍ରମା ଭଳି ସ୍ଥିର ହୋଇ ଅଟକି ଯାଇଛି। ରାଜାଙ୍କୁ

* ଜ୍ଞାତବ୍ୟ—ଏଠାରେ ବ୍ରାହ୍ମଣମାନେ ପ୍ରାୟଶ୍ଚିତ୍ତର ସାମାନ୍ୟ ଶାସ୍ତ୍ରୀୟ ବିଧାନ କହିଦେଲେ। କିନ୍ତୁ ଏଭଳି ଅପରାଧର ପ୍ରକୃତ ପ୍ରାୟଶ୍ଚିତ୍ତ ହେଲା, ସେହି ଅଙ୍ଗକୁ ନିଜର ନ ଭାବି ଦିବାନିଶି ଭଗବାନଙ୍କ ସେବାରେ ବିନିଯୋଗ କରିଦେବା। ପୁଣି ଥରେ ଯେପରି ଦେହର କୌଣସି ଅଙ୍ଗ ଦ୍ୱାରା ସେପରି ଅପରାଧ ହୋଇ ନ ଯାଏ, ସେଥିପାଇଁ ଦୃଢ଼ ସଙ୍କଳ୍ପବଦ୍ଧ ହେବା ବିଧେୟ। ଅସଦ୍‌ଭାବନା ହିଁ ପ୍ରକୃତରେ ତ୍ୟାଜ୍ୟ। ଏତଦ୍ଦ୍ୱାରା ସକଳ ଅପରାଧ ପ୍ରାୟଶ୍ଚିତ୍ତ ହୋଇପାରେ।

ଏଭଳି ବିଷାଦମଗ୍ନ ଦେଖି ତାଙ୍କର ଜଣେ ଅନ୍ତରଙ୍ଗ ମନ୍ତ୍ରୀ ଅତି ବିନମ୍ର ଭାବରେ ତାଙ୍କ ନିକଟକୁ ଯାଇ ପଗ୍ଚରିଲେ—"ମଣିମା! କେତେ ଦିନ ହେଲା ମୁଁ ଦେଖୁଛି ଆପଣ ମନଦୁଃଖରେ ବସି ରହୁଛନ୍ତି। ଆପଣଙ୍କ ଭଳି ଧର୍ମପରାୟଣ ଭକ୍ତିନିଷ୍ଠ ରାଜାଙ୍କ ମନରେ ଏଭଳି ବିଷାଦ ରେଖା କାହିଁକି? ଯଦି କୌଣସି ବିଶେଷ ଗୁପ୍ତ କଥା ନ ଥାଏ, ଏ ସେବକକୁ କହିବା ହୁଅନ୍ତୁ। ପ୍ରାଣ ବିସର୍ଜନ କରି ମଧ୍ୟ ଆପଣଙ୍କର ଏ ଚରଣ ସେବକ ଆଜ୍ଞା ପାଳନ କରିବାକୁ ଚେଷ୍ଟା କରିବ।"

ରାଜା କହିଲେ—"ମନ୍ତ୍ରୀବର! ତୁମ ଅନୁମାନ ଅକ୍ଷରେ ଅକ୍ଷରେ ସତ୍ୟ। ଏଇ କେତେ ଦିନ ହେଲା ରାତିରେ ଗୋଟାଏ ଭୟଙ୍କର ପ୍ରେତ ଆସି ମୋତେ ନାନା ପ୍ରକାର ବିକରାଳ ରୂପ ଦେଖାଉଛି। ମୋ ଶୟନ କକ୍ଷର ଝରକାରେ ହାତ ପୂରାଇ ଭୟଙ୍କର ରଡ଼ି ଛାଡୁଛି। ତା' ଡରରେ ରାତିଦିନ ମୋ ମନ ଭୟଭୀତ ରହୁଛି। କିନ୍ତୁ ମୁଁ କାହାକୁ କିଛି କହି ପାରୁ ନାହିଁ। ତୁମେ ପଗ୍ଚରିଲ ବୋଲି କହିବାକୁ ସାହସ କଲି। ଏ କଥା ତାକୁ ଜଣା ପଡ଼ିଗଲେ ସେ ଆହୁରି ଅଧିକ ଉପଦ୍ରବ କରିପାରେ!"

ମନ୍ତ୍ରୀ କହିଲେ—"ଏଇଥିପାଇଁ ଏତେ ଚିନ୍ତା! ଆପଣଙ୍କର ଏ ଚରଣ ସେବକ ଆଉ କେଉଁ ଦିନକୁ କାମରେ ଲାଗିବ। ଏବେ ଚିନ୍ତା ପରିହାର କରନ୍ତୁ। ଜାଣନ୍ତୁ ଯେ ଆଜି ତାକୁ ତା' ପାପର ଉଚିତ ଦଣ୍ଡ ଅବଶ୍ୟ ମିଳିଯିବ। ଆଜିଠାରୁ ସେ ଭୁଲ୍‌ରେ ବି ଆଉ ଆପଣଙ୍କ ପାଖ ମାଡ଼ିବ ନାହିଁ। ଏଥିପାଇଁ ଆପଣଙ୍କୁ ଗୋଟିଏ କାମ କରିବାକୁ ପଡ଼ିବ। ଆଜି ମୁଁ ଆପଣଙ୍କ ଶୟନ କକ୍ଷରେ ଶୋଇ ରହିବି। ଆପଣ ଅନ୍ୟ ମହଲରେ ଶୋଇଯିବେ। ମୁଁ ତୀକ୍ଷ୍ଣ ତରବାରି ଧରି ଚେଇଁ ଶୋଇଥିବି। ପ୍ରେତ ଝରକାରେ ହାତ ବଢ଼ାଇ ଡରାଇବା କ୍ଷଣି ତା' ହାତକୁ ହାଣି ପକାଇବି।"

ମନ୍ତ୍ରୀଙ୍କ କଥା ଶୁଣି ରାଜାଙ୍କ ମନ ଭାରି ଆନନ୍ଦ। ସେ ତାଙ୍କର ବିଗ୍ଚରକୁ ଅଭିନନ୍ଦନ କରି ଅନ୍ୟତ୍ର ଗ୍ଚଲିଗଲେ। ମନ୍ତ୍ରୀ ରାତିରେ ଚେଇଁ ଶୋଇଥାନ୍ତି। ଠିକ୍ ସେତିକିବେଳେ ରାଜା ଆସି ତାଙ୍କ ବାମ ହାତଟିକୁ ଝରକାରେ ଗଳାଇ ବିକଟାଳ ରଡ଼ି ଛାଡ଼ିଲେ। ମନ୍ତ୍ରୀକୁ ଏ ରହସ୍ୟ ଜଣା ନ ଥାଏ। ସେ ପ୍ରବଳ ବେଗରେ ପଲଙ୍କରୁ ଉଠି ଆସି ତୀକ୍ଷ୍ଣ ତରବାରି ଗ୍ଚୋଟରେ ହାତଟିକୁ କାଟି ଫିଙ୍ଗିଦେଲେ। ତା'ପରେ ବାହାରକୁ ଯାଇ ଦେଖନ୍ତି ତ ରାଜା ଅଚେତ ହୋଇ ପଡ଼ିଛନ୍ତି। ତାଙ୍କ ହାତ କଟିଯାଇଛି। ଧାର ଧାର ରକ୍ତ ବହି ଗ୍ଚଲିଛି। ସେ ଏଭଳି ଅଘଟଣ ଦେଖି ବିସ୍ମୟରେ ମୁଣ୍ଡ ଜୋଡ଼ି ହୋଇ ଚିତ୍କାର କରି ଉଠିଲେ। ନିଜର ଭାଗ୍ୟକୁ ନିନ୍ଦା କରି କହିଲେ—"ହାୟରେ ବିଧାତା! ଏ କ'ଣ ହେଲା। ଏହା ତ ରାଜାଙ୍କର ହାତ।

ସତରେ କ'ଣ ପ୍ରେତ ଭାବି ମୁଁ ରାଜାଙ୍କର ହାତ କାଟିଦେଲି! ହେ ଜଗନ୍ନାଥ! ଏବେ ମୁଁ କ'ଣ କରିବି? ମୋ ଦ୍ୱାରା ତ ଘୋର ଅପରାଧ ହୋଇଗଲା।'' ପୁଣି ସେ ଧୈର୍ଯ୍ୟ ଧରି ରାଜାଙ୍କୁ ସଚେତ କରାଇଲେ। ରାଜା ତାଙ୍କୁ ସାନ୍ତ୍ୱନା ଦେଇ କହିଲେ—''ଅଧୀର ହୁଅ ନାହିଁ ମନ୍ତ୍ରୀବର! ତୁମେ ଅପରାଧ କରି ନାହଁ, ବରଂ ପ୍ରେତକୁ ତା' ଅପରାଧର ଉଚିତ ଦଣ୍ଡ ଦେଇ ମୋର ଉପକାର କରିଛ। ପ୍ରଭୁଙ୍କ ପ୍ରସାଦକୁ ଅବମାନନା କରିଥିବାରୁ ଏହା ହାତ ହୋଇ ନ ଥିଲା, ଏହା ପ୍ରେତ ତୁଲ୍ୟ ହୋଇ ସାରିଥିଲା। ଯିଏ ଭଗବଦ୍ଭକ୍ତିରେ ବାଧା ଦିଏ, ସେ କି ହାତ! କେବଳ ସୁବର୍ଣ୍ଣର ବାଜୁବନ୍ଧ ଓ କଙ୍କଣରେ ମଣ୍ଡିତ ହୋଇଗଲେ ତାହାକୁ ହାତ କୁହାଯାଏ ନାହିଁ। ଯିଏ ଭଗବାନଙ୍କ ପ୍ରସାଦର ଅପରାଧୀ, ସେ ମୋର ପରମ ଶତ୍ରୁ। ମୋ ଶତ୍ରୁକୁ ବିନାଶ କରି ତୁମେ ମୋର ଯଥେଷ୍ଟ ଉପକାର କରିଛ। ମୁଁ ଜନ୍ମ ଜନ୍ମରେ ଏ ଉପକାରର ଋଣ ଶୁଝି ପାରିବି ନାହିଁ।''

ରାଜାଙ୍କର ଏଭଳି ପ୍ରସାଦ ନିଷ୍ଠାରେ ଭକ୍ତବତ୍ସଳ ଜଗନ୍ନାଥଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା। ସେ ଆଉ ଅଧିକ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ। ଅନ୍ତରଙ୍ଗ ପଣ୍ଡାମାନଙ୍କୁ ଆଜ୍ଞା ଦେଇ କହିଲେ—''ତୁମେ ଅବିଳମ୍ବେ ଯାଇ ରାଜାଙ୍କୁ ମୋ ମହାପ୍ରସାଦ ପ୍ରଦାନ କର ଏବଂ ତାଙ୍କର କଟା ହାତଟିକୁ ଆଣି କୋଇଲି ବୈକୁଣ୍ଠରେ ରୋପଣ କରିଦିଅ।'' ମହାବାହୁଙ୍କ ଆଜ୍ଞା ପାଇ ପଣ୍ଡାମାନେ ଅତି ଆଦରରେ ମହାପ୍ରସାଦ ଘେନି ଯାଇ ପହଞ୍ଚିଲେ ରାଜାଙ୍କ ମହଲରେ। ପଣ୍ଡାଙ୍କ ହାତରେ ପ୍ରସାଦ ଦେଖି ରାଜା ଦୂରରୁ ଜାଣିଗଲେ ଯେ ଅନ୍ତର୍ଯାମୀ ଜଗତ ଠାକୁର ତାଙ୍କ ଉପରେ କରୁଣିତ ହୋଇ ପ୍ରସାଦ ପଠାଇଛନ୍ତି। ତାଙ୍କର ମନ-ପ୍ରାଣ ଆନନ୍ଦ-ସାଗରରେ ମଗ୍ନ ହୋଇ ଶୀତଳ ହୋଇଗଲା। ସେ ଅଧୀର ହୋଇ ଉଠି ଠିଆ ହୋଇଗଲେ ଏବଂ ଆଦରରେ ଦୁଇ ହାତ ବଢ଼ାଇ ପ୍ରସାଦ ନେବାକୁ ଚେଷ୍ଟା କଲେ। ହେଲେ କେବଳ ତାଙ୍କର ଡାହାଣ ହାତଟି ପ୍ରସାଦକୁ ସମ୍ମାନ ଜଣାଇ ସ୍ୱୀକାର କରିବାକୁ ଆଗଭର ହେଲା। ହେବା ସ୍ୱାଭାବିକ ମଧ୍ୟ। ବାମ ହାତଟି ତ ଆଗରୁ କଟା ହୋଇ ସାରିଥିଲା। ସେ କିଭଳି ପ୍ରସାଦକୁ ସମ୍ମାନ ଜଣାଇ ପାରିଥାନ୍ତା! ଏହା ଫଳରେ ରାଜାଙ୍କ ମନ ଦୁଃଖ-ସମୁଦ୍ରରେ ବୁଡ଼ିଗଲା। ସେ ଏହାକୁ ଭଗବାନଙ୍କର ଅପରାଧ ବୋଲି ଭାବି ମନେ ମନେ ନିଜକୁ ଧିକ୍କାର କରି କହିଲେ—''ହାୟରେ ଅଭାଗା! ତୋର ଏବେ ମଧ୍ୟ ଜ୍ଞାନ ପଶିଲା ନାହିଁ। ଭଗବାନଙ୍କ ପ୍ରସାଦକୁ କିଭଳି ସମ୍ମାନ ଦେବା ଉଚିତ, ତାହା ତୁ ଏବେ ମଧ୍ୟ ଜାଣି ପାରିଲୁ ନାହିଁ।'' ଏଭଳି ମନସ୍ତାପ

କରି ରାଜା ଅଧୀର ଚିତ୍ତରେ ଏ ଅପରାଧର ପ୍ରାୟଶ୍ଚିତ୍ତ ପାଇଁ ଏଥର ଦେହତ୍ୟାଗ କରିବାକୁ ସ୍ଥିର କଲେ। କିନ୍ତୁ ଭଗବାନ ଭକ୍ତକୁ ଆଉ ଅଧିକ ଦୁଃଖୀ ଦେଖି ପାରିଲେ ନାହିଁ। ଦୁଃଖ-ସାଗରରେ ବୁଡ଼ିଯାଉଥିବା ରାଜାଙ୍କୁ ସାନ୍ତ୍ୱନା ଦେବା ପାଇଁ ତାଙ୍କ ମନ ବ୍ୟାକୁଳ ହୋଇ ଉଠିଲା। ପ୍ରଭୁଙ୍କ କରୁଣାରୁ ରାଜାଙ୍କର ବାମ ହାତଟି ହଠାତ୍ କଅଁଳି ଆସିଲା। ତାହା ଏଭଳି ସୌନ୍ଦର୍ଯ୍ୟମୟ ଥିଲା ଯେ, ଲାଗୁଥିଲା ସତେ ଯେପରି ପ୍ରଭୁଭକ୍ତିରେ ରସାଣିତ ନବ ପଲ୍ଲବିତ କୋମଳ ଲତିକା ଅଙ୍କୁରିତ ହୋଇ ବିସ୍ତାର ଲାଭ କରୁଛି। ପଣ୍ଡାଙ୍କ ହାତରୁ ରାଜା ମହାପ୍ରସାଦକୁ ଦୁଇହାତରେ ସାଦରେ ସ୍ୱୀକାର କରି ହୃଦୟ ଓ ମସ୍ତକରେ ଧାରଣ କଲେ। ପ୍ରଭୁଙ୍କ ପ୍ରସାଦ ଦର୍ଶନ ଓ ସ୍ପର୍ଶ କରି ତାଙ୍କର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା। 'ଏହା ମୋ ପ୍ରଭୁଙ୍କର ଅଧରାମୃତ' ବୋଲି ଭାବି ଆନନ୍ଦରେ ତାଙ୍କ ନେତ୍ରରୁ ଲୋତକ ବହି ଗ୍ଲିଲା। ମହାପ୍ରଭୁ ଜଗନ୍ନାଥ ତାଙ୍କ ସେବକକୁ କିଭଳି ଯତ୍ନ କରନ୍ତି, ତାହା ଭାବି ଭାବି ତାଙ୍କର ହୃଦୟରେ ଉଚ୍ଛୁଳି ଆସିଲା ଅନନ୍ତ ପ୍ରେମତରଙ୍ଗ।

ପଣ୍ଡାମାନେ ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ରାଜାଙ୍କର କଟା ହାତଟିକୁ ନେଇ ବଗିଗ୍ୱରେ ରୋପଣ କରିଦେଲେ। ତାହା ଧୀରେ ଧୀରେ ଗୋଟିଏ ବିଶାଳ ଚୁଙ୍ଗା ଗଛରେ ପରିଣତ ହୋଇଗଲା। ତାହାର ପତ୍ର-ପୁଷ୍ପ ପ୍ରତିଦିନ ଜଗନ୍ନାଥଙ୍କର ଶ୍ରୀଅଙ୍ଗରେ ଲାଗି ହେଲା। ପ୍ରଭୁଙ୍କୁ ତାହାର ସୁଗନ୍ଧ ଅତି ଆନନ୍ଦିତ କରି ପାରିଲା। ଏହିପରି ଭକ୍ତର କଟା ହାତଟି ମଧ୍ୟ ପ୍ରଭୁଙ୍କ ସେବାରେ ବିନିଯୋଗ ହେବାରୁ ସେ ନିଜକୁ ଧନ୍ୟ ଅନୁଭବ କଲେ।



## ସଦନ କଂସେଇ

ଭକ୍ତ ଜୀବନରେ କେବେ କେମିତି ଏଭଳି ଅପ୍ରିୟ ଘଟଣା ଘଟିଯାଏ, ଯାହା କେବେ ସେ ସ୍ୱପ୍ନରେ ବି ବିଶ୍ୱାସ କରିପାରେ ନାହିଁ। ପତିତପାବନୀ ଗଙ୍ଗାର ଧବଳ ଧାରା ପରି ତା'ର ପବିତ୍ର ଜୀବନରେ ବି କଳା ଚିହ୍ନଟିଏ ଲାଗିଯାଏ। ତାହା ଦେଖି ଲୋକଙ୍କ ମନରେ ନାନା ପ୍ରକାର ସନ୍ଦେହ ସୃଷ୍ଟି ହୁଏ। ସେମାନେ କହନ୍ତି, ଭଗବାନଙ୍କୁ ଭକ୍ତି କରି ତାକୁ କ'ଣ ମିଳିଲା? ସେ ତ ଦୁଃଖ ଭୋଗୁଛି ! ଏଭଳି ସନ୍ଦେହ ହେବା ସ୍ୱାଭାବିକ ମଧ୍ୟ। କିନ୍ତୁ ସେହି ଅପ୍ରିୟ ଘଟଣା ପଛରେ ଭଗବାନଙ୍କର କେଉଁ ମଙ୍ଗଳମୟ ବିଧାନ ଯେ କାମ କରୁଥାଏ, ତାହାକୁ କେହି ଦେଖି ପାରନ୍ତି

ନାହିଁ। ତାହା ମାଧ୍ୟମରେ ଭଗବାନ ହୁଏତ ତାକୁ ତାଙ୍କ ଆଡ଼କୁ ତୀବ୍ର ବେଗରେ ଆକର୍ଷିତ କରିବାକୁ ଚାହୁଁଥିବେ? ବାହ୍ୟ ଓ ସ୍ଥୂଳ ଦୃଷ୍ଟିରେ ଲୋକଙ୍କ ଧାରଣା ସତ୍ୟ ଭଳି ଜଣା ପଡୁଥିଲେ ମଧ୍ୟ ଭିତରେ ଘଟଣାଚକ୍ର ସମ୍ପୂର୍ଣ୍ଣ ଅଲଗା ଥାଏ। ଭକ୍ତ ହୃଦୟରେ ସ୍ଥାନ ପାଇଥିବା ଭଗବଦ୍ଭକ୍ତି କେବେ ନଷ୍ଟ ହୁଏ ନାହିଁ। ଏହି ଅପ୍ରିୟ ଘଟଣା ତାକୁ ଭଗବାନଙ୍କ ସମ୍ମୁଖ କରିବାରେ ସାହାଯ୍ୟ କରିଥାଏ। ଥରେ ଝୁଣ୍ଟି ଖାଲରେ ପଡ଼ିଯାଇଥିବା ଲୋକ ଯେପରି ଚାଲିଲାବେଳେ ସାବଧାନ ରହେ, ସେହିପରି ଘଟିଯାଇଥିବା ଭୁଲ୍‌କୁ ପୁନରାବୃତ୍ତି ନ କରିବାକୁ ଭକ୍ତ ସର୍ବଦା ସାବଧାନ ରହେ। ଅର୍ଜୁନଙ୍କ ମନ ମଧ୍ୟ ଏଥିନେଇ ଶୋକାକୁଳ ହୋଇ ପଡ଼ିଥିଲା। ସେ ଦୁଃଖ ପ୍ରକାଶ କରି ଭଗବାନଙ୍କୁ ପଚାରିଲେ—"ହେ କୃଷ୍ଣ! ହେ ବାର୍ଷ୍ଣେୟ! ଯୋଗରେ ଆରୂଢ଼ ହେବାକୁ ଯତ୍ନ କରୁଥିବା ଶ୍ରଦ୍ଧାଳୁ ବ୍ୟକ୍ତିର ସାଧନା ଯଦି ଶିଥିଳ ହୋଇଥାଏ, ସେ ଯୋଗସିଦ୍ଧି ଲାଭ କରି ନ ପାରି କେଉଁ ଗତିକୁ ଚାଲିଯାଏ? ଏପଟୁ ସଂସାରକୁ ଛାଡ଼ିଦେଲା ଏବଂ ସେପଟେ ଯୋଗରେ ସିଦ୍ଧି ଲାଭ କରି ନ ପାରି ଅଧାରେ ଅଟକିଗଲା। ତେବେ ବାୟୁବେଗରେ ଛିନ୍ନଭିନ୍ନ ବାଦଲ ଖଣ୍ଡ ଭଳି ସେ ନଷ୍ଟଭ୍ରଷ୍ଟ ହୋଇଯିବ ନାହିଁ ତ? ତା'ର ସବୁ ସାଧନା ବିଫଳ ହୋଇଯିବ ନାହିଁ ତ? ଅର୍ଜୁନଙ୍କ ଅଧୀରତା ଦେଖି ଭଗବାନ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ—

**ପାର୍ଥ ନୈବେହ ନାମୁତ୍ର ବିନାଶସ୍ତସ୍ୟ ବିଦ୍ୟତେ।**
**ନ ହି କଲ୍ୟାଣକୃତ୍ କଶ୍ଚିଦ୍ଦୁର୍ଗତିଂ ତାତ ଗଚ୍ଛତି ॥**

"ହେ ପାର୍ଥ! ଇହଲୋକ ଓ ପରଲୋକରେ କେଉଁଠି ବି ତା'ର ବିନାଶ ହୁଏ ନାହିଁ। ଆତ୍ମକଲ୍ୟାଣ ମାର୍ଗରେ ବ୍ରତୀ ହୋଇଥିବା ବ୍ୟକ୍ତିର ଦୁର୍ଗତି ଆଦୌ ସମ୍ଭବ ନୁହେଁ।"

ଯୋଗଭ୍ରଷ୍ଟ ସାଧକକୁ ପୂର୍ବଜନ୍ମରେ କରିଥିବା ସବୁ ସାଧନା ଅନାୟାସରେ ମିଳିଯାଏ। ତା'ପରେ ସେ ଅତି ସାବଧାନତାର ସହିତ ଭକ୍ତିରେ ମଗ୍ନ ହୋଇ ଭଗବାନଙ୍କୁ ପାଇବା ମାର୍ଗରେ ଆଗେଇ ଚାଲେ। ଜଡ଼ଭରତ, ବୃତ୍ରାସୁର ପ୍ରଭୃତି ଏହାର ଜ୍ୱଳନ୍ତ ଉଦାହରଣ।

ଏମାନଙ୍କ ଭଳି ସଦନ କଂସେଇ ମଧ୍ୟ ଜଣେ ଯୋଗଭ୍ରଷ୍ଟ ଥିଲେ। ପୂର୍ବଜନ୍ମରେ ସେ ମୁକ୍ତିନଗରୀ କାଶିଧାମରେ ପବିତ୍ର ବ୍ରାହ୍ମଣକୁଳରେ ଜନ୍ମ ଲାଭ କରିଥିଲେ। ଭଗବଦ୍ଭକ୍ତି ଥିଲା ତାଙ୍କର ସହଜାତ ଗୁଣ। ତାଙ୍କର ଏହି ଉତ୍ତମ ଗୁଣକୁ ବିଭୂଷିତ କରିଥିଲା ଭଗବଦ୍ ଉପାସନାରୂପୀ ଆଭୂଷଣ। ଭଗବାନଙ୍କ ଉପାସନାରେ ସେ

ଏତେ ତନ୍ମୟ ରହୁଥିଲେ ଯେ ତାଙ୍କ ହୃଦୟରୂପୀ ଉତ୍କୃଷ୍ଟ ଭୂମିରେ ଭକ୍ତିଲତିକା ପୁଷ୍ପିତ ପଲ୍ଲବିତ ହୋଇ ବୃହତ୍ ରୂପ ଧାରଣ କରିପାରିଥିଲା । ସେ ପ୍ରତିଦିନ ଅତି ନିଷ୍ଠାର ସହିତ ଶାଳଗ୍ରାମଙ୍କର ସେବା କରନ୍ତି । ନାନା ପ୍ରକାର ସୁଗନ୍ଧିତ ତୈଳରେ ଶାଳଗ୍ରାମଙ୍କର ଶ୍ରୀଅଙ୍ଗ ମର୍ଦ୍ଦନ କରି ସ୍ନାନ କରାଇବା ଏବଂ ଶହେ ଆଠଟି ତୁଳସୀ ପତ୍ରରେ ରାମ ନାମ ଲେଖି ତାଙ୍କୁ ଅର୍ପଣ କରିବା ଥିଲା ତାଙ୍କ ଜୀବନର ଏକ ଅଖଣ୍ଡ ନିୟମ । ସେ ପ୍ରତ୍ୟହ ସଂଧ୍ୟା ଗାୟତ୍ରୀ, ପୂଜା-ପାଠ ଓ ଅର୍ଚ୍ଚନ-ବନ୍ଦନ ପ୍ରଭୃତି ବ୍ରାହ୍ମଣୋଚିତ ଧର୍ମକର୍ମରେ ତତ୍ପର ରହନ୍ତି ।

ଦିନକର କଥା । ପ୍ରଭାତରୁ ଉଠି ସ୍ତୋତ୍ରପାଠ କରି କରି ସେ ଗଙ୍ଗାସ୍ନାନ କରିବାକୁ ଯାଉଥାନ୍ତି । ଦୈବଯୋଗକୁ ସେତିକିବେଳେ ଗୋଟିଏ ଗାଈ କଂସେଇ ହାତରୁ ଖସି ପ୍ରାଣବିକଳେ ଦୌଡ଼ିଥାଏ । ତାକୁ ଧରିବାକୁ ମହାପାପୀ କଂସେଇ ମଧ୍ୟ ତା' ପଛେ ପଛେ ଗୋଡ଼ାଇଥାଏ । ଅଗ୍ରନକ ଗାଈଟି ଗୋଟିଏ ଗଳି ଭିତରକୁ ପଶିଗଲା । କଂସେଇ ଗାଈକୁ ଦେଖି ନ ପାରି ଏଣେତେଣେ ଖୋଜୁଥାଏ । ବ୍ରାହ୍ମଣଙ୍କୁ ସେପଟୁ ଆସୁଥିବାର ଦେଖି ଗାଈ କେଉଁଆଡ଼େ ଗଲା ବୋଲି ସେ ତାଙ୍କୁ ପଚ୍ଚରିଲା । ବ୍ରାହ୍ମଣ ସ୍ତୋତ୍ରପାଠ କରୁଥିବାରୁ ପାଟି ଖୋଲି କିଛି କହି ପାରିଲେ ନାହିଁ, କେବଳ ହାତଠାରି ସେହି ଗଳି ଆଡ଼କୁ ସଂକେତ କରିଦେଲେ । କଂସେଇ ଗାଈର ପିଛା କରି ତାକୁ ଧରି ନେଇ ନୃଶଂସ ଭାବରେ ହତ୍ୟା କରିଦେଲା । ଏହି ପାପ ଟିକକ ଯୋଗୁଁ ପରଜନ୍ମରେ ତାଙ୍କ ଭଳି ପବିତ୍ର ବ୍ରାହ୍ମଣଙ୍କୁ କଂସେଇ କୁଳରେ ଜନ୍ମ ନେବାକୁ ପଡ଼ିଲା । ଯଦିବା ଏ କାର୍ଯ୍ୟରେ ଗାଈକୁ ମାରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା, ସେ ସହଜ ଭାବରେ ଗାଈର ଠିକଣା ବତାଇ ଦେଇଥିଲେ, ତଥାପି ତାହା ଘୋର ପାପରେ ପରିଣତ ହୋଇଗଲା । ସେ ହାତଠାରି କହିଦେବାରୁ ଗାଈ ଭଳି ନିରୀହ ପ୍ରାଣୀର ନୃଶଂସ ହତ୍ୟା ହୋଇଗଲା ।

କେବେ କେମିତି ସତ୍ୟ ଅସତ୍ୟଠାରୁ ମଧ୍ୟ ଘୋର ଦଣ୍ଡନୀୟ ହୋଇଯାଏ । ସତ୍ୟ ଓ ଅସତ୍ୟର ସଂଜ୍ଞା ସବୁକ୍ଷେତ୍ରରେ ଭିନ୍ନ ଭିନ୍ନ । ସ୍ଥାନ ବିଶେଷରେ ତାହାର ନିର୍ଣ୍ଣୟ ମଧ୍ୟ ଅତି କଷ୍ଟକର । ତେଣୁ ଗୀତାରେ କୁହାଯାଇଛି ଯେ କର୍ମର ଗତି ବଡ଼ ଗହନ—**'ଗହନା କର୍ମଣୋ ଗତିଃ ।'** କର୍ମର ଗତି ଏଇଥିପାଇଁ ଗହନ ଯେ ଭାବ ଅନୁସାରେ ହିଁ ତାହା ଫଳପ୍ରଦ ହୋଇଥାଏ । ଗୋ-ବ୍ରାହ୍ମଣଙ୍କ ଜୀବନ ରକ୍ଷା ପାଇଁ କୁହାଯାଇଥିବା ଅସତ୍ୟ ବାହ୍ୟରୂପେ ଅସତ୍ୟ ଭଳି ଦେଖାଯାଉଥିଲେ ମଧ୍ୟ ତା' ପଛରେ ପବିତ୍ର ଭାବନା ଥିବାରୁ ତାହା ମହାନ୍ ସତ୍ୟରେ ଗଣା ହୁଏ ।

ସେଥିପାଇଁ କୁହାଯାଇଛି, ଧର୍ମର ତତ୍ତ୍ୱ ଅତ୍ୟନ୍ତ ଗୋପନୀୟ। ତେଣୁ ଶ୍ରେଷ୍ଠ ପୁରୁଷଙ୍କ ଜୀବନ ହିଁ ଇତର ଲୋକଙ୍କ ପାଇଁ ଶିକ୍ଷଣୀୟ—**'ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ ମହାଜନୋ ଯେନ ଗତଃ ସ ପନ୍ଥାଃ।'** କିନ୍ତୁ ସେତେବେଳେ ବ୍ରାହ୍ମଣଙ୍କର ବିବେକ କାମ କଲା ନାହିଁ। ଜଣା ନାହିଁ ଭଗବାନଙ୍କର କି ପ୍ରେରଣା ଥିଲା, ଯେଉଁଥିପାଇଁ ସେ ପବିତ୍ର ବ୍ରାହ୍ମଣରୁ ଅତ୍ୟନ୍ତ ନୀଚ କଂସେଇ କୁଳରେ ଜନ୍ମ ହେଲେ।

କଂସେଇ ଜାତିରେ ଜନ୍ମ ହୋଇ ମଧ୍ୟ ଭକ୍ତ ସଦନ ପୂର୍ବର ସୁକୃତ ପ୍ରଭାବରୁ କେବେହେଲେ ମନ୍ଦକର୍ମ କରନ୍ତି ନାହିଁ। ତାଙ୍କର ପ୍ରଭୁଭକ୍ତିରେ ନିଷ୍ଠା ବିଶୁଦ୍ଧ ସ୍ୱର୍ଣ୍ଣ ଭଳି କଷଟି ପଥରରେ କଷା ହୋଇ ସାରିଥିଲା। ସେ କୁଳଧର୍ମ ଅନୁସାରେ ମାଂସ ବିକୁଥିଲେ ସତ, କିନ୍ତୁ ତାଙ୍କ ଜୀବନକୁ ସାମାନ୍ୟ ବି ଅଶୁଦ୍ଧି ସ୍ପର୍ଶ କରି ନ ଥିଲା। ସେ କଦାପି ଜୀବହତ୍ୟା କରୁ ନ ଥିଲେ। ତାଙ୍କର ପୂର୍ବଜନ୍ମର ପବିତ୍ର ସଂସ୍କାର ଏତେ ପ୍ରବଳ ଥିଲା ଯେ ପିଲାଟି ଦିନରୁ ତାଙ୍କୁ ଅହିଂସା ବ୍ରତ ଅତି ପ୍ରିୟ ଲାଗୁଥିଲା। ଜୀବ ବଧ କରିବା ତ ଦୂରର କଥା, ସେ କଦାପି କୌଣସି ଜୀବକୁ କଷ୍ଟ ମଧ୍ୟ ଦିଅନ୍ତି ନାହିଁ।

କୁହାଯାଏ ଯେ ଥରେ ତାଙ୍କ ଘରକୁ କୁଆଡୁ ଅନେକ ଅତିଥି ଆସିଥିଲେ। ସେଦିନ ଅତିଥିଙ୍କୁ ସତ୍କାର କରିବା ପାଇଁ ତାଙ୍କ ଘରେ ମାଂସ ନ ଥିଲା। ତାଙ୍କ ବାପା ନିଜର କୌଳିକ ପରମ୍ପରା ଅନୁସାରେ ଜୀବ ବଧ କରି ମାଂସ ବିକୁଥିଲେ। ତେଣୁ ସେ ବେପାର ଚଲାଇବାକୁ ଗୋଟିଏ ବଳଦ କିଣି ଆଣି ରଖିଥିଲେ। କିନ୍ତୁ ଏବେ ସେ ବଧର ଯୋଗ୍ୟ ହୋଇ ନ ଥିଲା; ତେଣୁ ତା' ଜଙ୍ଘରୁ କିଛି ମାଂସ କାଟିନେଇ ଅତିଥିଙ୍କ ପାଇଁ ରୋଷେଇ କରିବାକୁ ସେ ସ୍ତ୍ରୀକୁ କହିଲେ। ଏ କଥା କୋମଳମତି ବାଳକ ସଦନ କାନରେ ପଡ଼ିଲା। ସେ ଏତେ ବିବ୍ରତ ହୋଇ ପଡ଼ିଲା ଯେ ଦୁଃଖରେ ତା'ର ହୃଦୟ ବିଦୀର୍ଣ୍ଣ ହୋଇଗଲା। ସେ ଅଧୀର ହୋଇ ବଳଦ ବେକରେ ଓହଳି ପଡ଼ି ଜୋର୍ ଜୋରରେ କାନ୍ଦି କାନ୍ଦି କହିଲା—"ବାପା ତୋ ଜଙ୍ଘରୁ ମାଂସ କାଟିନେବାକୁ ମାଆକୁ କହୁଛନ୍ତି!" ଏହା ଶୁଣି ବଳଦଟି ବଡ଼ ଦୟନୀୟ ସ୍ୱରରେ କହିଲା—"ତୁମ ବାପା ତ ମୋ ଗଳା କାଟିବା କଥା, ପୁଣି ସେ ଜଙ୍ଘରୁ ମାଂସ ନେବାକୁ କାହିଁକି କହୁଛନ୍ତି? ପୂର୍ବଜନ୍ମରେ ମୁଁ ଗୋଟାଏ କ୍ରୂର କଂସେଇ ଥିଲି ଏବଂ ତୁମର ବାପା ନିରୀହ ପଶୁ ଥିଲେ। ମୁଁ ଅତି ନିର୍ଦ୍ଦୟ ଭାବରେ ତାଙ୍କ ଗଳାରେ କୁଠାରଘାତ କରି ତାଙ୍କ ପ୍ରାଣ ନେଇଥିଲି। ସେହି ଋଣ ପରିଶୋଧ

କରିବା ପାଇଁ ଆଜି ମୁଁ ହୋଇଛି ପଶୁ ଏବଂ ସେ ହୋଇଛନ୍ତି କଂସେଇ । ତେଣୁ ମୋ ବେକ ହାଣି ପୂର୍ବର ଋଣ ପରିଶୋଧ କରିବା ତାଙ୍କ ପକ୍ଷେ ଉଚିତ ।”

ବଳଦ କଥା ଶୁଣି ସଦନର ବିବେକ ଉଦୟ ହୋଇଗଲା । ସେ ବୁଝିଗଲା ଯେ ଜନ୍ମ-ଜନ୍ମାନ୍ତର ପର୍ଯ୍ୟନ୍ତ କର୍ମ-ଶୃଙ୍ଖଳା ଜୀବକୁ ସଂସାରର ଜନ୍ମ-ମୃତ୍ୟୁ ଚକ୍ରରେ ପକାଇ ଦୁଃଖ କଷ୍ଟ ଭୋଗାଇଥାଏ । ସେହି ଦିନଠାରୁ ସେ ମନ ମଧ୍ୟରେ ଦୃଢ଼ନିଶ୍ଚୟ କରିନେଲା ଯେ, କଦାପି ଜୀବ ହତ୍ୟା କରିବ ନାହିଁ, ଏପରିକି କୌଣସି ଜୀବକୁ କଷ୍ଟ ମଧ୍ୟ ଦେବ ନାହିଁ । ସେ କେବଳ ଜୀବିକା ନିର୍ବାହ ପାଇଁ ଅନ୍ୟଠାରୁ ମାଂସ କିଣି ଆଣି ବିକୁଥିଲା ଏବଂ ସେଥିରୁ ଉପାର୍ଜିତ ଅର୍ଥରେ ଉଦର ପୋଷୁଥିଲା । ସେଥିପାଇଁ ତା’ ଜୀବନକୁ ପାପ ଛୁଁଇ ପାରି ନ ଥିଲା, ବରଂ ସେ ପ୍ରଭୁ ଜଗନ୍ନାଥଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହୋଇପାରିଥିଲା ।

ଭଗବାନ ଗୀତାରେ କହିଛନ୍ତି ଯେ ମନୁଷ୍ୟ ନିଜ ନିଜର କର୍ମରେ ତତ୍ପର ରହି ଅକ୍ଳେଶରେ ପରମ ସିଦ୍ଧି ଲାଭ କରି ପାରିବ—**‘ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।’** ମନୁଷ୍ୟକୁ ବନ୍ଧନରେ ପକାଉଥିବା କର୍ମ ଯଦି ପ୍ରଭୁଙ୍କ ପ୍ରୀତି ଉଦ୍ଦେଶ୍ୟରେ କରାଯାଏ, ତେବେ ତାହା ପ୍ରଭୁପ୍ରାପ୍ତିର କାରଣ ହୋଇପାରେ । ପୁଣି ଏ କଥା ମଧ୍ୟ ଭଗବାନ ଗୀତାରେ ପରିଷ୍କାର ଭାବେ କହିଛନ୍ତି ଯେ ଯାହାଙ୍କ ଠାରୁ ଏ ଜଗତ ସୃଷ୍ଟି ହୋଇଛି ଏବଂ ଯିଏ ଏ ଜଗତରେ ଓତପ୍ରୋତ ଭାବେ ବିଦ୍ୟମାନ, ସେହି ପରମାତ୍ମାଙ୍କୁ ନିଜର କର୍ମ ମାଧ୍ୟମରେ ପୂଜା କରି ମାନବ ସିଦ୍ଧି ଲାଭ କରି ପାରିବ—

**ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।**
**ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ॥**

ଭଗବାନଙ୍କର ଏହି ଗୀତାବାଣୀକୁ ଭକ୍ତ ସଦନ ଗୁରୁମନ୍ତ୍ର ଭଳି ଧାରଣ କରି ମାଂସ ବିକା କର୍ମରେ ମଧ୍ୟ ଭଗବାନଙ୍କୁ ପୂଜା କରିପାରିଥିଲେ । ସକଳ କର୍ମ କରି ମଧ୍ୟ ସେ ପ୍ରୀତି ଡୋର ଯୋଡ଼ିଥିଲେ ପ୍ରଭୁଙ୍କ ଶ୍ରୀଚରଣରେ । ଜଗତରେ ଓ ଜାଗତିକ ବ୍ୟବହାରରେ ତାଙ୍କର ତିଳେମାତ୍ର ଅନୁରାଗ ନ ଥିଲା । ପୂର୍ବଜନ୍ମରେ ଠାକୁରଙ୍କ ଉପାସନା ପ୍ରତି ନିଷ୍ଠା ରହିଥିବା ଯୋଗୁଁ ଶାଳଗ୍ରାମ ଭଗବାନ ତାଙ୍କ ଉପରେ ପ୍ରୀତ ହୋଇ ଥରେ ବାଟରେ ଯାଉ ଯାଉ ତାଙ୍କୁ ମିଳିଗଲେ । ଏ ଜନ୍ମରେ ମଧ୍ୟ ସେ ସଦନ ହାତରୁ ସେବା ପାଇବାକୁ ଚାହିଁଲେ । କିନ୍ତୁ ସଦନ ତ ବ୍ରାହ୍ମଣ ନୁହେଁ ଯେ ପୂର୍ବଭଳି ସେବା କରିପାରିବ । ମାଂସ ବିକିବା ତ ତା’ର ନିତିଦିନିଆ

କାମ ଥିଲା । ତେବେ ମେ ପବିତ୍ରତାର ସହିତ ପ୍ରଭୁଙ୍କୁ ସେବା କିପରି କରିବ? ବାହ୍ୟ ପବିତ୍ରତା ନ ଥିଲେ ମଧ୍ୟ ଏବଂ ତାଙ୍କୁ ମେ ଶାଳଗ୍ରାମ ବୋଲି ଜାଣି ନ ଥିଲେ ମଧ୍ୟ ହୃଦୟରେ ଖୁବ୍ ଭଲ ପାଉଥିଲା । ଶାଳଗ୍ରାମ ଶିଳାଟି ଖୁବ୍ ଚିକ୍କଣ, ମସୃଣ ଓ ସୁନ୍ଦର ହୋଇଥିବା ଦେଖି ତାକୁ ନିକିତିର ଗୋଟିଏ ପଲାରେ ବସାଇଦେଇ ମାଂସ ଓଜନ କରୁଥିଲା । ପ୍ରଭୁ ମଧ୍ୟ ସଦନକୁ ବେଶ୍ ସାହାଯ୍ୟ କରୁଥିଲେ । ସେ ତାର କାର୍ଯ୍ୟଭାର ବହନ କରି ନିକିତରେ ବସି ରହୁଥିଲେ । ସଦନ ପ୍ରଭୁଭକ୍ତିରେ ଏତେ ମଗ୍ନ ରହୁଥିଲା ଯେ ଗୁଣୁ ଗୁଣୁ ହୋଇ କେତେ କଣ ଗାଇ ଯାଉଥିଲା । କେତେ ଭଜନ, କେତେ ଜଣାଣ ତା' ପାଟିରୁ ଆପେ ଆପେ ବାହାରି ଆସୁଥିଲା । ବେଳେ ବେଳେ ସେ ସୁସ୍ନିଗ୍ଧ ଶାଳଗ୍ରାମଙ୍କୁ ଅପଲକ ନୟନରେ ଚାହିଁ ଆତ୍ମବିସ୍ମୃତ ହୋଇଯାଉଥିଲା । ସେତେବେଳେ ତା' ଆଖିରୁ ଟପ୍ ଟପ୍ ଲୁହ ଝରି ଆସୁଥିଲା । ଭଗବାନ ତା'ର ଆନ୍ତରିକ ଭାବନାକୁ ସ୍ୱୀକାର କରି ତା' ନିକଟରେ ରହିବାକୁ ଭଲ ପାଉଥିଲେ । ନିକିତିରେ ବସି ତାଙ୍କୁ ଏପରି ଲାଗୁଥିଲା ସତେ ଯେପରି ସେ ଦୋଳିରେ ଝୁଲୁଛନ୍ତି । କୌଣସି ଗ୍ରାହକ ଯେତେ ଓଜନର ମାଂସ ମାଗିଲେ ମଧ୍ୟ ସଦନ ସେଇ ଗୋଟିଏ ବଟକରାରେ ତଉଲି ଦେଉଥିଲା, ଅଥଚ ଗ୍ରାହକଙ୍କର ଯେତିକି ଦରକାର, ସେତିକି ଓଜନର ମାଂସ ତାଙ୍କୁ ମିଳିଯାଉଥିଲା । ଭଗବାନ ସେତିକି ଭାରି ଓ ହାଲୁକା ହୋଇଯାଉଥିଲେ । ପ୍ରଭୁଙ୍କ ମନରେ ଭୟ ଥିଲା ଯେ ଯଦି ସେ ଏପରି ନ କରନ୍ତି, ସଦନ ଆହୁରି ଗୁଡ଼ାଏ ବଟକରା ରଖିବ ଏବଂ ଅନ୍ୟ ପ୍ରତି ସ୍ନେହ ହୋଇଗଲେ ତାଙ୍କ ପ୍ରତି ତା'ର ସ୍ନେହ କମିଯିବ । ତା'ଛଡ଼ା ନିକିତିରୂପୀ ଦୋଳିରୁ ଓହ୍ଲାଇବାକୁ ଭଗବାନଙ୍କ ମନ ହେଉ ନ ଥିଲା । ସେ ଭାବୁଥିଲେ ଯଦି ସେ ସଦନର ମନ ଅନୁରୂପ କାର୍ଯ୍ୟ ନ କରିବେ, ତେବେ ସେ ତାଙ୍କୁ ବାରମ୍ବାର ତଳକୁ ଓହ୍ଲେଇଦେଇ ଅନ୍ୟ ବଟକରାକୁ ବସାଇଦେବ । ଏହି ଲୋଭରେ ଭଗବାନ ତାଙ୍କ କାର୍ଯ୍ୟକୁ ନିରଳସ ହୋଇ ସୁଗ୍ଭରୂପେ ସମ୍ଭାଳୁଥିଲେ । ସଦନକୁ ମଧ୍ୟ ଖୁବ୍ ସୁବିଧା ହେଉଥିଲା । ବାରମ୍ବାର ବଟକରା ବଦଳାଇବାକୁ ପଡୁ ନ ଥିଲା । ଅଜାଣତରେ ମଧ୍ୟ ଶାଳଗ୍ରାମଙ୍କ ପ୍ରତି ତା'ର ଏତେ ପ୍ରୀତି ହୋଇଯାଇଥିଲା ଯେ ସେ ତାଙ୍କୁ କ୍ଷଣକ ପାଇଁ ବି ପାଖରୁ ଅନ୍ତର କରୁ ନ ଥିଲା । ଯୁଆଡ଼େ ଗଲେ ସାଥିରେ ନେଇ ଯାଉଥିଲା ।

ଦିନକର କଥା । ଜଣେ ସାଧୁ ସେହି ବାଟରେ ଯିବାବେଳେ ଶାଳଗ୍ରାମଙ୍କୁ ବଟକରା କରି ସଦନ ମାଂସ ଓଜନ କରୁଥିବାର ଦେଖିଲେ । ତାଙ୍କ ହୃଦୟ

ଗ୍ଲାନିରେ ଖଣ୍ଡ ବିଖଣ୍ଡ ହୋଇଗଲା। ତାଙ୍କୁ ଅପାର କଷ୍ଟ ହେଲା, ଆଖିରୁ ଧାର ଧାର ଲୁହ ବହି ପଡ଼ିଲା। ମନେ ମନେ ଭାବିଲେ ହାୟ! ମୋ ପ୍ରଭୁ ଏଭଳି ଅପବିତ୍ର ଜାଗାରେ ବସିଛନ୍ତି! ସେ ସାହସ କରି ସଦନ ନିକଟକୁ ଯାଇ ଶାଳଗ୍ରାମ ମାଗିବାରୁ ସଦନ ଭାରି ଖୁସୀ ମନରେ ତାଙ୍କୁ ଦେଇଦେଲା। ଯଦିବା ଅଜାଣତରେ ମଧ୍ୟ ସେହି ବଟକରାଟି ସଦନକୁ ଭାରି ପ୍ରିୟ ଥିଲା, ତଥାପି ସାଧୁଙ୍କ କଥାକୁ ସେ ଏଡ଼ାଇ ପାରିଲା ନାହିଁ। କେମିତି ବା ଏଡ଼ାଇ ପାରନ୍ତା, ସାଧୁସନ୍ଥ ଯେ ତାକୁ ପ୍ରାଣଠାରୁ ବଳି ପ୍ରିୟ ଥିଲେ! ବଟକରାଟିକୁ ସେ ସାଧୁଙ୍କୁ ଦେଇଦେଲା ସତ, କିନ୍ତୁ ତା' ହୃଦୟରେ ବିରହ ବେଦନା ବ୍ୟାପିଗଲା। ବ୍ୟାପିବା ସ୍ୱାଭାବିକ ମଧ୍ୟ। ତାହା ତ ସାଧାରଣ ପଥର ନ ଥିଲା ଯେ ସେ ତାଙ୍କୁ ଭୁଲିଯିବ! ଏହି ରୂପରେ ପ୍ରଭୁ ଆସି ତା' ହୃଦୟର ପ୍ରୀତି ଭାବନା ସ୍ୱୀକାର କରି ସେବା ପାଉଥିଲେ। ତେଣୁ ସେ ତାଙ୍କର ବିୟୋଗରେ ଅଧୀର ହୋଇ କ୍ରନ୍ଦନ କଲା। ତେଣେ ଭଗବାନଙ୍କୁ ମଧ୍ୟ ଭକ୍ତର ବିୟୋଗ ସହ୍ୟ ହେଲା ନାହିଁ। ଯଦିବା ସାଧୁ ସେବାପୂଜାରେ କୌଣସି ଊଣା ରଖି ନ ଥିଲେ। ଶାଳଗ୍ରାମ ଭଗବାନଙ୍କୁ ଅତି ଆଦରରେ ଘରକୁ ନେଇଯାଇ ଗଙ୍ଗାଜଳ, ପଞ୍ଚଗବ୍ୟ, ପଞ୍ଚାମୃତ ଇତ୍ୟାଦିରେ ସ୍ନାନ କରାଇଲେ। ସୁନ୍ଦର ସୁନ୍ଦର ବସ୍ତ୍ରାଭୂଷଣରେ ମଣ୍ଡିତ କରାଇ ବୈଦିକ ମନ୍ତ୍ର ଉଚ୍ଚାରଣପୂର୍ବକ ଷୋଡ଼ଶ ଉପଗ୍ଚାରରେ ପୂଜା କଲେ ଏବଂ ବିବିଧ ସ୍ତୋତ୍ରପାଠ ଦ୍ୱାରା ପ୍ରାର୍ଥନା କରି ନମସ୍କାର କରୁଥିଲେ, ତଥାପି ଭଗବାନଙ୍କ ମନ ମାନିଲା ନାହିଁ। ଭକ୍ତର ପ୍ରେମ ଆଗରେ ସାଧୁଙ୍କ ପୂଜା-ଉପଗ୍ଚାର ତାଙ୍କୁ ସନ୍ତୁଷ୍ଟ କରି ପାରିଲା ନାହିଁ। ସଦନର ନିକିତିରେ ଭଗବାନଙ୍କୁ ଯେପରି ଦୋଳିରେ ଝୁଲିବାର ସୁଖ ମିଳୁଥିଲା ସେଥିରୁ ସେ ବଞ୍ଚିତ ହୋଇଗଲେ। ଭକ୍ତର ଭଜନ ଜଣାଣ ତାଙ୍କୁ ସାମବେଦ ଠାରୁ ମଧ୍ୟ ଅଧିକ ସୁମଧୁର ଓ ହୃଦୟସ୍ପର୍ଶୀ ଲାଗୁଥିଲା। ତା'ଛଡ଼ା ସଦନର ବିରହ ବ୍ୟାକୁଳ ସ୍ଥିତି ପ୍ରଭୁଙ୍କୁ ଅତିଷ୍ଠ କରି ପକାଇଲା। ସେ ରାତିରେ ସ୍ୱପ୍ନ ଦେଇ ସାଧୁଙ୍କୁ କହିଲେ—"ମୋତେ ଶୀଘ୍ର ସଦନ ନିକଟରେ ପହଞ୍ଚାଇଦିଅ। ଏଠାରେ ମୋ ମନ ଲାଗୁ ନାହିଁ। ମୁଁ ତା'ଠାରୁ ସବୁଦିନ ନାମ-ସଂକୀର୍ତ୍ତନ, ଭଜନ, ଜଣାଣ ଶୁଣୁଥିଲି। ଏଠାରେ ମୋତେ କିଛି ମିଳୁ ନାହିଁ।" ସାଧୁ କହିଲେ—"ପ୍ରଭୁ! ମୁଁ ଏତେ ବିଧିବିଧାନରେ ପୂଜା ଅର୍ଚ୍ଚନା କଲି, ଭୋଗରାଗର ଯଥାସାଧ୍ୟ ବ୍ୟବସ୍ଥା କଲି। ପୁଣି ଆପଣ କଂସେଇର ମାଂସ ତଉଲା ନିକିତିରେ ବସିବାକୁ କାହିଁକି ମନ ବଳାଉଛନ୍ତି? ମୋ ପାଖରେ କଣ କିଛି ଅସୁବିଧା ହେଉଛି?" ଭଗବାନ କହିଲେ—"ତୁମ ପୂଜାବିଧିରେ

କିଛି ଉଣା ନାହିଁ ଯେ, କିନ୍ତୁ ମଦନର ଅନାବିଳ ପ୍ରେମ ମୋ ମନକୁ ଟାଣି ନେଉଛି। ଗଙ୍ଗାଜଳରେ ସ୍ନାନ କରାଇ ବେଦମନ୍ତ୍ରରେ ସ୍ତୁତି କରିବାର ଯେଉଁ କଥା ତୁମେ କହିଲ, ତାହା କି ବିଚିତ୍ର ଅବା? ଗଙ୍ଗାଜଳ ତ ମୋର ପାଦଧୂଆ ପାଣି ଏବଂ ବେଦ ତ ମୋର ନିଶ୍ୱାସ। ମୋ ଜିନିଷ ମୋତେ ଦେଇଦେବାଟା କିଛି ବିଶେଷ କଥା ନୁହେଁ। ବରଂ ଏଥିରେ ଭକ୍ତର ପ୍ରେମମିଶ୍ରିତ ସେବା ହେଉଛି ମହତ୍ତ୍ୱପୂର୍ଣ୍ଣ। ସଦନ ଭକ୍ତର ସେବା ଭାବନାରେ ମୋତେ ପେଟ ଭରି ପ୍ରେମାମୃତ ପାନ କରିବାର ସୌଭାଗ୍ୟ ମିଳୁଥିଲା। ତାହା ଏଠାରେ ନାହିଁ। ତେଣୁ ମୁଁ ତା' ପାଖକୁ ଯିବାକୁ ଚାହୁଁଛି।''

ସାଧୁ ଶାଳଗ୍ରାମଙ୍କର ଭକ୍ତବତ୍ସଳତା ଲକ୍ଷ୍ୟ କରି ତାଙ୍କ ଚରଣରେ କ୍ଷମା ପ୍ରାର୍ଥନା ଜଣାଇ କହିଲେ—''ପ୍ରଭୁ! ମୁଁ ଏବେ ଜାଣି ପାରିଲି ଯେ ତୁମେ କେଉଁଥିରେ ପ୍ରସନ୍ନ ହୁଅ। ତୁମକୁ ଉପଚାରର ଲୋଡ଼ା ନାହିଁ, ତୁମକୁ ଲୋଡ଼ା ଭକ୍ତର ପ୍ରେମ ଭାବନା। ବ୍ରଜଦାଣ୍ଡର କର୍ଦ୍ଦମରେ ତୁମେ ଅତି ସୁଖରେ ବିହାର କର, ଅଥଚ ବିପ୍ରଜନଙ୍କ ଯଜ୍ଞକୁ ଯିବା ପାଇଁ ମନରେ ଲଜ୍ଜା ବୋଧ କର। ପ୍ରେମମୟୀ ଗାଭୀମାନଙ୍କ ହୁଙ୍କାରରେ ତାଙ୍କୁ ଆଲିଙ୍ଗନ ପ୍ରଦାନ କର, ଅଥଚ ବିଦ୍ୱତ୍ତାପୂର୍ଣ୍ଣ ସୁନ୍ଦର ସାବଲୀଳ ଶତ ସହସ୍ର ସ୍ତୁତି ଶ୍ରବଣ କରି ମଧ୍ୟ ନୀରବ ରୁହ। ଗୋପାଙ୍ଗନାମାନଙ୍କର ଦାସତ୍ୱ ସ୍ୱୀକାର କର, ଅଥଚ ସଂଯମୀ ପୁରୁଷଙ୍କ ସ୍ୱାମୀ ହେବାକୁ ସଂକୋଚ ବୋଧ କର। ହେ ପ୍ରଭୁ! ମୁଁ ଜାଣିଗଲି ଯେ ତୁମର ସୁନ୍ଦର ସୁଭଗ ଚରଣଦ୍ୱୟ ପ୍ରେମ ରଜ୍ଜୁରେ ବନ୍ଧା। ହେ ଦୟାମୟ! ମୋର ଅପରାଧ କ୍ଷମା କରିଦିଅ। ମୁଁ ନ ଜାଣି ତୁମକୁ ଭକ୍ତଠାରୁ ବିଯୁକ୍ତ କରିଦେଲି। ପ୍ରଭାତ ହୁଅନ୍ତେ ଯଥାଶୀଘ୍ର ମୁଁ ସଦନ ନିକଟରେ ତୁମକୁ ପହଞ୍ଚାଇ ଦେବି।''

ସତରେ ଶାଳଗ୍ରାମ ଭଗବାନ ବଡ଼ ଭାବଗ୍ରାହୀ। ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବା ନିମନ୍ତେ ସେ ଏପରି ଶିଳାରୂପ ଧାରଣ କରିଛନ୍ତି। ବେଦରେ ଶାଳଗ୍ରାମଙ୍କୁ 'ହିରଣ୍ୟଗର୍ଭ' ନାମରେ ଅଭିହିତ କରାଯାଇଛି। ଗଣ୍ଡକୀ ନଦୀରୁ ପ୍ରକଟ ହୋଇଥିବାରୁ ତାଙ୍କର ଅନ୍ୟ ଏକ ନାମ ହେଉଛି 'ଗଣ୍ଡକୀସୁତ'। ବର୍ଣ୍ଣନା ଅଛି ଯେ, ଜଣେ ବ୍ରାହ୍ମଣର କନ୍ୟା ଭଗବାନଙ୍କ ଦର୍ଶନ ପାଇବା ଅଭିଳାଷରେ ତପସ୍ୟା କରୁଥିଲା। ପ୍ରଭୁ ତା' ଉପରେ ସନ୍ତୁଷ୍ଟ ହୋଇ ଦର୍ଶନ ଦେଲେ ଏବଂ ମନୋବାଞ୍ଛିତ ବର ମାଗିବାକୁ କହିଲେ। ସେ ପ୍ରଭୁଙ୍କୁ ପୁତ୍ର ରୂପରେ ପାଇବାକୁ ଅଭିଳାଷ କରିବାରୁ ଭଗବାନ କହିଲେ—''ତୁମର ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହେବ। ତୁମେ ଏହି ମରଦେହ

ତ୍ୟାଗ କରି ଗଣ୍ଡକୀ ନଦୀ ହେବ ଏବଂ ଶାଳଗ୍ରାମ ରୂପରେ ମୁଁ ତୁମର ପୁତ୍ର ହୋଇ ତୁମ କୋଳରେ ନିତ୍ୟ କ୍ରୀଡ଼ା କରିବି।'' କିଛି କାଳ ଅତିକ୍ରାନ୍ତ ହୁଅନ୍ତେ ସେହି କନ୍ୟା ଗଣ୍ଡକୀ ନଦୀ ହୋଇଗଲା ଏବଂ ଭଗବାନ ଜଳନ୍ଧରର ପତ୍ନୀ ବୃନ୍ଦାଙ୍କର ଅଭିଶାପକୁ ଅଙ୍ଗୀକାର କରି ଶାଳଗ୍ରାମ ଶିଳା ରୂପରେ ତା'ର କୋଳ ମଣ୍ଡନ କଲେ।

ଗଣ୍ଡକୀ ନଦୀର ଉଦ୍‌ଗମ ସ୍ଥାନ ହେଉଛି ମୁକ୍ତିନାଥ ପର୍ବତ। ସେହି ପର୍ବତର ଶିଳାଗୁଡ଼ିକୁ ଏକ ଜାତିର ପୋକ ଖାଇ ଖାଇ ବିବିଧ ଆକୃତିରେ ଗଢ଼ି ଦିଅନ୍ତି। ସେଥିପାଇଁ ଶାଳଗ୍ରାମଙ୍କ ଶ୍ରୀଅଙ୍ଗରେ ନାନା ପ୍ରକାର ଚିହ୍ନ ଦେଖାଯାଏ। ଏ ସମ୍ବନ୍ଧରେ କଥା ଅଛି ଯେ, ଥରେ ଜଣେ ଦାନବ କୌଣସି ଶୁଭ ସଂସ୍କାରବଶତଃ ଭଗବାନଙ୍କ ଦର୍ଶନ ପାଇବାର ପବିତ୍ର ଉଦ୍ଦେଶ୍ୟ ରଖି ତପସ୍ୟା କରୁଥିଲା। ଭଗବାନ ତାକୁ ଦର୍ଶନ ଦେଇ ଅଭୀଷ୍ଟ ବର ମାଗିବାକୁ କହିବାରୁ ସେ ଦାନବ ସ୍ୱଭାବର ବଶୀଭୂତ ହୋଇ ବର ମାଗିଲା—''ହେ ପ୍ରଭୁ! ତୁମେ ଦେଖିବାକୁ ଅତି ସୁନ୍ଦର ଲାଗୁଛ। ତୁମ ଅଙ୍ଗର ଲାବଣ୍ୟତା ଦେଖି ତୁମକୁ ଖାଇବାକୁ ମୋର ମନ ହେଉଛି। ତେଣୁ ବରଦାନ ରୂପରେ ତୁମେ ମୋର ଅଭିଳାଷ ପୂର୍ଣ୍ଣ କର।'' ଭଗବାନ ମନ୍ଦ ମନ୍ଦ ହସି କହିଲେ—''ଦୈତ୍ୟରାଜ! ତୁମର ଏ ଅଭିଳାଷ ମଧ୍ୟ ପୂର୍ଣ୍ଣ ହେବ। ମୁକ୍ତିନାଥ ପର୍ବତର ସମସ୍ତ ଶିଳାଖଣ୍ଡ ମୋର ଅଭିନ୍ନ ସ୍ୱରୂପ। ଏବେ ତୁମେ କୀଟ ରୂପ ଧାରଣ କରି ମୋତେ ଖାଇବାର ସୁଯୋଗ ଲାଭ କର।'' ପ୍ରଭୁଙ୍କ ଠାରୁ ବର ପାଇ ଅଦ୍ୟାବଧି ସେହି କୀଟମାନେ ମୁକ୍ତିନାଥ ପର୍ବତର ଶିଳାଗୁଡ଼ିକୁ କାଟି କାଟି ଖାଉଛନ୍ତି, ଯଦ୍ଦ୍ୱାରା ବିବିଧ ଆକୃତିର ଶାଳଗ୍ରାମ ପ୍ରକଟ ହେଉଛନ୍ତି।

ଶାଳଗ୍ରାମଙ୍କର ଅନେକ ଅଲୌକିକ ଚମତ୍କାରିତା ଏବେ ମଧ୍ୟ ଭକ୍ତଙ୍କ ପାଇଁ ପ୍ରତ୍ୟକ୍ଷ ହେଉଛି। ଭକ୍ତର ଭାବନା ଅନୁସାରେ ବିବିଧ ଲୀଳା କରିବାକୁ ପ୍ରଭୁଙ୍କୁ ଭାରି ଭଲ ଲାଗେ। ଶାସ୍ତ୍ରରେ ଅଛି ଯେ, ଶାଳଗ୍ରାମଙ୍କ ଶ୍ରୀଅଙ୍ଗରେ ସୁବାସିତ ତୈଳ, ଚୁଆ, ଅତର ଇତ୍ୟାଦି ସୁଗନ୍ଧିତ ଦ୍ରବ୍ୟ ମର୍ଦ୍ଦନ କଲେ ସେ ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି। ତାଙ୍କ ପୂଜାର ବିଧି-ବିଧାନ ମଧ୍ୟ ଅତି ସହଜ। 'ଧୋଇ ପିଇବ ଓ ଦେଖାଇ ଖାଇବ'—ଏତିକିରେ ସେ ସନ୍ତୁଷ୍ଟ ହୋଇଯାଆନ୍ତି। ସେହି ଠାକୁର ଆଜି ସଦନର ଭାବନାକୁ ଅଙ୍ଗୀକାର କରି ତା' ନିକଟକୁ ଯିବା ପାଇଁ ସାଧୁଙ୍କୁ ସ୍ୱପ୍ନରେ ଆଦେଶ ଦେଲେ। ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ସାଧୁ ଶାଳଗ୍ରାମଙ୍କୁ ନେଇ ଭକ୍ତ ସଦନ ନିକଟରେ ପହଞ୍ଚିଲେ ଏବଂ ଗଦ୍‌ଗଦ ବାଣୀରେ କହିଲେ—''ଭକ୍ତବର! ଧନ୍ୟ

ତୁମେ! ଧନ୍ୟ ତୁମ ଭକ୍ତିର ମହିମା! ଶାଳଗ୍ରାମଙ୍କୁ ତୁମଠାରୁ ବିଚ୍ଛେଦ କରାଇ ମୁଁ ତୁମର ବଡ଼ ଅପରାଧ କଲି । ମୁଁ ଏହାଙ୍କୁ ନେଇ ବେଦମନ୍ତ୍ରରେ ଅଭିଷେକ କରାଇଲି ଓ ବିଧିବିଧାନରେ ପୂଜା ଅର୍ଚ୍ଚନା କଲି । କିନ୍ତୁ ପ୍ରଭୁଙ୍କୁ ସେସବୁ ପସନ୍ଦ ହେଲା ନାହିଁ । ପ୍ରଭୁ ତୁମ ଭକ୍ତିଭାବରେ ଅତ୍ୟନ୍ତ ପ୍ରସନ୍ନ । ଏବେ ତୁମେ ଏହାଙ୍କୁ ତୁମ ପାଖରେ ରଖି ମନ ଖୁସୀରେ ଯେମିତି ଚାହଁ ସେମିତି କର ।'' ସାଧୁଙ୍କ କଥା ଶୁଣି ସଦନର ନେତ୍ର ଅଶ୍ରୁଛଳଛଳ ହୋଇଗଲା; କଣ୍ଠ କୁଣ୍ଠିତ ହୋଇଗଲା । ସେ କିଛି କହିବାକୁ ସକ୍ଷମ ହେଲା ନାହିଁ । ଆତ୍ମବିଭୋର ହୋଇ ନିଜର ଦେହଜ୍ଞାନ ପାସୋରିଗଲା । ତା' ମନରେ ଏତେ କଷ୍ଟ ହେଲା ଯେ ସେହି ଦିନଠାରୁ ମାଂସ ବିକିବା କାମ ଛାଡ଼ିଦେଲା । ଏଥର ତା'ର ପରମ ଧର୍ମ ହୋଇଗଲା ଶାଳଗ୍ରାମଙ୍କ ସେବା । ସେ ତାହାଙ୍କୁ ମୁଣିରେ ପୂରାଇ ବେକରେ ଝୁଲାଇବା ସହିତ ହୃଦୟ ସିଂହାସନରେ ବସାଇ ଅହରହ ଭାବ ସମୁଦ୍ରରେ ଉବୁଟୁବୁ ହେଲା ।

ଏମିତି କିଛି କାଳ ଅତିବାହିତ ହେବା ପରେ ଦିନେ ସଦନ ମନରେ ଜଗନ୍ନାଥଙ୍କ ଦର୍ଶନ ପାଇଁ ପ୍ରବଳ ଉତ୍କଣ୍ଠା ଜାଗ୍ରତ ହେଲା । ପ୍ରଭୁଙ୍କ ବିନା ପ୍ରତିଟି କ୍ଷଣ ତାକୁ ଅସହ୍ୟ ବୋଧ ହେଲା । ତେଣୁ ସେ ଘରଦ୍ୱାର, କୁଟୁମ୍ବ ପରିବାର ପରିତ୍ୟାଗ କରି ଶ୍ରୀକ୍ଷେତ୍ର ଅଭିମୁଖେ ବାହାରି ପଡ଼ିଲା । ବାଟରେ ଯିବାବେଳେ କେତେ କ'ଣ ଭାବନା ତା' ମନ ମନ୍ଦିରରେ ଉଙ୍କି ମାରୁଥାଏ । ଭାବୁଥାଏ—''କି ଭାଗ୍ୟ ମୋର! ମୋତେ ପ୍ରଭୁଙ୍କ କଳାଶ୍ରୀମୁଖର ଦର୍ଶନ ମିଳିବ । ନିଶ୍ଚୟ ମୋର ଏ ପାପ ନେତ୍ର ସଫଳ ହୋଇଯିବ । ମୋର ଶୁଷ୍କ ହୃଦୟରେ ପ୍ରବାହିତ ହେବ ଭକ୍ତିସରିତା ।'' ଏହିପରି ଅନେକ କଥା ଭାବି ଭାବି ଚାଲିଥାନ୍ତି । ଶ୍ରୀକ୍ଷେତ୍ର ଯେତିକି ଯେତିକି ପାଖେଇ ଆସୁଥାଏ, ମନ ଭିତରେ ଦର୍ଶନର ଉତ୍କଣ୍ଠା ପ୍ରବଳରୁ ପ୍ରବଳତର ହୋଇ ଉଠୁଥାଏ । ମାର୍ଗରେ କେତେକ ତୀର୍ଥଯାତ୍ରୀଙ୍କ ସହ ସଦନ କିଛି ଦୂର ଚାଲିଲା, କିନ୍ତୁ ସେମାନେ ଏହାକୁ କଂସେଇ ଭାବି ଘୃଣା କରିବାରୁ ଇଏ ନିଜ ତରଫରୁ ସେମାନଙ୍କ ସଙ୍ଗ ଛାଡ଼ିଦେଲା ।

ବାଟରେ ଯାଉ ଯାଉ ସେ ଦେଖିଲା ଯେ ଜଣେ ଲୋକ କୂଅରୁ ପାଣି କାଢ଼ି ବାଟୋଇମାନଙ୍କୁ ପିଆଉଛି । ଅନେକ ଗାଈ ପାଣି ପିଇବାକୁ କୂଅ ଚାରିପଟେ ବେଢ଼ିଥାନ୍ତି, କିନ୍ତୁ ଲୋକଟି ସେମାନଙ୍କୁ ପାଣି ପିଆଉ ନ ଥାଏ । ସଦନ ତାକୁ ଗାଈମାନଙ୍କୁ ପାଣି ପିଆଇବାକୁ ଅନୁରୋଧ କରିବାରୁ ସେ କହିଲା—ଏ ପାଣି ବାଟୋଇଙ୍କ ପାଇଁ । କୂଅରେ ପାଣି ବହୁ ତଳେ ଥିବାରୁ ଲୋକମାନଙ୍କୁ ମଧ୍ୟ ପାଣି

କାଢ଼ି ପିଆଇବା ମୋ ପକ୍ଷେ କଠିନ ହେଉଛି, ଆଉ ପଶୁମାନଙ୍କୁ ପିଆଇବାକୁ ମୋତେ ବେଳ କାହିଁ? ସଦନ ତା'ଠାରୁ ବାଲ୍‌ଟି ଓ ଦଉଡ଼ି ମାଗିଆଣି ନିଜେ କୂଅରୁ ପାଣି କାଢ଼ି ଗାଈମାନଙ୍କୁ ପିଆଇଲା। ତୃଷାତୁର ଗାଈମାନେ ତୃପ୍ତ ହୋଇ ସଦନକୁ ପ୍ରଭୁଭକ୍ତିର ଆଶୀର୍ବାଦ ଦେଲେ। ଗୋ-ସେବା ପ୍ରଭାବରୁ ତା'ହୃଦୟରେ ଭକ୍ତିଧାରା ବେଗବତୀ ହୋଇ ବଢ଼ି ଚ୍ଛଲିଲା।

ଗୋ-ମାତା ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଅଭୀଷ୍ଟ ପ୍ରଦାନ କରିବାକୁ ସମର୍ଥ। ଶାସ୍ତ୍ରରେ ଅଛି ଯେ ଗାଈମାନେ ଯେଉଁଠି ଶୋଇ ସନ୍ତୁଷ୍ଟ ମନରେ ଶ୍ୱାସ ନିଅନ୍ତି, ସେଠାକାର ଭୂମି ପରମ ପବିତ୍ର ହୋଇଯାଏ। ଭଗବାନ ଶ୍ରୀକୃଷ୍ଣଙ୍କର ନାମକରଣ ସଂସ୍କାର ମଧ୍ୟ ଗୁପ୍ତରୂପେ ପବିତ୍ର ଗୋ-ଶାଳାରେ ଅନୁଷ୍ଠିତ ହୋଇଥିଲା। ପୁତ୍ରହୀନ ରାଜା ଦିଲ୍ଲୀପ ନନ୍ଦିନୀଙ୍କ ସେବା ପ୍ରଭାବରୁ ପୁତ୍ରବାନ୍ ହୋଇପାରିଥିଲେ। ସେହିପରି ସଦନ ମଧ୍ୟ ଗୋସେବା ଦ୍ୱାରା ପ୍ରଭୁଭକ୍ତି ଲାଭ କରି କୃତାର୍ଥ ମନରେ ଶ୍ରୀକ୍ଷେତ୍ର ଅଭିମୁଖେ ଆଗେଇ ଚ୍ଛଲିଲା।

ଦିନେ ରାତିରେ ଗୋଟିଏ ଗ୍ରାମରେ ସଦନ ରାତ୍ରି ବିଶ୍ରାମ କରିବାକୁ ଅଟକିଗଲା। ସେ ଜଣେ ବ୍ୟକ୍ତି ଘରୁ ଭିକ୍ଷା କରିବାକୁ ଯାଇଥାଏ, ତା'ର ସୁନ୍ଦର ତରୁଣ ରୂପ ଦେଖି ଭିକ୍ଷା ଧରି ଆସିଥିବା ସ୍ତ୍ରୀ ମୋହିତ ହୋଇଗଲା। ସେ ତାକୁ ଘରକୁ ଡାକି ଖୁବ୍ ଆଦରରେ ଖାଇବାକୁ ଦେଲା। ସଦନ ସହଜ ଭାବରେ ପ୍ରସାଦ ସେବନ କରି ସେଠାରୁ ବିଦାୟ ହୁଅନ୍ତେ ସ୍ତ୍ରୀଲୋକଟି ଅତି ଅନୁନୟ ବିନୟ ହୋଇ ତାଙ୍କ ଘରେ ରାତ୍ରି ବିଶ୍ରାମ କରିବାକୁ ଅନୁରୋଧ କଲା। ସଦନ ମନକୁ ତ ବିକାର ଛୁଇଁ ନ ଥିଲା। ତେଣୁ ସେ ସ୍ତ୍ରୀର କାମୁକ ଭାବଧାରାକୁ ବୁଝି ପାରିଲା ନାହିଁ। ଘରଲୋକେ ଶୋଇଯିବା ପରେ ସ୍ତ୍ରୀଲୋକଟି ଆସି ତା' ନିକଟରେ ପ୍ରଣୟ ବାଞ୍ଛା କଲା ଏବଂ ନିଜେ ତା ସଙ୍ଗରେ ଯିବାକୁ ଜିଦି ଧରିଲା। ସଦନ ତା'ର ଭାବଧାରା ବୁଝି ସାବଧାନ ହୋଇଗଲା। ସେ କହିଲା—"ତୁ ମୋ ମୁଣ୍ଡ ହାଣିଦେଲେ ମଧ୍ୟ ତୋ ପ୍ରତି ମୋର ପ୍ରେମ ହୋଇ ପାରିବ ନାହିଁ।" ସ୍ତ୍ରୀଲୋକଟି କିନ୍ତୁ ତା' କଥା ନ ବୁଝି ଭାବିଲା ଯେ ଇଏ ବୋଧହୁଏ ମୋ ସ୍ୱାମୀକୁ ଭୟ କରି ମୋର ପ୍ରସ୍ତାବ ସ୍ୱୀକାର କରୁ ନାହାନ୍ତି। ଏମିତି ଓଲଟା ଭାବି ସେ ଗୋଟିଏ ଦାଙ୍ଗୁଆ କଟୁରୀରେ ତା' ସ୍ୱାମୀଙ୍କ ମୁଣ୍ଡକୁ ଶୋଇଥିବା ଅବସ୍ଥାରେ ହାଣି ଦୁଇ ଗଡ଼ କରିଦେଲା। ତା'ପରେ ସଦନ ନିକଟକୁ ଆସି କହିଲା—"ଏବେ ମୋତେ ବରଣ କର। ମୁଁ ଆମ ରାସ୍ତାର ସବୁ କଣ୍ଟକ ସଫା କରିଦେଇ ଆସିଛି।" ସେହି

ବିଶ୍ୱାସଘାତିନୀର କଥା ଶୁଣି ସଦନ ମୁଣ୍ଡରେ ବଜ୍ରପାତ ହୋଇଗଲା। ସେ ନିୟତିକୁ ଇଙ୍ଗିତ କରି କହିଲା—"ହେ ଭଗବାନ! ଏ କ'ଣ ହୋଇଗଲା? ଇଏ ସ୍ତ୍ରୀ ନା ରାକ୍ଷସୀ! କାମବାସନାର ବଶୀଭୂତ ହୋଇ ଇଏ କେଡ଼େ ପାପ କରି ନ ପକାଇଲା! ହେ ପ୍ରଭୁ! ମୋତେ ରକ୍ଷା କର। ଏ ସଂକଟରୁ ଉଦ୍ଧାର କର।"

ତା'ପରେ ସଦନ ସେହି କୁଳଟା ସ୍ତ୍ରୀର ପ୍ରସ୍ତାବକୁ ଅସ୍ୱୀକାର କରି କହିଲା—"ତୋ ସାଙ୍ଗରେ ମୋର କି ସମ୍ପର୍କ ଯେ ମୁଁ ତୋତେ ଭଲ ପାଇବି? ସୂର୍ଯ୍ୟ ପଶ୍ଚିମ ଦିଗରୁ ଉଦୟ ହୋଇ ପାରନ୍ତି, ପର୍ବତରେ ପଦ୍ମ ଫୁଟିପାରେ, ମାତ୍ର ଏହା କଦାପି ସମ୍ଭବ ହେବ ନାହିଁ।" ସ୍ତ୍ରୀ ଲୋକଟି ସବୁଆଡୁ ନିରାଶ ହୋଇ ଗୋଟିଏ ଷଡ଼ଯନ୍ତ୍ର ରଚିଲା। 'ମାଆ ଲୋ! ଏଇଟା ମୋ ସ୍ୱାମୀଙ୍କୁ ମାରିଦେଲା! ଧାଇଁ ଆସ, ଧାଇଁ ଆସ! ମୋ ସ୍ୱାମୀ ମରିଗଲେ' ବୋଲି ଚିତ୍କାର କରି ଗାଁଆ ଲୋକଙ୍କୁ ଡାକ ଛାଡ଼ିଲା। ତା'ର ଚିତ୍କାର ଶୁଣି ବହୁତ ଲୋକ ରୁଣ୍ଡ ହୋଇଗଲେ। ସେହି ଗାଆଁର ଜମିଦାରଙ୍କ ଆଦେଶରେ ଲୋକେ ତାକୁ ବାନ୍ଧି ରଖିଲେ ଏବଂ ଗ୍ରାମସଭା ଡକାଇ ସବୁ ଘଟଣାର ତଦନ୍ତ କଲେ। ସଦନକୁ ପଚ୍ଚରିଲେ—"ତୁ ଏହାର ସ୍ୱାମୀକୁ ମାରିଛୁ? ସତ କହ! ନହେଲେ ତୋର ମୃତ୍ୟୁ ସୁନିଶ୍ଚିତ।"

ଆନନ୍ଦକନ୍ଦ ପ୍ରଭୁଙ୍କ ପାଦପଦ୍ମରେ ସଦନର ଚିତ୍ତ ଲାଗି ଥିବାରୁ ତା' ମନରେ ଦୁଃଖ ନ ଥିଲା। ଶାରୀରିକ ସୁଖ-ଦୁଃଖରୁ ସେ ଅତି ଉର୍ଦ୍ଧ୍ୱକୁ ଚ୍ଚଲି ଯାଇଥିଲା। ଦଣ୍ଡ ଓ ପୁରସ୍କାର ତା' ପାଇଁ ସମାନ ହୋଇ ସାରିଥିଲା। ତେଣୁ ସେ ହସି ହସି ଉତ୍ତର ଦେଲା—"ହଁ, ମୁଁ ମାରିଛି।"

ଏ କ୍ଷେତ୍ରରେ ସଦନ ମିଛ କହିବା ଭଳି ଲାଗିପାରେ, କିନ୍ତୁ ଏହାକୁ ମିଥ୍ୟାଭାଷଣ ବା କପଟ ବ୍ୟବହାର କୁହାଯାଇ ନ ପାରେ। ଭକ୍ତ କୌଣସି ଘଟଣାରେ ଅନ୍ୟକୁ ଦୋଷୀ ନ ମାନି ନିଜ ମୁଣ୍ଡରେ ସବୁ ଦୋଷ ବହନ କରିନେବା ତା'ର ସହଜ ସ୍ୱଭାବ। ଭକ୍ତର ତଥାକଥିତ ପାର୍ଥିବ ଦେହ ଦ୍ୱାରା କେବେ କୌଣସି ଭଲ କାର୍ଯ୍ୟ ହୋଇଗଲେ ତାହାକୁ ସେ ଭଗବାନଙ୍କ କୃପା ମନେକରେ ଏବଂ କୌଣସି ଖରାପ କାର୍ଯ୍ୟ ହୋଇଗଲେ ନିଜର ଦୋଷ ଭାବି ପ୍ରାୟଶ୍ଚିତ୍ତ କରେ। ସେହିପରି ସଦନ ଭାବିଲା ସେ ରାତିରେ ଏଇଠି ରହିବାରୁ ସିନା ଏ ଅଘଟଣ ଘଟିଗଲା। ସେ ରହି ନ ଥିଲେ କାହିଁକି ଏସବୁ ହୋଇଥାନ୍ତା। ତା' ଛଡ଼ା ତା' ମନରେ ପୂର୍ବର ଗାଈ ଘଟଣାରୁ ଏ କଥା ଦୃଢ଼ ହୋଇ ସାରିଥିଲା ଯେ ମେରୀଖୁଣ୍ଟ ଚ୍ଚରିପଟେ ଡାଉଣିରେ ବନ୍ଧା ହୋଇ ବଳଦମାନେ ବୁଲୁଥିବା ପରି

ମନୁଷ୍ୟ କର୍ମରୂପୀ ସୂତ୍ରରେ ବନ୍ଧା ହୋଇ ବିଭିନ୍ନ ଯୋନିରେ ଘୂରି ବୁଲୁଛି । ତାକୁ ମିଳୁଥିବା ଦୁଃଖ-ସୁଖ ତା' ପୂର୍ବଜନ୍ମ କୃତ ପାପ ଓ ପୁଣ୍ୟର ହିଁ ପରିଣାମ । ହୁଏତ ସେ ପୂର୍ବରୁ କୌଣସି ପାପ କରିଥିବ, ଯାହା କି ଆଜି ତା'ର ମନେ ନାହିଁ, ସେଥିଯୋଗୁଁ ସେ ଏ ସଂକଟରେ ପଡ଼ିଗଲା । ଏହି ଦୃଷ୍ଟିକୋଣରୁ ମଧ୍ୟ ସେ ନିଜକୁ ଦୋଷୀ ବୋଲି ସହର୍ଷ ଅଙ୍ଗୀକାର କରିନେଲା ।

ଜମିଦାର କିନ୍ତୁ ସଦନ କଥାରେ ବିଶ୍ୱାସ ହେଉ ନ ଥାଏ । ସେ ଭାବି ପାରୁ ନ ଥାନ୍ତି ଯେ ହତ୍ୟା କରିଥିବା ଲୋକ ଏତେ ନିର୍ଭୀକ ହେବ କିପରି? ମଣିଷ ହତ୍ୟାର ପାପରେ ତ ସେ ଭୟଭୀତ ହୋଇଯିବା କଥା! ଆଉ ସ୍ତ୍ରୀର ହାବଭାବରୁ ଜଣାପଡୁଥାଏ ଯେ ଏସବୁ ତାହାର ଷଡ଼ଯନ୍ତ୍ର । କିନ୍ତୁ ସଦନ ନିଜର ଭୁଲ୍ ସ୍ୱୀକାର କରୁଥିବାରୁ ସେ ତାକୁ ଦଣ୍ଡ ଦେବାପାଇଁ ବାଧ୍ୟ ହେଲେ । କି ଦଣ୍ଡ ଦେବେ ଭାବି ଶେଷକୁ ସେ ସଦନର ହାତ ଦୁଇଟିକୁ କାଟି ଛାଡ଼ିଦେଲେ ।

ସଦନ ମନରେ ଏଥିନେଇ ତିଳେମାତ୍ର ଶୋଚନା ନ ଥାଏ । ପ୍ରତ୍ୟେକ ପରିସ୍ଥିତିରେ ସେ ଭଗବାନଙ୍କର ମଙ୍ଗଳମୟ ବିଧାନ ଅନୁଭବ କରୁଥାଏ । ଭାବୁଥାଏ, ମୋର କେଉଁ ପୂର୍ବକୃତ କୁକର୍ମର ଫଳ ଆଜି ଅଳ୍ପକେ କଟିଗଲା । ମନେହୁଏ, ଏତଦ୍ୱାରା ଭଗବାନ ମୋତେ ତାଙ୍କ ଆଡ଼କୁ ଟାଣି ନେଉଛନ୍ତି! ତେଣୁ ସେ ମଥାପୋତି ପ୍ରଭୁଙ୍କ ବିଧାନକୁ ସହର୍ଷ ସହିଗଲା । ଅକାରଣରେ ଏଭଳି ଭୟଙ୍କର କଷ୍ଟ ଆସିଥିଲେ ମଧ୍ୟ ସେ ତା' ଲକ୍ଷ୍ୟରୁ ପଛଘୁଞ୍ଚା ଦେଲା ନାହିଁ । ବରଂ ତା' ମନରେ ପ୍ରଭୁଙ୍କ ଦର୍ଶନ ପାଇଁ ପ୍ରବଳ ଉତ୍କଣ୍ଠା ଜାଗରିତ ହୋଇ ଉଠିଲା । ସମୁଦ୍ର ଅଭିମୁଖେ ନଦୀ ପ୍ରବାହିତ ହେବା ପରି ସେ ଜଗନ୍ନାଥଙ୍କ ଦର୍ଶନ ପାଇଁ ଆଗେଇ ଚାଲିଲା । କଟା ହାତରୁ ଧାର ଧାର ରକ୍ତ ବହି ଚାଲିଥାଏ । କିନ୍ତୁ ପ୍ରଭୁଙ୍କ ପ୍ରେମରେ ବିଭୋର ଥିବାରୁ ତା'ର ଶାରୀରିକ କଷ୍ଟ ପାଇଁ ଆଦୌ ଭୃକ୍ଷେପ ନ ଥାଏ । ତା' ଅନ୍ତରର ଭକ୍ତିଭାବ ଅମାନିଆ ହୋଇ ପ୍ରଭୁଙ୍କ ଚରଣରେ ସମର୍ପିତ ହେବା ପାଇଁ ବ୍ୟାକୁଳ ହୋଇ ଉଠିଲା । ସେ ମହାବାହୁଙ୍କ ଦର୍ଶନ ଅଭିଳାଷରେ ତାଙ୍କୁ ଆର୍ତ୍ତସ୍ୱରରେ ବହୁ ପ୍ରାର୍ଥନା ଜଣାଇଲା ।

ଭକ୍ତ ହୃଦୟର କରୁଣ ପ୍ରାର୍ଥନା ପଡ଼ିଲା ଭକ୍ତବତ୍ସଳ ଜଗନ୍ନାଥଙ୍କ କର୍ଣ୍ଣରେ । ସେ ଭକ୍ତକୁ ସମ୍ମାନ ଦେବା ପାଇଁ ପୂଜାରୀମାନଙ୍କୁ କହି ରହପାଲିଙ୍କି ପଠାଇଦେଲେ । ପୂଜାରୀମାନେ ବାଟ ସାରା ଯାତ୍ରୀମାନଙ୍କୁ ସଦନର ପରିଚୟ ପଚାରି ପଚାରି ଯାଉଥାନ୍ତି । ଲୋକଙ୍କ ଠାରୁ ସଦନର ପରିଚୟ ପାଇ ସେମାନେ ତାକୁ ଅତି

ଆଦରର ସହିତ ପାଲିଙ୍କିରେ ବିରାଜମାନ ହୋଇ ପ୍ରଭୁଙ୍କ ଦର୍ଶନ କରିବାକୁ ଅନୁରୋଧ କଲେ। ସଦନ କିନ୍ତୁ ପାଲିଙ୍କିରେ ବସିବାକୁ ଅନିଚ୍ଛା ପ୍ରକାଶ କରି କହିଲେ—"ମହାତ୍ମନ୍! ମୋ ଭଳି ପାପୀ କଂସେଇ ପାଲିଙ୍କିରେ ବସି ଯିବ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ପାଇଁ! ନା ନା, ଏହା ଅତି ଅସୁନ୍ଦର ହେବ। ମୁଁ ତ ଆପଣଙ୍କ ଚରଣ କିଂକର। ଆପଣଙ୍କ ଚରଣ ସେବା କରି ମୁଁ ଧନ୍ୟ ହୋଇଯିବି। ଆପଣମାନେ ଯାଆନ୍ତୁ, ମୁଁ ଧୀରେ ଧୀରେ ଯାଇ ପହଞ୍ଚିଯିବି।" ପୂଜାରୀମାନେ କହିଲେ—"ପ୍ରଭୁ ତୁମକୁ ଅପେକ୍ଷା କରି ରହିଁ ବସିଛନ୍ତି। ତୁମକୁ ଭେଟିବା ପରେ ସେ ଅନ୍ୟ ସେବା ସ୍ୱୀକାର କରିବେ। ତେଣୁ ପ୍ରଭୁଙ୍କ ଆଜ୍ଞା ମାନି ଶୀଘ୍ର ଚାଲ ଭକ୍ତବର!" ଏତିକି ଶୁଣୁ ଶୁଣୁ ସଦନର ହୃଦୟ ବିରହ ବେଦନାରେ ବ୍ୟଥିତ ହୋଇଗଲା। ସେ ଭାବିଲା—"ସତରେ ମୋ ପ୍ରଭୁ କେଡ଼େ ଦୟାଳୁ! ସେଇଥିପାଇଁ ତ ସେ ଜଗନ୍ନାଥ ନାମ ବହିଛନ୍ତି। ଆହାଃ! ମୋ ଭଳି ପାପୀକୁ ଏତେ ଆଦର! ସେଇଥିପାଇଁ ତ ନୀଳଚକ୍ରରେ ପତିତପାବନ ବାନା ଫର ଫର ହୋଇ ଉଡୁଛି। ସେ ହାତ ହଲାଇ ପାପୀମାନଙ୍କୁ ଡାକୁଛି ଯେ ସକଳ ପାପରାଶି ଭସ୍ମ କରିବା ପାଇଁ ମହାବାହୁଙ୍କ ଅଭୟ ପାଦପଦ୍ମର ଆଶ୍ରୟ ନିଅ। ଯଦି ମୋ ପ୍ରଭୁ ମୋ ସହିତ ଭେଟିବାକୁ ଏତେ ବ୍ୟାକୁଳ, ତେବେ ତାଙ୍କୁ ଆଉ ଅପେକ୍ଷା କରାଇବା ଭଲ ନୁହେଁ। ସବୁ ନିୟମକୁ ପଛ କରି ମୋତେ ତାଙ୍କ ଆଜ୍ଞା ପାଳନ କରିବାକୁ ହେବ।" ଏଭଳି ସ୍ଥିର କରି ସଦନ ପାଲିଙ୍କିରେ ବସି ପ୍ରଭୁଙ୍କ ଦର୍ଶନ ପାଇଁ ଆଗେଇ ଚାଲିଲା।

ଭକ୍ତ ଭଗବାନଙ୍କ ଦର୍ଶନ ପାଇଁ ତାଙ୍କ ନିକଟକୁ ଯିବା କଥା ତ ଜଗତ ଜାଣେ, କିନ୍ତୁ ଭଗବାନ ଯେ ଭକ୍ତକୁ ଅପେକ୍ଷା କରନ୍ତି ଏବଂ ତା'ର ଦର୍ଶନ କରିବାକୁ ତା' ନିକଟକୁ ଯାଆନ୍ତି ଅଥବା କୌଣସି ଉପାୟରେ ତାକୁ ନିଜ ନିକଟକୁ ଡାକି ଆଣନ୍ତି, ଏ ରହସ୍ୟ ଅତି ଗୁପ୍ତ। କିନ୍ତୁ ଏହା ନିରାଟ ସତ୍ୟ। ପ୍ରଭୁଭକ୍ତି ନିମଗ୍ନ ଭକ୍ତରାଜ ଧ୍ରୁବକୁ ଦର୍ଶନ କରିବା ପାଇଁ ଗରୁଡ଼ଧ୍ୱଜ ଭଗବାନ ମଧୁବନକୁ ଆସିଥିଲେ—

**ଦେବଙ୍କୁ ତୋଷି ତହୁଁ ହରି। ଗରୁଡ଼ ପୃଷ୍ଠେ ବିଜେ କରି ॥**
**ଭୃତ୍ୟକୁ ଦେଖିବାର ଆଶେ। ମିଳିଲେ ମଧୁବନ ଦେଶେ ॥**

ପିତାଙ୍କର ମନ ଯେପରି ପିତୃଭକ୍ତ ପୁତ୍ରକୁ ଭେଟିବାକୁ ଅଧୀର ହୋଇପଡ଼େ, ତାଙ୍କ ହୃଦୟରେ ବାତ୍ସଲ୍ୟ ସ୍ନେହ ଉଦ୍‌ବେଳିତ ହୋଇଉଠେ, ସେହିପରି ଭଗବାନ ତାଙ୍କ ଭକ୍ତକୁ ଦେଖିବାକୁ ବ୍ୟାକୁଳ ହୋଇ ପଡ଼ନ୍ତି। ଭକ୍ତର ସ୍ତୁତି ତାଙ୍କୁ ଅଧୀର କରି ପକାଏ। ସେହିପରି ଭକ୍ତ ସଦନ ସହ ଭେଟିବା ପାଇଁ ମହାପ୍ରଭୁ ଜଗନ୍ନାଥ

ଅତି ଆତୁର। କୁଳ, ଗୋତ୍ର ଇତ୍ୟାଦି ଦୃଷ୍ଟିରୁ ବଡ଼ ବୋଲାଉଥିବା କୌଣସି ଧନୀମାନୀ ଲୋକଙ୍କ ପାଇଁ ଭଗବାନ ପାଲିଙ୍କି ପଠାଇବାର ଘଟଣା କେଉଁଠି ଶୁଣାଯାଏ ନାହିଁ। ସଦନର ପ୍ରଭୁଙ୍କ ପ୍ରତି ଅନନ୍ୟ ନିଷ୍ଠା ଓ ସର୍ବାଧିକ ପ୍ରେମ ଥିବାରୁ ସେ ତା' ପାଇଁ ପାଲିଙ୍କି ପଠାଇ ଭକ୍ତବତ୍ସଳ ନାମକୁ ସାର୍ଥକ କଲେ। ଏହି ମାଧ୍ୟମରେ ସେ ସଦନକୁ ନିଜର ସମତୁଲ କରିବାକୁ ଚ୍ହାହିଁଲେ। ପ୍ରଭୁ ଜଣାଇଦେଲେ ଯେ, ସଦନ! ମୁଁ ଯେପରି ହସ୍ତବିହୀନ, ତୁମେ ସେହିପରି ରୂପ ଧାରଣ କରି ଆଜି ମୋର ସାଦୃଶ୍ୟ ଲାଭ କଲ। ତେଣୁ ମୁଁ ଯେପରି ରତ୍ନ ପାଲିଙ୍କିରେ ବିଜେ କରେ, ତୁମ ପାଇଁ ମଧ୍ୟ ସେଭଳି ସମ୍ଭାର ଆବଶ୍ୟକ।

ଭକ୍ତ ସଦନ ଶ୍ରୀମନ୍ଦିରରେ ପହଞ୍ଚି ପ୍ରଭୁଙ୍କ କଳାଶ୍ରୀମୁଖକୁ ଦର୍ଶନ କରନ୍ତେ ତାଙ୍କର ହୃଦୟ ପୁଲକିତ ହୋଇ ଉଠିଲା। ଅନେକ ଦିନର ଦର୍ଶନ ତୃଷା ମେଣ୍ଟିବା ପରିବର୍ତ୍ତେ ବେଳକୁ ବେଳ ବଢ଼ି ବଢ଼ି ଚ୍ହାଲିଲା। ସେ ପ୍ରଣୟଭରା ହୃଦୟରେ ପ୍ରଭୁଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲା। କିନ୍ତୁ ଅଷ୍ଟ ଅଙ୍ଗ ମଧ୍ୟରୁ ହାତ ଦୁଇଟି କଟି ଯାଇଥିବାରୁ ତା'ର ପ୍ରଣିପାତ ପୂର୍ଣ୍ଣାଙ୍ଗ ହୋଇ ପାରିଲା ନାହିଁ। ଏଥିନେଇ ଭକ୍ତ ମନରେ ଟିକିଏ କଷ୍ଟ ହେଲା ଯେ "ହାୟ! ଏତେ ଦିନ ପରେ ଦର୍ଶନ କରି ମଧ୍ୟ ପ୍ରଭୁଙ୍କୁ ପୂର୍ଣ୍ଣାଙ୍ଗ ପ୍ରଣାମଟିଏ ବି କରି ପାରିଲି ନାହିଁ।" ଭଗବାନ ଭକ୍ତର ହୃଦୟ ଜାଣି ପାରିଲେ। ଅଷ୍ଟାଙ୍ଗ ପ୍ରଣାମ କରିବାକୁ ସଦନ ଉଦ୍ୟତ ହୁଅନ୍ତେ ତା'ର ହାତ ଦୁଇଟି ହଠାତ୍ ଭକ୍ତିବୃକ୍ଷରେ ନବ ଶାଖା ଫୁଟି ବାହାରିବା ଭଳି କଅଁଳି ଆସିଲା। ଦେଖୁ ଦେଖୁ ଦେହର ସବୁ କଷ୍ଟ ସ୍ୱପ୍ନ ଭଳି କୁଆଡ଼େ ଉଭେଇଗଲା। ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା। ଭଗବାନ ସଦନକୁ ଆଲିଙ୍ଗନ କରି କହିଲେ— "ମୋର ପ୍ରିୟ ସଦନ! ଭକ୍ତିରୂପୀ କଷଟି ପଥରରେ ତୁମର ଭକ୍ତି ଆଜି ବିଶୁଦ୍ଧ ପ୍ରମାଣିତ ହୋଇଗଲା। ଆଜିଠାରୁ ତୁମେ ମୋର ଆପଣାର ହୋଇଗଲ। ମନରେ କୌଣସି ପ୍ରକାର ଗ୍ଲାନି ନ ରଖି ଜଗତର ହିତ ପାଇଁ ଏବେ ତୁମେ ଭକ୍ତି ପ୍ରଚ୍ହାର କର।" ସଦନ ନିଜକୁ ଏତେ ସମ୍ମାନର ଯୋଗ୍ୟ ଭାବୁ ନ ଥିଲେ। ଭକ୍ତି ପ୍ରଚ୍ହାର ପାଇଁ ସେ ନିଜକୁ ଅସମର୍ଥ ମଣୁଥିଲେ। କିନ୍ତୁ ମହାବାହୁ ଜଗନ୍ନାଥଙ୍କ କୃପାରୁ ତା' ହୃଦୟରେ ଭକ୍ତି ନିର୍ଝରିଣୀ ଫୁଟି ଉଠିଲା। ତା'ର ସାନ୍ନିଧ୍ୟ ଲାଭ କରି ଏ ଜଗତ ମଧ୍ୟ ଭକ୍ତିରେ ଓତପ୍ରୋତ ହୋଇଗଲା। ଶେଷରେ ଭକ୍ତ ସଦନ ଭଗବାନଙ୍କର ଅଭୟ ଚରଣ ଲାଭ କରି ତାଙ୍କ ଧାମକୁ ଗମନ କଲା।



# ଭକ୍ତ ରାମଦାସ

ଦ୍ୱାରକା ଧାମର ଅନତିଦୂରରେ ଡାକୋର ନାମକ ପଲ୍ଲୀଗ୍ରାମଟିଏ। ସେହି ଗ୍ରାମର ନିବାସୀ ଥିଲେ ଭକ୍ତ ରାମଦାସ। ପୋଖରୀର ପଙ୍କ ଭିତରୁ ପଦ୍ମ ଫୁଟିବା ପରି ପଲ୍ଲୀଗ୍ରାମରୁ ରାମଦାସଙ୍କ ଭଳି ଭକ୍ତ ବିକଶିତ ହୋଇ ଚତୁର୍ଦ୍ଦିଗକୁ ନିଜର ଭକ୍ତି ସୌରଭରେ ସୁବାସିତ କରିଥିଲେ। ରାମଦାସଙ୍କ ଭଳି ଭକ୍ତଙ୍କ ଭାବର ବଶ ହୋଇ ସେହି ପଲ୍ଲୀଟିକୁ ସୌନ୍ଦର୍ଯ୍ୟ ମଣ୍ଡିତ କରିଥିଲେ ଦ୍ୱାରକାନାଥ ଶ୍ରୀରଣଛୋଡ଼ ଭଗବାନ। **'ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ'** ବଚନକୁ ଭଗବାନ ଗୋଟିଏ ବିଚିତ୍ର ଲୀଳା ମାଧ୍ୟମରେ ସାକାର କରି ଦେଖାଇଦେଲେ!

ଏହି ଲୀଳାର ମୁଖ୍ୟ ପୁରୋଧା ଥିଲେ ଭକ୍ତ ରାମଦାସ। ତାଙ୍କର ମନ ଅନବରତ ଭଗବାନଙ୍କ ନାମଗୁଣ କୀର୍ତ୍ତନରେ ନିମଗ୍ନ ରହୁଥିଲା। ଚନ୍ଦ୍ରକୁ ଦେଖି କୁମୁଦିନୀ ବିକଶିତ ହେବା ପରି ଦ୍ୱାରକାନାଥଙ୍କ ମୁଖଚନ୍ଦ୍ର ଦର୍ଶନ କରି ତାଙ୍କ ମନ ପ୍ରଫୁଲ୍ଲିତ ହୋଇଉଠୁଥିଲା। ସେ ପ୍ରତି ଏକାଦଶୀକୁ ତୁଳସୀ ଚଉରାଟିଏ ମୁଣ୍ଡରେ ମୁଣ୍ଡାଇ ଚାଲି ଚାଲି ଦ୍ୱାରକା ଯାଆନ୍ତି ଏବଂ ପ୍ରଭୁଙ୍କର ଶ୍ରୀମୁଖ ମାଧୁରୀ ଦର୍ଶନ କରି ଆହ୍ଲାଦିତ ହୁଅନ୍ତି। ମନର ସୁଖ-ଦୁଃଖ ସବୁ ପ୍ରଭୁଙ୍କୁ ଶୁଣାନ୍ତି ଏବଂ ନାମ-ସଂକୀର୍ତ୍ତନ କରି ରାତି ସାରା ଉଜାଗର ରହନ୍ତି। ରାମଦାସଙ୍କ କାରଣରୁ ଅନେକ ଭକ୍ତଜନ ମଧ୍ୟ କୀର୍ତ୍ତନରେ ସମ୍ମିଳିତ ହୁଅନ୍ତି। ଭକ୍ତଜନଙ୍କ ସମାବେଶରୁ ଭଗବାନଙ୍କୁ ମଧ୍ୟ ବେଶ୍ ଆନନ୍ଦ ମିଳେ। ସେ ଭକ୍ତଙ୍କ ଗହଣରେ ଗୁପ୍ତରୂପରେ ପ୍ରକଟ ହୋଇ ସମସ୍ତଙ୍କୁ ପ୍ରେମରସରେ ଆପ୍ଲାବିତ କରିଦିଅନ୍ତି। ଏକାଦଶୀ ଭଳି ପବିତ୍ର ଦିନ। ତା' ସାଙ୍ଗକୁ ଠାକୁରଙ୍କ ମନ୍ଦିର ପ୍ରାଙ୍ଗଣରେ ନାମ-କୀର୍ତ୍ତନ ସମାରୋହ! କାହାକୁ ବା ଆନନ୍ଦ ନ ମିଳିବ? ଏକାଦଶୀ ମାହାତ୍ମ୍ୟରେ ବର୍ଣ୍ଣନା ଅଛି ଯେ ଯେଉଁ ବ୍ୟକ୍ତି ଏକାଦଶୀ ରାତ୍ରିରେ ଉଜାଗର ରହି ଶ୍ରୀହରିଙ୍କ ସମ୍ମୁଖରେ ନାମ-ସଂକୀର୍ତ୍ତନ କରେ, ଭଗବାନ ତାହାର ବଶ ହୋଇଯାଆନ୍ତି। ରାମଦାସଙ୍କ ପାଇଁ ଏହି କଥାଟି ଭଗବାନ ସତ୍ୟ କରି ଦେଖାଇଦେଲେ।

ଭକ୍ତ ରାମଦାସଙ୍କର ଏହି ନିୟମଟି ଦୀର୍ଘ ଦିନରୁ ଅବ୍ୟାହତ ଚାଲିଆସୁଥାଏ। ସବୁବେଳେ ତ ସବୁ କଥା ରହେ ନାହିଁ। ବୟସ ଢଳିଯିବାରୁ ତାଙ୍କର ଦେହ ଧୀରେ ଧୀରେ ଜରାଜୀର୍ଣ୍ଣ ହୋଇପଡ଼ିଲା। ସେ ଦ୍ୱାରକା ଯିବାକୁ ଅସମର୍ଥ ହୋଇଗଲେ। ତଥାପି ସେ ତାଙ୍କର ନିୟମ ଛାଡ଼ୁ ନ ଥାନ୍ତି। ନିୟମ-ନିଷ୍ଠା ହିଁ ତାଙ୍କ ଜୀବନର

ଗଣ୍ଠି ଧନ। ସେଥିଯୋଗୁଁ ସେ ପ୍ରଭୁଙ୍କର ପ୍ରିୟପାତ୍ର ହୋଇପାରିଛନ୍ତି, ପୁଣି ତାହାକୁ ସେ ଛାଡ଼ିଦେବେ ବା କିପରି? ଦେହ ଅସୁସ୍ଥ ହେଲେ ମଧ୍ୟ ବାଙ୍କୁଲି ବାଡ଼ିଟିଏ ଧରି ସେ ଧୀରେ ଧୀରେ ଦ୍ୱାରକାକୁ ଯାଆନ୍ତି। ତାଙ୍କର ଦୁର୍ବଳତା ଦେଖି ଦିନେ ଦ୍ୱାରକାନାଥ ତାଙ୍କୁ କହିଲେ—"ରାମଦାସ! ତୁମ ଦେହ ଦୁର୍ବଳ ହୋଇଗଲାଣି। ତୁମେ ଆଉ ଏତେ ଦୂର ଆସିବା ଦରକାର ନାହିଁ। ଏକାଦଶୀ ଦିନ ଏଥର ଘରେ ସଂକୀର୍ତ୍ତନ କରିବ।"

ରାମଦାସ ବଡ଼ ଅଡୁଆରେ ପଡ଼ିଗଲେ। ପ୍ରଭୁଙ୍କ କଥା କାଟି ପାରିଲେ ନାହିଁ। ଅତି ସଂକୋଚରେ ଭଗବାନଙ୍କ ଆଗରେ ହଁ ମାରିଦେଲେ। ହେଲେ ତାଙ୍କ ଅନ୍ତର ସ୍ୱୀକାର କଲା ନାହିଁ। ଭାବିଲେ, ସତରେ କ'ଣ ମୋର ନିଷ୍ଠା ଖଣ୍ଡିତ ହୋଇଯିବ? ଆଜିଠୁ କ'ଣ ପ୍ରଭୁଙ୍କ ଦର୍ଶନରୁ ମୋତେ ବଞ୍ଚିତ ହେବାକୁ ପଡ଼ିବ? ତେବେ ଏଭଳି ଅଦରକାରୀ ଜୀବନଟାକୁ ରଖି ଲାଭ କ'ଣ? ବାଟ ସାରା ପ୍ରଭୁଙ୍କୁ ସ୍ମରଣ କରି କରି ସେ ମନଦୁଃଖରେ ଘରକୁ ଫେରିଲେ। ସବୁ ପାଳି ଭଳି ଏପାଳି ତାଙ୍କ ମନରେ ଆନନ୍ଦ ନାହିଁ। ଅନ୍ୟ କୌଣସି କାମରେ ତାଙ୍କର ମନ ଲାଗୁ ନ ଥାଏ। ଦିନରାତି ଦ୍ୱାରକାନାଥଙ୍କ କଥା ଭାବୁଥାନ୍ତି। ପ୍ରଭୁଙ୍କର ମଧୁର ସ୍ମିତହାସ, ସ୍ନିଗ୍ଧ କୁଞ୍ଚିତ କେଶରାଶି, ବିଶାଳ ବକ୍ଷସ୍ଥଳ, ଆଜାନୁଲମ୍ବିତ ଭୁଜ, କୃଶ କଟି, କୋମଳ କର-ଚରଣ ତାଙ୍କ ଆଖି ଆଗରେ ନାଚି ଉଠୁଥାଏ। ଏହିଭଳି ଦିନଗୁଡ଼ିକ ବିତି ଚାଲିଲା। ଏକାଦଶୀ ଦିନଟି ଯେତିକି ଯେତିକି ପାଖେଇ ଆସୁଥାଏ, ତାଙ୍କ ମନର ବ୍ୟାକୁଳତା ସେତେ ଅଧିକ ବଢ଼ି ବଢ଼ି ଚାଲିଥାଏ। ପ୍ରଭୁଙ୍କ ଦର୍ଶନ ପାଇଁ ମନ ଏତେ ବ୍ୟାକୁଳ ହୋଇପଡୁଥାଏ ଯେ, ସତେ ଯେପରି ସେ ପର ଲଗାଇ ଦ୍ୱାରକାକୁ ଉଡ଼ିଯିବେ! ରାମଦାସ ଭାବୁଥାନ୍ତି—"ଭଗବାନ ତ ସହଜେ ଦୟାଳୁ! ବାତ୍ସଲ୍ୟ ସ୍ନେହ ଯୋଗୁଁ ମୋର ବୃଦ୍ଧାବସ୍ଥା ଦେଖି ମୋତେ ଆସିବାକୁ ମନା କରିଦେଲେ, କିନ୍ତୁ ମୋତେ ତ ମୋ ନିଷ୍ଠାରେ ଦୃଢ଼ ରହିବା ଆବଶ୍ୟକ, ନଚେତ୍ ମୋର ନିୟମ ଭାଙ୍ଗିଯିବ।" ବାସ୍, ଏଥର ତାଙ୍କ ମନ ଆଉ କି ଥୟ ଧରେ! ସେ ତୁଳସୀ ଚଉରାଟିଏ ଧରି ବାହାରି ପଡ଼ିଲେ ଦ୍ୱାରକା ଅଭିମୁଖେ। ଦ୍ୱାରକାରେ ପହଞ୍ଚି ପ୍ରଭୁଙ୍କର ଦର୍ଶନ କଲେ ଏବଂ ପ୍ରତି ପାଳି ଭଳି ଏପାଳି ମଧ୍ୟ ଠାକୁରଙ୍କ ଚରଣରେ ନବ ତୁଳସୀ ମଞ୍ଜରି ଅର୍ପଣ କଲେ। ଭକ୍ତ ରାମଦାସକୁ ଆସିବା ଦେଖି ଭଗବାନ ଅନ୍ତର ଭିତରେ ବହୁତ ଖୁସୀ ହେଲେ, କିନ୍ତୁ ବାହାରେ ଟିକିଏ ବିରକ୍ତି ପ୍ରକାଶ କରି କହିଲେ— "ମୁଁ ପରା ତୁମକୁ ମନା କରିଥିଲି ଆସିବାକୁ। ମୋ କଥା ନ ମାନି ପୁଣି ଚାଲିଆସିଲ

ଯେ?'' ରାମଦାସ ହାତଯୋଡ଼ି କହିଲେ—''ପ୍ରଭୁ! କ'ଣ କରିବି? ମନକୁ ଖୁବ୍ ବୁଝାଇଲି, କିନ୍ତୁ ସେ ମାନିଲା ନାହିଁ। ଏକାଦଶୀ ଭଳି ଦିନରେ ତୁମ ଦର୍ଶନ ଓ ନାମ-ସଂକୀର୍ତ୍ତନ ଛାଡ଼ି ମୁଁ ଘରେ ରହି ପାରିଲି ନାହିଁ। ମୋର ଅପରାଧ କ୍ଷମା କର।'' ଭଗବାନ ହସି ହସି ରାମଦାସଙ୍କୁ କୋଳେଇ ନେଇ କହିଲେ—''ମୋ ବିନା ତୁମେ ଯେପରି ରହିପାରୁ ନାହଁ, ମୁଁ ମଧ୍ୟ ସେହିପରି ତୁମ ଦୁଃଖ ଦେଖିପାରୁ ନାହିଁ। ତେବେ ଆମ ଦୁହିଙ୍କ ପ୍ରୀତି ନିର୍ବାହ ହେବ କେମିତି?'' ରାମଦାସ ଅଧୋବଦନରେ କହିଲେ—''ପ୍ରଭୁ! ସବୁ ଦୋଷ ଏହି ଆଖିର। ତୁମର ମୁଖଚନ୍ଦ୍ର ଦର୍ଶନ ପାଇଁ ଅଳି କରି ବସିଲା। ଯେତେ ବୁଝାଇଲେ ବି ଶୁଣିଲା ନାହିଁ। ମୁଁ ବୁଝାଇ ବୁଝାଇ ହାରିଗଲି। ଶେଷକୁ ବାଧ୍ୟ ହୋଇ ମୋତେ ଆସିବାକୁ ପଡ଼ିଲା। ଏବେ ମୋତେ ଯାହା ଦଣ୍ଡ ଦେବାର କଥା ଦିଅ।''

ଭଗବାନ ଭକ୍ତର ନିଷ୍ଠା ଓ ଅବିଚଳ ପ୍ରେମରେ ବଶୀଭୂତ ହୋଇଗଲେ। ସେ ଅତି ସ୍ନେହରେ ରାମଦାସଙ୍କୁ କୋଳ କରି କହିଲେ—''ରାମଦାସ! ପ୍ରକୃତରେ ମୋତେ ନ ଦେଖିଲେ ତୁମେ ଯେପରି ବ୍ୟାକୁଳ ହୋଇଯାଉଛ, ତୁମକୁ ନ ଦେଖି ମୋର ମନ ମଧ୍ୟ ବ୍ୟାକୁଳ ହୋଇଯାଉଛି। ତେଣୁ ଏ ସମସ୍ୟାର ସ୍ଥାୟୀ ସମାଧାନ ପାଇଁ ତୁମେ ମୋତେ ତୁମ ଘରକୁ ନେଇଚାଲ। ଆମ୍ଭେ ଦୁହେଁ ପରସ୍ପରକୁ ଦେଖି ସୁଖୀ ହେଉଥିବା। ଆସନ୍ତା ଏକାଦଶୀକୁ ଗୋଟିଏ ମଜବୁତ ବଳଦ ଗାଡ଼ି ନେଇ ଆସିବ। ମୁଁ ସେଇଥିରେ ବସି ତୁମ ସହିତ ପଳାଇଯିବି।'' ପ୍ରଭୁଙ୍କ ମୁଖରୁ ଏଭଳି ଅଦ୍ଭୁତ କଥା ଶୁଣି ରାମଦାସ କହିଲେ—''ପ୍ରଭୁ! ମୁଁ ତୁମକୁ ମନ୍ଦିରରୁ ନେବି କେମିତି? ମନ୍ଦିରର ସବୁ ଦ୍ୱାରରେ ତ ସଶକ୍ତ ପ୍ରହରୀ ଜଗିଛନ୍ତି।'' ଭଗବାନ କହିଲେ—''ଏହାର ଉପାୟ ବି ମୁଁ ଭାବି ସାରିଛି। ତୁମେ ଆଦୌ ଚିନ୍ତା କର ନାହିଁ। ମୋତେ ଏ କୌଶଳ ଭଲଭାବେ ଜଣା। ମନ୍ଦିରର ପଛପଟ ଝରକା ପାଖରେ ଆଣି ରାତି ଅଧରେ ବଳଦ ଗାଡ଼ିଟି ଠିଆ କରାଇଦେବ। ମୁଁ ସଜ ହୋଇ ବସିଥିବି। କାହାକୁ ଜଣା ପଡ଼ିବ ନାହିଁ; ଆମେ ଦୁହେଁ ଲୁଚି ପଳାଇବା।'' ଭଗବାନଙ୍କ କୌଶଳ ଶୁଣି ରାମଦାସଙ୍କୁ ହସ ଲାଗିଲା। ସେ ପ୍ରଭୁଙ୍କୁ ପ୍ରଶଂସା କରି କହିଲେ—''ବାଃ ପ୍ରଭୁ! ତୁମ ଲୀଳା ବଡ଼ ବିଚିତ୍ର! ପିଲାବେଳୁ ଏଭଳି କରିବାର ଅଭ୍ୟାସ ତୁମର ସିନା ରହିଛି, କିନ୍ତୁ ମୁଁ ତ କେବେ ଏମିତି କାମ କରି ନାହିଁ। ତେବେ ବୁଢ଼ା ବୟସରେ ମଧ୍ୟ ମୋତେ ଏ ବିଦ୍ୟା ଶିଖିବାକୁ ପଡ଼ିବ! ହଉ, ତୁମର ଯଦି ଏଇଆ ଇଚ୍ଛା, ତେବେ ମୋର ଆପତ୍ତି କ'ଣ?''

ଭଗବାନଙ୍କ କହିବା ଅନୁସାରେ ଆସନ୍ତା ଏକାଦଶୀକୁ ରାମଦାସ ଗୋଟିଏ ନୂଆ ଶଗଡ଼ ଧରି ଆସି ପହଞ୍ଚିଲେ। ତାଙ୍କୁ ଦେଖି ପୂଜାରୀମାନେ ଏବଂ ଅନ୍ୟ ଭକ୍ତଗଣ ଆଚମ୍ବିତ ହେଲେ। ମନ ଭିତରେ ଅନେକ କଳ୍ପନା ଜଳ୍ପନା କଲେ ଯେ, ଭକତେ ତ କେବେ ଯାନ-ବାହନରେ ଚଢ଼ି ଆସନ୍ତି ନାହିଁ। ଏଥର ଏମିତି ଶଗଡ଼ ଧରି ଆସିଛନ୍ତି କାହିଁକି? ହୋଇପାରେ, ବୁଢ଼ା ହୋଇଯିବାରୁ ଆଉ ଚାଲି ପାରୁ ନ ଥିବେ, ତେଣୁ ଶଗଡ଼ର ଆଶ୍ରୟ ନେଲେ। ସମସ୍ତେ ମନ ମଧ୍ୟରେ ଏପରି ଅନୁମାନ କରୁଥାନ୍ତି, କିନ୍ତୁ ଭଗବାନଙ୍କ ପ୍ରେରଣାରେ ତାଙ୍କୁ କେହି କିଛି ପଚାରିଲେ ନାହିଁ। ନଚେତ୍ ସେ ଅଡୁଆରେ ପଡ଼ିଯାଇଥାନ୍ତେ। ମିଛ କହି ପାରି ନ ଥାନ୍ତେ, ଆଉ ସତ କହିଥିଲେ ପୂଜାରୀମାନେ ସତର୍କ ହୋଇଯାଇଥାନ୍ତେ, ଫଳରେ ତାଙ୍କୁ ଠାକୁରଙ୍କୁ ହରାଇବାକୁ ପଡ଼ିଥାନ୍ତା।

ସବୁ ଏକାଦଶୀ ଭଳି ଏପାଳି ମଧ୍ୟ ଭକ୍ତ ରାମଦାସ ଅତି ଆନନ୍ଦରେ ନାମ-ସଂକୀର୍ତ୍ତନ କଲେ। ପ୍ରଭୁଙ୍କର ତାଙ୍କ ଉପରେ ଅତି ସ୍ନେହ ଭାବି ତାଙ୍କ ମନରେ ଏଥର ଅତ୍ୟନ୍ତ ଆନନ୍ଦ। ପ୍ରତି ଏକାଦଶୀରେ ରାତ୍ରି ଉଜାଗର ରହି ଦ୍ୱାଦଶୀ ଦିନ ସକାଳୁ ସକାଳୁ ସେ ଘରକୁ ଫେରି ଆସନ୍ତି। ଆଜି କିନ୍ତୁ ଏଥିରେ ବ୍ୟତିକ୍ରମ ଦେଖାଦେଲା। ଭଗବାନଙ୍କ କଥା ମନ ଭିତରେ ଲୁଚାଇ ରଖି ଦ୍ୱାଦଶୀ ଦିନ ମଧ୍ୟ ସେ ସେଇଠି ରହିଗଲେ। ଲୋକଙ୍କ ମନରେ ଏଥିନେଇ ସନ୍ଦେହ ହେଲା, କିନ୍ତୁ କେହି ତାଙ୍କୁ ମୁହଁ ଖୋଲି ପଚାରିଲେ ନାହିଁ। ସଭିଏଁ ଭାବିଲେ, ଭକତେ ବୁଢ଼ା ହୋଇଗଲେଣି ତ, ସେଥିପାଇଁ ବୋଧହୁଏ ରହିଯାଇଛନ୍ତି। ସେ ଯାହାହେଉ ନା କାହିଁକି, ଭଗବାନଙ୍କ କୃପାରୁ ସେ ରକ୍ଷା ପାଇଗଲେ।

ଦ୍ୱାଦଶୀ ଦିନ ରାତିରେ ପୂଜାରୀମାନେ ଠାକୁରଙ୍କୁ ପହୁଡ଼ କରାଇ ମନ୍ଦିର ବନ୍ଦ କରି ନିଜ ନିଜ ଘରକୁ ଚାଲିଗଲେ। ଭଗବାନଙ୍କୁ କିନ୍ତୁ ନିଦ ନାହିଁ। କୁଣିଆ ଘରକୁ ଯିବା ପାଇଁ ପିଲାମାନେ ଯେପରି ଭଲ ପୋଷାକ ପିନ୍ଧି ସଜବାଜ ହୋଇଥାନ୍ତି, ଭଗବାନ ସେହିପରି ସବୁ ଆଲମାରି ଓ ସିନ୍ଦୁକ ଖୋଲି ସେଥିରୁ ବାଛି ବାଛି ସୁନ୍ଦର ସୁନ୍ଦର ମୂଲ୍ୟବାନ୍ ଆଭୂଷଣ ପିନ୍ଧାପିନ୍ଧି କରି ସଜବାଜ ହୋଇ ରାମଦାସଙ୍କ ବାଟ ଚାହିଁ ବସିଲେ। ପ୍ରଭୁଙ୍କ ମନ ଅଥୟ ହେଉଥାଏ। ଅଧା ରାତି ଗଡ଼ିଗଲା। ଚାରିଆଡ଼ ଶୁନ୍‌ଶାନ୍। ସେତିକି ବେଳେ ରାମଦାସ ଆସ୍ତେ ଆସ୍ତେ ଶଗଡ଼ଟିକୁ ନେଇ ମନ୍ଦିର ପଛପଟ ଝରକାରେ ଢୁକାଇଦେଲେ। ଭଗବାନ ଅପେକ୍ଷା କରି କରି ବିରକ୍ତ ହୋଇଯାଇଥିଲେ। ରାଗରେ ତମତମ ହୋଇ ସେ ରାମଦାସଙ୍କୁ

କହିଲେ—"ଏତେ ଡେରି କାହିଁକି କଲ? କେତେବେଳୁ ମୁଁ ତୁମ ବାଟ ଚାହିଁ ବସିଛି!" ରାମଦାସ କହିଲେ—"ପ୍ରଭୁ! ନିଛାଟିଆ ହେଲେ ସିନା ଲୁଚ୍‌ଚୋରା କାମ ଭଲ ହେବ। ଏମିତି ଅଧୈର୍ଯ୍ୟ ହେଲେ ଚଳିବ କି? ହଉ, ଏବେ ଶୀଘ୍ର ବାହାର।" ଭଗବାନ ଆନନ୍ଦ ମନରେ ଗହଣାଗୁଡ଼ିକୁ ରୁଣୁଝୁଣୁ କରି ବାହାରିଲେ। ରାମଦାସ କହିଲେ—"ପ୍ରଭୁ! ଏ କ'ଣ? ନା ନା, ସବୁ ଆଭୂଷଣ ଏଇଠି କାଢ଼ି ଦିଅନ୍ତୁ। ସହଜେ ତୁମେ ଚାଲିଗଲେ ପୂଜାରୀମାନେ ଦୁଃଖୀ ହୋଇଯିବେ। ଆଉ ଯଦି ସବୁ ଗହଣାପତ୍ର ନେଇ ପଳେଇବ, ତେବେ ତ ତାଙ୍କ ମୁଣ୍ଡରେ ଦୁଃଖର ପାହାଡ଼ ଛିଡ଼ି ପଡ଼ିବ। ତୁମେ ଟିକିଏ ମୋ କଥା ବିଚାର କର। ମୁଁ ଆଜନ୍ମ ଦରିଦ୍ର। ମୋ ପତ୍ର କୁଡ଼ିଆରେ ଏତେ ମୂଲ୍ୟବାନ୍ ଗହଣା ରଖିବି କେଉଁଠି? ଚୋର ତସ୍କର ଅଛନ୍ତି, ସବୁ ଲୁଟି ନେବେ। ତା'ଛଡ଼ା ମୋର ତ ତୁମ ସହିତ ପ୍ରୀତି ସମ୍ବନ୍ଧ ରହିଛି। ଏ ସବୁ ଗହଣା ମୋର କ'ଣ ହେବ?" ଦ୍ୱାରକାନାଥ ଗହଣା ନେବା ପାଇଁ ଖୁବ୍ ବାଧ୍ୟ କଲେ। କିନ୍ତୁ ରାମଦାସ ଆଦୌ ସହମତ ହେଲେ ନାହିଁ। କହିଲେ, ତୁମେ ଏମିତି ଅମାନିଆ ହେଲେ ମୁଁ ପଳେଇବି। ଶେଷକୁ ଭଗବାନ ନିରାଶ ହୋଇ ସବୁ ଗହଣା କାଢ଼ି ଫୋପାଡ଼ି ଦେଲେ। ଭକ୍ତଙ୍କ ସଙ୍ଗେ ଯିବାକୁ ପ୍ରଭୁଙ୍କ ମନ ବ୍ୟାକୁଳ ହେଉଥାଏ। ସେ ସାଦା ଲୁଗା ଖଣ୍ଡିଏ ପିନ୍ଧି ଯିବାକୁ ବାହାରି ପଡ଼ିଲେ। ଭକ୍ତ ରାମଦାସ ପ୍ରଭୁଙ୍କୁ କୋଳରେ ଧରି ଖିଡ଼ିକିବାଟେ ମନ୍ଦିରରୁ ବାହରି ଆସି ଶଗଡ଼ରେ ବସିଗଲେ। ଧନ୍ୟ ତାଙ୍କ ଜୀବନ! ପ୍ରଭୁଙ୍କ ଶ୍ରୀଅଙ୍ଗର ଅନାବରଣ ସ୍ପର୍ଶ ପାଇ ତାଙ୍କର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା। ପ୍ରଭୁଙ୍କ ସାନ୍ନିଧ୍ୟ ଲାଭର ଆନନ୍ଦ ସହିତ ତାଙ୍କ ମନରେ ଏ ଭୟ ମଧ୍ୟ ଥାଏ ଯେ, କେଉଁଠି କେହି ତାଙ୍କୁ ଦେଖୁ ନାହିଁ ତ? ଏଥିନେଇ ତାଙ୍କ ମନ ଚଞ୍ଚଳ ହେଉଥାଏ। କିନ୍ତୁ ଭଗବାନଙ୍କ ପ୍ରେରଣାରୁ କେଉଁଠି କିଛି ଅସୁବିଧା ହେଲା ନାହିଁ। ଭକ୍ତ ଓ ଭଗବାନ ଦୁହେଁ ସହଜରେ ଲୁଚି ପଳାଇଗଲେ।

ପ୍ରଭାତ ବେଳାରେ ପୂଜାରୀମାନେ ଆସି ମନ୍ଦିରର ଦ୍ୱାରଦେଶରେ ହାଜର ହେଲେ। 'ଜୟ ଦ୍ୱାରକାଧୀଶ!' କହି ମନ୍ଦିର ଖୋଲି ଦେଇ ଯାହା ଦେଖିଲେ, ସେଥିରେ ସେମାନଙ୍କ ଦେହରୁ ପାଏ ଲେଖାଏଁ ରକ୍ତ ଶୁଖିଗଲା। ସେମାନେ ନିଜର ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ। ଶୟନ ପଲଙ୍କରେ ଠାକୁର ନାହାନ୍ତି। ସିନ୍ଦୁକ ସବୁ ଖୋଲା ହୋଇଛି। ଚାରିଆଡ଼େ ବିଞ୍ଚାଡ଼ି ହୋଇ ଗହଣା ପଡ଼ିଛି। ସେମାନଙ୍କ ଆଶ୍ଚର୍ଯ୍ୟର ଠିକଣା ରହିଲା ନାହିଁ। କାହାରି ମୁଖରୁ ବାଣୀ

ସ୍ଥୁରୁ ନ ଥାଏ । "ଏ କ'ଣ ହେଲା? ଠାକୁର କୁଆଡ଼େ ଗଲେ? ଏବେ କି ଉପାୟ କରିବା?"—ଏମିତି ନାନା କଥା ଭାବୁ ଭାବୁ ଜଣେ ପୂଜାରୀର ମନେ ପଡ଼ିଗଲା ଏକାଦଶୀ ଦିନ ରାମଦାସ ଶଗଡ଼ ଆଣି ଆସିଥିବା କଥା । ସେ କହିଲା—"ଭାଇମାନେ! ଆମର ସନ୍ଦେହ ଠିକ୍ ହେଲା । ଲାଗୁଛି, ରାମଦାସ ଶଗଡ଼ରେ ବସେଇ ଭଗବାନଙ୍କୁ ନେଇ ଯାଇଛି । ନହେଲେ ସେ କେଉଁପାଳି ତ ଶଗଡ଼ ଧରି ଆସୁ ନ ଥିଲା । ତା' ଛଡ଼ା ଦ୍ୱାଦଶୀ ଦିନ ରାତି ପର୍ଯ୍ୟନ୍ତ ରହିଥାନ୍ତା କାହିଁକି?" କଥାଟି ସମସ୍ତଙ୍କ ମନକୁ ପାଇଲା । କାଳ ବିଳମ୍ବ ନ କରି ସମସ୍ତେ ଦୌଡ଼ିଲେ ରାମଦାସଙ୍କୁ ଧରିବା ପାଇଁ ।

ସେପଟେ ଭକ୍ତ ଓ ଭଗବାନ ଦୁହେଁ ଅତି ଆନନ୍ଦରେ ଗୀତ ଗାଇ ଗାଇ ଆଗେଇ ଚ୍ଳିଥାନ୍ତି । ପଛରୁ ପୂଜାରୀମାନଙ୍କ କୋଳାହଳ ଶୁଣି ରାମଦାସ ପଛକୁ ଚ୍ହିଁଦେଲା ବେଳକୁ ତାଙ୍କ ଛାତିରେ ଛନକା ପଶିଗଲା । ଏବେ କି ବୁଦ୍ଧି କରିବେ, କିଛି ଭାବି ପାରିଲେ ନାହିଁ । ଦ୍ୱାରକାନାଥଙ୍କୁ କହିଲେ—"ପ୍ରଭୁ! ଏଇ ଦେଖ, ତୁମର ପୂଜାରୀମାନେ କେମିତି ନଦୀସୁଅ ଭଳି ମାଡ଼ି ଆସୁଛନ୍ତି । ଏବେ କ'ଣ କରିବି? ତୁମର ତ କିଛି ହେବ ନାହିଁ, ଏମାନେ ମୋ ପିଠିରେ ଛତୁ ଫୁଟେଇ ଦେବେ । ମୁଁ ବୁଢ଼ା ଲୋକ । ଏମାନଙ୍କ ସହିତ ମାରପିଟ ବି ତ କରି ପାରିବି ନାହିଁ । ତୁମେ ଯଦି କହିବ, ତୁମକୁ ଫେରାଇ ଦେଇ ଏମାନଙ୍କ ପାଦ ଧରି କ୍ଷମା ମାଗିନେବି?"

ଭଗବାନ ଟିକିଏ ବିରକ୍ତି ପ୍ରକାଶ କରି କହିଲେ—"ଦେଖ ଭକତେ! ତୁମର ମୋ ସଙ୍ଗେ ପ୍ରୀତି କରିବାକୁ ମନ, ଆଉ ପୂଜାରୀମାନଙ୍କୁ ବି ଡର । ଦୁଇଟା କଥା ଏକା ସଙ୍ଗେ ଚଳିବ ନାହିଁ । ମୋ ଭକ୍ତ ତ ମୋ ପାଇଁ ହସି ହସି ପ୍ରାଣକୁ ମଧ୍ୟ ବଳିଦାନ କରିଦିଏ । ତୁମେ ଆଦୌ ଭୟ କର ନାହିଁ । ଏହାର ଉପାୟ ମଧ୍ୟ ମୁଁ ଭାବି ସାରିଛି । ତୁମେ ମୋତେ ଏଇ ଗାଡ଼ିଆରେ ଲୁଚ୍ଇ ଦିଅ ।" ରାମଦାସ ପ୍ରଥମେ ଟିକିଏ ସଂକୋଚରେ ପଡ଼ିଗଲେ । ତା'ପରେ ପ୍ରଭୁଙ୍କ ଆଜ୍ଞା ମାନି ଠାକୁରଙ୍କୁ ଗାଡ଼ିଆରେ ଲୁଚ୍ଇ ଦେଇ ଶଗଡ଼ରେ ବସି ବଳଦମାନଙ୍କୁ ଦଉଡ଼ାଇଲେ ।

ସେତେବେଳକୁ ପୂଜାରୀମାନେ ଆସି ରାମଦାସଙ୍କ ନିକଟରେ ପହଞ୍ଚିଗଲେ । କ୍ରୋଧରେ ସମସ୍ତେ ନିଆଁବାଣ ହୋଇଯାଇଥାନ୍ତି । 'ଧର ଧର, ମାର ମାର' କହି ଯାହା ହାତରେ ଯାହା ପଡ଼ିଲା, ସେଇଥିରେ ତାଙ୍କୁ ଆଖିବୁଜି ପିଟି ପକାଇଲେ । ତାଙ୍କର ଦେହ ସାରା ଖଣ୍ଡିଆ ଖାବରା ହୋଇ ନୋଳା ପଡ଼ିଗଲା । ଦେହରୁ ଧାର

ଧାର ରକ୍ତ ବହିଲା । ପୂଜାରୀମାନେ ପିଟି ପିଟି ତାଙ୍କୁ ଅଧାମରା କରିଦେଲେ । ତା' ଭିତରୁ ଜଣେ ବୃଦ୍ଧ ପୂଜାରୀ କହିଲେ—"ଆରେ ଭାଇ! ଏମିତି ଯାକୁ ବାଡିଆପିଟା କରି କି ଲାଭ? ଇଏ ମରିଗଲେ ବରଂ ଆମକୁ ଓଲଟା ପାପ ଲାଗିବ । ଏହାକୁ ମାରିବା ତ ଆମର ଲକ୍ଷ୍ୟ ନୁହେଁ, ତେଣୁ ପ୍ରଥମେ ଆମ ଠାକୁରଙ୍କୁ ଦେଖ କୁଆଡ଼େ ଗଲେ ।"

ତାଙ୍କ କଥା ମାନି ସମସ୍ତେ ପ୍ରଥମେ ଶଗଡ଼ରେ ଖୋଜିଲେ । ସେଠାରେ ନ ପାଇବାରୁ ଏଣେତେଣେ ଖୋଜିବାକୁ ଚେଷ୍ଟା କଲେ । ଜଣେ କହିଲା, ରାମଦାସ ଏଇ ଗାଡ଼ିଆ ଆଡୁ ଆସୁଥିବାର ମୁଁ ଲକ୍ଷ୍ୟ କରିଥିଲି । ଇଏ ଭଗବାନଙ୍କୁ ଗାଡ଼ିଆରେ ଲୁଚ୍ଛାଇ ଦେଇ ନାହିଁ ତ? ଚାଲ ଚାଲ ଦେଖିବା । ଗାଡ଼ିଆରେ ସେମାନେ ଭଗବାନଙ୍କୁ ପାଇଗଲେ । କେତେ ଜଣ ମିଶି ଭଗବାନଙ୍କୁ ଉଠାଇବାକୁ ଚେଷ୍ଟା କରିବାରୁ ସେ କରୁଣ ଚିତ୍କାର କଲେ । ପୂଜାରୀମାନେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଯେଉଁଠି ହାତ ମାରୁଥାନ୍ତି, ଭଗବାନ 'ଆଃ, ଓଃ' କହି ଛୁଇଁବାକୁ ମନା କରୁଥାନ୍ତି । ପୂଜାରୀମାନେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ନୋଳା ପଡ଼ିଥିବା ଦେଖି ଚକିତ ହେଲେ । ପଚ୍ଚାରିଲେ—ପ୍ରଭୁ! ଏ କ'ଣ ହେଲା? ତୁମ ଅଙ୍ଗରେ ଏତେ ଆଘାତ ଦେଲା କିଏ? ତା'ର ନାଆଁ କୁହ, ଆମେ ତାକୁ କଠୋର ଶାସ୍ତି ଦେବୁ । ଭଗବାନ କହିଲେ—"ଏ ସବୁ କଷ୍ଟର ସୂତ୍ରଧର ହେଉଛ ତୁମେମାନେ । ମୋ ଭକ୍ତ ରାମଦାସକୁ ତୁମେ ଯେତେ ମାରିଲ, ସବୁ ମାଡ଼ ମୋ ପିଠିରେ ବସିଛି । ତୁମମାନଙ୍କର ବୁଦ୍ଧିବିବେକ ବୋଲି କିଛି ନାହିଁ । ଟିକିଏ ଭାବିବା କଥା ଯେ ମୋ ଇଚ୍ଛା ବିନା ରାମଦାସ ଏତେ ସୁରକ୍ଷା ଭିତରୁ ମୋତେ କେମିତି ମନ୍ଦିରରୁ ଉଠାଇ ଆଣି ପାରିବ । ତୁମେମାନେ ମୋ ଭକ୍ତକୁ ବାଡ଼ିଆପିଟା କରି ମୋତେ ବହୁ କଷ୍ଟ ଦେଲ । ଏବେ ମୁଁ ଆଉ ତୁମ ସଙ୍ଗରେ ଯିବି ନାହିଁ । ମୁଁ ମୋ ଭକ୍ତ ସହିତ ତା' ଘରକୁ ଯିବି ।" ପୂଜାରୀମାନେ ଭୟ ଦେଖାଇ କହିଲେ—"ପ୍ରଭୁ! ତୁମେ ନ ଫେରିଲେ ଆମେ ପରିବାର ସମେତ ସମସ୍ତେ ଏଇଠି ତୁମ ନାଆଁରେ ପ୍ରାଣ ଛାଡ଼ିଦେବୁ । ତୁମକୁ ବ୍ରହ୍ମହତ୍ୟାର ପାପ ଲାଗିବ ।" ଭଗବାନ ଟିକିଏ ମୁରୁକି ହସି କହିଲେ—"ମୋର ସେଥିପାଇଁ ଭୟ ନାହିଁ । ମହାପ୍ରଳୟରେ ଜଗତ ସଂହାର କଲାବେଳେ ତୁମ ଭଳି ଏମିତି ଅଗଣିତ ବ୍ରାହ୍ମଣ ମରି ଯାଉଛନ୍ତି, ମୋତେ ତାହାର ପାପ ଛୁଇଁ ପାରୁ ନାହିଁ । ମୁଁ ସେଥିରୁ ମୁକୁଳିବାର ଉପାୟ ଜାଣିଛି । ଯାହା କଲେ ବି ମୁଁ ଆଉ ତୁମମାନଙ୍କ ସାଥିରେ ଯିବି ନାହିଁ ।"

ବ୍ରାହ୍ମଣମାନେ ସେମାନଙ୍କ ଜୀବିକା ବୁଡ଼ିଯିବା ଭୟରେ ଜନ୍ଦାଜଟା କଲେ। ଭଗବାନ ସଦୟ ହୋଇ କହିଲେ—"ତୁମ ମନୋବାଞ୍ଛା ମଧ୍ୟ ପୂରଣ ହେବ। ତୁମର ଜୀବିକା ପାଇଁ ମୁଁ ଉପାୟ ଭାବି ସାରିଛି। ରାମଦାସ ମୋ ଓଜନର ସୁନା ତୁମକୁ ତଉଲିଦେବ। ଏହାଦ୍ୱାରା ତୁମ ଜୀବନ ସୁଖମୟ ହୋଇଯିବ।" ବ୍ରାହ୍ମଣମାନେ ଲୋଭରୂପୀ ପିଶାଚିନୀର କବଳିତ ହୋଇଗଲେ। ସେମାନେ ଭାବିଲେ—"କିଛି ଅସୁବିଧା ନାହିଁ। ଠାକୁରଙ୍କର ଆଉ ଗୋଟିଏ ମୂର୍ତ୍ତି ଗଢ଼ି ମନ୍ଦିରରେ ବସାଇଦେବା। ଏତେ ସୁନା ମିଳିଯିବ ଯେ ଆମର ପୁଅନାତିମାନେ ଅନେକ ପିଢ଼ି ପର୍ଯ୍ୟନ୍ତ ଖାଇଲେ ମଧ୍ୟ ସରିବ ନାହିଁ।" ପୂଜାରୀମାନଙ୍କ ମନରେ ଠାକୁରଙ୍କ ପ୍ରତି ବିଶେଷ ସ୍ନେହ ଶ୍ରଦ୍ଧା ନ ଥିଲା, ସେ ତାଙ୍କୁ କେବଳ ଜୀବିକା ଉପାର୍ଜନର ସାଧନରୂପେ ଦେଖୁଥିଲେ। ତେଣୁ ଭଗବାନ କୌଶଳ କରି ତାଙ୍କ ପାଖରୁ ଖସି ପଳାଇବାକୁ ଚେଷ୍ଟା କଲେ।

ବ୍ରାହ୍ମଣମାନଙ୍କୁ ସୁନା ଦେବାର ସର୍ତ୍ତ ଶୁଣି ରାମଦାସ ଏକାନ୍ତରେ ଠାକୁରଙ୍କୁ ପଚାରିଲେ—"ପ୍ରଭୁ! ମୋ ଭଳି ଦରିଦ୍ର ଘରେ ଏତେ ସୁନା କୁଆଡ଼ୁ ଆସିବ?" ଠାକୁର କହିଲେ—"ତୁମେ ଚିନ୍ତା କରୁଛ କାହିଁକି? ତୁମ ପତ୍ନୀର ନାକଫୁଲଟିକୁ ନିକିତରେ ଗୋଟିଏ ପଟେ ରଖିଦେବ। ମୁଁ ମୋ ଯୋଗମାୟା ବଳରେ ହାଲୁକା ହୋଇଯିବି।"

ବ୍ରାହ୍ମଣମାନେ ସୁନା ପାଇବା ଆଶାରେ ରାମଦାସଙ୍କ ସଙ୍ଗରେ ତାଙ୍କ ଘରକୁ ଗଲେ। ରାମଦାସ ସେମାନଙ୍କୁ ଜଳପାନ ପାଇଁ ବାଧ୍ୟ କରିବାରୁ ସେମାନେ କହିଲେ ପ୍ରଥମେ ଦେଣନେଣ କାମଟା ସାରିଦିଅ; ପରେ ଖିଆପିଆ କଥା ବିଚାର କରିବା। ଏତିକି କହି ବ୍ରାହ୍ମଣମାନେ ଗୋଟିଏ ବିରାଟ ତରାଜୁ ନେଇ ଆସିଲେ। ତରାଜୁର ଗୋଟିଏ ପଟେ ରଣଛୋଡ଼ ଭଗବାନଙ୍କୁ ବିରାଜମାନ କରାଇଲେ; ଅନ୍ୟ ପାଖରେ ରାମଦାସ ତାଙ୍କ ସ୍ତ୍ରୀର ନାକଫୁଲଟି ରଖିଦେଲେ। ବଡ଼ ଆଶ୍ଚର୍ଯ୍ୟର କଥା ଯେ ଭଗବାନ ନାକଫୁଲଠାରୁ ମଧ୍ୟ ହାଲୁକା ହୋଇଗଲେ। ତାଙ୍କ ପଟର ପଲାଟି ଉପରକୁ ଉଠିଗଲା। ବ୍ରାହ୍ମଣମାନେ ତରାଜୁରେ ଦୋଷ ଅଛି ବୋଲି ଭାବି ଅଦଳବଦଳ କଲେ। ନାକଫୁଲଟିକୁ ଏପଟକୁ ଆଣି ଭଗବାନଙ୍କୁ ସେପଟେ ବସାଇଲେ। କିନ୍ତୁ ନିର୍ଣ୍ଣୟରେ ପରିବର୍ତ୍ତନ ହେଲା ନାହିଁ। ନାକଫୁଲଟିର ଓଜନ ଅଧିକ ହେଲା। ଏସବୁ ଠାକୁରଙ୍କର ବିଚିତ୍ର ଲୀଳା ଥିଲା! ଥରେ ଦ୍ୱାରକାପୁରୀର ସବୁ ରାଣୀଙ୍କର ଆଭୂଷଣ ମିଶି ମଧ୍ୟ ଭଗବାନଙ୍କର ସମତୁଲ ହୋଇ ପାରି

ନ ଥିଲା, କିନ୍ତୁ ଆଜି ରାମଦାସଙ୍କ ଘରେ ରହିବା ପାଇଁ ଭଗବାନ ତାଙ୍କ ସ୍ତ୍ରୀର ନାକଫୁଲଠାରୁ ମଧ୍ୟ ହାଲୁକା ହୋଇଗଲେ ।

ଏ ଦୃଶ୍ୟ ଦେଖି ବ୍ରାହ୍ମଣମାନଙ୍କର ହଂସା ଉଡ଼ିଗଲା । ସେମାନେ ଯଥେଷ୍ଟ ସୁନା ପାଇବା ଆଶାରେ ଯେଉଁ ସର୍ତ୍ତରେ ରାଜି ହୋଇଥିଲେ, ତାହା ତାଙ୍କ ପାଇଁ ଅତି ନିରାଶାଜନକ ହୋଇଗଲା । ସେମାନେ ଠାକୁରଙ୍କୁ ବି ହାତଛଡ଼ା କରିଦେଲେ, ଏଣେ ସୁନା ବି ମିଳିଲା ନାହିଁ । ସେମାନଙ୍କ ପାଖରେ ଅନ୍ୟ କୌଣସି ଉପାୟ ନ ଥିଲା । ବିଷାଦ ମନରେ ଲଜ୍ଜିତ ହୋଇ ସେମାନେ ନିଜ ନିଜର ଘରକୁ ଫେରିଗଲେ । ଫେରିବା ବାଟରେ କୁହାକୁହି ହେଉଥାନ୍ତି—"ଏ କାଙ୍ଗାଳ ଘରେ ଠାକୁରଙ୍କୁ କି ସୁଖ ମିଳିବ କେଜାଣି! କିନ୍ତୁ କ'ଣ କରାଯିବ? ଲାଗୁଛି, ଠାକୁରଙ୍କୁ ରାମଦାସ ଗୁଣି କରିଦେଇଛି । ନହେଲେ ସେ ଏମିତି କରିଥାନ୍ତେ କାହିଁକି?"

ରାମଦାସଙ୍କ ପ୍ରେମ ଡୋରିରେ ବାନ୍ଧି ହୋଇ ଠାକୁର ତାଙ୍କ ଘରେ ସେବାପୂଜା ଗ୍ରହଣ କଲେ । ବାମନ ଭଗବାନ ବଳିକୁ ବରୁଣପାଶରେ କିଛି ସମୟ ପାଇଁ ବାନ୍ଧିଦେଇ ଯେପରି ସବୁଦିନ ପାଇଁ ତାଙ୍କ ପ୍ରେମବନ୍ଧନରେ ବାନ୍ଧି ହୋଇ ରହିଥିଲେ, ସେହିପରି ଶ୍ରୀଦ୍ୱାରକାନାଥ ଆଜି ରାମଦାସଙ୍କ ପିଠିରେ ବସିଥିବା ମାଡ଼କୁ ନିଜ ଉପରକୁ ନେଇ ତାଙ୍କୁ ବହୁମାନ କଲେ । ରାମଦାସଙ୍କୁ ତ କିଛି ଦିନ ପାଇଁ ଦୈହିକ କଷ୍ଟ ଭୋଗିବାକୁ ପଡ଼ିଥିଲା, କିନ୍ତୁ ରଣଛୋଡ଼ ଭଗବାନଙ୍କ ଶ୍ରୀଅଙ୍ଗରେ ଆଜି ମଧ୍ୟ ମଲମ ଲଗାଯାଉଛି । ଏହି ଲୀଳା କରି ସେ ତାଙ୍କ ନାମ ମାଳାରେ ଆଉ ଗୋଟିଏ ନାମ ଯୋଡ଼ିଦେଲେ । ତାଙ୍କ ନାମ ରଖାଗଲା 'ଆୟୁଧ କ୍ଷତ' । ପୂଜାରୀମାନେ ନାନା ପ୍ରକାର ଆୟୁଧରେ ପ୍ରହାର କରି କ୍ଷତ ବିକ୍ଷତ କରିଦେଇ ଥିବାରୁ ସେ ଆୟୁଧ କ୍ଷତ ନାମ ଧାରଣ କରି ଆଜି ମଧ୍ୟ ଭକ୍ତବାତ୍ସଲ୍ୟ ଗୁଣକୁ ପ୍ରକାଶିତ କରୁଛନ୍ତି । ଭକ୍ତକୁ ସେ କେତେ ଯେ ଭଲ ପାଆନ୍ତି, ଏହି ଲୀଳାରୁ ତାହା ସ୍ପଷ୍ଟ ବିଦିତ ହୁଏ । ଏହି ନାମଟି ହୁଏତ ଭାବୁକ ଭକ୍ତଜନଙ୍କ ହୃଦୟରେ କଷ୍ଟ ଦେଉଥିବ, କିନ୍ତୁ ଭକ୍ତ ଓ ଭଗବାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନ ଥିବା କଥାଟିକୁ ସୂଚିତ କରିବା ପାଇଁ ସେ ଭକ୍ତ ରାମଦାସଙ୍କ ପିଠିରେ ବସିଥିବା ମାଡ଼କୁ ନିଜେ ସହିଗଲେ, ନଚେତ୍ ତାଙ୍କୁ ମାରିବା ଶକ୍ତି କାହାର ବା ଅଛି? ଏହା ପ୍ରଭୁଙ୍କ ଭକ୍ତବତ୍ସଳତାର ପରିଚୟ ।





ଭକ୍ତବତ୍ସଳ ଜଗଦ୍‌ଗୁରୁ ଭଗବାନ ଶ୍ରୀକୃଷ୍ଣ

"ମୁଁ ସେହି ଭକ୍ତଜନଙ୍କୁ ବନ୍ଦନା କରୁଛି, ଯେଉଁମାନେ ମୁକ୍ତିକୁ ମଧ୍ୟ ଖାତିରି କରନ୍ତି ନାହିଁ। ମୁଁ ନିତ୍ୟ ସେହି ଭକ୍ତି ଯାଚନା କରୁଛି, ଯେଉଁ ଭକ୍ତି ପ୍ରତି ପଦକ୍ଷେପରେ ବଢ଼ି ଚାଲୁଥିବା ଆନନ୍ଦର ସ୍ରୋତ ପ୍ରବାହିତ କରେ ଏବଂ ଯାହାର ଆଶ୍ରୟ ନେଇ ଭକ୍ତଜନ ସମସ୍ତଙ୍କର ଶିରୋମଣି ଭଗବାନଙ୍କୁ ମଧ୍ୟ ନିଜ ବଶରେ ରଖି ପାରନ୍ତି। ମୁଁ ସେହି ଶରଣାଗତବତ୍ସଳ ଶ୍ରୀହରିଙ୍କୁ ନିତ୍ୟ ଭଜୁଛି, ଯାହାଙ୍କୁ ସେହି ଭକ୍ତି ଅତ୍ୟନ୍ତ ପ୍ରିୟ ଲାଗେ।"

# ସାଧୁସେବୀ ତ୍ରିଲୋଚନ

ଭକ୍ତବାଞ୍ଛାକଳ୍ପତରୁ ଭଗବାନ ଭକ୍ତ ହୃଦୟର ସତ୍ ଅଭିଳାଷକୁ ପୂର୍ଣ୍ଣ କରିବାକୁ ସଦା ଲାଳାୟିତ ରହନ୍ତି । ପିତାମାତା ଯେପରି ଆଜ୍ଞାକାରୀ ପୁତ୍ରର ମନୋବାଞ୍ଛା ପୂର୍ଣ୍ଣ କରିବାକୁ ଚେଷ୍ଟା କରନ୍ତି, ଭଗବାନଙ୍କ ସ୍ୱଭାବ ଠିକ୍ ସେହିପରି । ଭକ୍ତ ହେଉଛି ତାଙ୍କର ଆଜ୍ଞାକାରୀ ପୁତ୍ର । ତା' ମନରେ କେବେ ବି ଏଭଳି କୌଣସି ଅଶୁଭ ସଙ୍କଳ୍ପ ଉଠେ ନାହିଁ, ଯାହା ପୂର୍ଣ୍ଣ କରିବାକୁ ଭଗବାନଙ୍କୁ କୌଣସି ପ୍ରକାର ଆପତ୍ତି ହେବ । କେଉଁ ଉପାୟରେ ଭଗବାନ ପ୍ରସନ୍ନ ହେବେ, ତାହା ସେ ପ୍ରତିକ୍ଷଣ ଚିନ୍ତା କରୁଥାଏ । ଯେତେବେଳେ ତାକୁ ଏ ରହସ୍ୟ ଜଣା ପଡ଼ିଯାଏ ଯେ ଭଗବାନ ତାଙ୍କ ଭକ୍ତଜନଙ୍କ ସେବାରେ ଅଧିକ ପ୍ରସନ୍ନ ହୁଅନ୍ତି, ସେତେବେଳେ ସେ ଭକ୍ତଜନଙ୍କ ସେବାକୁ ଜୀବନର ଅଭିନ୍ନ ଅଙ୍ଗ ରୂପେ ଅଙ୍ଗୀକାର କରିନିଏ ।

ଏହିଭଳି ଭକ୍ତଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ତ୍ରିଲୋଚନ ଦାସ । ଜ୍ଞାନଦେବଙ୍କର ଶିଷ୍ୟଙ୍କ ମଧ୍ୟରେ ଏହାଙ୍କର ଖ୍ୟାତି କିଛି କମ୍ ନ ଥିଲା । ଏହାଙ୍କର ଭକ୍ତିଜ୍ୟୋତି ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପ୍ରଭା ଭଳି ବିଚ୍ଛୁରିତ ହୋଇ ସମଗ୍ର ଜଗତକୁ ଆଲୋକିତ କରି ପାରିଥିଲା । ପ୍ରକୃତରେ ଏଭଳି ମହନୀୟ ଭକ୍ତଙ୍କ ଚରିତ୍ର ହିଁ ଶ୍ରବଣୀୟ । ଭଗବାନଙ୍କ ଚରିତ୍ର ଭଳି ଭକ୍ତଙ୍କ ଚରିତ୍ର ମଧ୍ୟ ଜୀବକୁ ପ୍ରେମରସରେ ପ୍ଲାବନ କରିବାରେ ସମର୍ଥ । ଯେଉଁ କଥା କୃଷ୍ଣକଥା ସହିତ ସଂଶ୍ଳିଷ୍ଟ ନୁହେଁ, ତାହାକୁ କଥାରେ ଗଣନା କରିବା ବ୍ୟର୍ଥ । ସାଂସାରିକ ବିଷୟ ଚର୍ଚ୍ଚାରେ ମନୁଷ୍ୟର ସମୟ ଅପବ୍ୟୟ ହୋଇଥାଏ । କିନ୍ତୁ ଭକ୍ତଙ୍କ ଚରିତ୍ର ଚର୍ଚ୍ଚା ଆଲୋଚନାରେ ଜୀବର ସନ୍ତାପିତ ପ୍ରାଣ ଶୀତଳ ହୁଏ ।

ଭକ୍ତ ତ୍ରିଲୋଚନଙ୍କ ହୃଦୟରେ ବାଲ୍ୟକାଳରୁ ହିଁ ପ୍ରଭୁଭକ୍ତି ଅଙ୍କୁରିତ ହୋଇଥିଲା । ତା' ସହିତ ତାଙ୍କର ଗୋଟିଏ ବିଶେଷ ଗୁଣ ଥିଲା ସାଧୁସେବା । ସେ ନିଜକୁ ସର୍ବଦା ସନ୍ଥଜନଙ୍କ ଚରଣସେବକ ମନେ କରୁଥିଲେ । ପ୍ରଭୁଙ୍କ ନିକଟରେ ସବୁବେଳେ ଗୁହାରି କରୁଥିଲେ—"ହେ ମଧୁକୈଟଭ ବିନାଶକ! ହେ ଲୋକନାଥ! ମୋ ଉପରେ ତୁମର ଏତିକି ଅନୁଗ୍ରହ ଥାଉ ଯେ ତୁମେ ମୋତେ ତୁମ ଦାସାନୁଦାସ ରୂପରେ ମନେ ପକାଉଥାଅ ଏବଂ ସାଧୁସେବାର ସୁଯୋଗ ଦେଉଥାଅ । ଏହା ହିଁ ମୋ ଜନ୍ମର ସର୍ବଶ୍ରେଷ୍ଠ ଫଳ ଏବଂ ମୋ ଜୀବନର ଚରମ ଅଭୀଷ୍ଟ ।" ଏପରି ସାଧୁଭକ୍ତି ଯୋଗୁଁ ସେ ଶ୍ରେଷ୍ଠ ପଦ ଲାଭ କରିଥିଲେ । ଏପରିକି ତାଙ୍କ ଗୃହରେ ଚାକର ରୂପେ ଭଗବାନ ସେବା କରି ଆନନ୍ଦ ଲାଭ କରି ପାରିଥିଲେ ।

ଭକ୍ତବର ତ୍ରିଲୋଚନ ବୈଶ୍ୟକୁଳରେ ଜନ୍ମ ହୋଇଥିଲେ ସୁଦ୍ଧା ସେ ଆପଣା କୁଳର ସେବା ନ କରି ଅଚ୍ୟୁତଗୋତ୍ରୀୟ ବୈଷ୍ଣବଜନଙ୍କ ସେବାରେ ମନପ୍ରାଣ ଢାଳି ଦେଇଥିଲେ । ସେ ଭଲଭାବେ ଜାଣିଥିଲେ ଯେ ଦେହର ଗୋତ୍ର ଓ କୁଳ ତ କେବଳ ଦେହ ପର୍ଯ୍ୟନ୍ତ ସୀମିତ, କିନ୍ତୁ ପ୍ରତ୍ୟେକ ଜୀବ ଅଚ୍ୟୁତଙ୍କର ଆପଣାର ହୋଇଥିବାରୁ ଅଚ୍ୟୁତ ଗୋତ୍ର ହେଉଛି ସମସ୍ତଙ୍କ ପାଇଁ ଚିରନ୍ତନ । ଅହର୍ନିଶ ସାଧୁସେବା କରୁଥିଲେହେଁ ସେତିକିରେ ତାଙ୍କ ମନ ସନ୍ତୁଷ୍ଟ ନ ଥିଲା । ସେ ଯେଉଁଭଳି ସେବା କରିବାକୁ ଚାହୁଁଥିଲେ କରି ପାରୁ ନ ଥିଲେ । କାରଣ ଘରେ କେବଳ ପତିପତ୍ନୀ ଦୁଇ ପ୍ରାଣୀ ଥିଲେ । ତାଙ୍କ ପତ୍ନୀ ଅତ୍ୟନ୍ତ ଧର୍ମପରାୟଣା ଥିଲେ ସତ, କିନ୍ତୁ ଜଣେ ଲୋକ କେତେ ବା ସେବା କରିବେ? ସେଥିପାଇଁ ତ୍ରିଲୋଚନଙ୍କ ମନରେ ଅନେକ ଦିନରୁ ଗୋଟିଏ ଅଭିଳାଷ ରହିଥିଲା ଯେ ଯଦି ସାଧୁସନ୍ଥଙ୍କ ସେବା ପାଇଁ ତାଙ୍କୁ ଜଣେ ଭଲ ଚାକର ମିଳି ଯାଆନ୍ତା, ସେ ଭଲଭାବେ ସାଧୁସେବା କରି ପାରନ୍ତେ; ତାଙ୍କୁ ଆହୁରି ଆନନ୍ଦ ମିଳନ୍ତା ।

ଭଗବାନ ତ ଅନ୍ତର୍ଯାମୀ । ଭକ୍ତର ହୃଦୟ ହେଉଛି ତାଙ୍କର ନିତ୍ୟ ନିବାସ ସ୍ଥାନ । ତେଣୁ ଭକ୍ତ ହୃଦୟରେ ଅଙ୍କୁରିତ ଏହି ଭାବନାରୂପୀ ଭାଷା ତାଙ୍କ କାନରେ ପଡ଼ିବାକୁ ବିଳମ୍ବ ହେଲା ନାହିଁ । ସାଧୁସେବା କରିବାକୁ ତାଙ୍କର ମନ ଆତୁର ହୋଇ ଉଠିଲା । ସେ ଆଉ କାଳବିଳମ୍ବ ନ କରି ମାୟାରେ ଚାକର ବେଶ ସାଜି ଯାଇ ପହଞ୍ଚିଲେ ତ୍ରିଲୋଚନଙ୍କ ଦ୍ୱାରଦେଶରେ । ଆଣ୍ଠୁ ଉପରକୁ ଛିଣ୍ଡା ଲୁଗା ଖଣ୍ଡିଏ ପିନ୍ଧିଥାନ୍ତି । କାନ୍ଧରେ ପକାଇ ଥାନ୍ତି ଜାଲ ଭଳି ଛିଣ୍ଡା ଗାମୁଛାଟିଏ । ପାଦରେ ଛିଣ୍ଡା ଚପଲ । ଦେହରେ ପରସ୍ତେ ମଳି ଜମିଥାଏ । ଲାଗୁଥାଏ ଯେମିତି କେତେଦିନ ହେଲା ସ୍ନାନ କରି ନାହାନ୍ତି । ପ୍ରଭୁଙ୍କ ରୂପରୁ ସେ ଜଣେ ମାଗିଖିଆ ଭଳି ଲାଗୁଥାନ୍ତି । ତଥାପି ତାଙ୍କର ଅଙ୍ଗକାନ୍ତି ଏହି ମଳିନ ବସ୍ତ୍ରଦ୍ୱାରା ଆଚ୍ଛାଦିତ ହେଉ ନ ଥାଏ । ରଢ଼ ନିଆଁ ଉପରେ ପରସ୍ତେ ପାଉଁଶ ଜମିଗଲେ ମଧ୍ୟ ଭିତରୁ ଯେପରି ନିଆଁର ଉତ୍ତାପ ଓ ଦୀପ୍ତି ବେଳେବେଳେ ଝଲକି ଉଠେ, ସେହିପରି ପ୍ରଭୁଙ୍କ ଅଙ୍ଗର ଦିବ୍ୟତା ମଇଳା ଛିଣ୍ଡା ଲୁଗା ଭିତରୁ ଫୁଟି ବାହାରୁଥିଲା । ଭଗବାନ ତାହାକୁ ଲୁଚାଇବାକୁ ଅନେକ ଯତ୍ନ କରୁଥାନ୍ତି, କିନ୍ତୁ ତ୍ରିଭୁବନସୁନ୍ଦରଙ୍କ ଅଙ୍ଗର ଦିବ୍ୟ ଆଭା କେମିତି ବା ଗୁପ୍ତ ରହି ପାରିବ?

ଭକ୍ତ ତ୍ରିଲୋଚନ ଠାକୁର ସେବା ସାରି ଦାଣ୍ଡକୁ ବାହାରି ଦେଖିଲା ବେଳକୁ ତାଙ୍କର ଦୃଷ୍ଟି ପ୍ରଥମେ ଛଦ୍ମ ବେଶଧାରୀ ପ୍ରଭୁଙ୍କ ଉପରେ ପଡ଼ିଲା । ତାଙ୍କର ମନ

ଏଭଳି ଶ୍ୟାମଳ ବର୍ଣ୍ଣର ପିଲାଟିକୁ ଦେଖି ଏତେ ଆକୃଷ୍ଟ ହୋଇଗଲା ଯେ ସେ ଆଉ ତା'ଠାରୁ ଦୃଷ୍ଟି ଫେରାଇ ପାରିଲେ ନାହିଁ। ତାଙ୍କ ନିକଟକୁ ଯାଇ ସେ ଅତି ଆଦରରେ ପଚ୍ଚାରିଲେ—"ବାବୁ! ତୋର ନାଆଁ କ'ଣ? ତୋ ଘର କେଉଁଠି? ତୁ ଏମିତି ବୁଲୁଛୁ କାହିଁକି? ତୋର ପିତା-ମାତା କେହି ନାହାନ୍ତି କି?" ତ୍ରିଲୋଚନଙ୍କ ସ୍ୱରରେ ସଭ୍ୟତା ଓ କୋମଳତାର ସୌନ୍ଦର୍ଯ୍ୟ ଭରି ରହିଥିଲା। ତାଙ୍କ କଥାରୁ ସେ ଜଣେ ଭଦ୍ରବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା ହେଲା ଭଳି ଲାଗୁଥିଲେ। କାହିଁକି ବା ନ ହୁଅନ୍ତେ? ସେ ତାଙ୍କ ଜୀବନରେ ସମସ୍ତଙ୍କୁ ସମ୍ମାନ ଦେଇ ନିଜେ ଅମାନୀ ରହିବାରେ ଅଭ୍ୟସ୍ତ ଥିଲେ। ତା' ଛଡ଼ା ଭଗବାନଙ୍କ କୃପାରୁ ତାଙ୍କ ମୁଖରୁ ଏଭଳି ସଭ୍ୟ ବଚନ ବାହାରିଲା, ନଚେତ୍ ପ୍ରଭୁଙ୍କର ପ୍ରକୃତ ପରିଚୟ ପାଇବା ପରେ, ତାଙ୍କ ପ୍ରତି ପ୍ରୟୋଗ କରିଥିବା 'ରେ, ତୁ' ଶବ୍ଦ ଓ ଅଶିଷ୍ଟ ବ୍ୟବହାର ତାଙ୍କୁ କଷ୍ଟ ଦେଇଥାନ୍ତା।

ଭକ୍ତ ତ୍ରିଲୋଚନ ଛଦ୍ମ ଚାକର ବେଶଧାରୀ ଭଗବାନଙ୍କର ଦୟନୀୟ ଦଶା ଦେଖି ଅନୁମାନପୂର୍ବକ ଯାହା ପଚାରିଲେ, ଭଗବାନ ସେସବୁକୁ ମୁଣ୍ଡ ହଲାଇ ସ୍ୱୀକାର କଲେ। କହିଲେ—"ଭକ୍ତରାଜ! ତୁମର ଅନୁମାନ ଏକବାରେ ସତ୍ୟ। ମୋର କୌଣସି ନିର୍ଦ୍ଦିଷ୍ଟ ନାମ ନାହିଁ ଏବଂ ମୋର ପିତା-ମାତା କେହିହେଲେ ନାହାନ୍ତି। ଘର ବୋଲି ସେମିତି କୌଣସି ସ୍ଥାୟୀ ଜାଗା ନାହିଁ। ଯେଉଁଠି ଯାହାର ଭାବ ଦେଖୁଛି, ସେଠାରେ ଡେରା କରି ରହୁଛି।" ଭଗବାନଙ୍କ କଥା ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ। ଯିଏ ସମସ୍ତଙ୍କର ପିତା-ମାତା, ତାଙ୍କର ପିତା-ମାତା ପୁଣି କିଏ ହୋଇ ପାରିବ? ଭଗବାନ ଯଶୋଦାନନ୍ଦନ ଓ ଦେବକୀନନ୍ଦନ ନାମରେ ଅଭିହିତ ହୋଇ ଭକ୍ତଙ୍କୁ ସମ୍ମାନ ଦିଅନ୍ତି। ଏହା ତାଙ୍କର ଏକପ୍ରକାର ଖେଳମାତ୍ର।

ଛଦ୍ମ ବେଶଧାରୀ ଭଗବାନଙ୍କର ଗୂଢ଼ ବଚନ ତ୍ରିଲୋଚନ ବୁଝି ପାରିଲେ ନାହିଁ। ସେ ଭାବିଲେ, ପିଲାବେଳେ ବୋଧହୁଏ ଏହାର ବାପା-ମାଆ ପରଲୋକକୁ ଚାଲି ଯାଇଛନ୍ତି। ତେଣୁ ଇଏ ଅନାଥ ହୋଇ ଏମିତି ବୁଲୁଛି। ସେ ତାଙ୍କୁ ଅତି ସ୍ନେହରେ ପଚାରିଲେ—"ତୁ କ'ଣ ଚାକିରି ଖୋଜି ବୁଲୁଛୁ? ତୁ ଆମ ଘରେ ରହିବୁ? ସନ୍ଥସେବା ପାଇଁ ମୋର ଜଣେ ଲୋକ ଦରକାର ଥିଲା।" ଭଗବାନ ଭକ୍ତ ମୁଖରୁ ଖାଲି ଏତିକି ଶୁଣିବାକୁ ଚାହୁଁଥିଲେ। ସେ ଉତ୍କଣ୍ଠାର ସହ କହିଲେ—"ହଁ, ଗୋସେଇଁ! ତୁମେ ଠିକ୍ ଅନୁମାନ କରିଛ। ମୁଁ ଚାକିରି କରିବାକୁ ଚାହେଁ। କିନ୍ତୁ ମୋ ସ୍ୱଭାବ ସଙ୍ଗେ ମାଲିକର ସ୍ୱଭାବ ମେଳ ଖାଇବା ଟିକେ କଠିନ।

ନହେଲେ ମୋର ଆଉ କିଛି ଅସୁବିଧା ନାହିଁ।'' ଭକ୍ତ ତ୍ରିଲୋଚନ ଟିକିଏ ବିସ୍ମୟଭରା କଣ୍ଠରେ ପଚାରିଲେ—''ତୋ ସ୍ୱଭାବକୁ ଅନ୍ୟମାନଙ୍କର ସ୍ୱଭାବ ମେଳ ନ ଖାଇବାର କାରଣ କ'ଣ ମୋତେ କହି ପାରିବୁ?'' ସେ କହିଲେ—''ଆଉ କିଛି ଅସୁବିଧା ନାହିଁ ଯେ, ଖାଲି ମୋର ଖୋରାକ ଟିକିଏ ବେଶୀ। ଥରକେ ପାଞ୍ଚ ସାତ ମାଣେ ଚାଉଳର ଭାତ ନ ଖାଇଲେ ମୋ ପେଟ ପୂରେ ନାହିଁ। ମୋର ଏଇ ବଦଭ୍ୟାସ ଯୋଗୁଁ ଲୋକେ ମୋ ଉପରେ ବିଗିଡ଼ି ଯାଆନ୍ତି, ମୋତେ ରଖି ପାରନ୍ତି ନାହିଁ।''

ତ୍ରିଲୋଚନ କହିଲେ—''ଓଃ! ଏଇ କଥା! ଆଦୌ ଚିନ୍ତା ନାହିଁ। ଆମ ଘରେ ରହ, ତୋର କିଛି ଅସୁବିଧା ହେବ ନାହିଁ। ପ୍ରଭୁଙ୍କ କୃପା ଓ ସାଧୁସନ୍ଥଙ୍କ ଆଶୀର୍ବାଦରୁ ଆମର କିଛି ଊଣା ନାହିଁ। ଯେତେ ଇଚ୍ଛା ପେଟ ଭରି ପ୍ରସାଦ ପାଇବୁ। କିନ୍ତୁ ସତ କହିଲୁ, ତୁ କିଛି ସେବା ଶିଖିଛୁ କି ଖାଲି ଖାଇବା ଜାଣିଛୁ?'' ଭଗବାନ କହିଲେ—''ସେବା ପାଇଁ ଚିନ୍ତା ନାହିଁ। ମୁଁ ଘାସ କଟାଠାରୁ ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସବୁ କାମ ଜାଣିଛି। ଚାରିବର୍ଣ୍ଣର ସେବା-ଶୁଶ୍ରୂଷାର ବିଧି-ବିଧାନ ମୋତେ ବେଶ୍ ଜଣା। ମୁଁ ଯେଉଁ କାର୍ଯ୍ୟରେ ଲାଗିଯାଏ, ସେଥିରେ ମନପ୍ରାଣ ଲଗାଇଦିଏ।'' ତ୍ରିଲୋଚନ କହିଲେ—''ଆମର ଆଉ କିଛି ସେବା ନାହିଁ। ଆମ ଘରକୁ ସବୁବେଳେ ସାଧୁସନ୍ଥ ଆସନ୍ତି। ସାଧୁଙ୍କ ସେବାରେ ଟିକିଏ ଅଧିକ ସାବଧାନ ରହିବାକୁ ହେବ। ତାଙ୍କ ମନ ଜାଣି ସେବା କଲେ ଯାଇ ସେମାନେ ପ୍ରସନ୍ନ ହେବେ। ତୁ କରି ପାରିବୁ ତ? ପ୍ରଭୁ କହିଲେ—''ସାଧୁ ସେବା? ଏହା ତ ମୋର ନିତିଦିନିଆ କାମ। ପିଲାଟି ଦିନରୁ ମୁଁ ଆଉ କରିଛି ବା କ'ଣ? ଭକ୍ତଙ୍କ ସେବା କରି କରି ମୋର ଜୀବନ ବିତିଛି। ମୋ ପାଇଁ ଏହା କିଛି ନୂଆ କଥା ନୁହେଁ। ବଢ଼ିଆ ହେଲା। ମୋତେ ମୋ ମନଲାଖି ସେବା ମିଳିଗଲା। ଏଥର ମୁଁ ତୁମର କ୍ରୀତଦାସ ହୋଇଗଲି।''

ତ୍ରିଲୋଚନ ପଚାରିଲେ—''ଆଚ୍ଛା, ତୋର ନାଆଁ କ'ଣ କହିଲୁ?'' ସେ କହିଲେ—''ଏମିତି ତ ଲୋକେ କେତେ ଜଣ ଡାକନ୍ତି, କିନ୍ତୁ ମୋର ପ୍ରସିଦ୍ଧ ନାଆଁ ହେଲା 'ଅନ୍ତର୍ଯାମୀ'। ଏଭଳି ଦିବ୍ୟ ନାମ ଶୁଣି ଭକ୍ତ ତ୍ରିଲୋଚନ ସହର୍ଷ କଣ୍ଠରେ କହିଲେ—''ବାଃ! ମୋତେ ତୋ ଭଳି ସେବକଟିଏ ଲୋଡ଼ା ଥିଲା। ଲାଗୁଛି, ମୋ ମନ ଜାଣି ଭଗବାନ ତୋତେ ମୋ ପାଖକୁ ପଠାଇ ଦେଲେ। ତୁ ଅନ୍ତର୍ଯାମୀ ହୋଇଥିବାରୁ ନିଶ୍ଚୟ ସାଧୁସନ୍ଥଙ୍କ ଅନ୍ତର କଥା ଜାଣି ସେବା-ଶୁଶ୍ରୂଷା ବଳରେ ସମସ୍ତଙ୍କୁ ପ୍ରସନ୍ନ କରିଦେବୁ।''

ଅନ୍ତର୍ଯାମୀର ହାତ ଧରି ଭକ୍ତ ତ୍ରିଲୋଚନ ଆଦରରେ ଘରକୁ ନେଇଗଲେ। ତାହାର ପ୍ରଥମ ଦର୍ଶନରେ ତ୍ରିଲୋଚନଙ୍କ ସର୍ବାଙ୍ଗରେ ଶିହରଣ ଖେଳି ଯାଇଥିଲା। ଏବେ ପ୍ରଥମ ସ୍ପର୍ଶରେ ସେ ଏକ ଅଦ୍ଭୁତ ଆନନ୍ଦ ଅନୁଭବ କଲେ। ଭଗବାନ ମଧ୍ୟ ଭକ୍ତର ସ୍ପର୍ଶ ପାଇ ନିଜକୁ ଧନ୍ୟ ମଣିଲେ। ତ୍ରୈଲୋକନାଥ ଭଗବାନ ହୋଇଗଲେ ଭକ୍ତର ଚାକର।

ଲୋକେ ସାଧାରଣତଃ ଚାକରମାନଙ୍କୁ ପିନ୍ଧିବାକୁ ପୁରୁଣା ଲୁଗାପଟା ଦିଅନ୍ତି। କିନ୍ତୁ ତ୍ରିଲୋଚନଙ୍କ ସ୍ୱଭାବ ସମ୍ପୂର୍ଣ୍ଣ ଭିନ୍ନ। ସେ ଅନ୍ତର୍ଯାମୀ ପାଇଁ ଧୋତି, ଗାମୁଛା, ଚପଲ ଇତ୍ୟାଦି ସବୁ ଜିନିଷ ନୂଆ କିଣି ଆଣିଲେ। ଏଥିରେ ଭଗବାନଙ୍କର ମହତ୍‌ପ୍ରେରଣା ଥିଲା। ନଚେତ୍ ପ୍ରକୃତ ରହସ୍ୟ ଜଣା ପଡ଼ିବା ପରେ ତ୍ରିଲୋଚନଙ୍କୁ ଅପାର କଷ୍ଟ ହୋଇଥାନ୍ତା। ତ୍ରିଲୋଚନ ପ୍ରଥମେ ଅନ୍ତର୍ଯାମୀକୁ ନିଜ ହାତରେ ଗାଧୋଇ ଦେଲେ। କାରଣ ତାକୁ ଦେଖିବା ପରଠାରୁ ତା'ପ୍ରତି ତାଙ୍କର ସ୍ନେହ ହୋଇଯାଇଥିଲା। ତା' ଦେହରେ ଆଙ୍ଗୁଳିଏ ବହଳର ମଳି ଜମିଥିଲା। ତ୍ରିଲୋଚନ ଗାମୁଛାରେ ରଗଡ଼ି ରଗଡ଼ି ମଳି ଛଡ଼ାଉଥାନ୍ତି ଏବଂ ପଚାରୁଥାନ୍ତି—"ଅନ୍ତର୍ଯାମୀ! ତୁ କେତେ ଦିନରୁ ଗାଧୋଇନୁ? ଦେହରେ ଏତେ ମଳି ବସି ରହିଛି ଯେ?" ଛଦ୍ମବେଶୀ ଭଗବାନ କହିଲେ—"ଗୋସେଇଁ! ଛ'ମାସ ବର୍ଷରେ କେବେ କେମିତି ଅମାବାସ୍ୟା ପୂର୍ଣ୍ଣିମାକୁ ଥରେ ଗାଧୋଇ ପଡ଼ିଲେ ଯଥେଷ୍ଟ। ସବୁ ଦିନ ଗାଧୋଇବାକୁ ବେଳ କାହିଁ?" ଭଗବାନଙ୍କ ଅଙ୍ଗରେ ଲାଗିଥିବା ମଳି ସାଧାରଣ ମଳି ନୁହେଁ। ଭକ୍ତଜନଙ୍କର ସମସ୍ତ ଦୋଷକୁ ସେ ନିଜେ ବହନ କରି ସେମାନଙ୍କୁ ଶୁଦ୍ଧ କରି ଥାଆନ୍ତି।

ପ୍ରଭୁଙ୍କୁ ଘଷିଘାଷି ଗାଧୋଇ ଦେବାରେ ତ୍ରିଲୋଚନଙ୍କୁ ଅପାର ଆନନ୍ଦ ଅନୁଭବ ହେଉଥାଏ। ରଡ଼ ନିଆଁ ଉପରେ ଜମିଥିବା ପାଉଁଶ ଉଡ଼ାଇଦେବା ପରେ ଯେପରି ନିଆଁ ଦାଉ ଦାଉ ହୋଇ ଚମକି ଉଠେ, ସେହିପରି ପ୍ରଭୁଙ୍କର ଶ୍ୟାମଳ ଅଙ୍ଗରୁ ସୌନ୍ଦର୍ଯ୍ୟର ଆଭା ଝଟକି ଉଠିଲା। ତ୍ରିଲୋଚନ ବାରମ୍ବାର ଅନ୍ତର୍ଯାମୀର ଦେହକୁ ଅପଲକ ନେତ୍ରରେ ଚାହିଁ ଆନନ୍ଦିତ ହେଉଥାନ୍ତି। ସ୍ନାନ ସାରି ସେ ତାକୁ ନୂଆ ଧୋତି, ଗାମୁଛା ଇତ୍ୟାଦି ପିନ୍ଧିବାକୁ ଦେଲେ। ତ୍ରିଲୋଚନଙ୍କ ଚରଣରେ ଅନ୍ତର୍ଯାମୀ ପ୍ରଥମ ପ୍ରଣାମ ଜଣାଇ କୃତଜ୍ଞତାର ଲୋତକରେ ତାଙ୍କ ପାଦ ଧୋଇଦେଲା। ତ୍ରିଲୋଚନ ପଚାରିଲେ—"ଆରେ! ତୁ କାନ୍ଦୁଛୁ କାହିଁକି? ତୋର କିଛି ଅସୁବିଧା ହେଲା କି?" ଅନ୍ତର୍ଯାମୀ ଦୁଇ ହାତରେ ଲୁହ ପୋଛିଦେଇ କହିଲା—"ନାଇଁ

ଗୋସେଇଁ! ମୋ ପ୍ରତି ତୁମର ଏଭଳି ସ୍ନେହ ଦେଖି ଆଖିରୁ ଆନନ୍ଦରେ ଲୁହ ବାହାରି ଆସିଲା। ଆଜିଯାଏ ମୋତେ କେହି ଏତେ ସ୍ନେହ କରି ନ ଥିଲେ। ସମସ୍ତେ ଅଦରକାରୀ ପେଟୁ ବୋଲି ଭାବି ମାରି ଗୋଡ଼ାଉଥିଲେ। ମୁଁ ତୁମ ଭଳି ସ୍ୱାମୀଙ୍କୁ ପାଇ ଧନ୍ୟ ହୋଇଗଲି।''

ଅନ୍ତର୍ଯାମୀର ସରଳ ସ୍ୱଭାବ ଭକ୍ତ ତ୍ରିଲୋଚନଙ୍କୁ ମଧ୍ୟ ଅଭିଭୂତ କରି ପକାଇଲା। ତାଙ୍କ ଆଖିରୁ ଦୁଇଧାର ଲୁହ ଗଡ଼ି ଆସିଲା। ସେ ଅନ୍ତର୍ଯାମୀକୁ କୋଳେଇ ନେଇ ତା'ର ମୁଣ୍ଡ ଆଉଁସି ଦେଇ ଆଶ୍ୱାସନା ସ୍ୱରରେ କହିଲେ— ''ତୁ ସବୁ ଦିନ ପାଇଁ ମୋ ପାଖରେ ରହିବୁ, ଆଉ କୁଆଡ଼େ ଯିବା ଦରକାର ନାହିଁ। ତୋ ଭଳି ସେବକକୁ ମୁଁ କଣ ଛାଡ଼ିପାରିବି।'' ଅନ୍ତର୍ଯାମୀ ମସ୍ତକ ଅବନତ କରି ବିନୀତ ସ୍ୱରରେ କହିଲା—''ମୁଁ ବି ସେଇଆ ଚାହେଁ, କିନ୍ତୁ ମୋର ଗୋଟିଏ ସର୍ତ୍ତ ରହିଛି। ତୁମର ପତ୍ନୀ ଯଦି ଅନିଚ୍ଛା ପ୍ରକାଶ କରନ୍ତି, ତା' ଛଡ଼ା ମୋ ଖାଇବା କଥା ଯଦି କେହି କେଉଁଠି ପ୍ରକାଶ କରିଦିଏ, ତେବେ ମୁଁ ଆଉ ରହିବି ନାହିଁ, ସେହିକ୍ଷଣି ଚାଲିଯିବି।'' ତ୍ରିଲୋଚନ କହିଲେ—''ଚିନ୍ତା କର ନାହିଁ। ମୋ ସ୍ତ୍ରୀ ବଡ଼ ପତିବ୍ରତା। ମୋ ଭଳି ସେ ମଧ୍ୟ ତୋତେ ଭାରି ସ୍ନେହ ଦେବ। ମୁଁ ତାକୁ କହିଦେବି, ସେ କଦାପି କେଉଁଠି ତୋ ଖାଇବା କଥା ଚର୍ଚ୍ଚା କରିବ ନାହିଁ।''

ଏତିକି କହି ତ୍ରିଲୋଚନ ଅନ୍ତର୍ଯାମୀର ହାତ ଧରି ସ୍ତ୍ରୀ ନିକଟକୁ ନେଇଗଲେ। କହିଲେ—''ଦେଖିଲଣି, କିଏ ଆସିଛି? ଇଏ ଅନ୍ତର୍ଯାମୀ। ଆଜିଠୁ ଆମ ଘରେ ରହି ସାଧୁସନ୍ଥଙ୍କ ସେବା କରିବ। ଦେଖ, ଇଏ କରିବ ସାଧୁଙ୍କର ସେବା ଆଉ ତୁମେ କରିବ ଏହାର ସେବା। ଏହାକୁ ପୁତ୍ର ଭଳି ପାଳିବ, ମାଲିକିଆଣୀ ଭାବ ଦେଖାଇବ ନାହିଁ। ସାଧୁଙ୍କର ସେବା କରିବା ଲୋକ ତ ପରମ ସାଧୁ ଅଟେ। ତେଣୁ ଏହାକୁ ଚାକର ନ ଭାବି ସାଧୁ ମନେ କରିବ ଏବଂ ଭକ୍ତିଭାବରେ ଏହାର ସେବାରେ ତତ୍ପର ରହିବ। ହରିସେବାଠାରୁ ହରିଦାସଙ୍କର ସେବାକୁ ଅଧିକ ମହତ୍ତ୍ୱ ଦେବା ଉଚିତ। ଏହାର ଖିଆପିଆରେ ଟିକିଏ ବି ଊଣା କରିବ ନାହିଁ। ଇଏ ଭାତ, ଡାଲି, ତରକାରୀ, ପିଠାପଣା ଯାହା ଖାଇବାକୁ ଚାହିଁବ, ଆନନ୍ଦରେ ପେଟ ଭରି ଖାଇବାକୁ ଦେବ। ହଁ, ଆଉ ଗୋଟିଏ କଥା ମନେରଖ। ଏହାର ଖାଇବା କଥା କାହା ଆଗରେ ଚର୍ଚ୍ଚା କରିବ ନାହିଁ। ନହେଲେ ଇଏ ଆମକୁ ଛାଡ଼ି ପଳେଇବ। ପୁଣି ଆମକୁ ଏଭଳି ସରଳ ଓ ସଚ୍ଚୋଟ ସେବକ ଆଉ ମିଳିବ ନାହିଁ।''

ଏହିଭଳି ବୁଝାଇ ଭକ୍ତ ତ୍ରିଲୋଚନ ତାଙ୍କ ସ୍ତ୍ରୀ ଉପରେ ଅନ୍ତର୍ଯାମୀର ସେବା

ଦାୟିତ୍ୱ ନ୍ୟସ୍ତ କରିଦେଲେ। ଏଥର ଅନ୍ତର୍ଯାମୀ ଲାଗିଗଲା ସେବା କାର୍ଯ୍ୟରେ। ରାତି ପାହିବା ଠାରୁ ଶୋଇବା ପର୍ଯ୍ୟନ୍ତ ଅନବରତ ସେବା କରୁଥାଏ। ଠାକୁର ସେବାଠାରୁ ଆରମ୍ଭ କରି ଘରର ଛୋଟ ବଡ଼ ସବୁ କାମକୁ ଅତି ନିପୁଣତାର ସହିତ ସମ୍ପନ୍ନ କରି ସେ ତ୍ରିଲୋଚନଙ୍କର ମନକୁ କିଣିନେଲା। ତ୍ରିଲୋଚନ ଠାକୁର ସେବା କରିବାକୁ ଯିବା ପୂର୍ବରୁ ଅନ୍ତର୍ଯାମୀ ଠାକୁରଙ୍କ ଘର ସଫା କରି, ବାସନକୁସନ ମାଜି, ଫୁଲ ତୁଳସୀ ଯୋଗାଡ଼ କରି ତାଙ୍କ ପାଇଁ ଆସନ ବିଛାଇ ଦିଏ। ତ୍ରିଲୋଚନଙ୍କ ସ୍ତ୍ରୀ କୌଣସି କାମ କହିବା ଆଗରୁ ସେ ତାହା କରିଦେଇଥାଏ। ଫଳସ୍ୱରୂପ ପତିପତ୍ନୀଙ୍କର ଅନ୍ତର୍ଯାମୀ ପ୍ରତି ସ୍ନେହ ବଢ଼ି ଚାଲିଲା। ଭକ୍ତଦମ୍ପତି ତାକୁ ପାଖରୁ କ୍ଷଣେ ବି ଅନ୍ତର କରୁ ନ ଥିଲେ। କୁଆଡ଼େ କେଉଁ କାର୍ଯ୍ୟରେ ଚାଲିଗଲେ ବଡ଼ ସ୍ନେହରେ ଡାକି କହନ୍ତି—"ଅନ୍ତର୍ଯାମୀ! କାମ ଛାଡ଼ି ଶୀଘ୍ର ଆସ। ଦେଖ, ଘରକୁ କେତେ ସାଧୁସନ୍ଥ ଆସିଲେଣି। ଶୀଘ୍ର ଏମାନଙ୍କ ପାଇଁ ବ୍ୟବସ୍ଥା କର।" ଅନ୍ତର୍ଯାମୀ ଧାଇଁ ଆସି ବ୍ୟବସ୍ଥାରେ ଲାଗିଯାଏ।

ତ୍ରିଲୋଚନଙ୍କ ଘରେ ସୁଚାରୁରୂପେ ସାଧୁସେବା ହେବାରୁ ସାଧୁସନ୍ଥଙ୍କର ସମାଗମ ଦିନକୁ ଦିନ ବଢ଼ି ଚାଲିଲା। ଯେତେ ସାଧୁ ଆସନ୍ତି, ଅନ୍ତର୍ଯାମୀ ମନ ସେତେ ଖୁସୀ। ସେ ସନ୍ଥଜନଙ୍କ ପାଦ ଧୋଇ ଗାମୁଛାରେ ପୋଛିଦିଏ ଓ ଘରକୁ ପାଛୋଟି ଆଣେ। ବିବିଧ ଅନ୍ନ-ବ୍ୟଞ୍ଜନ ତିଆରି କରି ଠାକୁରଙ୍କୁ ଭୋଗ ଲଗାଇବା ପରେ ସାଧୁସନ୍ଥଙ୍କ ପାଖରେ ବସି ଖାଦ୍ୟର ନାଆଁ କହି ଯାଚି ଯାଚି ପରଷୁଥାଏ। ସନ୍ଥମାନେ ତା'ର ସେବାରେ ପ୍ରସନ୍ନ ହୋଇ କହନ୍ତି—"ଅନ୍ତର୍ଯାମୀ! ଥାଉ; ବେଶ୍ ହୋଇଗଲା। ଖାଲି ଆମକୁ ଖୁଆଉଥିବୁ କି ତୁ ବି କିଛି ଖାଇବୁ।" ସେ ଅତି ବିନମ୍ର ଭାବରେ ହାତଯୋଡ଼ି କହେ—"ଗୋସେଇଁ! ଆପଣମାନେ ଖୁସିରେ ପ୍ରସାଦ ପାଇଲେ ମୋର ଭାରି ଆନନ୍ଦ।"

ପ୍ରସାଦ ସେବନ ସାରି ସାଧୁସନ୍ଥ ବିଶ୍ରାମ କଲାବେଳେ ଅନ୍ତର୍ଯାମୀ ଯାଇ ଚୁପ୍‌ଚାପ ସେମାନଙ୍କ ଗୋଡ଼ ଘଷିବାକୁ ବସିଯାଏ। ଯେତେ ମନା କଲେ ବି ସେ ମାନେ ନାହିଁ। କହେ—"ଆଜ୍ଞା! ମୋର ଆଉ କାମ କ'ଣ? ପ୍ରଭୁଙ୍କ ବଡ଼ କୃପାରୁ ଆପଣମାନଙ୍କ ସେବାର ସୌଭାଗ୍ୟ ମୋତେ ମିଳିଛି। ନହେଲେ ମୋ ଭଳି ଅନାଥକୁ ପଚାରନ୍ତା କିଏ?" ସନ୍ଥଜନ ତା'ର ଭକ୍ତିଭାବ ଦେଖି ଆଉ ବେଶୀ ମନା କରି ପାରନ୍ତି ନାହିଁ। କେହି କେହି ତ ତା'ର ଶ୍ରଦ୍ଧାରେ ବଶୀଭୂତ ହୋଇ ପାଦ ନ ଛୁଆଁଇବାର ନିୟମକୁ ମଧ୍ୟ ଛାଡ଼ି ଦିଅନ୍ତି। ସେ ଅତି ଖୁସୀ ମନରେ ତେଲ

ଲଗାଇ ସେମାନଙ୍କ ଗୋଡ଼ ଘଷିଦିଏ। ଏହା ଅନ୍ତର୍ଯାମୀ ପ୍ରଭୁଙ୍କ ପାଇଁ କୌଣସି ନୂଆ କଥା ବି ନୁହେଁ। ତାଙ୍କର ରାମାବତାରରୁ ଗୁରୁ ବିଶ୍ୱାମିତ୍ରଙ୍କ ପାଦ ମଞ୍ଜାଳିବାର ବେଶ୍ ଅଭ୍ୟାସ ରହି ଆସିଛି।

ଗୋଡ଼ ଘଷିବା ବେଳେ ଅନ୍ତର୍ଯାମୀ ଅନେକ ସତ୍ସଙ୍ଗ କଥା ପଗ୍ରେ। ଅମୁକ କଥାଟି କ'ଣ? ସମୁକ କଥାଟି କ'ଣ? ଏମିତି ପ୍ରଶ୍ନ କରି ସେ ସନ୍ଥଜନଙ୍କ ମନରେ ହରିକଥା କହିବାକୁ ଉତ୍ସାହ ଭରିଦିଏ। ସାଧୁସନ୍ଥ ଖୁସୀ ମନରେ ତାକୁ ସବୁ କଥା କହନ୍ତି। ଅନ୍ତର୍ଯାମୀ ମନଦେଇ କାନଡେରି କଥା ଶୁଣେ ଏବଂ ମଝିରେ ମଝିରେ ମୁଣ୍ଡ ହଲାଇ 'ହଁ' ମାରୁଥାଏ। କେବେ କେଉଁଠି ସନ୍ଥଙ୍କର କୌଣସି ପ୍ରସଙ୍ଗ ବିସ୍ମରଣ ହୋଇଗଲେ ଇଏ ମନେ ପକାଇଦିଏ। ତା'ର ପୁଷ୍କଳ ମେଧା ଓ ଭକ୍ତିଭାବକୁ ପ୍ରଶଂସା କରି ସନ୍ଥଜନ କହନ୍ତି—"ଅନ୍ତର୍ଯାମୀ! ତୁ ତ ବଡ଼ ପଣ୍ଡିତ ଭଳି ଲାଗୁଛୁ! ଏତେ କଥା ଶିଖିଲୁ କେଉଁଠୁ? ପିଲାବେଳେ କାହା ପାଖରୁ ଶାସ୍ତ୍ର ପଢ଼ାପଢ଼ି କରିଥିଲୁ କି?" ଅନ୍ତର୍ଯାମୀ ଟିକିଏ ଲଜ୍ଜିତ ହୋଇ ମୁଣ୍ଡ ନୁଆଇଁ କହେ—"ମହାରାଜ! ପାଠ କିଏ ଆଉ ମୁଁ କିଏ? ପିଲା ବେଳଟା ମୋର ଗାଈ ଚରାଇବାରେ କଟିଲା। ବିଦ୍ୟାଳୟର ବାରଣ୍ଡା ମାଡ଼ି ନାହିଁ। ଏ ସବୁ ଆପଣଙ୍କ ଭଳି କରୁଣାଶୀଳ ସନ୍ଥଜନଙ୍କର କୃପା।" ଅନ୍ତର୍ଯାମୀର ସରଳ ନିଷ୍କପଟ କଥା ଶୁଣି ସନ୍ଥଜନ ଭାରି ଖୁସୀ ହୁଅନ୍ତି ଏବଂ ଭକ୍ତ ତ୍ରିଲୋଚନଙ୍କ ଆଗରେ ତା'ର ପ୍ରଶଂସା କରି କହନ୍ତି—"ଭକ୍ତବର! ଏଭଳି ସେବକ ଆମେ କେବେ କେଉଁଠି ଦେଖି ନାହୁଁ। ପ୍ରକୃତରେ ଇଏ ଅନ୍ତର୍ଯାମୀ। କହିବା ଆଗରୁ ମନ କଥା ଜାଣି ସବୁ ସେବା କରି ଦେଉଛି। ଏମିତି ଭଲ ଭଲ କଥା ପଗ୍ରୁଛି ଯେ ଆମେ ବି ବିସ୍ମିତ ହୋଇପଡୁଛୁ। ଏହାକୁ ସବୁ ଦିନ ପାଖରେ ରଖିବ, କେବେ ଛାଡ଼ିବ ନାହିଁ।" ନିଜର ପ୍ରଶଂସା ଶୁଣି ଅନ୍ତର୍ଯାମୀ ସଂକୋଚରେ ମୁଣ୍ଡ ତଳକୁ ନୁଆଇଁ ଧୀରସ୍ଥିର ଭାବେ ଠିଆ ହୋଇରହେ। ତ୍ରିଲୋଚନ ମଧ୍ୟ ଅନ୍ତର୍ଯାମୀର ପ୍ରଶଂସା ଶୁଣି ମନେ ମନେ ପ୍ରଭୁଙ୍କୁ ଅଶେଷ ଧନ୍ୟବାଦ ଦେଇ କହନ୍ତି—"ପ୍ରଭୁ! ସବୁ ତୁମର କରୁଣା। ଅନ୍ତର୍ଯାମୀକୁ ମୋ ପାଖକୁ ପଠାଇ ତୁମେ ମୋ ଉପରେ ଅଶେଷ କରୁଣା କଲ। ମୋର ସାଧୁସେବାର ଅଭିଳାଷ ଏତେ ଦିନକେ ପୂର୍ଣ୍ଣ ହେଲା। ଏଥିପାଇଁ ମୁଁ ତୁମର ଚିର ଋଣୀ।"

ଅନ୍ତର୍ଯାମୀ ତା'ର ମଧୁର ଓ କୋମଳ ସ୍ୱଭାବରେ ସନ୍ଥଜନଙ୍କର ମନକୁ ଏପରି ମୋହିତ କରିନେଇଥିଲା ଯେ ସେମାନେ ତାକୁ ପ୍ରାଣଠାରୁ ବଳି ଭଲପାଉଥିଲେ। ସେ ସତେ ଯେପରି ସନ୍ଥଜନଙ୍କ ହାତର ଖେଳଣା ହୋଇଯାଇଥିଲା। କୌଣସି ସନ୍ଥ

କିଛି କହିବାକୁ ସଂକୋଚ କରୁଥିଲେ ଅନ୍ତର୍ଯାମୀ ମନ ଜାଣି ପଗ୍ଚରେ—ବାବା! ଆଜି ଠାକୁରଙ୍କ ପାଇଁ ସରପୁଲି ଓ ଛେନାପୋଡ଼ କଲେ କେମିତି ହୁଅନ୍ତା? ସନ୍ଥ କହନ୍ତି—ଅନ୍ତର୍ଯାମୀ! ତୁ ମୋ ମନ କଥାଟି କହିଲୁ। ମୋର ମଧ୍ୟ ଇଛା ଥିଲା, କିନ୍ତୁ ସଂକୋଚରେ କହି ପାରୁ ନ ଥିଲି। ଏହିଭଳି ପଗ୍ଚରି ପଗ୍ଚରି ସେ ସନ୍ଥଙ୍କ ଇଛା ଅନୁଯାୟୀ ଖିରୀ, ଖେଚେଡ଼ି, ପିଠାପଣା ଇତ୍ୟାଦିରେ ସମସ୍ତଙ୍କୁ ତୃପ୍ତ କରିଦିଏ। କାହାର କଟିବସ୍ତ୍ର, କୌପୁନୀ, କମଣ୍ଡଳୁ ଇତ୍ୟାଦି ବ୍ୟବହାର୍ଯ୍ୟ ଜିନିଷ ଆବଶ୍ୟକ ଥିଲେ ଅନ୍ତର୍ଯାମୀ ତା' ଆଡୁ ପଗ୍ଚରି ଯାଚି ଯାଚି ଦିଏ। କୌଣସି ସାଧୁ କ୍ଲାନ୍ତ ହୋଇପଡ଼ିଥିଲେ ଲକ୍ଷେ ମନା କରିବା ସତ୍ତ୍ୱେ ତାଙ୍କର ଗୋଡ଼ ଘଷିଦିଏ। ସନ୍ଥ ହୃଦୟର ସହ ତାକୁ ଆଶୀର୍ବାଦ ଦେଇ କହନ୍ତି—"ଅନ୍ତର୍ଯାମୀ! ଭଗବାନ ତୋର ମଙ୍ଗଳ କରନ୍ତୁ। ସନ୍ଥ-ଭଗବାନଙ୍କ ପ୍ରତି ତୋର ଭକ୍ତି ବଢୁ।" ଅନ୍ତର୍ଯାମୀ ଆଶୀର୍ବାଦ ପାଇ ନିଜକୁ ଧନ୍ୟ ମନେକରେ।

ତ୍ରିଲୋଚନଙ୍କ ପତ୍ନୀ ହୃଦୟରେ ମଧ୍ୟ ଅନ୍ତର୍ଯାମୀ ପ୍ରତି ବାତ୍ସଲ୍ୟ ସ୍ନେହ ପରିପୂର୍ଣ୍ଣ ହୋଇଥାଏ। ସେ ତାକୁ ପୁତ୍ର ଠାରୁ ବଳି ଭଲ ପାଉଥାଏ। ସ୍ନେହରେ ସେ ତା' ପାଇଁ ଅନେକ ପ୍ରକାର ଖାଦ୍ୟପଦାର୍ଥ ତିଆରି କରି ଆଦରରେ ଡାକି ପାଖରେ ବସାଇ ବଳେଇ ବଳେଇ ଖୁଆଏ। ସେ ଯାହା ବି ରୋଷେଇ କରିଥାଏ, ଅନ୍ତର୍ଯାମୀ ସବୁ ସଫା କରିଦିଏ। କିଛି ଯାଚିଲେ ଆଦୌ ମନା କରେ ନାହିଁ। ଖାଇବା ଜିନିଷ ନ ସରିବା ଯାଏ ଖାଇ ଗ୍ଚଲିଥାଏ। ଜିନିଷ ସରିଯିବା ପରେ କହେ ଥାଉ ଥାଉ, ଆଉ ଖାଇ ପାରିବି ନାହିଁ। ତ୍ରିଲୋଚନଙ୍କ ପତ୍ନୀ ଅନ୍ତର୍ଯାମୀର ସରଳ ସ୍ୱଭାବରେ ମୋହିତ ହୋଇଯାଏ।

ଏମିତି ଭକ୍ତ ଓ ଭଗବାନଙ୍କ ମଧ୍ୟରେ ତେର ମାସ ପର୍ଯ୍ୟନ୍ତ ଲୀଳା ଗ୍ଚଲିଲା। ଦିନକର କଥା। ତ୍ରିଲୋଚନଙ୍କର ସ୍ତ୍ରୀ ପଡ଼ିଶା ଘରର ସଙ୍ଗାତୁଣୀ ପାଖକୁ ଯାଇଥିଲା। ସେ ତାକୁ ଅନେକ ଦିନରୁ ନ ଆସିବାର କାରଣ ପଗ୍ଚରିବାରୁ ସେ କହିଲା—"କଣ କହିବି ମିତଣୀ! ଆମ ଘରେ ଯେଉଁ ପିଲାଟି ଅଛି, ମୋ ସ୍ୱାମୀ ତାରି ଦାୟିତ୍ୱ ମୋ ଉପରେ ଦେଇଛନ୍ତି। ଅବଶ୍ୟ ପିଲାଟି ଭାରି ଭଲ। ତା'ର ନାଆଁ ହେଉଛି ଅନ୍ତର୍ଯାମୀ। ନାମ ଯେମିତି, କାମ ମଧ୍ୟ ସେମିତି। ଘରର ସବୁ ଦାୟିତ୍ୱ ସମ୍ଭାଳୁଛି। ସେବାରେ ସମସ୍ତଙ୍କ ମନ ଜିଣିଯାଇଛି। କିନ୍ତୁ ସମସ୍ୟା ଏତିକି ଯେ ତା' ସେବାରେ ମୋତେ ରାତିଦିନ ଖଟିବାକୁ ପଡୁଛି। ତା'ର ଖୋରାକ ଟିକିଏ ଅଧିକ। ତା' ପାଇଁ ଧାନ କୁଟାକୁଟି, ରୋଷେଇବାସ ଇତ୍ୟାଦିରେ ଲାଗି ରହିବାରୁ ମୋତେ କାହା

ଘରକୁ ଯିବାକୁ ଆଉ ବେଳ ମିଳୁ ନାହିଁ। ବଡ଼ କଷ୍ଟରେ ଆଜି ଟିକିଏ ସମୟ ବାହାର କରି ପଳେଇ ଆସିଲି।''

ଯଦ୍ୟପି ଅନ୍ତର୍ଯାମୀର ସର୍ତ୍ତଟି ପତିପତ୍ନୀ ଉଭୟଙ୍କୁ ଜଣାଥିଲା। ସେ ତ୍ରିଲୋଚନଙ୍କୁ ପ୍ରଥମରୁ କହିଦେଇଥିଲା ଯେ ତା' ଖାଇବା କଥା କେଉଁଠି ଚର୍ଚ୍ଚା ହେଲେ ସେ ଆଉ ରହିବ ନାହିଁ। ତା'ଛଡ଼ା ତ୍ରିଲୋଚନ ମଧ୍ୟ ତାଙ୍କର ସ୍ତ୍ରୀକୁ ଭଲଭାବେ ଏଥିପାଇଁ ସତର୍କ କରାଇ ଦେଇଥିଲେ, ତଥାପି ସ୍ତ୍ରୀଲୋକଙ୍କ ପେଟରେ କଥା ଲୁଚି ରହିବା କ'ଣ ସହଜ କଥା! ସେମାନଙ୍କୁ ପରା ଯୁଧିଷ୍ଠିର ଅଭିଶାପ ଦେଇଛନ୍ତି! ତ୍ରିଲୋଚନଙ୍କ ସ୍ତ୍ରୀ ପଡ଼ିଶା ଘର ସଙ୍ଗାତୁଣୀକୁ ଏତିକି କହିସାରି ଆଉ କାହା ଆଗରେ ନ କହିବାକୁ ରାଣ ପକାଇଦେଲା। କିନ୍ତୁ ଅନ୍ତର୍ଯାମୀଙ୍କୁ କେଉଁ କଥା ବା ଅଜଣା? ସେ ପରା ଅନ୍ତର ଭିତରୁ ଉଠୁଥିବା ଭାବକୁ ବି ଜାଣିଯାଆନ୍ତି। ସେପଟେ ତାଙ୍କ ଖାଇବା କଥା ପଡ଼ିବା ମାତ୍ରେ ସେ ଅନ୍ତର୍ଦ୍ଧାନ ହୋଇଗଲେ।

ଭକ୍ତ ତ୍ରିଲୋଚନ ଅନ୍ତର୍ଯାମୀକୁ ଦଣ୍ଡେ ନ ଦେଖିଲେ ବାତୁଳ ପରି ହୋଇଯାଆନ୍ତି। ବହୁ ସମୟ ହେଲା ଅନ୍ତର୍ଯାମୀକୁ ନ ଦେଖିବାରୁ ସେ ତା' ନାଆଁ ଧରି ଡାକିଲେ। ପ୍ରଭୁ ତ ଚାଲିଯାଇଛନ୍ତି, ଆଉ ଉତ୍ତର ଦେବ କିଏ? ସେ ଘର ସାରା ଖୋଜିଲେ। ତା'ପରେ ଗାଁଆ ସାରା ବୁଲି ବୁଲି ପଚାରିଲେ—''ମୋ ଅନ୍ତର୍ଯାମୀକୁ କେହି ଦେଖିଛ କି? କୁଆଡ଼େ ଗଲା ସିଏ? ଯଦି ଦେଖିଛ ଶୀଘ୍ର କୁହ। ତାକୁ ନ ଦେଖି ମୋ ମନ ବ୍ୟାକୁଳ ହେଉଛି।'' ସମସ୍ତେ ମନା କଲେ। କିଏ ବା ଭଗବାନଙ୍କର ଗତିକୁ ଜାଣି ପାରିବ?

ଏଥର ତ୍ରିଲୋଚନଙ୍କର ଚିନ୍ତା ବଢ଼ିଗଲା। ସେ ଭାବିଲେ—''ଅନ୍ତର୍ଯାମୀ ତ କେବେ ନ ପଚାରି କୁଆଡ଼େ ଯିବା ପିଲା ନୁହଁ, ଭାରି ଆଜ୍ଞାକାରୀ; ପୁଣି ଆଜି କେମିତି ଚାଲିଗଲା।'' ଏମିତି ଭାବୁ ଭାବୁ ହଠାତ୍ ତାଙ୍କର ଅନ୍ତର୍ଯାମୀ କହିଥିବା ସର୍ତ୍ତଟି ମନେ ପଡ଼ିଗଲା। ସେ ବେଗ ବେଗ ହୋଇ ଘରକୁ ଫେରିଆସି ସ୍ତ୍ରୀକୁ ପଚାରିଲେ—''ତୁ ଅନ୍ତର୍ଯାମୀର ଖାଇବା କଥା କାହା ଆଗରେ କହି ନାହୁଁ ତ? ସେ ତ ଏହି ଗୋଟିଏ ସର୍ତ୍ତ ବ୍ୟତୀତ ମୋ ପାଖରୁ ଯିବ ନାହିଁ ବୋଲି ପ୍ରତିଜ୍ଞା କରିଥିଲା।'' ସ୍ତ୍ରୀ କହିଲା—''ସ୍ୱାମୀ! ମୋର ଭୁଲ୍ ହୋଇଯାଇଛି। ମୁଁ ଆଜି ପଡ଼ିଶା ଘରର ସଙ୍ଗାତୁଣୀ ସଙ୍ଗରେ କଥା ହେଉ ହେଉ ପାଟିରୁ ବାହାରିଗଲା। କିନ୍ତୁ ମୁଁ ତ ତାକୁ ରାଣ ପକାଇ ଆଉ କାହାକୁ କହିବାକୁ ମନା କରିଥିଲି, ପୁଣି ଅନ୍ତର୍ଯାମୀ ଜାଣିଲା କେମିତି?''

ସ୍ତ୍ରୀ କଥା ଶୁଣି ତ୍ରିଲୋଚନଙ୍କୁ ମୁଣ୍ଡରେ ବଜ୍ରପାତ ହେଲା ପରି ଲାଗିଲା। ସେ 'ହେ ଭଗବାନ!' କହି ସେଇଠି ଢଳି ପଡ଼ିଲେ। କିଛି ସମୟ ପରେ ଚିତ୍କାର କରି କହିଲେ—''ରେ ଅଭାଗିନି! ତୁ ଏ କ'ଣ କଲୁ? ବାରମ୍ବାର କହିବା ସତ୍ତ୍ୱେ କଥାଟିକୁ ଗୁପ୍ତ ରଖି ପାରିଲୁ ନାହିଁ। ମୋତେ ଆଉ ଅନ୍ତର୍ଯାମୀ ଭଳି ଆଜ୍ଞାକାରୀ ସେବକଟିଏ କେଉଁଠୁ ମିଳିବ? ମୁଁ ତା' ବିନା କେମିତି ପ୍ରାଣ ରଖିବି?'' ଏତିକି କହି ସେ ସେଇଠି ଅଚେତ ହୋଇ ପଡ଼ିଗଲେ। ମୁଖରୁ ଅସ୍ପଷ୍ଟରୂପେ କେବଳ ଏତିକି ବାହାରୁଥାଏ—''ଅନ୍ତର୍ଯାମୀ ରେ! ମୋତେ ଛାଡ଼ି ତୁ କୁଆଡ଼େ ଚାଲିଗଲୁ? ମୁଁ ତୋତେ କେଉଁଠି ଖୋଜିବି? ତୋ ବିନା ମୁଁ ରହି ପାରିବି ନାହିଁ ରେ! ତୋର କ'ଣ ମୋ ଉପରେ ଟିକିଏ ପ୍ରୀତି ନାହିଁ। ମୋତେ ନ କହି ତୁ କୁଆଡ଼େ ଚାଲିଗଲୁ? 'ଗୋସେଇଁ ଗୋସେଇଁ' କହି କେତେ ସେବା କରୁଥିଲୁ! ଆଜି ତୋ ଗୋସେଇଁ ତୋ ବିନା ବ୍ୟାକୁଳ ହୋଇ ଧୂଳିରେ ଲୋଟୁଛନ୍ତି। ତୋର କ'ଣ ତାଙ୍କ କଥା ମନେ ପଡୁ ନାହିଁ। ମୋ ପାଖରେ ବସି କିଏ ମୋତେ ଆଉ ଖୁଆଇବ? କିଏ ଆଉ ମୋ ପାଖରେ ଅଳି ଅଝଟ କରିବ? ଘରକୁ ସାଧୁସନ୍ଥ ଆସିଲେ କିଏ ଆଉ ତାଙ୍କର ସେବା କରିବ? ସେମାନେ ଅନ୍ତର୍ଯାମୀ କୁଆଡ଼େ ଗଲା ବୋଲି ପଚାରିଲେ ମୁଁ କି ଉତ୍ତର ଦେବି? ତୋ ବିନା ସେମାନଙ୍କର ମନ ବି ଲାଗିବ ନାହିଁ? ତୋର ସେବାରେ ପ୍ରସନ୍ନ ହୋଇ ସେମାନେ ଆମ ଘରକୁ ବାରମ୍ବାର ଆସୁଥିଲେ। ଏଥର ସେମାନଙ୍କର ଯାଆଆସ କମିଯିବ। ମୋ ଘର ଶୂନ୍ୟ ହୋଇଯିବ ରେ! ମୋର ସବୁ ଅପରାଧ କ୍ଷମା କରିଦେ ଅନ୍ତର୍ଯାମୀ! ମୋତେ ଥରକ ପାଇଁ ଦେଖାଦେଇ ମୋର ସନ୍ତାପିତ ପ୍ରାଣକୁ ଶୀତଳ କରିଦେ।'' ଏମିତି ବିଳାପ କରି କରି ଅଖିଆଅପିଆ ଭକ୍ତ ତ୍ରିଲୋଚନ ପଡ଼ିରହିଥାନ୍ତି। ତିନି ଦିନ ବିତିଗଲା। ସେ ମୂର୍ଚ୍ଛା ହୋଇ କାନ୍ଦି କାନ୍ଦି ଭୂଇଁରେ ଲୋଟି ଯାଉଥାନ୍ତି। ପତ୍ନୀ ଯେତେ ଧୈର୍ଯ୍ୟ ଦେଲେ ମଧ୍ୟ ନିଜକୁ ସମ୍ଭାଳି ପାରୁ ନ ଥାନ୍ତି। ସ୍ୱାମୀଙ୍କର ଏଭଳି ଦୀନହୀନ ସ୍ଥିତି ଦେଖି ପତ୍ନୀ ମଧ୍ୟ ଶୋକ ସାଗରରେ ବୁଡ଼ିଗଲା। ନିଜର ଦୋଷ ମାର୍ଜନା ପାଇଁ ଅଧୀର ଚିତ୍ତରେ ଅନ୍ତର୍ଯାମୀକୁ କ୍ଷମା ମାଗିଲା।

ଭକ୍ତଦମ୍ପତିଙ୍କର ଏଭଳି ବ୍ୟାକୁଳ ସ୍ଥିତି ଦେଖି ଭଗବାନ ଆଉ ନୀରବ ରହି ପାରିଲେ ନାହିଁ। ସେ ଆକାଶ ବାଣୀ କଲେ—''ଭକ୍ତବର! ତୁମେ ମନରୁ ସନ୍ତାପ ଛାଡ଼ି ଏବେ ପ୍ରସାଦ ସେବନ କର। ସେହି ଅନ୍ତର୍ଯାମୀ ଆଉ କେହି ନୁହେଁ; ମୁଁ ତୁମ ସାଧୁସେବାରେ ସନ୍ତୁଷ୍ଟ ହୋଇ ଅନ୍ତର୍ଯାମୀ ରୂପରେ ତେର ମାସ ପର୍ଯ୍ୟନ୍ତ ତୁମ

ଘରେ ସେବକ ହୋଇ ରହିଲି। ତୁମ କରୁଣାରୁ ମୋତେ ସାଧୁସେବାର ସୌଭାଗ୍ୟ ମିଳିଲା; ମୋର ଅନେକ ଦିନର ଅଭିଳାଷ ପୂର୍ଣ୍ଣ ହେଲା। ମୁଁ ତୁମର ପ୍ରେମ ଡୋରିରେ ବନ୍ଧା। ଏବେ ବି ମୁଁ ତୁମର କ୍ରୀତଦାସ ଏବଂ ସବୁ ଦିନ ପାଇଁ ଏହିପରି ଦାସ ହୋଇ ରହିବି ମଧ୍ୟ। ଯଦି ତୁମେ ଚାହିଁବ, ପୂର୍ବ ଭଳି ଆସି ମୁଁ ଏବେ ବି ତୁମର ସେବା କରିବାକୁ ପ୍ରସ୍ତୁତ ଅଛି।''

ଆକାଶବାଣୀ ଶୁଣି ତ୍ରିଲୋଚନଙ୍କ ହୃଦୟ ଦୁଃଖରେ ବିଗଳିତ ହୋଇଗଲା। ତାଙ୍କ ନେତ୍ରରୁ ଧାର ଧାର ଲୋତକ ବହି ଚାଲିଲା। କିଛି ସମୟ ପାଇଁ ସେ ମୂର୍ତ୍ତି ଭଳି ସ୍ତବ୍ଧ ହୋଇଗଲେ। ସେ ବିଶ୍ୱାସ କରି ପାରୁ ନ ଥାନ୍ତି ଯେ ତାଙ୍କ ପ୍ରଭୁ ହିଁ ଅନ୍ତର୍ଯାମୀ ରୂପରେ ଆସିଥିଲେ ବୋଲି। ଯୋଡ଼ହସ୍ତ ହୋଇ ଆର୍ତ୍ତ ସ୍ୱରରେ ପ୍ରଭୁଙ୍କୁ ପ୍ରାର୍ଥନା ଜଣାଇ କହିଲେ—''ଦୟାମୟ! ସତରେ, ତୁମେ ଅନ୍ତର୍ଯାମୀ ରୂପରେ ଆସି ଏତେ ସେବା କଲ! ସେଇଥିପାଇଁ ଅନ୍ତର୍ଯାମୀକୁ ଦେଖିବାକୁ ମୋ ମନ ବାରମ୍ବାର ବ୍ୟାକୁଳ ହେଉଥିଲା। ତା'ର ଶ୍ୟାମଳ ଦେହକୁ ଦେଖିଲେ ତୁମ କଥା ମନେପଡୁଥିଲା। ହାୟ! ମୁଁ କେଡ଼େ ଅଭାଗା! ତୁମେ ଏତେ ଦିନ ଆମ ଘରେ ରହିଲ, ଅଥଚ ମୁଁ ତୁମକୁ ଚିହ୍ନି ପାରିଲି ନାହିଁ। ମୋର ଅଧମ ପ୍ରାଣକୁ ଧିକ୍। ମୁଁ ଜୀବନରେ ତୁମର ଚାକର ନ ହୋଇ ତୁମକୁ ଚାକର କରି ରଖିଲି। ଭକ୍ତ ବୋଲି ସଂସାରରେ ଢେଙ୍ଗୁରା ପିଟି ହେଉଥିବା ମୋ'ଠାରୁ ନୀଚ ଆଉ କିଏ ଅଛି? ପ୍ରଭୁ! ମୋ ବ୍ୟବହାରରେ ତୁମକୁ ନିଶ୍ଚୟ ବହୁ କଷ୍ଟ ହୋଇଥିବ। ମୋ ସ୍ତ୍ରୀ ପଡ଼ିଶା ଘରେ ଯାଇ ତୁମ ଖୋରାକ କଥା ଚର୍ଚ୍ଚା କରିଦେଲା। କରୁଣାମୟ! ମୋର ନୀଚତା ପ୍ରତି ଦୃଷ୍ଟି ନ ଦେଇ ତୁମେ ମୋତେ କେତେ ଆଦର ଦେଲ! ନାମକୁ ମାତ୍ର ତୁମର ଭକ୍ତ ବୋଲାଉଥିବାରୁ ତୁମେ ମୋର ଅବଗୁଣକୁ ନ ଦେଖି ସବୁବେଳେ ଗୁଣର ବଖାଣ କଲ। ପ୍ରଭୁ! ଏବେ ମୋତେ ଆଉ ଥରେ ମାତ୍ର ଦର୍ଶନ ଦିଅ। ତୁମ ପାଦପଦ୍ମରେ ମସ୍ତକ ରଖି ମୁଁ ଥରେମାତ୍ର ଏହି ବ୍ୟଥିତ ଓ ସନ୍ତପ୍ତ ପ୍ରାଣକୁ ଶୀତଳ କରିବାକୁ ଚାହେଁ। ତୁମକୁ ନ ଦେଖିଲେ ମୋ ପ୍ରାଣ ଆଉ ରହିବ ନାହିଁ।''

ଭକ୍ତଦମ୍ପତିଙ୍କ ଆକୁଳ ପ୍ରାର୍ଥନା ଶୁଣି ଭଗବାନ ତାଙ୍କ ଆଗରେ ସହସା ପ୍ରକଟ ହୋଇଗଲେ। ପ୍ରଭୁଙ୍କର ଭୁବନମୋହନ ଅଙ୍ଗ କାନ୍ତି ଦର୍ଶନ କରି ଭକ୍ତଦମ୍ପତି ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ। ନେତ୍ରର ଅଶ୍ରୁଜଳରେ ପ୍ରଭୁଙ୍କ ଚରଣ ପ୍ରକ୍ଷାଳନ କରିଦେଲେ। ଭାବନାର ଆବେଗରେ କିଛି କହିବାକୁ ତାଙ୍କର ବାଣୀ ସ୍ଫୁରୁ ନ ଥାଏ। ଭଗବାନ ଭକ୍ତଦମ୍ପତିଙ୍କ ମସ୍ତକରେ ବରଦ ହସ୍ତ ଅର୍ପଣ କରି ଅନେକ

ସାନ୍ତ୍ୱନା ଦେଇ ଦମ୍ପତିଙ୍କ ନେତ୍ରପଥରୁ ଅନ୍ତର୍ହିତ ହୋଇଗଲେ। ପ୍ରଭୁଙ୍କ ଅପାର କୃପା ଅନୁଭବ କରି ଭକ୍ତଦମ୍ପତି ଜୀବନର ଅବଶିଷ୍ଟ ସମୟକୁ ପ୍ରଭୁଭକ୍ତି ଓ ସାଧୁସେବାରେ ବିନିଯୋଗ କରି ଶେଷରେ ପ୍ରଭୁଙ୍କର ପରମ ଧାମ ଗମନ କଲେ।



# ଅକିଞ୍ଚନ ଭକ୍ତ ହରିପାଳ

**'ଧେନୁ ପଛେ ପଛେ ବତ୍ସା ଗମେ କ୍ଷୀର ଲୋଭେ। ଭକତ ପଛରେ ତୁହି ଥାଉ ସେହି ଭାବେ'**—ଏହି ଉକ୍ତିଟି ଜନମୁଖରେ ପ୍ରସିଦ୍ଧ ଏବଂ ଏହା ନିରାଟ ସତ୍ୟ ମଧ୍ୟ। କ୍ଷୀର ଲୋଭରେ ବାଛୁରୀ ଗାଈ ପଛେ ପଛେ ବୁଲିବା ପରି ଭଗବାନ ଭକ୍ତଜନଙ୍କ ପଛରେ ପ୍ରୀତି ଲୋଭରେ ବିଚରଣ କରନ୍ତି। ଭଗବାନ ସ୍ୱମୁଖରେ ଉଦ୍ଧବଙ୍କୁ କହିଛନ୍ତି ଯେ, ଭକ୍ତଙ୍କ ଚରଣଧୂଳିର ସ୍ପର୍ଶ ପାଇ ପବିତ୍ର ହେବା ଆଶାରେ ମୁଁ ସେମାନଙ୍କର ଅନୁଗମନ କରେ—

**ସ୍ୱଭାବେ ନିରପେକ୍ଷ ଶାନ୍ତ। ତପସ୍ୱୀ ରିପୁ ବିବର୍ଜିତ॥**
**ସମଦରଶୀ ପ୍ରେମପ୍ଲୁତ। ଦୟାସାଗର ପରହିତ॥**
**ଏମନ୍ତ ପ୍ରାଣୀଙ୍କର ପଛେ। ନିତ୍ୟେ ମୁଁ ବୁଲଇ ପ୍ରତ୍ୟକ୍ଷେ॥**
**ଆବୋରି ଥାଇ ବେନି ପାଶେ। ତାର ଚରଣ ରେଣୁ ଆଶେ॥**
**ମୋର ଅନ୍ତରେ ବିଶ୍ୱ ପେଣୁ। ପବିତ୍ର କରଇ ସେ ରେଣୁ॥**

ଗାଈ ପଛରେ କ୍ଷୀର ଲୋଭରେ ବାଛୁରୀ ଗୋଡ଼ାଇବା ତ ସ୍ୱାଭାବିକ, କିନ୍ତୁ ଭଗବାନଙ୍କର କି ଊଣା ଅଛି ଯେ ସେ କାହିଁକି ବାଛୁରୀ ପଛରେ ଗାଈ ଦୌଡ଼ିବା ଭଳି ଭକ୍ତ ପଛରେ ଧାଇଁଥାନ୍ତି। ଭଗବାନଙ୍କର ସବୁ ଥିଲେ ମଧ୍ୟ ଗୋଟିଏ ଜିନିଷ ଊଣା ରହିଛି। ତାହା ହେଉଛି ପ୍ରେମ। ସେ ପ୍ରେମ ପାଇବା ଆଶାରେ ଭକ୍ତର ଅନୁଗମନ କରନ୍ତି। ପ୍ରେମଲୋଭୀ ଠାକୁରଙ୍କୁ ପ୍ରେମ ଦାନ ଦେବାରେ ସମର୍ଥ ଥିଲେ ଅକିଞ୍ଚନ ହରିପାଳ।

ବାଛୁରୀ ପଛରେ ଗାଈ ଗୋଡ଼ାଇବା ଦୃଷ୍ଟାନ୍ତଟି ବିଚିତ୍ର ନୁହେଁ! କିନ୍ତୁ ଏହା ସେହି ବାଛୁରୀ ପାଇଁ ପ୍ରଯୁଜ୍ୟ ହୁଏ, ଯାହାର ଜୀବନ କେବଳ ମାଆ କ୍ଷୀରର ଆଶ୍ରିତ। ଗଉଡ଼ ନବଜାତ ବାଛୁରୀକୁ କୋଳରେ ଧରି ଆଗେ ଆଗେ ଚାଲିଲେ ଗାଈ ହମ୍ବା ରାବ ଛାଡ଼ି ତା' ପଛେ ପଛେ ଦୌଡ଼େ। ଜଙ୍ଗଲକୁ ଚରିବାକୁ ଯାଇଥିବା ନବପ୍ରସୂତା ଗାଈ ସଂଧ୍ୟା ସମୟରେ ଫେରିବା ବେଳେ ଗାଈଗୋଠର ସବୁଠୁ

ଆଗରେ ଲାଙ୍ଗୁଳ ଉଠାଇ ହୁଂକାର କରି ଦୌଡୁଥାଏ। ସେ ତା' ବଛାକୁ ଘରେ ଛାଡ଼ି ଯାଇଥିବାରୁ ତାର ବାରମ୍ବାର ତା' କଥା ମନେପଡ଼େ। ଏ ସବୁ ହୁଏ ବାତ୍ସଲ୍ୟସ୍ନେହ କାରଣରୁ। ଗାଈର ବଛା ପ୍ରତି ଥିବା ପ୍ରେମକୁ 'ବାତ୍ସଲ୍ୟ ପ୍ରେମ' କୁହାଯାଏ। ଗାଈର ଏପରି ପ୍ରେମ ପରବଶତା ପଛରେ ରହିଥାଏ ବାଛୁରୀର ଅନନ୍ୟତା। ଯେପର୍ଯ୍ୟନ୍ତ ବାଛୁରୀ ତା' ମାଆ କ୍ଷୀର ବ୍ୟତୀତ ଅନ୍ୟ କିଛି ଗ୍ରହଣ କରେ ନାହିଁ, ଗାଈ ତାକୁ ସବୁବେଳେ ନଜରରେ ରଖିଥାଏ। ସେହିପରି ଭକ୍ତ ହରିପାଳ ଅକିଞ୍ଚନ ହୋଇଥିବାରୁ ଭଗବାନ ଭକ୍ତବାତ୍ସଲ୍ୟ ଗୁଣର ବଶୀଭୂତ ହୋଇ ତା' ପଛେ ପଛେ ଯାଉଥିଲେ।

ଏସବୁ ଥିଲା ଭକ୍ତ ହରିପାଳଙ୍କର ଅନନ୍ୟ ଭକ୍ତି, ସାଧୁସେବା ଓ ଅକିଞ୍ଚନତାର ପ୍ରଭାବ। 'ଅକିଞ୍ଚନ' ଶବ୍ଦର ଅନେକ ଅର୍ଥ ହୋଇପାରେ। ଭଗବାନଙ୍କ ଛଡ଼ା ଯାହାର ଅନ୍ୟ କେହି ଆପଣାର ନାହିଁ, ସେ ଅକିଞ୍ଚନ ଏବଂ ଭଗବାନଙ୍କ ବ୍ୟତୀତ ଯାହାର ଅନ୍ୟ ସମ୍ପତ୍ତି ନାହିଁ, ସେ ମଧ୍ୟ ଅକିଞ୍ଚନ। ଭଗବାନ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ପରିହାସ ଛଳରେ ଥରେ କହିଥିଲେ—"ହେ ଭଦ୍ରେ! ମୁଁ ହେଉଛି ଅକିଞ୍ଚନ ଏବଂ ଅକିଞ୍ଚନ ଭକ୍ତ ହେଉଛନ୍ତି ମୋର ପ୍ରିୟ। ସେମାନେ ମୋର ଗଣ୍ଠିଧନ।"

ଭକ୍ତ ହରିପାଳ ଅକିଞ୍ଚନ ଥିଲେ ସତ, କିନ୍ତୁ କମ୍ ଚତୁର ନ ଥିଲେ। ଭଗବାନଙ୍କୁ ପ୍ରସନ୍ନ କରିବାର କୌଶଳ ତାଙ୍କୁ ବେଶ୍ ଜଣାଥିଲା। ସେ ବୁଝି ସାରିଥିଲେ ଯେ ଭଗବାନଙ୍କର ଗଣ୍ଠିଧନସ୍ୱରୂପ ଭକ୍ତଜନଙ୍କୁ ଯଦି ସେ ଆପଣାର କରି ତାଙ୍କର ସେବାରେ ନିଜକୁ ଉତ୍ସର୍ଗ କରି ଦିଅନ୍ତି, ତେବେ ଭଗବାନଙ୍କୁ ଖୁସୀ କରିବାରେ ଆଦୌ ବିଳମ୍ବ ହେବ ନାହିଁ। ଠିକ୍ ସେଇଆ ହେଲା। ଏହି ନଶ୍ବରଶୀଳ ଧନ, ସମ୍ପତ୍ତି ଓ ଦେହଗେହକୁ ସାଧୁସେବାରେ ଉପଯୋଗ କରି ସେ ଅବିନାଶୀ ଭଗବାନଙ୍କୁ ଖୁସୀ କରି ପାରିଥିଲେ। ତାଙ୍କର ହୃଦୟ ସାଧୁସେବାରେ ଅନୁପ୍ରାଣିତ ଥିଲା। ଘରେ ଯାହା କିଛି ଧନ-ସମ୍ପତ୍ତି ଥିଲା, ସବୁକିଛି ସାଧୁସେବାରେ ଲଗାଇ ଦେବା ପରେ ଭକ୍ତ ହରିପାଳ ଘରକରଣା ଜିନିଷ ବନ୍ଧା ପକାଇ ଏବଂ ତାହା ସରିବା ପରେ କରଜ ଆଣି ସାଧୁସେବା କଲେ। ଯଦିବା କରଜ କରିବା ଠିକ୍ ନୁହେଁ, ତଥାପି ସାଧୁସେବା ଆଗରେ ତାହା କରିବାକୁ ମଧ୍ୟ ସେ କୁଣ୍ଠା ପ୍ରକାଶ କଲେ ନାହିଁ। ଧୀରେ ଧୀରେ ଲୋକମାନେ କରଜ ଦେବା ମଧ୍ୟ ବନ୍ଦ କରିଦେଲେ। ଯାହା ଦୁଆରକୁ ଯାଆନ୍ତି, ସେ ନାକଟେକି କହେ—ପୂର୍ବର କରଜ ଶୁଝାଇବାର ନାଆଁଗନ୍ଧ ନାହିଁ, ପୁଣି କରଜ ନେବାକୁ ଆସିଗଲା। ଯା, ଯା ଫେରିଯା ଆମ

ଦୁଆରୁ । ଏପରି କହିବା ସ୍ୱାଭାବିକ ମଧ୍ୟ; କାରଣ ଲୋକମାନଙ୍କୁ ଜଣାଥିଲା ଯେ ହରିପାଳ ପାଖକୁ ଯାହା ଚାଲିଗଲା, ତାହା ଆଉ ଫେରିବ ନାହିଁ। ସେ ଆଣିବ ବା କୁଆଡୁ ଯେ କରଜ ଶୁଝିବ? ତା'ର ସବୁ ଧନ ତ ସାଧୁସେବାରେ ଲାଗି ଯାଉଛି ।

ଲୋକେ ଯେତେବେଳେ କରଜ ଦେବାକୁ ମନା କରିଦେଲେ, ହରିପାଳଙ୍କ ମନ ଦୁଃଖ-ସାଗରରେ ବୁଡ଼ିଗଲା । ସେ ଭାବିଲେ, ସାଧୁସନ୍ଥ କ'ଣ ମୋ ଦୁଆରୁ ଖାଲି ହାତରେ ଲେଉଟିଯିବେ? ଯଦି ଏହା ହୋଇଗଲା, ତେବେ ଏଭଳି ଅଦରକାରୀ ପ୍ରାଣକୁ ରଖି ଲାଭ କ'ଣ? ଏପରି ଭାବି ଶେଷକୁ ସେ ଚୋରି କରିବାକୁ ନିଷ୍ପତ୍ତି କଲେ । କିନ୍ତୁ ସବୁ ଚୋରଙ୍କ ଭଳି ସେ ସାଧାରଣ ଚୋର ନ ଥିଲେ । ଚୋରି କାର୍ଯ୍ୟ ନିନ୍ଦନୀୟ ହୋଇଥିଲେହେଁ ତାହା ତାଙ୍କ ପାଇଁ ଗୁଣକାରୀ ହେଲା। ସ୍ୱୟଂ ଭଗବାନ ଲକ୍ଷ୍ମୀ-ନାରାୟଣ ବାଟୋଇରୂପରେ ଆସି ତାଙ୍କୁ ଦର୍ଶନ ଦେଲେ । କି ଆଶ୍ଚର୍ଯ୍ୟ! ଭଗବାନ ଯେଉଁଠି ଚୋରକୁ ଦଣ୍ଡ ଦେଇ ଶାସନ କରନ୍ତି, ସେ କ୍ଷେତ୍ରରେ ହରିପାଳଙ୍କୁ ମିଳିଲା ତାଙ୍କର ଦୁର୍ଲଭ ଦର୍ଶନ! ଏହାର ପଛରେ ଥିଲା ହରିପାଳଙ୍କର ସେବାନିଷ୍ଠା ଓ ପ୍ରଭୁଭକ୍ତି । ଭଗବାନ ତ ଭାବଗ୍ରାହୀ। ସେ କ'ଣ ଭକ୍ତର ଭାବ ଦେଖିବେ ନାହିଁ!

ହରିପାଳ ଚୋରି କରନ୍ତି ସତ, କିନ୍ତୁ ଲୋଭ ପରବଶ ହୋଇ ନୁହେଁ । ସେ କେବେ କୌଣସି ଜୀବକୁ କଷ୍ଟ ଦିଅନ୍ତି ନାହିଁ। ତିଳକ, କଣ୍ଠି ପିନ୍ଧିଥିବା ଭକ୍ତ-ବୈଷ୍ଣବଙ୍କୁ ଛୁଁଅନ୍ତି ନାହିଁ। ଯେଉଁମାନେ ନାସ୍ତିକ, ଧନ-ଗର୍ବୀ, ଦୁଃଖୀ ଲୋକଙ୍କର ଦୁଃଖକୁ ପଛ କରି ମଉଜମଜଲିସ୍‌ରେ ମାତିଥାନ୍ତି, ହରିପାଳ ଖୁବ୍ ପରୀକ୍ଷାନିରୀକ୍ଷା କରି ସେହିମାନଙ୍କ ଠାରୁ ଧନ ନେଇ ସାଧୁସେବାରେ ଲଗାନ୍ତି ।

ଜୀବକୁ ନରକରେ ପକାଉଥିବା ଚୋରି କର୍ମ ହରିପାଳଙ୍କ ପାଇଁ ଆଜି ପ୍ରଭୁଭକ୍ତିର ଅଦ୍ଭୁତ ରୀତି ହୋଇଗଲା । ଏହାର ଅର୍ଥ ନୁହେଁ ଯେ ଚୋରି କଲେ ଭଗବାନ ମିଳନ୍ତି। ଚୋରି କର୍ମର ଫଳସ୍ୱରୂପ ଜୀବକୁ ଜନ୍ମ-ଜନ୍ମାନ୍ତର ପର୍ଯ୍ୟନ୍ତ ଘୋର ଦୁଃଖ ମିଳେ । କୌଣସି କର୍ମ ପଛରେ ବ୍ୟକ୍ତିର ଭାବନା ଦେଖାଯାଏ। ମନୁଷ୍ୟ ଯେଉଁ ଭାବନା ଓ ଉଦ୍ଦେଶ୍ୟରେ କର୍ମ କରିଥାଏ, ତାହାକୁ ସେହି ଅନୁସାରେ ଫଳ ମିଳେ । ସେଥିପାଇଁ କୁହାଯାଇଛି ଯେ କର୍ମର ଗତି ଅତି ଗହନ— **'ଗହନା କର୍ମଣୋ ଗତିଃ ।'** ବାହ୍ୟ ଦୃଷ୍ଟିରେ ହରିପାଳ ଚୋରି କରିବା ଭଳି ମନେହେଉଥିଲେ ମଧ୍ୟ ସେଥିରେ ତାଙ୍କର ସ୍ୱସୁଖ ଭାବନା ନ ଥିଲା । ତେଣୁ

ତାଙ୍କର ଚୋରି କର୍ମ ଭଗବାନଙ୍କ ପୂଜାରେ ପରିଣତ ହୋଇଗଲା ଏବଂ ତାଙ୍କର ଭକ୍ତିପୂତ ପୂଜାରେ ପ୍ରସନ୍ନ ହୋଇ ଭଗବାନ ତାଙ୍କୁ ଦର୍ଶନ ଦେଲେ।

ଦିନକର କଥା। ହରିପାଳ ଅଜାଣତରେ ଜଣେ ବୈଷ୍ଣବ ମହାଜନଙ୍କ ଘରେ ଚୋରି କରିବାକୁ ପଶିଗଲେ। ଜିନିଷପତ୍ର ବନ୍ଧାବନ୍ଧି କରିବାର ଧଡ଼୍‌ଧାଡ଼୍ ଶବ୍ଦ ଶୁଣି ମହାଜନଙ୍କ ଝିଅର ନିଦ ଭାଙ୍ଗିଗଲା। ସେ ତା'ବାପାଙ୍କୁ ନିଦରୁ ଉଠାଇ କହିଲା—"ବାପା! ଉଠ, ଶୀଘ୍ର ଉଠ। ଆମ ଘରେ ଚୋର ପଶିଛି।" ମହାଜନ ଆଶ୍ଚର୍ଯ୍ୟରେ କହିଲେ—"ଚୋର! ଆମ ଗାଆଁରେ ତ କେହି ଚୋର ନାହିଁ। କାନ ଉଠିବା ଦିନଠାରୁ ଗାଆଁରେ କେବେ ଚୋରି ହେବା କଥା ମୁଁ ଶୁଣି ନାହିଁ। ଓହୋ! ଆସିଥିଲେ ସେଇ ହରିପାଳ ଆସିଥିବେ। ତୁ ପାଟି କରନା। ଚୁପ୍‌ଚାପ୍ ଶୋଇପଡ଼। ଭଲ, ସେ ନେଇ ଯାଆନ୍ତୁ। ସାଧୁସେବା କରିବେ। ଆମ ଧନ ସାଧୁସେବାରେ ଲାଗିଯିବ।"

ବାପଝିଅଙ୍କର ଏ କଥା ପଡ଼ିଲା ହରିପାଳଙ୍କ କାନରେ। ଦୁହିଁଙ୍କର କଥାବାର୍ତ୍ତାରୁ ସେ ଜାଣିଗଲେ ଯେ ମହାଜନେ ଜଣେ ଭକ୍ତ ଲୋକ। ସେ ନିଜର ଗାମୁଛା ସହିତ ସେଥିରେ ବାନ୍ଧିଥିବା ସବୁ ଜିନଷକୁ ସେମିତି ସେଇଠି ଛାଡ଼ିଦେଇ ଫେରିଗଲେ। ସେହି ଦିନଠାରୁ ତାଙ୍କ ମନରେ ଭୟ ବସିଗଲା ଯେ ଅଜାଣତରେ କୌଣସି ବୈଷ୍ଣବ ଘରୁ ଚୋରି ହୋଇଗଲେ ବଡ଼ ଅପରାଧ ହୋଇଯିବ। ତେଣୁ ସେ ଚୋରି କାମ ଛାଡ଼ି ଦିନଦି'ପହରେ ଡକାୟତି କରିବାକୁ ସ୍ଥିର କଲେ। ଜଙ୍ଗଲରେ ବସି ଭଗବାନଙ୍କ ନାମ ଜପନ୍ତି। କୌଣସି ନାସ୍ତିକ, ଅଭିମାନୀ, ଭଗବଦ୍‌ବିମୁଖ, ଧନଗର୍ବୀ ଲୋକ ସେ ବାଟରେ ଗଲେ ଖୁବ୍ ପରୀକ୍ଷାନିରୀକ୍ଷା କରି ତା'ର ଧନ ଲୁଟି ନିଅନ୍ତି।

ପ୍ରାଣକୁ ସଂକଟରେ ପକାଇ ମଧ୍ୟ ହରିପାଳ ସାଧୁସେବା ଛାଡ଼ିଲେ ନାହିଁ। ତାଙ୍କ ସେବାନିଷ୍ଠାରେ ପ୍ରସନ୍ନ ହୋଇ ଭଗବାନ ତାଙ୍କୁ ଦର୍ଶନ ଦେବାକୁ ମନସ୍ଥ କଲେ। ପ୍ରଭୁଙ୍କ ଦୟାରୁ ଦିନେ ତାଙ୍କ ଘରକୁ ବିରାଟ ସନ୍ଥମଣ୍ଡଳୀ ଆସିଗଲେ। ସେମାନେ ହରିପାଳଙ୍କ ଦୁଆରେ ଠିଆ ହୋଇ 'ଜୟ ସୀତାରାମ!', 'ଜୟ ରାଧେଶ୍ୟାମ!' ଡାକିଲେ। ଭଜତେ ସବୁ କାମ ଛାଡ଼ି ଆସି ଦେଖନ୍ତି ତ ସନ୍ଥଙ୍କର ବିରାଟ ମଣ୍ଡଳୀ। ତାଙ୍କ ହର୍ଷର ଠିକଣା ରହିଲା ନାହିଁ। ସେ ଖୁବ୍ ଆଦରରେ ସନ୍ଥଙ୍କ ଚରଣ ପ୍ରକ୍ଷାଳନ କରି ଘରକୁ ପାଛୋଟି ନେଲେ। ସେମାନଙ୍କ ଭଲମନ୍ଦ ପଚାରି ଆସନ ଦେଲେ। ତା'ପରେ ବେଗ ବେଗ ଯାଇ ପତ୍ନୀକୁ ସନ୍ଥଙ୍କ ଆଗମନର ଖବର ଜଣାଇ

ସେମାନଙ୍କର ସ୍ୱାଗତ-ସତ୍କାର ପାଇଁ ଓ ପ୍ରସାଦର ବ୍ୟବସ୍ଥା କରିବା ପାଇଁ କହିଲେ। ସ୍ତ୍ରୀ ମନ ଦୁଃଖରେ କହିଲା—"ସ୍ୱାମୀ! ଘରେ କିଛି ବି ନାହିଁ। ମୁଁ କି ବ୍ୟବସ୍ଥା କରିବି?" ହରିପାଳ କହିଲେ—"ପଡ଼ିଶା ଘରୁ କିଛି ଉଧାର ନେଇଆସ, ପରେ ଦେଇଦେବା।" ସ୍ତ୍ରୀ କହିଲା—"କାହାଠାରୁ ଉଧାର ଆଣିବି? ଉଧାର ଦେବା ତ ଦୂରର କଥା, ଲୋକେ ମୋତେ ଦେଖିଲେ କାଳେ କିଛି ମାଗିବାକୁ ଆସିଲାଣି ବୋଲି ଭାବି କବାଟ କିଳି ଦେଉଛନ୍ତି। ମୋ ସହିତ ଭଲଭାବେ ଦି'ପଦ କଥାବାର୍ତ୍ତା ମଧ୍ୟ ହେଉ ନାହାନ୍ତି। ତେଣୁ ଆମର ଅନ୍ୟ କୌଣସି ଆଶ୍ରା ନାହିଁ। ଆସ, ଦୟାମୟ ପ୍ରଭୁଙ୍କୁ ଡାକିବା। ସର୍ବସମର୍ଥ ପ୍ରଭୁ ଚାହିଁଲେ ଅସମ୍ଭବକୁ ମଧ୍ୟ ସମ୍ଭବ କରିଦେବେ।"

ହରିପାଳ ଆତିଥ୍ୟ ପାଇଁ ସନ୍ଥମଣ୍ଡଳୀକୁ ଡାକି ଆଣି ଘରେ ବସାଇ ସାରିଛନ୍ତି। ଅଥଚ ଘରେ ଖୁଦ ମୁଠାଏ ବି ନାହିଁ। ଭକ୍ତଦମ୍ପତ୍ତିଙ୍କ ମୁଖମଣ୍ଡଳରେ ବିଷାଦର ଗଭୀର ରେଖା। ସେ ପ୍ରଭୁଙ୍କ ଶରଣାପନ୍ନ ହୋଇ ଅଧୀର ହୃଦୟରେ ପ୍ରାର୍ଥନା କଲେ—"ହେ ଠାକୁରେ! ଆମକୁ ଏହି ଧର୍ମସଂକଟରୁ ଉଦ୍ଧାର କର। ସନ୍ଥଜନ ଆମ ଦୁଆରୁ ଆତିଥ୍ୟ ନ ପାଇ ଫେରିଗଲେ ଆମେ ଜୀବନ ହାରିଦେବୁ। ଏଥିରେ ଆମର କିଛି ଯିବ ନାହିଁ, ଲଜ୍ଜା ହେବ ତୁମକୁ। ତୁମ ବିନା ଆମର ଆଉ କିଏ ଅଛି ଯେ କାହା ଆଗରେ ଗୁହାରୀ କରିବୁ। ଶୀଘ୍ର କିଛି ବ୍ୟବସ୍ଥା କର ଦୟାନିଧି!"

ଭକ୍ତବତ୍ସଳ ଭଗବାନ ତ ଭକ୍ତର ପ୍ରାର୍ଥନାକୁ ଅପେକ୍ଷା ରହିଥାନ୍ତି। ଅକିଞ୍ଚନ ଭକ୍ତଦମ୍ପତ୍ତିଙ୍କ ଡାକ ଶୁଣିବା କ୍ଷଣି ସେ ଅସ୍ଥିର ହୋଇ ଉଠିଲେ। ତାଙ୍କ ଲଲାଟରେ ଦେଖାଦେଲା ବିଷାଦର ଚିହ୍ନ। ସତେ ଯେପରି ସେ ଭକ୍ତର ବିଷାଦକୁ ହରଣ କରି ନିଜ ମସ୍ତକରେ ଧାରଣ କରିଛନ୍ତି। ପ୍ରଭୁ ସେତେବେଳେ ଦ୍ୱାରକାରେ ରୁକ୍ମିଣୀଙ୍କ ମହଲରେ ବିରାଜମାନ ଥିଲେ। ଭକ୍ତର ସାଧୁସେବା ନିଷ୍ଠା ତାଙ୍କ ମନକୁ ହରଣ କରିନେଲା। ସେ ତରତର ହୋଇ ନାନା ପ୍ରକାର ମୂଲ୍ୟବାନ୍ ବସ୍ତ୍ର ଆଭୂଷଣ ପିନ୍ଧି ଜଣେ ଧନୀକ ରୂପ ଧରି ଭକ୍ତ ନିକଟକୁ ଯିବାକୁ ବାହାରିଲେ। ପ୍ରଭୁଙ୍କ ଯିବା ଦେଖି ରୁକ୍ମିଣୀ ପଚାରିଲେ—"ଏମିତି ମହାଜନ ବେଶରେ କୁଆଡ଼େ ବାହାରିଲେ ସ୍ୱାମୀ! କି ଜରୁରୀ କାମ ପଡ଼ିଲା?" ଦ୍ୱାରକାନାଥ କହିଲେ—"ଜଣେ ଭକ୍ତ ଘରକୁ ଯିବାକୁ ବାହାରିଥିଲି, କିନ୍ତୁ ତୁମେ ଅମଙ୍ଗଳ କରିଦେଲ। ଲାଗୁଛି ଯାତ୍ରା ଶୁଭ ହେବ ନାହିଁ। କେଉଁଆଡ଼େ ଯିବାକୁ ବାହାରିଲା ବେଳେ ଏମିତି ପଚାରିବା ଠିକ୍

ନୁହେଁ। ଭକ୍ତ ଘରେ ଉତ୍ସବ ଥିଲା ତ, ସେଥିପାଇଁ ଯିବାକୁ ଭାବିଥିଲି। ଉତ୍ସବରେ ଖୁବ୍ ଆନନ୍ଦ ମିଳିବ, ଆଉ ଆବଶ୍ୟକ ହେଲେ କିଛି ଉପହାର ବି ଦେବାକୁ ପଡ଼ିପାରେ।'' ଭକ୍ତଙ୍କ ଗୃହରେ ସାଧୁସନ୍ଥଙ୍କ ପଙ୍ଗତ ହେବା ଭଗବାନଙ୍କ ପାଇଁ ମହା ମହୋତ୍ସବ। ତେଣୁ ସେ ଲକ୍ଷ୍ମୀଙ୍କୁ ଉତ୍ସବ ହେଉଛି ବୋଲି କହିଲେ। ତା' ଛଡ଼ା ଅମଙ୍ଗଳ ହୋଇଗଲା ବୋଲି ସେ ଏଇଥିପାଇଁ କହିଲେ ଯେ ଭବିଷ୍ୟତରେ କିଛି ଅପ୍ରିୟ ଘଟଣା ଘଟିଲେ ତାଙ୍କ ଉପରେ ଆଞ୍ଚ ଆସିବ ନାହିଁ।

ରୁକ୍ମିଣୀ ଟିକିଏ ମୁହଁ ଶୁଖାଇ କହିଲେ—''ତୁମେ ଆମ ସ୍ତ୍ରୀଲୋକଙ୍କ ମନ କଥା ବୁଝି ପାରିବ ନାହିଁ। ମୁଁ ଏକୁଟିଆ କୁଆଡ଼େ ଯାଇପାରୁ ନାହିଁ, ଆଉ ତୁମେ ମୋତେ କୁଆଡ଼େ ସାଙ୍ଗରେ ନେଉ ନାହଁ। ଯୁଆଡ଼େ ମନ ଏକୁଟିଆ ଚାଲିଯାଉଛ। ସ୍ୱାମୀ! କେବେ କେବେ ମୋତେ ବି ତ ସାଙ୍ଗରେ ନେଇଚାଲ। ମୋତେ ବି ତ ଟିକିଏ ଭକ୍ତର ଦର୍ଶନ କରାଇଦିଅ।'' ରୁକ୍ମିଣୀଙ୍କ ପ୍ରଣୟ ମିଶ୍ରିତ ମଧୁର ବଚନ ଶୁଣି ଭଗବାନ ଟିକିଏ ମୁରୁକି ହସି କହିଲେ—''ହଉ, ମାନ କର ନାହିଁ। ତୁମର ଯଦି ଯିବାକୁ ମନ ବଳିଛି, ମୋ ସାଙ୍ଗରେ ଚାଲ। କିନ୍ତୁ ମନେରଖ, ତୁମର ବେଶ ଯେପରି ମୋ'ଠାରୁ ଊଣା ହେବ ନାହିଁ। ତୁମେ ଗୃହଲକ୍ଷ୍ମୀ। ନାମ ଅନୁରୂପ ବେଶ ହେବା ଦରକାର। ଦାମିକା ଦାମିକା ଆଭୂଷଣ ପିନ୍ଧାପିନ୍ଧି କରି ବେଗି ବେଗି ସଜ ହୁଅ। ସିଏ ମୋର ବଡ଼ ଭକ୍ତ ତ, ତେଣୁ ତା' ଘରକୁ ସାଧାରଣ ବେଶରେ ଗଲେ କାମ ଚଳିବ ନାହିଁ।'' ରୁକ୍ମିଣୀ ଭାବିଲେ, ବଡ଼ ଭକ୍ତର ଅର୍ଥ ଖୁବ୍ ଧନବାନ୍ ହୋଇଥିବ। ତେଣୁ ସେ ସିନ୍ଦୁକ ଖୋଲି ବାଛି ବାଛି ବହୁମୂଲ୍ୟ ଗହଣା ପିନ୍ଧିବା ଆରମ୍ଭ କଲେ। ବାପଘରର ଓ ଶ୍ୱଶୁରଘରର ଗହଣାରେ ସର୍ବାଙ୍ଗ ଭରିଦେଲେ। ଭଗବାନ ମନେ ମନେ ଖୁବ୍ ପ୍ରସନ୍ନ ହେଉଥାନ୍ତି ଯେ ଯାହାହେଉ ରୁକ୍ମିଣୀଙ୍କର ସବୁ ଗହଣାଗାଣ୍ଠି ବି ଆଜି ହରିପାଳର ଦାନ ଖାତାରେ ଯିବ। ଦ୍ୱାରକାନାଥ ରୁକ୍ମିଣୀଙ୍କୁ ମଝିରେ ମଝିରେ ନାନାପ୍ରକାର ମୂଲ୍ୟବାନ ଗହଣା କଥା ମନେ ପକାଇଦେଇ କହୁଥାନ୍ତି—''ସେ ବଡ଼ ହାରଟା ତ ପିନ୍ଧିଲ ନାହିଁ। ସେ ସୁଉଳି ମାଳଟା ତୁମକୁ ଭାରି ଶୋଭା ପାଇଥାନ୍ତା। ହାତରେ ଆଉ ଦୁଇଟା ମୁଦି ପିନ୍ଧି ପକାଅ। ମଥାମଣି ବିନା ତୁମେ ଭଲ ଲାଗୁ ନାହଁ, ଇତ୍ୟାଦି ଇତ୍ୟାଦି।'' ସ୍ତ୍ରୀ ଲୋକଙ୍କର ଗହଣା ପିନ୍ଧିବାକୁ ତ ସହଜେ ସଉକ ଥାଏ, ତା' ସାଙ୍ଗକୁ ଭଗବାନଙ୍କର ପ୍ରେରଣା। ପୁଣି ଆଉ କହିବାର କ'ଣ ଅଛି? ସୁନାରେ ସୁଗନ୍ଧ ଆସିଗଲା। ରୁକ୍ମିଣୀ ବସ୍ତ୍ରାଭୂଷଣରେ ମଣ୍ଡିତ ହୋଇ ପାଉଁଜି ରୁଣୁଝୁଣୁ କରି ଖୁସୀ ମନରେ ବାହାରିଲେ

ପ୍ରଭୁଙ୍କ ସଙ୍ଗରେ ଭକ୍ତ ଘରକୁ ଯିବା ପାଇଁ।

ଛଦ୍ମ ମହାଜନ ବେଶଧାରୀ ଭଗବାନ ରୁକ୍ମିଣୀଙ୍କ ସଙ୍ଗରେ ଯାଇ ପହଞ୍ଚିଲେ ହରିପାଳଙ୍କ ଦ୍ୱାରଦେଶରେ। ମନ ଦୁଃଖରେ ବସି ଭକ୍ତ ହରିପାଳ ସାଧୁସେବା ପାଇଁ କି ବ୍ୟବସ୍ଥା କରିବେ ଚିନ୍ତା କରୁଥାନ୍ତି। ଭଗବାନ ତାଙ୍କ ନିକଟକୁ ଯାଇ ଗୋଟିଏ ଗ୍ରାମର ନାମ କହି ସେଠାକୁ ଯିବାର ବାଟ ପଚାରିଲେ, କହିଲେ—"ଭାଇ! ଆମେ ସୁଦୂର ଦ୍ୱାରକାରୁ ଆସିଛୁ। ଶୁଣିଲୁ ଏପଟେ ଜଙ୍ଗଲ ରାସ୍ତା ପଡ଼ିବ। ଚୋରଡାକୁଙ୍କର ଭୀଷଣ ଭୟ। ଆମେ ତୁମକୁ ତୁମର ମଜୁରୀ ଦେଇଦେବୁ। ଦୟା କରି ଆମକୁ ଯଦି ସେ ଗାଆଁରେ ଟିକିଏ ଛାଡ଼ିଦେଇ ଆସନ୍ତ, ଆମେ ଅନୁଗ୍ରହୀତ ହୁଅନ୍ତୁ।"

ହରିପାଳଙ୍କ ମନ ଭିତରଟା ଆନନ୍ଦରେ ନାଚି ଉଠିଲା। ତାଙ୍କୁ ଦୁଃଖ ନଦୀରେ ବୁଡ଼ି ଯାଉଥିବା ବେଳେ ଗୋଟିଏ ନାବ ମିଳିଗଲା ପରି ଲାଗିଲା। ସେ ଅତି ଉତ୍ସାହରେ କହିଲେ—"ବାଃ! ପ୍ରଭୁଙ୍କର କେଡ଼େ କୃପା! ତୁମେ ଠିକ୍ ସମୟକୁ ଆସି ପହଞ୍ଚିଗଲ। ମୋ ଘରେ ସାଧୁସନ୍ଥ ବସିଛନ୍ତି। ତାଙ୍କର ଆତିଥ୍ୟ ପାଇଁ କିଛି ପଇସା ଦରକାର ଥିଲା। ତେଣୁ ପ୍ରଥମେ ମୋ ମଜୁରୀଟା ଦେଇଦିଅ। ତା'ପରେ ମୁଁ ତୁମକୁ ଆରାମରେ ଛାଡ଼ିଦେଇ ଆସିବି।" ଭଗବାନ ହରିପାଳକୁ ମଜୁରୀ କେତେ ବୋଲି ପଚାରିବାରୁ ସେ କହିଲେ—"ନା, ନା। ତୁମ ଭଳି ମହାଜନଙ୍କ ସହିତ ମୁଁ ମୂଲଚାଲ କରିବି? ତୁମ ମନକୁ ଯାହା ପାଉଛି ଦେଇଦିଅ।" ଭଗବାନ ମଜୁରୀ ଅପେକ୍ଷା କିଛି ଅଧିକ ଧନ ଦେଇ କହିଲେ—"ଏବେ ଏତିକି ରଖ। ତୁମ ବ୍ୟବହାରରେ ଖୁସୀ ହେଲେ ଆହୁରି ଧନ ଦେବୁ।" ହରିପାଳଙ୍କୁ ତାଙ୍କ ଦେହରେ ନୂତନ ପ୍ରାଣ ସଞ୍ଚାର ହେବା ପରି ଲାଗିଲା। ସେ ସେହି ପଇସାରେ ସନ୍ଥଜନଙ୍କ ପାଇଁ ବାଲଭୋଗ ତିଆରି କରିବାକୁ ସ୍ତ୍ରୀକୁ ଆଜ୍ଞା ଦେଇ ବାହାରିଲେ ମହାଜନଙ୍କୁ ତାଙ୍କ ଗନ୍ତବ୍ୟ ସ୍ଥାନରେ ଛାଡ଼ି ଆସିବା ପାଇଁ।

ହରିପାଳ ଦେଖିବାକୁ ଭୀମସେନ ଭଳି। ଖୁବ୍ ବଳିଷ୍ଠ ଚେହେରା, ପରମ ତେଜସ୍ୱୀ ଓ ବଳବାନ୍। ଡାହାଣ ହାତରେ ତାଳୁଏ ଉଚ୍ଚାର ଠେଙ୍ଗାଟାଏ ଧରିଥାନ୍ତି ଏବଂ ବାଆଁ ହାତରେ ଧରିଥାନ୍ତି ମୁନିଆ ଭାଲା। ଖଡ଼ଉ ପିନ୍ଧି ଖଟ୍ ଖଟ୍ ଶବ୍ଦ କରି ହରିପାଳ ଚାଲିଥାନ୍ତି ଆଗେ ଆଗେ, ଆଉ ପଛେ ପଛେ ଚାଲିଥାନ୍ତି ମହାଜନ ବେଶଧାରୀ ରୁକ୍ମିଣୀ ଓ ନାରାୟଣ। ରୁକ୍ମିଣୀ ବୁଝି ପାରୁ ନ ଥାନ୍ତି ଯେ ଭଗବାନ କି ଲୀଳା କରିବାକୁ ଚାହୁଁଛନ୍ତି? ହରିପାଳର ରୂପ ଓ ଚାଲିଚଳନ ଦେଖି ତାଙ୍କ

ମନ ଭୟରେ କମ୍ପୁଥାଏ। ସେ ବାରମ୍ବାର ସଭୟ ନେତ୍ରରେ ଭଗବାନଙ୍କ ଆଡ଼କୁ ଚାହୁଁଥାନ୍ତି। ଭଗବାନ ମଧ୍ୟ ଡରିବା ପରି ଅଭିନୟ କରି ରୁକ୍ମିଣୀଙ୍କୁ ଫୁସ୍ ଫୁସ୍ ହୋଇ କିଛି କହୁଥାନ୍ତି। ହରିପାଳ ମଝିରେ ମଝିରେ କଣେଇ କଣେଇ ପଛକୁ ଚାହୁଁଥାନ୍ତି। ତାଙ୍କ ମନ ଲାଗିଥାଏ ବାଟୋଇଙ୍କ ଗହଣାରେ। କିନ୍ତୁ ସେ ସେମିତି ତ ଲୁଟିବେ ନାହିଁ। ତେଣୁ ପରୀକ୍ଷା କରୁଥାନ୍ତି ଯେ ଏମାନେ ବୈଷ୍ଣବ ଭକ୍ତ କି ନାସ୍ତିକ ଲୋକ। ଦେଖିଲେ ତାଙ୍କ ଦେହରେ କଣ୍ଠି, ତିଳକ ଇତ୍ୟାଦି କୌଣସି ବୈଷ୍ଣବ ଚିହ୍ନ ନାହିଁ। ତାଙ୍କର ଆଚରଣ ମଧ୍ୟ ବିପରୀତ ଜଣାପଡୁଛି। ମହାଜନେ ପରିସ୍ରା କରି ପାଣି ଘେନୁ ନାହାନ୍ତି। ହାତଗୋଡ ନ ଧୋଇ ଖାଇ ଦେଉଛନ୍ତି। ହରିପାଳଙ୍କୁ ଲାଗିଲା ଯେ ଇଏ ପକ୍କା ନାସ୍ତିକ। କିନ୍ତୁ କିଏ ଜାଣେ, ତାଙ୍କ ଅନୁମାନ ସତ ହୋଇ ବି ନ ପାରେ। ଯାତ୍ରା କଲାବେଳେ ପବିତ୍ରତା ରକ୍ଷା କରିବା କଠିନ। ଶାସ୍ତ୍ରରେ ମଧ୍ୟ କୁହାଯାଇଛି ଯେ **'ପଥି ଶୂଦ୍ରବଦାଚରେତ୍'**। ତେଣୁ ସେ ଆଉ କିଛି ସମୟ ଅପେକ୍ଷା କଲେ। ଭାବିଲେ, ମହାଜନେ କିଛି କଥାବାର୍ତ୍ତା ହେଲେ ତାଙ୍କର ଭାବ ଜାଣି ହୋଇଯିବ।

ଭଗବାନ ବି କିଛି କମ୍ ଚତୁର ନୁହନ୍ତି। ଭକ୍ତର ସହାୟତା ପାଇଁ ଲୀଳାମୟ ରୁକ୍ମିଣୀଙ୍କ ସହିତ ଏକବାରେ ନାସ୍ତିକ ଲୋକ ଭଳି କଥାବାର୍ତ୍ତା ଆରମ୍ଭ କରିଦେଲେ। କହୁଥାନ୍ତି—''ଅମୁକ ଲୋକଠାରୁ ଏତେ ସୁଧ ଆଦାୟ କରିବାର ଅଛି। ଅମୁକ ଲୋକ ଟଙ୍କା ନେଲାବେଳକୁ ନେଇଗଲା, ଦେବାର ନାଆଁଗନ୍ଧ ନାହିଁ। ଅମୁକ ଜାଗାରୁ ଆସିଥିବା ଟଙ୍କାକୁ କେଉଁଠି ରଖିଦେଲି ମନେ ପଡୁ ନାହିଁ। ଅମୁକ ଭଣ୍ଡାର ଘରେ ମୋହର ଭରି ଗଲାଣି, ଆଉ ଗୋଟାଏ ଭଣ୍ଡାର ତିଆରି କରିବାକୁ ହେବ।'' ମଝିରେ ମଝିରେ ବ୍ୟାଗରୁ ମୁଠା ମୁଠା ହୀରାନୀଳା ବାହାର କରି ଭଗବାନ ରୁକ୍ମିଣୀଙ୍କୁ ଦେଖାଉଥାନ୍ତି ଏବଂ ପ୍ରତ୍ୟେକର ମୂଲ୍ୟ କହି କହି ମନେ ମନେ ଖୁସୀ ହେଉଥାନ୍ତି। ରୁକ୍ମିଣୀ ପ୍ରଭୁଙ୍କ କଥାରେ ହୁଁ ହୁଁ କରୁଥାନ୍ତି, କିନ୍ତୁ ତାଙ୍କ ମନ ଆଶଙ୍କା ମୁକ୍ତ ନ ଥାଏ। ସେ ବୁଝି ପାରୁ ନ ଥାନ୍ତି ଯେ ଆଜି ଦୟାମୟ କି ଲୀଳା କରିବେ!

ଏଥର ହରିପାଳଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସ ହୋଇଗଲା ଯେ ମହାଜନ ଘୋର ନାସ୍ତିକ ଲୋକ। ତାଙ୍କ ମନ-କଳିଜା ଆନନ୍ଦରେ ପ୍ରଫୁଲ୍ଲିତ ହୋଇ ଉଠିଲା। ସେ ମୁରୁକି ହସା ଦେଇ ବାରମ୍ବାର କଣେଇ କଣେଇ ପଛକୁ ଚାହୁଁଥାନ୍ତି। ତାଙ୍କର ଭାବଭଙ୍ଗୀରୁ ରୁକ୍ମିଣୀ ବୁଝିଗଲେ ଯେ ନିଶ୍ଚୟ କିଛି ବିପତ୍ତି ଆସିବ। ସେ ତାଙ୍କୁ

କହିଲେ—''ବାରମ୍ବାର ଏମିତି ମୋ ଆଡ଼କୁ ଚାହୁଁଛ କାହିଁକି? ତୁମ ବାଟରେ ତୁମେ ସିଧା ସିଧା ଚାଲୁନ।'' ହରିପାଳ କହିଲେ—''ଚିନ୍ତା କର ନାହିଁ। ମୁଁ ମୋ ବାଟରେ ଠିକ୍ ଚାଲିଛି।'' ହରିପାଳଙ୍କ ମନ କିନ୍ତୁ ମାନୁ ନ ଥାଏ। ସେ ପୂର୍ବ ପରି ବୁଲି ବୁଲି ପଛକୁ ଚାହୁଁଥାନ୍ତି। ଏମିତି କିଛି ଦୂର ଯିବାପରେ ଘୋର ଜଙ୍ଗଲ ପଡ଼ିଲା। ଚାରିଆଡ଼େ ଶୂନ୍‌ଶାନ୍। ଦୂରଦୂରାନ୍ତ ପର୍ଯ୍ୟନ୍ତ ଜନବସତି ନାହିଁ। ହରିପାଳ ଭାବିଲେ, ମହାଜନଙ୍କୁ ଲୁଟିବାର ଏହା ସୁନ୍ଦର ଅବସର। ସେ ସହସା ଅଟକିଗଲେ। ପଛକୁ ବୁଲିପଡ଼ି ଗର୍ଜନ କରି ମହାଜନଙ୍କ ବେକରେ ଭାଲା ଲଗାଇ କହିଲେ—''ସାବଧାନ! ଏଇଠି ଠିଆ ହୁଅ। ଆଗକୁ ପାଦେ ବି ଯାଇ ପାରିବ ନାହିଁ। ତୁମେ ଜାଣିଛଟି? ମୋ ନାଆଁ ହରିପାଳ, ଏ ଅଞ୍ଚଳର ପ୍ରସିଦ୍ଧ ଡାକୁ। ଯଦି ବଞ୍ଚିବାର ଇଚ୍ଛା ଥାଏ, ସବୁ ଗହଣା କାଢ଼ି ମୋ ଆଗରେ ରଖିଦିଅ। ନହେଲେ କ୍ଷଣକ ମଧ୍ୟରେ ମୋ ହାତରେ ପ୍ରାଣ ହରାଇବ।'' ଭଗବାନ ତ ସେଇଆ ଚାହୁଁଥିଲେ। ସେ ସୁନା ଚେନ୍, ସୁନା ମୁଦି ଇତ୍ୟାଦି ସବୁ ଜିନିଷ ବେଗ ବେଗ କାଢ଼ି ପକାଇଲେ। ତା'ପରେ ରୁକ୍ମିଣୀଙ୍କୁ ମଧ୍ୟ ଆଖିର ସଂକେତରେ କହିଲେ—''ମହାଦେବୀ! ତୁମେ ବି ମୋ ଭଳି ସବୁ କାଢ଼ିଦିଅ, ନହେଲେ ଆମ ଦୁହିଙ୍କ ଜୀବନ ସଂକଟରେ ପଡ଼ିଯିବ।'' ରୁକ୍ମିଣୀଙ୍କ ମନ ବଳୁ ନ ଥାଏ ଗହଣା ଦେବା ପାଇଁ। ବାପଘର ଓ ଶ୍ୱଶୁରଘରର ବହୁମୂଲ୍ୟ ଗହଣା ସବୁ ଚାଲିଯିବ। ଏଥିନେଇ ତାଙ୍କ ମନ ଭାରି ଦୁଃଖୀ। କିନ୍ତୁ କରିବେ ବା କ'ଣ? ଅନ୍ୟ ଉପାୟ ନାହିଁ। ସେ ବଡ଼ କଷ୍ଟରେ ଗହଣା କାଢ଼ିଲେ। ହରିପାଳ ଧମକ୍ ଦେଇ କହୁଥାନ୍ତି—''ବେଗି ବେଗି କାଢୁଛ କି ଦେଖିବ?'' ମହାଜନେ ବରଡ଼ା ପତ୍ର ଭଳି ଥରୁଥାନ୍ତି। ଭୟରେ ଶୀଘ୍ର ଶୀଘ୍ର ଗହଣା ସବୁ କାଢ଼ି ପକାଉଥାନ୍ତି। ରୁକ୍ମିଣୀ ଭଗବାନଙ୍କ ମୁହଁକୁ ଚାହୁଁଥାନ୍ତି। ସେ ଭାବି ପାରୁ ନ ଥାନ୍ତି ଯେ ସର୍ବଶକ୍ତିମାନ୍ ପ୍ରଭୁ ଆଜି ତାଙ୍କର ଶକ୍ତି ପ୍ରୟୋଗ କରୁ ନାହାନ୍ତି କାହିଁକି? କାହିଁକି ସେ ଏଭଳି ଭୟଭୀତ ହେଉଛନ୍ତି? ତାଙ୍କର ସୁଦର୍ଶନ ଆଉ କେଉଁ ସମୟକୁ କାମଦେବ? କିନ୍ତୁ ସେ ପାଟି ଖୋଲି କିଛି କହିବାକୁ ସାହସ କରୁ ନ ଥାନ୍ତି।

ରୁକ୍ମିଣୀ ସବୁ ଗହଣା କାଢ଼ିଦେଲେ, କିନ୍ତୁ ତାଙ୍କ ବାଆଁ ହାତ ଅଙ୍ଗୁଳିରେ ରହିଗଲା ସୁନା ମୁଦିଟିଏ। ତାହାକୁ କାଢ଼ିବାକୁ ସେ ଖୁବ୍ ଚେଷ୍ଟା କଲେ, କିନ୍ତୁ ବସି ଯାଇଥିବାରୁ କାଢ଼ି ପାରିଲେ ନାହିଁ। ଭାବିଲେ, ସବୁ ଜିନିଷ ତ କାଢ଼ି ଦେଲିଣି, ଏଇ ମୁଦିଟି ନ କାଢ଼ିଲେ କ'ଣ ଚଳିବ ନାହିଁ। ହରିପାଳ କିନ୍ତୁ ଛାଡ଼ିବା

ଲୋକ ନୁହେଁ। ସେ ଜରବଦସ୍ତି ଟାଣି ଟାଣି ମୁଦିଟି ନେବାକୁ ଚାହିଁଲା। ମହାଜନେ କହିଲେ—"ଥାଉ ଥାଉ, ଛାଡ଼ିଦେ; ଆଙ୍ଗୁଠି ଛିଡ଼ିଯିବ।' ହରିପାଳ କହିଲା—"ଛାଡ଼ିଦେବି କେମିତି? ଏଇ ମୁଦିଟିରେ ମୋର ଦୁଇ ଚାରି ଦିନ ସାଧୁସେବା ହୋଇଯିବ!" ସେ ମହାଜନଙ୍କ କଥା ନ ମାନି ଜୋର୍ କରି ମୁଦିଟିକୁ କାଢ଼ିନେଲା। ରୁକ୍ମିଣୀଙ୍କ କୋମଳ ଅଙ୍ଗୁଳି ଚାଞ୍ଛି ହୋଇ ରକ୍ତ ବାହାରିଲା। ସେ କଷ୍ଟରେ ବ୍ୟାକୁଳ ହୋଇଗଲେ। ହରିପାଳଙ୍କର ଏଭଳି ନିଷ୍ଠୁର କର୍ମ ପାଇଁ ସେ ରାଗରେ ପ୍ରଜ୍ୱଳିତ ହୋଇ ତାଙ୍କୁ ଅଭିଶାପ ଦେବାକୁ ଉଦ୍ୟନ୍ତ ହୁଅନ୍ତେ ଭଗବାନ ତାଙ୍କ ମୁହଁରେ ହାତ ଦେଇ କହିଲେ—"ସାବଧାନ ମହାରାଣୀ! କ୍ରୋଧ ସମ୍ବରଣ କର। ଯେଉଁ ଭକ୍ତକୁ ଦର୍ଶନ କରିବାକୁ ଆମେ ଆସିଥିଲେ, ଇଏ ହେଉଛି ସେଇ ସାଧୁସେବୀ ଭକ୍ତ ହରିପାଳ। ଇଏ ମୋର ପ୍ରିୟପାତ୍ର। ତୁମର ଅଭିଶାପ ବା ମୋ ସୁଦର୍ଶନ ଚକ୍ରର ତେଜ ଏଠାରେ କାମ କରିବ ନାହିଁ।" ଏତିକି କହି ଭଗବାନ ହରିପାଳଙ୍କ ସମ୍ମୁଖରେ ପ୍ରତ୍ୟକ୍ଷ ପ୍ରକଟ ହୋଇଗଲେ।

ରୁକ୍ମିଣୀ ଓ ନାରାୟଣଙ୍କର ଅପୂର୍ବ ରୂପ ମାଧୁରୀ ଦର୍ଶନ କରି ହରିପାଳ ଆଚମ୍ଭିତ ହୋଇଗଲା! ସେ ତା' ନେତ୍ରକୁ ବିଶ୍ୱାସ କରି ପାରୁ ନ ଥିଲା। କେବେ ବି ସେ ଭାବି ନ ଥିଲା ଯେ ବାଟୋଇ ରୂପରେ ତା'ର ଆରାଧ୍ୟଦେବ ଆସିଯିବେ ବୋଲି। ସେ ବହୁ କାକୁତିମିନତି ହୋଇ ପ୍ରଭୁଙ୍କ ପାଦପଦ୍ମରେ ଲୋଟିଗଲା। ବାରମ୍ବାର କ୍ଷମା ଯାଚନା କରି ପ୍ରଭୁଙ୍କୁ ତାଙ୍କର ଗହଣାପତ୍ର ଲେଉଟାଇ ଦେବାକୁ ଚାହୁଁଥିଲା। ଭଗବାନ ତା'ର ସରଳ ଭାବରେ ପ୍ରସନ୍ନ ହୋଇ କହିଲେ—"ମୋର ପ୍ରିୟ ହରିପାଳ! ତୁ ମନଦୁଃଖ କର ନାହିଁ। ମୁଁ ବାଟୋଇ ରୂପରେ ତୋତେ ଏଇ ଗହଣା ଦେବା ପାଇଁ ହିଁ ଆସିଥିଲି। ଏସବୁ ନେଇ ତୁ ଏଥର ଆନନ୍ଦରେ ଖୁବ୍ ସାଧୁସେବା କର। ତୋ ସାଧୁସେବା ନିଷ୍ଠାରେ ମୋ ମନ ଭାରି ପ୍ରସନ୍ନ। କେବେ କିଛି ଆବଶ୍ୟକ ହେଲେ ମୋତେ ପୁଣି ଡାକିବୁ।" ଭକ୍ତ ହରିପାଳ ଲଜ୍ଜିତ ମନରେ ଯୋଡ଼ହସ୍ତ ହୋଇ କହିଲେ—"ପ୍ରଭୁ! ସାଧୁସନ୍ଥଙ୍କୁ ଯଦି ଜଣା ପଡ଼ିଯିବ ଯେ ମୁଁ ଏମିତି ତୁମ ଦୁହିଙ୍କୁ କଷ୍ଟ ଦେଇ ଧନ ଲୁଟି ଆଣିଛି ବୋଲି ସେମାନେ ମୋ ଉପରେ ରୁଷ୍ଟ ହୋଇଯିବେ, ମୋର ଆତିଥ୍ୟ ସ୍ୱୀକାର କରିବେ ନାହିଁ।" ଭଗବାନ କହିଲେ—"ଚିନ୍ତା କର ନାହିଁ। ମୁଁ ଏ କଥାଟି କାହା ଆଗରେ କହିବି ନାହିଁ। ଆମ ତିନିଙ୍କ ବ୍ୟତୀତ ଏ ରହସ୍ୟକୁ କେହି ଜାଣି ପାରିବେ ନାହିଁ।" ଏଭଳି ଅନେକ ସାନ୍ତ୍ୱନା ଦେଇ ଭଗବାନ ଯିବାକୁ ବାହାରନ୍ତେ ହରିପାଳ ପ୍ରାର୍ଥନା କଲେ—"ହେ

ଦୟାମୟ! ସାଧୁସେବାରେ ପ୍ରସନ୍ନ ହୋଇ ତୁମେ ମୋତେ ଦର୍ଶନ ଦେଲ ବୋଲି ଯେଉଁ କଥା କହିଲ, ତାହା ତ ମୋ ପ୍ରତି ତୁମର ବାତ୍ସଲ୍ୟସ୍ନେହ। ନଚେତ୍ ମୋ ଭଳି ତୁଚ୍ଛ ଜୀବର ଶକ୍ତି କାହିଁ ଯେ ମୁଁ କରିବି ସାଧୁସେବା! ସାଧୁସନ୍ଥଙ୍କର ପ୍ରକୃତ ସେବା ତ ତୁମେ କରୁଛ, ଆଉ ସମ୍ମାନ ଦେଉଛ ମୋତେ। ପ୍ରଭୁ! ଯଦି ମୋର ବଡ଼ିମାରେ ତୁମେ ଖୁସୀ ହେଉଥାଅ, ତେବେ ମୋର କୌଣସି ଆପତ୍ତି ନାହିଁ। କିନ୍ତୁ ମୋ ମନରେ ଏତିକି ଅଭିଳାଷ ଯେ ତୁମେ ଯଦି ମୋ ଉପରେ ପ୍ରସନ୍ନ, ତେବେ ସାଧୁସେବା ପାଇଁ ମୋତେ ପ୍ରେରିତ କରିଥିବା ମୋର ପତ୍ନୀକୁ ବି ଥରେ ଦର୍ଶନ ଦେଇ କୃତାର୍ଥ କରିବା ହୁଅନ୍ତୁ। ସେ ମଧ୍ୟ ତୁମକୁ ଦିନରାତି ସ୍ମରଣ କରୁଛି। ତୁମକୁ ଦେଖିବାକୁ ତା'ର ଭାରି ମନ।''

ହରିପାଳ କଥାରେ ଭଗବାନ ରାଜି ହୋଇଗଲେ। ସେ ତା'ର ଆରାଧ୍ୟ ଯୁଗଳକିଶୋରଙ୍କୁ ଦୁଇ କାନ୍ଧରେ ବସାଇ ଘରକୁ ନେଇ ଆସିଲେ। ଦୁଆରେ ପହଞ୍ଚି ପତ୍ନୀକୁ ଡାକ ଦେଲେ—''ଦେଖୁଛୁ, ମୋ କାନ୍ଧରେ କିଏ ବସିଛନ୍ତି? ଦେଖ, ମୋ ପ୍ରଭୁ ମାତା ରୁକ୍ମିଣୀଙ୍କ ସହିତ ତୋତେ ଦର୍ଶନ ଦେବାକୁ ଆମ ଘରକୁ ଆସିଛନ୍ତି। ହରିପାଳଙ୍କ ପତ୍ନୀର ଆନନ୍ଦ କହିଲେ ନ ସରେ। ସେ ପ୍ରଭୁଙ୍କୁ କେଉଁ ଉପଚାରରେ ପୂଜା କରିବ କିଛି ଭାବି ପାରୁ ନ ଥାଏ। ସେ ନେତ୍ରର ଲୋତକରେ ଯୁଗଳକିଶୋରଙ୍କୁ ସ୍ୱାଗତ କରି ତାଙ୍କ ପାଦପଦ୍ମରେ ଦଣ୍ଡବତ୍ ଜଣାଇଲା। ସତେ ଯେପରି ଏହି ମାଧ୍ୟମରେ ତା'ର ଶରଣାଗତି ଆଜି ପୂର୍ଣ୍ଣ ହେଲା। ହରିପାଳ ଯୁଗଳକିଶୋରଙ୍କୁ ସିଂହାସନରେ ବିରାଜମାନ କରାଇ ପୂଜା-ଆଳତି କଲେ। ତା'ପରେ ଭୋଜିଭାତର ବିରାଟ ଆୟୋଜନ କରାଗଲା। ଅଖଣ୍ଡ ନାମ ସଂକୀର୍ତ୍ତନ ଓ ହରିବୋଲ ହୁଳହୁଳି ଧ୍ୱନିରେ ଖଣ୍ଡମଣ୍ଡଳ କମ୍ପି ଉଠିଲା। ଦେବୀ ରୁକ୍ମିଣୀ ଓ ହରିପାଳଙ୍କ ପତ୍ନୀ ଦୁହେଁ ମିଶି ରନ୍ଧାବଢ଼ା କାମ ସମ୍ଭାଳିଲେ। ସମସ୍ତ ଭକ୍ତଜନ ଭଗବାନଙ୍କ ଦର୍ଶନ, ନାମ ସଂକୀର୍ତ୍ତନ ଓ ପ୍ରସାଦ ସେବନ କରି ଜୀବନ କୃତାର୍ଥ କଲେ। ହରିପାଳଙ୍କୁ ସ୍ୱମୁଖରେ ପ୍ରଶଂସା କରି ଭଗବାନ କହିଲେ—''ହରିପାଳ! ତୁମେ ଆଜିଠାରୁ 'ଭକ୍ତଭୂପ' ହୋଇଗଲ। ଯିଏ କେବଳ ମୋତେ ପ୍ରେମ କରେ ସେ ହେଉଛି ଭକ୍ତ। କିନ୍ତୁ ଯିଏ ମୋର ଭକ୍ତଜନଙ୍କୁ ପ୍ରେମ କରେ ସେ ହେଉଛି ଭକ୍ତଭୂପ।''



# ଶ୍ରୀଧର ସ୍ୱାମୀ

କରୁଣାମୟଙ୍କ କୃପାରୁ ଯେପରି ଜଣେ ମୂକ ବାଗ୍ମୀ ହୋଇପାରେ ଏବଂ ପଙ୍ଗୁ ପର୍ବତ ଲଘଂନ କରିପାରେ, ସେହିପରି ତାଙ୍କ ଚରଣାଶ୍ରିତ ଭକ୍ତ ମଧ୍ୟ ପ୍ରଭୁଙ୍କ କୃପାରୁ ନିରାଶ୍ରୟକୁ ଆଶ୍ରୟ ଦେଇ ମହାନ୍ ଭକ୍ତ ରୂପେ ଗଢ଼ି ପାରନ୍ତି। ଭଗବାନ କେତେକ ସ୍ଥଳରେ ସୃଷ୍ଟିର ନିମୟକୁ ଟାଳିବାକୁ ସଂକୋଚ କରନ୍ତି, କିନ୍ତୁ ତାଙ୍କର ଭକ୍ତ ଏ ସବୁରୁ ମୁକ୍ତ। ସେ କୌଣସି ଜୀବର ଉଦ୍ଧାର ପାଇଁ ଶୁଭ ସଙ୍କଳ୍ପ କଲେ ଭଗବାନ ତାହା ସହର୍ଷ ପୂରଣ କରି ଦିଅନ୍ତି।

ଏହିପରି ଜଣେ ସନ୍ଥଙ୍କର କୃପା ଭାଜନ ହୋଇଥିଲେ ଶ୍ରୀଧର ସ୍ୱାମୀ। ତାଙ୍କର ଜନ୍ମ ଦକ୍ଷିଣ ଭାରତର ଜଣେ ପବିତ୍ର ବ୍ରାହ୍ମଣଙ୍କ କୁଳରେ ହୋଇଥିଲା। ତାଙ୍କ ପିଲାଦିନର ନାମ ଥିଲା ଶ୍ରୀଧର। ତାଙ୍କର ବାଲ୍ୟକାଳରେ ମାତା ପରଲୋକ ଗମନ କରିଯିବା ପରେ ପିତା ଗୃହତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ। ପିତୃମାତୃବିହୀନ ହୋଇ ବାଲ୍ୟକାଳରେ ଶ୍ରୀଧର ଉପଯୁକ୍ତ ଶିକ୍ଷା ପାଇ ପାରିଲେ ନାହିଁ। ସେ ଅନାଥ ବାଳକ ଭଳି ମଇଁଷି ଚରାଇ ଜୀବନ କାଟିଲେ। କଥିତ ଅଛି ଯେ ଥରେ ଶ୍ରୀପରମାନନ୍ଦ ସ୍ୱାମୀ (ଯେ କି ପରବର୍ତ୍ତୀ କାଳରେ ଶ୍ରୀଧରଙ୍କର ଦୀକ୍ଷା ଗୁରୁ ହେଲେ) ସ୍ୱଚ୍ଛନ୍ଦ ବିଚରଣ କରୁ କରୁ ତାଙ୍କ ଗାଁଆରେ ପହଞ୍ଚିଲେ। ବାଲ୍ୟକାଳରୁ ଶ୍ରୀଧରଙ୍କ ହୃଦୟରେ ପ୍ରସୁପ୍ତ ଭାବରେ ସାଧୁସନ୍ଥଙ୍କ ପ୍ରତି ଶ୍ରଦ୍ଧା ଥିଲା। ସେ ଭକ୍ତିପୂତ ଚିତ୍ତରେ ସନ୍ଥଙ୍କ ଚରଣରେ ପ୍ରଣିପାତ କଲା। ବାଳକର ଭକ୍ତିଭାବ ଓ ଦିବ୍ୟ ଲକ୍ଷଣ ଦେଖି ସନ୍ଥ ଶ୍ରୀପରମାନନ୍ଦ ସ୍ୱାମୀ ଜାଣିଗଲେ ଯେ ଏ ବାଳକ ଭବିଷ୍ୟତରେ ମହାପୁରୁଷ ହେବ। ସେ ତାକୁ ପଚ୍ଚରିଲେ—"ବତ୍ସ! ତୋର ସବୁଠୁ ପ୍ରିୟ କିଏ? ଏବଂ ତୋର କେଉଁ କାର୍ଯ୍ୟରେ ବେଶୀ ମନ ଲାଗୁଛି?" ବାଳକ ଶ୍ରୀଧର ଉତ୍ତର ଦେଲା—"ମୋ ମଇଁଷିଟି ମୋତେ ଖୁବ୍ ପ୍ରିୟ। ତା' ସେବାରେ ମୋର ଖୁବ୍ ମନ ଲାଗୁଛି।" ସନ୍ଥ କହିଲେ—"ଠିକ୍ ଅଛି, ତୁ ମନ ଲଗାଇ ତାର ସେବା କର, ଭଗବାନ ତୋତେ ଅବଶ୍ୟ ଦର୍ଶନ ଦେବେ।" ସନ୍ଥଙ୍କର ଏହି ଆଶୀର୍ବାଦଟି ଶ୍ରୀଧର ଜୀବନରେ ଫଳବତୀ ହୋଇଥିଲା।

କୌଣସି ଦେଶର ରାଜା ଓ ମନ୍ତ୍ରୀ ଦୁହେଁ ଭ୍ରମଣ କଲାବେଳେ କଥା ପ୍ରସଙ୍ଗରେ ମନ୍ତ୍ରୀ କହିଲେ—"ଯାହାକୁ ଯେକୌଣସି ସଫଳତା ଓ ସିଦ୍ଧି ମିଳେ, ସବୁ ଭଗବାନଙ୍କ କୃପାର ହିଁ ଫଳ। ତାଙ୍କ କୃପା ବିନା କିଛି ବି ସମ୍ଭବ ନୁହେଁ।

ଚକ୍ଷୁ ବୁଜି ଗ୍ରଉଳ ପାଇବାର ଇଚ୍ଛା ଯେପରି ବ୍ୟର୍ଥ, ପ୍ରଭୁଙ୍କ ଠାରୁ ବିମୁଖ ହୋଇ ସଦ୍‌ଗୁଣ ଆଶା କରୁଥିବା ମନୁଷ୍ୟର ପରିଶ୍ରମ ସେହିପରି ବ୍ୟର୍ଥ। ଭଗବାନଙ୍କ କୃପାରୁ ଜଣେ ରଙ୍କ ରାଜା ହୋଇପାରେ ଏବଂ ମୂର୍ଖ ପଣ୍ଡିତ ହୋଇପାରେ।'' ରାଜା ଓ ମନ୍ତ୍ରୀ ଏହିପରି କଥାବାର୍ତ୍ତା ହେଉଥିବା ବେଳେ ଦେଖିଲେ ବାଳକ ଶ୍ରୀଧରକୁ। ସେତେବେଳେ ସେ ଗୋଟିଏ କଣା ଶିଶିରେ ଦୋକାନରୁ ତେଲ ଧରି ଯାଉଥିଲା। ବାଟ ସାରା ତେଲ ବୋହି ବୋହି ଯାଉଥାଏ, କିନ୍ତୁ ଶ୍ରୀଧରକୁ ହୋସ ନ ଥାଏ। ରାଜା ପିଲାଟିକୁ ମହାମୂର୍ଖ ଭାବି ମନ୍ତ୍ରୀକୁ କହିଲେ—''ଭଗବାନଙ୍କ କୃପାରୁ କ'ଣ ଏହି ମୂର୍ଖ ପିଲାଟି ମଧ୍ୟ ପଣ୍ଡିତ ହୋଇ ପାରିବ?'' ମନ୍ତ୍ରୀଙ୍କ ପାଟିରୁ ଅଗ୍ରନକ ବାହାରି ପଡ଼ିଲା—''ନିଶ୍ଚୟ! ତିଳେମାତ୍ର ସନ୍ଦେହ ନାହିଁ। ପ୍ରଭୁଙ୍କ କରୁଣାରୁ କ'ଣ ବା ହୋଇ ନ ପାରେ!''

ରାଜା ରଥରୁ ଓହ୍ଲାଇ ପିଲାଟିକୁ ତା'ର ପରିଚୟ ପଗ୍ରରିଲେ। ଶ୍ରୀଧର ତା'ର ଜୀବନ ଗାଥା କହି ଗ୍ରଲିଲା। ପିଲାଟିକୁ ବାପମାଆ ଛେଉଣ୍ଡ ଜାଣି ରାଜା ତାକୁ ସଙ୍ଗରେ ନେଇଯିବାକୁ ମନ୍ତ୍ରୀଙ୍କୁ ଆଜ୍ଞା ଦେଲେ। ମନ୍ତ୍ରୀ ବଡ଼ ଦୟାବନ୍ତ ଲୋକ। ସେ ଶ୍ରୀଧରକୁ ସଙ୍ଗରେ ନେଇ ଜଣେ ବିଦ୍ୱାନ୍ ବ୍ରାହ୍ମଣଙ୍କ ଠାରୁ ଶ୍ରୀନୃସିଂହ ମନ୍ତ୍ର ଦୀକ୍ଷା ପ୍ରଦାନ କରାଇଦେଲେ। ସରଳ ଓ ପବିତ୍ର-ହୃଦୟର ଶ୍ରୀଧର ଗୁରୁଙ୍କ ଆଜ୍ଞା ଅନୁସାରେ ନୃସିଂହଙ୍କ ଉପାସନାରେ ମନପ୍ରାଣ ଢାଳିଦେଲା। ଭଗବାନ ପିଲାଟିର ଅମାୟିକ ଭକ୍ତିରେ ପ୍ରସନ୍ନ ହୋଇ ଖୁବ୍ ଶୀଘ୍ର ତାକୁ ଦର୍ଶନ ଦେଲେ। ପ୍ରଭୁଙ୍କ କୃପା ଓ କରୁଣାରୁ ସେହି ଦିନଠାରୁ ଶ୍ରୀଧର ସମସ୍ତ ବେଦ-ବେଦାନ୍ତ ଓ ଶାସ୍ତ୍ର-ପୁରାଣରେ ପାରଙ୍ଗମ ହୋଇଗଲା। ତା' ହୃଦୟରେ ସ୍ଥାନ ପାଇଲା ପ୍ରଭୁଙ୍କ ପ୍ରତି ଅବିଚଳ ପ୍ରେମଲକ୍ଷଣା ଭକ୍ତି। ଏହି ବାଳକ ଶ୍ରୀଧର ହିଁ ପରବର୍ତ୍ତୀ ସମୟରେ ଶ୍ରୀଧର ସ୍ୱାମୀ ନାମରେ ବିଖ୍ୟାତ ହେଲା। ନୃସିଂହ ଦେବଙ୍କ କୃପାର ସ୍ପଷ୍ଟ ଝଲକ ଦେଖାଯାଏ ଶ୍ରୀଧର ସ୍ୱାମୀଙ୍କ ଜୀବନରେ।

ଶ୍ରୀଧର ସ୍ୱାମୀ ଗୃହସ୍ଥାଶ୍ରମରେ ଥିବା ସମୟରେ ମଧ୍ୟ ଅନେକ ଥର ପ୍ରଭୁଙ୍କ କୃପା ଭାଜନ ହୋଇଥିଲେ। ଥରେ ଭାଗବତ ପ୍ରବଚନ ସାରି କୌଣସି ସ୍ଥାନରୁ ଫେରିବା ବେଳେ ଗ୍ରେରମାନେ ତାଙ୍କୁ ଘେରିଗଲେ। ରାସ୍ତା ବଡ଼ ଦୁର୍ଗମ ଥିଲା। ସେତେବେଳେ ସେ ରାମରକ୍ଷାସ୍ତୋତ୍ର ପାଠ କରୁଥିଲେ। ଗ୍ରେରମାନେ ତାଙ୍କୁ ପଗ୍ରରିଲେ—''ତୁମେ ଏକୁଟିଆ ଯାଉଛ କି ତୁମ ସାଙ୍ଗରେ ଆଉ କେହି ଅଛନ୍ତି?'' ପ୍ରଭୁଙ୍କ ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା। ତେଣୁ ସେ କହିଲେ—''ମୋ

ସାଙ୍ଗରେ ଅଛନ୍ତି ମୋର ପରମାରାଧ୍ୟ ପ୍ରାଣ ପ୍ରିୟତମ ଶ୍ରୀରଘୁନାଥ।'' ଚୋରମାନେ କିଛି ଦୂର ତାଙ୍କ ସାଥିରେ ଚାଲିଲେ। ଅନ୍ୟ କାହାକୁ ନ ଦେଖି ସେମାନେ ତାଙ୍କୁ ମାରି ସବୁ ଧନ ଲୁଟିନେବାକୁ ଚାହିଁଲେ। ମନରେ କୁବିଚାର ଉଠିବା ମାତ୍ରେ ସେମାନେ ଦେଖିଲେ ଅତ୍ୟନ୍ତ ସୁକୁମାର ବେଶରେ ପ୍ରଭୁ ଶ୍ରୀରଘୁନାଥ ଧନୁର୍ବାଣ ଧରି ଶ୍ରୀଧର ସ୍ୱାମୀଙ୍କ ସଙ୍ଗରେ ଚାଲିଛନ୍ତି। ମଝିରେ ମଝିରେ ଭଗବାନ ଅନ୍ତର୍ଦ୍ଧାନ ହୋଇଯାଉଥାନ୍ତି ଏବଂ ଚୋରମାନେ ମାରିବାକୁ ପାଞ୍ଚିବା କ୍ଷଣି ପ୍ରକଟ ହୋଇଯାଉଥାନ୍ତି। ଏହିପରି ବାଟ ସାରା ଚମତ୍କାର ହେଲା। ଶ୍ରୀଧର ସ୍ୱାମୀ ତାଙ୍କ ଘରେ ପହଞ୍ଚିବା ପରେ ଚୋରମାନଙ୍କୁ ପ୍ରଭୁ ଆଉ ଦେଖାଦେଲେ ନାହିଁ। ସେମାନେ ଆଚମ୍ବିତ ହୋଇ ତାଙ୍କୁ ପଚାରିଲେ—''ଶ୍ୟାମଳ ରଙ୍ଗର ଯେଉଁ ରାଜକୁମାର ଧନୁର୍ବାଣ ଧରି ବାଟରେ ତୁମକୁ ରକ୍ଷା କରୁଥିଲେ, ସେ କୁଆଡ଼େ ଗଲେ?'' କରୁଣାମୟ ପ୍ରଭୁଙ୍କ ଲୀଳା ବୁଝିବାକୁ ଶ୍ରୀଧର ସ୍ୱାମୀଙ୍କୁ ବେଶୀ ସମୟ ଲାଗିଲା ନାହିଁ। ସେ ଜାଣିଗଲେ ଯେ ତାଙ୍କର ପରମ ଆରାଧ୍ୟ ଶ୍ରୀରଘୁନାଥ ତାଙ୍କୁ ଜଙ୍ଗଲରେ ବିପଦରୁ ପାର କରାଇଲେ। ପ୍ରଭୁଙ୍କୁ ତାଙ୍କର ସେବା କରିବାକୁ ପଡ଼ିଲା ଭାବି ସେ ମନେ ମନେ ଗଭୀର ଦୁଃଖ ପ୍ରକାଶ କଲେ ଏବଂ ପ୍ରଭୁଙ୍କର ତାଙ୍କ ଉପରେ ଅସୀମ କୃପା ବିଚାରି ମୁଣ୍ଡରୁ ଗୃହସ୍ଥାଶ୍ରମର ବୋଝ ଓହ୍ଲାଇ ଦେଇ ନିଶ୍ଚିନ୍ତରେ ପ୍ରଭୁଙ୍କ ଭଜନରେ ସମୟ କାଟିଲେ।

ଶ୍ରୀଧର ସ୍ୱାମୀଙ୍କ ସନ୍ୟାସ ଗ୍ରହଣ କରିବା ସମ୍ବନ୍ଧରେ ଗୋଟିଏ ପ୍ରସିଦ୍ଧ କଥା ଉଲ୍ଲେଖଯୋଗ୍ୟ। ତାଙ୍କର ପ୍ରକାଣ୍ଡ ବିଦ୍ୱତ୍ତାରେ ପ୍ରଭାବିତ ହୋଇ ଜଣେକ ବ୍ରାହ୍ମଣ ତାଙ୍କ ସୁଶୀଳା କନ୍ୟା ସହ ତାଙ୍କର ଶୁଭ ପରିଣୟ ପାଇଁ ଆଗ୍ରହ ପ୍ରକାଶ କଲେ। ବନ୍ଧୁବାନ୍ଧବଙ୍କ ଆଗ୍ରହରେ ଶ୍ରୀଧର ସ୍ୱାମୀ ଗୃହସ୍ଥ ଜୀବନ ଅଙ୍ଗୀକାର କଲେ ସତ, କିନ୍ତୁ ଗୃହ ଅଥବା ଗୃହିଣୀ ପ୍ରତି ତାଙ୍କ ମନରେ ତିଳେମାତ୍ର ଆସକ୍ତି ନ ଥିଲା। ସେ ସର୍ବଦା ଜଗତର ନଶ୍ୱରତା ବିଷୟରେ ବିଚାର କରି ଭଗବଦ୍‌ଚିନ୍ତନରେ ସମୟ ବ୍ୟତୀତ କରୁଥାନ୍ତି। ସନ୍ନ୍ୟାସ ଗ୍ରହଣ କରିବା ପାଇଁ ତାଙ୍କ ମନ ବାରମ୍ବାର ଲାଳାୟିତ ହେଉଥାଏ। କିନ୍ତୁ ଗୃହସ୍ଥାଶ୍ରମର ଦାୟିତ୍ୱ ତୁଲାଇବା ପାଇଁ ବାଧ୍ୟ ହୋଇ ଘରେ ରହିଥାନ୍ତି। କିଛି ଦିନ ପରେ ପ୍ରଭୁଙ୍କ କୃପାରୁ ତାଙ୍କର ଧର୍ମପତ୍ନୀ ଗୋଟିଏ ପୁତ୍ର ସନ୍ତାନକୁ ଜନ୍ମ ଦେଇ ପରଲୋକକୁ ଚାଲିଗଲେ। ଏହି ଘଟଣାରୁ ଅଗ୍ନିକୁଣ୍ଡରେ ଆହୁତି ପଡ଼ିବା ଭଳି ତାଙ୍କର ପ୍ରସୁପ୍ତ ବୈରାଗ୍ୟ ଦୀପ୍ତିମନ୍ତ ହୋଇ ଉଠିଲା। କିନ୍ତୁ ନବଜାତ ଶିଶୁକୁ ଛାଡ଼ିଦେଇ ସେ କେମିତି ସନ୍ନ୍ୟାସୀ ହୋଇଯିବେ କିଛି ଭାବି

ପାରୁ ନ ଥାନ୍ତି । ଘରେ ତାଙ୍କର ମନ ଲାଗୁ ନ ଥାଏ ଏବଂ ଶିଶୁଟିର ପାଳନ-ପୋଷଣର କୌଣସି ପନ୍ଥା ମଧ୍ୟ ଦେଖାଯାଉ ନ ଥାଏ । ଏହିଭଳି ଧର୍ମସଂକଟରେ ପଡ଼ିଥିବା ବେଳେ ସେ ଦେଖିଲେ ଯେ ହଠାତ୍ ଛାତରୁ ଝିଟିପିଟିର ଅଣ୍ଡାଟିଏ ତଳେ ପଡ଼ି ଫାଟିଗଲା । ଅଣ୍ଡାଟି ପରିପକ୍ୱ ହୋଇସାରିଥିଲା, ତେଣୁ ଫାଟିଯିବା କ୍ଷଣି ସେଥିରୁ ଛୁଆଟିଏ ବାହାରି ପଡ଼ିଲା । ନାଳରେ ଲଟପଟ ହୋଇ ଚାରିଆଡ଼କୁ ମୁହଁ ବୁଲାଇଲା । ତାହାର ହାବଭାବରୁ ଲାଗୁଥିଲା ଯେ ସେ ଭୋକରେ ଛଟପଟ ହେଉଛି, ଯଦି ତାକୁ କିଛି ଖାଇବାକୁ ନ ମିଳେ, ତା'ର ପ୍ରାଣ ଚାଲିଯିବ । ଭଗବାନ ବିଶ୍ୱମ୍ଭରଙ୍କ ବିଧାନ ବଡ଼ ବିଚିତ୍ର! ସେ ଜନ୍ମ ଦେବା ପୂର୍ବରୁ ପ୍ରାଣରକ୍ଷା ପାଇଁ ଭୋଜନର ବ୍ୟବସ୍ଥା ମଧ୍ୟ କରିଛନ୍ତି । ଠିକ୍ ସେତିକିବେଳେ ଗୋଟିଏ କୀଟ ଉଡ଼ି ଉଡ଼ି ଆସି ଅଣ୍ଡାରୁ ବାହାରିଥିବା ନାଳରେ ଲାଖିଗଲା ଏବଂ ଝିଟିପିଟି ଛୁଆଟି ତାକୁ ଟାକୁ କରି ଖାଇଦେଲା ।

ଶ୍ରୀଧର ସ୍ୱାମୀ ଏ ଦୃଶ୍ୟକୁ ମନଯୋଗପୂର୍ବକ ଦେଖୁଥାନ୍ତି । ପ୍ରଭୁଙ୍କର ଏଭଳି ବିଧାନ ଦେଖି ତାଙ୍କର ବିବେକ ଜାଗ୍ରତ ହୋଇଗଲା । ସେ ଭାବିଲେ—"ହାୟ! ମୋ ମୂର୍ଖତାକୁ ଧିକ୍ । ଚରାଚର ପାଳକ ବିଶ୍ୱମ୍ଭର ପ୍ରଭୁ ଥାଉ ଥାଉ ମୁଁ ଗୋଟିଏ ପିଲାର ପାଳନ-ପୋଷଣ ପାଇଁ ଚିନ୍ତା କରି ବ୍ୟର୍ଥ ସମୟ ନଷ୍ଟ କରୁଛି!" ତା'ପରେ ସେ ଭଗବାନଙ୍କ ଆଶ୍ରୟରେ ସନ୍ତାନକୁ ସମର୍ପଣ କରିଦେଇ କାଶୀ ଅଭିମୁଖେ ଆଗେଇ ଚାଲିଲେ । ସେଠାରେ ପହଞ୍ଚି ସେ ଶ୍ରୀପରମାନନ୍ଦ ସରସ୍ୱତୀଙ୍କ ଠାରୁ ବିଧିବତ୍ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରି ପ୍ରଭୁଭଜନରେ ମନ ନିବେଶ କଲେ ।

ପୂର୍ବରୁ କୁହାସରିଛି ଯେ ଶ୍ରୀଧର ସ୍ୱାମୀଙ୍କ ପିତା ଶ୍ରୀଧରଙ୍କ ବାଲ୍ୟକାଳରେ ହିଁ ଗୃହ ପରିତ୍ୟାଗପୂର୍ବକ ସନ୍ନ୍ୟାସ ଗ୍ରହଣ କରି ସାରିଥିଲେ । ଶ୍ରୀଧର ସ୍ୱାମୀ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିବା ସମୟରେ ସେ କାଶିରେ ରହି ମୁମୁକ୍ଷୁ ବିଦ୍ୟାର୍ଥୀମାନଙ୍କୁ ବେଦାନ୍ତ ପଢ଼ାଉଥିଲେ । କାଶି ନଗରୀରେ ପିତାଙ୍କର ବିମଳ ଖ୍ୟାତି ଶୁଣି ଶ୍ରୀଧର ସ୍ୱାମୀ ତାଙ୍କ ନିକଟକୁ ପଢ଼ିବାକୁ ଗଲେ । ପିତା ତାଙ୍କୁ ଚିହ୍ନିଗଲେ ଏବଂ ଗୋଟି ଗୋଟି କରି ପୂର୍ବର ସବୁ ଘଟଣା ତାଙ୍କର ମନେ ପଡ଼ିଗଲା । ସେ ପୂର୍ବ ସ୍ମୃତିରେ ଭାବିତ ହୋଇ ପାଠ ମଝିରେ ମଝିରେ ପୁତ୍ରକୁ ଲକ୍ଷ୍ୟ କରି କହୁଥାନ୍ତି—"ତତଃ କିମ୍? ତତଃ କିମ୍? (ତା'ପରେ କ'ଣ ହେଲା?)" ଗୁରୁଦେବଙ୍କର ଏଭଳି ଅପ୍ରାସଙ୍ଗିକ କଥାକୁ ଶିଷ୍ୟଗଣ ବୁଝି ପାରୁ ନ ଥାନ୍ତି । ଯେନକେନ ପ୍ରକାରେ ପାଠ ପୂର୍ଣ୍ଣ ହେବା ପରେ ସେ ତାଙ୍କୁ ନିକଟକୁ ଡକାଇ ଘରର ସମାଚାର ପଚାରିଲେ ।

ପୁଅଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ତାଙ୍କ ମନ ଆନନ୍ଦମଗ୍ନ ହୋଇଗଲା । ପୁଅର ଏଭଳି ପବିତ୍ର ନିର୍ଣ୍ଣୟକୁ ସମର୍ଥନ କରି ସେ ଯଥେଷ୍ଟ ଆଶୀର୍ବାଦ ପ୍ରଦାନ କଲେ । ଏଥର ଶ୍ରୀଧର ସ୍ୱାମୀ ସ୍ଥାୟୀରୂପେ କାଶିରେ ନିବାସ କଲେ ।

କାଶି ନଗରୀ ହେଉଛି ବିଦ୍ୟାର ଭଣ୍ଡାର । ସେଠାକାର ଅନେକ ପଣ୍ଡିତ ନିଜ ନିଜରର ବିଦ୍ୱତ୍ତା ବଳରେ ଶ୍ରୀମଦ୍ଭାଗବତର ଅନେକ ଟୀକା ଲେଖିଥିଲେ । ବ୍ୟାସଦେବଙ୍କ ପ୍ରଣୀତ ପରମହଂସସଂହିତାର ସଠିକ ମର୍ମ ନ ବୁଝି କେତେକ ଲୋକ କର୍ମକାଣ୍ଡ, ଜ୍ଞାନକାଣ୍ଡ ଓ ଉପାସନାକାଣ୍ଡକୁ ଗୋଳିଆମିଶା କରି ବ୍ୟାଖ୍ୟା କରିଥିଲେ । ତା'ଛଡ଼ା କର୍ମକାଣ୍ଡୀ ଓ ତଥାକଥିତ ଶୁଷ୍କଜ୍ଞାନୀମାନେ ମଧ୍ୟ ଟଣାଓଟରା କରି କପୋଳକଳ୍ପିତ କଥା ଲେଖି କର୍ମକାଣ୍ଡକୁ ଶ୍ରେଷ୍ଠ ପ୍ରମାଣିତ କରିବା ଉଦ୍ଦେଶ୍ୟରେ ସ୍ଥାନେ ସ୍ଥାନେ ଅର୍ଥକୁ ଅନର୍ଥ କରିଥିଲେ । ଏତଦ୍ୱାରା ଜିଜ୍ଞାସୁ ଭକ୍ତଜନ ସନ୍ଦେହରେ ପଡୁଥିଲେ । ଭାଗବତର ପ୍ରକୃତ ମର୍ମ ଲୋକଲୋଚନରୁ ଦୂରେଇ ରହିଥିଲା । ଏହି ପରିପ୍ରେକ୍ଷୀରେ ଶ୍ରୀଧର ସ୍ୱାମୀ ଶ୍ରୀମଦ୍ଭାଗବତର 'ଭାବାର୍ଥ ଦୀପିକା' ଟୀକା ପ୍ରଣୟନ କରି ଜନମାନସକୁ ପ୍ରକୃତ ମାର୍ଗ ଦର୍ଶାଇଲେ । ସେ କାହାକୁ ପ୍ରଶଂସା ବା ନିନ୍ଦା ନ କରି ସ୍ପଷ୍ଟରୂପେ ପ୍ରମାଣିତ କରିଦେଲେ ଯେ ନିଷ୍କାମ ଭକ୍ତି ହିଁ ମନୁଷ୍ୟର ପରମ ଧର୍ମ । ଏଥିପାଇଁ ଜାତି, ବର୍ଣ୍ଣ ଇତ୍ୟାଦିର ବାଛବିଚାର ନାହିଁ । ସମସ୍ତେ ଭଗବାନଙ୍କର ଆପଣାର ହୋଇଥିବାରୁ ତାଙ୍କୁ ଆପଣାର ମାନି ପାରିବେ । ଏହା ହେଉଛି ଭାଗବତଧର୍ମ ଏବଂ ଏହା ମାନବ ଧର୍ମ ମଧ୍ୟ ।

ଥରେ ଶ୍ରୀଧର ସ୍ୱାମୀଙ୍କ ସମକାଳୀନ ପଣ୍ଡିତମାନେ ଶ୍ରୀମଦ୍ଭାଗବତର ଟୀକା ମଧ୍ୟରୁ କେଉଁଟି ଶ୍ରେଷ୍ଠ, ତାହା ବିଚାର କରିବାକୁ ଗୋଟିଏ ସ୍ଥାନରେ ଏକତ୍ର ହେଲେ । ସଭିଏଁ ନିଜ ନିଜ ଟୀକାର ପ୍ରଶଂସା କରି ଆପଣା ମତକୁ ଶ୍ରେଷ୍ଠ କହୁଥାନ୍ତି । ଶ୍ରୀଧର ସ୍ୱାମୀ କିନ୍ତୁ ବାଦ-ବିବାଦରରୁ ଦୂରେଇ ରହି ଠାକୁରଙ୍କ ସ୍ମରଣରେ ନିମଗ୍ନ ଥାଆନ୍ତି । ପଣ୍ଡିତମାନେ ବାଦ-ପ୍ରତିବାଦରେ ପଡ଼ି କୌଣସି ନିଷ୍ପତ୍ତି କରି ପାରିଲେ ନାହିଁ । ପରିଶେଷରେ ସ୍ଥିର କରାଗଲା ଯେ ଏହାର ନିର୍ଣ୍ଣୟ ପାଇଁ ବିନ୍ଦୁମାଧବ ଠାକୁରଙ୍କୁ ମଧ୍ୟସ୍ଥି କରାଯାଉ । ସେ ଯାହା ନିର୍ଣ୍ଣୟ ଦେବେ, ତାଙ୍କ କଥା ସମସ୍ତେ ମାନିବାକୁ ବାଧ୍ୟ । ସେ ସମୟରେ ଲିଖିତ ପଚିଶଟି ଟୀକା ମନ୍ଦିର ଭିତରେ ଠାକୁରଙ୍କ ଆଗରେ ରଖି ଦିଆଗଲା । ପରଦିନ ସକାଳୁ ମନ୍ଦିର ଖୋଲି ଦେଖିଲା ବେଳକୁ ଭଗବାନଙ୍କ ହସ୍ତରେ ଶ୍ରୀଧରସ୍ୱାମୀଙ୍କ ଟୀକା ଶୋଭା ପାଉଛି । ଗୋସ୍ୱାମୀ ତୁଳସୀଦାସଙ୍କ ରାମାୟଣରେ ଏବଂ ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟରେ

ଭଗବାନ ହସ୍ତାକ୍ଷର କରିଥିବା ପରି ସେହି ଟୀକାରେ ମଧ୍ୟ ସୁନ୍ଦର ଅକ୍ଷରରେ ପ୍ରଭୁ ଲେଖିଥିଲେ—

**ବ୍ୟାସୋ ବେତ୍ତି ଶୁକୋ ବେତ୍ତି ରାଜା ବେତ୍ତି ନ ବେତ୍ତି ବା ।**
**ଶ୍ରୀଧରଃ ସକଳଂ ବେତ୍ତି ଶ୍ରୀନୃସିଂହପ୍ରସାଦତଃ ॥**

ଅର୍ଥ—''ବ୍ୟାସଦେବ ଓ ଶୁକଦେବ ଶ୍ରୀମଭାଗବତର ପ୍ରକୃତ ରହସ୍ୟ ଜାଣନ୍ତି । ରାଜା ପରୀକ୍ଷିତଙ୍କ ଜାଣିବା ନ ଜାଣିବାରେ ସନ୍ଦେହ ରହିଛି । କିନ୍ତୁ ନୃସିଂହଙ୍କ କୃପାରୁ ଶ୍ରୀଧର ସ୍ୱାମୀ ଉତ୍ତମରୂପେ ସକଳ ରହସ୍ୟ ଜାଣନ୍ତି ।'' (କେଉଁଠି କେଉଁଠି **'ଶ୍ରୀନୃସିଂହପ୍ରସାଦତଃ'** ପରିବର୍ତ୍ତେ **'ପରମାନନ୍ଦ ପ୍ରସାଦତଃ'** ପାଠ ମିଳେ । ଏଭଳି ଚମତ୍କାର ଦେଖି ସମସ୍ତ ପଣ୍ଡିତଜନ ତାହାକୁ ଅଧ୍ୟୟନ କଲେ ଏବଂ ସେଥିରେ ବର୍ଣ୍ଣିତ ପରମ ଧର୍ମର ଅନୁସରଣ କରି ଆନନ୍ଦରେ ମଗ୍ନ ହୋଇଗଲେ ।

କଥିତ ଅଛି ଯେ ଥରେ ଶ୍ରୀଧର ସ୍ୱାମୀଙ୍କ ଦେହ ଅଧିକ ଖରାପ ହୋଇଗଲା । ସେତେବେଳେ ମାଧବ ନାମକ ଜଣେ ବିଦ୍ୟାର୍ଥୀ ତାଙ୍କର ସେବା କରୁଥାଏ । ଦୈବଯୋଗକୁ ମାଧବର ବାପା ମଧ୍ୟ ରୋଗରେ ପଡ଼ିଲେ । ତାଙ୍କ ଘରୁ ଖବର ଆଣି ଜଣେ ଲୋକ ତାକୁ ନେବାକୁ ଆସିଲା । ମାଧବ ଅତ୍ୟନ୍ତ ଗୁରୁନିଷ୍ଠ ଥିଲା । ଗୁରୁଙ୍କୁ ଛାଡ଼ି ଘରକୁ ଯିବାକୁ ତା'ର ଆଦୌ ଇଚ୍ଛା ନ ଥାଏ । କିନ୍ତୁ ସ୍ୱାମୀଜୀଙ୍କ ଆଜ୍ଞା ମାନି ସେ ଯିବାକୁ ବାଧ୍ୟ ହେଲା । ଏଣେ ସମୟ ହେବାରୁ ସ୍ୱାମୀଜୀଙ୍କୁ ଭୋକ ଲାଗିଲା । ଭୋକ ଜ୍ୱାଳାରେ ମାଧବ ଘରକୁ ଚାଲିଯାଇଥିବା କଥା ତାଙ୍କର ସ୍ମରଣ ରହିଲା ନାହିଁ । ସେ ବଡ଼ ସ୍ନେହରେ ଡାକିଲେ—''ବତ୍ସ ମାଧବ! ମାଧବ! କିଛି ତିଆରି କର ବାପ, ପ୍ରବଳ ଭୋକ ଲାଗିଲାଣି ।'' ସେହି ସମୟରେ ତାଙ୍କର ଭକ୍ତିରେ ପ୍ରସନ୍ନ ହୋଇ ବିନ୍ଦୁମାଧବ ଠାକୁର ମାଧବ ବିଦ୍ୟାର୍ଥୀ ରୂପରେ ଆସି ସବୁ ପ୍ରକାର ସେବା କାର୍ଯ୍ୟ ସମ୍ଭାଳିଲେ ।

ବାପାଙ୍କ ଦେହ ଭଲ ହେବାପରେ ମାଧବ ଗୁରୁଙ୍କ ସେବାରେ ଉପସ୍ଥିତ ହେଲା । ଆସି ଦେଖିଲା ଯେ ଚୁଲିରେ ଖେଚେଡ଼ି ବସିଛି । ସ୍ୱାମୀଜୀଙ୍କ ଚରଣରେ ପ୍ରଣାମ ଜଣାଇ ଘରର ଭଲମନ୍ଦ କହିବା ପରେ ଆଶ୍ରମର ସମାଚାର ଜାଣିବା ପାଇଁ ବିନମ୍ର ଭାବରେ ହାତଯୋଡ଼ି ପଚାରିଲା—''ଗୁରୁଦେବ! ମୋ ଅନୁପସ୍ଥିତିରେ ଆପଣଙ୍କର ସେବା କିଏ କଲା? ଚୁଲିରେ ଖେଚେଡ଼ି ବସାଇଛି କିଏ?'' ଇତ୍ୟାଦି ଇତ୍ୟାଦି । ତା' କଥା ଶୁଣି ଶ୍ରୀଧର ସ୍ୱାମୀ ଆଚମ୍ବିତ ହୋଇ କହିଲେ—''ତୁ ଏମିତି କ'ଣ କହୁଛୁ! ସବୁ ସେବା ତ ତୁ ନିଜେ କରିଛୁ, ପୁଣି ନ ଜାଣିବା ଭଳି କୋତେ

ଏମିତି ପଚ୍ଚାରୁଛ କାହିଁକି?'' ମାଧବ ବିସ୍ମୟରେ କହିଲା—''ଗୁରୁଦେବ! ମୁଁ ତ ଏବେ ବାପାଙ୍କ ସେବା ସାରି ବହୁ ଦିନ ପରେ ଘରୁ ଫେରିଲି। ମୁଁ ସେବା କଲି କେତେବେଳେ?'' ଶ୍ରୀଧର ସ୍ୱାମୀ ବୁଝିଗଲେ ଯେ ଏସବୁ ପ୍ରଭୁଙ୍କର ଲୀଳା। ପ୍ରଭୁଙ୍କ ଅପାର କୃପା ଅନୁଭବ କରି ତାଙ୍କ ହୃଦୟ ଗଦ୍‌ଗଦ ହୋଇ ଉଠିଲା। ସେ ପ୍ରଭୁଙ୍କ ପଦାରବିନ୍ଦରେ ବନ୍ଦନା କରି କୃତକୃତ୍ୟ ହେଲେ। ତା'ପରେ ମାଧବ ବିଦ୍ୟାର୍ଥୀକୁ ମଧ୍ୟ ଜଣାପଡ଼ିଗଲା ଯେ ତା' ରୂପରେ ପ୍ରଭୁ ଆସି ଗୁରୁଦେବଙ୍କର ସେବା-ଶୁଶ୍ରୂଷା କରିଥିଲେ।

ଦୀର୍ଘ ଦିନ ବ୍ୟତୀତ ହେବା ପରେ ଶ୍ରୀଧାମ ବୃନ୍ଦାବନ ପ୍ରତି ଶ୍ରୀଧର ସ୍ୱାମୀଙ୍କ ମନ ଆକୃଷ୍ଟ ହେଲା। ସେ କାଶିରୁ ବୃନ୍ଦାବନ ଉଦ୍ଦେଶ୍ୟରେ ଯାତ୍ରା କଲେ। ପ୍ରଥମେ ଆସି ସେ ଧୀର-ସମୀର ଘାଟରେ ନିବାସ କରିଥାନ୍ତି। ସେ ସନ୍ନ୍ୟାସୀ ହେବା କଥା ଶୁଣି ଅନେକ ଶ୍ରଦ୍ଧାଳୁ ଲୋକ, ସହପାଠୀ ବିଦ୍ୱାନ୍, ଓ ବିଦ୍ୟାର୍ଥୀଗଣ ତାଙ୍କୁ ଦର୍ଶନ କରିବା ପାଇଁ ଖୋଜି ଖୋଜି ବୃନ୍ଦାବନରେ ପହଞ୍ଚିଲେ। ଧୀର-ସମୀର ଘାଟରେ ସେମାନେ ସ୍ୱାମୀଜୀଙ୍କ ଦର୍ଶନ ପାଇଲେ ଏବଂ ସେମାନେ ତାଙ୍କୁ ଘରକୁ ଯିବା ପାଇଁ ଅନୁରୋଧ କଲେ। ବିଦ୍ୟାର୍ଥୀମାନେ ତାଙ୍କ ପାଦତଳେ ଭକ୍ତିପୂତ ପ୍ରଣାମ ଜଣାଇ ଗଭୀର ଦୁଃଖ ପ୍ରକାଶ କଲେ। କିନ୍ତୁ ଶ୍ରୀଧର ସ୍ୱାମୀ ସେମାନଙ୍କୁ ଭକ୍ତିର ପ୍ରଭାବ ଓ ଶ୍ରେଷ୍ଠତ୍ୱ ବୁଝାଇ ଘରକୁ ଯିବାକୁ ଅନିଚ୍ଛା ପ୍ରକାଶ କଲେ।

କଥାବାର୍ତ୍ତା କ୍ରମରେ ଦି'ପହର ହୋଇଗଲା। ଶ୍ରୀଧର ସ୍ୱାମୀ ମଧ୍ୟାହ୍ନ ସ୍ନାନ ନିମନ୍ତେ ଯମୁନାକୁ ଚାଲିଗଲେ। ଯିବା ବାଟରେ ମନେ ମନେ ଭାବୁଥାନ୍ତି ଆଗନ୍ତୁକ ଅତିଥିମାନଙ୍କ ଭୋଜନ ପାଇଁ କେଉଁଠୁ କି ବ୍ୟବସ୍ଥା କରିବେ? ଭକ୍ତର ଚିନ୍ତାରେ ଚିନ୍ତିତ ହୋଇପଡ଼ିଲେ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ। ସେ ଅତ୍ୟନ୍ତ କମନୀୟ ଗୋପାଳ ରୂପ ଧରି ଗୋପବାଳକଙ୍କ ସଙ୍ଗରେ ଆସି ପହଞ୍ଚିଲେ ସ୍ୱାମୀଜୀଙ୍କ ଆଶ୍ରମରେ। ଗୋପପୁଅମାନେ ଡାଲି, ଚାଉଳ, ଅଟା, ପନିପରିବା, ଫଳମୂଳ ପ୍ରଭୃତି ନାନା ପ୍ରକାର ଦ୍ରବ୍ୟ ଭାର କରି ଆଣିଥାନ୍ତି। ସବୁ ଜିନିଷ କୁଟୀରରେ ରଖିଦେଇ ଲୋକମାନଙ୍କୁ ସ୍ୱାମୀଜୀଙ୍କ ବିଷୟରେ ପଚାରିବାରୁ ସେମାନେ ଯମୁନା ସ୍ନାନ ପାଇଁ ଯାଇଛନ୍ତି ବୋଲି କହିଲେ। ଗୋପାଳ ବେଶଧାରୀ ଭଗବାନ ସେମାନଙ୍କୁ କହିଲେ—''ସ୍ୱାମୀଜୀ ଆସିଲେ ତାଙ୍କୁ ଆମର ଦଣ୍ଡବତ ଜଣାଇ କହିବ, ଏସବୁ ଜିନିଷପତ୍ର ସାଧୁସେବା ପାଇଁ ଆସିଛି। ଆନନ୍ଦରେ ସାଧୁ-ବ୍ରାହ୍ମଣଙ୍କ ସେବା କରିବେ, ଦରକାର ହେଲେ ଆହୁରି ଆସିଯିବ। ହଁ, ଆଉ ଗୋଟିଏ କଥା ମନେକରି କହିଦେବ ଯେ ଯଦି ନିର୍ବାହ ପାଇଁ

ଏମିତି ଚିନ୍ତା କରିବାର ଥିଲା, ତେବେ ଘର ଛାଡ଼ିଲେ କାହିଁକି?''

ଭଗବାନଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ ତାଙ୍କର ଶରଣାଗତ ହୋଇ ସେ କାହିଁକି ଯୋଗକ୍ଷେମର ଚିନ୍ତା କରୁଛନ୍ତି? ଏହା ଶରଣାଗତିରେ ଏକପ୍ରକାର କଳଙ୍କ। ପ୍ରଭୁ ତ ନିଜେ ଭକ୍ତର ଯୋଗକ୍ଷେମ ବହନ କରିବାକୁ ଲାଳାୟିତ ରହିନ୍ତି—**'ଯୋଗକ୍ଷେମଂ ବହାମ୍ୟହମ୍।'** ସ୍ୱା ମୀଜୀ ସ୍ନାନ ସାରି ଫେରିବା ପରେ ଲୋକମାନେ ତାଙ୍କୁ ସବୁ କଥା କହିଲେ। ପ୍ରଭୁଙ୍କ ଭକ୍ତବାତ୍ସଲ୍ୟ ଗୁଣ ଅନୁଭବ କରି ତାଙ୍କ ନେତ୍ରରୁ ଧାର ଧାର ଅଶ୍ରୁ ବହି ଚାଲିଲା। ଲୋକମାନେ ଏହାର ରହସ୍ୟ ଜାଣିବାକୁ ଇଚ୍ଛା ପ୍ରକାଶ କରିବାରୁ ସ୍ୱାମୀଜୀ କରୁଣାମୟଙ୍କର କରୁଣା କଥା କହିଲେ। ଲୋକମାନେ ସ୍ୱାମୀଜୀଙ୍କ ଉପରେ ପ୍ରଭୁଙ୍କର ଅପାର କରୁଣା ଥିବା ଜାଣି ତାଙ୍କୁ ଘରକୁ ଫେରାଇ ନେବାର ଆଗ୍ରହ ଛାଡ଼ିଦେଲେ ଏବଂ ତାଙ୍କ ପାଦତଳେ ଭକ୍ତିପୂତ ପ୍ରଣାମ ଜଣାଇ ସେଠାରୁ ପ୍ରସ୍ଥାନ କଲେ।

ସ୍ୱଧାମ ଗମନ କରିବାବେଳେ ଶ୍ରୀକୃଷ୍ଣ ବିଦୁରଙ୍କୁ ସ୍ମରଣ କରିଥିବା କଥା ଶୁଣି ବିଦୁର ଯେପରି ଯମୁନା କୂଳରେ ଅଧୀର ହୋଇ କ୍ରନ୍ଦନ କରିଥିଲେ, ଶ୍ରୀଧର ସ୍ୱାମୀଙ୍କ ସ୍ଥିତି ଠିକ୍ ସେଇଭଳି ହୋଇଗଲା। ଲୋକମାନେ ପାଖରେ ଥିବାବେଳେ ସେ ହୃଦୟର ଯେଉଁ କୋହକୁ ଚାପି ରଖିଥିଲେ, ସେମାନେ ଯିବାପରେ ଏକାନ୍ତ ପାଇ ତାହା ଝରଣା ଭଳି ଫୁଟି ବାହାରି ପଡ଼ିଲା। ସେ ପ୍ରଭୁଙ୍କ ଭକ୍ତବତ୍ସଳ ଗୁଣ ସ୍ମରଣ କରି ଅଧୀର ହୋଇ କ୍ରନ୍ଦନ କଲେ।

ସ୍ୱାମୀଜୀଙ୍କ ପ୍ରତିଟି ଉପଦେଶ ଅତ୍ୟନ୍ତ ହୃଦୟସ୍ପର୍ଶୀ। ପ୍ରଭୁଙ୍କ କୃପାରେ ତାଙ୍କର ଜୀବନ ଏତେ ଅନୁପ୍ରାଣିତ ଥିଲା ଯେ ସେ ତାହାକୁ ଜୀବନର ପାଥେୟ କରି ଲେଖିଲେ—

**ତପନ୍ତୁ ତାପୈଃ ପ୍ରତପନ୍ତୁ ପର୍ବତାଦ୍**
**ଅଟନ୍ତୁ ତୀର୍ଥାନି ପଠନ୍ତୁ ଚାଗମାନ୍।**
**ଯଜନ୍ତୁ ଯାଗୈର୍ବିବଦନ୍ତୁ ବାଦୈ-**
**ର୍ହରିଂ ବିନା ନୈବ ମୃତ୍ୟୁଂ ତରନ୍ତି॥**

ଅର୍ଥ—''କେହି ଯେତେ ତପ କରୁ, ପର୍ବତ ଶିଖରରୁ ଲମ୍ଫ ଦେଉ, ବେଦପାଠ, ଯଜ୍ଞ ଅଥବା ଶାସ୍ତ୍ରାର୍ଥ କରୁ ପଛେ, ପ୍ରଭୁଙ୍କ ଚରଣରେ ଶରଣ ନ ପଶିବା ଯାଏ ସେ ଭବସାଗରରୁ ପାର ହେବା ସମ୍ଭବ ନୁହେଁ।''



# ଭକ୍ତ ଭୁବନସିଂହ

ଦେଶ, କାଳ, ପରିସ୍ଥିତି ସବୁ କିଛି ବଦଳିଯାଏ, ଯୁଗ ପରେ ଯୁଗ ବିତିଯାଏ, ସବୁଥିରେ ପରିବର୍ତ୍ତନ ଆସେ, ମାତ୍ର ଭଗବାନଙ୍କ ସ୍ୱଭାବରେ କେବେ ପରିବର୍ତ୍ତନ ଦେଖାଯାଏ ନାହିଁ। ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗରେ ସେ ଯେପରି ଭକ୍ତକୁ ସହାୟ ହେଉଥିଲେ, କଳିଯୁଗରେ ମଧ୍ୟ ସେହିପରି ସହାୟ ହେବା କଥା ଭକ୍ତଙ୍କ ଜୀବନରୁ ପରିଲକ୍ଷିତ ହୁଏ। ଭକ୍ତ ପ୍ରହ୍ଲାଦର ବଚନ ରକ୍ଷା କରିବା ପାଇଁ ନୃସିଂହ ଦେବ ସ୍ତମ୍ଭରୁ ପ୍ରକଟ ହୋଇଥିଲେ। ନାରଦଙ୍କ ବଚନକୁ ସତ୍ୟ ପ୍ରମାଣିତ କରିବା ନିମନ୍ତେ ଶ୍ରୀବାଳକୃଷ୍ଣ ଯାମଳାର୍ଜୁନ ବୃକ୍ଷ ଦୁଇଟିର ମଝିରେ ପଶି ତାହାଙ୍କୁ ଶାପମୁକ୍ତ କରିଥିଲେ। ପିତାମହ ଭୀଷ୍ମଙ୍କ ପ୍ରତିଜ୍ଞା ରକ୍ଷା ପାଇଁ ଭଗବାନ ଶ୍ରୀକୃଷ୍ଣ ଯୁଦ୍ଧରେ ଶସ୍ତ୍ର ନ ଧରିବାର ପ୍ରତିଜ୍ଞା ତ୍ୟାଗ କରି ତାଙ୍କୁ ମାରିବା ପାଇଁ ଦୁଇଥର ଦୌଡ଼ିଥିଲେ। ଏହିଭଳି ଆହୁରି ଅନେକ ଭକ୍ତଙ୍କ ବଚନକୁ ସତ୍ୟ କରିବା କଥା ପୁରାଣରେ ସ୍ଥାନେ ସ୍ଥାନେ ଦେଖାଯାଏ। ସେହିପରି କଳିଯୁଗରେ ମଧ୍ୟ ଭକ୍ତର ବଚନ ରକ୍ଷା କରି ଭଗବାନ ଦାରୁମୟ ଖଡ୍‌ଗକୁ ଲୌହ ଖଡ୍‌ଗରେ ପରିଣତ କରିଦେଲେ। ଏପରି ଅଦ୍ଭୁତ ଘଟଣା ଘଟିଥିଲା ଭକ୍ତ ଭୁବନସିଂହ ଚୌହାନଙ୍କ ପାଇଁ।

ଭୁବନସିଂହ ଥିଲେ ରାଜସ୍ଥାନ ପ୍ରାନ୍ତର ଉଦୟପୁର ମହାରାଜ ରାଣାଙ୍କର କର୍ମଚାରୀ। ତାଙ୍କ ବାପା ଏକାଧାରରେ ଜଣେ ମହାନ୍ ଯୋଦ୍ଧା, ଧର୍ମାତ୍ମା ଓ ଶ୍ରୀରାଧାବଲ୍ଲଭ ଠାକୁରଙ୍କର ଭକ୍ତ ଥିଲେ। ତାଙ୍କର ବୀରତ୍ୱ, ସାହସ ଓ କାର୍ଯ୍ୟକୁଶଳତାରେ ପ୍ରସନ୍ନ ହୋଇ ରାଜା ତାଙ୍କୁ ବଡ଼ ଭାଇ ପରି ସମ୍ମାନ ଦେଉଥିଲେ। ଭୁବନସିଂହଙ୍କ ବାଲ୍ୟକାଳରେ ତାଙ୍କ ବାପାଙ୍କର ଦେହାନ୍ତ ଘଟିଲା। ବାପା ଭଗବଦ୍ଧାମକୁ ଚାଲିଯିବା ପରେ ତାଙ୍କରି ପଦରେ ନିଯୁକ୍ତ ହୋଇ ସେ ରାଜକୀୟ କାର୍ଯ୍ୟ ସମ୍ଭାଳିଲେ। ସେ ପିଲାବେଳେ ଖୁବ୍ ଶିକାର ପ୍ରିୟ ଥିଲେ। କିନ୍ତୁ ତାଙ୍କ ମାଆଙ୍କୁ ପୁଅର ଏଭଳି ହୀନ କର୍ମ ଭଲ ଲାଗୁ ନ ଥିଲା। ନିରୀହ ଜୀବଙ୍କୁ ଅଯଥା ମାରିବାକୁ ସେ ତାକୁ ବାରଣ କରୁଥିଲେ। ସେ ପ୍ରତିଦିନ ଠାକୁରଙ୍କ ପାଦତଳେ ଗୁହାରି ଜଣାଇ ପୁଅର ବୁଦ୍ଧିକୁ ପବିତ୍ର କରି ହରି, ଗୁରୁ ଓ ସାଧୁସନ୍ଥଙ୍କ ଭକ୍ତ କରିଦେବାକୁ କହୁଥିଲେ। କେବଳ ସେତିକି ନୁହେଁ, ତାଙ୍କର ନୃଶଂସ ସ୍ୱଭାବ କାରଣରୁ ସେ ତାଙ୍କଠାରୁ ମମତ୍ୱ ଓ ବାତ୍ସଲ୍ୟ ସ୍ନେହ ମଧ୍ୟ ଦୂରେଇ ଦେଇଥିଲେ।

ଭଗବାନଙ୍କ କୃପାରୁ ଦିନେ ଗୋଟିଏ ମୃଷା କାଛରେ ଟଙ୍ଗା ହୋଇଥିବା

ଭୁବନସିଂହଙ୍କ ତୂଣୀରର ଡୋରିକୁ କାଟିଦେଲା। ତୂଣୀରଟି ତଳେ ପଡ଼ିଯିବାରୁ ଶରଗୁଡ଼ିକ ଏତେତେଣେ ବିଞ୍ଚାଡ଼ି ହୋଇଗଲା। ଅସ୍ତ୍ରାଗାର ନିକଟରେ ଭୁବନସିଂହଙ୍କ ଶୟନ କକ୍ଷ। ଶର ପଡ଼ିବାର ଝଣଝାଣ ଶବ୍ଦ ଶୁଣି କ'ଣ ହେଲା ବୋଲି ସେ ଦେଖିବାକୁ ଦୌଡ଼ି ଆସିଲେ। ସେତେବେଳେ କିଟିକିଟିଆ ଅନ୍ଧାରରେ ତାଙ୍କୁ କିଛି ଦେଖାଯାଉ ନ ଥାଏ। ଅଣ୍ଡାଳି ଅଣ୍ଡାଳି ଯାଉ ଯାଉ ତାଙ୍କ ପାଦରେ ଗୋଟିଏ ଶର ପଶିଗଲା। 'ଆଲୋ ମାଆ ଲୋ!' କହି ସେ ଚିତ୍କାର କଲେ। ମାଆ ଦୌଡ଼ି ଆସି ଶରଟିକୁ ବାହାର କରି କ୍ଷତ ସ୍ଥାନରେ ଔଷଧ ଲଗାଇଦେଲେ। ବେଦନା ଟିକିଏ କମ୍ ହେଲା। ତା'ପରେ ମାଆ ଧିକ୍କାର କରି ତାଙ୍କୁ କହିଲେ—''ତୁ ଗୋଟାଏ କୁଳାଙ୍ଗାର। ତୋ'ଠାରେ ତୋ ବାପାଙ୍କର କୌଣସି ଗୁଣ ନାହିଁ। ସେ ପରମ ଯୋଦ୍ଧା, ଧର୍ମାତ୍ମା ଓ ଭକ୍ତ ଥିଲେ। ତାଙ୍କ ଔରସରୁ ଜନ୍ମ ହୋଇ ତୁ କୁଳର କୀର୍ତ୍ତି ନଷ୍ଟ କରିଦେଲୁ। ସାମାନ୍ୟ ଶରଟିଏ ପଶିଯିବାରୁ ତୁ 'ମାଆ ଲୋ! ବାପ ଲୋ!' କହି ଚିତ୍କାର କରୁଛୁ, ଆଉ ନିରୀହ ଜୀବମାନଙ୍କୁ ଅଯଥା ବଧ କରିବା ବେଳକୁ ତୋର ବିବେକ ଟିକିଏ ବାଧା ଦେଉ ନାହିଁ। ଜାଣିଛୁ ଜୀବହତ୍ୟା କେଡ଼େ ପାପ? କେବେ ଭାବିଛୁ ନିରୀହ ଜୀବମାନଙ୍କୁ କେତେ କଷ୍ଟ ହେଉଥିବ? ସେମାନେ ତୋର କି କ୍ଷତି କରିଛନ୍ତି? ପରଜନ୍ମରେ ତୋତେ ଗୋଟି ଗୋଟି କରି ସବୁ ପାପ ଭୋଗିବାକୁ ପଡ଼ିବ? ତୋର ବଜ୍ର ଭଳି କଠୋର ହୃଦୟରେ ଲେଶମାତ୍ର ଦୟା ନାହିଁ। ପୁଣି ନିର୍ଦ୍ଦୟୀ ବ୍ୟକ୍ତି ଧର୍ମାତ୍ମା ଓ ଭକ୍ତ ହେବ କୁଆଡୁ? ତୋ ଭଳି କୁଳାଙ୍ଗାର ପାପୀକୁ ଗର୍ଭରେ ଧରିବା ଅପେକ୍ଷା ମୁଁ ବାଞ୍ଝ ହୋଇଥିଲେ ବରଂ ଭଲ ହୋଇଥାନ୍ତା।''

ମାଆଙ୍କ ବାତ୍ସଲ୍ୟଭରା ଉଦାର ଉପଦେଶ ଭୁବନସିଂହଙ୍କ ମର୍ମସ୍ପର୍ଶୀ ହେଲା। ସେହିଦିନଠାରୁ ସେ ଆଉ ପଶୁବଧ ନ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇ ପ୍ରଭୁଭକ୍ତିରେ ଅନୁପ୍ରାଣିତ ହୋଇଗଲେ। ପ୍ରତିଜ୍ଞାବଦ୍ଧ ହୋଇଗଲେ ସିନା, କିନ୍ତୁ ତାହା ପାଳନ କରିବା ତାଙ୍କ ଭଳି ଜଣେ ରାଜକର୍ମଚାରୀ ପକ୍ଷେ ନିଶ୍ଚିତରୂପେ କଷ୍ଟକର। ସୈନିକ ପଦରେ ନିଯୁକ୍ତ ଥିବାରୁ ରାଜାଙ୍କ ସୁରକ୍ଷା ପାଇଁ ଅସ୍ତ୍ରଶସ୍ତ୍ର ଧାରଣ କରିବା ତାଙ୍କ ପକ୍ଷେ ନିହାତି ଆବଶ୍ୟକ ଥିଲା।

ଦିନକର ଘଟଣା। ମହାରାଜ ରାଣା ଅନେକ ପାତ୍ର-ମନ୍ତ୍ରୀଙ୍କ ସଙ୍ଗରେ ଅରଣ୍ୟକୁ ଯାଇଥିଲେ। ତାଙ୍କ ସହିତ ଭୁବନସିଂହଙ୍କୁ ମଧ୍ୟ ଯିବାକୁ ପଡ଼ିଲା। ଘୋର ଅରଣ୍ୟରେ ଗୋଟିଏ ମୃଗୁଣୀକୁ ବଧ କରିବା ପାଇଁ ମହାରାଜ ତା' ପଛରେ ଘୋଡ଼ା ଦୌଡ଼ାଇଲେ।

କିନ୍ତୁ ତାଙ୍କର ଆଶା ପୂରଣ ହେଲା ନାହିଁ। ଶିକାର ରାଜାଙ୍କ ହାତଛଡ଼ା ହେଉଥିବା ଦେଖି ଭୁବନସିଂହ ଘୋଡ଼ାରେ ଚଢ଼ି ପ୍ରବଳ ବେଗରେ ଯାଇ ମୃଗୁଣୀକୁ ତୀକ୍ଷ୍ଣ ଖଡ୍‌ଗରେ ଦୁଇ ଗଡ଼ କରିଦେଲେ। ମଲାବେଳେ ଗର୍ଭବତୀ ମୃଗୁଣୀକୁ ଛଟପଟ ହେଉଥିବାର ଦେଖି ଭୁବନସିଂହଙ୍କ ହୃଦୟରେ ଅସହ୍ୟ କଷ୍ଟ ହେଲା। ସେ ତାଙ୍କର ମନ୍ଦକୃତ୍ୟ ପାଇଁ ପଶ୍ଚାତ୍ତାପ କରି ଭାବିଲେ—"ହାୟ! ହାୟ! ଲୋକେ ମୋତେ ଭକ୍ତ କହୁଛନ୍ତି, ଅଥଚ ମୋର ଏଭଳି କ୍ରୂର କର୍ମ! ଏଭଳି ଜଘନ୍ୟ ହିଂସା ଯୋଗୁଁ ମୁଁ ଏକ ସଙ୍ଗରେ ତିନୋଟି ଅପରାଧ କଲି—ଜୀବହିଂସା, ମାତୃଆଜ୍ଞା ଉଲ୍ଲଙ୍ଘନ ଓ ସ୍ୱପ୍ରତିଜ୍ଞା ଭଙ୍ଗ।" ସେ ବିବ୍ରତ ହୋଇ ସମସ୍ତ ଅସ୍ତ୍ରଶସ୍ତ୍ର କୂଅରେ ଫୋପାଡ଼ିଦେଲେ ଏବଂ ମାଆଙ୍କ ନିକଟକୁ ଯାଇ ତାଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି ମୃଗୁଣୀର ମୃତ୍ୟୁ କଥା କହିଲେ। ପୁଣି ଥରେ ସେ ମାଆଙ୍କ ଆଗରେ ଦୃଢ଼ ପ୍ରତିଜ୍ଞା କଲେ—"ମାଆ! ମୋତେ ଶକ୍ତି ଦିଅ, ମୁଁ ଯେପରି ଆଉ କେବେ ଏପରି ହିଂସା କରିବି ନାହିଁ ଏବଂ କୌଣସି ସନ୍ଥଙ୍କ ଠାରୁ ମନ୍ତ୍ର ଦୀକ୍ଷା ଦେଇ ମୋର ଜୀବନକୁ ପବିତ୍ର କରିଦିଅ।" ପୁଅର ଏଭଳି ପବିତ୍ର ନିଷ୍ଠା ଦେଖି ମାଆ ଖୁବ୍ ଆନନ୍ଦିତ ହେଲେ। ଏଥିପାଇଁ ସେ ପ୍ରଭୁଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରି ପୁଅକୁ ସଙ୍ଗରେ ଧରି ବୃନ୍ଦାବନ ଆସିଲେ ଏବଂ ଶ୍ରୀହିତହରିବଂଶ ମହାପ୍ରଭୁଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀବନଚନ୍ଦ୍ରଙ୍କ ଠାରୁ ତାଙ୍କୁ ଦୀକ୍ଷା ପ୍ରଦାନ କରାଇଲେ।

ମାଆପୁଅ କିଛି ଦିନ ବୃନ୍ଦାବନରେ ନିବାସ କରି ଠାକୁର ଶ୍ରୀରାଧାବଲ୍ଲଭଙ୍କ ଦର୍ଶନ, ସାଧୁସଙ୍ଗ ଓ ପରିକ୍ରମା ଇତ୍ୟାଦିରୁ ଅପାର ସୁଖ ଅନୁଭବ କରିବା ପରେ ଘରକୁ ଫେରିଗଲେ। ରାଜାଧିରାଜ ବୃନ୍ଦାବନ ବିହାରୀଙ୍କ ଚାକର ହୋଇ ସାରିଥିବାରୁ ରାଜାଙ୍କ ଅଧୀନରେ ଚାକିରୀ କରିବା ଭୁବନସିଂହଙ୍କୁ ଆଉ ଭଲ ଲାଗୁ ନ ଥିଲା, ତଥାପି ମାଆଙ୍କ ସହିତ ପରାମର୍ଶ କରି ସେ ପୁଣି ଚାକିରୀ କଲେ। କାରଣ, ରାଜା ତାଙ୍କ ବାପାଙ୍କ ବୀରତ୍ୱରେ ପ୍ରସନ୍ନ ହୋଇ ତାଙ୍କ ନାଆଁରେ ଯେଉଁ ଜମି ଲେଖି ଦେଇଥିଲେ, ସେଥିରୁ ବାର୍ଷିକ ଦୁଇ ଲକ୍ଷ ଟଙ୍କାର ଫସଲ ଆମଦାନି ହେଉଥିଲା। ତଦ୍ୱାରା ସେ ସାଧୁସେବା କରିପାରୁଥିଲେ। ଚାକିରୀ ଛାଡ଼ିଦେଲେ ସାଧୁସେବାରେ ଅସୁବିଧା ହେବ ବୋଲି ଭାବି ସେ ରାଜଦରବାରକୁ ଗଲେ।

ଏଥର କିନ୍ତୁ ସେ ତାଙ୍କ ଅହିଂସା ବ୍ରତରେ ବେଶ୍ ସୁଦୃଢ଼। ପାଖରେ ଅସ୍ତ୍ରଶସ୍ତ୍ର ରଖିଲେ ପୁଣି କେବେ ବି ଜୀବହତ୍ୟା ହୋଇଯାଇପାରେ, ସେଥିପାଇଁ ସେ ଚିନ୍ତିତ ରହୁଥାନ୍ତି। ବାଲ୍ମୀକି ରାମାୟଣରେ ବର୍ଣ୍ଣନା ଅଛି ଯେ ଦଣ୍ଡକାରଣ୍ୟରେ ମୁନିଋଷିଙ୍କ

କଷ୍ଟରେ ଦୁଃଖୀ ହୋଇ ପ୍ରଭୁ ଶ୍ରୀରାମଚନ୍ଦ୍ର ନିଶାଚର ବଧ କରିବାକୁ ପ୍ରତିଜ୍ଞା କରିବା ଲକ୍ଷ୍ୟ କରି ମାତା ଜାନକୀ କହିଲେ—"କରୁଣାନିଧାନ! ତୁମେ କେଡ଼େ ସୁନ୍ଦର ମୁନିବେଶ ଧାରଣ କରିଛ ଏବଂ ରାକ୍ଷସଙ୍କ ସହିତ ତୁମର କୌଣସି ଶତ୍ରୁତା ମଧ୍ୟ ନାହିଁ, ତଥାପି ସେମାନଙ୍କୁ ବଧ କରିବାର ସଙ୍କଳ୍ପ ଦେଖି ମୁଁ ଅନୁମାନ କରେ ଯେ ଏସବୁ ଧନୁଶର ଧାରଣ କରିବାର ଫଳ। ନଚେତ୍ ମୁନିବେଶ ଧରିଥିବା ଲୋକ ମନରେ ଏଭଳି ରାକ୍ଷସ ବଧର ସଙ୍କଳ୍ପ କେମିତି ବା ଜାଗ୍ରତ ହୋଇ ପାରିବ? ଶୁଖିଲା ଘାସରେ ନିଆଁ ଲାଗିବା ପରି ଅସ୍ତ୍ରଶସ୍ତ୍ର ଧାରଣ କରିଥିବା କ୍ଷତ୍ରିୟ ଦେହରେ ଭୀଷଣ ଉତ୍ତେଜନା ସୃଷ୍ଟି ହୁଏ—

**କ୍ଷତ୍ରିୟାଣାମିହ ଧନୁର୍ହୁତାଶସ୍ୟେନ୍ଧନାନି ଚ।**
**ସମୀପତଃ ସ୍ଥିତଂ ତେଜୋବଳମୁଚ୍ଛ୍ରୟତେ ଭୃଶମ୍॥**

ତା'ପରେ ମାତା ଜାନକୀ ଆଉ ଗୋଟିଏ ଆଖ୍ୟାନ କହିଲେ—ପୂର୍ବକାଳରେ ଜଣେ ତପସ୍ୱୀ ଋଷିଙ୍କର ତପସ୍ୟା ଭଙ୍ଗ କରିବା ନିମନ୍ତେ ଦେବରାଜ ଇନ୍ଦ୍ର ସ୍ୱୟଂ ଜଣେ ଯୋଦ୍ଧା ରୂପ ଧରି ତାଙ୍କ କୁଟୀରରେ ପହଞ୍ଚିଲେ ଏବଂ କିଛି ଦିନ ପାଇଁ ତାଙ୍କର ଖଣ୍ଡାଟିକୁ ଆଶ୍ରମରେ ରଖିବା ପାଇଁ ଋଷିଙ୍କୁ ଅନୁରୋଧ କଲେ। ଋଷି ପ୍ରଥମେ ମନା କରୁଥିଲେ, କିନ୍ତୁ ଅଧିକ ବାଧ୍ୟ କରିବାରୁ ସେ ତାଙ୍କ କଥା କାଟି ପାରିଲେ ନାହିଁ। ଅନ୍ୟର ଜିନିଷ କାଳେ କିଏ ନେଇଯିବ, ସେ ଭୟରେ ଋଷି ଖଣ୍ଡାଟିକୁ ସବୁବେଳେ ପାଖରେ ରଖୁଥିଲେ। ଖଣ୍ଡାର ସଙ୍ଗ ଯୋଗୁଁ ସେ ଧୀରେ ଧୀରେ କ୍ରୂର କର୍ମରେ ପ୍ରବୃତ୍ତ ହୋଇ ପରିଶେଷରେ ନରକରେ ପଡ଼ିଲେ।

ଆହୁରି ମଧ୍ୟ ବ୍ୟକ୍ତି ଉପରେ ସଙ୍ଗର ଛାପ ପଡ଼ିବା କଥା କାହାକୁ ଅଛପା ନାହିଁ। ଦେଖାଯାଏ ଯେ ବିଡ଼ି, ଗଞ୍ଜେଇ, ମଦ ଇତ୍ୟାଦି ନିଶା ସେବନ କରୁଥିବା ଲୋକଙ୍କ ସହିତ ମିଶି ଜଣେ ଭଲ ଲୋକ ମଧ୍ୟ କୁମାର୍ଗରେ ପଡ଼ିଯାଏ। ଶାସ୍ତ୍ରରେ କୁହାଯାଇଛି ଯେ ମଦ୍ୟପ ସଙ୍ଗରେ ଜଣେ ଭଲ ଲୋକ ତିନି ବର୍ଷ ରହିଗଲେ ତାକୁ ମଧ୍ୟ ମହାପାପର ଫଳ ଭୋଗିବାକୁ ପଡ଼ିବ।

ଭୁବନସିଂହ ଧନୁର୍ବାଣର କୁସଙ୍ଗ ବିଷୟରେ ଏହିପରି ଅନେକ କଥା ଭାବି ଚିନ୍ତିତ ହୋଇ ପଡ଼ିଲେ। ତା' ଛଡ଼ା ଅସ୍ତ୍ରଶସ୍ତ୍ର ଧାରଣ ନ କରିବାକୁ ଗୁରୁଦେବଙ୍କର କଠୋର ଆଜ୍ଞା। ଥରେ ତାଙ୍କର ଏହି ଭୁଲ୍ ହୋଇସାରିଛି। ସେ ପାଖରେ ଅସ୍ତ୍ର ରଖିବାର କୁପରିଣାମ ସ୍ୱଚକ୍ଷୁରେ ଦେଖି ସାରିଛନ୍ତି। ତେଣୁ ସେ ମାଆଙ୍କୁ ଏ ସମସ୍ୟା ସମାଧାନର ଉପାୟ ପଚାରିଲେ। ତାଙ୍କ ମାଆ ଖୁବ୍ ବୁଦ୍ଧିମତୀ ଥିଲେ। ସେ ପୁଅ

ପାଇଁ ସୁନେଲି ବେଣ୍ଟର କାଠ ଖଣ୍ଡାଟିଏ ତିଆରି କରି ରେଶମ ଖୋଳ ଭିତରେ ରଖିବାକୁ ଦେଲେ। ଏହାଦ୍ୱାରା ଶସ୍ତ୍ର ଧାରଣ କରିବାର ମର୍ଯ୍ୟାଦା ରକ୍ଷା ହେଲା ଏବଂ ଜୀବହତ୍ୟାର ସମ୍ଭାବନା ରହିଲା ନାହିଁ।

ଲୀଳାମୟ ଠାକୁର କିନ୍ତୁ ଏତିକିରେ ସନ୍ତୁଷ୍ଟ ନୁହନ୍ତି। ସେ ତାଙ୍କ ଭକ୍ତର ସବୁ ସମସ୍ୟାକୁ ସମୂଳେ ଦୂର କରି ଅନ୍ୟର ଦାସତ୍ୱରୁ ମୁକ୍ତ କରାଇବାକୁ ଚ୍ୱାହାନ୍ତି। ଏଥିପାଇଁ ସେ ଆଉ ଗୋଟିଏ ଲୀଳା ରଚିଲେ । ଭୁବନସିଂହଙ୍କର ଭାଇ ବଡ଼ ଖଳ ଲୋକ ଥିଲା। ସେ ତାଙ୍କ ପ୍ରତି ବୈରଭାବ ରଖୁଥିଲା। ତାଙ୍କୁ ହଇରାଣ କରିବା ପାଇଁ ଦିନରାତି ଛିଦ୍ର ଖୋଜୁଥିଲା। ଖଳ ଲୋକ ପକ୍ଷେ ଏହା କିଛି ଆଶ୍ଚର୍ଯ୍ୟ କଥା ନୁହେଁ। କୁଆପଥର ଫସଲକୁ ନଷ୍ଟ କରି ଯେପରି ନିଜେ ମିଳେଇଯାଏ, ସେହିପରି ଖଳ ଲୋକ ଅନ୍ୟର ଅପକାର ପାଇଁ ନିଜ ପ୍ରାଣକୁ ବାଜି ଲଗାଇଦିଏ। ନିଜର ସ୍ୱାର୍ଥ ତ୍ୟାଗ କରି ପରହିତରେ ରତ ବ୍ୟକ୍ତି ମହାପୁରୁଷ, ନିଜ ସ୍ୱାର୍ଥ ପ୍ରତି ସାବଧାନ ହୋଇ ପରହିତ ପାଇଁ ଚେଷ୍ଟା କରୁଥିବା ବ୍ୟକ୍ତି ଭଦ୍ରଲୋକ ଏବଂ ନିଜର ସ୍ୱାର୍ଥ ପାଇଁ ପରର ଅନିଷ୍ଟ କରୁଥିବା ବ୍ୟକ୍ତି ନର-ରାକ୍ଷସ ଅଟେ। କିନ୍ତୁ ଅଯଥାରେ ଅନ୍ୟର ଅପକାର କରି ସୁଖୀ ହେଉଥିବା ଲୋକକୁ ସମ୍ବୋଧନ କରିବା ପାଇଁ ବୋଧହୁଏ ସରସ୍ୱତୀଙ୍କ ଶବ୍ଦକୋଷରେ ଶବ୍ଦ ନ ଥିବ।

ଖଳ ସ୍ୱଭାବର ବଶୀଭୂତ ହୋଇ ଭୁବନସିଂହଙ୍କୁ ତାଙ୍କର ଭାଇ ହଇରାଣ କରିବାକୁ ସୁଯୋଗ ଖୋଜୁଥିଲା। ଥରେ ହଠାତ୍ ତା'ର ଦୃଷ୍ଟି ପଡ଼ିଗଲା ତାଙ୍କର କାଠ ତିଆରି ଖଣ୍ଡା ଉପରେ। ଏଥର କୋଟିନିଧି ଉପୁଜିଲା ପରି ତା'ର ମନ ଭାରି ଖୁସୀ। ସେ ସମୟ ସୁଯୋଗ ପାଇ ରାଜାଙ୍କ ଆଗରେ ତିଳକୁ ତାଳ କରି କହିଲା—"ମଣିମା! ଆପଣଙ୍କ ଭଳି ପ୍ରତାପୀ ରାଜାଙ୍କର ପ୍ରାଣ ବିପଦରେ ପଡ଼ିଥିବା ଦେଖି ମୋର ମନ ବଡ଼ ବ୍ୟାକୁଳ। ଆପଣଙ୍କ ସେନାପତି ଭୁବନସିଂହ କେବଳ ନାଆଁକୁ ମାତ୍ର ସେନାପତି ହୋଇଛି। ତାହାର ଆଦୌ ଯୋଗ୍ୟତା ନାହିଁ। ଯିଏ କାଠ ଖଣ୍ଡା ଧରି ଖାଲି ଦେଖାଇବା ପାଇଁ ଆପଣଙ୍କ ସଙ୍ଗରେ ବୁଲୁଛି, ସେ ତ ବିପଦ ବେଳେ ନିଜର ପ୍ରାଣ ରକ୍ଷା କରିବାକୁ ଅସମର୍ଥ, ପୁଣି ଆପଣଙ୍କୁ ରକ୍ଷା କରିବ କ'ଣ? ଏଭଳି ବ୍ୟକ୍ତି ଦେଶକୁ ଶତ୍ରୁକବଳରୁ କି ରକ୍ଷା କରିବ?" ରାଜା ତା' କଥାକୁ ବିଶ୍ୱାସ କଲେ ନାହିଁ। ସେ ବାରମ୍ବାର ଚୁଗୁଲି କରୁଥାଏ, କିନ୍ତୁ ରାଜା ଶୁଣି ନ ଶୁଣିବା ପରି ତା' କଥାକୁ ଉପେକ୍ଷା କରି ଦେଉଥାନ୍ତି। ଏହିଭଳି ବର୍ଷକ ପରେ ଦିନେ ଖଳ ଲୋକଟି ତ୍ରିବାର ସତ୍ୟ କରି କହିଲା—

''ମଣିମା! ମୋ କଥାରେ ବିଶ୍ୱାସ କରନ୍ତୁ। ଯଦି ମୋ କଥା ମିଛ ହୋଇଥିବ, ମୋତେ ମୃତ୍ୟୁଦଣ୍ଡ ଦେବେ। ଥରେମାତ୍ର ପରୀକ୍ଷା କରି ତ ଦେଖନ୍ତୁ।'' ରାଜାଙ୍କ ମନରେ କିଞ୍ଚିତ୍ ସନ୍ଦେହ ହେଲା। କିନ୍ତୁ ସେ ଭୁବନସିଂହଙ୍କ ତେଜସ୍ୱୀ ବୈଷ୍ଣବବେଶ ଦେଖି ତାଙ୍କ ଆଗରେ କେବେ ବି ଏ କଥା ପକାଇବାକୁ ସାହସ କରିପାରୁ ନ ଥାନ୍ତି। ଶେଷକୁ ଥରେ ସେ ସତ୍ୟାସତ୍ୟ ଜାଣିବା ଆଶାରେ ପରୋକ୍ଷରୂପେ ପାତ୍ରମନ୍ତ୍ରୀଙ୍କୁ ଡାକି କହିଲେ—''ଆସନ୍ତା କାଲି ରାଜଭବନର ବଗିଚ୍ଚାରେ ଗୋଟିଏ ସଭା ଆୟୋଜିତ ହେବ। ସେଠାରେ ସମସ୍ତେ ଉପସ୍ଥିତ ହୋଇ ନିଜ ନିଜର ଖଡ୍‌ଗ ଦେଖାଇବେ। ଯାହାର ଖଡ୍‌ଗ ଶ୍ରେଷ୍ଠ ହୋଇଥିବ, ତାକୁ ଉଚିତ ପୁରସ୍କାରରେ ସମ୍ମାନିତ କରାଯିବ।''

ପରଦିନ ଆୟୋଜିତ ବିରାଟ ସଭାରେ ସମସ୍ତେ ନିଜ ନିଜର ଖଡ୍‌ଗ ନେଇ ଉପସ୍ଥିତ ହେଲେ। ପାତ୍ରମନ୍ତ୍ରୀଙ୍କୁ ସମ୍ବୋଧନ କରି ରାଜା କହିଲେ—''ଭାଇମାନେ! ବ୍ରାହ୍ମଣ ପାଇଁ ଶାସ୍ତ୍ର, କ୍ଷତ୍ରିୟ ପାଇଁ ଅସ୍ତ୍ରଶସ୍ତ୍ର, ବୈଶ୍ୟ ପାଇଁ ଧନସମ୍ପତ୍ତି ଓ ଶୂଦ୍ର ପାଇଁ ସେବା ହିଁ ପରମ ଧନ ଅଟେ। ତେଣୁ ଆସ ଆଜି ଏହି ସଭାରେ ଆମେ ନିଜ ନିଜର ଖଡ୍‌ଗ ଦେଖାଇବା ଆରମ୍ଭ କରିବା।'' ଏହିପରି କହି ରାଜା ନିଜେ ତାଙ୍କର ଖଡ୍‌ଗ ଦେଖାଇବା ପରେ ଯଥାକ୍ରମେ ସମସ୍ତଙ୍କର ଖଡ୍‌ଗ ଦେଖିଲେ। ଶେଷକୁ ଭୁବନସିଂହଙ୍କୁ ବଡ଼ ଶ୍ରଦ୍ଧାର ସହିତ ପଚ୍ଚାରିଲେ—''ଶ୍ରୀମାନ୍! ତୁମର କି ବିଚ୍ଚାର?'' ଭୁବନସିଂହ କହିଲେ—''ମୋର ଖଡ୍‌ଗଟି ସାରମୟ।'' ପ୍ରକୃତରେ ସେ 'ଦାରୁମୟ' କହିବାକୁ ଚ୍ଚାହୁଁଥିଲେ। କିନ୍ତୁ ଭଗବାନଙ୍କ ପ୍ରେରଣାରୁ ତାଙ୍କ ପାଟିରୁ 'ସାରମୟ' ବାହାରି ପଡ଼ିଲା। 'ଦାରୁ' ଅର୍ଥ କାଠ ଏବଂ 'ସାର' ଅର୍ଥ ଲୁହା। ରାଜା ତାଙ୍କୁ ଦେଖାଇବାକୁ ଅନୁରୋଧ କଲେ। ସେ ଖୋଳରୁ କାଢ଼ି ଦେଖାନ୍ତି ତ ସମସ୍ତଙ୍କ ଖଡ୍‌ଗ ଅପେକ୍ଷା ତାହା ଅଧିକ ଚକ୍ ଚକ୍ କରୁଥିଲା। ଲୋକଙ୍କୁ ଲାଗିଲା, ତାହା ଖଡ୍‌ଗ ନୁହେଁ, ସତେ ଯେପରି ଝଟକୁଥିବା ବିଜୁଳି। ସମସ୍ତଙ୍କ ଆଖି ଜଳକା ପରି ହୋଇଗଲା।''

ନିରପରାଧ ଭକ୍ତଙ୍କ ନାଆଁରେ ଅଭିଯୋଗ କରିଥିବା ଚୁଗୁଲିଆକୁ ଆଖି ଆଗରେ ଦେଖି ରାଜାଙ୍କର କ୍ରୋଧାଗ୍ନି ହୁ ହୁ ହୋଇ ଜଳି ଉଠିଲା। ଆଖି ନାଲି ପଡ଼ିଗଲା। ସେ ଘାତକମାନଙ୍କୁ ଆଦେଶ ଦେଲେ—''ଏ ଚୁଗୁଲିଆଟାକୁ ଅବିଳମ୍ବେ ଶୂଳିରେ ବସାଇ ଦିଅ। ଇଏ ଭୂଇଁକୁ ଭାର। ଏଭଳି ଲୋକ ଦେଶରେ ରହିଲେ ଆହୁରି ଅନେକ ନିରପରାଧ ଲୋକ ଦଣ୍ଡଭାଗୀ ହେବେ।'' .ଏଭଳି କଠୋର ଆଦେଶ

ଶୁଣି ଭୁବନସିଂହଙ୍କର ନବନୀତ ସମ କୋମଳ ହୃଦୟ ତରଳିଗଲା । ସେ ଭାବିଲେ, ଜୀବହିଂସାକୁ ଡରି ସେ କାଠର ଯେଉଁ ଖଣ୍ଡାଟି ରଖିଲେ, ତାହା ମଧ୍ୟ ହିଂସାରେ ସହାୟକ ହେଲା । ତାହାରି ଯୋଗୁଁ ଏ ବିଚରାକୁ ଶୂଳିରେ ବସିବାକୁ ପଡ଼ିବ । ଏଥିରୁ ଜଣାପଡୁଛି ଯେ ଖଣ୍ଡା ଅସଲି ହେଉ କି ନକଲି ହେଉ, ତାହା ନିଶ୍ଚିତ ରୂପେ ହିଂସା କରିବାକୁ ପ୍ରୋତ୍ସାହିତ କରିବ । ତେଣୁ ସେ ଆଉ କୌଣସି ପ୍ରକାର ଅସ୍ତ୍ର ଧରିବେ ନାହିଁ ବୋଲି ପ୍ରତିଜ୍ଞା କଲେ ଏବଂ ଭାଇକୁ ପ୍ରାଣସଂକଟରୁ ଉଦ୍ଧାର କରିବା ପାଇଁ ହାତଯୋଡ଼ି ରାଜାଙ୍କୁ କହିଲେ—"ମଣିମା! ଏହାକୁ ଅଯଥା ପ୍ରାଣଦଣ୍ଡ ଦିଅନ୍ତୁ ନାହିଁ । ଇଏ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଏହାର ଅଭିଯୋଗ ଅକ୍ଷରେ ଅକ୍ଷରେ ସତ୍ୟ । ଯେଉଁ ଦିନ ମୁଁ ଗର୍ଭିଣୀ ମୃଗୁଣୀକୁ ଦୁଇ ଗଡ଼ କରିଦେଇଥିଲି, ସେହିଦିନ ଠାରୁ ଖଣ୍ଡା ଫୋପାଡ଼ି ଦେଇ ମୁଁ ରେଶମ ଖୋଳାରେ କାଠ ଖଣ୍ଡାଟିଏ ରଖି ଆସୁଥିଲି । ଭଗବାନ ତାହାକୁ ଆଜି ଲୁହାରେ ପରିଣତ କରିଦେଲେ । ପ୍ରଭୁ ବଡ଼ ଦୟାମୟ! ସେ ତାଙ୍କ ସେବକର ଅପମାନ ସହି ପାରନ୍ତି ନାହିଁ । ମୁଁ ସେବକ ହେବାର ଯୋଗ୍ୟ ତ ନୁହେଁ, ତଥାପି ମୋ ପ୍ରଭୁ ଯୋଗ୍ୟ ଅଯୋଗ୍ୟ ଦେଖନ୍ତି ନାହିଁ । ତାଙ୍କର କାହା ଉପରେ କେତେବେଳେ କରୁଣା ହୋଇଯିବ କିଏ ଜାଣେ?"

ଭକ୍ତ କଦାପି ଅପରାଧୀକୁ ଦଣ୍ଡ ଦିଅନ୍ତି ନାହିଁ । ତାଙ୍କର ମନ୍ଦ ପାଉଥିବା ଲୋକର ମଧ୍ୟ ସେ ଭଲ କରନ୍ତି । ଭୁବନସିଂହଙ୍କର ଉଦାର ଭାବନା ଏବଂ ତାଙ୍କ ଉପରେ ପ୍ରଭୁଙ୍କ କୃପା ଲକ୍ଷ୍ୟ କରି ରାଜା କହିଲେ—"ଭଗବାନ ଆପଣଙ୍କ ଭଳି ଉଦାରମନା ଲୋକଙ୍କର ସମ୍ମାନ କାହିଁକି ବା ନ ରଖିବେ? ଧନ୍ୟ ଆପଣଙ୍କର କରୁଣା! ଆପଣ ନିଶ୍ଚୟ ପରମ ଭକ୍ତ । ଆଜିଠାରୁ ଆପଣ ଆଉ ଦରବାକୁ ଆସିବେ ନାହିଁ । ମୁଁ ଦୁଇ ଲକ୍ଷ ଜାଗାରେ ଚାରି ଲକ୍ଷ ଟଙ୍କା ଜମିର ପାଉତି ଲେଖି ଦେଉଛି । ଏଥର ଆପଣ ଦିବାନିଶି ପ୍ରଭୁଭକ୍ତିରେ ମଗ୍ନ ରହନ୍ତୁ । ମୁଁ କେବେ କେବେ ଆପଣଙ୍କର ଦର୍ଶନ କରିବାକୁ ଆସୁଥିବି । ଭବସାଗରରୁ ତରିବା ପାଇଁ ଆପଣଙ୍କ ଭଳି ଭକ୍ତଙ୍କ ଦର୍ଶନ ହିଁ ମୋ ପାଇଁ ନୌକା ଭଳି ଆଶ୍ରୟ ହେବ ।" ସେହିଦିନ ଠାରୁ ସବୁ କାର୍ଯ୍ୟରୁ ବିରତ ହୋଇ ଭୁବନସିଂହ ପ୍ରଭୁଭକ୍ତିରେ ଜୀବନ ଉତ୍ସର୍ଗ କରିଦେଲେ ଏବଂ ପରିଶେଷରେ ପରମ ଧାମର ଅଧିକାରୀ ହେଲେ ।



# ମାମୁଁ ପ୍ରୟାଗଦାସ

ଯେଉଁମାନେ ଦଶରଥନନ୍ଦନ ରାମଚନ୍ଦ୍ରଙ୍କୁ ଜ୍ୱାଇଁ ବା ଭିଣୋଇରୂପରେ ସ୍ନେହ କରିବାର ସୌଭାଗ୍ୟ ଲାଭ କରିଥାନ୍ତି, ସେହି ଜନକପୁର ନିବାସୀ ଜନତାଙ୍କର ଜୀବନ ଧନ୍ୟ। ସମ୍ବନ୍ଧ ଯେକୌଣସି ପ୍ରକାରର ହୋଇଥାଉ ନା କାହିଁକି, ତାହା ଯଦି ଭଗବାନଙ୍କ ସହ ସ୍ଥାପିତ ହୋଇଥାଏ, ତେବେ ତାହାର ଅନ୍ତିମ ପରିଣତି ଯେ ପ୍ରଭୁପ୍ରାପ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଜ୍ଞାତ ବା ଅଜ୍ଞାତରେ ଔଷଧ ସେବନ କଲେ ତାହା ଯେପରି ଆରୋଗ୍ୟ ପ୍ରଦାନ କରେ, ସେହିପରି ଜାଣତରେ ବା ଅଜାଣତରେ ପ୍ରଭୁଙ୍କ ସଙ୍ଗେ ସମ୍ପର୍କ ହୋଇଗଲେ ପ୍ରାଣୀ ଭବବନ୍ଧନରୁ ସବୁଦିନ ପାଇଁ ମୁକ୍ତି ପାଇଯାଏ। ତା' ହୃଦୟରେ ଯଦି ପ୍ରଭୁପ୍ରୀତିର ଛାପ ଥରେ ଅଙ୍କିତ ହୋଇଗଲା, ଶତ ଚେଷ୍ଟା କଲେ ମଧ୍ୟ ତାହା ଆଉ ଲିଭିବ ନାହିଁ। ତାହାର ଶେଷ ପରିଣାମ ହେବ ପ୍ରଭୁଙ୍କ ଦର୍ଶନ।

ପାଖାପାଖି ଦୁଇ ଶହ ବର୍ଷ ତଳର କଥା। ଜନକପୁରୀରେ ରହୁଥିଲେ ଜଣେ ସ୍ନେହମୟୀ ବୃଦ୍ଧା ବ୍ରାହ୍ମଣୀ। ସେଠାକାର ବୁଢ଼ୀ ମାଆମାନେ ଜନକନନ୍ଦିନୀ ଜାନକୀଙ୍କୁ ଝିଅ ହିସାବରେ ଭଲ ପାଇବାର ରୀତି ଦୀର୍ଘ ଦିନରୁ ପ୍ରଚଳିତ ରହିଛି। ସେମାନଙ୍କର ବାତ୍ସଲ୍ୟ ସ୍ନେହ ଜଗନ୍ମାତା ଜାନକୀଙ୍କୁ ମଧ୍ୟ ଅପରିମିତ ଆନନ୍ଦ ଦିଏ। ସେ ସେମାନଙ୍କର ଭାବନାକୁ ସହର୍ଷ ସ୍ୱୀକାର କରି ତଦନୁରୂପ ବ୍ୟବହାର ମଧ୍ୟ କରନ୍ତି। ସେହି ସମ୍ବନ୍ଧର ଜୀବନ୍ତ ମୂର୍ତ୍ତି ଥିଲେ ଜନକପୁରୀର ସେହି ବୃଦ୍ଧା ମାଆ ଜଣକ। ତାଙ୍କର ଗୋଟିଏ ବୋଲି ପୁଅ ଥିଲା। ତାହାର ନାମ ପ୍ରୟାଗଦତ୍ତ। ମାଆଙ୍କ ଭକ୍ତିର ପ୍ରଭାବ ପ୍ରୟାଗଦତ୍ତଙ୍କର ବାଳ ସୁଲଭ ସରଳ ହୃଦୟରେ ଗଭୀର ରେଖାପାତ କରିଥିଲା। ସେ ସାଙ୍ଗସାଥୀଙ୍କ ଗହଣରେ ଖେଳିବା ବେଳେ ପିଲାମାନେ ତାକୁ ବାରମ୍ବାର ଚିଡ଼ାଇ କହନ୍ତି—"ତୁ ଏକୁଟିଆ। ତୋର ଭାଇ-ଭଉଣୀ କେହି ନାହାନ୍ତି। ତତେ ଆମେ ବାଡ଼େଇଲେ ତୋ ପିଠିରେ କିଏ ପଡ଼ିବ? ଦେଖ୍, ଆମର ଭାଇ-ଭଉଣୀ କେତେ କିଏ ଅଛନ୍ତି।" ପିଲାଙ୍କ କଥାରେ ପ୍ରୟାଗଦତ୍ତ ନିଜକୁ ଏକୁଟିଆ ଅନୁଭବ କରେ। କାନ୍ଦି କାନ୍ଦି ଆସି ମାଆକୁ ପଚାରେ—"ମାଆ! ସତରେ କ'ଣ ମୋର କେହି ନାହାନ୍ତି। ମୁଁ କ'ଣ ଏକୁଟିଆ?" ମାଆ ପୁଅର ଅନ୍ତର ଚିହ୍ନି କହେ—"ମୋ ଧନରେ! କିଏ କହିଲା ତୋର କେହି ନାହାନ୍ତି ବୋଲି? ତୋର ଉଭଣୀ ଭଳି ସଂସାରରେ କାହାରି ଭାଇ-ଭଉଣୀ ନ ଥିବେ। ସେ ତା' ବାହାଘର ପରେ

ଶାଶୁଘରକୁ ଚ୍ଛଲିଯାଇଛି। ସେ ଭାରି ସ୍ନେହଶୀଳା; ତୋତେ ଭାରି ଭଲପାଏ। ସେ ଦେଖିବାକୁ ଏତେ ସୁନ୍ଦର ଯେ ଥରେ କେହି ତାକୁ ଦେଖିଦେଲେ ଜଗତକୁ ଭୁଲିଯିବ।''

ମାଆ କଥା ଶୁଣି ପ୍ରୟାଗଦତ୍ତ ଆନନ୍ଦରେ ଫୁଲିଉଠେ। ଭାବେ, ''କାଲି ଯାଇ ସାଙ୍ଗପିଲାଙ୍କୁ କହିବି ଯେ ମୋ ଭଉଣୀ ଭଳି କାହାର ଭଉଣୀ ନ ଥିବ। ଏକାଥରେ ସେମାନଙ୍କ ମୁହଁ ବନ୍ଦ ହୋଇଯିବ।'' ପୁଣି ମାଆକୁ ପଚ୍ଚରେ—''ମାଆ! ମୋ ଭଉଣୀର ନାଆଁ କ'ଣ? ତା' ଶାଶୁଘର କେଉଁଠି? ମୋ ଭିଣୋଇଙ୍କ ନାଆଁ କ'ଣ? ସେ କ'ଣ କରନ୍ତି?'' ପ୍ରୟାଗଦତ୍ତର ପ୍ରଶ୍ନ ସୃଷ୍ଟି କରେ ମାଆ-ପୁଅଙ୍କ ମଧ୍ୟରେ ସତ୍ସଙ୍ଗ ଚର୍ଚ୍ଚାର ସୁମଧୁର ପରିବେଶ। ମାଆ କହେ—''ପୁଅ ରେ! ତୋ ଭଉଣୀର ନାଆଁ ସୀତା। ଅଯୋଧ୍ୟାର ରାଜା ଦଶରଥଙ୍କ ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ର ହେଉଛନ୍ତି ତୋର ଭିଣୋଇ। ତୁ ତାଙ୍କର ଶଳା। ସେ ରାଜକୁମାର; ଦୀନଦୁଃଖୀଙ୍କୁ ପାଳନ କରିବା ତାଙ୍କର କାମ।''

ଏହିପରି ସୀତାରାମଙ୍କ ଚରିତ୍ର ଚର୍ଚ୍ଚାରେ କିଛି ଦିନ ବିତିଯିବା ପରେ ଦିନେ ଭଉଣୀ-ଭିଣୋଇଙ୍କୁ ଦେଖିବାକୁ ପ୍ରୟାଗଦତ୍ତର ମନ ବ୍ୟାକୁଳ ହେଲା। ସେ ମାଆ ଆଗରେ ଅଳି କରି କହିଲା—''ମାଆ! ମୁଁ ମୋ ଭଉଣୀ ପାଖକୁ ଯିବି। କାହିଁକି କେଜାଣି, ତୋ ମୁହଁରୁ ତା' କଥା ଶୁଣିବା ଦିନଠାରୁ ମୋର ତା' କଥା ବାରମ୍ବାର ମନେ ପଡୁଛି।'' ପୁଅର କୋମଳ ପବିତ୍ର ହୃଦୟରେ ଅଙ୍କୁରିତ ଭକ୍ତିବୀଜକୁ ଲକ୍ଷ୍ୟ କରି ମାଆର ନେତ୍ର ଅଶ୍ରୁପୂରିତ ହୋଇଗଲା। ସେ ମନେ ମନେ ଭାବିଲା—''ମିଥିଳେଶକୁମାରୀ ଜାନକୀ କ'ଣ ତା'ର ସାନଭାଇର ସ୍ୱଚ୍ଛ ଭାବନାକୁ ଗ୍ରହଣ କରିବ ନାହିଁ? ସେ କ'ଣ ଏହାକୁ ଦର୍ଶନ ନ ଦେଇ ନିରାଶ କରିଦେବ! ନା, ସେ ଦୟାମୟୀ। ନିଶ୍ଚୟ ତା' ସାନଭାଇକୁ ଆଶ୍ରୟ ଦେବ।'' ମାଆ କହିଲା—''ଧନ ରେ! ତୁ ଏବେ ଛୋଟ ପିଲା। ଏତେ ଦୂର ଯାଇ ପାରିବୁ ନାହିଁ। ଆଉ କିଛି ଦନ ଅପେକ୍ଷା କର। ଟିକିଏ ବଡ଼ ହୋଇଗଲେ ମୁଁ କାହା ସାଙ୍ଗରେ ତୋତେ ପଠାଇଦେବି।'' ମାଆ କଥା ମାନି ପ୍ରୟାଗଦତ୍ତ କିଛି ଦିନ ଅପେକ୍ଷା କରେ। କିନ୍ତୁ ଭଉଣୀକୁ ଦେଖିବାକୁ ତା' ମନ ଏତେ ବ୍ୟାକୁଳ ହେଉଥାଏ ଯେ ସେ ଦିନକୁ ଅନେକ ଥର ପଚ୍ଚରେ—''ମାଆ! ଏବେ ତ ମୁଁ ବଡ଼ ହୋଇଗଲିଣି। ତୁ ମୋତେ ବାରଣ କରୁଛୁ କାହିଁକି? ଆଉ କେବେ ଯିବାକୁ ଦେବୁ?''

ପୁଅର ଉତ୍କଣ୍ଠାକୁ ବ୍ରାହ୍ମଣୀ ଆଉ ରୋକି ପାରିଲା ନାହିଁ। ପାଖ ଗାଆଁରୁ

କେତେକ ଲୋକ ଅଯୋଧ୍ୟା ଯିବାକୁ ବାହାରିଥିଲେ। ସେ ତାଙ୍କ ସଙ୍ଗେ ପୁଅକୁ ପଠାଇଦେବାକୁ ସ୍ଥିର କଲା। କିନ୍ତୁ ପୁଅକୁ ଖାଲି ହାତରେ ଝିଅ ଘରକୁ ପଠାଇବାଟା ଅସୁନ୍ଦର ହେବ। ମାଆ ହିସାବରେ ଝିଅ ପାଇଁ ତ କିଛି ପଠାଇବା ଦରକାର। ଘରେ କିଛି ନାହିଁ। ସେ ପଡ଼ିଶା ଘରୁ କିଛି ଖୁଦ ଚାଉଳ ମାଗି ଆଣି ତହିଁରେ ଆରିସା ପିଠା ତିଆରି କରି ପୁଅର ଗାମୁଛା କାନିରେ ବାନ୍ଧିଦେଇ କହିଲା—"ବାବୁ ରେ! ଏବେ ତୁ ଯାଆ। ଏଇ ଆରିସା ପିଠା ନେଇ ଭିଣୋଇ ଓ ଭଉଣୀକୁ ଦେଇଦେବୁ। ପଚାରିଲେ କହିବୁ ମାଆ ଭଲରେ ଅଛି।"

ଯାତ୍ରୀମାନଙ୍କ ସଙ୍ଗରେ ପ୍ରୟାଗଦତ୍ତ କିଛି ଦୂର ଗଲା ସତ, କିନ୍ତୁ ସେମାନଙ୍କର ଯାତ୍ରା ତା' ମନକୁ ପାଇଲା ନାହିଁ। ସେମାନେ ବାଟରେ ସ୍ଥାନେ ସ୍ଥାନେ ବିଶ୍ରାମ କରୁଥାନ୍ତି, ହସଖୁସି କରି ଆରାମରେ ଚାଲିଥାନ୍ତି, କିନ୍ତୁ ପ୍ରୟାଗଦତ୍ତକୁ ହସଖୁସି ପାଇଁ ବେଳ କାହିଁ? ତା'ର ତ ଗୋଟିଏ ଲୟ ଲାଗିଛି ଭଉଣୀକୁ ଦେଖିବା ପାଇଁ। ସେ ସେମାନଙ୍କ ସାଙ୍ଗ ଛାଡ଼ିଦେଇ ନିଜେ ଆଗେଇ ଚାଲିଲା। ବାଟରେ ବାତ୍ସଲ୍ୟମୟୀ ନାରୀମାନେ ଛୋଟ ପିଲାଟିକୁ ଦେଖି ତାଙ୍କୁ ସ୍ନେହରେ ନାନା କଥା ପଚାରନ୍ତି ଏବଂ ଖାଇବାକୁ ଦେଇ ଅଯୋଧ୍ୟାର ମାର୍ଗ ବତାଇ ଦିଅନ୍ତି। ତା'ର ସରଳ ପବିତ୍ର ଭାବନା ସମସ୍ତଙ୍କର ମନ କିଣି ନେଉଥାଏ। ଏହିପରି ବହୁ ଦିନ ପରେ ସେ ଅଯୋଧ୍ୟାରେ ପହଞ୍ଚିଲା। ଅତ୍ୟନ୍ତ ରମଣୀୟ ସ୍ଥାନ। ପ୍ରଭୁ ରାମଚନ୍ଦ୍ରଙ୍କ ପଦଚିହ୍ନରେ ସୁଶୋଭିତ ଅଯୋଧ୍ୟା ନଗରୀ ସାକେତଧାମର ଶୋଭାକୁ ତିରସ୍କୃତ କରୁଥାଏ। ଯୁଆଡ଼େ ଆଖି ପଡ଼େ ମନ୍ଦିରମାଳା ଓ ସାଧୁସନ୍ଥଙ୍କର ଭଜନ କୁଟୀର। କିନ୍ତୁ ଏତେ ବଡ଼ ଅଯୋଧ୍ୟାରେ ସେ ତା' ଭଉଣୀ ଘର ଚିହ୍ନିବ କିପରି? ମାଆ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ସ୍ଥାନର ଠିକଣା ଦେଇ ନାହିଁ। ତାକୁ କ'ଣ ଜଣାଥିଲା ଯେ ଅଯୋଧ୍ୟା ଏତେ ବଡ଼ ବୋଲି? ସେ ସେଠାକାର ଲୋକମାନଙ୍କୁ ତା' ଭଉଣୀର ଘର ପଚାରିଲା। ତା' କଥାରେ ଲୋକେ ପରିହାସ କରି କହନ୍ତି—"ତୋ ଭଉଣୀ ଘର କେଉଁଠି ଆମେ କେମିତି ଜାଣିବୁ? ତୋ ଭଉଣୀ ନାଆଁ କ'ଣ? ଖାଲି ଭଉଣୀ ନାଆଁରେ ବି କାମ ଚଳିବ ନାହିଁ। ସେଥିପାଇଁ ତୋର ଭିଣୋଇଙ୍କ ନାମ ଦରକାର।" ସେ ଭଉଣୀ-ଭିଣୋଇଙ୍କ ନାଆଁ କହିବାରୁ ଲୋକେ କହିଲେ—"ବାପା! କାହାର ଘର ଠିକଣା ଏମିତି ପଚରା ଯାଏନି। ଭିଣୋଇଙ୍କ ବାପାଙ୍କ ନାଆଁ କହିବା କଥା। ତାଙ୍କ ନାଆଁ ହେଉଛି ଦଶରଥ। ତେଣୁ ଦଶରଥଙ୍କ ଘର ପଚାରିବା କଥା।"

ଏଭଳି କହି ଲୋକେ ପ୍ରୟାଗଦତ୍ତକୁ ଗୋଟିଏ ମନ୍ଦିର ଦେଖାଇଦେଲେ।

ସେ ଯାଇ ଦେଖେ ତ ସୀତାରାମଙ୍କ ବିଗ୍ରହ ପୂଜା ପାଉଛନ୍ତି। ଯେଉଁ ମନ୍ଦିରକୁ ଯାଏ ସେହିପରି ଦେଖେ। ତା' ମନ କିନ୍ତୁ ସେତିକିରେ ମାନେ ନାହିଁ। ସେ ଭାବେ— "ନା ନା, ଇଏ ମୋର ଭଉଣୀ-ଭିଣୋଇ ହୋଇ ନ ପାରନ୍ତି। ଇଏ ତ ମୂର୍ତ୍ତି ଭଳି ଲାଗୁଛନ୍ତି। ମାଆ କହୁଥିଲା, ମୋ ଭଉଣୀ କୁଆଡ଼େ ଭାରି ସୁନ୍ଦରୀ, ତ୍ରିଭୁବନରେ ତା' ଭଳି କେହି ନାହାନ୍ତି। ସେ କରୁଣାମୟୀ, ମୋତେ ଭାରି ସ୍ନେହ କରେ। କିନ୍ତୁ କାହିଁ ଇଏ ତ ମୋତେ ସ୍ନେହ କରୁ ନାହିଁ, କୋଳକୁ ନେଇ ସ୍ନେହରେ ମୁଣ୍ଡ ଆଉଁସି ଦେଉ ନାହିଁ। ମାଆର ଭଲମନ୍ଦ ପଚାରୁ ନାହିଁ। ତେବେ ଇଏ କି ଭଉଣୀ? ଏହିପରି ମନ ମଧ୍ୟରେ ବହୁ କଳ୍ପନା-ଜଳ୍ପନା କରି ବୁଲିଥାଏ ପ୍ରୟାଗଦତ୍ତ। ଦିନସାରା ଖୋଜି ଖୋଜି ଶେଷକୁ ସେ ଥକିଗଲା। ତା' ମନରେ ଭଉଣୀ ପ୍ରତି ବହୁ ଅଭିମାନ। ମନେ ମନେ କହୁଥାଏ—"କେମିତି ସ୍ନେହମୟୀ ମ ସିଏ? ସାନଭାଇକୁ ଟିକିଏ ଦେଖା ଦେବାର ନାହିଁ। ମୁଁ ଏତେ ହଇରାଣ ହେଉଛି, ଅଥଚ ତା'ର ଟିକିଏ ବି ଚିନ୍ତା ନାହିଁ। ଗାଆଁରେ ଏମିତିକା ଲୋକଗୁଡ଼ାକୁ ରଖିଛି ଯେ ସେମାନେ ତା'ର ଠିକଣା ମଧ୍ୟ ଠିକ୍ କରି ବତାଉ ନାହାନ୍ତି। ଦେଖା ହେଲେ ପଚାରିବି ଏମିତି କାହିଁକି କରୁଛି ସିଏ?"

ଏହିପରି ସରଳ ଓ ପବିତ୍ର ଭକ୍ତିଭାବନାରେ ଭାବିତ ହୋଇ ପ୍ରୟାଗଦତ୍ତ ଅଯୋଧ୍ୟା ନଗରୀରେ ଖୋଜି ବୁଲିଥାଏ ତା' ଭଉଣୀକୁ। ମାତ୍ର ଏ ପର୍ଯ୍ୟନ୍ତ କୌଣସି ସନ୍ଧାନ ମିଳିଲା ନାହିଁ। ସୂର୍ଯ୍ୟ ଧୀରେ ଧୀରେ ଅସ୍ତାଚଳକୁ ଗମନ କଲେ। ସଂଧ୍ୟା ଦେବୀ ସମ୍ପୂର୍ଣ୍ଣ ଅଯୋଧ୍ୟା ନଗରୀକୁ କୋଳାଗ୍ରତ କରିନେଲେ। ପୂର୍ବ ଦିଗରେ ଚନ୍ଦ୍ରମା ତାଙ୍କର କୋମଳ କିରଣସ୍ପର୍ଶରେ ପ୍ରତ୍ୟେକ ପ୍ରାଣୀ ଜୀବନରେ ଭରିଦେଲେ ନୂତନ ଆହ୍ଲାଦ। ପ୍ରତି ମନ୍ଦିରରେ ଘଣ୍ଟ, ଘଣ୍ଟା, କାହାଳୀ, ଶଙ୍ଖ, ମୃଦଙ୍ଗ, ଝାଞ୍ଜ ଆଦି ବାଜି ଉଠିଲା। ସଙ୍ଗୀତର ତାଳେ ତାଳେ ଆଳତି ଓ ନାମ-ସଂକୀର୍ତ୍ତନ ଧ୍ୱନି ମୁଖରିତ କଲା ଚତୁର୍ଦ୍ଦିଗକୁ। ଦୂର ଦୂରାନ୍ତରୁ ଭାସି ଆସି କର୍ଣ୍ଣରନ୍ଧ୍ରରେ ପ୍ରବେଶ କରୁଥିଲା 'ସୀତାରାମ, ସୀତାରାମ' କୀର୍ତ୍ତନର ସ୍ୱର ଲହରୀ। ଏସବୁରେ ପ୍ରୟାଗଦତ୍ତର ମନ ପ୍ରଫୁଲ୍ଲିତ ହେଉଥିଲେହେଁ ଭଉଣୀକୁ ନ ପାଇବାର ଚିନ୍ତା ବାରମ୍ବାର ମନକୁ ଆଘାତ ଦେଉଥାଏ। ମନ ଭିତରେ ଜାଗି ଉଠୁଥାଏ ତା'ର ମଧୁର ସ୍ମୃତି। ସେତେବେଳକୁ ସେ କ୍ଳାନ୍ତ ହୋଇ ପଡ଼ିଥାଏ। ଅନ୍ୟ ଉପାୟ ନ ପାଇ ପରିଶେଷରେ ସେ ଯାଇ ମଣିପର୍ବତ ନିକଟସ୍ଥ ସହସ୍ରଶୀର୍ଷା ମନ୍ଦିର (ଏବେ ତାହା ମସ୍‌ଜିଦ୍‌ରେ ପରିଣତ) ପାଖ ଆମ୍ବ ତୋଟାରେ ବସି ରହିଲା। ଭଉଣୀ ପ୍ରତି ତା' ମନରେ ଅନେକ ମାନ-

ଅଭିମାନ। ଭାବୁଥାଏ—"କେଉଁଆଡ଼େ ପଳାଇଲା କେଜାଣି? ଭାଇନା ବି ଦେଖା ଦେଲେ ନାହିଁ? ଏବେ କ'ଣ କରିବି? କେଉଁଠି ଯାଇ ଖୋଜିବି? ମାଆ କହିଥିଲା ସେ ଅତି ଦୟାମୟୀ। କିନ୍ତୁ ତା'ର ତ ଦେଖାଦର୍ଶନ ନାହିଁ। ଏବେ କି ଉପାୟ କରିବି? ଯାହା ହେଉ ପଛେ ଦେଖା ନ କରି କଦାପି ମୁଁ ଫେରିବି ନାହିଁ। ସେମିତି ଫେରିଗଲେ ସାଙ୍ଗ ପିଲାମାନେ ଟାହି ଟାପରା କରିବେ।" ଏହିପରି ନାନା କଥା ଭାବି ଭାବି ତା' ଆଖିରୁ ଝରଣା ଭଳି ଲୁହ ଧାର ବହି ଚାଲିଲା। ଧୀରେ ଧୀରେ ତା' ମନ ବାହ୍ୟ ଜଗତରୁ ଦିବ୍ୟ ଜଗତକୁ ଚାଲିଗଲା। ହୃଦୟରେ ଭଉଣୀ-ଭିଣୋଇଙ୍କର ସୁନ୍ଦର ମୂର୍ତ୍ତି ପ୍ରତିଭାସିତ ହୁଅନ୍ତେ ସେ ଏଠିକାର ସବୁକିଛି ଭୁଲିଯାଇ ସମାଧିସ୍ଥ ହୋଇଗଲା।

ସତରେ ଚକ୍ରବର୍ତ୍ତୀ ରାଜକୁମାରଙ୍କୁ କିଏ କେଉଁଠି ବା ଖୋଜି ପାଇବ? ତାଙ୍କ ଠିକଣା ତ ବଡ଼ ବଡ଼ ଋଷିମୁନିଙ୍କୁ ବି ଅଜଣା। ତଥାପି ଯାହାର ହୃଦୟ ତାଙ୍କୁ ଖୋଜି ବୁଲେ ସେ ତାକୁ ନିଶ୍ଚୟ ଦେଖା ଦିଅନ୍ତି। ସେ ସବୁଠି ବିରାଜମାନ। ତ୍ରିଭୁବନରେ ଏଭଳି କୌଣସି ସ୍ଥାନ ନାହିଁ, ଯେଉଁଠି ସେ ନ ଥିବେ। କିନ୍ତୁ ତାଙ୍କୁ ଖୋଜିବା ପାଇଁ ଭକ୍ତ ହୃଦୟର ଅନାବିଳ ପ୍ରୀତି ଦରକାର। ପ୍ରୟାଗଦତ୍ତର ପବିତ୍ର ପ୍ରୀତି ତାଙ୍କୁ ଅତିଷ୍ଠ କରିଦେଲା। ଭକ୍ତ ଯେତେବେଳେ ତାଙ୍କ ବିନା ରହି ପାରିଲା ନାହିଁ, ସେ ମଧ୍ୟ ତାକୁ ଛାଡ଼ି ରହିବାକୁ ଅସମର୍ଥ ହୋଇଗଲେ। ଜାନକୀଙ୍କୁ ସଙ୍ଗରେ ଘେନି ଏକ ଧବଳ ହସ୍ତୀ ପୃଷ୍ଠରେ ଆରୂଢ଼ ହୋଇ ଆସି ପହଞ୍ଚିଲେ ପ୍ରୟାଗଦତ୍ତ ସମ୍ମୁଖରେ।

ପ୍ରୟାଗଦତ୍ତ ବାହ୍ୟଜ୍ଞାନ ଶୂନ୍ୟ ହୋଇ ଅନ୍ତଶ୍ଚେତନାର ଉଚ୍ଚତମ ଶିଖରରେ ପହଞ୍ଚି ସାରିଛି। ଭାବସମାଧିରେ ମଗ୍ନ ହୋଇ ସେ ମନ ମଧ୍ୟରେ ସ୍ମରଣ କରୁଛି ସୀତାରାମଙ୍କର ତ୍ରିଭୁବନ ମୋହିନୀ ଦିବ୍ୟ ମୂର୍ତ୍ତିକୁ। ହଠାତ୍ ଦୃଶ୍ୟ ବଦଳିଗଲା। ତା'ର ଦରଖୋଲା ଆଖି ଦୁଇଟି ଦେଖିବାକୁ ପାଇଲା ଅନତି ଦୂରରୁ ଗୋଟିଏ ଶ୍ୱେତ ହସ୍ତୀ ତା' ଆଡ଼କୁ ଆଗେଇ ଆସୁଛି। ଧ୍ୟାନରୁ ଜାଗ୍ରତ ହୋଇ ଚାହିଁବାରୁ ଦେଖିଲା, ହାତୀ ପିଠିରେ ବିଛା ହୋଇଛି ମଣିମୁକ୍ତା ଜଟିତ ଆସନ ଏବଂ ତା' ଉପରେ ବିରାଜମାନ ହୋଇଛନ୍ତି ତା'ର ସେଇ ଭିଣୋଇ ଓ ଭଉଣୀ। ପ୍ରୟାଗଦତ୍ତ ତାଙ୍କୁ ନିରେଖି ଚାହିଁବାକୁ ଚେଷ୍ଟା କରୁଥାଏ, କିନ୍ତୁ କୋଟି ସୂର୍ଯ୍ୟ ଜିଣି ତାଙ୍କ ଶ୍ରୀଅଙ୍ଗର ଉଜ୍ଜ୍ୱଳ କାନ୍ତିକୁ ସହ୍ୟ କରିବାକୁ ତା' ଆଖିରେ ଶକ୍ତି ନ ଥାଏ। ସେ ଭାବି ପାରୁ ନ ଥାଏ ଯେ ଯାହାଙ୍କୁ ସେ ହୃଦୟରେ ବସାଇଥିଲା, ସେମାନେ ହାତୀ

ପିଠିରେ ବସିଗଲେ କେମିତି? ତା' ଭିତରୁ ଫୁଟି ଉଠୁଥାଏ ଆନନ୍ଦ ଲହରୀ। ସେ ନିଜକୁ ସମ୍ଭାଳି ପାରୁ ନ ଥାଏ। ବୁଝି ପାରୁ ନ ଥାଏ, ସେ ପ୍ରକୃତରେ ସ୍ୱପ୍ନ ଦେଖୁଛି ନା ଜାଗ୍ରତ ଅଛି?

ଏଭଳି ଚିନ୍ତା କରୁ କରୁ ହାତୀଟି ଧୀରେ ଧୀରେ ଆଗେଇ ଆସି ତା' ନିକଟରେ ପହଞ୍ଚିଗଲା। ତା' ପିଠିରୁ ଓହ୍ଲାଇ ଆସିଲେ ପରମ ତେଜୋବନ୍ତ ଦିବ୍ୟ ଦମ୍ପତି। ପ୍ରୟାଗଦତ୍ତକୁ ଆଉ କିଛି କହିବା ଶୁଣିବାକୁ ପଡ଼ିଲା ନାହିଁ। ତାକୁ ଲାଗିଲା ଯେପରି ସେ ଦୁହେଁ ତା'ର ଚିର ପରିଚିତ। ସେ ଅଧୀର ହୋଇ ଭଉଣୀକୁ ଜାବୁଡ଼ି ଧରିଲା। ତା'ର ପଣତକାନିରେ ମୁହଁ ଲୁଚାଇ କଇଁ କଇଁ ହୋଇ କାନ୍ଦି ପକାଇଲା। ଜଗନ୍ମାତା ସୀତା ପ୍ରୟାଗଦତ୍ତକୁ ବହୁ ସମୟ କୋଳରେ ଆଉଜେଇ ଧରି ତା' ଆଖିରୁ ବହି ଚାଲିଥିବା ଲୋତକ ଧାର ପୋଛିଦେଲେ। କୋମଳ କରରେ ତା'ର ମୁଣ୍ଡ ସାଉଁଳେଇ ଦେଇ କହିଲେ—"ପ୍ରୟାଗ, ମୋର ଗେହ୍ଲା ଭାଇ! ତୋତେ କୋଳେଇ ନେବାକୁ ମୁଁ କେତେ ଦିନରୁ ଚାହିଁ ବସିଥିଲି। ତୁ ଏତେ ଦିନ ମୋତେ ଛାଡ଼ି କେଉଁଠି ଥିଲୁ?" ସେ ମାନ କରି ସୀତାଙ୍କ ମୁଖକୁ ନ ଚାହିଁ ମୁହଁ ଫୁଲାଇ କହିଲା—"ତୁ ମିଛ କହୁଛୁ। ତୁ ମତେ ଭଲ ପାଉଥିଲେ ସକାଳ ପହରୁ ଏମିତି ଏ ଦୁଆର ସେ ଦୁଆର ବୁଲେଇ ନ ଥାନ୍ତୁ। ଏମିତି ଲୋକଗୁଡ଼ାଙ୍କୁ ନଗରରେ ରହିଛୁ ଯେ ସେମାନେ ତୋ' ଘରର ଠିକଣା ମଧ୍ୟ କହୁ ନାହାନ୍ତି। ମୁଁ ଅଖିଆଅପିଆ ବୁଲି ବୁଲି କେତେ ହଇରାଣ ହେଲିଣି?" ସାନଭାଇର ଗାଲ ଆଉଁସି ଦେଇ ଜଗନ୍ମାତା ସୀତା କୋମଳ ସ୍ୱରରେ ସାନ୍ତ୍ୱନା ଦେଇ କହିଲେ—"ନା, ପ୍ରୟାଗ। ଏଥିରେ ଲୋକମାନଙ୍କର କିଛି ଦୋଷ ନାହିଁ। ସେମାନେ କ'ଣ କରିବେ? ସେମାନଙ୍କୁ ମଧ୍ୟ ଭଲଭାବେ ଆମ ଘରର ଠିକଣା ଜଣା ନାହିଁ। ହଉ ହେଲା, ଏବେ ତ କାନ୍ଦ ବନ୍ଦ କର। ଆଉ କାନ୍ଦୁଛୁ କାହିଁକି? ଆମେ ପରା ମିଳିଗଲୁ। ଏଇ ଦେଖିଲୁ ତୋ ପାଖରେ କିଏ ଠିଆ ହୋଇଛନ୍ତି। ଇଏ ହେଉଛନ୍ତି ତୋର ଭିଣୋଇ। ଯାଆ, ତାଙ୍କୁ ପ୍ରଣାମ କରି ତାଙ୍କଠାରୁ ଆଶୀର୍ବାଦ ନେ।"

ପ୍ରୟାଗଦତ୍ତ ଯାଇ ରାମଚନ୍ଦ୍ରଙ୍କ ପାଦତଳେ ଲୋଟିଗଲା। ଭିଣୋଇଙ୍କ ପାଦସ୍ପର୍ଶରେ ତା'ର ହୃଦୟ ନଦୀରେ ଭକ୍ତିର ବନ୍ୟା ଆସିଗଲା, ରୋମ ଟାଙ୍କୁରି ଉଠିଲା। ସେ କିଛି କହିବାକୁ ଚାହୁଁଥାଏ, ହେଲେ ଭାବନାର ଆବେଗରେ ତା'ର ବାଣୀ ନିର୍ବାକ୍ ହୋଇଯାଉଥାଏ। ସେ ମନେ ମନେ ଚିନ୍ତା କରୁଥାଏ—"ମୋ ମାଆ ଠିକ୍ କହୁଥିଲା। ମୋ ଭିଣେଇ-ଉଭଣୀ ପରି ଜଗତରେ କେହି ନ ଥିବେ। ଏଥର

ମୋତେ କିଏ ଚିଡ଼େଇଲେ ତାକୁ ଆଣି ଦେଖାଇଦେବି।''

ରାମଚନ୍ଦ୍ର ପ୍ରୟାଗଦତ୍ତର ଅନାବିଳ ଭାବନାକୁ ସ୍ୱୀକାର କରି ତାକୁ ସ୍ନେହରେ କୋଳକୁ ଉଠାଇ ନେଲେ। ପ୍ରୟାଗଦତ୍ତର ଦୃଷ୍ଟି ପଡ଼ିଲା ପ୍ରଭୁଙ୍କ ମନମୋହନ ମୁଖମଣ୍ଡଳରେ, ସେ ଅପଲକ ନୟନରେ ରାମଚନ୍ଦ୍ରଙ୍କ ବଦନ ଚନ୍ଦ୍ରମାରୁ ଝରି ଆସୁଥିବା ମନ୍ଦ ହାସ୍ୟକୁ ପିଇଯିବାକୁ ଚେଷ୍ଟା କରୁଥାଏ। ପ୍ରତିଟି ଇନ୍ଦ୍ରିୟ ଦ୍ୱାରା ସେ ତାଙ୍କୁ ନିଜ ଭିତରେ ସମାବିଷ୍ଟ କରି ଦେବାକୁ ଚାହୁଁଥାଏ। କିନ୍ତୁ ଇନ୍ଦ୍ରିୟର ଏତେ ଶକ୍ତି କାହିଁ ଯେ ସେ ଚରାଚର ଜଗତର ସୌନ୍ଦର୍ଯ୍ୟ ପୁଞ୍ଜକୁ ନିଜ ମଧ୍ୟରେ ସମାହିତ କରି ଦେଇ ପାରିବ? ତା'ର ଭକ୍ତି ଭାବ ଦେଖି ପ୍ରଭୁଙ୍କର ନୀଳକମଳ ସଦୃଶ ନେତ୍ର ଦୁଇଟି ସଜଳ ହୋଇ ଉଠିଲା। ସେ ଅଭୟ ହସ୍ତରେ ତା'ର ମସ୍ତକ ଆଉଁସି ଦେଇ ଅସଜଡ଼ା ବାଳଗୁଡ଼ିକୁ ସଜାଡ଼ି ଦେଲେ। ତା'ର ଗଣ୍ଡସ୍ଥଳକୁ ସିକ୍ତ କରି ବୋହି ଚାଲିଥିବା ଲୋତକ ଧାର ପୋଛିଦେଇ ପଚାରିଲେ—''ପ୍ରୟାଗ! ଭଲରେ ଆସିଲ ତ? ବାଟରେ କେଉଁଠି କିଛି ଅସୁବିଧା ତ ହୋଇ ନାହିଁ? ଘରେ ମାଆ କେମିତି ଅଛନ୍ତି? କେତେବେଳେ ସେ ଆମ କଥା ମନେ ପକାନ୍ତି କି ନାହିଁ? ତୁମ ହାତରେ ସେ ଆମ ପାଇଁ କ'ଣ ପଠାଇଛନ୍ତି?''

ପ୍ରଭୁଙ୍କର କୋମଳ ବାଣୀରେ ପ୍ରୟାଗଦତ୍ତ ସବୁ ବିୟୋଗ ବେଦନା ଭୁଲିଗଲା। ତାର ହୃଦୟ ଆହୁରି ତରଳିଗଲା। ସେ ମୁଣ୍ଡ ନୁଆଇଁ ଅଙ୍ଗୁଳି ନଖରେ ଭୂଇଁ ଉଖାରୁ ଉଖାରୁ କହିଲା—''ଆମେ ଗରିବ ଲୋକ। ତୁମେ ତ ଅଯୋଧ୍ୟାର ରାଜା। ଆମ ପାଖରେ ତୁମକୁ ଦେବା ଭଳି ଜିନିଷ କ'ଣ ବା ଅଛି ଯେ? ମାଆ ତୁମ ପାଇଁ ଖାଲି ଏଇ ଆରିସା ପିଠା ପୁଡ଼ାଟିଏ ପଠାଇଛି।'' ଏତିକି କହି ସେ ଭିଣୋଇଙ୍କ ହାତକୁ ପିଠା ବନ୍ଧା ହୋଇଥିବା ଗାମୁଛାଟିକୁ ବଢ଼ାଇଦେଲା। ଭଗବାନ ତ ଭାବଗ୍ରାହୀ। କିଏ କ'ଣ ଦେଇଛି ନ ଦେଖି ସେ ଦେଖନ୍ତି କେଉଁ ଭାବରେ ଦେଇଛି। ସେ ଅତି ସ୍ନେହରେ ପ୍ରୟାଗଦତ୍ତ ହାତରୁ ଆରିସା ପିଠା ନେଇ ନିଜେ ଖାଇଲେ ଏବଂ ତା' ପରେ ସୀତାଙ୍କ ହାତକୁ ବଢ଼ାଇ ଦେଲେ। ଜଗନ୍ମାତା ସୀତା ଭାଇକୁ ଭୋକିଲା ଜାଣି ତାକୁ ଖୁଆଇବା ସହିତ ନିଜେ ମଧ୍ୟ ଖାଇଲେ। ବାସ୍ତବରେ ଭକ୍ତର ଆନ୍ତରିକ ସ୍ନେହରେ ଅନୁରଞ୍ଜିତ ଉପହାର ପ୍ରଭୁଙ୍କୁ କେତେ ଯେ ପ୍ରିୟ ଲାଗେ, ତାହା କେବଳ ସେ ହିଁ ଜାଣନ୍ତି। ତାହାର ବର୍ଣ୍ଣନା କରିବାକୁ ଆଉ କାହାର ବା ଶକ୍ତି ଅଛି?

ଭାଇ ଭଉଣୀଙ୍କ ମଧ୍ୟରେ ଏଭଳି ବହୁ ସମୟ ଧରି ବର୍ତ୍ତାଳାପ ଚାଲିବା

ପରେ ସୀତା କହିଲେ—"ପ୍ରୟାଗ, ମୋର ପ୍ରିୟ ଭାଇ! ଏବେ ତୁ ମାଆ ପାଖକୁ ଫେରିଯା। ସେ ଘରେ ତୋର ବାଟ ଗ୍ୱହିଁ ବସିଥିବ। ଯାଇ କହିବୁ ଆମେ ସମସ୍ତେ ଭଲରେ ଅଛୁ। ଆଉ କେତେବେଳେ ମନ ହେଲେ ଏମିତି ଗ୍ୱଲି ଆସୁଥିବୁ। କେବେ କିଛି ଅସୁବିଧା ହେଲେ ଚିନ୍ତା ନ କରି ଆମକୁ ମନେ ପକାଇବୁ।"

ଭିଣୋଇ-ଭଉଣୀଙ୍କୁ ଛାଡ଼ିବାକୁ ପ୍ରୟାଗର ମନ ହେଉ ନ ଥାଏ। ତଥାପି ତାଙ୍କ କଥା ମାନିବାକୁ ସେ ବାଧ୍ୟ। ଫେରିବା ସମୟରେ ସେ ତା' ଆଖିର ଲୁହକୁ ଅଟକାଇ ପାରିଲା ନାହିଁ। କଇଁ କଇଁ ହୋଇ କାନ୍ଦି ପକାଇ ବିଦାୟ ମାଗି କହିଲା—"ତୁମ କଥା ମାନି ମୁଁ ଫେରି ଯାଉଛି ସତ, କିନ୍ତୁ ମୋତେ କେବେ ଭୁଲିଯିବ ନାହିଁ। କେତେବେଳେ ଆସିଲେ ମୋତେ ଏମିତି ଦେଖା ଦେଉଥିବ।" ସୀତାରାମ ତା' ମସ୍ତକରେ ଅଭୟ କରକମଳ ଅର୍ପଣ କରି ହାତୀ ପୃଷ୍ଠରେ ବିରାଜମାନ ହେଲେ। ତା'ପରେ କିଛି ସମୟ ମଧ୍ୟରେ ସେ ଦେଖୁ ଦେଖୁ ହାତୀଟି ବଣରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା।

ମିଳନର ଏହି ଆନନ୍ଦସମାଧିରେ ରାତି ପାହିଗଲା। ନବ ଉଦିତ ସୂର୍ଯ୍ୟଙ୍କ ସୁନେଲି କିରଣରେ ଅଯୋଧ୍ୟା ନଗର ଉଦ୍ଭାସିତ ହୋଇ ଉଠିଲା, କିନ୍ତୁ ପ୍ରୟାଗଦତ୍ତର ଭାବସମାଧି ଭଙ୍ଗ ହେଲା ନାହିଁ। ସୀତାରାମଙ୍କ ବିୟୋଗ ହୋଇଯିବା ପରଠୁ ସେ ସେଇଠି ମୂର୍ଚ୍ଛିତ ପରି ହୋଇ ଢଳି ପଡ଼ିଥିଲା। ତା' ମୁଖ ମଣ୍ଡଳରେ ଫୁଟି ଉଠୁଥାଏ ଭଗବଦ୍ଦର୍ଶନର ଦିବ୍ୟ ଆଭା। ତାକୁ ଦେଖି ଲାଗୁଥାଏ ସତେ ଯେପରି କୌଣସି ଦେବକୁମାର ସ୍ୱର୍ଗଲୋକରୁ ଅବତରିତ ହୋଇ ରାମଚନ୍ଦ୍ରଙ୍କ ଦର୍ଶନ ପାଇଁ ପ୍ରତୀକ୍ଷା କରିଛି।

ସେହି ସମୟରେ ପରମ ସନ୍ଥ ଶ୍ରୀତ୍ରିଲୋଚନ ଦାସ ପରମ ପାବନୀ ସରଯୁ ନଦୀରେ ସ୍ନାନ ସାରି ଫେରିବା ବେଳେ ଅଗ୍ୱନକ ତାଙ୍କର ଦୃଷ୍ଟି ପଡ଼ିଲା ପ୍ରୟାଗଦତ୍ତ ଉପରେ। ସେ ତା'ର ଅର୍ଦ୍ଧ ଚୈତନ୍ୟ ଅବସ୍ଥା ଓ ମୁଖଜ୍ୟୋତିରୁ ଜାଣିଗଲେ ଯେ ନିଶ୍ଚୟ ଏ ଜଣେ ଭକ୍ତ ବାଳକ। ଅତି ସ୍ନେହରେ ସେ ତାକୁ କୋଳ କରି ଆଶ୍ରମକୁ ନେଇ ଆସିଲେ। କିଛି ସମୟ ପରେ ପ୍ରୟାଗଦତ୍ତର ଚେତନା ଫେରିବା କ୍ଷଣି ସେ ଚିତ୍କାର କରି କହି ଉଠିଲା—"ମୋତେ ଏକାକୀ ଛାଡ଼ି ମୋ ଭଉଣୀ କୁଆଡ଼େ ଗ୍ୱଲିଗଲା? ଆଖିପିଛୁଳାକେ ମୋ ଭାଇନା କୁଆଡ଼େ ଉଭେଇ ଗଲେ? କି ସୁନ୍ଦର ତାଙ୍କର ରୂପ! ତାଙ୍କ ବିନା ମୁଁ କେମିତି ପ୍ରାଣ ଧରି ରହିବି?" ସନ୍ଥ ତ୍ରିଲୋଚନ ଦାସ ବୁଝିଗଲେ ତା'ର ଭାବନାକୁ। ସେ ଗୋଟି ଗୋଟି କରି ମୂଳରୁ ଶେଷ

ପର୍ଯ୍ୟନ୍ତ ସବୁ କଥା ପଗ୍ଚରି ବୁଝିଲେ ଏବଂ କିଛି ଦିନ ପାଇଁ ତାଙ୍କ ଆଶ୍ରମରେ ରହିବାକୁ ବାଧ୍ୟ କଲେ।

ପ୍ରୟାଗଦତ୍ତ ସେଦିନ ସନ୍ଥ ତ୍ରିଲୋଚନଙ୍କ ଆଶ୍ରମରେ ରହିଲେ। ଭାଇ ଏତେ ଦୂରରୁ ଆସିଛି, ତେଣୁ ତା'ର ଯଥୋଚିତ ସତ୍କାର ହେବା ଦରକାର। ସେ ପୁଣି ଭୋକିଲା ଥିଲା। ସେବା-ସତ୍କାର ନ ପାଇ ଭିଣୋଇଙ୍କ ଘରୁ ଶଳା ଫେରିଯିବା ଅଶୋଭନୀୟ ହେବ। ସେ ପୁଣି ସାଧାରଣ ଲୋକର ଶଳା ନୁହେଁ। ରାଜାଧିରାଜ ଦଶରଥ ନନ୍ଦନ ପ୍ରଭୁ ରାମଚନ୍ଦ୍ର ତାକୁ ଶଳା ରୂପରେ ଅଙ୍ଗୀକାର କରି ସାରିଛନ୍ତି! ତେଣୁ ଜଗନ୍ମାତା ଜାନକୀ ଭାଇର ସେବା ସତ୍କାରର ବ୍ୟବସ୍ଥା କଲେ।

ସେତେବେଳକୁ ଘଡ଼ିଏ ରାତି ବିତି ସାରିଥାଏ। ଦିବ୍ୟ ଆଭୂଷଣରେ ମଣ୍ଡିତ ଜାନକୀଙ୍କର ଦୁଇ ସହଚରୀ ମଣି ଜଟିତ ସୁବର୍ଣ୍ଣ ଥାଳିରେ ବିବିଧ ଅନ୍ନ-ବ୍ୟଞ୍ଜନ ଧରି ଯାଇ ପହଞ୍ଚିଲେ ସେହି ଆଶ୍ରମରେ। ମହାତ୍ମାଙ୍କ ହାତକୁ ଥାଳି ଦୁଇଟି ବଢ଼ାଇ ଦେଇ କହିଲେ—"ବାବା! ଆଜି ଆମ ଠାକୁରଙ୍କର ଉତ୍ସବ ହୋଇଥିଲା। ଆମ ସଖୀଙ୍କର ଇଚ୍ଛା ହେଲା ଆଶ୍ରମରେ ସାଧୁଜନଙ୍କୁ ପ୍ରସାଦ ଦେବା ପାଇଁ। ସେ ସମସ୍ତଙ୍କ ପାଇଁ ଆମ ହାତରେ ପ୍ରସାଦ ପଠାଇଛନ୍ତି। ଏଇ ପ୍ରସାଦ ରଖନ୍ତୁ। ଚିନ୍ତା କରିବେ ନାହିଁ, କିଛି ସମୟ ପରେ ଆସି ଆମେ ଥାଳି ନେଇଯିବୁ।"

ପ୍ରସାଦ ଦେଇ ସେମାନେ ଫେରିଗଲେ। ଥାଳି ଉପରେ ପଦ୍ମପତ୍ର ଢଙ୍କା ହୋଇଥିଲା। ପତ୍ର କାଢ଼ିଦେବା କ୍ଷଣି ମହାତ୍ମା ଜଣକ ବିବିଧ ଅନ୍ନ-ବ୍ୟଞ୍ଜନରେ ପରିପୂରିତ ସୁବର୍ଣ୍ଣ ଥାଳି ଦେଖି ଆଚମ୍ବିତ ହୋଇଗଲେ। ସେ ବୁଝିଗଲେ ଯେ ଭାଇର ଅଭ୍ୟର୍ଥନା ପାଇଁ ମାତା ଜାନକୀ ଏ ବ୍ୟବସ୍ଥା କରିଛନ୍ତି। ତାଙ୍କ ହୃଦୟରେ ପରମ ଆନନ୍ଦର ତରଙ୍ଗ ଖେଳିଗଲା। ସନ୍ଥଜନଙ୍କ ପଙ୍ଗତରେ ପ୍ରସାଦ ବିତରଣ କରାଗଲା। ଆଜିର ପ୍ରସାଦରେ ସନ୍ଥଜନ ଅନୁଭବ କଲେ ଅଲୌକିକ ସ୍ୱାଦ। ସମସ୍ତେ ପ୍ରୟାଗଦତ୍ତକୁ ପ୍ରଶଂସା କରି କହିଲେ—"ଧନ୍ୟ ପ୍ରୟାଗ! ଧନ୍ୟ ତୁମ ଭକ୍ତିର ମହିମା! ତୁମ ଯୋଗୁଁ ଆଜି ଆମେ ମଧ୍ୟ ମାଆ ଜାନକୀଙ୍କ ହାତ ରନ୍ଧା ପ୍ରସାଦ ପାଇ ପାରିଲୁ।"

ପଙ୍ଗତ ସରିଲା। ସାଧୁସନ୍ଥ ହାତ ଧୋଇ ସାରି ଠାକୁରଙ୍କୁ ସ୍ମରଣ କରି ବିଶ୍ରାମ କଲେ। ସନ୍ଥ ତ୍ରିଲୋଚନ ଦାସ ଚାହିଁ ବସିଥାନ୍ତି ଦୁଇ ସହଚରୀଙ୍କ ଫେରିବା ବାଟକୁ। ଦୁହେଁ କହିଥିଲେ କିଛି ସମୟ ପରେ ଆସି ଥାଳି ନେଇଯିବେ ବୋଲି। କିନ୍ତୁ ଏପର୍ଯ୍ୟନ୍ତ କାହାରି ଦେଖା ନାହିଁ। ଏତେ ମୂଲ୍ୟବାନ୍ ହୀରା ଜଟିତ ସୁବର୍ଣ୍ଣ

ଥାଳି ସେ କେଉଁଠି ସାଇତି ରଖିବେ? ଏମିତି ଭାଳି ଭାଳି ତାଙ୍କର ରାତି ପାହିଗଲା ।

ପରଦିନ ପ୍ରଭାତରେ ପ୍ରୟାଗଦତ୍ତ ଜନକପୁରୀ ଫେରି ଯିବାକୁ ପ୍ରସ୍ତୁତ ହେବା ଦେଖି ସନ୍ଥ ଜଣକ ତାଙ୍କ ଗାମୁଛାରେ ଥାଳି ଦୁଇଟି ବାନ୍ଧିଦେଲେ । ପ୍ରୟାଗ ପଚ୍ଚାରିଲା—''ଏ କ'ଣ? ଗାମୁଛାଟା ଏତେ ଭାରି ଲାଗୁଛି କାହିଁକି?'' ସନ୍ଥ କହିଲେ—''ତୁମ ଭଉଣୀ ତୁମ ପାଇଁ ଗତକାଲି ଯେଉଁ ଥାଳିରେ ପ୍ରସାଦ ପଠାଇଥିଲେ ତାହା ନେବାକୁ କେହି ଆସିଲେ ନାହିଁ । ତେଣୁ ଏହାକୁ ତୁମେ ତୁମ ଘରକୁ ନେଇଯାଅ ।'' ପ୍ରୟାଦଦତ୍ତ ଥାଳି ଦୁଇଟିକୁ ତଳେ ରଖିଦେଇ କହିଲା—''ବାବା! ତୁମେ ଏ କି ଅନୀତି କଥା କହୁଛ? ଭାଇ ନେବ ଭଉଣୀ ଘରୁ ସୁନାଥାଳି! ନା, ନା, ଥାଳି ଦେଖିଲା ମାତ୍ରେ ମାଆ ମୋତେ ଘରୁ ତଡ଼ିଦେବ । କହିବ—''ହଇରେ କୁଳାଙ୍ଗାର! ମାଆ ଝିଅକୁ ଦେବା କଥା କି ତା' ଘରୁ ଆଣିବା କଥା?'' ଯେତେ ବାଧ୍ୟ କଲେ ମଧ୍ୟ ସେ ନେବାକୁ ଆଦୌ ରାଜି ହେଲା ନାହିଁ । ବାବା ମଧ୍ୟ ପ୍ରକୃତ ବୈରାଗ୍ୟବାନ୍ ଥିଲେ । ତାଙ୍କର ସୁନାଥାଳି ବା କ'ଣ ହେବ? ସେ ତାହାକୁ ଗଣେଶକୁଣ୍ଡରେ ନେଇ ବିସର୍ଜନ କରିଦେଲେ ।

ପ୍ରୟାଗଦତ୍ତ ଯାଇ ଘରେ ପହଞ୍ଚିଲା । ମାଆଙ୍କ ପାଦତଳେ ମୁଣ୍ଡିଆ ମାରି ସେ ମୂଳରୁ ଶେଷ ପର୍ଯ୍ୟନ୍ତ ସବୁ ଘଟଣା ବର୍ଣ୍ଣନା କରି ଚ୍ଛଲିଲା । କହିଲା—''ମାଆ! ପ୍ରଥମେ ତ ମୁଁ ଅଯୋଧ୍ୟାରେ ଭାରି ହଇରାଣ ହେଲି । କେହି ତୋ ଝିଅର ଘର ବତାଇଲେ ନାହିଁ । ଖୋଜି ଖୋଜି ମୁଁ ଥକିଗଲି । ଶେଷକୁ ରାତିରେ ମଣିପର୍ବତ ପାଖରେ ତା' ସଙ୍ଗେ ଭେଟ ହେଲା । କି ସୁନ୍ଦର ରୂପ ତା'ର? ମୋତେ ଦେଖିବା କ୍ଷଣି ସେ କୋଳ କରିନେଲା । ମୁଁ ତାକୁ ଦେଖି କାନ୍ଦି ପକାଇଲି । ପଣତକାନିରେ ମୋ ଅଖିରୁ ଲୁହ ପୋଛି ଦେଇ ସେ ମୋତେ ଖୁବ୍ ଗେଲ କଲା । ସେ ଏକୁଟିଆ ନୁହେଁ, ତା' ସଙ୍ଗରେ ଭାଇନା ମଧ୍ୟ ଥିଲେ । ମୁଁ ତାଙ୍କ ପାତତଳେ ଲମ୍ବ ହୋଇ ପଡ଼ିଗଲି । ସେ ମୋତେ ଛାତି ଉପରକୁ ଆଉଜେଇ ନେଇ ତୋ କଥା ପଚ୍ଚାରିଲେ । ମୁଁ ତାଙ୍କ ହାତକୁ ଆରିସା ପିଠା ବଢ଼ାଇଦେଲି । ସେ ଖାଇବା ପରେ ଆମେ ଭାଇ-ଭଉଣୀ ଖାଇଲୁ । ପୁଣି କିଛି ସମୟ ପରେ ହାତୀ ପିଠିରେ ବସି ଦୁଇଜଣ ଯାକ କୁଆଡ଼େ ଉଭେଇଗଲେ ଜାଣି ପାରିଲି ନାହିଁ ।''

ଏହିଭଳି ମାଆ-ପୁଅଙ୍କ ଭିତରେ ପ୍ରତିଦିନ ସୀତାରାମଙ୍କ ମଧୁର ରୂପଗୁଣର ଆଲୋଚନା ଚ୍ଛଲିଲା । ଏହି ଘଟଣାର ଏକ ବର୍ଷ ପରେ ବ୍ରାହ୍ମଣୀ ପରମ ଧାମକୁ ଚ୍ଛଲିଗଲେ । ଏବେ ପ୍ରୟାଗଦତ୍ତ ଏକାକୀ । ପାଖ ଗାଁଆର ଜଣେ ବ୍ରାହ୍ମଣ ତାଙ୍କର

ସୁଲକ୍ଷଣୀ କନ୍ୟା ସଙ୍ଗେ ପ୍ରୟାଗଦତ୍ତଙ୍କ ବିବାହ ପ୍ରସ୍ତାବ ରଖିଲେ। ତାଙ୍କର କୌଣସି ପୁତ୍ର ସନ୍ତାନ ନ ଥିବାରୁ ସେ ତାଙ୍କୁ ଘରଜୁଆଇଁ କରି ରଖିବାକୁ ଚାହୁଁଥିଲେ। ପ୍ରୟାଗଦତ୍ତ କିନ୍ତୁ ପ୍ରସ୍ତାବକୁ ଅସ୍ୱୀକାର କରିଦେଲେ। ଧନ-ସମ୍ପତ୍ତିରେ ତାଙ୍କର ଆଦୌ ଲାଳସା ନ ଥିଲା। ସଂସାରର କୌଣସି ବିନାଶଶୀଳ ଜିନିଷକୁ ଆଖି ଟେକି ଚାହିଁବାକୁ ତାଙ୍କର ମନ ବଳୁ ନ ଥିଲା। ଏହା ତାଙ୍କ ଭଳି ଭକ୍ତ ପାଇଁ କିଛି ବଡ଼ କଥା ନୁହେଁ। ଯାହାର ହୃଦୟରେ ସୌନ୍ଦର୍ଯ୍ୟ ନିଧାନ ସୀତାରାମ ଥରେ ବିରାଜମାନ ହୋଇ ସାରିଛନ୍ତି, ତା' ପାଇଁ ଛାର ଧନ-ସମ୍ପତ୍ତି କି ଅବା ଜିନିଷ?

ଜନକପୁରୀରେ ଆଉ ପ୍ରୟାଗଦତ୍ତଙ୍କର ମନ ଲାଗିଲା ନାହିଁ। ସେ ଭାବିଲେ, ଏଠି ରହିଲେ ଲୋକେ ଆହୁରି କେତେ କ'ଣ ପ୍ରସ୍ତାବ ରଖି ପାରନ୍ତି। ତେଣୁ ଏ ସ୍ଥାନ ଛାଡ଼ି ଚାଲିଯିବା ଭଲ ହେବ। ସେ ଗୃହ ତ୍ୟାଗ କରି ଅଯୋଧ୍ୟା ଅଭିମୁଖେ ବାହାରି ପଡ଼ିଲେ। ତାଙ୍କ ମନ ତଳେ ଲୁଚି ରହିଥିଲା ସୀତାରାମଙ୍କ ଦର୍ଶନର ତୀବ୍ର ଅଭିଳାଷ। ଅଯୋଧ୍ୟାର ପବିତ୍ର ଭୂମିରେ ପାଦ ରଖିବା କ୍ଷଣି ତାଙ୍କର ଅବର୍ଣ୍ଣନୀୟ ସ୍ଥିତି ହୋଇଗଲା। ସେ ଦେହଦଶା ଭୁଲି ଯାଇ ପ୍ରେମପାଗଳ ପରି ହୋଇଗଲେ। ଯେଉଁଠି ପ୍ରଥମେ ତାଙ୍କୁ ସୀତାରାମଙ୍କ ଦର୍ଶନ ମିଳିଥିଲା, ସେଠାରେ ଯାଇ କିଛି ସମୟ ଅପେକ୍ଷା କଲେ। ତା'ପରେ ଅଯୋଧ୍ୟାର କୁଞ୍ଜ-ନିକୁଞ୍ଜ ଓ ସଘନ ବନରେ ଖୋଜି ବୁଲିଲେ ତାଙ୍କର ଭିଣୋଇ-ଭଉଣୀଙ୍କୁ।

ଏହିପରି ଭ୍ରମଣ କରୁ କରୁ ପୂର୍ବ ପରିଚିତ ସନ୍ଥ ଶ୍ରୀ ତ୍ରିଲୋଚନ ଦାସଙ୍କ ସହିତ ଅଗ୍ରନକ ତାଙ୍କର ଦେଖା ହୋଇଗଲା। ସେ ତାଙ୍କୁ ଚିହ୍ନିପାରି ଅତି ଆଦରରେ ଆଶ୍ରମକୁ ପାଛୋଟି ଆଣିଲେ। ଭକ୍ତଙ୍କ ଆଗମନ କାରଣରୁ ଆଶ୍ରମରେ ବିବିଧ ଉତ୍ସବ ଅନୁଷ୍ଠିତ ହେଲା। ବହୁ ଦିନ ଧରି ସତ୍ସଙ୍ଗ କାର୍ଯ୍ୟକ୍ରମ ଚାଲିଲା। ତ୍ରିଲୋଚନ ଦାସଙ୍କ ସତ୍ସଙ୍ଗର ଗଭୀର ପ୍ରଭାବ ପଡ଼ିଲା ପ୍ରୟାଗଦତ୍ତଙ୍କ ଜୀବନରେ। ସେ ତାଙ୍କ ଠାରୁ ବିଧିବଦ୍ଧ ସାଧୁ ଦୀକ୍ଷା ଗ୍ରହଣ କରି ଭଜନରେ ମନ ଲଗାଇଦେଲେ। ସେହି ଦିନଠାରୁ ତାଙ୍କର ନାମ ହୋଇଗଲା 'ପ୍ରୟାଗ ଦାସ'। ସମସ୍ତ ଆଶ୍ରମବାସୀ ତାଙ୍କୁ ନେତ୍ରପିତୁଳି କରି ରଖିଲେ। ଏ ସବୁ ଥିଲା ତାଙ୍କ ଅନାବିଳ ଭକ୍ତିର ପ୍ରଭାବ। ସେଥିପାଇଁ କୁହାଯାଇଛି ଯେ ଜଳ ସ୍ୱାଭାବିକ ଭାବେ ନିମ୍ନକୁ ଗଡ଼ି ଯିବାପରି ପ୍ରଭୁଭକ୍ତକୁ ସମସ୍ତେ ଆପେ ଆପେ ଭଲ ପାଆନ୍ତି। ଜଗନ୍ମାତା ସୀତାଙ୍କର ସାନ ଭାଇ ଓ ପ୍ରଭୁ ରାମଚନ୍ଦ୍ରଙ୍କର ଶାଳକ କାହାକୁ ବା ପ୍ରିୟ ନ ଲାଗିବେ?

ସାଧୁ-ଦୀକ୍ଷା ଗ୍ରହଣ କରିବା ପରଠାରୁ ପ୍ରୟାଗ ଦାସଙ୍କ ଭାବାଧିକ୍ୟ ଆହୁରି

ଅଧିକ ପ୍ରବଳତର ହେଲା । ପରମ ପାବନୀ ପୟସ୍ୱିନୀ ଗଙ୍ଗା ସମୁଦ୍ରରେ ମିଶିବା ପାଇଁ କଳକଳ ନିନାଦରେ ପ୍ରବାହିତ ହେବା ପରି ତାଙ୍କ ହୃଦୟର ଭକ୍ତି ଧାରା ପ୍ରଖର ଗତିରେ ଆଗେଇ ଚାଲିଲା । ସେ ସଘନ ବନରେ ତାଙ୍କ ଭିଣୋଇ-ଭଉଣୀଙ୍କୁ ଖୋଜି ବୁଲିଲେ । କିଛି ଦିନ ଭିତରେ ଦେହଜ୍ଞାନ ବିସ୍ମୃତ ହୋଇ ସେ ପ୍ରେମୋନ୍ମତ୍ତ ଦଶା ଲାଭ କଲେ । କେହି ଖାଇବାକୁ ଦେଲେ ଖାଆନ୍ତି, କେହି ପାଣି ପିଇବାକୁ ଦେଲେ ପିଅନ୍ତି । ଧୂଳି ଧୂସରିତ ତନୁ । କେଉଁଠି ଠିଆ ହୋଇଗଲେ ଘଣ୍ଟା ଘଣ୍ଟା ଧରି ସେମିତି ସ୍ଥାଣୁ ପରି ଠିଆ ହୋଇ ରହନ୍ତି । ପ୍ରତ୍ୟେକ ଜନିଷରେ ତାଙ୍କୁ ଦେଖାଯାଉଥାଏ ସୀତା-ରାମଙ୍କର ଛବି । ଯେଉଁଠିକୁ ତାଙ୍କର ଦୃଷ୍ଟି ଚାଲିଯାଏ, ସେଠାରୁ ଆଉ ଫେରେ ନାହିଁ ।

ଚନ୍ଦ୍ରମା ଲକ୍ଷ୍ମୀଙ୍କର ଭାଇ ହୋଇଥିବା କାରଣରୁ ତାଙ୍କୁ ଯେପରି ସମସ୍ତେ ଜହ୍ନମାମୁଁ କହନ୍ତି, ସେହିପରି ଜଗତ ଜନନୀ ବୈଦେହୀଙ୍କର ଛୋଟ ଭାଇ ହୋଇଥିବା ଯୋଗୁଁ ପ୍ରୟାଗ ଦାସଙ୍କ ଭଳି ପରମହଂସ ସନ୍ଥଙ୍କୁ ଅଯୋଧ୍ୟାର ପିଲାମାନେ 'ମାମୁଁ ମାମୁଁ' ଡାକିଲେ । ଏବେ ତାଙ୍କ ନାଆଁ ହୋଇଗଲା 'ମାମୁଁ ପ୍ରୟାଗ ଦାସ' । ମାମୁଁ ଡାକଟି ତାଙ୍କୁ ଭାରି ଆନନ୍ଦ ଦେଉଥାଏ । ଏହି ସମ୍ବୋଧନଟି ତାଙ୍କର ସୀତାଙ୍କ ସହିତ ଥିବା ଭାତୃ ସମ୍ବନ୍ଧକୁ ବାରମ୍ବାର ସ୍ମରଣ କରାଉଥିବାରୁ ତାଙ୍କ ମନ ଆନନ୍ଦରେ ଉଛୁଳି ଉଠୁଥାଏ । ସୀତାରାମଙ୍କୁ ହୃଦୟରେ ବସାଇ ସେ ମତ୍ତଗଜ ଭଳି ଅଯୋଧ୍ୟା ନଗରୀର ଗଳି ଗଳିରେ ଭ୍ରମଣ କରୁଥାନ୍ତି । କେବେ କେବେ ହାତରେ ଛତ୍ର ଧରିବା ଭଳି ଭଙ୍ଗୀ କରି ଏକମୁହାଁ ହୋଇ ସରଯୂ ନଦୀ ଆଡ଼କୁ ଦୌଡ଼ନ୍ତି । କେବେ କେବେ 'ପାଖେଇ ହୋଇଯାଅ, ପାଖେଇ ହୋଇଯାଅ, ମହାରାଜ ଆସୁଛନ୍ତି' କହି ବାଟ କଢ଼ାଇଲା ଭଳି ଆଗେ ଆଗେ ଚାଲିଥାନ୍ତି । କେହି ପଚାରିଲେ କହନ୍ତି— "ତୁମକୁ କ'ଣ ଦେଖାଯାଉ ନାହିଁ? ରାଜାଧିରାଜ ଶ୍ରୀରାମଚନ୍ଦ୍ର ପରା ହାତୀରେ ବସି ସରଯୂ ସ୍ନାନ କରିବାକୁ ଯାଉଛନ୍ତି । ତାଙ୍କୁ ଛତ୍ର ନ ଦେଖାଇଲେ କେମିତି ହେବ? ସେ ପରା ଆମ ସମସ୍ତଙ୍କର ରାଜା । ସେ ଯିବାବେଳେ ସମସ୍ତେ ସମ୍ମାନରେ ପାଖେଇ ହୋଇଯିବା କଥା ।" ଲୋକମାନେ ତାଙ୍କ କଥାକୁ ସତ୍ୟ ଭାବି ଆଦର ଦିଅନ୍ତି ।

ଦିନେ ପ୍ରୟାଗ ଦାସଙ୍କ ମନରେ ରାମଙ୍କ ବନଗମନ ଲୀଳା ସ୍ଫୁରିତ ହୋଇଗଲା । ତାଙ୍କୁ ଆଉ କି ସମ୍ଭାଳି ହୁଏ! ଦୁଃଖରେ ସହସା ତାଙ୍କର ଚେତା ବୁଡ଼ିଗଲା । କିଛି ସମୟ ପରେ ଚେତନା ଫେରି ପାଇ ଉଠି ବସିଲେ । ପୁଣି ଭାବିଲେ, "ମୋ ଭଉଣୀ ଅତି ସୁକୁମାରୀ! ବନର ଅସହ୍ୟ ଦୁଃଖ ସେ କେମିତି ସହିବ? ସେ

ଚିତ୍ରଲିଖିତ ବାନର ଭାଲୁ ଦେଖିଲେ ଭୟ କରେ, ପୁଣି ଅରଣ୍ୟ ତ ହିଂସ୍ର ଜନ୍ତୁଙ୍କର ଘର । ସେ ତାଙ୍କୁ ଦେଖି ଡରିଗଲାବେଳେ କିଏ ତା'ର ସହାୟ ହେବ? ତା'ର ଯିବାର କି ଆବଶ୍ୟକତା ଥିଲା? ଦଶରଥ ତ ଭାଇନାଙ୍କୁ ବନବାସ ଦେଇଥିଲେ । ମୋ ଭଉଣୀକୁ ତ ବନବାସ ମିଳି ନାହିଁ, ସେ କାହିଁକି ତାକୁ ସାଙ୍ଗରେ ନେଇଗଲେ?" ଏହିଭଳି ଭାବ ରାଜ୍ୟରେ ସେ ଏତେ ବିଭୋର ହୋଇଗଲେ ଯେ ରାତିଦିନ ସେଇକଥା ଚିନ୍ତା କରି ଚାଲିଲେ । ଦିନେ ତାଙ୍କ ମନରେ ଭାବନା ଆସିଲା ଯେ, ସେ ତିନୋଟି ଖଟ ଓ ତିନି ଯୋଡ଼ି ପାଦୁକା ତିଆରି କରି ତାଙ୍କୁ ଜଙ୍ଗଲରେ ଦେଇ ଆସିବେ । ବଣଜଙ୍ଗଲରେ କେଉଁଠି ଶୋଉଥିବେ? ଖାଲି ପାଦରେ ଚାଲିଲେ ଗୋଡ଼ରେ କଣ୍ଟା ଫୁଟିଯାଉଥିବ ।

ଏଥର ମାମୁଁ ପ୍ରୟାଗ ଦାସଙ୍କୁ କେହି କେତେବେଳେ ପଇସାପତ୍ର ଦେଲେ ସେ ତାହାକୁ ଯତ୍ନରେ ରଖୁଥାନ୍ତି । କିଛି ପଇସା ଯୋଗାଡ଼ ହେବା ପରେ ସେ ବଡ଼ରୁ ସାନ କ୍ରମରେ ତିନୋଟି ଖଟ ତିଆରି କଲେ ଏବଂ ତା' ଉପରେ ବିଛାଇବାକୁ ତିନୋଟି ସୁନ୍ଦର ଗଦି ତିଆରି କଲେ । ତିନୋଟିଯାକ ଖଟକୁ ଗୋଟିଏ ଅନ୍ୟଟି ଭିତରେ ରଖି ତା' ଉପରେ ପାଦୁକା ତିନିଯୋଡ଼ି ରଖିଲେ ଏବଂ ତାହାକୁ ମୁଣ୍ଡରେ ଲଦି ଚିତ୍ରକୂଟ ଅଭିମୁଖେ ଆଗେଇ ଚାଲିଲେ । ବାଟରେ କିଏ ପଚାରିଲେ କହନ୍ତି— "ଚିତ୍ରକୂଟ ଯାଉଛି, ତାଙ୍କୁ ଖଟ ଓ ପାଦୁକା ଦେଇ ଆସିବି ।" କେଉଁଠି ଖାଲ ଢିପରେ ପ୍ରୟାଗଦାସଙ୍କର ପାଦ ପଡ଼ି ମକଚି ହୋଇଗଲେ ଅଥବା ଗୋଡ଼ରେ କଣ୍ଟାଖୁଞ୍ଚ ପଶିଗଲେ ସେ ଭିଣୋଇଙ୍କ ଉପରେ ରାଗି ଯାଇ କହନ୍ତି—"ଓଃ! ଭାରି ତପସ୍ୱୀ ଦେଖେଇ ହେଉଛନ୍ତି । କେମିତି ରହିବେ କେଜାଣି ଏମିତିକା ଘୋର ଜଙ୍ଗଲରେ? ଚାରିଆଡ଼େ କଣ୍ଟାଖୁଞ୍ଚ!"

ପ୍ରୟାଗଦାସ ଚିତ୍ରକୂଟରେ ପହଞ୍ଚି ସ୍ଫଟିକଶୀଳା ନିକଟରେ ତିନୋଟି ଖଟ ପକାଇ ତା' ଉପରେ ଗଦି ତିନୋଟିକୁ ବିଛାଇ ଦେଲେ । ପୁଣି ସେଇଠି ସୀତାରାମଙ୍କୁ ଖୋଜିବା ଆରମ୍ଭ କଲେ । ସେ ନ ମିଳିବାରୁ ରୋଷରେ କହିଲେ—"ଏଇ ଦେଖ! ମୋତେ ଦେଖି କୁଆଡ଼େ ଲୁଚିଗଲେ ନା? ମୁଁ ଜାଣିଛି ପରା ସିଏ ମୋ ସାଙ୍ଗରେ ଏମିତି ମଜା କରିବେ ବୋଲି । ସେ ଭଲଭାବେ ଜାଣନ୍ତି ଯେ ପ୍ରୟାଗ ଦାସ ଆସିଲେ ତାକୁ ବୁଝାଇବା ସହଜ ହେବ ନାହିଁ । ସେ ଯାହା କହିବ, ତାହା ହିଁ କରିବ । ତେଣୁ ଏଇ ଆଖିପିଛୁଳାକେ କୁଆଡ଼େ ଉଭେଇ ଗଲେ ଦେଖୁନ!"

ଭକ୍ତର ବିଶୁଦ୍ଧ ଭାବନାକୁ ଅଙ୍ଗୀକାର କରି ପ୍ରଭୁ ରାମଚନ୍ଦ୍ର ପ୍ରିୟା ଜାନକୀ

ଓ ଅନୁଜ ଲକ୍ଷ୍ମଣଙ୍କ ସହ ତତ୍‌କ୍ଷଣାତ୍ ସେଇଠି ଆବିର୍ଭୂତ ହୋଇଗଲେ। ପ୍ରୟାଗ ଦାସ ପଛକୁ ଲେଉଟି ଚାହିଁଲା ବେଳକୁ ତିନିହେଁ ତିନି ଖଟ ଉପରେ ବସିଛନ୍ତି। ସେ ତାଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲେ। ସେମାନଙ୍କର ବନବାସୀ ବେଶ ଦେଖି ତାଙ୍କ ଆଖିରୁ ଧାରାଶ୍ରାବଣ ଭଳି ଲୋତକ ବହି ଚାଲିଲା। ବାହୁରେ ଲୁହ ପୋଛି ଟିକିଏ ମାନ କରି କହିଲେ—"ମୋତେ ଏକାକୀ ଛାଡ଼ି ତୁମେ କେମିତି ବଣକୁ ଚାଲିଆସିଲ? ତୁମେ ଯାହା ଆସିଲ ଆସିଲ, ମୋର ସୁକୁମାରୀ ଭଉଣୀକୁ କାହିଁକି ସାଙ୍ଗରେ ଆଣିଲ?"

ପ୍ରୟାଗ ଦାସଙ୍କ ଭାବନାରେ ମୁଗ୍ଧ ହୋଇ ରାମଚନ୍ଦ୍ର ସୀତାଙ୍କୁ ଚାହିଁ ମୃଦୁ ମୃଦୁ ହସୁଥାନ୍ତି। ସୀତା କହିଲେ—"ପ୍ରୟାଗ! ଇଏ ମୋତେ ଆଣି ନାହାନ୍ତି। ଇଏ ତ ମୋତେ ସାଙ୍ଗରେ ଆଣିବାକୁ ମନା କରୁଥିଲେ, ମୁଁ ମୋ ଖୁସୀରେ ଆସିଛି।" ସେ କହିଲେ—"ଏଗୁଡ଼ାକ ଖାଲି ଗାଲୁଗପ। ମୋତେ ତୁ ଭଣ୍ଡେଇ ଦେଉଛୁ। ଖୁସୀରେ କିଏ କେବେ ବଣକୁ ଆସେ? ହଉ, ଯାହା ହେଲା ହେଲା, ଏବେ ତୁ ମୋ ସାଙ୍ଗରେ ଚାଲ। ତୋର ଯୋଉଠି ମନ ହେବ, ସେଠାରେ ପହଞ୍ଚାଇଦେବି। ଅଯୋଧ୍ୟାରେ ରହିବାକୁ ମନ ନ ହେଲେ ଜନକପୁରୀ ନେଇଯିବି। ଚିନ୍ତା କରିବାର କିଛି ନାହିଁ। ମୁଁ ତୋ ସାଙ୍ଗରେ ଅଛି ମାନେ କାହାକୁ ଡର ନାହିଁ।" ସୀତା କହିଲେ—"ଆରେ ପ୍ରୟାଗ! ମୋତେ ମହାରାଜଙ୍କ ସଙ୍ଗରେ ରହିବାକୁ ଭଲ ଲାଗେ। ମୁଁ ୟାଙ୍କୁ ଛାଡ଼ି ରହି ପାରିବି ନାହିଁ। ତୁ ମନଦୁଃଖ କରନା। ମୋତେ ବଣରେ ଆଦୌ କଷ୍ଟ ହେଉ ନାହିଁ।" ପ୍ରୟାଗ ଦାସ ରୋଷରେ କହନ୍ତି—"କ'ଣ କରିବି? ଇଏ ମାନିଲେ ସିନା। ସରଳ ସ୍ୱଭାବ। ଯେମିତି ପଢ଼େଇ ଦେଲେ ସେମିତି କହୁଛି। ହଉ, ତୁମେ ନ ଫେରିଲ ନାହିଁ, କିନ୍ତୁ ଆଜିଠୁ ଆଉ ଭୂଇଁରେ ଶୋଇବ ନାହିଁ କି ଖାଲି ପାଦରେ ଚାଲିବ ନାହିଁ। ମୁଁ ତୁମ ପାଇଁ ଏଇ ଖଟ ଓ କଠଉ ତିନିଯୋଡ଼ି ତିଆରି କରି ଆଣିଛି। ଏଥର ମୁଁ ବି ତୁମ ସାଙ୍ଗରେ ରହିବି। ଯୁଆଡ଼େ ଯିବ, ଖଠ ବୋହି ନେଇଯିବି।" ରାମଚନ୍ଦ୍ର କହିଲେ—"ପ୍ରୟାଗ! ଆମେ ବାପାଙ୍କ ଆଜ୍ଞା ପାଳନ କରିବାକୁ ବନକୁ ଆସିଛୁ। ଏଇ ଚଉଦ ବର୍ଷ ଆମେ କୌଣସି ନଗରକୁ ଯିବୁ ନାହିଁ, ଆଉ କାହାକୁ ସାଙ୍ଗରେ ରଖିବୁ ନାହିଁ, ଖଟରେ ଶୋଇବୁ ନାହିଁ କି ପାଦୁକା ପିନ୍ଧିବୁ ନାହିଁ। ଆମକୁ ତପସ୍ୱୀ ଭଳି ରହିବାକୁ ହେବ। ଆଜି କେବଳ ତୁମର ମନ ରଖିବା ପାଇଁ ଖଟରେ ବସିଗଲୁ। ତୁମେ ଏହାକୁ ଅଯୋଧ୍ୟା ନେଇ ଯାଅ। ଏଥିରେ ତୁମେ ଶୋଇଲେ ଆମେ ଖୁସୀ ହେବୁ।"

ପ୍ରୟାଗ ଦାସଙ୍କୁ ଆକାଶ ଛିଡ଼ି ପଡ଼ିଲା ଭଳି ଲାଗିଲା। ସେ ମୁଣ୍ଡରେ ହାତ ଦେଇ ସେଇଠି ବସି ପଡ଼ିଲେ। ମାତା ଜାନକୀ ଆଶ୍ୱାସନା ଦେଇ ବୁଝାବୁଝି କରିବାରୁ କୌଣସି ପ୍ରକାରେ ଯିବାକୁ ରାଜି ହେଲେ। କିନ୍ତୁ ତାଙ୍କ ଅନ୍ତର କୁହୁଳି ଉଠୁଥାଏ। ସେ ଅଶ୍ରୁଛଳଛଳ ନେତ୍ରରେ କହିଲେ—"ଠିକ୍ ଅଛି। ତୁମେ ମୋତେ ସାଙ୍ଗରେ ରଖିବାକୁ ବି ରାଜି ନୁହଁ। ହଉ, ତୁମ ଉପରେ ମୋର କି ଅଧିକାର ଅଛି ଯେ ମୁଁ ତୁମକୁ ବାଧ୍ୟ କରି ପାରିବି? କିନ୍ତୁ ମନେ ରଖିଥାଅ, ଚଉଦ ବର୍ଷ ପୂର୍ଣ୍ଣ ହେବା କ୍ଷଣି ଅଯୋଧ୍ୟାକୁ ନ ଫେରିଲେ ଆଉ ଏ ପ୍ରୟାଗକୁ ପାଇବ ନାହିଁ।" ଏତିକି କହି ଖଟ ତିନୋଟି ମୁଣ୍ଡରେ ଲଦି ସେ ମନଦୁଃଖରେ ଅଯୋଧ୍ୟାକୁ ଫେରିଲେ। ବାଟରେ ମନେ ମନେ ଭାବୁଥାନ୍ତି—"ଅଯୋଧ୍ୟାରେ ତ ସମସ୍ତେ ଏମାନଙ୍କୁ ନେତ୍ରପିତୁଳି କରି ରଖିଛନ୍ତି, ପୁଣି କିଏ କାହିଁକି ବଣକୁ ପଠାଇବ? କେଜାଣି କାହିଁକି ଏମାନେ ମନକୁ ମନ ବଣରେ ବୁଲି ବୁଲି ଦୁଃଖ ପାଉଛନ୍ତି! ସୁବର୍ଣ୍ଣର ରାଜ ଉଆସ, କ୍ଷୀର ଫେଣ ଭଳି କୋମଳ ଶେଯ ପିତା ଲାଗୁଛି, ଆଉ ବଣରେ ବୁଲିବାକୁ ଭଲ ଲାଗୁଛି! ମୋ ଭଉଣୀଟା ତ ଏକବାରେ ମୂର୍ଖ। ସିଏ ଯାହା କହୁଛନ୍ତି, ତାଙ୍କରି କଥାରେ ହଁ ମାରୁଛି। ବଣରେ ସବୁଜ ଶ୍ୟାମଳ ବୃକ୍ଷ-ଲତା ଓ ପଶୁପକ୍ଷୀ ଦେଖି ଖୁସୀ ହୋଇ ଯାଉଛି। ଯେଉଁ ଦିନ ବାଘ ହାବୁଡ଼ରେ ପଡ଼ିବ, ସେ ଦିନ ଜାଣି ପାରିବ ଯେ ବଣ-ଜଙ୍ଗଲରେ କେତେ ଦୁଃଖ। ମତେ ବି ସାଙ୍ଗରେ ନେଲେ ନାହିଁ। ଭାବିଲେ ପ୍ରୟାଗଦାସ ସାଙ୍ଗରେ ରହିଲେ ତା' ଭଉଣୀ ଗ୍ୱଲାକ ହୋଇଯିବ। ଅଯୋଧ୍ୟା ଫେରି ଯିବାକୁ ଜିଦ୍ କରିବ।"

ବାଟ ସାରା ଏହିଭଳି ନାନାପ୍ରକାର ପ୍ରୀତିପୂର୍ଣ୍ଣ ପ୍ରଳାପ କରି କରି ପ୍ରୟାଗ ଦାସ ଅଯୋଧ୍ୟାରେ ପହଞ୍ଚିଲେ। ତାଙ୍କୁ ଭିଣୋଇ-ଭଉଣୀଙ୍କ ଆଜ୍ଞା ମାନିବାକୁ ହେବ। ସେ ଖଟରେ ଶୋଇଲେ ସେମାନେ ଖୁସୀ ହେବେ ବୋଲି କହିଛନ୍ତି। ତେଣୁ ଗୋଟିଏ ନିମ୍ବ ଗଛ ତଳେ ଖଟ ତିନୋଟିକୁ ରଖି ତା' ଉପରେ ଭଲ କରି ଗଦି ବିଛାଇଦେଲେ ଏବଂ ପାଳି କରି ଦିନକୁ ଗୋଟିଏ ଲେଖାଏଁ ଖଟରେ ଶୋଇ ରହି ମାଳା ଜପି ଜପି ଗାଇଲେ—

**ନିମ୍ବ ଗଛ ତଳେ ଥୋଇଣ ଖଟିଆ ତା' ପରେ ଜପିଣ ମାଳା ॥**
**ମନ ମଉଜରେ ଶୁଅଇ ପ୍ରୟାଗ ରାମଚନ୍ଦ୍ରଙ୍କର ଶଳା ॥**

ପ୍ରୟାଗ ଦାସଙ୍କର ଆନନ୍ଦକୁ କିଏ ବା ବର୍ଣ୍ଣନ କରି ପାରିବ? ସେ ଯେ ଅଖିଳ ବ୍ରହ୍ମାଣ୍ଡପତି ରାମଚନ୍ଦ୍ରଙ୍କର ଶଳା। ଜଗଦ୍ଧାତ୍ରୀ ଉତ୍ପତ୍ତି-ସ୍ଥିତି-ଲୟକାରିଣୀ ସକଳ

କ୍ଳେଶହାରିଣୀ ମହାଶକ୍ତି ହେଉଛନ୍ତି ତାଙ୍କର ବଡ଼ ଭଉଣୀ। ଭଗବାନଙ୍କ ସହିତ ଏଭଳି କୌଣସି ଏକ ସମ୍ବନ୍ଧ ସ୍ଥାପନ କରିଦେଲେ ଭଗବଦ୍‌ବିସ୍ମୃତି ହେବା କଦାପି ସମ୍ଭବ ନୁହେଁ। ଏଥିରେ ଭଗବାନ ମଧୁର ଲାଗନ୍ତି, ତାଙ୍କ ସଙ୍ଗେ ଆତ୍ମୀୟତା ହୋଇଯାଏ। ଆତ୍ମୀୟ ସମ୍ପର୍କରେ ମାନ, ଅଭିମାନ, ରାଗରୋଷ, ସ୍ନେହ, ଆଦର ସବୁ ଚଳେ। ଏଥିରେ ଭଗବାନଙ୍କୁ ଓ ଭକ୍ତକୁ ଆନନ୍ଦ ମିଳେ। ତାର ଜୀବନ ମଧୁର ଓ ରସମୟ ହୋଇଯାଏ। ଏହିଭଳି ଭକ୍ତି ଭାବନାରେ ପ୍ରୟାଗ ଦାସଙ୍କର ଜୀବନ ବ୍ୟତୀତ ହେଲା। ପରିଶେଷରେ ସେ ଏ ମରଦେହ ତ୍ୟାଗ କରି ଭଗବାନଙ୍କ ପରମଧାମ ଲାଭ କଲେ।

## ଭକ୍ତ ତ୍ରିପୁରଦାସ

ଭକ୍ତବତ୍ସଳ ଭଗବାନ ତାଙ୍କ ଭକ୍ତଜନଙ୍କ ସଙ୍ଗେ କିଭଳି ମଧୁର ଲୀଳା କରନ୍ତି, ତାହା ଜାଣିବା ଅତି କଠିନ। ବେଳେ ବେଳେ ଘଟଣାଚକ୍ର ଅତ୍ୟନ୍ତ ଭୟାନକ ବୋଧ ହେଉଥିଲେହେଁ ତାହା ଭକ୍ତ ପାଇଁ ଶୁଭଙ୍କର ହୋଇଥାଏ। ବାତ୍ସଲ୍ୟମୟୀ ମାଆ ତା' ସନ୍ତାନକୁ ପିଟୁଥିବା ଭଳି ଦେଖାଯାଉଥିଲେ ମଧ୍ୟ ସେ ପ୍ରକୃତରେ ଅହିତ କରୁ ନ ଥାଏ, ବରଂ ତାହା ତା' ହୃଦୟରେ ସନ୍ତାନ ପ୍ରତି ଥିବା ଆନ୍ତରିକ ସ୍ନେହର ସଂକେତ। ସେହିପରି ଭକ୍ତ ଜୀବନରେ ଆସୁଥିବା ପ୍ରତିକୂଳ ପରିସ୍ଥିତି ଓ ଦାରିଦ୍ର୍ୟ ପ୍ରଭୃତି ଭଗବାନଙ୍କ ବାତ୍ସଲ୍ୟର ଅଭିବ୍ୟକ୍ତି ମାତ୍ର। କୁମ୍ଭାର ହାଣ୍ଡି ଗଢ଼ିବା ବେଳେ ଉପର ପଟୁ କାଠ ଫାଳିଆରେ ପିଟୁଥିଲେ ମଧ୍ୟ ଭିତର ପଟେ ହାତ ରଖି ଯେପରି ସମ୍ଭାଳୁ ଥାଏ, ସେହିପରି ବାହ୍ୟରୂପେ ବିଷମ ପରିସ୍ଥିତି ପଠାଇ ଭଗବାନ ଭିତରେ ଭିତରେ ଭକ୍ତର ଯୋଗକ୍ଷେମ ବହନ କରୁଥାନ୍ତି। ତା'ଛଡ଼ା ସଂସାରରେ ଏ କଥା ପ୍ରଚଳିତ ଯେ ଭକ୍ତ ଭଗବାନଙ୍କୁ ଭଜେ; କିନ୍ତୁ ଭଗବାନ ଯେ ଭକ୍ତଙ୍କୁ ଭଜନ୍ତି ତାହା ସଂସାର ଜାଣେ ନାହିଁ। ଏହି ଗୁପ୍ତ ରହସ୍ୟ ବିମୋଚନ କରିବା ପାଇଁ ଭଗବାନ ନାନା ପ୍ରକାର ଅଦ୍ଭୁତ ଘଟଣା ସୃଷ୍ଟି କରନ୍ତି।

ଏହିଭଳି ଘଟଣା ଘଟିଥିଲା ଭକ୍ତ ଶ୍ରୀତ୍ରିପୁରଦାସଙ୍କ ଜୀବନରେ। ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିଲାଟି ଦିନରୁ ତାଙ୍କ ଜୀବନରେ ଭକ୍ତିବୀଜ ଅଙ୍କୁରିତ ହୋଇଥିଲା। ସେ ଥିଲେ ବ୍ରଜମଣ୍ଡଳ ଅନ୍ତର୍ଗତ ଶେରଗଡ଼ ଗ୍ରାମର ନିବାସୀ। ତାଙ୍କ ବାପା ଥିଲେ ଜଣେ ଖ୍ୟାତନାମା ରାଜମନ୍ତ୍ରୀ। ଥରେ ସେ ବାପାଙ୍କ ସହିତ ଆଗ୍ରା

ସହରରୁ ଘରକୁ ଫେରିବା ବେଳେ ଗୋବର୍ଦ୍ଧନରେ ବିରାଜମାନ ଠାକୁର ଶ୍ରୀନାଥଙ୍କ ଦର୍ଶନ ପାଇଁ ମନ ବଳାଇଲେ। ପୁତ୍ରର ଆନ୍ତରିକ ଭକ୍ତି ଭାବନା ଜାଣିପାରି ବାପା ତାଙ୍କୁ ଠାକୁରଙ୍କ ଦର୍ଶନ କରାଇବାକୁ ନେଇଗଲେ। ପ୍ରଭୁଙ୍କ ପ୍ରଥମ ଦର୍ଶନରେ ସେ ସବୁଦିନ ପାଇଁ ତାଙ୍କର ହୋଇଗଲେ। ତାଙ୍କୁ ଲାଗିଲା ସତେ ଯେପରି ପ୍ରଭୁ ତାଙ୍କର ଅନେକ ଜନ୍ମର ସାଥୀ। ତାଙ୍କର ଅତୃପ୍ତ ପ୍ରାଣ ପାଇଁ ସେ ହେଉଛନ୍ତି ପୀୟୂଷ କଣିକା। ଆଖିକୁ ଆଖି ମିଶିଗଲା। ଅବ୍ୟକ୍ତ ଭାଷାରେ ସେ ପ୍ରଭୁଙ୍କୁ ନିଜର ମନକଥା କହିଗଲେ। ଭଗବାନ ବାଳକଟିର ଅନାବିଳ ପ୍ରୀତିକୁ ଅଙ୍ଗୀକାର କରି ତାଙ୍କୁ ସବୁ ଦିନ ପାଇଁ ଚରଣରେ ସ୍ଥାନ ଦେଲେ।

ପ୍ରଭୁଭକ୍ତିରେ ଏମିତି କିଛି ଦିନ ଅତିବାହିତ ହୋଇ ଚ୍ଲିଲା। ରାଜମନ୍ତ୍ରୀ ହୋଇଥିବାରୁ ବାପାଙ୍କର ଘରେ ଅନେକ କାର୍ଯ୍ୟ ଥାଏ। ସେ ଯିବାକୁ ବାରମ୍ବାର କହୁଥାନ୍ତି। କିନ୍ତୁ ପ୍ରଭୁଙ୍କୁ ଛାଡ଼ିବା କଥା ଶୁଣି ମୀନକୁ ଜଳରୁ କାଢ଼ିଦେବା ଭଳି ତ୍ରିପୁରଦାସଙ୍କ ମନ ବ୍ୟାକୁଳ ହୋଇଉଠେ। ବାପା ଦିନେ ଯିବାକୁ ବାଧ୍ୟ କରିବାରୁ ସେ ଆଖିରୁ ଲୁହ ଝରାଇ କରୁଣ ସ୍ୱରରେ କହିଲେ—"ବାପା! ମୋତେ ପ୍ରଭୁଙ୍କ ଚରଣରେ ଛାଡ଼ିଦିଅ। ମୁଁ ମୋର ପ୍ରିୟତମଙ୍କୁ ତନୁ-ମନ ସବୁକିଛି ସମର୍ପଣ କରି ଦେଇଛି; ତାଙ୍କୁ ଛାଡ଼ି ମୁଁ ବଞ୍ଚି ପାରିବି ନାହିଁ।" ବାପା ମଧ୍ୟ ଭକ୍ତିମନ୍ତ ଥିଲେ, ତେଣୁ ସେ ପିଲାଟିର ହୃଦୟରେ ପ୍ରଭୁଙ୍କ ପ୍ରତି ଅଙ୍କୁରିତ ନବାନୁରାଗକୁ ବେଶ୍ ବୁଝିପାରିଲେ। ମନେ ମନେ ଭାବିଲେ ଭକ୍ତ ସନ୍ତାନଟିଏ ପାଇ ତାଙ୍କର ଜୀବନ କୃତାର୍ଥ ହୋଇଗଲା। ପୁଅର ଭକ୍ତିରେ ସନ୍ତୁଷ୍ଟ ହୋଇ ସେ ପ୍ରଭୁଙ୍କ ଚରଣରେ ତାକୁ ସମର୍ପଣ କରିଦେଇ ଘରକୁ ଫେରିଗଲେ। କିନ୍ତୁ ବିଧିର ବିଧାନ କ'ଣ କେଜାଣି, ସେ ଘରେ ପହଞ୍ଚି ପାରିଲେ ନାହିଁ। ବାଟରେ ଦୁଷ୍ଟ ଡାକୁମାନେ ତାଙ୍କର ସବୁ ଧନ ଛଡ଼ାଇନେଇ ତାଙ୍କୁ ମାରିଦେଲେ। ପିତାଙ୍କ ମୃତ୍ୟୁର ଅପ୍ରିୟ ସମାଚ୍ୱର ପାଇ ମଧ୍ୟ ଭକ୍ତ ତ୍ରିପୁରଦାସଙ୍କ ମନରେ ଶୋକ ନ ଥିଲା। ସେ ତାହାକୁ ଭଗବାନଙ୍କର ମଙ୍ଗଳମୟ ବିଧାନ ଭାବି ଆନନ୍ଦିତ ହେଲେ। କାହିଁକି ବା ନ ହୁଅନ୍ତେ! ଯିଏ ସବୁ ପରିସ୍ଥିତିରେ ଭଗବାନଙ୍କର କୃପାକୁ ଅନୁଭବ କରନ୍ତି, ତାଙ୍କ ଦୃଷ୍ଟିରେ ସୁଖ ଓ ଦୁଃଖର ପୃଥକ୍ ସତ୍ତା କାହିଁ? ସେ ଭାବିଲେ, ବୋଧହୁଏ ପ୍ରଭୁ ତାଙ୍କ ବାପାଙ୍କୁ ପରମଧାମକୁ ନେଇଯାଇ ତାଙ୍କୁ ମାୟାବନ୍ଧନରୁ ମୁକ୍ତ କରିଦେଲେ। ଏଥର ମନପ୍ରାଣ ଦେଇ ସେ ନିଶ୍ଚିନ୍ତରେ ଭକ୍ତି କରି ପାରିବେ।

ଏଥର ତାଙ୍କର ଆଉ କୌଣସି ଚିନ୍ତା ନାହିଁ। ଆତ୍ମବିଭୋର ହୋଇ ସେ

ପ୍ରଭୁଙ୍କ ସେବାରେ ନିଶିଦିନ ମଗ୍ନ ରହିଲେ। ତାଙ୍କର ଭକ୍ତିଲତା ଦିନକୁ ଦିନ ବଢ଼ିଚାଲିଲା। ସେ କେତେବେଳେ ପ୍ରଭୁଙ୍କ ବିରହରେ ବ୍ୟାକୁଳ ହୋଇ କ୍ରନ୍ଦନ କରନ୍ତି ତ ଆଉ କେତେବେଳେ ତାଙ୍କ ମିଳନ ସୁଖରେ ଆନନ୍ଦରେ ନାମ ସଂକୀର୍ତ୍ତନ କରି ନୃତ୍ୟ କରନ୍ତି। କେବେ କେବେ ଠାକୁରଙ୍କୁ ନିକଟରେ ଅନୁଭବ କରି ତାଙ୍କ ସହିତ କଥାବାର୍ତ୍ତା କରନ୍ତି ତ ପୁଣି ଆଉ କେତେବେଳେ ତାଙ୍କ ଧ୍ୟାନରେ ମଗ୍ନ ହୋଇ ସ୍ପନ୍ଦନରହିତ ଦୀପ ଶିଖା ଭଳି ନିଶ୍ଚଳ ହୋଇ ବସି ରହନ୍ତି।

ତ୍ରିପୁରଦାସଙ୍କର ଏଭଳି ଭକ୍ତି ଭାବନା ଦେଖି ଦିନେ ଗୋସାଇଁ ଶ୍ରୀବଲ୍ଲଭାଚାର୍ଯ୍ୟ ତାଙ୍କୁ ପାଖକୁ ଡାକି ତାଙ୍କର ପରିଚୟ ପଚାରିଲେ। ସେ ନତମସ୍ତକ ହୋଇ ଧୀର କଣ୍ଠରେ ଉତ୍ତର ଦେଲେ—"ପ୍ରଭୁ! ମୁଁ ଜଣେ ବାପା-ମାଆ ଛେଉଣ୍ଡ ଅନାଥ ବାଳକ। ସଂସାରରେ ମୋର ନିଜର ବୋଲି କେହି ନାହାନ୍ତି। ମୋତେ ଅଭୟ ଚରଣରେ ସ୍ଥାନ ଦେଇ କୃତାର୍ଥ କରନ୍ତୁ!" ଶ୍ରୀବଲ୍ଲଭାଚାର୍ଯ୍ୟ ମହାପ୍ରଭୁ ପିଲାଟିକୁ ଶ୍ରଦ୍ଧାବାନ୍ ଓ ଯୋଗ୍ୟ ପାତ୍ର ଭାବି ଦୀକ୍ଷା ପ୍ରଦାନ କଲେ ଏବଂ ପ୍ରଭୁଙ୍କ ସହିତ ତା'ର ସମ୍ବନ୍ଧ ଦୃଢ଼ କରାଇଦେଲେ। ଏଥର ତ୍ରିପୁରଦାସଙ୍କ ଆନନ୍ଦ କହିଲେ ନ ସରେ। ମନପ୍ରାଣ ସମର୍ପଣ କରି ସେ କାୟା-ଛାୟା ପରି ଆଚାର୍ଯ୍ୟଙ୍କ ସେବାରେ ମଗ୍ନ ରହିଲେ। ଆଚାର୍ଯ୍ୟଙ୍କ ସଙ୍ଗ ଲାଭରୁ ତାଙ୍କର ଭକ୍ତିଭାବ ଧୀରେ ଧୀରେ ପରିପୁଷ୍ଟ ହୋଇ ଚାଲିଲା। ଦିନେ ଶ୍ରୀବଲ୍ଲଭାଚାର୍ଯ୍ୟ ମହାପ୍ରଭୁ ଅତି ସ୍ନେହରେ ତ୍ରିପୁରଦାସଙ୍କୁ ନିକଟରେ ବସାଇ କହିଲେ—"ବତ୍ସ! ତୁମ ସେବାରେ ମୁଁ ଅତ୍ୟନ୍ତ ପ୍ରସନ୍ନ। ଏବେ ତୁମେ ଗୃହରେ ରହି ଠାକୁରଙ୍କର ସେବା-ପୂଜା ବିସ୍ତାର କର। ଯେତେବେଳେ ଇଚ୍ଛା ହେବ ଆସି ଗୋବର୍ଦ୍ଧନରେ ଶ୍ରୀନାଥଙ୍କର ଦର୍ଶନ କରି ଯାଉଥିବ।"

ଆଚାର୍ଯ୍ୟଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ତ୍ରିପୁରଦାସ ଘରକୁ ଫେରିଗଲେ। କିନ୍ତୁ ଶ୍ରୀନାଥଙ୍କର ହସ ହସ ଚନ୍ଦ୍ରବଦନକୁ ସେ ଭୁଲି ପାରୁ ନ ଥାନ୍ତି; ପ୍ରଭୁଙ୍କ ବାଙ୍କ ଚାହାଣି ଓ ତ୍ରିଭଙ୍ଗ ଲଳିତ ଠାଣି ବାରମ୍ବାର ତାଙ୍କ ମନକୁ ଟାଣି ନେଉଥାଏ। ଆଚାର୍ଯ୍ୟଙ୍କ ଠାରୁ ମିଳିଥିବା ଉପଦେଶକୁ ହୃଦୟଙ୍ଗମ କରି ସେ ଭକ୍ତିମୟ ଜୀବନ ବିତାଇଲେ। ତାଙ୍କର ଉତ୍ତମ ଗୁଣ ଓ ବ୍ୟବହାରରେ ମୁଗ୍ଧ ହୋଇ ଯବନରାଜା ତାଙ୍କୁ ମନ୍ତ୍ରୀ ପଦରେ ନିଯୁକ୍ତ କରିଦେଲା। ପ୍ରଭୁଙ୍କର ଇଚ୍ଛା ଭାବି ସେ ତାହା ସ୍ୱୀକାର କଲେ। ସେ ସ୍ୱକର୍ତ୍ତବ୍ୟରେ କେବେ ବି ଅବହେଳା କରିନ୍ତି ନାହିଁ, ବରଂ ସେହି କାର୍ଯ୍ୟକୁ ସେ ପରମାତ୍ମାଙ୍କ ପୂଜା ଭାବି ସମ୍ପାଦନ କରନ୍ତି। ତାଙ୍କର ପ୍ରତ୍ୟେକ କାର୍ଯ୍ୟ

ପଛରେ ପ୍ରଭୁଙ୍କୁ ପ୍ରସନ୍ନ କରିବାର ଦୃଢ଼ ଉଦ୍ଦେଶ୍ୟ ରହିଥାଏ। ଲୋକେ କହନ୍ତି ଯେ ଗୃହସ୍ଥାଶ୍ରମରେ ଥାଇ ପାରମାର୍ଥିକ ଉନ୍ନତି କରିବା ସମ୍ଭବ ନୁହେଁ। ଗୃହୀ ଲୋକକୁ ବେଳ କାହିଁ ଯେ ସେ ପ୍ରଭୁଭକ୍ତି କରିବ? ପିଲାଛୁଆଙ୍କ ପେଟ ପୋଷିବାରେ ତ ତା'ର ସମୟ ସବୁ ଗ୍ଲିଯାଉଛି। କିନ୍ତୁ ଏହା ଯଥାର୍ଥ ତର୍କ ନୁହେଁ। ଭକ୍ତି କରିବାକୁ ଇଚ୍ଛା ନ ଥିବା ଲୋକମାନେ ଏମିତି ବିତଣ୍ଡା ଯୁକ୍ତି ଦେଇଥାନ୍ତି? ମନ ଥିଲେ ସବୁ ହୋଇ ପାରିବ। ମନୁଷ୍ୟ ଯେକୌଣସି ପରିସ୍ଥିତିରେ ଥାଇ ମଧ୍ୟ ପ୍ରଭୁଙ୍କୁ ପାଇ ପାରିବ। ଯଦି ଏହା ସମ୍ଭବ ହେଉ ନ ଥାନ୍ତା, ତେବେ ଭଗବାନ ମନୁଷ୍ୟଙ୍କୁ ସେଭଳି ପରିସ୍ଥିତି କାହିଁକି ଦେଇଥାନ୍ତେ? ପାରମାର୍ଥିକ ଉନ୍ନତି ପାଇଁ ବାହ୍ୟ ପରିସ୍ଥିତିର ମହତ୍ତ୍ୱ ଥିଲେ ମଧ୍ୟ ତାହା ପରିସ୍ଥିତିର ଅଧୀନ ନୁହେଁ। ଏ କ୍ଷେତ୍ରରେ ଦରକାର ପବିତ୍ର ଭାବନା ଓ ସାଧୁସନ୍ଥଙ୍କର ସତ୍ସଙ୍ଗ।

ତ୍ରିପୁରଦାସଙ୍କର ପବିତ୍ର ଭାବନା ସହିତ ପିଲାଟି ଦିନରୁ ତାଙ୍କୁ ସାଧୁସଙ୍ଗ ମିଳିଥିଲା। ତେଣୁ ସେ ସାଂସାରିକ କାର୍ଯ୍ୟକ୍ଷେତ୍ରରେ ଥାଇ ମଧ୍ୟ ସୁଦୃଢ଼ ଭକ୍ତିରାଜ୍ୟରେ ପ୍ରବେଶ ଲାଭ କରିଥିଲେ। ରାଜା ଅମ୍ବରୀଷଙ୍କ ଭଳି ସେ ନିଜର ପ୍ରତିଟି ଇନ୍ଦ୍ରିୟ, ମନ, ଧନ, ପ୍ରାଣ ଓ ସର୍ବସ୍ୱ ପ୍ରଭୁସେବାରେ ବିନିଯୋଗ କରି ଦେଇଥିଲେ। ତାଙ୍କର ମନ ପ୍ରଭୁ ଶ୍ରୀନାଥଙ୍କ ସ୍ମରଣରେ, ବାଣୀ ନାମ-ଗୁଣ କୀର୍ତ୍ତନରେ, ହାତ ଦୁଇଟି ମନ୍ଦିର ମାର୍ଜନାରେ, ଶ୍ରବଣ ପ୍ରଭୁଙ୍କ ଗୁଣ ଚର୍ଚ୍ଚାରେ, ନେତ୍ର ଦୁଇଟି ତାଙ୍କର ଶ୍ୟାମଳ ଶ୍ରୀଅଙ୍ଗ ଦର୍ଶନରେ, ନାସିକା ତାଙ୍କର ପାଦଚଢ଼ା ତୁଳସୀ ଆଘ୍ରାଣରେ ନିବିଷ୍ଟ ଥିଲା। ସେ ଇନ୍ଦ୍ରିୟତୃପ୍ତି ପାଇଁ କୌଣସି ବିଷୟ ସେବନ ନ କରି ଭଗବାନଙ୍କ ପ୍ରସନ୍ନତା ଉଦ୍ଦେଶ୍ୟରେ ତାହା ଗ୍ରହଣ କରୁଥିଲେ। ଜଣେ ଶ୍ରେଷ୍ଠ ଭକ୍ତଙ୍କର ସମସ୍ତ ଲକ୍ଷଣ ଝଲକୁଥିଲା ତାଙ୍କ ଜୀବନରେ।

ଶ୍ରୀନାଥଙ୍କର ଓ ଆଗ୍ରାର୍ଯ୍ୟଙ୍କର ଚରଣାମୃତ ପ୍ରତି ତ୍ରିପୁରଦାସଙ୍କ ହୃଦୟରେ ପିଲାଟିବେଳୁ ପ୍ରଗାଢ଼ ଶ୍ରଦ୍ଧା ଥିଲା। ତାଙ୍କ ଗୃହରେ ସର୍ବଦା ଚରଣାମୃତ ସଂଚିତ ରହିଥାଏ। ଚରଣାମୃତ ଓ ପ୍ରସାଦ ନ ପାଇବା ପର୍ଯ୍ୟନ୍ତ ସେ ଅନ୍ନ-ଜଳ କିଛି ହେଲେ ଗ୍ରହଣ କରନ୍ତି ନାହିଁ। ଦୈବଯୋଗକୁ ଦିନେ ଚରଣାମୃତ ସରି ଯାଇଥିଲା। ଘରର ରୋଷେୟା ମଧ୍ୟ କହିବାକୁ ଭୁଲିଗଲା। ତ୍ରିପୁରଦାସ ହାତଗୋଡ଼ ଧୋଇ ପ୍ରସାଦ ପାଇବାକୁ ଆସନରେ ବସିଯିବା ପରେ ସେ କହିଲା—"ଆଜ୍ଞା! ଆଜି ତ ଚରଣାମୃତ ଓ ପ୍ରସାଦ ସରିଯାଇଛି। ମୋର କହିବାକୁ ମନେ ପଡ଼ିଲା ନାହିଁ।" ତ୍ରିପୁର ଦାସ ଅତ୍ୟନ୍ତ ନିଷ୍ଠାପର। ସେ ଭୋଜନ ନ କରି ଉଠିଗଲେ। ରୋଷେୟାଙ୍କୁ କହିଲେ—

"ଏ କଥା ପୂର୍ବରୁ କହିଲ ନାହିଁ କାହିଁକି? ରାଜଦରବାରକୁ ଯିବାର ସମୟ ହୋଇଗଲାଣି, ଏବେ କେଉଁଠୁ ଆଣିବା? ହଉ, ମୁଁ ଯାଉଛି। ଠାକୁରଙ୍କୁ ଭୋଗ ଲଗାଇ ତୁମେମାନେ ପ୍ରସାଦ ପାଇନେବ; ମୋତେ ଅପେକ୍ଷା କରିବ ନାହିଁ।" ତ୍ରିପୁରଦାସ ମନ ଭିତରେ ନିର୍ଣ୍ଣୟ କଲେ ଯେ ଯାହା ହୋଇଗଲେ ବି ସେ ତାଙ୍କ ନିଷ୍ଠାରୁ ଓହରିବେ ନାହିଁ। ଦେହ ଦୁର୍ବଳ ଲାଗିଲେ ବରଂ ସେଇଠି ଟିକିଏ ବିଶ୍ରାମ କରିନେବେ, କିନ୍ତୁ ଚରଣାମୃତ ନ ପାଇବାଯାଏ ଭୋଜନ କରିବେ ନାହିଁ।

ତ୍ରିପୁରଦାସ ଠାକୁରଙ୍କୁ ସ୍ମରଣ କରି ସେଦିନ ଉପବାସରେ ଦରବାରକୁ ଚାଲିଗଲେ। ରୋଷେୟା ତା' କାମରେ ଲାଗିଗଲା। କିଛି ସମୟ ପରେ ଦଶ ବର୍ଷର ଶ୍ୟାମଳ ପିଲାଟିଏ ଆସି ଦୁଆରେ ଡାକ ଦେଲା—ଘରେ କେହି ଅଛନ୍ତି କି? କବାଟ ଖୋଲନ୍ତୁ। ରୋଷେୟା କବାଟ ଖୋଲିବାରୁ ସେ ତା' ହାତକୁ ଚରଣାମୃତ ଓ ପ୍ରସାଦ ପୁଡ଼ିଆ ବଢ଼ାଇ ଦେଇ କହିଲା—"ଏଥିରେ ଆଚାର୍ଯ୍ୟଙ୍କର ଚରଣାମୃତ, ଶ୍ରୀନାଥ ଠାକୁରଙ୍କର ଚରଣାମୃତ ଓ ମହାପ୍ରସାଦ ଅଛି। ତ୍ରିପୁରଦାସ ମୋ ହାତରେ ଏସବୁ ପଠାଇଛନ୍ତି। ସେ ଆସିଲେ ତାଙ୍କୁ ମୋର ପ୍ରଣାମ ଜଣାଇଦେବ। ଏବେ ମୁଁ ଯାଉଛି।" ଏତିକି କହି ରୋଷେୟା ତା'ର ପରିଚୟ ପଚାରିବା ପୂର୍ବରୁ ପିଲାଟି ସହସା କୁଆଡ଼େ ଅଦୃଶ୍ୟ ହୋଇଗଲା। ରୋଷେଇ ସରିବା ପରେ ଠାକୁରଙ୍କୁ ଭୋଗ ଲଗାଇ ରୋଷେୟା ତ୍ରିପୁରଦାସଙ୍କ ନିକଟକୁ ଖବର ପଠାଇଲା। କିନ୍ତୁ ସେ ଆସିବେ ନାହିଁ ବୋଲି ମନା କରିଦେଲେ। ତା' ପରେ ସେ ଆଉ ଜଣକୁ ପଠାଇଲା। ଏହିପରି ଥରକୁ ଥର ଡାକରା ଯିବାରୁ ତ୍ରିପୁରଦାସ ଆସି ଟିକିଏ ବିରକ୍ତ ହୋଇ କହିଲେ—"ତୁ କ'ଣ ଜାଣିନାହୁଁ ଯେ ଚରଣାମୃତ ନ ପାଇବା ପର୍ଯ୍ୟନ୍ତ ମୁଁ କିଛି ଖାଇବି ନାହିଁ ବୋଲି। ପୁଣି ମୋ ପାଖକୁ ବାରମ୍ବାର ଡାକରା ପଠାଇ ମୋତେ ଏମିତି ବ୍ୟସ୍ତ କରୁଛୁ କାହିଁକି?" ରୋଷେୟା ଆଶ୍ଚର୍ଯ୍ୟରେ ମଥା ନୁଆଇଁ କହିଲା—"ଆଜ୍ଞା! ଆପଣ ଏ କ'ଣ କହୁଛନ୍ତି? ଆପଣ ନିଜେ ପରା ଗୋଟିଏ ପିଲା ହାତରେ ଚରଣାମୃତ ଓ ପ୍ରସାଦ ପଠେଇଥିଲେ! ଏଇ ଦେଖନ୍ତୁ ସବୁ ଜିନିଷ ସେ ଆଣି ଦେଇଯାଇଛି।" ପିଲାଟି ଦେଇଥିବା ପୁଟିଆ ଦୁଇଟିକୁ ଆଣି ସେ ତ୍ରିପୁରଦାସଙ୍କ ହାତକୁ ବଢ଼ାଇ ଦେଲା। ସେ ଆଶ୍ଚର୍ଯ୍ୟରେ ପଚାରିଲେ—"ତୁ ଦେଖିଛୁ ତାକୁ? କାହିଁ ସେ ପିଲାଟି କୁଆଡ଼େ ଗଲା?" ରୋଷେୟା କହିଲା—"ସିଏ କ'ଣ ଏ ପର୍ଯ୍ୟନ୍ତ ଅଛି? ଚରଣାମୃତ ଓ ପ୍ରସାଦ ଦେଇ ସାରି ସେ ସଙ୍ଗେ ସଙ୍ଗେ ଚାଲିଗଲା।" ତ୍ରିପୁରଦାସ ବୁଝିଗଲେ ଯେ ତାଙ୍କର ଆରାଧ୍ୟ ପ୍ରଭୁ ଶ୍ରୀନାଥ

ହିଁ ବାଳକ ବେଶରେ ଏସବୁ ଧରି ଆସିଥିଲେ। ତାଙ୍କର ନେତ୍ର ଅଶ୍ରୁଛଳଛଳ ହୋଇଗଲା। ତାଙ୍କ ପାଇଁ ଠାକୁରଙ୍କୁ ଏତେ କଷ୍ଟ କରିବାକୁ ପଡ଼ିଲା ବୋଲି ଭାବି ସେ ନିଜକୁ ବହୁ ଧିକ୍କାର କଲେ ଏବଂ ହାତଯୋଡ଼ି ପ୍ରଭୁଙ୍କ ପାଦତଳେ ପ୍ରଣତି ଜଣାଇଲେ। ତା'ପରେ ସ୍ନାନ ସାରି ସେ ଚରଣାମୃତ ପାଇ ଭୋଜନରେ ବସିଲେ।

ମନ୍ତ୍ରୀ ପଦରେ ରହି କର୍ତ୍ତବ୍ୟରେ ପବିତ୍ରତା ରକ୍ଷା କରିବା ସାଧାରଣ କଥା ନୁହେଁ। ପଦାରୂଢ଼ ଲୋକ ଖୁବ୍ ସାବଧାନ ହୋଇଥିଲେ ମଧ୍ୟ ତା'ର ଗୋଡ଼ ଖସିଯିବାକୁ ସମୟ ଲାଗେ ନାହିଁ। କିନ୍ତୁ ତ୍ରିପୁରଦାସ ସଂସାରରେ ରହି କର୍ମ କରିବାର କୌଶଳ ଜାଣିଥିବାରୁ ପଦବୀରେ ଥାଇ ମଧ୍ୟ ତହିଁରେ ଲିପ୍ତ ହୋଇ ନ ଥିଲେ। ଯେଉଁ କର୍ମ ମନୁଷ୍ୟକୁ ଜନ୍ମମୃତ୍ୟୁ ଚକ୍ରରେ ପକାଏ, ତାହା ତାଙ୍କ ଭକ୍ତି ବର୍ଦ୍ଧନରେ ସହାୟକ ହେବା ସହିତ ଭବରୋଗ ପାଇଁ ଔଷଧ ଭଳି କାମ ଦେଇଥିଲା। ହଳାହଳ ବିଷକୁ ଶୋଧନ କରି ଔଷଧ ତିଆରି କରାଗଲେ ତାହା ଯେପରି ବିଷ ଦ୍ୱାରା ଆକ୍ରାନ୍ତ ଲୋକକୁ ଆରୋଗ୍ୟ ପ୍ରଦାନ କରିଥାଏ, ସେହିପରି କର୍ମକୁ ଶୋଧନ କରି ଭଗବାନଙ୍କ ପୂଜାରେ ପରିଣତ କରିଦେଲେ ତାହା ଆଉ ଜନ୍ମମୃତ୍ୟୁ ଚକ୍ର ମଧ୍ୟକୁ ଠେଲିଦେଇପାରେ ନାହିଁ। ତ୍ରିପୁରଦାସ ଏହି ଶୋଧନ ପ୍ରଣାଳୀ ଅବଲମ୍ବନ କରି ନିଜର କର୍ତ୍ତବ୍ୟ ଦ୍ୱାରା ପରମାତ୍ମାଙ୍କୁ ପୂଜା କରୁଥିଲେ।

ପୂଜାରେ ଭାବନାର ପବିତ୍ରତା ନିତାନ୍ତ ଆବଶ୍ୟକ। ଅପବିତ୍ର ଭାବନାରେ କଦାପି ପୂଜା ହୋଇ ନ ପାରେ। ତେଣୁ ତ୍ରିପୁରଦାସ କଦାପି କାମନାର ବଶୀଭୂତ ହୋଇ ଅନୀତି ମାର୍ଗ ଗ୍ରହଣ କରୁ ନ ଥିଲେ କି ଯବନ ରାଜାର ଚାପରେ ନୀତି-ଧର୍ମ ତ୍ୟାଗ କରୁ ନ ଥିଲେ। ଚାଟୁକାରିତା ତାଙ୍କ ଜୀବନ ଶୈଳୀର ବିପରୀତ ଥିଲା। ଯବନ ରାଜାର ଅଧର୍ମ ବିଚାରକୁ ସମର୍ଥନ ନ କରି ତାକୁ ଭଲବାଟରେ ଚାଲିବାକୁ ପ୍ରେରଣା ଦେଇ ସେ ଜଣେ ସଚ୍ଚୋଟ ମନ୍ତ୍ରୀର ଦାୟିତ୍ୱ ତୁଲାଉଥିଲେ। ଏହା କିନ୍ତୁ ଯବନ ରାଜାକୁ କାଳଦଣ୍ଡ ଭଳି ଲାଗୁଥିଲା। କ୍ଷଣକ ପାଇଁ ମୀନକୁ ପାଣିରୁ ବାହାର କରିଦେଲେ ଯେପରି ସେ ଛଟପଟ ହୁଏ, ସେହିପରି ଯବନରାଜାକୁ ଧର୍ମ କଥା ଭଲ ଲାଗୁ ନ ଥିଲା। ଦିନେ ତ୍ରିପୁରଦାସଙ୍କର ସ୍ପଷ୍ଟବାଦିତାରେ ଯବନରାଜାର ପୂର୍ବରୁ ଜମା ହୋଇଥିବା ରାଗ ସବୁ ଏକାଥରେ ପଦାକୁ ବାହାରି ପଡ଼ିଲା। ସେ ନିଆଁବାଣ ହୋଇ ତାଙ୍କର ସବୁ ଧନ ଅପହରଣ କରିନେବା ସହିତ ତାଙ୍କୁ ପଦଚ୍ୟୁତ କରି ବନ୍ଦୀ କରିଦେଲା।

ନ୍ୟାୟ ପଥରେ ରହି ଧର୍ମ ପାଳନ କରିବା ଲୋକକୁ ବେଳେ ବେଳେ ବହୁ

କଷ୍ଟ ସହ୍ୟ କରିବାକୁ ପଡ଼େ। କିନ୍ତୁ ସେହି କଷ୍ଟ ତାକୁ ସୁଦୃଢ଼ କରିବା ସହିତ ନବଜୀବନ ପ୍ରଦାନ କରିଥାଏ। ଶାଣରେ ଘଷା ହେବା ପରେ ସୁବର୍ଣ୍ଣ ଯେପରି ରାଜାଙ୍କ ମସ୍ତକରେ ସ୍ଥାନ ପାଏ, ସେହିପରି ଜୀବନରେ ଧର୍ମ ପାଇଁ କଷ୍ଟ ସହ୍ୟ କରୁଥିବା ବ୍ୟକ୍ତିକୁ ଭଗବାନ ମସ୍ତକରେ ସ୍ଥାନ ଦିଅନ୍ତି। ଥରେ ବନବାସ ସମୟରେ ସତୀ ଦ୍ରୌପଦୀ ଧର୍ମରାଜ ଯୁଧିଷ୍ଠିରଙ୍କୁ ପଗ୍ଚରିଲେ—"ପ୍ରାଣନାଥ! ଆମେ ଧର୍ମ ପଥରେ ଥାଇ ଏତେ କଷ୍ଟ ଭୋଗୁଛେ, ଅଥଚ ଦୁର୍ଯ୍ୟୋଧନ ପ୍ରଭୃତି ଅନ୍ୟାୟ କରି ମଧ୍ୟ ରାଜ୍ୟସୁଖ ଭୋଗୁଛନ୍ତି। ତେବେ କ'ଣ ଧର୍ମ ପାଳନର ଫଳ ଏଇଆ?" ମୃଦୁ ମୃଦୁ ହସି ଯୁଧିଷ୍ଠିର କହିଲେ—"କଲ୍ୟାଣୀ! ଧର୍ମ ପାଳନର ଲକ୍ଷ୍ୟ ସୁଖ ନୁହେଁ। ଲୌକିକ ସୁଖ ଉଦ୍ଦେଶ୍ୟରେ ଧର୍ମ ପାଳନ କରୁଥିବା ବ୍ୟକ୍ତି ପ୍ରକୃତରେ ଧର୍ମର ମହତ୍ତ୍ୱ ବୁଝି ନାହିଁ ବୋଲି ଜାଣ। କେବଳ ଧର୍ମର ରକ୍ଷା ପାଇଁ ହିଁ ଧର୍ମ ପାଳନ କରାଯାଏ।"

ତ୍ରିପୁରଦାସ ଯଦି ଯବନରାଜାର ଅନୀତି କାର୍ଯ୍ୟରେ ସହମତ ହୋଇ ତାକୁ ସାହାଯ୍ୟ କରିଥାନ୍ତେ, ସେ ନାନା ପ୍ରକାର ଜାଗତିକ ସୁଖର ଅଧିକାରୀ ହୋଇପାରିଥାନ୍ତେ। କିନ୍ତୁ ସେ ତାହା କରିବାକୁ ରାଜି ହେଲେ ନାହିଁ। ତେଣୁ ଏବେ ସେ ହୋଇଗଲେ ଦାଣ୍ଡର ଭିକାରୀ। ଦିନେ ଯିଏ ମନ୍ତ୍ରୀ ପଦରେ ବସି ଅନେକଙ୍କର ସେବା କରି ପାରୁଥିଲେ, ସେ ଆଜି କାଙ୍ଗାଳ। ତଥାପି ତାଙ୍କ ମନରେ କଷ୍ଟ ନ ଥାଏ।

ସ୍ଥୂଳ ବିଗ୍ଚରରେ ତ୍ରିପୁର ଦାସଙ୍କ ପାଇଁ କାରାବାସ ଏକପ୍ରକାର ଦଣ୍ଡ ହୋଇଥିଲେ ମଧ୍ୟ ତାହାକୁ ସେ ଦଣ୍ଡ ମନେ ନ କରି ପ୍ରଭୁଙ୍କର ଅନୁଗ୍ରହ ଭାବିଥିଲେ। ସତରେ ତାହା ହିଁ ଥିଲା ତାଙ୍କ ପ୍ରତି ପ୍ରଭୁଙ୍କର କରୁଣା। ତାଙ୍କୁ ସବୁ ଦାୟିତ୍ୱରୁ ମୁକ୍ତି ମିଳିଗଲା। ଈଶ୍ୱର କେଉଁ ଲୀଳା ମାଧ୍ୟମରେ କାହାକୁ କେମିତି ଜଞ୍ଜାଳରୁ ମୁକ୍ତି ଦେଇ ଆପଣାର କରିନିଅନ୍ତି, ତାହା ବୁଝିବା କଷ୍ଟକର। ଭଗବାନ ସ୍ୱୟଂ କହିଛନ୍ତି—

**ଯାହାକୁ ଚିତ୍ତେ ଦୟା ମୋର। ସମ୍ପଦ ହରଇ ତାହାର॥**
**ନିର୍ଦ୍ଧନ ଦେଖି ବନ୍ଧୁଜନେ। ତାକୁ ଛାଡ଼ନ୍ତି ଦୁଃଖମନେ॥**
**ତାର ସଂସାରେ ଇଚ୍ଛା ନୋହେ। ବନେ ଭ୍ରମିଣ ଦୁଃଖ ସହେ॥**
**ଏମନ୍ତ ରୂପେମୋତେ ଧ୍ୟାୟି। ପଶଇ ମୋର ଦେହେ ଯାଇ॥**

ଦ୍ୱିତୀୟତଃ ତ୍ରିପୁର ଦାସ ଭଗବାନଙ୍କୁ ଭଲ ପାଇବା କଥା ତ ଜଗତବିଦିତ, ଯୁଆଡ଼େ ଦେଖିବ ଲୋକେ ତାଙ୍କର ଭକ୍ତିବାନା ଉଡ଼ାଉଛନ୍ତି, କିନ୍ତୁ ଭଗବାନ ଯେ ଭକ୍ତକୁ ଏତେ ସ୍ନେହ କରନ୍ତି, ତାହା ଜଗତ ଜାଣିପାରି ନାହିଁ। ବୋଧହୁଏ ତାହା

ଜଣାଇଦେବା ପାଇଁ ଭଗବାନ ଏହି ଲୀଳାଟି ରଚିଲେ। ତାଙ୍କୁ ସଂସାର ଦୃଷ୍ଟିରେ ପ୍ରଥମେ ଦରିଦ୍ର କରି ତା'ପରେ ତାଙ୍କର ମହତ୍ତ୍ୱ ଉଜାଗର କରିବେ ବୋଲି ଭାବିଲେ।

ଯବନ ରାଜା ତ୍ରିପୁରଦାସଙ୍କୁ ବନ୍ଦୀରେ ରଖିବା ଯୋଗୁଁ ତାଙ୍କର ସେବା କରିବାକୁ ଠାକୁରଙ୍କୁ ଏଥର ସୁଯୋଗ ମିଳିଗଲା। ସେହି ଦିନ ରାତ୍ରିରେ ସେ ସ୍ୱପ୍ନରେ ଦେଖାଦେଇ ଯବନକୁ ମେଘଗମ୍ଭୀର ସ୍ୱରରେ କହିଲେ—"ରେ ପାଷଣ୍ଡ! ରେ ବର୍ବର! ତୋର ଏଡ଼େ ସାହସ? ତୁ ଦେବୁ ମୋ ଭକ୍ତକୁ କାରାଦଣ୍ଡ? ତୁ କ'ଣ ଭୁଲିଯାଇଛୁ ଯେ ଭକ୍ତର ରକ୍ଷା ପାଇଁ ମୁଁ ସୁଦର୍ଶନ ଧାରଣ କରିଛି ବୋଲି? ତୋର ଯଦି ଭଲ ଗତି ଅଛି ମୋ ଭକ୍ତକୁ ଶୀଘ୍ର ବନ୍ଦୀଗୃହରୁ ମୁକ୍ତ କରିଦେ। ନଚେତ୍ ତୁ କୁଳ ସହିତ ଦଣ୍ଡକ ଭିତରେ ନାଶଯିବୁ।" ଏତିକି କହି ଠାକୁର ଅନ୍ତର୍ଦ୍ଧାନ ହୋଇଗଲେ। ତାଙ୍କର ମେଘ ସମ ଗର୍ଜନରେ ଯବନରାଜା ବରଡ଼ା ପତ୍ର ପରି ଗୋଟାପଣେ ଥରିଲା। ତା' ଆଖିକୁ ଆଉ କି ନିଦ ଅଛି! ସେହି କ୍ଷଣି ଯାଇ ସେ ତ୍ରିପୁରଦାସଙ୍କୁ ବନ୍ଦୀରୁ ମୁକ୍ତ କରିଦେଲା।

ଆପଣା ପ୍ରତି ପ୍ରଭୁ ଶ୍ରୀନାଥଙ୍କର ଅଲୌକିକ ପ୍ରୀତି ଲକ୍ଷ୍ୟ କରି ତ୍ରିପୁରଦାସ ତାଙ୍କ ପାଦତଳେ ମନ-ପ୍ରାଣ ସମର୍ପଣ କରିଦେଲେ। ସେହିଦିନ ଠାରୁ ସେ ଆଉ ଯବନର ଚାକିରି ନ କରି ପ୍ରଭୁଭକ୍ତିରେ ସମୟ କାଟିଲେ। ଘରେ ରହୁଥିଲେ ମଧ୍ୟ ତାଙ୍କ ମନଭ୍ରମର ଅହର୍ନିଶ ଲାଗି ରହିଥିଲା ଶ୍ରୀନାଥଙ୍କ ଚରଣରେ। ପୂର୍ବେ ସେ ତାଙ୍କୁ ସୁଖ ଦେବା ପାଇଁ ଋତୁ ଅନୁସାରେ ନାନା ପ୍ରକାର ସେବା-ଦ୍ରବ୍ୟ ପଠାଉଥିଲେ। ପ୍ରତି ବର୍ଷ ଶୀତ ଋତୁ ଆସିବା ପୂର୍ବରୁ ଶ୍ରୀନାଥଙ୍କ ପାଇଁ ପୋଷାକ ତିଆରି କରିବାକୁ ତାଙ୍କ ମନ ବ୍ୟାକୁଳ ହୋଇଉଠେ। ସେ ବହୁମୂଲ୍ୟର ଶୀତପୋଷାକ ତିଆରି କରି ପୂଜାରୀଙ୍କ ହାତରେ ଠାକୁରଙ୍କ ସେବା ପଠାଇ ଦିଅନ୍ତି। ଭାବଗ୍ରାହୀ ଶ୍ରୀନାଥ ମଧ୍ୟ ଭକ୍ତର ଉପହାରକୁ ସାଦରେ ଅଙ୍ଗୀକାର କରି ସନ୍ତୁଷ୍ଟ ହୁଅନ୍ତି। ପ୍ରତି ବର୍ଷ ଭଳି ଏ ବର୍ଷ ଶୀତ ଋତୁ ଆସିବାରୁ ତାଙ୍କର ମନେ ପଡ଼ିଲା ଶ୍ରୀନାଥଙ୍କ କଥା। ଏ ବର୍ଷ ପ୍ରଭୁଙ୍କ ପାଇଁ କ'ଣ ପଠାଇବେ, ତାହା ଭାବିବା ମାତ୍ରେ ତାଙ୍କର ନେତ୍ର ଲୋତକରେ ଭରିଗଲା। ଘରେ ତ ସମ୍ପତ୍ତି ବୋଲି କିଛି ନାହିଁ। ଧନ ଥିବା ବେଳେ ଠାକୁରଙ୍କ ପାଇଁ ସେ ସବୁଠୁ ମୂଲ୍ୟବାନ୍ ପୋଷାକ ପଠାଉଥିଲେ। କିନ୍ତୁ ଏବେ ତ ସେ ଦାଣ୍ଡର ଭିକାରୀ। ମନେ ମନେ ଭାବିଲେ, ତେବେ କ'ଣ ତାଙ୍କୁ ସେବାରୁ ବଞ୍ଚିତ ହେବାକୁ ପଡ଼ିବ? ବହୁ ଦିନର ନିୟମ ନିଷ୍ଠା କ'ଣ ଏ ବର୍ଷ ତୁଟିଯିବ? ଏମିତି ଭାବୁ ଭାବୁ

ହଠାତ୍ ଗୋଟିଏ ଘରକରଣା ଜିନିଷ ଉପରେ ତାଙ୍କର ନଜର ପଡ଼ିଲା । ତାହାକୁ ସେ ବଜାରରେ ଟଙ୍କାଏ ମୂଲ୍ୟରେ ବିକିଦେଲେ । ଟଙ୍କାକରେ କି ପୋଷାକ ହେବ? ତଥାପି ସେ ସେଇଥିରେ ଖଦଡ଼ କପଡ଼ା ଥାନଟିଏ କିଣି ଆଣିଲେ। ତା'ପରେ ତାହାକୁ ଧୋଇଧାଇ ନାଲି ରଙ୍ଗରେ ରଙ୍ଗାଇ ଦେଲେ । ବାହାରୁ ଦେଖିବାକୁ ନାଲିରେ ରଙ୍ଗାଇଲେ ସତ, କିନ୍ତୁ ପ୍ରକୃତରେ ତାହା ତାଙ୍କ ହୃଦୟର ଅନୁରାଗ ରଙ୍ଗରେ ରଞ୍ଜିତ ହୋଇଗଲା । ଖଦଡ଼ କପଡ଼ାକୁ ଗ୍ରହଁଦେବା ବେଳକୁ ତାଙ୍କ ଆଖି ଛଳଛଳ ହୋଇ ଆସିଲା । ଭାବିଲେ—ମୋର ପରମ ଆରାଧ୍ୟ ଶ୍ରୀନାଥଙ୍କ ଭଳି ରାଜକୁମାରଙ୍କ ପାଇଁ ଏଇ ଖଦଡ଼ ପୋଷାକ? ହାୟରେ ବିଧାତା! କିଭଳି ଧର୍ମସଂକଟରେ ପକାଇଲୁ! ଲକ୍ଷ୍ମୀ ଯାହାଙ୍କର ପରିଗ୍ରହୀ, ବ୍ରହ୍ମାଦି ଦେବଗଣ ଯାହାଙ୍କର ଚରଣସେବକ, ସକଳ ସୃଷ୍ଟି ଓ ସୌନ୍ଦର୍ଯ୍ୟ ଯାହାଙ୍କର ଭିଆଣ, ତାଙ୍କୁ ଏଭଳି ପୋଷାକ କେମିତି ପିନ୍ଧିବାକୁ ଦେବି? ନା, ନା, ବରଂ ନିୟମ ଭାଙ୍ଗିଯାଉ, କିନ୍ତୁ ପ୍ରଭୁଙ୍କ ପାଇଁ ଏ ଖଦଡ଼ ପୋଷାକ ପଠାଇ ପାରିବି ନାହିଁ। ପୁଣି ଭାବୁଥାନ୍ତି— ପୋଷାକ ନ ପଠାଇଲେ ଶ୍ରୀନାଥ କାଳେ ତାଙ୍କ ଉପରେ ଅଭିମାନ କରି କହିବେ, ତ୍ରିପୁରଦାସ ମୋତେ ଭୁଲିଗଲା ବୋଲି । ପୁଣି ଭାବୁଥାନ୍ତି—ପ୍ରଭୁ ତ ଭାବଗ୍ରାହୀ। ସେ କ'ଣ ମୋର ଦାରିଦ୍ର୍ୟ ସ୍ଥିତି ଓ ଅନ୍ତର ଭାବନା ବୁଝି ପାରିବେ ନାହିଁ। ତାଙ୍କ ନିକଟରେ ଛାର ଦ୍ରବ୍ୟର ମୂଲ୍ୟ ବା କେତେ? ସେ ତ ଦ୍ରବ୍ୟ ମାଧ୍ୟମରେ ଭାବକୁ ସ୍ୱୀକାର କରନ୍ତି ।

ମନ ଭିତରେ ଏଇଭଳି ନାନା ତର୍କ-ବିତର୍କ କରି ଶେଷକୁ ସ୍ଥିର କଲେ ଯେ ଯାହା ହେଲେ ବି ପ୍ରଭୁଙ୍କ ପାଇଁ ପୋଷାକ ପଠାଇବାକୁ ହେବ । ମାତ୍ର କପଡ଼ା ସିଲେଇ କରିବାକୁ ପାଖରେ ପଇସାଟିଏ ନାହିଁ। ଏଭଳି ଦୟନୀୟ ଦଶାରେ ତାଙ୍କର ଆଖିରୁ ଝରଝର୍ ଲୁହ ବହି ଆସିଲା । ଦୈନ୍ୟଭାବରେ ତାଙ୍କର ହୃଦୟ ପରିପୂରିତ ହୋଇଗଲା । ପ୍ରେମଲୋତକ ଓ ଦୈନ୍ୟରସରେ ଅନୁରଞ୍ଜିତ ହୋଇ ବସ୍ତ୍ରଟି ପରମ ପବିତ୍ର ହୋଇଗଲା ଏବଂ ଠାକୁରେ ତାହାକୁ ସେହି କ୍ଷଣି ସ୍ୱୀକାର କରିନେଲେ । ସତରେ ଭକ୍ତର ପ୍ରେମ, ପ୍ରେମାଶ୍ରୁ ଓ ଦୈନ୍ୟଭାବନା ଭଗବାନଙ୍କୁ ଅତ୍ୟନ୍ତ ପ୍ରିୟ । ସେ ଏଥିରେ ବିକି ହୋଇଯାଆନ୍ତି ।

ପ୍ରତି ବର୍ଷ ଠାକୁରଙ୍କ ମନ୍ଦିର ତରଫରୁ ଜଣେ ପୂଜାରୀ ଗୃହସ୍ଥ ଭକ୍ତଙ୍କ ପାଇଁ ଠାକୁରଙ୍କ ଚରଣାମୃତ, ପ୍ରସାଦ ଓ ତୁଳସୀ ନେଇଆସନ୍ତି । ଭକ୍ତଜନ ପ୍ରଭୁଙ୍କ ପ୍ରସାଦ ପାଇ କୃତାର୍ଥ ହୁଅନ୍ତି ଏବଂ ତାଙ୍କ ହାତରେ ଠାକୁରଙ୍କ ସେବା ପାଇଁ ନାନା ପ୍ରକାର

ଉପହାର ପଠାନ୍ତି । ତ୍ରିପୁରଦାସ ସେହି ପୂଜାରୀଙ୍କ ହାତରେ ଠାକୁରଙ୍କ ପାଇଁ ପ୍ରତି ବର୍ଷ ଶୀତବସ୍ତ୍ର ପଠାନ୍ତି । ଏ ବର୍ଷ ମଧ୍ୟ ପୂଜାରୀ ତାଙ୍କ ଗାଁରେ ପହଞ୍ଚି ସମସ୍ତଙ୍କୁ ଚରଣାମୃତ ଓ ପ୍ରସାଦ ଦେଲେ । ଫେରିବା ବେଳକୁ ଭାବିଲେ ଯେ ତ୍ରିପୁରଦାସଙ୍କ ଘରକୁ ଯିବେ କି ନାହିଁ? ସେ ତ ତଳିତଳାନ୍ତ ହୋଇ ଯାଇଛନ୍ତି । ଠାକୁରଙ୍କ ସେବା ପାଇଁ କଣ ବା ଦେଇ ପାରିବେ? ପୁଣି ଭାବିଲେ, ନା, ନା ଏଭଳି ଦୟନୀୟ ସ୍ଥିତିରେ ନିଶ୍ଚୟ ଯିବା କଥା । ସେ ପ୍ରଭୁଙ୍କର ମହାନ୍ ଭକ୍ତ । ଯଦି ତାଙ୍କ ଘରକୁ ନ ଯିବେ, ତେବେ ସେ ଅଭିମାନ କରିବେ ଯେ ଧନ ଥିବା ବେଳେ ପୂଜାରୀ ଆମ ଘରକୁ ଆସୁଥିଲେ, ଅଥଚ ଗରିବ ହୋଇଗଲି ବୋଲି ଠାକୁରଙ୍କର ପ୍ରସାଦ ଓ ତୁଳସୀ ଟିକିଏ ବି ଦେଲେ ନାହିଁ । ଭକ୍ତକୁ ଯଦି କଷ୍ଟ ହୋଇଗଲା, ତେବେ ତାହା ଠାକୁରଙ୍କୁ କଦାପି ଭଲ ଲାଗିବ ନାହିଁ । ଏହିପରି ବିଚ୍ୟର କରି ପୂଜାରୀ ମହାଶୟ ତ୍ରିପୁରଦାସଙ୍କ ଗୃହରେ ପହଞ୍ଚିଲେ । ସେ ମନ ଦୁଃଖରେ ବସି ପ୍ରଭୁଙ୍କୁ ଡାକୁଥାନ୍ତି । ପୂଜାରୀଙ୍କୁ ଦେଖିବା ମାତ୍ରେ ତାଙ୍କର ନେତ୍ର ପ୍ରେମାଶ୍ରୁରେ ପରିପୂରିତ ହୋଇଗଲା । ଭାବିଲେ—"ମୋର କିଛି ନ ଥିଲେ କ'ଣ ହେଲା, ମୋ ପ୍ରଭୁ ତ ମୋତେ ମନେ ରଖିଛନ୍ତି । ଗରିବ ଭାବି ହୀନିମାନ ତ କରି ନାହାନ୍ତି । ମୋର ଆଉ କ'ଣ ବା ଲୋଡ଼ା? ସେ ତ ମୋର ପରମ ଧନ ।" ତାଙ୍କୁ ଲାଗିଲା ସତେ ଯେପରି ପୂଜାରୀଙ୍କ ହାତରେ ତାଙ୍କର ଆରାଧ୍ୟ ଠାକୁର ଶ୍ରୀନାଥ ତାଙ୍କ ପାଇଁ ପ୍ରୀତି ସନ୍ଦେଶ ପଠାଇଛନ୍ତି । ସେ ସତେ ଯେପରି କହୁଛନ୍ତି—"ତ୍ରିପୁରଦାସ! ତୁ ଏଇଥି ପାଇଁ ଏତେ ମନ ଦୁଃଖ କରୁଛୁ! ମୋର ବହୁମୂଲ୍ୟ ରେଶମୀ ବସ୍ତ୍ର ଲୋଡ଼ା ନାହିଁ । ତୋ ଭାବନାକୁ ମୁଁ ବହୁ ପୂର୍ବରୁ ଅଙ୍ଗୀକାର କରି ସାରିଛି ।" ସେ ଧଡ଼ପଡ଼ ହୋଇ ଉଠି ପୂଜାରୀଙ୍କୁ ସମ୍ମାନ ଜଣାଇଲେ । ତାଙ୍କ ପାଦ ଧୋଇ ଦେଇ ସାଦରେ ପାଛୋଟି ଆଣି ଆସନରେ ବସାଇଲେ । ପ୍ରଭୁଙ୍କ ଭଲମନ୍ଦ କଥା ପଚ୍ୟରିଲେ । ପୂଜାରୀ ମହାଶୟେ ପ୍ରଭୁଙ୍କ କଥା କହୁ କହୁ ତ୍ରିପୁରଦାସ ଭାବରେ ମଗ୍ନ ହୋଇଗଲେ । କିଛି ସମୟ ପରେ ପୁଣି ବାହ୍ୟଜ୍ଞାନ ଫେରିପାଇ କହିଲେ—"ଆଜ୍ଞା! ମୁଁ ମହା ଦରିଦ୍ର । ଏ ବର୍ଷ ମୋ ପାଖରେ ଠାକୁରଙ୍କୁ ଦେବାକୁ କିଛି ନାହିଁ । ପ୍ରଭୁ କାଳେ ମାନ କରିବେ ବୋଲି ତାଙ୍କ ପାଇଁ ଏଇ ଖଦଡ଼ କପଡ଼ା ଥାନଟି ଆଣିଛି । କିନ୍ତୁ ମୋ ପ୍ରଭୁ ଏଇ ଖଦଡ଼ ପୋଷାକ ପିନ୍ଧିବେ, ଆଉ ଏ ଅଭାଗା ନେତ୍ର ସେ ରୂପ ଦର୍ଶନ କରିବ । ନା, ନା ଗୋସେଇଁ! ପ୍ରତି ବର୍ଷର ନିୟମ ଦୃଷ୍ଟିରୁ ତୁମେ ଖଦଡ଼ ବସ୍ତ୍ରଟି ନେଇଯାଅ ପଛକେ, କିନ୍ତୁ ଗୋସାଇଁଙ୍କୁ ଏହା ଦେଖାଇବ ନାହିଁ । ଭଣ୍ଡାର

ଗୃହରେ ଅନ୍ୟ କୌଣସି କାର୍ଯ୍ୟରେ ଲଗାଇଦେବ । ଗୋସାଇଁ ମହାପ୍ରଭୁ ପଗ୍ଚରିଲେ ତାଙ୍କୁ ମୋର ପ୍ରଣାମ ଜଣାଇ ଦେବ । ଠାକୁରଙ୍କୁ ମୋ ତରଫରୁ କହିବ—"ପ୍ରଭୁ! ତ୍ରିପୁରଦାସ ତୁମ ପାଦତଳେ ପ୍ରଣତି ଜଣାଇଛି । କହିଛି ଯେତେ ଦାରିଦ୍ର୍ୟ ଦେଲେ ବି ଚିନ୍ତା ନାହିଁ, କିନ୍ତୁ ତାକୁ ହୀନିମାନ କରିବ ନାହିଁ, ପାସୋରିଯିବ ନାହିଁ । ଦାସଭାବରେ କେବେ କେମିତି ମନେ ପକାଉଥିବ୍‌ ।" ଏତିକି କହୁ କହୁ ତାଙ୍କ ହୃଦୟ ପ୍ରେମମଗ୍ନ ହୋଇ ଉଠିଲା । ଅନ୍ତରର ଭାବନା ଚକ୍ଷୁ ପଥରେ ଲୋତକରୂପ ଧରି ବହିଆସିଲା । ସେ ଗାମୁଛାରେ ମୁହଁ ଘୋଡ଼ାଇ ଦେଇ ଘର ଭିତରକୁ ଗ୍ଚଲିଗଲେ ।

ପ୍ରଭୁଙ୍କ ପ୍ରତି ତ୍ରିପୁରଦାସଙ୍କର ଆନ୍ତରିକ ପ୍ରୀତି ଲକ୍ଷ୍ୟ କରି ପୂଜାରୀ ପରମ ସନ୍ତୁଷ୍ଟ ହେଲେ । ସେ ଫେରି ଆସି ପ୍ରଭୁଙ୍କୁ ତ୍ରିପୁରଦାସଙ୍କ ପ୍ରଣିପାତ ନିବେଦନ କଲେ, କିନ୍ତୁ ତାଙ୍କର ଖଦଡ଼ କପଡ଼ାଟିକୁ ନେଇ ଭଣ୍ଡାର ଘର ଖଟ ଉପରେ ବିଛାଇଦେଲେ । ପୂଜାରୀଙ୍କର ଏଭଳି ବ୍ୟବହାର ଭାବଗ୍ରାହୀଙ୍କୁ ଭଲ ଲାଗିଲା ନାହିଁ । ସେ ଭକ୍ତର ଯେଉଁ ଭକ୍ତି ଉପହାରକୁ ଆଦରରେ ସ୍ୱୀକାର କରି ସାରିଛନ୍ତି, ତାହାର ଏଭଳି ହତାଦର ତାଙ୍କୁ କେମିତି ବା ଭଲ ଲାଗନ୍ତା! ଭକ୍ତର ମହିମା ଉଜାଗର କରିବା ପାଇଁ ସେଇ ରାତିରେ ସେ ଗୋଟିଏ ଲୀଳା ରଚିଲେ ।

ଗୋସାଇଁ ଶ୍ରୀବିଠଲ୍‌ନାଥ ମହାପ୍ରଭୁ ଶୟନ ସମୟରେ ଦୁଗ୍ଧ ଭୋଗ ସାରି ଆଳତି କଲେ । ତା'ପରେ ପ୍ରଭୁଙ୍କ ଶୟନ ପାଇଁ ଗଜଦନ୍ତ ପଲଙ୍କଟିକୁ ସଜାଇ ଦେଲେ । ଶୀତ ଦିନ । ପ୍ରବଳ ଶୀତ ପଡୁଥାଏ । ପ୍ରଭୁଙ୍କ ସୁଖ ପାଇଁ ସେ ଦୁଗ୍ଧଫେଣ ଭଳି ତୂଳାର ମୃଦୁ ଶଯ୍ୟା ରଚନା କଲେ । ତା' ଉପରେ ତକିଆ ଓ କୋମଳ ରେଶମ ବସ୍ତ୍ର ବିଛାଇ ଦେଇ ପ୍ରଭୁଙ୍କୁ ଶୟନ ପଲଙ୍କ ଉପରକୁ ଆଣିଲେ ଏବଂ ଶୀତ ନିବାରଣ ପାଇଁ ବହୁମୂଲ୍ୟର କେତୋଟି ତୂଳା ରେଜେଇ ଘୋଡ଼େଇ ଦେଲେ । ତା'ପରେ ମନ୍ଦ ମନ୍ଦ ଅଙ୍ଗାର ନିଆଁ ଜଳାଇ ଶୟନ କକ୍ଷକୁ ସୁଖଦ କରିଦେଲେ । ପରିଶେଷରେ ଠାକୁରଙ୍କୁ ଅନୁମତି ମାଗି ମନ୍ଦିରରୁ ବାହାରିବାକୁ ଗ୍ଚହିଁଲା ବେଳେ ଦେଖିଲେ ଠାକୁରେ ଗୋଟାପଣେ ଥରୁଛନ୍ତି । ପଗ୍ଚରିଲେ—"ଜୟ ଜୟ ପ୍ରଭୁ! ପୁଣି ଶୀତ ଲାଗୁଛି? ଏତେ ବ୍ୟବସ୍ଥା କରିବା ପରେ ମଧ୍ୟ ଶୀତ ଗଲାନି କି? ଠିକ୍ ଅଛି, ଆଉ କିଛି ଆଣି ଘୋଡ଼ାଇ ଦେଉଛି ।" ଭଣ୍ଡାର ଘରୁ କେତେକ ବହୁମୂଲ୍ୟ ଉଷ୍ଣବସ୍ତ୍ର ମଗାଇ ଘୋଡ଼ାଇବା ସତ୍ତ୍ୱେ ଶ୍ରୀନାଥଙ୍କର କମ୍ପ ଦୂର ନ ହେବାରୁ ସେ ତାଙ୍କୁ ବହୁ ସମୟ ଯାଏ କୋଳରେ ଗ୍ଚପି ଧରିଲେ । ତଥାପି

ଠାକୁରଙ୍କର ଶୀତ ଦୂର ହେଲା ନାହିଁ; ସେ ସେମିତି ଥରୁଥାନ୍ତି। ଗୋସାଇଁ ବିଠଲ୍‌ନାଥ ବୁଝିଗଲେ ଯେ ଏହା ବାୟୁମଣ୍ଡଳର ଶୀତ ନୁହେଁ, ଲାଗୁଛି କୌଣସି ଭକ୍ତର ପ୍ରୀତି ଉପହାରକୁ ସ୍ୱୀକାର କରିବା ପାଇଁ ପ୍ରଭୁ ଏଭଳି ଲୀଳା କରୁଛନ୍ତି। ନଚେତ୍ ଯେଉଁଠି ଶୟନ କକ୍ଷରେ ତାଙ୍କୁ ଗରମ ଅନୁଭବ ହେଉଛି, ସେଠାରେ ଠାକୁରେ ଥରୁଛନ୍ତି କାହିଁକି?

ସେ ଭଣ୍ଡାର ରକ୍ଷକଙ୍କୁ ଡକାଇ ପଚ୍ଚାରିଲେ—"ପୂଜାରୀ ମହାଶୟ! କେଉଁ କେଉଁ ଭକ୍ତଙ୍କର ଉପହାର ଆଣିଛ କହି ପାରିବ କି?" ସେ ତ୍ରିପୁରଦାସଙ୍କ ନାମଟିକୁ ଛାଡ଼ି ଅନ୍ୟ ସମସ୍ତଙ୍କର ନାମ କହିଗଲେ। ଗୋସାଇଁ ପଚ୍ଚାରିଲେ—"ଏ ବର୍ଷ କ'ଣ ତ୍ରିପୁରଦାସ ପ୍ରଭୁଙ୍କ ପାଇଁ କିଛି ପଠାଇ ନାହାନ୍ତି? କାହିଁ ତୁମେ ତାଙ୍କ ନାମ କହିଲ ନାହିଁ?" ସେ କହିଲେ—"ଗୁରୁଦେବ! ତ୍ରିପୁରଦାସ ଗୋଟିଏ ଉପହାର ପଠାଇଛନ୍ତି ଯେ, କିନ୍ତୁ ତାହା ପ୍ରଭୁଙ୍କର ଯୋଗ୍ୟ ନୁହେଁ। ସେଥିପାଇଁ ମୁଁ ତାହାକୁ ଖଟରେ ବିଛାଇ ଦେଇ ତା' ଉପରେ ଅନ୍ୟାନ୍ୟ ବସ୍ତ୍ର ରଖିଛି।" ଗୋସାଇଁ ପଚ୍ଚାରିଲେ—"କାହିଁକି ଯୋଗ୍ୟ ନୁହେଁ? ଦେଖାଇଲ, ସେ କ'ଣ ପଠାଇଛନ୍ତି?" ସେ ଆଣି ତ୍ରିପୁରଦାସଙ୍କ ଖଦଡ଼ କପଡ଼ାଟିକୁ ଦେଖାଇଲେ। ଗୋସାଇଁ ମହାପ୍ରଭୁ ଅତି ଆଦରରେ ବସ୍ତ୍ରଟିକୁ ହାତରେ ଧରି ବହୁ ସମୟ ପର୍ଯ୍ୟନ୍ତ ଦେଖିଲେ ଏବଂ ନେଇ ସେଥିରେ ଲାଗିଥିବା ଧୂଳି ସବୁ ଝାଡ଼ିଦେଲେ। ତାଙ୍କ ନେତ୍ର ଅଶ୍ରୁଛଳଛଳ ହୋଇଗଲା। ମନେ ମନେ କହିଲେ, "ଏବେ ବୁଝି ପାରିଲି କାହିଁକି ମୋର ଶ୍ରୀନାଥ ଶୀତରେ ଥରୁଛନ୍ତି। ଯେଉଁ ଉପହାର ତାଙ୍କୁ ସବୁଠୁ ପ୍ରିୟ, ତାହାକୁ ଧୂଳି ଧୂସରିତ ହେବା ଦେଖି ସେ ସହି ପାରିଲେ ନାହିଁ।" ସେ ଦରଜିକୁ ଡକାଇ ତ୍ରିପୁରଦାସଙ୍କ ଖଦଡ଼ କପଡାଟିକୁ ସେହିକ୍ଷଣି ସିଲେଇ କରାଇଲେ। ତା'ପରେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗି କରାଇ କହିଲେ—"ଏଇ ନିଅ ତୁମର ପ୍ରୀତି ଉପହାର। ଏବେ ତ ଶୀତ ଦୂର ହେଲା? ଏ କଥାଟି ଆଗରୁ ନ କହିଲ କାହିଁକି? ମୁଁ ତୁମର ଅଳି ଅଝଟ ଜାଣେ ପରା!"

ଠାକୁରଙ୍କର କମ୍ପ ଦୂର ହେଲା। ତାଙ୍କ ନେତ୍ର ଲୋତକପୂର୍ଣ୍ଣ ହୋଇଗଲା। ସେ ଟିକିଏ ଆଶ୍ୱସ୍ତ ହୋଇ ଭାବଭରା କଣ୍ଠରେ କହିଲେ—"ଗୋସାଇଁ! ଏବେ ଶୀତ ଦୂର ହେଲା। ମୋ ଭକ୍ତ ଦେଇଥିବା ଉପହାର ଲୋକଙ୍କ ଦୃଷ୍ଟିରେ ଖଦଡ଼ ହୋଇପାରେ, କିନ୍ତୁ ତାହା ମୋ ପାଇଁ ଅମୂଲ୍ୟ।" ଠାକୁରଙ୍କର ଏପରି ଅଲୌକିକ ଲୀଳାରୁ ସମସ୍ତଙ୍କୁ ବିଶ୍ୱାସ ହୋଇଗଲା ଯେ ଭକ୍ତ ଭଗବାନଙ୍କୁ କେତେ ପ୍ରିୟ!

ଭଗବାନ ପ୍ରଥମେ ତ୍ରିପୁରଦାସଙ୍କର ସର୍ବସ୍ୱ ହରଣ କରି, ତା'ପରେ ତାଙ୍କ ପ୍ରଦତ୍ତ ଖଦଡ଼ ପୋଷାକ ପରିଧାନ କଲେ ଏବଂ ଜଗତକୁ ଜଣାଇ ଦେଲେ ଯେ ଭକ୍ତର ପ୍ରୀତିପୂର୍ଣ୍ଣ ଉପହାରକୁ ସେ କେତେ ଭଲ ପାଆନ୍ତି! ଏ ସମାଚ୍ଚାର ବିଜୁଳି ଗତିରେ ଚ୍ଚରିଆଡ଼େ ବ୍ୟାପିଗଲା। ତ୍ରିପୁରଦାସ ପ୍ରଭୁଙ୍କର ଅପାର କରୁଣା ଅନୁଭବ କରି ଆନନ୍ଦ ବିଭୋର ହୋଇ ଉଠିଲେ। ଠାକୁରଙ୍କ ସେବା ପ୍ରତି ତାଙ୍କର ଭାବନା ଆହୁରି ବଢ଼ି ଚ୍ଚଲିଲା। ସେ ଜୀବନର ଶେଷ କ୍ଷଣ ପର୍ଯ୍ୟନ୍ତ ପ୍ରଭୁଙ୍କ ସେବାରେ ନିଜକୁ ନିଯୁକ୍ତ କରି ପରମଧାମର ଅଧିକାରୀ ହେଲେ।



## ଗୀତା ପଣ୍ଡା

ଆଜିକାଲି ପ୍ରାୟ ସମସ୍ତଙ୍କ ବୁଦ୍ଧିରେ ଏହି କଥାଟି ଘର କରିଯାଇଛି ଯେ, କର୍ମ କଲେ ହିଁ ଫଳ ମିଳେ। କର୍ମ ଓ କର୍ମଫଳ ସମ୍ବନ୍ଧରେ ଅନେକ ପ୍ରବାଦ ମଧ୍ୟ ଲୋକ ମୁଖରୁ ଶୁଣିବାକୁ ମିଳେ; ଯଥା—'କର୍ମ ହିଁ ଈଶ୍ୱର', **'ଉଦ୍ୟମେନ ହି ସିଦ୍ଧ୍ୟନ୍ତି କାର୍ଯ୍ୟାଣି ନ ମନୋରଥୈଃ...'**, 'କର୍ମ ବିନା ଭଗବାନ ମଧ୍ୟ କାହାରିକୁ କିଛି ଦେଇ ପାରନ୍ତି ନାହିଁ', 'କଷ୍ଟ ନ କଲେ କୃଷ୍ଣ ମିଳେ ନାହିଁ' ଇତ୍ୟାଦି ଇତ୍ୟାଦି। କର୍ମର ସିଦ୍ଧାନ୍ତ ପ୍ରତିପାଦନ କରୁଥିବା ଶାସ୍ତ୍ରରେ ମଧ୍ୟ ଏହି କଥା ଦେଖିବାକୁ ମିଳେ। ପ୍ରତ୍ୟକ୍ଷରେ ସାରା ସଂସାରରେ ଏହା ହିଁ ପ୍ରମାଣିତ। ପୁଣି ସିଦ୍ଧାନ୍ତ ଦୃଷ୍ଟିରୁ ଏଥିରେ କିଛି ଭୁଲ ମଧ୍ୟ ନାହିଁ। ଧାନ ନ ରୋଇ କେହି କାଟିବାକୁ ଗଲେ କ'ଣ ପାଇବ? କିନ୍ତୁ କର୍ମ, ପରୁଷାର୍ଥ ଓ ଉଦ୍ୟମର ତତ୍ତ୍ୱ ଭଗବତ୍କୃପାଠାରୁ ସମ୍ପୂର୍ଣ୍ଣ ପୃଥକ୍। ଯେପରି ଅବୋଧ ଶିଶୁଟିଏ କିଛି ନ କରୁଥିଲେ ମଧ୍ୟ ବାପା-ମାଆ ତା'ର ଭରଣ-ପୋଷଣ ଓ ରକ୍ଷାର ଭାର ବହନ କରିଥାନ୍ତି, ସେହିପରି ଘଟଣା କେତେକ କ୍ଷେତ୍ରରେ ପ୍ରଭୁଆଶ୍ରିତ ଭକ୍ତ ଜୀବନରେ ମଧ୍ୟ ଘଟିଥାଏ। ଭକ୍ତ ନିଜ ପାଇଁ କିଛି ନ କରି ମଧ୍ୟ ସବୁକିଛି ପାଇଥାଏ। କିନ୍ତୁ ଏହା କେତେବେଳେ ହୋଇଥାଏ ଓ କେଉଁ ଭକ୍ତ ପାଇଁ ଏପରି ଘଟିଥାଏ? ଭଗବାନ ଗୀତାରେ ସ୍ପଷ୍ଟରୂପେ ଏହାର ଉତ୍ତର ଦେଇଛନ୍ତି—

**ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍॥**

(ଗୀତା ୯।୨୨)

''ଯେଉଁମାନେ ଅନନ୍ୟ ଭାବରେ ମୋତେ ଚିନ୍ତନ କରି ମୋର ଉପାସନା କରନ୍ତି, ସେମାନଙ୍କର ଯୋଗ ଓ କ୍ଷେମ ମୁଁ ବହନ କରେ।''

ଏହାର ଗୂଢ଼ ଅର୍ଥ ହେଲା—କୌଣସି ବିଷୟରେ ହେଲେ ବି ଯେଉଁ ଭକ୍ତ କାହାରି ଉପରେ ତିଳେମାତ୍ର ଭରସା କରି ନ ଥାଏ ଅର୍ଥାତ୍ ଧନବଳ, ଜନବଳ, ବିଦ୍ୟାବଳ ଓ ବୁଦ୍ଧିବଳ ଉପରେ ଯାହାର ତିଳେମାତ୍ର ଆସ୍ଥା ନ ଥାଏ; ଯଥା—'ଧନବଳରେ ମୁଁ ଅମୁକ କାମ କରିପାରିବି', 'ଅମୁକ ଅଫିସର ବା ମନ୍ତ୍ରୀ ମୋର ପରିଚିତ, ଚେଷ୍ଟା କଲେ ମୋ କାମ ହୋଇଯିବ', 'ମୋ ରୋଗକୁ ଡାକ୍ତର ଭଲ କରିଦେଇ ପାରିବେ', 'ଅମୁକ ସମସ୍ୟା ଅମୁକ ଅମୁକ ଉପାୟରେ ବା ଅମୁକ ପୂଜାପାଠ ଦ୍ୱାରା ସମାଧାନ ହୋଇପାରିବ'—ଏପରି ଅନ୍ୟ କାହା ଉପରେ ଭରସା ନ ଥାଏ, ତାହାରି ଦ୍ୱାରା ହେଉଥିବା ଭଗବତ୍ ଚିନ୍ତନ ହିଁ ପ୍ରକୃତରେ ଅନନ୍ୟ ଚିନ୍ତନ ଏବଂ ସେ ହିଁ ଅନନ୍ୟ ଉପାସକ। ସେ ଯେତେବେଳେ ଅନ୍ୟ ସବୁରି ଆସ୍ଥା ଭରସା ଛାଡ଼ି ଏକମାତ୍ର ସର୍ବସମର୍ଥ ଭଗବାନଙ୍କ ଉପରେ ଆଶ୍ରିତ, ଭଗବାନ ତାକୁ ସ୍ୱର୍ଗକୁ ପଠାଇବେ କି ନରକକୁ ପଠାଇବେ କି ମୋକ୍ଷଦେବେ, ସେକଥା ସେ ଚିନ୍ତା କରି ନାହିଁ, ଭଗବାନଙ୍କ ଇଚ୍ଛାରେ ନିଜ ଇଚ୍ଛାକୁ ମିଶାଇ ଦେଇଛି, ତାର ଦାୟିତ୍ୱ ଭଗବାନ ବହନ କରିବେ ନାହିଁ ତ ଆଉ କିଏ ବହନ କରିବ? ସର୍ବସମର୍ଥ ହୋଇ ନିଜର ଶରଣାଗତକୁ ସେ କ'ଣ ରକ୍ଷା କରିବେ ନାହିଁ?

କିନ୍ତୁ ଯୋଗକ୍ଷେମର ଅର୍ଥ ନୁହେଁ ଯେ କେବଳ ଭରଣ-ପୋଷଣର ବ୍ୟବସ୍ଥା କରିବା! ଯୋଗକ୍ଷେମ ଶବ୍ଦରେ ଭୌତିକ ଓ ଅଧ୍ୟାତ୍ମିକ ଉଭୟ ପ୍ରକାର ସାଧନ ସାମଗ୍ରୀ ଅନ୍ତର୍ଭୁକ୍ତ। ଭଗବାନ ଯଦି ଅନୁଭବ କରିବେ ଯେ ତା'ପାଇଁ ଭୌତିକ ପଦାର୍ଥର ବ୍ୟବସ୍ଥା ବିନା ସେ ତାଙ୍କୁ ପାଇ ପାରିବ ନାହିଁ, ଏହା ବିନା ତା' ଜୀବନର ବାସ୍ତବିକ ଲକ୍ଷ୍ୟ ପ୍ରାପ୍ତିରେ ବାଧା ସୃଷ୍ଟି ହେବ, ତେବେ ସେ ତାହା ତାକୁ ଦେଇଥାନ୍ତି। ଯଦି କୌଣସି ସୁଖ ସାମଗ୍ରୀ ହେତୁ ତା'ର ଲକ୍ଷ୍ୟପ୍ରାପ୍ତିରେ ବାଧା ସୃଷ୍ଟି ହେବାର ଦେଖନ୍ତି, ତାହା ତାକୁ ଦିଅନ୍ତି ନାହିଁ, ଅଥବା ତାହା ତା'ଠାରୁ ଛଡ଼ାଇ ନିଅନ୍ତି। ଏ ଉଭୟ ପ୍ରକାର ବ୍ୟବସ୍ଥା ଭଗବାନ ହିଁ କରନ୍ତି ତାଙ୍କର ଅନନ୍ୟ ଆଶ୍ରିତ ଭକ୍ତ ପାଇଁ। ସେଥିପାଇଁ ଅନେକ ଭକ୍ତଙ୍କ ଜୀବନରେ ସ୍ତ୍ରୀ, ପୁତ୍ର, ଧନ, ବନ୍ଧୁବାନ୍ଧବଙ୍କର ବିୟୋଗ ଘଟାଇ ସେମାନଙ୍କୁ ସଂସାରରେ ଏକବାର ଅକିଞ୍ଚନ ମଧ୍ୟ କରି ଦେଇଥିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ। ପୁଣି କେତେକ ବୈରାଗୀ ଭକ୍ତ ସ୍ତ୍ରୀ, ପୁତ୍ର, ଘରଦ୍ୱାର ଛାଡ଼ି ଭଜନ କରିବାକୁ ଯାଇଥିବାବେଳେ ତାଙ୍କୁ ଟାଣି ଆଣି ସ୍ତ୍ରୀ-ପୁତ୍ରାଦିରେ ଯୁକ୍ତ

କରି ଦେଇଥିବାର ଦୃଷ୍ଟାନ୍ତ ମଧ୍ୟ ପରିଦୃଷ୍ଟ ହୁଏ। ଏ ଉଭୟ ପ୍ରକାର ବିଧାନ ଯୋଗକ୍ଷେମ ବହନ ରୂପେ ଗଣ୍ୟ। ଭଗବାନ ତାଙ୍କର ଆଶ୍ରିତ ଭକ୍ତର ପତନ ଦେଖିପାରନ୍ତି ନାହିଁ, ଭଗବଦ୍ ମାର୍ଗରେ ଗ୍ଳୁ ଗ୍ଳୁ ଯଦି ତା'ର ପାଦ ଟଳମଳ ହୁଏ, ତାର ପଡ଼ିଯିବାର ସମ୍ଭାବନା ଦେଖାଦିଏ, ତତ୍‌କ୍ଷଣାତ୍ ସେ ତାର ହାତ ଧରି ପକାନ୍ତି ଏବଂ ତାକୁ ଅଗ୍ରସର ହେବାର ପ୍ରେରଣା ଦେବା ସହିତ ତାର ରାସ୍ତାକୁ ଆହୁରି ଅଧିକ ପରିଷ୍କାର ଓ ସୁଗମ କରି ଦିଅନ୍ତି। ଏଠାରେ ଯେଉଁ ଭକ୍ତଙ୍କ ଚରିତ ବର୍ଣ୍ଣନା ହେଉଛି, ତାଙ୍କ ଜୀବନରେ ଭଗବଦ୍‌ବାଣୀରେ ଦୃଢ଼ ବିଶ୍ୱାସ ଓ ଅନନ୍ୟାଶ୍ରୟର ପ୍ରତ୍ୟକ୍ଷ ଫଳ କିପରି ତାଙ୍କର ପାରିବାରିକ ସମସ୍ୟାର ସମାଧାନ କରି ତାଙ୍କୁ ଭଗବଭଜନରୁ ବିଚ୍ୟୁତ କରାଇ ଦେଇ ନ ଥିଲା, ତାହା ସ୍ପଷ୍ଟ ଦୃଷ୍ଟିଗୋଚର ହୁଏ।

ନୀଳାଦ୍ରିବିହାରୀ ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀ ପରମ ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ବାସ କରୁଥିଲେ ଜଣେ ଗରିବ ବ୍ରାହ୍ମଣ। ବିଚରା ବ୍ରାହ୍ମଣଙ୍କର ଉଦର ପୋଷଣ ନିମନ୍ତେ କିଛି ଜୀବିକା ନ ଥିଲା କି ପୈତୃକ ସମ୍ପତ୍ତିର ସମ୍ବଳ ନ ଥିଲା। ତଥାପି ସେ ସନ୍ତୋଷୀ ଥିଲେ, ଭଗବଦ୍‌ବିଶ୍ୱାସୀ ଥିଲେ। ଏତେ ନିର୍ଦ୍ଧନତାରେ ମଧ୍ୟ ତ୍ୟାଗ, ତପସ୍ୟା ଓ ଅପରିଗ୍ରହ ଗୁଣ ତାଙ୍କର ବାହ୍ମଣତ୍ୱରେ ସ୍ପଷ୍ଟ ଝଲସି ଉଠୁଥିଲା। କେବଳ ଭଗବାନଙ୍କ ଭରସାରେ ନିଃସ୍ୱ ବ୍ରାହ୍ମଣ ଶାସ୍ତ୍ରାନୁମୋଦିତ ଭିକ୍ଷାବୃତ୍ତି ଦ୍ୱାରା ନିଜର ଓ ପରିବାରର ଉଦର ପୋଷଣ ମାତ୍ର କରୁଥିଲେ। ଅବଶିଷ୍ଟ ସମୟ ଭଗବାନଙ୍କ ସ୍ମରଣ ଚିନ୍ତନରେ ହିଁ ବ୍ୟତୀତ କରୁଥିଲେ। ଭଗବାନଙ୍କ ମୁଖନିଃସୃତ ଶ୍ରୀମଭଗବଦ୍‌ଗୀତା ହିଁ ଥିଲା ତାଙ୍କର ସବୁଠାରୁ ପ୍ରିୟ ଗ୍ରନ୍ଥ। ପ୍ରତ୍ୟହ ସେ ସକାଳୁ ସ୍ନାନାଦି ନିତ୍ୟକର୍ମ ସାରି ଅଠର ଅଧ୍ୟାୟ ଗୀତା ଆମୂଳଚୂଳ ପାଠ କରନ୍ତି। ଗୀତା ପ୍ରତି ତାଙ୍କର ପ୍ରଗାଢ଼ ନିଷ୍ଠା ଦେଖି ଲୋକେ ତାଙ୍କୁ ଗୀତାପଣ୍ଡା ବୋଲି କହନ୍ତି। ଏହି ନାମରେ ସେ ଲୋକମୁଖରେ ପରିଚିତ ହୋଇଯାଇଥା'ନ୍ତି। କେବଳ ନାମକୁ ମାତ୍ର ଗୀତା ପଢ଼ି ସେ ଯେ ନିତ୍ୟନିୟମ ରକ୍ଷା କରନ୍ତି ତା ନୁହେଁ, ଗୀତାର ଗୋଟିଏ ଗୋଟିଏ ଶ୍ଳୋକର ଭାବ ଓ ମର୍ମ ବୁଝି ବୁଝି ତାହା ପାଠ କରନ୍ତି। ବେଳେ ବେଳେ ଅଦ୍ଭୁତ ଭାବ ତଥା ରସର ଉପଲବ୍ଧିରେ ହର୍ଷ ଓ ବିସ୍ମୟରେ ପୁଲକିତ ହୋଇଉଠେ ତାଙ୍କର ତନୁ, ମନ ଓ ପ୍ରାଣ। ଭକ୍ତଙ୍କ ପ୍ରତି ଭଗବାନଙ୍କର ଅହୈତୁକୀ କୃପା ଦେଖି ତାଙ୍କ ଅଙ୍ଗପ୍ରତ୍ୟଙ୍ଗରେ ଶିହରଣ ଖେଳିଯାଏ; ନୟନରୁ ସ୍ରବିତ ହୁଏ ଶୀତଳ ବାରିର ଅବାରିତ ଧାରା। କଣ୍ଠ ବାଷ୍ପରୁଦ୍ଧ ହୋଇଯାଏ, ମୁଖରୁ ବାକ୍ୟ ସ୍ଫୁରିତ ହୁଏ ନାହିଁ, ପ୍ରକମ୍ପିତ ଓଷ୍ଠ ଓ କୋହ ପୂରିତ ହୃଦୟ ହେତୁ ପାଠ ଅବରୋଧ ହୋଇଯାଏ।

ଏହିରୂପେ ଅଠର ଅଧ୍ୟାୟ ପାଠ ସାରି ସେ ଭିକ୍ଷାର୍ଥେ ବାହାରି ପଡ଼ନ୍ତି। ପ୍ରାରବ୍ଧ ଅନୁସାରେ ଅଳ୍ପ ବହୁତ ଯାହା ମିଳେ, ସେତିକି ଆଣି ପତ୍ନୀକୁ ଦିଅନ୍ତି। ସେତିକିରେ ତାଙ୍କର ଚୁଲି ଜଳେ ଓ ପାଞ୍ଚ ପ୍ରାଣୀଙ୍କର ଜୀବନ ରକ୍ଷା ହୁଏ।

ଗୀତା ହିଁ ସେହି ବିପ୍ରଙ୍କର ଜୀବନ। ସେ ହୃଦୟଙ୍ଗମ କରିଥାନ୍ତି ଯେ ଯେଉଁ ଗୀତା ସ୍ୱୟଂ ପଦ୍ମନାଭ ଭଗବାନଙ୍କ ମୁଖପଦ୍ମରୁ ନିଃସୃତ ହୋଇଛି, ତାହାକୁ ଛାଡ଼ି ଅନ୍ୟ ଯାବତୀୟ ଶାସ୍ତ୍ର ଆଦିକୁ ଅଧ୍ୟୟନ କରି କିଛି ଲାଭ ନାହିଁ। ତେଣୁ ସେ ତାହାକୁ ନିଜ ଜୀବନଚର୍ଯ୍ୟାର ଅଭିନ୍ନ ଅଙ୍ଗ କରିଦେଇଥା'ନ୍ତି। ତାଙ୍କ ଦୃଷ୍ଟିରେ ସ୍ତ୍ରୀ, ପୁତ୍ର, ଧନ ସବୁକିଛି ଅସାର, ସବୁ ମାୟାର ଖେଳ। କେହି କାହାରି ନୁହେଁ, ସମସ୍ତେ ନିଜ ନିଜର ଋଣାନୁବନ୍ଧ ହେତୁ ସଂସାରକୁ ଆସି କୁଟୁମ୍ବ ପରିବାର ସୂତ୍ରରେ ବାନ୍ଧି ହୋଇଛନ୍ତି। ସେମାନଙ୍କର ଭୋଗାଭୋଗ ସରିଗଲେ ପାନ୍ଥଶାଳାରୁ ଯାତ୍ରୀ ଚାଲିଯିବା ପରି ସମସ୍ତେ ନିଜ ନିଜର ସ୍ଥାନକୁ ଚାଲିଯିବେ। ଜୀବ ଯଦି ଏଠାକୁ ଆସି ଏହି ନଶ୍ୱର ଦେହ ଓ ଉପକରଣର ଉପଯୋଗ କରି ନିଜର କର୍ମ ଓ ଜୀବନକୁ ସଜାଡ଼ି ଦେଲା, ଅବିନଶ୍ୱର ପଦକୁ ବା ଭଗବାନଙ୍କୁ ପାଇଗଲା, ତେବେ ତା'ର ଜନ୍ମ ସଫଳ ହୋଇଯିବ। ନଚେତ୍ ବାରମ୍ବାର ପୁଣି ସେହି ଜନ୍ମମୃତ୍ୟୁ ଚକ୍ରରେ ଅନେକାନେକ ଯୋନିରେ ଜନ୍ମ ପାଇ ଦୁଃଖ ଭୋଗ କରିବ। ତେଣୁ ସେ ନିଜ ଜୀବନକୁ ଗୀତାର ଅନୁରୂପ ଛାଞ୍ଚରେ ଢାଳିଦେଇ ଜଳରେ ପଦ୍ମପତ୍ର ପରି ସଂସାରରେ ନିର୍ଲିପ୍ତ ରହୁଥା'ନ୍ତି। ପ୍ରଭୁଙ୍କର ଶରଣ ଗ୍ରହଣ କରି ଓ ସୁଖ-ଦୁଃଖକୁ ସମଜ୍ଞାନ କରି ପ୍ରଭୁଙ୍କୁ ନିବେଦିତ ପ୍ରସାଦ ପାଇ ଆନନ୍ଦରେ କାଳ କାଟୁଥା'ନ୍ତି।

ଥରେ ପ୍ରକୃତିର ପ୍ରକୋପ ହେତୁ ଅନାବୃଷ୍ଟି ହେଲା। କିଛିଦିନ ଭିତରେ ଦୁର୍ଭିକ୍ଷର ସମ୍ମୁଖୀନ ହେବାକୁ ପଡ଼ିଲା ପ୍ରଜାଜନଙ୍କୁ। ଚତୁର୍ଦ୍ଦିଗରେ ହା-ଅନ୍ନର ଚିତ୍କାର। ସମସ୍ତେ ନିଜ ନିଜ ଉଦର ଚିନ୍ତାରେ ବ୍ୟାକୁଳ, ପୁଣି ଭିକାରୀ ବ୍ରାହ୍ମଣକୁ ଭିକ୍ଷା ଦେବ କିଏ? ତିନିଦିନ ହେଲା ବ୍ରାହ୍ମଣ ଦମ୍ପତି ଉପବାସରେ ଅଛନ୍ତି; ପିଲାମାନେ ଏଣୁ ତେଣୁ କିଛି ମୁଠାଏ ପାଟିରେ ପକାଇ ଜଳପାନରେ ଭୋକ ମେଣ୍ଟାଇଛନ୍ତି। ମାତ୍ର ଆଜି ଘରେ ଆଉ କିଛି ନାହିଁ। ସମସ୍ତଙ୍କୁ ନିରାହାର ଉପବାସ କରିବାକୁ ପଡ଼ିବ। ଭିକ୍ଷା ଆଣି ସଂଚୟ କରିବା ଦୋଷାବହ, ତେଣୁ ଭବିଷ୍ୟ ପାଇଁ କିଛି ଅନ୍ନ ସଂଚୟ ନ ଥିଲା ବିପ୍ରଙ୍କ କୁଟିରରେ। ପତିପତ୍ନୀ ଦୁଇ ପ୍ରାଣୀ ସିନା କେବଳ ପାଣି ପିଇ ରହିଯିବେ, କିନ୍ତୁ ପିଲାମାନଙ୍କ ପାଇଁ କି ବ୍ୟବସ୍ଥା? ପିଲାମାନଙ୍କୁ କ୍ଷୁଧାରେ ଆଉଟୁ ପାଉଟୁ ହେବା ଦେଖି କେଉଁ ମାଆ ବା ସହି ପାରିବ! ବ୍ରାହ୍ମଣ

ସିନା ଭଗବାନଙ୍କ ଭରସାରେ ତାଙ୍କରି ବିଧାନକୁ ମଥାପାତି ସାଦରେ ସ୍ୱୀକାର କରିବାକୁ ପ୍ରସ୍ତୁତ, କିନ୍ତୁ ତାଙ୍କର ଆଶ୍ରିତ ସାରା ପରିବାର ତାହାକୁ କିପରି ଗ୍ରହଣ କରି ପାରିବ? ପତ୍ନୀ କେତେଥର ତାଙ୍କୁ କହି ସାରିଲେଣି କେଉଁଠୁ କହି ବ୍ୟବସ୍ଥା କରିବା ପାଇଁ; କିନ୍ତୁ ବ୍ରାହ୍ମଣ ନିରୁପାୟ। ନିଜର ଅସାମର୍ଥ୍ୟ ଓ ନିରୁପାୟ ସ୍ଥିତି ସ୍ପଷ୍ଟ କରିଦେଇଛନ୍ତି ଅନେକ ଥର। ତାଙ୍କ ନିକଟରେ ସମ୍ବଳ କେବଳ ଭଗବଦ୍‌ବିଶ୍ୱାସ ଓ ଭଗବାନଙ୍କ ଆଶ୍ୱାସନା। "ଟିକିଏ ଧୈର୍ଯ୍ୟ ଧରି ସହିଯାଅ। ସବୁରି ରକ୍ଷକ ଭଗବାନ କଣ ଆମକୁ ରକ୍ଷା କରିବେ ନାହିଁ; ନିଶ୍ଚୟ କିଛି ବ୍ୟବସ୍ଥା କରିବେ"—ବାସ୍, କେବଳ ଏହି ଆଶ୍ୱାସନା ଦେଇ ଧର୍ମପତ୍ନୀକୁ ବୁଝାଇ ଆସୁଥାନ୍ତି ତିନିଦିନ ହେଲା। କିନ୍ତୁ ଅନ୍ନ ବିନା କେବଳ ଶୁଖିଲା ଆଶ୍ୱାସନାରେ ତ ଉଦର ଜ୍ୱାଳା ଶାନ୍ତ ହେବ ନାହିଁ। ଅନ୍ନ ହିଁ ତ ଜୀବନର ଅଧାର। ସମସ୍ତଙ୍କ କଷ୍ଟ ଦେଖି ବ୍ରାହ୍ମଣୀ ଚିନ୍ତିତ। କିନ୍ତୁ ବ୍ରାହ୍ମଣ ଚିନ୍ତାମଣିଙ୍କ ଭରସାରେ ଜୀବନନୌକା ଛାଡ଼ି ଦେଇଛନ୍ତି।

ପ୍ରତିଦିନ ପରି ଆଜି ମଧ୍ୟ ବ୍ରାହ୍ମଣ ମାଳା ତିଳକ କରିସାରି ଗୀତା ଧରି ପଢ଼ିବା ଆରମ୍ଭ କରି ଦେଇଛନ୍ତି ଠାକୁର ପୂଜା ଘରେ। ତେଣେ ପିଲାମାନେ ଯାଇ ଲୋଟି ପଡ଼ିଲେ ମାଆର କୋଳରେ। କୋଟରଗତ ଚକ୍ଷୁ। ପେଟ ପିଠିରେ ଲାଗୁଛି। ଭୋକ କଷ୍ଟ ସହି ନ ପାରି କାନ୍ଦି ପକାଉଥାନ୍ତି ପିଲାମାନେ—"ମାଆ! ଆଜି ତ କିଛି ଖାଇବାକୁ ଦେ'। ଆଉ ସହି ହେଉନି। ଆଜି କିଛି ନ ମିଳିଲେ ଜାଣିଥା, ଆମ ଜୀବନ ରହିବ ନାହିଁ।" ପିଲାମାନଙ୍କର ଏହି କରୁଣ ସ୍ଥିତି ଓ ଲୋତକଭରା ନେତ୍ର ଦେଖି କେଉଁ ମାଆ ଅବା ଛାତିକୁ ପଥର କରି ସହିଯାଇ ପାରିବ! ବ୍ରାହ୍ମଣୀଙ୍କର ଧୈର୍ଯ୍ୟବନ୍ଧ ଅଗ୍ରନକ ଭାଙ୍ଗିଗଲା। ସେ ତମତମ ହୋଇ ଧାଇଁ ଆସିଲେ ବ୍ରାହ୍ମଣଙ୍କ ପାଖକୁ। ଅଦିନ ତୁଷାରପାତ ଭଳି ସେ ବରଷି ଗଲେ ଗୀତାଧ୍ୟୟନରେ ନିମଗ୍ନ ସ୍ୱାମୀଙ୍କ ଉପରେ। "କଣ ତୁମ ଗୀତା ପଢ଼ା ସରିବ ନା ନାହିଁ? ଧିକ୍ ତୁମ ଗୀତାପାଠ। ଧିକ୍ ତୁମ ପୁରୁଷପଣିଆ। କିଛି ଗୋଟିଏ ଉଦ୍ୟମ ନ କରି ଘରେ ବସି ବସି ଭଗବାନଙ୍କୁ ଡାକିଲେ କ'ଣ ଭଗବାନ ତୁମ ମୁହଁରେ ଆଣି ଅଜାଡ଼ି ପକାଇବେ ପୁଳାଏ ଅନ୍ନ! ଘରେ ମୁଠାଏ ଦାନା ନାହିଁ, ସକାଳୁ ସକାଳୁ ଗୀତା ପୋଥି ଧରି ବସି ପଡ଼ିଲ! ଯେମିତି ସବୁ ଚିନ୍ତା ମେଣ୍ଟିଯିବ, ପେଟ ପୂରିଯିବ! ଛିଃ ଛିଃ! ଏଭଳି ନିଷ୍କର୍ମା କର୍ମକୁଢ଼ ମଣିଷ ମୁଁ କେଉଁଠି ଦେଖିନି। ପୋଡ଼ିଯାଉନି ତୁମର ସେ ପୋଥି।"

ବ୍ରାହ୍ମଣ ଅବିଚଳିତ ଭାବରେ ଉତ୍ତର ଦେଲେ—"ଆରେ, ଭଗବାନଙ୍କୁ

କାହିଁକି ଗାଳି ଦେଉଛ? ଏଥିରେ ତାଙ୍କର ଦୋଷ କ'ଣ? ଆମର କେଉଁ କର୍ମର ଫଳ ଆମେ ଭୋଗୁଛେ। ନ ହେଲେ କେହି ତ ଭିକ୍ଷା ମୁଠାଏ ଦେଇଥା'ନ୍ତା! କାହାରି ମନରେ ତ ଦୟା ଆସିଥାନ୍ତା! କାଲି ତିନି ଗ୍ୱରିଟା ଗାଁ ବୁଲି ଆସିଲି, କିଛି ମିଳିଲା ନାହିଁ। ମୁଁ ଆଉ କ'ଣ କରିଥାନ୍ତି ଯେ? କାହା ଘରେ ପଶି ଛଡ଼ାଇ ଆଣିଥାନ୍ତି କି? ତୁମେ ତ ଜାଣ କିପରି କାଳ ପଡ଼ିଛି। କିଏ ଦେବାକୁ ଗ୍ୱହିଁବ?''

—''କାଲି ସିନା ମିଳିଲା ନାହିଁ, ଆଜି ହୁଏତ କାହା ମନରେ ଦୟା ଆସିଥାନ୍ତା। କେଉଁଠୁ କିଛି ମିଳି ଯାଇଥାନ୍ତା। ହେଲେ ଦିନ ଗ୍ୱରି ଘଡ଼ି ବିତିଗଲାଣି ତୁମର ଗୀତା ପଢ଼ା ତ ସରୁ ନାହିଁ, ଆଉ ମାଗିବାକୁ ଯିବ କେତେବେଳେ?''

—''ଦେଖ ଆଉ ମାଗିବାକୁ ଯିବାକୁ ଇଚ୍ଛା ହେଉ ନାହିଁ। ପ୍ରଭୁ ଦେବାର ଥିଲେ ନିଶ୍ଚୟ ଦେବେ। ତାଙ୍କର ଆଶ୍ରିତକୁ ସେ କ'ଣ ଭୋକ ଉପାସରେ ମରିବାକୁ ଦେବେ। ସେ ଆମର ପରୀକ୍ଷା ନେଉଛନ୍ତି। ସେଇ ପ୍ରଭୁ ଏକା ପରମ ଦାନୀ। ତାଙ୍କ ବିନା ଆଉ ସମସ୍ତେ ଭିକାରି। ଯେ ନିଜେ ଭିକାରି, ସେ ଆଉ କାହାକୁ କଣ ଦେଇ ପାରିବ? ତୁମେ ତ ଜାଣିଛ, ସୁଦାମାକୁ ଭଗବାନ କେମିତି ଦେଇଥିଲେ?''

—''ହଁ ହଁ ଜାଣିଛି। ହେଲେ ସେ ବି ତ ଦ୍ୱାରକା ଯାଇଥିଲେ କିଛି ମାଗିବାକୁ। ତୁମ ଭଳି ନିଷ୍କର୍ମା ହୋଇ ଘରେ ବସି ପୋଥି ପଢୁ ନ ଥିଲେ ତ!''

—''ଏଇଟା କ'ଣ କର୍ମ ନୁହେଁ। ଏହା ତ ପରମ କର୍ମ, ପରମ ଧର୍ମ, ଉପାସନା। କର୍ମର ଫଳ ସୀମିତ, କିନ୍ତୁ ଏହାର ଫଳ ଅନନ୍ତ। ଅନ୍ନ ବିନା ଗୋଟିଏ ଜନ୍ମରେ ଥରେ ମୃତ୍ୟୁ ହେବ। ହେଲେ ଭଗବାନଙ୍କୁ ଭଜିଲେ ଅସଂଖ୍ୟ ଥର ଜନ୍ମିବା ଓ ମରିବାରୁ ମୁକ୍ତି ମିଳିଯିବ। ପୁଣି ଆଉ କେବେ ଏଭଳି ଦାରିଦ୍ର୍ୟ ଦୁଃଖ ଭୋଗିବାକୁ ପଡ଼ିବ ନାହିଁ।''

—''ତୁମେ ସିନା ତୁମ ମୁକ୍ତି କଥା ଭାବୁଛ, ହେଲେ ଭୋକିଲା ପିଲାମାନଙ୍କୁ କଷ୍ଟରୁ କେମିତି ମୁକ୍ତି ମିଳିବ, ସେ କଥା ଥରେ ହେଲେ ଚିନ୍ତା କଲଣି? ପିଲାମାନେ ବଞ୍ଚିବେ କେମିତି? ଜାଣିଥା ସେମାନେ ମଲେ ମୁଁ ବି ତାଙ୍କ ସଙ୍ଗରେ ମରିବି। ତୁମେ ସମସ୍ତଙ୍କ ଚିନ୍ତାରୁ ମୁକ୍ତି ପାଇଯିବ। ତେଣିକି ତୁମେ ମୁକ୍ତି ବାଟକୁ ଗ୍ୱହିଁବସି ଆନନ୍ଦରେ ଭଜୁଥିବ। କେହି ତୁମକୁ କହିବାକୁ ନ ଥିବେ।''

ବ୍ରାହ୍ମଣ ତଥାପି ଶାନ୍ତ। ସେ ପୁଣି ବୁଝାଇଲେ—''ଭଗବାନଙ୍କୁ ସ୍ମରଣ କର। ସେ ସମସ୍ତଙ୍କର ରକ୍ଷକ। ସେ ସୃଷ୍ଟିର ପାଳନ କର୍ତ୍ତା। ଏଠି ପାଖକୁ ଆସି ଦେଖ ଭଗବାନ ଗୀତାରେ କ'ଣ କହିଛନ୍ତି। ସେ କହିଛନ୍ତି—

**ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ।।**

—''ଯେ ସକଳ କର୍ମ ତେଜି କେବଳ ଅନନ୍ୟ ଭାବରେ ମୋତେ ଭଜେ, ମୋ ବିନା ଅନ୍ୟ କିଛି ଜାଣେ ନାହିଁ, ମୋରି ପାଦପଦ୍ମର ଆଶ୍ରିତ ହୋଇଥାଏ, ତା'ର ସମସ୍ତ ନିର୍ବାହର ଭାର ମୁଁ ନିଜେ ବହନ କରେ ।—ଏକଥା ଭଗବାନ ନିଜେ କହିଛନ୍ତି । ଭଗବାନଙ୍କ ବଚନରେ ତୋର ବିଶ୍ୱାସ ନାହିଁ?''

—''ଯାଉନା! ଖାଲି ବିଶ୍ୱାସ କଲେ ସମସ୍ତଙ୍କ ପେଟ ପୂରିଯିବ? ଆଜିକାଲି ଭଗବାନ ଆସି କାହାଘରେ ଭାର ଭାର ଜିନିଷ ପୂରାଇ ଦେଉଛନ୍ତି, ମୁଁ ତ ଜାଣିନି! ଏ ବିଶ୍ୱାସ ହେଉଛି କେବଳ କର୍ମହୀନ ଲୋକଙ୍କର ସମ୍ବଳ ।''

ସହଜେ ନାରୀ ଜାତି । ପୁଣି କ୍ଷୁଧାରେ ଅଜ୍ଞାନ । ମୁଖରୁ କଟୁ ବଚନ ବାହାରିବା ସ୍ୱାଭାବିକ । କଳିରେ ଅନ୍ନଗତ ପ୍ରାଣ । ଅନ୍ନ ବିନା ତାଙ୍କ କଥା କ'ଣ କହିବା, ଭଲ ଭଲ ସାଧକ ମଧ୍ୟ ଭଗବାନଙ୍କ ଏହି ବଚନର ଭରସାରେ ସାଧନାର ଫଳ ମିଳିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ପାରନ୍ତି ନାହିଁ । ଅଧାରାସ୍ତାରୁ ତାଙ୍କ ମନ ଟଳମଳ ହୁଏ । ଗୃହ ବନ୍ଧନର ସୁଦୃଢ଼ ଲୌହ ଶୃଙ୍ଖଳକୁ ଛିଣ୍ଡାଇ ଚାଲିଆସି ସୁଦ୍ଧା ମାୟାର ମୋହିନୀ ଶକ୍ତି ପ୍ରଭାବରେ କ୍ଷୀଣ ସ୍ୱର୍ଣ୍ଣ ଶୃଙ୍ଖଳ ଆଗରେ ଆପେ ଆପେ ହାତ ବଢ଼ାଇ ବନ୍ଦୀ ହୋଇଯାଆନ୍ତି, ତାହାକୁ ଭୂଷଣ ମନେକରନ୍ତି, ଅଥଳ ପ୍ରପଞ୍ଚ-ସମୁଦ୍ରକୁ ପାର ହୋଇ କୂଳରେ ପହଞ୍ଚି ମଧ୍ୟ ପୁଣି ମାୟାମୋହରେ ବୁଡ଼ିଯାଆନ୍ତି । ଏ ପରିପ୍ରେକ୍ଷୀରେ ଜଣେ ସାଧାରଣ ନାରୀର ଧୈର୍ଯ୍ୟ ବା କେତେ?

ବ୍ରାହ୍ମଣୀଙ୍କ ତାଚ୍ଛଲ୍ୟ ଭରା କଟୁବାକ୍ୟ ଓ ଭଗବାନଙ୍କ ବାଣୀର ଅବମାନନା ଏକାନ୍ତ ଭଗବନ୍ନିଷ୍ଠ ବ୍ରାହ୍ମଣଙ୍କ ମନରେ ଦାରୁଣ ଆଘାତ ଦେଲା । ସେ ରାଗିଯାଇ କହିଲେ—''ଆଚ୍ଛା! ତେବେ ତୁ ଏ ପୋଥିରେ ଲେଖାଯାଇଥିବା ବଚନକୁ ମିଛ ବୋଲି ଭାବୁଛୁ? ତେବେ ଏହାକୁ କାଟି ଦେଇ ପାରିବୁ?''

—''ହଁ, ହଁ, ଥରେ ନୁହେଁ ଦି ଥର ନୁହେଁ, କହିବ ଯଦି ଶହେ ଥର କାଟି ଦେଇ ପାରିବି । ଦେଖାଅ, କେଉଁଠି ଲେଖା ହୋଇଛି । ପୋଥି ତ ତାଳପତ୍ର ମାତ୍ର । ଏଥିରେ କ'ଣ ଭଗବାନ ଭଣ୍ଡାର ଖୋଲି ବସିଛନ୍ତି ଯେ, ମୋତେ ଡରାଉଛ!'' ବ୍ରାହ୍ମଣ ରାଗରେ ତମତମ ହୋଇ ଶ୍ଳୋକଟି ଦେଖାଇଦେଲେ । ସେ ଭାବି ନ ଥିଲେ ଯେ ପତ୍ନୀ ସତକୁ ସତ ଚିରିଦେବ । କିନ୍ତୁ ବ୍ରାହ୍ମଣୀ ଲେଖନୀରେ ତିନିଟା ଗାର କାଟିଦେଲା ପୋଥି ଉପରେ । ପତ୍ନୀର ଦୁଃସାହସ ଦେଖି ବ୍ରାହ୍ମଣ ଅକାବକା

ହୋଇ ଗ୍ରହିଁ ରହିଗଲେ । ସେ ହାୟ! ହାୟ! କରି କହିଲେ—"ଆରେ ଗୁଣ୍ଡାଳୀ! ଏ କ'ଣ କରିଦେଲୁ? ପ୍ରଭୁଙ୍କ ଠାରେ ଏଡ଼େ ଅପରାଧ କଲୁ! ଆଜି ମୋତେ ପୁଣି ଏଇଆ ଦେଖିବାକୁ ହେଲା! ଧିକ୍ ମୋ ଜୀବନକୁ । ମୁଁ ମୂଢ଼ କେମିତି ବଞ୍ଚିରହିଛି ଏ କଥା ଦେଖି?"

ବ୍ରାହ୍ମଣଙ୍କ ମୁଖରୁ ଆଉ ବାକ୍ୟ ସ୍ଫୁରିଲା ନାହିଁ । ପତ୍ନୀ ଉପରେ କ୍ରୋଧ କରି ସେ ଯାଇ ଘର ଭିତରେ ପଶି କବାଟ କିଳିଦେଲେ । ପ୍ରଭୁଙ୍କ ଆଗରେ ଅଶ୍ରୁ ଝରାଇ ନିଜ ମନୋବ୍ୟଥା ପ୍ରକାଶ କରୁ କରୁ ବାହ୍ୟଜ୍ଞାନ ହରାଇ ବସିଲେ । ବ୍ରାହ୍ମଣୀ ମଧ୍ୟ ସ୍ୱାମୀଙ୍କ ଉପରେ ମାନ କରି ଯାଇ ଗମ୍ଭାରି ଭିତରେ ପିଲାମାନଙ୍କୁ ନେଇ ଶୋଇଲା । ପିଲାମାନଙ୍କ କଥା ଚିନ୍ତା କରି ସେ ଲୋତକ ଗଡ଼ାଉଥାଏ । ହେଲେ ଉଭୟଙ୍କ ମନୋବେଦନା ଭିନ୍ନ ଭିନ୍ନ । ଜଣେ ପ୍ରଭୁଙ୍କ ବାକ୍ୟର ଅପମାନରେ ଚିନ୍ତିତ ଥିବାବେଳେ ଆଉ ଜଣେ ପରିବାରର ଉଦର ଚିନ୍ତାରେ ବ୍ୟଥିତ । ଭଗବତ୍ ବିଶ୍ୱାସ ଓ ଆସ୍ଥା ଉପରେ ସାଂଘାତିକ ପ୍ରଶ୍ନବାଚୀ । ଚରମ ନିର୍ଣ୍ଣାୟକ ପରିସ୍ଥିତି । ଚିନ୍ତା କେବଳ ଏମାନଙ୍କର ନୁହେଁ, ସାରା ସଂସାରର ଚିନ୍ତା କରୁଥିବା ଚିନ୍ତାମଣି ମଧ୍ୟ ଚିନ୍ତାରେ ପଡ଼ିଗଲେ । ଆଜିର ସଂକଟ ବ୍ରାହ୍ମଣ ଦମ୍ପତିଙ୍କର ନୁହେଁ, ଭଗବତ୍ ବିଶ୍ୱାସ ଓ ଆସ୍ଥା ଲୋପ ପାଇଯିବାର ସଂକଟ । ଆଜି ଯଦି ସେ ବିଶ୍ୱାସର ଫଳ ନ ଦେବେ, ତାଙ୍କ ପ୍ରଭୁତ୍ୱ, ତାଙ୍କ ସର୍ବେଶତ୍ୱ, ତାଙ୍କ ବିଶ୍ୱମ୍ଭରତ୍ୱ କଳଙ୍କିତ ହୋଇଯିବ । ତାଙ୍କ ଉପରୁ ଲୋକଙ୍କର ଆସ୍ଥା ଉଠିଯିବ । ତେଣୁ ସେ ନିଜ ଭକ୍ତର ରକ୍ଷା ପାଇଁ ବାହାରି ପଡ଼ିଲେ ଗୋପାଳ ବେଶ ହୋଇ । ଅତି ସୁନ୍ଦର ନୀଳମଣି ପରି କାନ୍ତି । ହାତରେ ଧରିଥାନ୍ତି ଠେଙ୍ଗାଟିଏ । ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ମୁଖମଣ୍ଡଳରେ ବିମ୍ବଫଳ ପରି ରଙ୍ଗିମ ଅଧର । କର୍ଣ୍ଣରେ କୁଣ୍ଡଳ । ଲଲାଟରେ କସ୍ତୁରୀ ତିଳକ । ବିଦ୍ୟୁତ୍ କାନ୍ତିପରି ଝଟକୁଥାଏ ପୀତାମ୍ବର । ଏତେ ସୁନ୍ଦର ମନମୋହନ ବେଶ ହୋଇ ମଧ୍ୟ କାନ୍ଧରେ ନାନା ଦ୍ରବ୍ୟରେ ପୂର୍ଣ୍ଣ ଓଜନିଆ ଭାର ବହନ କରି ଆସି ପହଞ୍ଚି ଗଲେ ଗୀତା ପଣ୍ଡାଙ୍କ ଦ୍ୱାର ଦେଶରେ । ମେଘ ଗମ୍ଭୀର ମଧୁର ସ୍ୱରରେ ଡାକ ଦେଲେ, "ପଣ୍ଡାଙ୍କ ଘରେ କିଏ ଅଛ କି? କବାଟ ଖୋଲ । ତୁମ ଜିନିଷ ନିଅ ।"

ତେଣେ ଘର ଭିତରେ ବ୍ରାହ୍ମଣୀ ଚିନ୍ତା ଓ କ୍ଷୁଧାରେ ବ୍ୟସ୍ତ ହେଉଥାନ୍ତି । ଆଖିକୁ ନିଦ୍ରା ମଧ୍ୟ ଆସୁ ନ ଥାଏ । ଏତିକି ବେଳେ ପ୍ରଭୁଙ୍କର ଡାକ ତାଙ୍କ କାନରେ ପଡ଼ିଲା । "କିଏ ଡାକୁଛି? କ'ଣ ଜିନିଷ ଆଣିଛି ବୋଲି କହୁଛି!" ଆଶ୍ଚର୍ଯ୍ୟରେ ପଡ଼ିଗଲେ ବ୍ରାହ୍ମଣୀ । ଧଡ଼ପଡ଼ ହୋଇ ଉଠିଆସି କବାଟ ଖୋଲିଦେଲେ । ଆଖି

ଆଗରେ ଦେଖିଲେ ଅତି ସୁକୁମାର ସର୍ବାଙ୍ଗ ସୁନ୍ଦର ପୁଅଟିଏ। କାନ୍ଧରେ ଅଛି ଓଜନିଆ ଭାର। ରୂପ ଦେଖି ନେତ୍ର ମୁଗ୍ଧ ହୋଇଯାଉଥାଏ, ଆଖି ପିଞ୍ଛୁଡ଼ା ପକାଇବାକୁ ଗ୍ବହୁଁ ନ ଥାଏ। ମାତ୍ର କାନ୍ଧରେ ଏତେ ଓଜନିଆ ଭାର ଦେଖି ତାଙ୍କ ମନରେ ଦୟା ଆସିଲା। ପଗ୍ବରିଲେ, "ତୁମେ କିଏ ବାପ! କାହାକୁ ଖୋଜୁଛ? ଏ ସବୁ କ'ଣ? ଭାର ଟିକିଏ ତଳେ ରଖିଦିଅ, କାନ୍ଧ ଦରଜ କରିବଣି।" ଗୋପାଳ ବେଶଧାରି ପ୍ରଭୁ ଭାର ତଳେ ଥୋଇଦେଇ ମନ୍ଦ ମନ୍ଦ ହସି ସରଳ ଭାବରେ ଉତ୍ତର ଦେଲେ—"ତୁମେ ଚିନ୍ତା କରନା ମାଉସୀ। ମୁଁ ଗୋପାଳପୁଅ। ଭାର ବୋହିବା ତ ମୋର ନିତି ଦିନିଆ ଅଭ୍ୟାସ। ତୁମେ ଏ ସବୁ ଜିନିଷ ଘରକୁ ନେଇଯାଅ। ପଣ୍ଡା ଗୋସେଇଁଙ୍କ ମିତ୍ର ପଠାଇଛନ୍ତି। ପଣ୍ଡା ଗୋସେଇଁଙ୍କ ମିତ୍ରଙ୍କର ମୁଁ ବିଶ୍ୱାସୀ ସେବକ। ସିଏ ମୋତେ ଯେଉଁଠିକି ପଠାନ୍ତି, ମୁଁ ସେଠିକି ଯାଏ। ଅନ୍ୟ କାହା ହାତରେ ପଠାଇଲେ ସେ କାଳେ କିଛି ଏପଟ ସେପଟ କରିଦେବ, ସେଥିପାଇଁ ଏ ଦ୍ରବ୍ୟସବୁ ଦେଇଯିବା ପାଇଁ ମୋତେ ପଠାଇଲେ। ଏହାକୁ ନେଇ ଯତ୍ନରେ ଘରେ ରଖ। ହଁ, ମୁଁ ଆସି ଦେଇଗଲି ବୋଲି ପଣ୍ଡା ଗୋସେଇଁଙ୍କୁ କହିଦେବ। ଆଉ କହିବ ସେ ମୋ ପ୍ରତି ଦୟାଦୃଷ୍ଟି ରଖିଥିବେ। ମୋତେ ମନେ ରଖିଥିବେ।"

ବ୍ରାହ୍ମଣୀ ଅବାକ୍ ହୋଇଗଲେ। ଅଜଣା ଅପରିଚିତ ମଣିଷ ଠାରୁ ରଖିବେ କି ନାହିଁ, ସେ ଭାବିପାରୁ ନ ଥା'ନ୍ତି। ପୁଣି ସ୍ୱାମୀଙ୍କୁ ମଧ୍ୟ ପଗ୍ବରିବାକୁ ଯିବା ପାଇଁ ସଙ୍କୋଚ କରୁଥାନ୍ତି; ତାଙ୍କ ସଙ୍ଗେ ମନୋମାଳିନ୍ୟ ହୋଇଯାଇଛି। ସେ ତାଙ୍କ ଆଗରେ ଅବିଶ୍ୱାସର ଦଲିଲ ଉପସ୍ଥାପିତ କରିଛନ୍ତି। ପୁଣି ଭାବିଲେ, ଯାହା ବି ହେଉ, ଠିକ୍ ଦରକାର ବେଳେ ଆବଶ୍ୟକ ଦ୍ରବ୍ୟ ଆସିଛି ମାନେ ନିଶ୍ଚୟ ମୋ ସ୍ୱାମୀଙ୍କର କେହି ଘନିଷ୍ଠ ଓ ପରିଚିତ ମିତ୍ର ଏସବୁ ପଠାଇଛନ୍ତି; ନଚେତ୍ ଆମର ଏ ଦୁର୍ଦ୍ଦିନ କଥା ଆଉ କିଏ ଜାଣିଥିବ? ଜାଣିଲେ ବି କିଏ ଦୟା କରିବ?

ମାୟାଧରଙ୍କ ମାୟାକୁ ବଡ଼ ବଡ଼ ଦେବତା ମଧ୍ୟ ଜାଣନ୍ତି ନାହିଁ, ପୁଣି ଛାର ନାରୀଟିଏ ବା କେମିତି ଜାଣିବ ! ସେ ପ୍ରଭୁଙ୍କୁ ଚିହ୍ନି ପାରିଲେ ନାହିଁ। ପ୍ରଭୁ ଭାରରୁ କାଢ଼ି ଅଲଗା ଅଲଗା କରି ସବୁ ଦ୍ରବ୍ୟ ତଳେ ଥୋଇଦେଲେ। ସରୁ ଅରୁଆ ଗ୍ବଉଳ, ମୁଗ ଡାଲି, ପରିବା, ଘିଅ ଓ ମସଲା ଠାରୁ ଆରମ୍ଭ କରି ଘରଖର୍ଚ୍ଚ ପାଇଁ ଧନ ପର୍ଯ୍ୟନ୍ତ ସବୁ ପ୍ରକାର ଜିନିଷ ବୋହି ଆଣିଥିଲେ ଗୋପାଳ। ବ୍ରାହ୍ମଣୀ ଗୋଟି ଗୋଟି କରି ବୋହିନେଇ ଘରେ ରଖିଲେ। ଗୋଟିଏ ମାତ୍ର ଭାରରେ ଆସିଥିବା ଧନଦ୍ରବ୍ୟରେ ଘର ପୂରିଗଲା; ରଖିବାକୁ ଜାଗା ରହିଲା ନାହିଁ। ବ୍ରାହ୍ମଣୀ ଆଶ୍ଚର୍ଯ୍ୟ

ହୋଇଗଲେ । ଭାରୁଆର ସାମର୍ଥ୍ୟକୁ ପ୍ରଶଂସା କରି କହିଲେ, "ଆରେ ବାପ, ତୁମେ ଏତେ ଜିନିଷ ଏକୁଟିଆ କେମିତି ବୋହି ଆଣିଲ?" ପ୍ରଭୁ ମନ୍ଦ ମନ୍ଦ ହସି କହିଲେ, "ମୁଁ ଗୋପାଳ ପୁଅଟି! ଭାର ବୋହିବା ମୋ ପାଇଁ କୋଉ ବଡ଼ କଥା! ଯାହାର ମୋ ପ୍ରତି ନିର୍ମଳ ବିଶ୍ୱାସ ଥାଏ, ମୁଁ ତାହାର ଭାର ବୁହେ। ମୁଁ ତାକୁ ମନରୁ ଭୁଲିପାରେ ନାହିଁ; ତା'ର ପାଖେ ପାଖେ ରହି ସାହାଯ୍ୟ କରେ। ତେଣୁ ତୁମେ ସନ୍ଦେହ କର ନାହିଁ। ଏଥର ମୁଁ ଯାଉଛି। ଗୋସେଇଁଙ୍କୁ ମୋ କଥା କହିଦେବ।"

ପ୍ରଭୁଙ୍କ ମୁଖରୁ କଥା ନ ସରୁଣୁ ବ୍ରାହ୍ମଣୀ କହିଲେ—"ନାଇଁରେ ପୁଅ। ଟିକିଏ ରହିଯାଅ। ମୁଁ ଏଇ ସଙ୍ଗେ ସଙ୍ଗେ ରୋଷେଇ ଆରମ୍ଭ କରୁଛି। ଖାଇଦେଇ ଯିବ। ଏତେ କଷ୍ଟରେ ଭାର ବୋହି ଆଣିଲ, ନ ଖାଇ ନ ପିଇ ଉପାସରେ ଯିବ! ଗୋସେଇଁ ଶୁଣିଲେ ମୋତେ କ'ଣ କହିବେ! କହିବେ, ତୁ ତାଙ୍କୁ ଖାଇବାକୁ ଗଣ୍ଡେ ଦେଇପାରିଲୁନି? ତୋର ଏତିକି କାଣ୍ଡଜ୍ଞାନ ନାହିଁ। ଏତେ ପରିଶ୍ରମ କରି ସେ ଭାରବୋହି ଆଣିଲେ, ଅଥଚ ଭୋକରେ ଗଲେ।"

ପ୍ରଭୁ ବିନୀତ ହୋଇ ଉତ୍ତର ଦେଲେ—"ନାଇଁ ମାଉସୀ। ମୋର ତେଣେ ବହୁତ କାମ ଅଛି। ମୋ କାମ କେତେ, ସେ କଥା ଗୋସେଇଁ ଜାଣନ୍ତି। ଅବଶ୍ୟ ପଣ୍ଡା ଗୋସେଇଁଙ୍କ ଘରୁ ଭୋଜନ କରିବାକୁ ମୋର ଭାରି ଇଚ୍ଛା, କିନ୍ତୁ କ'ଣ କରିବି? ମୁଁ ଖାଇପାରିବା ଭଳି ସ୍ଥିତିରେ ନାହିଁ ; ମୋ ଜିଭ ଏମିତି କାଟି ହୋଇ ଯାଇଛି ଯେ ଭୀଷଣ ପୋଡ଼ାଜଳା କରୁଛି। ଏଇ ଦେଖୁନ! ତିନି ଜାଗା କେମିତି ଚିରି ହୋଇଯାଇଛି। ହଉ, ମୁଁ ଯାଉଛି। ପଣ୍ଡା ଗୋସେଇଁଙ୍କୁ ମୋ କଥା କହିଦେବ।" ଏତିକି କହି ମାୟାଧର ସେଠାରୁ ଶୀଘ୍ର ଶୀଘ୍ର ପଳାଇଲେ।

କେତେଦିନରୁ ଅନ୍ନ ଦର୍ଶନ କରି ନ ଥିବା ପରିବାର ପାଇଁ ପ୍ରଚୁର ଅନ୍ନ ଦ୍ରବ୍ୟର ବ୍ୟବସ୍ଥା ହୋଇଗଲା। ବ୍ରାହ୍ମଣୀଙ୍କ ମନରେ ଆନନ୍ଦ ଓ ଆଶ୍ୱସ୍ତିର ରେଖା ଝଲସି ଉଠିଲା। ସେ ସବୁ ଜିନିଷ ପତ୍ରକୁ ଉଠାଇ ନେଇ ଘରେ ସିନା ରଖିଦେଲେ, ହେଲେ ତାହାର ଦାତାକୁ ଚିହ୍ନି ପାରିଲେ ନାହିଁ। ଶୀଘ୍ର ଶୀଘ୍ର ରୋଷଇ ସାରି ଯାଇ ସ୍ୱାମୀଙ୍କୁ ଡାକିଲେ। ସେତେବେଳକୁ ମନର ଅଭିମାନ ଦୂର ହୋଇଯାଇଥାଏ। ହେଲେ ସେ ସ୍ୱାମୀଙ୍କ କଥାରେ ବିଶ୍ୱାସ ନ କରି ଯେଉଁ ତର୍କ କରିଥିଲେ, ସେଥିପାଇଁ ମନରେ ଟିକିଏ ସଙ୍କୋଚ ତାଙ୍କ ସମ୍ମୁଖକୁ ଯିବାରେ ବାଧା ଦେଉଥାଏ। ତଥାପି ସେ ନିଜର ଭୁଲ୍ ବୁଝିପାରୁଥିଲେ। ସେ ସ୍ୱାମୀଙ୍କୁ ଉଠାଇ ଖାଇବାକୁ ଡାକିଲେ।

ଗୀତା ପଣ୍ଡା ଆଶ୍ଚର୍ଯ୍ୟରେ ପଚାରିଲେ, "ଘରେ ତ କିଛି ନ ଥିଲା, ପୁଣି

ଖାଇବାକୁ ଡାକୁଛୁ କେମିତି?" ବ୍ରାହ୍ମଣୀ କହିଲେ, "ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ। ସବୁ ବ୍ୟବସ୍ଥା ହୋଇଯାଇଛି।" ବ୍ରାହ୍ମଣ ଉଠିଆସି ଚାରିଆଡ଼କୁ ଦୃଷ୍ଟି ବୁଲାଇ ଦେଖିଲେ ଯେ ଘର ତାଙ୍କର ପୂର୍ଣ୍ଣ ହୋଇଛି ବିବିଧ ସାମଗ୍ରୀରେ। ଚାଉଳ, ଡାଲି, ପନିପରିବା, ମସଲା ଓ ନାନା ପ୍ରକାର ଖାଦ୍ୟ ଦ୍ରବ୍ୟରେ ଘର ପୂରିଯାଇଛି। ସେ ବିସ୍ମୟରେ ପଚାରିବାରୁ ବ୍ରାହ୍ମଣୀ କହିଲେ, "ତୁମର କେହି ମିତ୍ର ଜଣେ ଏସବୁ ପଠାଇଛନ୍ତି। ତାଙ୍କର ଜଣେ ସେବକ ଏସବୁ ଜିନିଷ ଭାରରେ ବୋହି ଆଣି ଦେଇଗଲା।"

ବ୍ରାହ୍ମଣ ମନେ ମନେ ଭାବିଲେ, ଏ ଜଗତରେ ପୁଣି ମୋର ମିତ୍ର କିଏ, ଯିଏ ଏତେ ଉଦାର ହୋଇପାରିବ? ଏଠି ତ **'ସମ୍ପଦ ବେଳେ ସର୍ବେ ସଖା। ବିପଦେ ନ ଦିଅନ୍ତି ଦେଖା ॥'** ସମ୍ପତ୍ତିବାନ୍ ଲୋକର ସମସ୍ତେ ସାଥୀ ହୁଅନ୍ତି, ଅନାଥ ଗରିବର କେବଳ ଅନାଥର ନାଥ ଜଗନ୍ନାଥ ହିଁ ସହାୟକ। ତେବେ କିଏ ଏ ସବୁ ଦେଇଗଲା!" ବ୍ରାହ୍ମଣୀ କହିଲେ—"ସେ ନିଜକୁ ଗୋପାଳ ପୁଅ ବୋଲି କହୁଥିଲା। ରଙ୍ଗ କଳା ହେଲେ କଣ ହେବ, ବଡ଼ ସୁନ୍ଦର ତାର ରୂପ; ଚାହିଁଲେ ଆଖି ଲାଖିଯିବ। କହୁଥିଲା, ତା ଉପରେ ଯେଉଁମାନେ ବିଶ୍ୱାସ କରନ୍ତି, ସେ ତାଙ୍କର ସେବା କରେ। ତୁମେ କୁଆଡ଼େ ତାକୁ ଭଲଭାବରେ ଜାଣ? ତୁମର ନିର୍ମଳ ଭାବରେ ସେ ତୁମ ପ୍ରତି ବହୁତ ପ୍ରଭାବିତ।"

—"ଆଚ୍ଛା! ତେବେ ତୁ ତାକୁ ଅଟକାଇଲୁ ନାହିଁ କାହିଁକି? ସେ ଏତେ ଜିନିଷ ଆଣି ଦେଇଗଲା, ଅଥଚ ତାକୁ ଗଣ୍ଡେ ଖାଇବାକୁ ନ ଦେଇ ବିଦା କରିଦେଲୁ!"

—"ମୁଁ ତ ବହୁତ ଅଟକାଇଲି। କିନ୍ତୁ ସେ ମନା କଲା। ବିଚରା ବହୁତ କଷ୍ଟ ପାଉଛି। କହିଲା, କଣ କରିବି ମାଉସୀ ମୋ ଜିଭରେ ତିନି ଜାଗା ଚିରି ହୋଇଯାଇଛି। ଧାର ଧାର ରକ୍ତ ବହୁଛି, ଭୀଷଣ ପୋଡ଼ାଜଳା କରୁଛି, ମୁଁ ଖାଇପାରିବି ନାହିଁ। ପଣ୍ଡା ଗୋସେଇଁଙ୍କୁ କହିବ, ସେ ମୋତେ ମନେ ରଖିଥିବେ। ଏତିକି କହି ସେ ବିଜୁଳି ବେଗରେ କୁଆଡ଼େ ଅଦୃଶ୍ୟ ହୋଇଗଲା।"

ବ୍ରାହ୍ମଣୀ ମୁଖରୁ ଏତିକି ଶୁଣିବା ମାତ୍ରେ ବ୍ରାହ୍ମଣ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ। କହିଲେ, "ହାୟରେ ନିଷ୍ଠୁରା! ସେ ଆଉ କେହି ନୁହନ୍ତି। ସେ ସାକ୍ଷାତ୍ ଭକ୍ତ ଦୁଃଖହାରୀ ଭଗବାନ। ତୋରି ପାଇଁ ଆଜି ସେ ଏତେ ଦୁଃଖ ସହିଲେ। ତୁ ତାଙ୍କ ବଚନରେ ମୁନିଆଁ ଲେଖନୀ ଧରି ତିନିଟି ଗାର କାଟିଥିଲୁ ନା? ସେଇ ତିନି

ଗାର ତାଙ୍କ ଜିଭରେ ପଡ଼ିଗଲା । ତାଙ୍କର ଜିଭ କାଟି ହୋଇ ଧାର ଧାର ରକ୍ତ ବୋହୁଛି! ଗୀତା ତ ସାକ୍ଷାତ୍ ପ୍ରଭୁଙ୍କ ସ୍ୱରୂପ । ...ହେ ପ୍ରଭୁ! ମୋର ଅପରାଧ କ୍ଷମା କର । ମୁଁ ଚଣ୍ଡାଳ ତୁମର ବାକ୍ୟ ନେଇ ଦେଖାଇ ଦେବାରୁ ଏପରି ଘଟିଗଲା । ହାୟ! ପ୍ରଭୁ, ତୁମେ ଏ କଣ କଲ? ଶେଷରେ ଏ ଅଧମର ଦାସତ୍ୱ କଲ! ଧନ୍ୟ ପ୍ରଭୁ! ଧନ୍ୟ ତୁମର ଭକ୍ତବତ୍ସଳତା । ମୁଁ ଅଧମ କିନ୍ତୁ ତୁମର ଦର୍ଶନ ପାଇ ପାରିଲି ନାହିଁ ।''

ସ୍ତ୍ରୀ ପ୍ରତି ତାଙ୍କର ଭାବ ବଦଳି ଗଲା । ତାଙ୍କ ଅପରାଧବୋଧ ଲୋତକ ରୂପରେ ବହିଗଲା । ସେ ଆଖିରୁ ଲୁହ ପୋଛି ବ୍ରାହ୍ମଣୀଙ୍କୁ କହିଲେ, ''ତୁ ସତରେ ଧନ୍ୟ ହୋଇଗଲୁ । ସାକ୍ଷାତ୍ ପ୍ରଭୁ ଗୋବିନ୍ଦଙ୍କୁ ତୁ ତୋର ଚର୍ମନେତ୍ରରେ ଦର୍ଶନ କଲୁ ।''

ପତିପତ୍ନୀ ଦୁହେଁ ପ୍ରଭୁଙ୍କ କୃପା ଅନୁଭବ କରି ଆତ୍ମବିଭୋର ହୋଇଗଲେ । ଶେଷରେ ଦୁହେଁ ଏହି ଅପରାଧର ମାର୍ଜନା ପାଇଁ ତରବର ହୋଇ ଧାଇଁଲେ ଠାକୁରଙ୍କ ମନ୍ଦିରକୁ । ଦେଖିଲେ ଠାକୁରଙ୍କ ଜିଭରୁ ରକ୍ତ ବାହାରୁଛି । ଏହା ଦେଖି ବ୍ରାହ୍ମଣଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ପ୍ରଭୁଙ୍କୁ ବାରମ୍ବାର ସାଷ୍ଟାଙ୍ଗ ପ୍ରଣିପାତ କରି ନିଜ ଅପରାଧ ନିମନ୍ତେ ବାରମ୍ବାର କ୍ଷମା ଭିକ୍ଷା କଲେ । ବ୍ରାହ୍ମଣୀ ନିଜ ଅବିଶ୍ୱାସ ଓ ନିଜ ପତିଙ୍କ ଉପରେ କରିଥିବା କ୍ରୋଧ ପାଇଁ ଲଜ୍ଜିତ ତଥା ଅନୁତପ୍ତ ହୋଇ ପ୍ରଭୁଙ୍କୁ କ୍ଷମା ମାଗିଲେ । ଉଭୟଙ୍କ ମନରେ ତତ୍‌କ୍ଷଣାତ୍ ଭଗବାନଙ୍କ ଭକ୍ତବତ୍ସଳତା ସ୍ଫୁରିତ ହୋଇ ଆସିଲା । ତାଙ୍କର ଅଦ୍ଭୁତ ଲୀଳାକୁ ସ୍ମରଣ କରି ଦୁହେଁ ଭାବ ବିଭୋର ହୋଇଗଲେ । ବ୍ରାହ୍ମଣଙ୍କ ନେତ୍ରରୁ ବହିଗ୍ଲିଲା ଅବିରତ ଅଶ୍ରୁଧାରା । ସେ କହିଲେ—''ପ୍ରଭୁ! ତୁମେ ତୁମ ଭକ୍ତକୁ ରକ୍ଷା କରିବାକୁ କିଭଳି ଲୀଳା କରିଥାଅ, ତାହା ତ ବଡ଼ ବଡ଼ ଋଷି ମହର୍ଷି ମଧ୍ୟ ଜାଣନ୍ତି ନାହିଁ । ଆମେ ବା ଛାର ମନୁଷ୍ୟ କ'ଣ ଜାଣିବୁ? ଏ ବିଗ୍ୱରୀ ଅବଳା ତୁମ ବାଣୀର ମହିମା ଜାଣି ନାହିଁ । ତା'ର ଅପରାଧ କ୍ଷମା କର । ଲାଗୁଛି, ତୁମେ ଜାଣି ଜାଣି ଏହି ଲୀଳା ମାଧ୍ୟମରେ ଏ କଥା ପ୍ରକାଶ କରିବାକୁ ଗ୍ୱହୁଁଥିଲ ଯେ, ତୁମ ଉପରେ ଅନନ୍ୟ ଭାବରେ ଭରସା କରିଥିବା କୌଣସି ଭକ୍ତ ତୁମ କୃପାରୁ ବଞ୍ଚିତ ହୋଇ ରହେ ନାହିଁ । ତୁମେ ତାର ଇହଲୋକ ଓ ପରଲୋକର ସମସ୍ତ ଭାର ବହନ କରିଥାଅ । ଗୀତା ସାକ୍ଷାତ୍ ତୁମ ଶ୍ରୀମୁଖ ନିଃସୃତ ବାଣୀ । ଯେ ଗୀତାରୂପୀ ନାବର ଆଶ୍ରୟ ନିଏ, ତୁମେ ସ୍ୱୟଂ ତାହାର କର୍ଣ୍ଣଧାର ସାଜି ତାକୁ ଏ ଭବସାଗରରୁ ପାର କରିଦିଅ । ଏ କଥା ଆଜି ପ୍ରମାଣିତ କରିଦେଲ ପ୍ରଭୁ! ଧନ୍ୟ ତୁମେ କରୁଣାସାଗର । ମୋର କେବଳ ଏତିକି

ମାଗୁଣି ଯେ ତୁମରି ଆଶ୍ରୟରେ ରହି ତୁମ ନାମ ଗୁଣ ଗାଇ ଗାଇ ଏ ଦିନ ଗ୍ଡ଼ିଯାଉ ।''

ଏହିପରି କହି ଦୁହେଁ ଘରକୁ ବାହୁଡ଼ି ଗଲେ । ରୋଷେଇ ହୋଇ ରଖା ଯାଇଥିବା ଭୋଜନ ପ୍ରଭୁଙ୍କୁ ଅର୍ପଣ କରି ପିଲାମାନଙ୍କୁ ଭୋଜନ କରାଇଲେ ଏବଂ ନିଜେ ମଧ୍ୟ ପ୍ରସାଦ ପାଇ ତୃପ୍ତ ହେଲେ ।

ପ୍ରଭୁଙ୍କ କୃପାରୁ ସେମାନଙ୍କର ଆଉ ଅଭାବ ରହିଲା ନାହିଁ । ଦରିଦ୍ର ସୁଦାମାଙ୍କ ପରି ଗୀତା ପଣ୍ଡା ମଧ୍ୟ ପ୍ରଭୁ କୃପାରେ କୃତାର୍ଥ ହୋଇଗଲେ । ନିଜେ ସାଧାରଣ ଭାବରେ ଜୀବନ ନିର୍ବାହ କରି ଦୁଃଖୀ ଦରିଦ୍ରଙ୍କୁ ଦୟା ଓ ଦାନରେ ପରିତୃପ୍ତ କଲେ । ଜୀବନର ଅନ୍ତକାଳ ପର୍ଯ୍ୟନ୍ତ ଶ୍ରୀ ଜଗନ୍ନାଥଙ୍କୁ ଭଜି ଭଗବାନଙ୍କର ଧାମ ପ୍ରାପ୍ତ ହେଲେ ।



# ସାଧ୍ୱୀ ସଖୁବାଈ

ପୁଅ ଭକ୍ତିବନ୍ତ ହେଲେ ସେ କେବଳ ତା'ର ପିତୃକୁଳକୁ ଉଦ୍ଧାର କରେ, କିନ୍ତୁ ଝିଅଟିଏ ଭକ୍ତିମତୀ ହେଲେ ସେ ପିତୃକୁଳ ସହିତ ସ୍ୱାମୀଙ୍କ କୁଳର କୀର୍ତ୍ତି ବଢ଼ାଏ । ଝିଅ ଦୁଇ କୁଳର ହିତ କରୁଥିବାରୁ ତାକୁ 'ଦୁହିତା' କହନ୍ତି । ଯେପରି ଉତ୍ତମ ଲୋକଙ୍କ ସମ୍ପର୍କରୁ ଦୁଷ୍ଟ ଲୋକମାନେ ଉତ୍ତମ ହୋଇଯାଆନ୍ତି, ସେହିପରି ଭକ୍ତଜନଙ୍କର ସାନ୍ନିଧ୍ୟ ପାଇ କ୍ରୂର ପ୍ରକୃତିର ଲୋକେ ମଧ୍ୟ ସୁଚରିତ୍ରବାନ୍ ହେଉଥିବାର ଦେଖାଯାଏ । ଭକ୍ତ ପ୍ରହ୍ଲାଦଙ୍କ ପ୍ରଭୁଭକ୍ତିର ଗଭୀର ପ୍ରଭାବ ପଡ଼ିଥିଲା ଦୈତ୍ୟବାଳକଙ୍କ ଉପରେ । ତାଙ୍କ ପ୍ରଭାବରୁ ଚଟଶାଳୀର ପିଲାମାନେ ଭକ୍ତ ପାଲଟିଗଲେ ଏବଂ ଜଗତଠାକୁର ନରସିଂହରୂପରେ ଆବିର୍ଭୂତ ହୋଇ ତାଙ୍କୁ ରକ୍ଷା କଲେ । ଠିକ୍ ସେହିପରି ସଖୁବାଈର ସାଧୁ ସ୍ୱଭାବରେ ତା' ଶ୍ୱଶୁର ଘରର ସବୁ ଲୋକଙ୍କ ଜୀବନ ଭକ୍ତିରେ ମଜ୍ଜି ଯାଇଥିଲା । ସଖୁବାଈ ସ୍ଥାନରେ ଭଗବାନ ସ୍ୱୟଂ ବନ୍ଧା ହୋଇ ରହିଥିଲେ । ଭକ୍ତର ପ୍ରେମଡୋରୀରେ ବନ୍ଧା ହୋଇ ଭଗବାନ ପିତା, ପୁତ୍ର, ସ୍ୱାମୀ ପ୍ରଭୃତି ରୂପ ଧାରଣ କରି ତାକୁ ସହାୟ ହେବା କଥା ତ ବହୁ ପ୍ରଚଳିତ, କିନ୍ତୁ ଭକ୍ତ ପାଇଁ ସେ ସ୍ତ୍ରୀରୂପ ଧାରଣ କରି ଯେ ତା' ସ୍ୱାମୀର ସେବା କରି ପାରନ୍ତି, ଏହା ଶୁଣିଲେ ନୂଆପରି ଲାଗେ । କିନ୍ତୁ ଏହିପରି ଘଟିଥିଲା ସଖୁବାଈ ଜୀବନରେ ।

ମହାରାଷ୍ଟ୍ରର ପବିତ୍ର କୃଷ୍ଣା ନଦୀ ତଟରେ କର୍‌ଡାହ ନାମକ ଛୋଟ ଗ୍ରାମଟିଏ ।

ସେହି ଗାଁଆରେ ରହୁଥିଲେ ଜଣେ ବ୍ରାହ୍ମଣ। ତାଙ୍କର ପରିବାର କହିଲେ ସେ ସ୍ୱାମୀ-ସ୍ତ୍ରୀ ଦୁଇଜଣ ଓ ଗୋଟିଏ ବୋଲି ପୁଅ। ଏବେ କେଇ ଦିନ ହେଲା ପୁଅଟିକୁ ବାହାକରି ସେ ଘରକୁ ବୋହୂଟିଏ ଆଣିଛନ୍ତି। ବୋହୂଟିର ନାମ ସଖୁ। ସଖୁ ଦେଖିବାକୁ ଯେତିକି ସୁନ୍ଦର, ତା'ର ସଦ୍‌ଚରିତ୍ର, ବିନମ୍ରତା ଓ ଆଜ୍ଞାକାରୀ ଗୁଣ ଆହୁରି ମନମୁଗ୍ଧକର। ତାକୁ ଦେଖିଲେ ଲାଗୁଥାଏ ସତେ ଯେପରି ତା'ର ରୂପ ସୌନ୍ଦର୍ଯ୍ୟକୁ ଏହି ସଦ୍‌ଗୁଣସମୂହ ସୁବର୍ଣ୍ଣରେ ସୁଗନ୍ଧ ଭଳି ବହୁଗୁଣିତ କରୁଛନ୍ତି। ତା' ଠାରେ ଏତେ ସବୁ ଗୁଣ ନିବାସ କରିବାର ଏକମାତ୍ର କାରଣ ହେଲା ସେ ପ୍ରଭୁ ପଣ୍ଢରିନାଥଙ୍କର ପରମ ଭକ୍ତା। କୁହାଯାଏ ଯେ ସକଳ ଦେବଗଣ ସମସ୍ତ ଗୁଣସମେତ ଭକ୍ତ ହୃଦୟରେ ନିବାସ କରିବାକୁ ଲାଳାୟିତ ରହନ୍ତି। ଏ କଥା ପ୍ରତ୍ୟକ୍ଷ ଝଲକୁଥିଲା ସଖୁବାଈର ପବିତ୍ର ଜୀବନରେ।

ସଖୁର ଶାଶୁ, ଶ୍ୱଶୁର ଓ ସ୍ୱାମୀ ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିଲେ ମଧ୍ୟ ସେମାନଙ୍କ ଠାରେ ଲେଶମାତ୍ର ପ୍ରଭୁଭକ୍ତି ନ ଥିଲା। ମହାରାଷ୍ଟ୍ରର ସବୁଆଡ଼େ ମୂର୍ତ୍ତିମତୀ ହୋଇ ହରିଭକ୍ତି ନୃତ୍ୟ କରୁଥିବାବେଳେ ସେମାନଙ୍କ ଘରଟି ହରିଭକ୍ତିବିହୀନ ଶ୍ମଶାନ ଭଳି ମନେ ହେଉଥିଲା। ସଖୁବାଈ ପିଲାଟି ଦିନରୁ ପଣ୍ଢରିନାଥଙ୍କର ସେବା-ପୂଜା କରି ଆସୁଥିଲା। ଠାକୁର ସେବା ନ କରିବାଯାଏ ସେ ଜଳ ମଧ୍ୟ ଗ୍ରହଣ କରେ ନାହିଁ। କିନ୍ତୁ ଶାଶୁଘରର ପରିସ୍ଥିତି ସମ୍ପୂର୍ଣ୍ଣ ବିପରୀତ। ଠାକୁରଙ୍କ ସେବା-ପୂଜା କଥା କିଏ ପଗ୍ଭରେ, ତାଙ୍କର ନାଆଁ ଶୁଣିଲେ ସେମାନେ ଡିଅନ୍ତି। ସଖୁ କିନ୍ତୁ ତା'ର ନିୟମ-ସେବା ଛାଡ଼ିଲା ନାହିଁ। ଗୋଟିଏ ଘରକୋଣରେ ଠାକୁର ପଣ୍ଢରିନାଥଙ୍କ ସେବାପୂଜା ଆରମ୍ଭ କରିଦେଲା।

ସଖୁର ହୃଦୟ ଯେତିକି କୋମଳ ଓ ମୃଦୁମୟ ଥିଲା, ତା'ର ଶାଶୁଟି ସେତିକି କଳିହୁଡ଼ି, କୁଟିଳା ଓ ନୃଶଂସ ଥିଲା। ତା'ର ଶ୍ୱଶୁର ଓ ସ୍ୱାମୀଙ୍କର ସ୍ୱଭାବ ଟିକିଏ ଭଲ ହୋଇଥିଲେହେଁ ଶାଶୁ ସଙ୍ଗରେ ସେମାନେ ମଧ୍ୟ ବିଷ ଗଛର ଶାଖା ଭଳି ସଖୁକୁ କଷ୍ଟ ଦେବାକୁ ଅଣ୍ଟା ଭିଡ଼ି ଠିଆ ହୋଇପଡୁଥିଲେ। ସେମାନେ ମିଳିମିଶି ସଖୁକୁ ନିର୍ଯାତନା ଦେବାରେ ଆଦୌ ଊଣା ରଖୁ ନ ଥିଲେ। କଳରେ ଆଖୁ ପେଡ଼ିବା ଭଳି ସଖୁକୁ ରାତିଦିନ ଖଟାଇ ଖଟାଇ ମାରୁଥିଲେ। କିଛି କାମ ନଥିଲେ ମଧ୍ୟ ସେମାନେ ତାକୁ ଟିକିଏ ବସେଇ ଦିଅନ୍ତି ନାହିଁ। ସକାଳ ପହରୁ ରାତିଯାଏ ଟିକିଏ ନିଶ୍ଚିନ୍ତରେ ବସି ଠାକୁରସେବା କରିବାକୁ ତାକୁ ସମୟ ମିଳୁ ନ ଥାଏ। କଠିନ ପରିଶ୍ରମ କାରଣରୁ ସଖୁର ଦେହ ଧୀରେ ଧୀରେ କୃଶ ଓ କ୍ଳାନ୍ତ

ହୋଇପଡ଼ିଲା । ତଥାପି ସେ ତା' କର୍ତ୍ତବ୍ୟରେ ଅବହେଳା କରୁ ନ ଥାଏ; ଆଳସ୍ୟ, ପ୍ରମାଦର ବଶୀଭୂତ ନ ହୋଇ ମନପ୍ରାଣ ଦେଇ ଶାଶୁ, ଶ୍ୱଶୁର ଓ ସ୍ୱାମୀଙ୍କର ସେବା କରୁଥାଏ । କର୍ତ୍ତବ୍ୟକୁ ଠାକୁରଙ୍କ ସେବା ମନେକରି ସେ ଘରକାମ କଲାବେଳେ ପ୍ରଭୁଙ୍କ ପାଦପଦ୍ମରେ ମନକୁ ଲଗାଇ ରଖେ । ସେ ତା' ଜୀବନରେ ***'କରେ କର କାମ ତୁଣ୍ଡେ ଧର ନାମ ପ୍ରୀତି ରଖ ହୃଦୟରେ'*** ସୂତ୍ରଟିକୁ ବେଶ୍ ଉପଯୋଗ କରିପାରିଥିଲା । ସେ ଦିବାନିଶି ପ୍ରଭୁଙ୍କ ତ୍ରିଭୁବନ ମୋହନ ରୂପକୁ ମନ ମଧ୍ୟରେ ଧ୍ୟାନ କରି ରାମ, କୃଷ୍ଣ, କେଶବ, ମାଧବ, ଗୋବିନ୍ଦ, ବିଠ୍ଠଲ ପ୍ରଭୃତି ପ୍ରଭୁଙ୍କର ପବିତ୍ର ନାମ ଉଚ୍ଚାରଣ କରି ଚାଲିଥାଏ ।

ସଖୁ ଯେତେ କାର୍ଯ୍ୟ କଲେ ବି ଶାଶୁର ମନବୋଧ ହୁଏ ନାହିଁ । ସେ ଠାକୁର ପୂଜାରେ ବସିଲେ ଶାଶୁ ଦେହ ସହେ ନାହିଁ । କେଉଁଆଡୁ ରାକ୍ଷାସୁଣୀ ଭଳି ଦୌଡ଼ି ଆସି ସେ ତା' ବାପା-ମାଆଙ୍କ ନାଆଁ ନେଇ ଅଯଥା ମନଇଚ୍ଛା ଗାଳିମନ୍ଦ କରେ । ଦିନକ ଭିତରେ ସଖୁର ମାଆ-ବାପାଙ୍କୁ ଓ ସଖୁକୁ ଦଶ ପନ୍ଦର ଥର ଖୁଣ୍ଟା ନ ଦେଲେ ତା' ମନ ବୁଝେ ନାହିଁ । କେବଳ ସେତିକି ନୁହେଁ, ପାଟି ସାଙ୍ଗକୁ ତା'ର ହାତ ମଧ୍ୟ କାମ କରେ । ହାତରେ ଯାହା ପଡ଼ିଲା ସେଇଥିରେ ସେ ସଖୁକୁ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ପିଟି ପକାଏ ।

ଶାଶୁର ଏଭଳି କଠୋର ବ୍ୟବହାରରେ ସଖୁ ବେଳେ ବେଳେ ମର୍ମାହତ ହୋଇପଡ଼େ, ଏ ସବୁ ତାକୁ ଅହସ୍ୟ ବୋଧହୁଏ, କିନ୍ତୁ ସେ ବିଚାରୀ କାହାକୁ ବା କହିବ? ସ୍ୱାମୀଙ୍କ ଆଗରେ ଦୁଇ ଠୋପା ଲୁହ ଝରାଇ ହୃଦୟ ବେଦନାକୁ ଶୀତଳ କରିବାକୁ ମଧ୍ୟ ତା'ର ସାହସ ନ ଥିଲା । ଭାଗ୍ୟର କି ବିଡ଼ମ୍ବନା କେଜାଣି? ସ୍ୱାମୀଙ୍କ ଆଗରେ କହିଲେ ସିଏ ତା'ର ଦୁଃଖ ବୁଝିବା ପରିବର୍ତ୍ତେ ଓଲଟି ମାଆର ପକ୍ଷ ନେଇ ଆହୁରି ଦଣ୍ଡ ଦିଅନ୍ତି । ଏଥିରେ କିଛି ଆଶ୍ଚର୍ଯ୍ୟ କଥା ବି ନାହିଁ । ବିଷ ଗଛରୁ କି ଅମୃତ ଫଳ ଫଳିବ? ତେଣୁ ସଖୁ ନୀରବ ରହିବା ଶ୍ରେୟସ୍କର ମଣେ । ସେ କେତେବେଳେ ଟିକିଏ ବେଳ ପାଇଲେ ଏକାକୀ ବସି ଅନ୍ତରର ଦୁଃଖକାହାଣୀ ଶୁଣାଏ ତା'ର ପ୍ରାଣାଧାର ପଣ୍ଢରିନାଥଙ୍କୁ । ଏଭଳି କଠୋର ନିର୍ଯାତନା ଭିତରେ କେବେ କେମିତି ଠାକୁରଘରକୁ ଯାଇ ପ୍ରଭୁଙ୍କର ହସ ହସ ମୁଖକୁ ଟିକିଏ ଚାହିଁଦେଲେ ସେ ତା'ର ସବୁ ଦୁଃଖ ଭୁଲିଯାଏ । ପୁଣି ପୂର୍ବପରି ଘରର କାମଧନ୍ଦାରେ ଲାଗିଯାଏ । ମାତ୍ର ଶାଶୁର ସ୍ୱଭାବ କେଉଁ ଧାତୁରେ ଗଢ଼ା କେଜାଣି, ସେ ସଖୁକୁ କେବେହେଲେ ଆହା ବୋଲି ପଦେ କହେ ନାହିଁ । ଆହା ବୋଲି କହିବା ଦୂରେ

ଥାଉ, ପଥର ହୃଦୟର ରାକ୍ଷାସୁଣୀ ଶାଶୁ ବୁଢ଼ୀ ତା'ର ଆହାରରେ ମଧ୍ୟ କଟକଣା କରିଦିଏ। ସଖୁ ନିଜେ ରାନ୍ଧିବାଢ଼ି ଶାଶୁ, ଶଶୁର ଓ ସ୍ୱାମୀଙ୍କୁ ନାନା ପ୍ରକାର ବ୍ୟଞ୍ଜନରେ ସନ୍ତୁଷ୍ଟ କରେ। ସେମାନେ ଖାଇପିଇ ମଉଜ କରନ୍ତି, କିନ୍ତୁ ସଖୁକୁ ତା' ହାତରନ୍ଧା ରୋଷେଇରୁ କଣିକାଏ ଚାଖିବାର ସୁଯୋଗ ବି ମିଳେ ନାହିଁ। କୁକୁରକୁ ଦେବା ଭଳି ସଖୁକୁ ପଚାସଢ଼ା ବାସି ଜିନିଷ ଦିନକୁ ଥରେ ଖାଇବାକୁ ଦିଆଯାଏ ଏବଂ ତାହା ମଧ୍ୟ ଅଧାପେଟ। ସେତିକିରେ ବି ଅଜସ୍ର ଗାଳି!

ଏଭଳି ଦାରୁଣ ଦୁଃଖକୁ ସଖୁବାଈ ଭଗବାନଙ୍କର କରୁଣା ବୋଲି ଭାବେ। ତା' ଦୃଷ୍ଟିରେ ପରିସ୍ଥିତି ବୋଲି କିଛି ନ ଥାଏ। ତା' ପାଇଁ ସବୁକିଛି 'ହରିସ୍ଥିତି' ହୋଇ ଯାଇଥାଏ ଅର୍ଥାତ୍ ସୁଖ-ଦୁଃଖର ପ୍ରଭେଦରୁ ସେ ଉର୍ଦ୍ଧ୍ୱକୁ ଚାଲିଯାଇଥାଏ, ସବୁକୁ ସେ ଭଗବାନଙ୍କର ବିଧାନ ବୋଲି ଭାବେ। ସତରେ ସବୁ ପରିସ୍ଥିତି ପ୍ରଭୁଙ୍କର ବିଧାନ ହୋଇଥିଲେ ମଧ୍ୟ ସୁଖଠାରୁ ଦୁଃଖ ଅଧିକ ହିତକାରୀ। ସୁଖରେ ବ୍ୟକ୍ତିର ଗୋଡ଼ ତଳକୁ ଖସିଯାଇପାରେ, ତାକୁ ସାବଧାନ ରହିବାକୁ ପଡ଼େ; କିନ୍ତୁ ଦୁଃଖରେ ଏସବୁର ଡର ନ ଥାଏ। ଅଧୀର ନ ହୋଇ ଦୁଃଖକୁ ସହିଗଲେ ତାହା ଜୀବ ପାଇଁ ପରମ ହିତକର ହୁଏ। ଯିଏ ଦୁଃଖର ଉପକାରିତାକୁ ବୁଝିଯାଏ, ସେ ମାଆ କୁନ୍ତୀଙ୍କ ଭଳି ଭଗବାନଙ୍କୁ ଦୁଃଖର ବରଦାନ ମାଗିବାକୁ ମଧ୍ୟ ପଛାଏ ନାହିଁ। ସଖୁ ମଧ୍ୟ ସେଇଆ କରୁଥାଏ। ସେ ପ୍ରଭୁଙ୍କ ନିକଟରେ ପ୍ରଣତି ଜଣାଇ କହେ— "ହେ ପଣ୍ଢରିନାଥ! ହେ ଦୟାମୟ! ତୁମେ ମୋ ପାଇଁ ଯାହା ବି କରିଛ, ଭଲ କରିଛ। ପରିବାର ଲୋକେ ମୋତେ ଆଦର କରିଥିଲେ ମୁଁ ହୁଏତ ସେମାନଙ୍କ ସ୍ନେହପାଶରେ ବାନ୍ଧି ହୋଇ ତୁମକୁ ପାସୋରି ଯାଇଥାନ୍ତି। ତେଣୁ ତୁମେ ନିର୍ଯାତନା ମାଧ୍ୟମରେ ସବୁ ସ୍ନେହପାଶ କାଟିଦେଇ ମୋତେ ଆପଣାର କରିନେଲ। ପ୍ରଭୁ! ମୋ ପ୍ରତି ତୁମର ଏହିଭଳି କୃପା ରହିଥାଉ, ମୋର ଏତିକି ମାତ୍ର ମାଗୁଣି।" ଏହିଭଳି ଗୁହାରି କରି ସେ ଆନନ୍ଦମଗ୍ନ ହୋଇଯାଏ ଏବଂ ଠାକୁରଙ୍କ ପାଦତଳେ ପ୍ରେମାଶ୍ରୁର ଉପହାର ଚଢ଼ାଇ କୃତଜ୍ଞତା ଜ୍ଞାପନ କରେ।

ଗାଆଁର ଲୋକମାନେ ସଖୁର ଏଭଳି ଦୟନୀୟ ଦଶା ସହି ନ ପାରି ତାକୁ ଆଶ୍ୱାସନା ଦେବାକୁ ଚାହୁଁଥାନ୍ତି, କିନ୍ତୁ ବୁଢ଼ା-ବୁଢ଼ୀଙ୍କ ଡରରେ କେହି ମୁହଁ ଖୋଲି କିଛି କହି ପାରନ୍ତି ନାହିଁ। ସେମାନେ ଭଲଭାବେ ଜାଣନ୍ତି ଯେ ପାଟି ଖୋଲିବାର ଅର୍ଥ କଳି। କୁଆଡୁ ଟିକିଏ ବାଟ ମିଳିଗଲେ ବୁଢ଼ୀ ଆଉ କି ଛାଡ଼େ? ତେଣୁ ସେମାନେ କେବଳ ନୀରବ ସମବେଦନା ଜଣାନ୍ତି।

ଦିନେ ପଡ଼ିଶା ଘରର ଜଣେ ସ୍ତ୍ରୀଲୋକ ଏକାନ୍ତରେ ସଖୁକୁ ପଚ୍ଚାରିଲା— "ସଖୁ! ତୋର କ'ଣ ବାପା-ମାଆ କେହି ନାହାନ୍ତି? ତୁ ଏତେ ଦୁଃଖ ପାଉଛୁ, ଅଥଚ ସେମାନେ ଆସି ତୋତେ ଟିକିଏ ପଚ୍ଚାରୁ ନାହାନ୍ତି? ନ ହେଲେ ତୁ ବାପଘରକୁ ଚ୍ଚାଲିଯାଉନୁ!" ତା' କଥା ଶୁଣି ସଖୁର ନେତ୍ର ଅଶ୍ରୁଛଳଛଳ ହୋଇଗଲା। ସେ ଲୁହକୁ ଆଖି କୋଣରେ ଲୁଚେଇ ରଖି ଟିକିଏ ମୃଦୁ ହସି କହିଲା—"ମୋ ବାପଘର ପଣ୍ଢରପୁର। ଶ୍ରୀକୃଷ୍ଣ ଓ ରୁକ୍ମିଣୀ ହେଉଛନ୍ତି ମୋର ବାପାମାଆ। ମୁଁ ତାଙ୍କର ଗେହ୍ଲା ଝିଅ। ପଣ୍ଢରପୁର ଏଠାରୁ ବହୁ ଦୂର ତ, ସେଇଥିପାଇଁ କେହି ଆସି ପାରୁ ନାହାନ୍ତି। ତା' ଛଡ଼ା ମୋ ବାପା-ମାଆଙ୍କର ଅସଂଖ୍ୟ ପୁଅ-ଝିଅ ଅଛନ୍ତି, ତେଣୁ ବୋଧହୁଏ ମୋତେ ସିଏ ଭୁଲି ଗଲେଣି। ତଥାପି କେବେହେଲେ ତ ମୋ ପାଳି ନିଶ୍ଚୟ ପଡ଼ିବ। ସେ ତାଙ୍କ ନିକଟକୁ ଡକାଇ ନିଶ୍ଚୟ ମୋର ଆଖିର ଲୁହ ପୋଛିଦେବେ।" ଏତିକି କହିଲା ବେଳକୁ ସଖୁର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା। ସେ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ। ପଣତ କାନିରେ ମୁହଁ ଘୋଡ଼ାଇ ଦେଇ ଠାକୁରଘରକୁ ପଶିଯାଇ ଭୋଁ ଭୋଁ ହୋଇ କାନ୍ଦି ପକାଇଲା।

ପ୍ରଭୁ କେବେ ତାଙ୍କ ଭକ୍ତର ନେତ୍ରରେ ଅଶ୍ରୁ ଦେଖି ପାରନ୍ତି ନାହିଁ। ସେ ଲୋତକର ପ୍ରତିଟି ବିନ୍ଦୁର ଉଚିତ ମୂଲ୍ୟ ପରିଶୋଧ କରନ୍ତି। ସଖୁର ଅନ୍ତର୍ବେଦନା ପଡ଼ିଲା ପଣ୍ଢରିନାଥଙ୍କ କର୍ଣ୍ଣରେ। ସଖୁକୁ ଲାଗିଲା ସତେ ଯେପରି ପଣ୍ଢରିନାଥ ତା' ହୃଦୟରେ ବସି ତାକୁ ପ୍ରେରଣା ଦେଉଛନ୍ତି ଯେ "ସଖୁ! ତୁ ସବୁ ଛାଡ଼ିଦେଇ ମୋ ନିକଟକୁ ଚ୍ଚାଲିଆ, ତୋର ସବୁ ଦୁଃଖ ମୁଁ ଦୂର କରିଦେବି।" ସଖୁ ଏଥର କେମିତି ପଣ୍ଢରିନାଥଙ୍କ ନିକଟରେ ପହଞ୍ଚିବ ସେ ଉପାୟ ଖୋଜିଲା।

ମହାରାଷ୍ଟ୍ରର ପବିତ୍ର ତୀର୍ଥମାନଙ୍କ ଭିତରେ ପଣ୍ଢରପୁର ଅନ୍ୟତମ। ପ୍ରତି ବର୍ଷ ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀକୁ ସେଠାରେ ବିରାଟ ଉତ୍ସବ ହୁଏ। ଦୂର-ଦୂରାନ୍ତରୁ ଭକ୍ତଜନ ଆସି ଶ୍ରୀବିଠ୍‌ଠଲନାଥଙ୍କ ଦର୍ଶନ ଲାଭ କରି କୃତାର୍ଥ ହୁଅନ୍ତି। ନାମ ସଂକୀର୍ତ୍ତନରେ ମନ୍ଦିର ପରିସର ମୁଖରିତ ହୋଇଉଠେ। ସେହି ଯାତ୍ରା ଉଦ୍ଦେଶ୍ୟରେ ସଖୁର ଗାଆଁ ବାଟେ ଅସଂଖ୍ୟ ନରନାରୀ ପଣ୍ଢରପୁର ଯାଉଥାନ୍ତି। ସେମାନଙ୍କ ହାତରେ ଛୋଟ ଛୋଟ ପତକା ଖଣ୍ଡିଏ ଖଣ୍ଡିଏ ଶୋଭା ପାଉଥାଏ। ଦଳ ଦଳ ସଂକୀର୍ତ୍ତନ ମଣ୍ଡଳୀ ଖୋଳ, କରତାଳର ତାଳେ ତାଳେ ***'ଜୟ ଜୟ ରାମ କୃଷ୍ଣ ହରି'*** ଗାନ କରୁଥାନ୍ତି। ସଂକୀର୍ତ୍ତନ ଧ୍ୱନିରେ ଖଣ୍ଡମଣ୍ଡଳ କମ୍ପି ଉଠୁଥାଏ। ଭକ୍ତଜନ ପାଦରେ ନୂପୁର ବାନ୍ଧି ନୃତ୍ୟଗୀତରେ ବିଭୋର ହେଉଥାନ୍ତି। ଶ୍ରୀହରିଙ୍କ ନାମଗୁଣ

କୀର୍ତ୍ତନ କରି ସମସ୍ତେ ଏଭଳି ଆନନ୍ଦସିନ୍ଧୁରେ ନିମଗ୍ନ ହେଉଥାନ୍ତି ଯେ ସେମାନଙ୍କୁ ଦେଖି ମନେ ହେଉଥାଏ ସତେ ଅବା ନାଦବ୍ରହ୍ମ ମୂର୍ତ୍ତିମନ୍ତ ହୋଇ ପ୍ରକଟ ହୋଇଯାଇଛନ୍ତି ।

ସଖୁବାଈ ସେତେବେଳକୁ କୃଷ୍ଣା ନଦୀକୁ ପାଣି ଆଣିବାକୁ ଆସିଥାଏ । ନାମ ସଂକୀର୍ତ୍ତନ ଶୁଣି ତା' ମନରେ ପଣ୍ଢରିନାଥଙ୍କ ଦର୍ଶନର ପ୍ରବଳ ଲାଳସା ଉଦୟ ହେଲା । ସେ ଠାକୁରଙ୍କ ଦର୍ଶନ ପାଇଁ ଯିବାକୁ ଘରେ ପଚ୍ଚାରି ଆସିବ ବୋଲି ଭାବୁଥିଲା । ପୁଣି ଭାବିଲା—ଏ ଜନ୍ମରେ ତ ତାକୁ ଘରଲୋକଙ୍କର ଆଜ୍ଞା ମିଳିବା ସମ୍ଭବ ନୁହେଁ । ପଚ୍ଚାରିଲା ମାନେ ମାଡ଼ଗାଳି ବର୍ଷା ହେବ । ପୁଣି ଏହା କୌଣସି ଗର୍ହିତ କାର୍ଯ୍ୟ ମଧ୍ୟ ନୁହେଁ ଯେ ନ ପଚ୍ଚାରି ଚ୍ଚାଲିଗଲେ ପାପ ଲାଗିଯିବ । ପ୍ରଭୁଙ୍କୁ ଦର୍ଶନ କରିବା ତ ଜୀବର ପରମ ଧର୍ମ । ତା' ଛଡ଼ା ପଣ୍ଢରିନାଥ ବହୁ ପୂର୍ବରୁ ତାକୁ ହୃଦୟ ମଧ୍ୟରେ ଅବ୍ୟକ୍ତ ରୂପେ ପ୍ରେରଣା ଦେଇ ସାରିଛନ୍ତି । ତେଣୁ ସନ୍ଥଜନଙ୍କ ମଣ୍ଡଳୀରେ ପଣ୍ଢରପୁର ଚ୍ଚାଲିଯିବା ତା' ପାଇଁ ଅଶୋଭନୀୟ ହେବ ନାହିଁ । ତେଣୁ ସେ ଆଉ ଅଧିକ ତର୍କ-ବିତର୍କ ନ କରି ଭକ୍ତଜନଙ୍କ କୀର୍ତ୍ତନ ମଣ୍ଡଳୀରେ ମିଶିଗଲା । କୀର୍ତ୍ତନରେ ସେ ଏତେ ମଜ୍ଜିଗଲା ଯେ ତା'ର ଦେହଜ୍ଞାନ ରହିଲା ନାହିଁ ।

ସଂସାରରେ ଚୁଗୁଲିଆ ଲୋକଙ୍କର ତ ଅଭାବ ନାହିଁ । କେହି ଜଣେ ଯାଇ ତା' ଶାଶୁକୁ ଏ କଥା କହିଦେଲା । ନାଗୁଣୀ ପରି ସେ ଫଁ ଫଁ ହୋଇ ପୁଅକୁ କହିଲା—"ହଇରେ ମାହିଆ! ତୋ ସ୍ତ୍ରୀ ଭିକାରୀଙ୍କ ସଙ୍ଗେ କୀର୍ତ୍ତନରେ ମାତିଛି, ଆଉ ତୁ ଏଠି ନିଶ୍ଚିନ୍ତରେ ବସିଛୁ? ଛିଃ, ଛିଃ, ଧିକ୍ ତୋ ଜୀବନକୁ । ଆରେ, ଏମିତି ଓଲାଙ୍କ ଭଳି ଚ୍ଚାହିଁଛୁ କ'ଣ? ବେଗି ଯାଆ, ତାକୁ ଘୋଷାରି ଘୋଷାରି ନେଇ ଆସିବୁ ।" ପୁଅ ରାଗରେ ତମତମ ହୋଇ ଦୌଡ଼ିଲା । ମଲା ପଶୁଙ୍କୁ କୁକୁର ଘୋଷାରିବା ଭଳି ସଖୁର ଚୁଟି ଧରି ସେହି କୃଷ୍ଣାନଦୀ ଠାରୁ ଘର ପର୍ଯ୍ୟନ୍ତ ଘୋଷାରି ଘୋଷାରି ଆଣିଲା । ମାଆ-ପୁଅ ଦୁହେଁ ତାକୁ ପିଟିପିଟି ଅଧାମରା କରିଦେଲେ । ପୁଣି ଭାବିଲେ—"ପଣ୍ଢରପୁର ଯାତ୍ରା ଏବେ ପନ୍ଦର ଦିନଯାଏ ଚ୍ଚାଲିବ । ହୁଏତ ପୁଣି କେବେ ପଳେଇ ଯାଇପାରେ । ଏଇଟାର ମୁହଁ ବଢ଼ି ଗଲାଣି, ନ ବାନ୍ଧିବାଯାଏ ଇଏ ଆଉ ସେମିତି ମାନିବ ନାହିଁ ।" ଏମିତି ଭାବି ମାଆ-ପୁଅ ଦୁହେଁ ସଖୁକୁ ଗୋଟାଏ ଲଙ୍ଗଳ ଦଉଡ଼ିରେ ଖୁଣ୍ଟରେ ବାନ୍ଧିଦେଲେ ଏବଂ ତାକୁ ଖାଇବାକୁ କିଛି ଦେଲେ ନାହିଁ ।

ସଖୁର ଦେହ ଘରଖୁଣ୍ଟରେ ବନ୍ଧା ହୋଇ ରହିଲା ସତ, କିନ୍ତୁ ତା' ମନପକ୍ଷୀ

ସମସ୍ତ ମାୟା ବନ୍ଧନର ଫାନ୍ଦ କାଟିଦେଇ ଯାଇ ପହଞ୍ଚିଗଲା ପଣ୍ଢରିନାଥଙ୍କ ପାଦତଳେ ।

ଏହିପରି ଗୋଟିଏ ଅଲୌକିକ ଘଟଣା ଘଟିଥିଲା ଦ୍ୱାପର ଯୁଗରେ । ମଥୁରାର ଜଣେ ଯାଜ୍ଞିକ ବ୍ରାହ୍ମଣ କୃଷ୍ଣ ଦର୍ଶନ ପାଇଁ ବାହାରିଥିବା ତା'ର ସାଧ୍ୱୀ ସ୍ତ୍ରୀକୁ ଘରେ ପୂରାଇ ବାହାରୁ କବାଟ କିଳି ଦେଇଥିଲା । କିନ୍ତୁ ସେହି କୃଷ୍ଣାନୁରାଗିଣୀ ବ୍ରାହ୍ମଣୀ ଧ୍ୟାନରେ ପ୍ରଭୁଙ୍କୁ ଚିନ୍ତା କରି ଦେହବନ୍ଧନର ଅଭେଦ୍ୟ ପାଶକୁ ଛେଦନ କରି ଯାଇ କୃଷ୍ଣଙ୍କ ଅଭୟ ଚରଣରେ ପହଞ୍ଚିଗଲା । ସେହିପରି ସଖୁ ବନ୍ଧା ହୋଇଥିଲେ ମଧ୍ୟ ତା'ର ମନ ପଣ୍ଢରିନାଥଙ୍କ ନିକଟରେ ପହଞ୍ଚିଗଲା । ସେ ଆର୍ତ୍ତସ୍ୱରରେ ପ୍ରଭୁଙ୍କୁ ପ୍ରାର୍ଥନା ଜଣାଇ କହିଲା—"ହେ ଦୟାମୟ! ଏ କ'ଣ ହୋଇଗଲା? ମୁଁ ତ ତୁମର ଦାସୀ ହୋଇ ତୁମ ପାଦତଳେ ସବୁଦିନ ପାଇଁ ମନ-ପ୍ରାଣକୁ ବାନ୍ଧି ଦେବାକୁ ଚାହିଁଥିଲି, କିନ୍ତୁ ମଝିରେ ଏ ରଜ୍ଜୁବନ୍ଧନ କେଉଁଠୁ ଆସି ପହଞ୍ଚିଗଲା? ତଥାପି ମୋ ମନରେ ଦୁଃଖ ନାହିଁ ପ୍ରଭୁ! ତୁମେ ଯଦି ଏଇଥିରେ ସୁଖୀ, ମୁଁ କାହିଁକି ମନଦୁଃଖ କରିବି? କିନ୍ତୁ ହେ ପ୍ରାଣନାଥ! ଭାବିଥିଲି ଏଇ ଅଭାଗା ନେତ୍ର ଥରକ ପାଇଁ ତୁମର ତ୍ରିଭୁବନସୁନ୍ଦର ରୂପମାଧୁରୀକୁ ଦର୍ଶନ କରିଦେଇଥିଲେ ତା'ପରେ ଦେହ ରହୁ କି ଯାଉ କିଛି ଚିନ୍ତା ନ ଥାନ୍ତା । ମୋର ଏହି ଚିର ସଞ୍ଚିତ ଆଶା ଟିକକ ଅତୃପ୍ତ ରହିଗଲା ପ୍ରଭୁ! ବୋଧହୁଏ ଏ ଦାସୀର ସେ ସୌଭାଗ୍ୟ ନାହିଁ । ହଉ ପ୍ରଭୁ! ମୁଁ ଆଉ କାହା ଆଗରେ ଗୁହାରି କରିବି । ତୁମେ ତ ମୋର ବାପା-ମାଆ, ଭାଇ-ଭଉଣୀ, ବନ୍ଧୁ-ବାନ୍ଧବ ସବୁକିଛି । ମୁଁ ଭଲ-ଖରାପ ଯେମିତି ହେଲେ ବି ତୁମର । କ'ଣ ମୋର ଏତିକି ବିନତି ଶୁଣିବ ନାହିଁ ଦୟାମୟ! ଠିକ୍ ଅଛି, ଏ ଜନ୍ମରେ ନ ହେଲେ ବି ପରଜନ୍ମରେ ତ ତୁମର ଦର୍ଶନ ମିଳିବ? ସେତିକିରେ ମୁଁ ଖୁସୀ ହୋଇଯିବି ।"

ସଖୁ ଖୁଣ୍ଟରେ ବନ୍ଧା ହୋଇ ଏହିପରି ପ୍ରାର୍ଥନା ଜଣାଉଥାଏ । ତା'ର ପ୍ରସ୍ଫୁଟିତ ପଦ୍ମତୁଲ୍ୟ ସୁନ୍ଦର ବଦନ ଝାଉଁଳି ପଡ଼ିଥାଏ । ଭଗବାନଙ୍କ କର୍ଣ୍ଣରେ ତା'ର ଆର୍ତ୍ତସ୍ୱର ପହଞ୍ଚିଲା । ସତରେ ଭକ୍ତ ହୃଦୟର ଡାକ କେବେ ବି ବ୍ୟର୍ଥ ଯାଏ ନାହିଁ । ଭଗବାନ ସବୁ କିଛି ଶୁଣୁଥାନ୍ତି, କିନ୍ତୁ ସେ ନକଲି ଡାକର ଉତ୍ତର ଦିଅନ୍ତି ନାହିଁ । ଅସଲି ପ୍ରାର୍ଥନାର ସ୍ୱର ଯେତେ କ୍ଷୀଣ ହୋଇଥିଲେ ସୁଦ୍ଧା ତାହା ତ୍ରିଭୁବନକୁ ଭେଦ କରି ପ୍ରଭୁଙ୍କ କର୍ଣ୍ଣରନ୍ଧ୍ରରେ ପ୍ରବେଶ କରିଯାଏ, ତାଙ୍କ ହୃଦୟକୁ ଦ୍ରବୀଭୂତ କରିଦିଏ । ଠିକ୍ ସେଇଆ ହେଲା । ପଣ୍ଢରିନାଥ ସଖୁର ଦାରୁଣ ଦୁଃଖ ଆଉ ସହି ପାରିଲେ ନାହିଁ । ତାଙ୍କର ରତ୍ନ ସିଂହାସନ ଦୋହଲି ଉଠିଲା, ମୁଖପଙ୍କଜ ମ୍ଳାନ ପଡ଼ିଗଲା । ସ୍ୱାମୀଙ୍କୁ ବିଷାଦମଗ୍ନ ଦେଖି ରୁକ୍ମିଣୀ ଜାଣିଗଲେ ଯେ ନିଶ୍ଚୟ କୌଣସି ପ୍ରେମୀଭକ୍ତ

ପ୍ରଭୁଙ୍କୁ ଡାକୁଛି । ନଚେତ୍ ସର୍ବଦା ପ୍ରସନ୍ନମନା ଶ୍ରୀହରିଙ୍କ ବିଷାଦର ଅନ୍ୟ କି କାରଣ ହୋଇପାରେ? ଭକ୍ତର ବିଷାଦ ହିଁ ପ୍ରଭୁଙ୍କ ବଦନରେ ପ୍ରତିବିମ୍ବିତ ହେଉଛି । ରୁକ୍ମିଣୀ ପଚ୍ଚରିବାରୁ ଭଗବାନ କହିଲେ—"ପ୍ରିୟେ! ବାକ୍ୟବ୍ୟୟ କରିବାକୁ ସମୟ ନାହିଁ । ମୋର ପ୍ରିୟ ସଖୁ ମୋତେ ଟିକିଏ ଦେଖିବା ଆଶାରେ ପଣ୍ଢରପୁର ଆସୁଥିଲା । କିନ୍ତୁ ତା'ର ଦୁଷ୍ଟ ଶାଶୁ ଓ ସ୍ୱାମୀ ତାକୁ ଅଧା ବାଟରୁ ଟାଣିନେଇ ବାନ୍ଧି ରଖିଛନ୍ତି । ସେ ମୋତେ ଆକୁଳ ମନରେ ଡାକୁଛି । ମୋତେ ତା' ନିକଟକୁ ଯିବାକୁ ହେବ ।"

ଯିବା ଆସିବା ତ ପ୍ରଭୁଙ୍କର ଖେଳମାତ୍ର । ନଚେତ୍ ସର୍ବତ୍ର ପରିବ୍ୟାପ୍ତ ଭଗବାନଙ୍କ ପାଇଁ ଯିବା ଆସିବାର ପ୍ରଶ୍ନ କାହିଁ? ସେ ଯେଉଁଠି ପ୍ରେମ ଦେଖନ୍ତି, ସେଇଠି ପ୍ରକଟ ହୋଇଯାଆନ୍ତି । ହଠାତ୍ ସେ ଗୋଟିଏ ସୁନ୍ଦର ନାରୀରୂପ ଧାରଣ କରି ସଖୁ ନିକଟରେ ପହଞ୍ଚିଗଲେ । ତାକୁ ସଚେତ କରାଇ ମୃଦୁ ମଧୁର କଣ୍ଠରେ କହିଲେ—"ସଖୁ! ତୁ ପରା ପଣ୍ଢରପୁର ଯିବାକୁ କହୁଥିଲୁ? ପଣ୍ଢରିନାଥଙ୍କୁ ଦର୍ଶନ କରିବାକୁ କ'ଣ ତୋର ଇଚ୍ଛା ନାହିଁ?" ତାଙ୍କର ଅମୃତବର୍ଷୀ ବାଣୀରେ ସଖୁର ସର୍ବାଙ୍ଗ ପୁଲକିତ ହୋଇ ଉଠିଲା । ସେ ଅଭିମାନ ଭରା କଣ୍ଠରେ କହିଲା—"ତୁମେ ମୋର ଦୟନୀୟ ଦଶା ଦେଖି ମୋତେ ପରିହାସ କରୁ ନାହଁ ତ? ମାଛିଟିଏ ଉଡ଼େଇବାକୁ ବି ମୋର ଫୁରୁସତ ନାହିଁ, ଆଉ ତୁମେ ପଣ୍ଢରପୁର ଯିବା କଥା ପଚ୍ଚରୁଛ? ମୋ ଭଳି ଅଭାଗିନୀ କପାଳରେ ପଣ୍ଢରପୁର ଯାତ୍ରାର ସୌଭାଗ୍ୟ କାହିଁ?" ଏତିକି କହୁ କହୁ ସଖୁ ଆଖିରୁ ଦୁଇଧାର ଲୁହ ଝରି ଆସିଲା । ନାରୀରୂପଧାରୀ ଭଗବାନ ତା'ର ଲୋତକ ପୋଛିଦେଇ କହିଲେ—"ସଖୁ! ମୁଁ ତୋର ଚିର ସହଚରୀ । ତୁ ଆସିବାଯାଏ ତୋ ଜାଗାରେ ମୁଁ ବନ୍ଧାହୋଇ ରହିବି । ତୁ ନିଶ୍ଚିନ୍ତରେ ଯାଆ, ଠାକୁରଙ୍କ ଦର୍ଶନ କରି ଆସିବୁ ।" ସଖୁବାଈ କିଛି ପ୍ରତ୍ୟୁତ୍ତର ଦେବା ପୂର୍ବରୁ ଭଗବାନ ତା'ର ବନ୍ଧନପାଶ ଖୋଲିଦେଇ କ୍ଷଣକ ମଧ୍ୟରେ ତାକୁ ପଣ୍ଢରପୁରରେ ପହଞ୍ଚାଇ ଦେଲେ ।

ଆହା! ନାରାୟଣ ସ୍ୱୟଂ ନିଜ ହାତରେ ଯାହାର ବନ୍ଧନରଜ୍ଜୁ ଖୋଲି ଦେଇଛନ୍ତି, ତା'ର ସୌଭାଗ୍ୟକୁ କି ଉପମା ଅବା ଦିଆଯାଇ ପାରିବ? ସଖୁର କେବଳ ରଜ୍ଜୁବନ୍ଧନ ନୁହେଁ, ଜନ୍ମ-ମୃତ୍ୟୁ ବନ୍ଧନ ମଧ୍ୟ ଖୋଲିଗଲା । ସେ ସମସ୍ତ କର୍ମଶୃଙ୍ଖଳରୁ ସବୁଦିନ ପାଇଁ ମୁକ୍ତି ପାଇଗଲା । ଏବେ ତା'ର ଚିତ୍ତ-ପକ୍ଷୀ ମୁକ୍ତ ଆକାଶର ବିହଙ୍ଗ ପରି ପ୍ରଭୁଙ୍କ ଦର୍ଶନ ଆଶାରେ ବିଭୋର ହୋଇଗଲା । ଧନ୍ୟ

ପ୍ରଭୁ! ଧନ୍ୟ ତୁମର ଭକ୍ତବତ୍ସଳତା!

ଭଗବାନ ସଖୁର ପ୍ରେମଡୋରିରେ ଆବଦ୍ଧ ହୋଇ ସଖୁରୂପ ଧାରଣ କରି ତା' ଜାଗାରେ ବାନ୍ଧି ହୋଇଗଲେ। କି ବିଚିତ୍ର ଲୀଳା ପ୍ରଭୁଙ୍କର! ଯାହାଙ୍କର ନାମ ସ୍ମରଣ ମାତ୍ରକେ ସୁଦୃଢ଼ ମାୟାବନ୍ଧନ ନିମିଷେକ ମଧ୍ୟରେ କଟିଯାଏ, ସେହି ସଚ୍ଚିଦାନନ୍ଦ ଭଗବାନ ଭକ୍ତ ପାଇଁ ଆଜି ସ୍ୱୟଂ ବନ୍ଧନରେ ପଡ଼ିଛନ୍ତି! ଦ୍ୱାପର ଯୁଗରେ ଦିନେ ମାଆ ଯଶୋଦା ସ୍ନେହାଧିକ୍ୟ ଯୋଗୁଁ ତାଙ୍କୁ ବାନ୍ଧି ଦେଇଥିଲେ, ପ୍ରେମମୟୀ ଗୋପୀମାନେ ଅନେକ ଥର ପ୍ରେମଡୋରୀରେ ବାନ୍ଧିଥିଲେ, କିନ୍ତୁ ଆଜିର ବନ୍ଧନ ସବୁଠୁ ଅଦ୍ଭୁତ! ସେତେବେଳେ ତ ସେ ବାଳକ ହୋଇ ଅଳି-ଅଝଟ କରୁଥିଲେ ବୋଲି ତାଙ୍କୁ ବାନ୍ଧି ଦିଆଯାଇଥିଲା, କିନ୍ତୁ ଏଠାରେ ତ ସେ ଭକ୍ତିମତୀ ସଖୁବାଈ ପାଇଁ ନିଜକୁ ନିଜେ ବାନ୍ଧି ହୋଇଛନ୍ତି। ଭକ୍ତ ପ୍ରେମର ଅଧୀନ ହୋଇ ଭଗବାନ କ'ଣ ବା କରି ନ ପାରନ୍ତି!

ସଖୁବାଈ ରୂପରେ ଭଗବାନ ବନ୍ଧା ହୋଇଛନ୍ତି। ତଥାପି କଠୋର ହୃଦୟା ଶାଶୁର ମନ ସନ୍ତୁଷ୍ଟ ନୁହେଁ। ସେ ଯାଉଣୁ ଆସୁଣୁ ଖୁଣ୍ଟା ଦେଇ ମନରେ ଯାହା ଆସେ ଗାଳିମନ୍ଦ ଶୁଣାଉଥାଏ। ଭଗବାନ ସୁଶୀଳା ବୋହୂ ପରି ଏକବାରେ ନୀରବ ରହନ୍ତି। ଏହିଭଳି ପନ୍ଦର ଦିନ ବିତିଗଲା, ଅଥଚ ଶାଶୁ-ଶ୍ୱଶୁରଙ୍କର ପାଷାଣ ହୃଦୟ ତରଳିଲା ନାହିଁ। କିନ୍ତୁ ଦିନେ ସଖୁର ସ୍ୱାମୀ ଭାବିଲା—"ଭୋକ ଉପାସରେ ଯାକୁ ପନ୍ଦର ଦିନ ହୋଇଗଲାଣି। ଯଦି ଇଏ ଏମିତି ଶୁଖି ଶୁଖି ମରିଯିବ, ତେବେ କଥା ସରିଯିବ। ଗାଆଁ ଲୋକଙ୍କୁ ତ ଆମର କର୍ମ ଅଛପା ନାହିଁ, ଦଶ ଖଣ୍ଡ ମଉଜାରେ ଆମର ଅପଯଶବାନା ଉଡ଼ି ସାରିଲାଣି। ଏବେ ଯଦି ଇଏ ମରିଯାଏ, ତେବେ ଶତଚେଷ୍ଟା କରି କିଣିବାକୁ ଗ୍ରହିଁଲେ ମଧ୍ୟ ଦ୍ୱିତୀୟ ବିବାହ ପାଇଁ ଆଉ ବୋହୂଟିଏ ମିଳିବ ନାହିଁ। କିଏ କାହିଁକି ତା' ଝିଅକୁ ମରଣମୁହଁକୁ ଠେଲି ଦେବାକୁ ଗ୍ରହିଁବ?"
ଏହି ସ୍ୱାର୍ଥ କାମନାରେ ସେ ସଖୁ ନିକଟକୁ ଗଲା। ଭଗବାନ ତାକୁ ଗ୍ରହିଁ ଟିକିଏ ମୁରୁକି ହସିଦେଲେ। ତାଙ୍କ ହାସ୍ୟରେ କେଉଁ କିମିଆ ଥିଲା କେଜାଣି, ସହସା ତା'ର ହୃଦୟ ତରଳିଗଲା। ସେ ସଖୁର ବନ୍ଧନ ଖୋଲିଦେଇ ସ୍ନେହରେ କହିଲା— "ପ୍ରିୟେ! ସତରେ ମୁଁ ବଡ଼ ନିଷ୍ଠୁର। ଆମେ ତିନିହେଁ ମିଶି ତୁମକୁ ବହୁ କଷ୍ଟ ଦେଲୁ। ଆମର ସବୁ ଅପରାଧ କ୍ଷମା କରିଦିଅ। ଏବେ ଯାଇ ଗାଧୋଇ ପାଧୋଇ କିଛି ଖାଇନିଅ।"

ଭବବନ୍ଧନହାରୀ ଆନନ୍ଦନିଧି ଭଗବାନ ଉତ୍ତମ ପତିବ୍ରତା ନାରୀ ଭଳି

ନତମସ୍ତକ ହୋଇ ବିନମ୍ର ଭାବରେ ଠିଆ ହୋଇ ରହିଲେ। ଭାବିଲେ, ଯଦି ସେ ଏବେ ଅନ୍ତର୍ଦ୍ଧାନ ହୋଇଯିବେ, ତେବେ ସଖୁ ଫେରିବା ପରେ ଏମାନେ ତାକୁ ଦଣ୍ଡ ଦେବେ। ତେଣୁ ସଖୁ ଫେରିବା ପର୍ଯ୍ୟନ୍ତ ସେ ସେଇଠି ରହିବାକୁ ମନସ୍ଥ କଲେ। ରହନ୍ତୁ ପ୍ରଭୁ! ତୁମକୁ ମନା କରିବାକୁ କାହାର ବା ଶକ୍ତି ଅଛି? ସଖୁ ଜାଗାରେ ତୁମେ ଯେତେବେଳେ ବନ୍ଧନ ସ୍ୱୀକାର କରିନେଲ, ପୁଣି ତା' ସ୍ୱାମୀର ଅର୍ଦ୍ଧାଙ୍ଗିନୀ ହୋଇ ରହିବାକୁ ଲାଜ କ'ଣ?

ସଖୁରୂପଧାରୀ ଭଗବାନ ପ୍ରଥମେ ଶାଶୁ, ଶ୍ୱଶୁର ଓ ସ୍ୱାମୀଙ୍କ ପାଦତଳେ ମୁଣ୍ଡିଆ ମାରିଲେ। ତା'ପରେ ଗାଧୁଆ ପାଧୁଆ ସାରି ଖୁବ୍ କମ୍ ସମୟରେ ରୋଷେଇବାସ କରିଦେଲେ। ଠାକୁରଙ୍କୁ ଭୋଗ ଲଗାଇ ବଡ଼ ଆଦରରେ ସମସ୍ତଙ୍କୁ ଖୁଆଇ ପିଆଇ ସନ୍ତୁଷ୍ଟ କଲେ। ଆଜି ପ୍ରସାଦରେ ସମସ୍ତଙ୍କୁ ଅଦ୍ଭୁତ ସ୍ୱାଦ ଅନୁଭବ ହେଲା। ସଖୁକୁ ପ୍ରଶଂସା କରି ଶାଶୁ-ଶ୍ୱଶୁର କହିଲେ—"ପ୍ରକୃତରେ ସଖୁ ଆମ ଘରର ଲକ୍ଷ୍ମୀ। ତା' ହାତ ରନ୍ଧାରେ କି ସ୍ୱାଦ! ଆମେ ତାକୁ ଚିହ୍ନି ନ ପାରି କେତେ ଦୁଃଖ ନ ଦେଲେ ସତେ!"

ଏହା ଥିଲା ସଖୁର ଶାଶୁ ମୁହଁରେ ପ୍ରଥମ ପ୍ରଶଂସା। ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ବି ନାହିଁ; କାରଣ ଆଜି ବୋହୂରୂପରେ ମାଧୁର୍ଯ୍ୟନିଧାନ ଭଗବାନ ସ୍ୱୟଂ ରନ୍ଧାବଢ଼ା କାର୍ଯ୍ୟ କରିଥିଲେ। ବାଃ! କି ଭାଗ୍ୟ ଏମାନଙ୍କର! ସଖୁର ସଙ୍ଗ ପ୍ରଭାବରୁ ଏଭଳି ଦୁଷ୍ଟ ଲୋକେ ମଧ୍ୟ ଭଗବାନଙ୍କର ସେବ୍ୟ ହୋଇ ପାରିଲେ। ସେଇଥିପାଇଁ କୁହାଯାଇଛି ଯେ ଭକ୍ତଜନଙ୍କ ସାନ୍ନିଧ୍ୟର ଫଳ ଅସୀମ।

ସମସ୍ତଙ୍କୁ ଖୁଆଇ ସାରି ସଖୁରୂପୀ ଭଗବାନ ପ୍ରସାଦ ପାଇଲେ। ପାଣି ଭରିବା, ଘର ଓଳେଇବା, ଧାନ କୁଟିବା, ବାସନ ମାଜିବା, ଘର ଲିପିବା ଓ ଶାଶୁ-ଶ୍ୱଶୁରଙ୍କ ଗୋଡ଼ ଘଷିଦେବା ପ୍ରଭୃତି ପ୍ରତ୍ୟେକ କାର୍ଯ୍ୟକୁ ଭଗବାନ ଅତି ସୁନ୍ଦର ଭାବରେ କରି ଚାଲିଲେ। ସକଳ ସୃଷ୍ଟିର ନିର୍ମାତା ପ୍ରଭୁଙ୍କ ପାଇଁ ଏହା ତ ବାଆଁ ହାତର ଖେଳ! ସେ ତ ଚଉଷଠି କଳାରେ ପ୍ରବୀଣ। ବ୍ରଜଲୀଳା ସମୟରେ ଯେଉଁ ଶ୍ରୀକୃଷ୍ଣ ବତ୍ସା-ବାଳକ ରୂପରେ ଗାଈମାନଙ୍କୁ ଓ ବ୍ରଜଗୋପୀଙ୍କୁ ଅପାର ସୁଖ ପ୍ରଦାନ କରିଥିଲେ, ତାଙ୍କ ପାଇଁ ସଖୁର ଶାଶୁ-ଶ୍ୱଶୁରଙ୍କୁ ପ୍ରସନ୍ନ କରିଦେବା କି ଅବା ବିଚିତ୍ର! ଦିନଯାକ କାମଧନ୍ଦା କରି କରି ସେ ଥକି ଯାଇଥାନ୍ତି। ତଥାପି ରାତିରେ ସେ ଯାଇ ଶୟନକକ୍ଷରେ ସ୍ୱାମୀଙ୍କ ପାଦ ମଞ୍ଚାଳି ଯଥେଷ୍ଟ ସେବା କଲେ। ତାଙ୍କ ସେବାରେ ସ୍ୱାମୀ ପରମ ସନ୍ତୁଷ୍ଟ ହୋଇ କହିଲେ—

"ପ୍ରିୟେ! ମୁଁ ତୁମକୁ ବହୁ କଷ୍ଟ ଦେଇଛି। ତୁମେ ମୋତେ କ୍ଷମା କରିଦେଲନା?" ଭଗବାନ କିଛି ଉତ୍ତର ନ ଦେଇ ବଙ୍କିମ ଗ୍ରୀହାଣିରେ ଖାଲି ମୃଦୁ ମୃଦୁ ହସୁଥାନ୍ତି।

ଠାକୁରେ ଯେଉଁ ଅଭିନୟ କରନ୍ତି, ତାହାକୁ ଅତି ସୁଗ୍ଧରୂପେ କରନ୍ତି। ତାଙ୍କ ପାଇଁ ସ୍ତ୍ରୀ-ପୁରୁଷର ପ୍ରଭେଦ ନ ଥାଏ। ସେ ତ ସମସ୍ତଙ୍କ ଅନ୍ତରାତ୍ମାରେ ବିରାଜମାନ। ସ୍ତ୍ରୀ, ପୁରୁଷ, କ୍ଳୀବ ସକଳ ଦେହଧାରୀଙ୍କର ସେ ହେଉଛନ୍ତି ଅଧିଷ୍ଠାନ, ସର୍ବଦ୍ରଷ୍ଟା ଓ ସର୍ବାଧାର। ଯେଉଁ ପ୍ରଭୁ ଅଜନ୍ମା ହୋଇ ମଧ୍ୟ ଜନ୍ମ ହେବାର ଲୀଳା କରନ୍ତି, ଯିଏ ଜଗତରେ ନାନା ରୂପରେ ଅଭିବ୍ୟକ୍ତ ହୋଇଛନ୍ତି, ତାଙ୍କ ଦୃଷ୍ଟିରେ ସ୍ତ୍ରୀ-ପୁରୁଷର ପ୍ରଭେଦ କଳ୍ପନା ମଧ୍ୟ କରାଯାଇ ନ ପାରେ। କୁମ୍ଭାର ମାଟିରେ ହାଣ୍ଡି, ମାଠିଆ, ଠେକି, ସରା ପ୍ରଭୃତି ଅନେକ ପ୍ରକାର ପାତ୍ର ଗଢ଼େ; ବଣିଆ ସୁନାରେ ନାକଫୁଲ, କାନଫୁଲ, ହାର, କଙ୍କଣ ପ୍ରଭୃତି ଅନେକ ଗହଣା ତିଆରି କରେ। ତେବେ ପ୍ରଭେଦ ଦେଖାଯାଏ ଏମାନଙ୍କ ତିଆରି ଜନିଷରେ, କିନ୍ତୁ ମୂଳ ତତ୍ତ୍ୱ ମାଟି ବା ସୁନାରେ କୌଣସି ପ୍ରଭେଦ ଥାଏ କି? ଆକାଶ ସବୁଆଡ଼େ ଏକାଭଳି ବ୍ୟାପିଥିଲେ ମଧ୍ୟ ସେଥିରେ ନାନା ପ୍ରକାର ଶବ୍ଦ ତରଙ୍ଗ ଧ୍ୱନିତ ହୋଇଥାଏ। ସେହିପରି ଭଗବାନ ଏକ ଓ ଅଦ୍ୱିତୀୟ ହୋଇଥିଲେ ମଧ୍ୟ ସ୍ଥାନଭେଦରେ ଭିନ୍ନ ଭିନ୍ନ ମନେହୁଅନ୍ତି।

ସଖୁରୂପଧାରୀ ଭଗବାନ ତାଙ୍କର ସୁଶୀଳ ବ୍ୟବହାର ଓ ସେବା-ଶୁଶ୍ରୂଷା ପ୍ରଭାବରେ ସମସ୍ତଙ୍କୁ ସନ୍ତୁଷ୍ଟ କରିଦେଲେ। ସମସ୍ତଙ୍କ ମନ ବଦଳିଗଲା। ଏଥର ସଖୁକୁ ସମସ୍ତେ ମଥାମଣି କରି ରଖିଲେ। ଭଗବାନଙ୍କ ସାନ୍ନିଧ୍ୟ ଲାଭ କରି ଯଦି ଦୁଷ୍ଟଲୋକର ମନ ବଦଳିବ ନାହିଁ, ତେବେ ଆଉ ବଦଳିବାକୁ ସ୍ଥାନ କାହିଁ?

ତେଣେ ସଖୁ ନାମ ସଂକୀର୍ତ୍ତନ କରି କରି ଯାଇ ପଣ୍ଢରପୁରରେ ପହଞ୍ଚିଥାଏ। ଭଗବାନଙ୍କ ମାୟା ପ୍ରଭାବରେ ତା'ର ମନେ ନ ଥାଏ ଯେ ତା' ବଦଳରେ ଆଉ କେହି ବନ୍ଧା ହୋଇଛି ବୋଲି। ପଣ୍ଢରପୁର ଆନନ୍ଦରେ ଉଛୁଳି ଉଠୁଥାଏ। ଦଳ ଦଳ କୀର୍ତ୍ତନ ମଣ୍ଡଳୀ ହାତରେ ପତାକା, ଖୋଳ-କରତାଳ, ଝାଞ୍ଜ-ପଖାଉଜ ଇତ୍ୟାଦି ବାଦ୍ୟ ବଜାଇ ବଜାଇ ନୃତ୍ୟ କରୁଥାନ୍ତି। କାହା ମନରେ ଛୋଟ-ବଡ଼, ଉଚ୍ଚ-ନୀଚ, ଧନୀ-ଗରିବ ଓ ବ୍ରାହ୍ମଣ-ଶୂଦ୍ରର ପ୍ରଭେଦ ନାହିଁ। ସମସ୍ତେ ପ୍ରେମାନନ୍ଦସିନ୍ଧୁରେ ଅବଗାହନ କରୁଥାନ୍ତି। ଭଗବାନଙ୍କ ତୁମୁଳ ନାମ ଗର୍ଜନରେ ନଭ-ଧରିତ୍ରୀ ପ୍ରକମ୍ପିତ ହେଉଥାଏ। ସଖୁ ମହାଆନନ୍ଦରେ ପ୍ରଥମେ ଯାଇ ପରମ ପାବନୀ ଚନ୍ଦ୍ରଭାଗା ନଦୀରେ ସ୍ନାନ କଲା ଏବଂ ତା'ପରେ ପଣ୍ଢରିନାଥଙ୍କ ଦର୍ଶନ ପାଇଁ ମନ୍ଦିରକୁ

ଗଲା । ପ୍ରଭୁଙ୍କର ଅପରୂପ ସୌନ୍ଦର୍ଯ୍ୟ ଦର୍ଶନ କରି ସେ ଦେହଦଶା ଭୁଲିଗଲା । କି ଅପୂର୍ବ ରୂପମାଧୁରୀ ପ୍ରଭୁଙ୍କର! ସୁନ୍ଦର ଶ୍ୟାମଳ ଅଙ୍ଗ । ନବଘନରେ ବିଜୁଳି ଚମକିବା ପରି କଟିରେ ପୀତାମ୍ବର ସୁଶୋଭିତ । କୋଟି ଚନ୍ଦ୍ର ଜିଣା ପରମ ଶୋଭନୀୟ ମୁଖମଣ୍ଡଳ । କର୍ଣ୍ଣ ଦ୍ୱୟରେ ମକରାକୃତି କୁଣ୍ଡଳ । କଣ୍ଠରେ ଆଜାନୁଲମ୍ବିତ ବନମାଳା । ବନମାଳାର ମଧ୍ୟେ ମଧ୍ୟେ ଗୁମ୍ଫିତ ପୀତ ମଞ୍ଜରୀଯୁକ୍ତ ତୁଳସୀ ଗୁଚ୍ଛରେ ମଧୁ ଲୋଭୀ ଭ୍ରମରପଂକ୍ତି ମଧୁ ଆସ୍ୱାଦନ ପାଇଁ ପ୍ରମତ୍ତ । ପାଦ ଦ୍ୱୟରେ ରତ୍ନ ନୂପୁର ।

ସଖୁ ପ୍ରଭୁଙ୍କର ଏଭଳି ରୂପସୁଧା ପାନ କରି କରି ମୁଗ୍ଧ ହେଉଥାଏ । ତା'ର ଅତୃପ୍ତ ପ୍ରାଣରେ ଜାଗି ଉଠୁଥାଏ ଅସରନ୍ତି ଦର୍ଶନ ପିପାସା । ସେ ପ୍ରଭୁଙ୍କ ପାଦରେ ମସ୍ତକ ରଖି ନେତ୍ରଜଳରେ ତାଙ୍କର ମୃଦୁ ପାଦପଦ୍ମକୁ ପ୍ରକ୍ଷାଳନ କରିଦେଲା । ସତେ ଯେପରି ସେ ଅଶ୍ରୁଦୂତ ଦ୍ୱାରା ମନର ବ୍ୟଥା ସଂଦେଶକୁ ପ୍ରଭୁଙ୍କୁ ଜଣାଇ ତାଙ୍କ ଚରଣ କିଂକରୀ ହେବାକୁ ଆଦେଶ ଭିକ୍ଷା କଲା । ପ୍ରଭୁଙ୍କ ନଖମଣି ଚନ୍ଦ୍ରିକାର ଅମିତ ପ୍ରଭାବରେ କ୍ଷଣକ ମଧ୍ୟରେ ସଖୁର ତାପତ୍ରୟ ନଷ୍ଟ ହୋଇଗଲା । ସେ ପ୍ରଭୁଙ୍କର କୋମଳ ମୃଦୁଳ ସ୍ପର୍ଶ ଅନୁଭବ କଲା । ତାଙ୍କ ପାଦପଦ୍ମରେ ତା'ର ଚିର ସନ୍ତପ୍ତ ମନ ଏଭଳି ନିବିଷ୍ଟ ହୋଇଗଲା ଯେ ସେ ଆଉ ଏ ଜନ୍ମରେ ପଣ୍ଢରପୁର ଛାଡ଼ି ଘରକୁ ଫେରିବ ନାହିଁ ବୋଲି ମନ ଭିତରେ ପ୍ରତିଜ୍ଞା କରିନେଲା । ତାକୁ କ'ଣ ଅବା ଜଣା ଯେ ତା' ସ୍ଥାନରେ ସ୍ୱୟଂ ପଣ୍ଢରିନାଥ ବୋହୂରୂପ ଧରି ଗୃହଜଞ୍ଜାଳ ସମ୍ଭାଳୁଛନ୍ତି ଏବଂ ତାଙ୍କୁ ମୁକ୍ତି ଦେବା ତା'ର ପ୍ରଥମ କର୍ତ୍ତବ୍ୟ?

ସତରେ ସଖୁର କର୍ତ୍ତବ୍ୟ ବୋଲି ଆଉ ଅଛି ବା କ'ଣ? ସକଳ କର୍ତ୍ତବ୍ୟ ତ ତା'ର ସେହି ଦିନଠାରୁ ସରି ଯାଇଥିଲା, ଯେଉଁ ଦିନ ପ୍ରଭୁ ତାକୁ ବନ୍ଧନମୁକ୍ତ କରାଇଦେଲେ । ସେ ସବୁ କିଛି ଭୁଲିଯାଇ ପଣ୍ଢରିନାଥଙ୍କ ଧ୍ୟାନରେ ନିମଗ୍ନ ହୋଇଗଲା । ଧୀରେ ଧୀରେ ସେ ବାହ୍ୟଜ୍ଞାନ ବିସ୍ମୃତ ହୋଇ ସମାଧିସ୍ଥ ହୋଇଗଲା । ତା' ଦେହରେ ଅଶ୍ରୁ, ପୁଲକ ପ୍ରଭୃତି ଅଷ୍ଟ ସାତ୍ତ୍ୱିକ ଭାବ ଉଦୟ ହେଲା, ଯାହା ଫଳରେ ତା'ର ପ୍ରାଣପକ୍ଷୀ ଦେହରୂପୀ ପଞ୍ଜୁରୀକୁ ତ୍ୟାଗ କରି ଉଡ଼ିଗଲେ । ସେ ସେଇଠି ପ୍ରଭୁଙ୍କ ପାଦତଳେ ଅଚେତ ହୋଇ ଢଳିପଡ଼ିଲା ।

ମନ୍ଦିରରେ ଚହଳ ପଡ଼ିଗଲା । ଲୋକେ କୁହାକୁହି ହେଲେ ଯେ ଇଏ କାହାର ବୋହୂ, କେଉଁଠୁ ଆସିଥିଲା, କିଏ ଯାର ଅନ୍ତ୍ୟେଷ୍ଟି କ୍ରିୟା କରିବ?

ଦୈବଯୋଗକୁ ସଖୁର ଗାଆଁ ପାଖର ଜଣେ ବ୍ରାହ୍ମଣ ଠାକୁରଙ୍କ ଦର୍ଶନ ପାଇଁ ପଣ୍ଢରପୁର ଯାଇଥିଲେ। ସେ ସଖୁର ମୃତ ଦେହକୁ ଦେଖି ବେଶ୍ ଚିହ୍ନିଗଲେ। ସେ ତା'ର ଭାଗ୍ୟକୁ ପ୍ରଶଂସା କରିବା ସହିତ ଆଉ କେତେ ଜଣ ଲୋକଙ୍କର ସହଯୋଗରେ ସେହିଠାରେ ତା'ର ଅନ୍ତ୍ୟେଷ୍ଟି ସଂସ୍କାର କରିଦେଇ ଘରକୁ ଫେରି ଆସିଲେ।

ସଖୁର ମୃତ୍ୟୁ ହେବା ଜାଣି ଅଠାକାଠିରେ ପଡ଼ିଗଲେ ଜଗନ୍ମାତା ରୁକ୍ମିଣୀ। ଭାବିଲେ—"ହାୟ! ହାୟ! ଭଲ ହେଲା ତ! ମୋ ସ୍ୱାମୀ ତେଣେ ସଖୁର ଘର କାମ କରୁଛନ୍ତି, ଅଥଚ ଇଏ ଏଠାରେ ପ୍ରାଣ ଛାଡ଼ି ସାରିଲାଣି। ତେବେ ମୋର ସ୍ୱାମୀଙ୍କୁ ମୁକୁଳାଇବ କିଏ?" ଏହିପରି ଭାବି ସେ ସହସା ଶ୍ମଶାନରେ ପହଞ୍ଚିଗଲେ। ସଖୁର ଭସ୍ମାବଶେଷକୁ ଏକତ୍ର କରି ସେଥିରେ ସେ ପୁନଃ ପ୍ରାଣ ସଞ୍ଚାର କରାଇଦେଲେ। ଯେଉଁ ମାୟାଦେବୀଙ୍କ ଅମିତ ପ୍ରଭାବରୁ କ୍ଷଣକ ମଧ୍ୟରେ ସକଳ ବ୍ରହ୍ମାଣ୍ଡ ସର୍ଜନା ଓ ଧ୍ୱଂସ ହୋଇପାରେ, ଯିଏ ନିର୍ଗୁଣକୁ ସଗୁଣ ଓ ଅବିକାରୀକୁ ବିକାରୀ କରି ନେତ୍ର ଗୋଚର କରିବାକୁ ସମର୍ଥ, ଯିଏ ନିଜ ମଧ୍ୟରୁ ବିବିଧ ସୃଷ୍ଟି ଭିଆଇ ପାରନ୍ତି, ସେହି ମହାମାୟାଙ୍କ ଅମୃତବର୍ଷିଣୀ ଦୃଷ୍ଟି ଶକ୍ତିରେ ସଖୁ ନବଜୀବନ ଲାଭ କରିବା କେଉଁ ବଡ଼ କଥା ଅବା?

ନିଦରୁ ଉଠିବା ଭଳି ସଖୁ ଉଠି ବସିଲା। ତାକୁ ଲାଗିଲା ଯେ ସେ ତ ପଣ୍ଢରିନାଥଙ୍କ ପାଦତଳେ ବିନତି ଜଣାଉଥିଲା, ପୁଣି ଏଠି ଶ୍ମଶାନରେ ପହଞ୍ଚିଗଲା କେମିତି? ପୁଣି ଗୋଟି ଗୋଟି କରି ତା'ର ରାତିର ସ୍ୱପ୍ନ କଥା ମନେ ପଡ଼ିଗଲା। ସ୍ୱପ୍ନରେ ଜଗନ୍ମାତା ରୁକ୍ମିଣୀ ତାକୁ ନବଜୀବନ ଦେଇ କହିଥିଲେ—"ସଖୁ! ମୋ ମାଆଟା ପରା, ତୁ ଏବେ ଘରକୁ ଫେରିଯା'। ତୁ ଜୀବନ ଥିବାପର୍ଯ୍ୟନ୍ତ ପଣ୍ଢରପୁର ଛାଡ଼ିବୁ ନାହିଁ ବୋଲି ଯେଉଁ ପ୍ରତିଜ୍ଞା କରିଥିଲୁ, ତାହା ପୂର୍ଣ୍ଣ ହୋଇ ସାରିଛି। ଏହା ହେଉଛି ତୋର ନୂଆ ଜନ୍ମ। ତୋର ଆଉ କୌଣସି ଅସୁବିଧା ହେବ ନାହିଁ, ଘର ଲୋକେ ତୋତେ ଆଉ କଷ୍ଟ ଦେବେ ନାହିଁ। ସେମାନେ ମଧ୍ୟ ତୋ ଭକ୍ତିବଳରେ ଭକ୍ତ ହୋଇଯିବେ।"

ମାତା ରୁକ୍ମିଣୀଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ସଖୁ ଦୁଇ ଦିନ ପରେ ଭକ୍ତଜନଙ୍କ ସଙ୍ଗରେ ଗାଁଆକୁ ଫେରିଲା। ଏପଟେ ସଖୁବେଶଧାରୀ ଭଗବାନ ପାଣି ଆଣିବା ବାହାନାରେ କଳସୀଟିଏ ଧରି କୃଷ୍ଣା ନଦୀକୂଳରେ ପହଞ୍ଚିଗଲେ। ସଖୁ ସଙ୍ଗେ ଭେଟ ହୋଇ ତାକୁ ପଣ୍ଢରପୁର କଥା ପଚାରିଲେ। ସଖୁ ନେତ୍ରରୁ କୃତଜ୍ଞତାର ଅଶ୍ରୁ ବହି ଆସିଲା। ସେ ତାଙ୍କର ହାତ ଦୁଇଟିକୁ ମୁଠାଇ ପକାଇ କହିଲା—"ଭଉଣୀ!

ତୁମେ ମୋ ବଦଳରେ ଏତେ ଦିନଯାଏ ବନ୍ଧା ହୋଇ ମୋ ପାଇଁ ବହୁ କଷ୍ଟ ସହିଲ। ତୁମ ଯୋଗୁଁ ମୁଁ ପଣ୍ଢରିନାଥଙ୍କ ଦର୍ଶନର ସୌଭାଗ୍ୟ ପାଇ ପାରିଲି। ଜନ୍ମଜନ୍ମାନ୍ତରରେ ବି ମୁଁ ତୁମର ଏହି ଋଣ ସୁଝି ପାରିବି ନାହିଁ, ମୁଁ ଆଜୀବନ ତୁମର ଋଣୀ ହୋଇ ରହିବି।'' ନାରୀରୂପଧାରୀ ଭଗବାନ ତାଙ୍କ କୋମଳ କରରେ ସଖୁର ଗାଲକୁ ଟିକିଏ ଆଉଁସି ଦେଇ କହିଲେ—''ସଖୁ! ଏବେ ତୁ କଳସୀ ନେଇ ଘରକୁ ଯାଆ। ମୋର ଆହୁରି କେତେ କାମ ଅଛି। କେତେବେଳେ କେଉଁ ଅସୁବିଧା ହେଲେ ମୋତେ ମନେ ପକାଇବୁ।'' ଏତିକି କହି ଭଗବାନ ସେଇଠି କୁଆଡ଼େ ଅଦୃଶ୍ୟ ହୋଇଗଲେ।

ସଖୁ ପାଣି ଧରି ଘରେ ପହଞ୍ଚିଲା ଏବଂ ପୂର୍ବପରି ନିଜ କାର୍ଯ୍ୟରେ ଲାଗିଗଲା। ସେ ଦେଖିଲା ଯେ ଘରଲୋକଙ୍କ ଜୀବନରେ ବିରାଟ ପରିବର୍ତ୍ତନ ହୋଇଛି। ସେମାନେ ନାସ୍ତିକ ପ୍ରବୃତ୍ତି ଛାଡ଼ି ପ୍ରଭୁଭକ୍ତିରେ ଅନୁପ୍ରାଣିତ ହୋଇଛନ୍ତି। ଏତେ ଘଟଣା ଘଟିଗଲା, କିନ୍ତୁ କାହାକୁ ପ୍ରକୃତ ତଥ୍ୟ ଜଣାପଡ଼ିଲା ନାହିଁ। ଅବଶ୍ୟ ଘରଲୋକଙ୍କ ଆଚରଣରେ ପରିବର୍ତ୍ତନ ଦେଖି ସଖୁ ମନରେ ଆଶଙ୍କା ହେଲା ଯେ କ'ଣ ଭଗବାନ ଆସି ମୋତେ ସହଯୋଗ କଲେ କି? କିନ୍ତୁ ଘର ଲୋକଙ୍କୁ ଏ ରହସ୍ୟ ଜଣାପଡ଼ିଲା ନାହିଁ, ସେମାନେ ସଖୁକୁ ନେତ୍ରପିତୁଳି କରି ରଖିଲେ।

ପଣ୍ଢରପୁରରେ ସଖୁର ମୃତ ଦେହକୁ ଜଳାଇଥିବା ବ୍ରାହ୍ମଣ ଜଣକ କିଛି ଦିନ ପରେ ଆସି ତାଙ୍କ ଘରେ ସଖୁର ମୃତ୍ୟୁ କଥା ଜଣାଇଲେ। ଏହା ଶୁଣି ଶାଶୁ ନିଆଁବାଣ। ସେ ରାଗରେ କହିଲା—''କ'ଣ କହୁଛ ପଣ୍ଡିତେ! ମୋ ସଖୁ ମରିଯାଇଥିଲା? ତମକୁ ଆଉ କିଛି ଭଲ କଥା କହିବାକୁ ମିଳିଲା ନାହିଁ ଯେ ମୋ ବୋହୂର ମୃତ୍ୟୁ ସମାଗ୍ଭର ଦେଉଛ। ମୋ ବୋହୂ ତ ଘରୁ ପାଦ କାଢ଼ି ନାହିଁ, ପୁଣି ମଲା କେତେବେଳେ?'' ସେତେବେଳକୁ ସଖୁର ଶ୍ୱଶୁର, ସ୍ୱାମୀ ଓ ସେହି ଗାଁର ମାନ୍ୟଗଣ୍ୟ ଅନେକ ଲୋକ ମଧ୍ୟ ରୁଣ୍ଡ ହୋଇ ସାରିଥିଲେ। ପଣ୍ଡିତେ କହିଲେ—''ମୁଁ ନିଜ ହାତରେ ତାକୁ ଶ୍ମଶାନରେ ଜଳାଇ ଆସିଛି, ମୁଁ କେମିତି ତୁମ କଥା ମାନିନେବି।'' ପଣ୍ଡିତେ ନ ମାନିବାରୁ ଶାଶୁ ସଖୁକୁ ଡାକି ପଗ୍ଭରିଲା—''ବୋହୂ! ପଣ୍ଡିତେ ଏ କ'ଣ କହୁଛନ୍ତି? ତୋତେ ତ ଆମେ ବାନ୍ଧି ରଖିଥିଲୁ, ପୁଣି ତୁ ପଣ୍ଢରପୁର ଯାଇ ମରିଯାଇଥିଲୁ ବୋଲି ପଣ୍ଡିତେ କହୁଛନ୍ତି କେମିତି?'' ସଖୁର ସବୁ କଥା ମନେପଡ଼ିଗଲା। ସେ କହିଲା—''ମାଆ! ପଣ୍ଡିତଙ୍କ କଥା ମିଛ ନୁହେଁ। ତୁମେମାନେ ମୋତେ ବାନ୍ଧିସାରି ଶୋଇଯିବା ପରେ ମୋ ଭଳି ଜଣେ ସ୍ତ୍ରୀଲୋକ

ଆସି ମୋର ବନ୍ଧନ ଖୋଲିଦେଲା ଏବଂ ମୋତେ ପଣ୍ଢରପୁର ଯିବାକୁ କହି ସେ ନିଜେ ମୋ ଜାଗାରେ ବାନ୍ଧି ହୋଇଗଲା । ମୁଁ ପଣ୍ଢରପୁର ଯାଇ ଠାକୁରଙ୍କ ଦର୍ଶନ କଲାବେଳେ ଅଚେତ ହୋଇଗଲି । ପରେ ସ୍ୱପ୍ନ ଦେଖିଲି ଯେ ମୁଁ ମରିଯାଇଛି । ପୁଣି ମାଆ ରୁକ୍ମିଣୀ ମୋତେ ବଞ୍ଚେଇଦେଇ ଘରକୁ ଫେରି ଆସିବାକୁ କହିଲେ । ମୁଁ ଫେରିଆସି ଗାଆଁ ମୁଣ୍ଡରେ କୃଷ୍ଣାନଦୀ କୂଳରେ ସେହି ସ୍ତ୍ରୀଲୋକଟିକୁ ଦେଖିଲି । ସେ ମୋ ଭଲମନ୍ଦ ପଗ୍ଚରି ମୋତେ କଳସୀଟିକୁ ଦେଇ କୁଆଡ଼େ ଉଭେଇଗଲା । ବୋଧହୁଏ ସେ ସାଧାରଣ ନାରୀ ନ ଥିଲା, ସେ ଥିଲେ ମୋର ପଣ୍ଢରିନାଥ । ମାଆ! ତୁମେମାନେ ଧନ୍ୟ! ଧନ୍ୟ ତୁମ୍ଭମାନଙ୍କର ସୌଭାଗ୍ୟ! ତୁମକୁ ପ୍ରଭୁଙ୍କର ଦର୍ଶନ ମିଳିଲା ।

ସଖୁ କଥାରେ ଘରଲୋକଙ୍କର ବିଶ୍ୱାସ ହେଲା । ସେମାନେ ପ୍ରବଳ ପଶ୍ଚାତ୍ତାପ କଲେ । ନିଜକୁ ଧିକ୍କାର କରି କହିଲେ—"ହାୟ! ହାୟ!! ବୋହୂରୂପରେ ଲକ୍ଷ୍ମୀପତି ଭଗବାନ ଆସି ଆମର ସେବା କଲେ । ଆମେ ତାଙ୍କୁ ଚିହ୍ନି ପାରିଲୁ ନାହିଁ । ଆମର ପାପମୟ ଜୀବନକୁ ଧିକ୍ । ଆମେ ପ୍ରଭୁଙ୍କ ସେବା କରିବା କଥା, କିନ୍ତୁ ଅଜ୍ଞାନରେ ତାଙ୍କଠାରୁ ସେବା ନେଲୁ । ସଖୁ ଭଳି ସୁଶୀଳା ବୋହୂକୁ କେତେ କଷ୍ଟ ଦେଲୁ! ତାକୁ ବହୁ ଦିନଯାଏ ବାନ୍ଧି କେତେ ହଇରାଣ କଲୁ!"

ପ୍ରଭୁଙ୍କ ଦର୍ଶନରୁ ସେମାନଙ୍କର ହୃଦୟ ଅତ୍ୟନ୍ତ ପବିତ୍ର ହୋଇସାରିଥିଲା । ଏଥର ସେମାନେ ମନପ୍ରାଣ ଦେଇ ଭଗବାନଙ୍କ ଭକ୍ତିରେ ଜୀବନ ଉତ୍ସର୍ଗ କରିଦେଲେ । ସତରେ ଭଗବାନ କେଡ଼େ ଦୟାଳୁ! ସେ ଭକ୍ତ ପାଇଁ କ'ଣ ବା ନ କରନ୍ତି? ସେ ଦେଖନ୍ତି ଭକ୍ତର ଅନାବିଳ ପ୍ରୀତି, ପୁଣି ଭକ୍ତର ପ୍ରେମଡୋରିରୁ ମୁକ୍ତ ହେବାକୁ ସେ କଦାପି ଚେଷ୍ଟା ମଧ୍ୟ କରନ୍ତି ନାହିଁ । ତାଙ୍କ ଦୃଷ୍ଟିରେ ଜାତି, କୁଳ ଇତ୍ୟାଦିର ବାଛବିଗ୍ଚର ନ ଥାଏ । ସେ ଭକ୍ତ ପାଇଁ ଉଚ୍ଚ-ନୀଚ କୌଣସି ପ୍ରକାର କାର୍ଯ୍ୟ କରିବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ । ପ୍ରକୃତରେ ଭଗବାନ ଓ ଭକ୍ତଙ୍କ ମଧ୍ୟରେ କୌଣସି ପ୍ରଭେଦ ନ ଥାଏ । ସେହି ବିଶ୍ୱବ୍ୟାପକ ସଚ୍ଚିଦାନନ୍ଦ ଜଗଦୀଶ୍ୱର ହିଁ ଭକ୍ତରୂପରେ ମହୀମଣ୍ଡଳରେ ବିଚରଣ କରୁଥାନ୍ତି ଏବଂ ଅଗଣିତ ଅଜ୍ଞାନୀଜନଙ୍କୁ ଭକ୍ତିମୟ ଜୀବନ ବିତାଇବାକୁ ପ୍ରେରଣା ଦେଇ ସେମାନଙ୍କର ମାର୍ଗକୁ ସୁଖମୟ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଆତ୍ମୋଦ୍ଧାର କରି ଦିଅନ୍ତି ।



# ପହିଲମାନ୍ ଭକ୍ତ ଧନୁର୍ଦ୍ଦାସ

ମନୁଷ୍ୟଠାରେ ବିଷୟାସକ୍ତି ଦେଖାଯିବା ସ୍ୱାଭାବିକ କଥା । ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ମାନ-ସମ୍ମାନ, ବଡ଼ିମା, କୀର୍ତ୍ତି ଇତ୍ୟାଦି ବିଷୟ ମଧ୍ୟରୁ କୌଣସି ଏକ ଆସକ୍ତି ମନୁଷ୍ୟଠାରେ ଅଧିକ ପ୍ରବଳ ହୋଇଗଲେ, ତାହାକୁ ସେ ସହଜରେ ଛାଡ଼ିପାରେ ନାହିଁ; ଫଳରେ ସେ ପରମାର୍ଥ ମାର୍ଗରେ ଆଶାନୁରୂପ ଅଗ୍ରଗତି କରିପାରେ ନାହିଁ । ବାରମ୍ବାର ତା'ର ପଥରେ ବିଷୟାସକ୍ତି ପ୍ରତିବନ୍ଧକ ସୃଷ୍ଟି କରେ ଓ ତାକୁ ପଥଚ୍ୟୁତ କରିବାକୁ ପ୍ରୟାସ କରେ । ଜ୍ଞାନମାର୍ଗ, ଭକ୍ତିମାର୍ଗ ଓ କର୍ମମାର୍ଗ ମଧ୍ୟରୁ ଯେ କୌଣସି ମାର୍ଗରେ ଚାଲୁଥିଲେ ମଧ୍ୟ ତା'ର ସାଧନାର ସିଦ୍ଧିରେ ବିଳମ୍ବ ଘଟେ ।

କୌଣସି ଇନ୍ଦ୍ରିୟ ବା ମନ ଯଦି ଅସଂଯତ ହୋଇ ତା'ର ବିଷୟ ରସରେ ଅତ୍ୟଧିକ ଆସକ୍ତ ହୋଇଯାଏ, ତେବେ ତାକୁ ସେଥିରୁ ନିବର୍ତ୍ତାଇବା ବା ନିରୋଧ କରିବା ଦୁଃସାଧ୍ୟ ହୋଇପଡ଼େ । କିନ୍ତୁ ଅତି ଚତୁରତା ଓ ଦକ୍ଷତାର ସହିତ ଯଦି ତା' ବିଷୟାଧାରର ସ୍ଥାନାନ୍ତରଣ କରି ଦିଆଯାଏ, ମନଭ୍ରମରକୁ ଯଦି ଗୁଡ଼ପାଣି ତୁଲ୍ୟ ନଶ୍ୱର, ବିକାରପୂର୍ଣ୍ଣ ସାଂସାରିକ ରସରୁ ଉଡ଼ାଇ ନେଇ ଅବିନଶ୍ୱର, ଦିବ୍ୟ, ଚିନ୍ମୟ ପ୍ରଭୁ-ପଦାରବିନ୍ଦ-ମକରନ୍ଦ ନିକଟରେ ପହଞ୍ଚାଇ ଦିଆଯାଏ, ତେବେ ସେ ଆଉ ତୁଚ୍ଛ ସାଂସାରିକ ରସ ନିକଟକୁ କଦାପି ଫେରିବ ନାହିଁ ।

ବିଷୟାସକ୍ତି ଏକ ବହୁତ ବଡ଼ ଦୋଷ; କିନ୍ତୁ ତାହା ଭଗବାନଙ୍କ ପ୍ରତି ହେଲେ ଗୁଣରେ ପରିବର୍ତ୍ତିତ ହୋଇଯାଏ, ଦୂଷଣ ହିଁ ଭୂଷଣ ପାଲଟିଯାଏ । ଯେଉଁ ବିଷୟାସକ୍ତି ମନୁଷ୍ୟକୁ ଅଧଃପତନର ଅନ୍ଧକାରମୟ ଗର୍ତ୍ତକୁ ଠେଲିଦିଏ, ତାହା ହିଁ ଭଗବାନଙ୍କ ପ୍ରତି ହେଲେ ଉତ୍‌ଥାନର ଚରମ ସୀମାରେ ପହଞ୍ଚାଇ ଦିଏ, ଜୀବକୁ ପରମ ପ୍ରେମର ଅଧିକାରୀ କରିଦିଏ ।

ବିଷୟାସକ୍ତିକୁ ଜ୍ଞାନମାର୍ଗରେ ତ୍ୟାଗ କରାଯାଏ, କର୍ମମାର୍ଗରେ ଶୁଦ୍ଧ କରାଯାଏ ଏବଂ ଭକ୍ତିମାର୍ଗରେ ତାହାର ମାର୍ଗ ବଦଳାଇ ଦିଆଯାଏ । ବିଷୟାସକ୍ତିର ମାର୍ଗ ବଦଳାଇବା ଫଳରେ ତାହାର ବେଗ ଯେତେ ପ୍ରବଳ ହୋଇଥାଏ, ସେତିକି ତୀବ୍ର ବେଗରେ ସେ ତା'ର ଲକ୍ଷ୍ୟ ନିକଟରେ ପହଞ୍ଚାଇ ଦିଏ । ବେଗବତୀ ସ୍ରୋତସ୍ୱିନୀ ପାହାଡ଼ୀ ନଦୀର ପ୍ରବାହକୁ ଅବରୋଧ କରିବା ଅତ୍ୟନ୍ତ ଦୁଃସାଧ୍ୟ କାର୍ଯ୍ୟ, ମାତ୍ର ତା' ଗତିର ଦିଗ ବଦଳାଇ ଯଦି ଅନେକ କେନାଲ ମାଧ୍ୟମରେ ଛାଡ଼ି ଦିଆଯାଏ, ତେବେ ମହାପ୍ରଳୟଙ୍କାରୀ ବନ୍ୟା ସୃଷ୍ଟି କରି ଅନେକ ଧନଜୀବନ ନାଶ କରିବାକୁ

ଯାଉଥିବା ସେହି ଅସୀମ ଜଳରାଶି ସୁଦୂର ଶୁଷ୍କ କୃଷିକ୍ଷେତ୍ରକୁ ସୁଜଳା ସୁଫଳା ଶସ୍ୟଶ୍ୟାମଳା କରି ଅସଂଖ୍ୟ ପ୍ରାଣୀଙ୍କର ଜୀବନ ରକ୍ଷା କରିଥାଏ।

ଠିକ୍ ଏହା ହିଁ ଘଟିଛି ଏଠାରେ ବର୍ଣ୍ଣିତ ଚରିତର ନାୟକ ଧନୁର୍ଦ୍ଦାସଙ୍କର ଜୀବନରେ। ତାଙ୍କର ପୂର୍ବ ଜୀବନରେ ନେତ୍ର-ଇନ୍ଦ୍ରିୟର ବିଷୟ 'ରୂପ' ପ୍ରତି ପ୍ରବଳ ଓ ଅଦମ୍ୟ ଆସକ୍ତି ଥିଲେହେଁ ସେ କିପରି ଭକ୍ତିର ଚରମ ନିଷ୍ଠାରେ ଉପନୀତ ହେବା ସଙ୍ଗେ ସଙ୍ଗେ ଆଦର୍ଶ ବୈଷ୍ଣବତ୍ୱ ପ୍ରାପ୍ତ ହେଲେ, ତାହା ସ୍ପଷ୍ଟ ପ୍ରକଟିତ ଓ ପରିସ୍ଫୁଟ ହୋଇଛି।

ଦକ୍ଷିଣ ଭାରତର ତ୍ରିଚିନାପଲ୍ଲୀ ନିକଟସ୍ଥ ଏକ ସ୍ଥାନର ନାମ ଉରୟୂର, ଯାହା କି ପୂର୍ବେ ନିଚୁଲାପୁରୀ ନାମରେ ବିଖ୍ୟାତ ଥିଲା। ଏହା ବୈଷ୍ଣବମାନଙ୍କର ତୀର୍ଥ ସ୍ଥଳ। ଶ୍ରୀରାମାନୁଜାଚାର୍ଯ୍ୟଙ୍କ ସମୟରେ ଏଠାରେ ଧନୁର୍ଦ୍ଦାସ ନାମକ ଜଣେ ପହିଲମାନ୍ ରହୁଥିଲା। ପହିଲମାନ୍ ହୋଇଥିବାରୁ ଶାରୀରିକ ବଳ ତ ତା'ର ବହୁତ ଥିଲା, କିନ୍ତୁ ରୂପ ଆସକ୍ତି ଆଗରେ ସେ ଏକଦମ ନିର୍ବଳ ଓ ଅସମର୍ଥ ଥିଲା। ଏହି ଆସକ୍ତି ତାକୁ ଏକ ରୂପ ସୌନ୍ଦର୍ଯ୍ୟର ଅଧିକାରିଣୀ ବେଶ୍ୟା ପ୍ରତି ଅତ୍ୟନ୍ତ ଆକର୍ଷିତ କରିଦେଲା। ହେମାମ୍ବା ନାମ୍ନୀ ସେହି ବେଶ୍ୟାର ଇଚ୍ଛା ପୂରଣ କରିବା ସହିତ ସେ ତାକୁ ନିଜର ପ୍ରେୟସୀ ପତ୍ନୀ ରୂପେ ଗ୍ରହଣ କରି ପାଖରେ ରଖିଲା। ଯଦିଓ ତା'ର କାମ ବାସନା ସେତେ ପ୍ରବଳ ନ ଥିଲା, ତଥାପି ହେମାମ୍ବାର ଅଙ୍ଗସୌଷ୍ଠବ ଓ ଚନ୍ଦ୍ରମା ପରି ସୁନ୍ଦର ମୁଖମଣ୍ଡଳକୁ ଦେଖି ଧନୁର୍ଦ୍ଦାସ ଏତେ ମୋହିତ ହୋଇଯାଇଥିଲା ଯେ, ନିଜର ବଳ, ପୌରୁଷ, ଲୋକଲଜ୍ଜା ପ୍ରଭୃତିକୁ ସେହି ବେଶ୍ୟାର ପାଦତଳେ ଅଜାଡ଼ି ଦେଇ ତା'ର ଆଜ୍ଞାଧୀନ କ୍ରୀତଦାସ ପରି ଆଚରଣ କରିବାକୁ ତିଳେମାତ୍ର କୁଣ୍ଠା ନ ଥିଲା ତା' ମନରେ। ପ୍ରକୃତି ଅବଶ୍ୟ କାହାକୁ କାହାକୁ ଏପରି ନୈସର୍ଗିକ ରୂପ ସୌନ୍ଦର୍ଯ୍ୟ ପ୍ରଦାନ କରିଥାଏ, କିନ୍ତୁ ରୂପଜୀବିନୀ ହୋଇଥିବାରୁ ପୁରୁଷଙ୍କୁ ଆକର୍ଷିତ କରିବାକୁ ବାହ୍ୟ ଅଙ୍ଗରାଗ, ଉପଲେପ ଓ ବସ୍ତ୍ରାଳଙ୍କାରରେ ମଣ୍ଡିତ ହୋଇ ସେ ଆହୁରି ଅଧିକ ମନମୋହିନୀ ରୂପେ ନିଜକୁ ସଜାଇବା ସ୍ୱାଭାବିକ। ଧନୁର୍ଦ୍ଦାସ ନିଜ ନେତ୍ର ଇନ୍ଦ୍ରିୟକୁ ସଂଯତ କରି ନ ପାରିବା ହେତୁ ତା'ର ସ୍ୱାମୀ ହୋଇ ମଧ୍ୟ ପୋଷାମାଙ୍କଡ଼ ପରି ହୋଇଗଲା। ସେ ତାକୁ ଦଣ୍ଡେ ଛାଡ଼ି କେଉଁଠାକୁ ଯାଉ ନ ଥିଲା। ତା'ର ମୁଖମଣ୍ଡଳକୁ ନ ଦେଖିଲେ ଧନୁର୍ଦ୍ଦାସ ବାତୁଳ ପରି ହୋଇଯାଉଥିଲା।

ଶ୍ରୀମଦ୍ଭଗବଦ୍ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଛନ୍ତି ଯେ ନିଜ

ନିଜ ବିଷୟମାନଙ୍କରେ ବିଚରଣଶୀଳ ଇନ୍ଦ୍ରିୟମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବି ଇନ୍ଦ୍ରିୟ ଯଦି ମନକୁ ନିଜର ଅନୁଗାମୀ କରିନିଏ, ତେବେ ନଦୀଜଳରେ ବାୟୁ ନୌକାକୁ ଭସାଇ ନେବା ପରି ସେହି ମନ ହିଁ ଅସଂଯତ ମନୁଷ୍ୟର ବୁଦ୍ଧିକୁ ହରଣ କରିନିଏ। ସେ ଠିକ୍ ଭୁଲ୍ ବିଗ୍ୱର ହରାଇବସେ। ପୁଣି ଭାଗବତରେ କୁହାଯାଇଛି ଯେ—

**ଇନ୍ଦ୍ରିୟୈର୍ବିଷୟାକୃଷ୍ଟୈଃ ଆକ୍ଷିପ୍ତଂ ଧ୍ୟାୟତାଂ ମନଃ।**
**ଚେତନାଂ ହରତେ ବୁଦ୍ଧେସ୍ତମ୍ବତୋୟମିବ ହ୍ରଦାତ୍ ॥**

"ଜଳାଶୟ କୂଳରେ ଜନ୍ମିଥିବା କୁଶ ଜାତୀୟ ତୃଣସମୂହ ଯେପରି ଚେର ମାଧ୍ୟମରେ ଧୀରେ ଧୀରେ ସରୋବରର ପାଣିକୁ ଶୋଷଣ କରି ନିଅନ୍ତି, ସେହିପରି ବିଷୟାସକ୍ତ ଇନ୍ଦ୍ରିୟ ଦ୍ୱାରା ବିଚଳିତ ମନ ହିଁ ବୁଦ୍ଧିର ଚେତନାକୁ ହରଣ କରିନିଏ।"

ଠିକ୍ ଏହା ହିଁ ଘଟିଥିଲା ଧନୁର୍ଦାସ ଜୀବନରେ। କେଉଁଠିକୁ ଗଲେ ସ୍ତ୍ରୀକୁ ସଙ୍ଗରେ ନେଇଯାଏ। ନିଜର ଇଜ୍ଜତ ମହତ ଭୁଲି, ସ୍ତ୍ରୀର ଆଗେ ଆଗେ ତା'ର ମୁଖମଣ୍ଡଳକୁ ଦେଖି ଦେଖି ପଛୁଆ ପଛୁଆ ଗ୍ୱଲେ। କେଉଁଠି ବସିଲେ ତା'ର ପ୍ରେୟସୀ ଆଡ଼କୁ ମୁହଁ କରି ବସେ। ତା'ର ଏହି ବ୍ୟବହାର ଦେଖି ଲୋକେ ହସନ୍ତି, ମାତ୍ର ଧନୁର୍ଦାସର ସେଥିପ୍ରତି ଶୋଚନା କିମ୍ବା ଲଜ୍ଜା ନ ଥାଏ। ତେଣୁ ଯଥାର୍ଥରେ କୁହାଯାଇଛି ଯେ—**'କାମାତୁରାଣାଂ ନ ଭୟଂ ନ ଲଜ୍ଜା।'** ହେମାମ୍ବାର ରୂପରେ ସେ ଏତେ ମୋହାନ୍ଧ ହୋଇଯାଇଥିଲା ଯେ ଲୋକଲଜ୍ଜା ମଧ୍ୟ ତାକୁ ସେଥିରୁ ନିବୃତ୍ତ କରି ପାରୁ ନ ଥିଲା।

ଶ୍ରୀରଙ୍ଗକ୍ଷେତ୍ର ଦକ୍ଷିଣଭାରତର ଏକ ବିଶିଷ୍ଟ ତୀର୍ଥକ୍ଷେତ୍ର। ଏହା ତ୍ରିଚିନାପଲ୍ଲୀଠାରୁ ବେଶୀ ଦୂର ନୁହେଁ। ଏଠାରେ ନାନା ପର୍ବରେ ଶ୍ରୀରଙ୍ଗନାଥ ମନ୍ଦିରରେ ପ୍ରତିବର୍ଷ ଅନେକ ମହୋତ୍ସବ ପାଳିତ ହୁଏ। ଦୂର ଦୂରାନ୍ତରୁ ଆଗତ ଲକ୍ଷ ଲକ୍ଷ ଯାତ୍ରୀ ଓ ଦର୍ଶନାର୍ଥୀଙ୍କର ସମାଗମ ହୁଏ। ଥରେ ଚୈତ୍ରମାସରେ ଶ୍ରୀରଙ୍ଗନାଥଙ୍କର ବସନ୍ତ ଉତ୍ସବ ଗ୍ୱଲିଥାଏ। ବହୁ ସଂଖ୍ୟାରେ ଯାତ୍ରୀ ଯାଉଥାନ୍ତି ପ୍ରଭୁ ଶ୍ରୀରଙ୍ଗନାଥଙ୍କ ଦର୍ଶନ ନିମନ୍ତେ। ଧନୁର୍ଦାସର ପ୍ରେୟସୀ ହେମାମ୍ବା ଶ୍ରୀରଙ୍ଗମ୍ ଯିବାକୁ ଇଚ୍ଛା ପ୍ରକାଶ କଲା। ନିଜ ପରମ ପ୍ରେୟସୀର ଇଚ୍ଛା ପୂରଣ କରିବାକୁ ପ୍ରସ୍ତୁତ ହୋଇଗଲା ଧନୁର୍ଦାସ। ସଙ୍ଗରେ କେତେ ଜଣ ସେବକ ମଧ୍ୟ ଗଲେ; ହେଲେ ସ୍ତ୍ରୀର ସମ୍ମୁଖ ସେବାରେ ସେ ନିଜେ ଉପସ୍ଥିତ ରହୁଥିଲା। ସେମାନେ ଶ୍ରୀରଙ୍ଗମ୍ ପହଞ୍ଚିଗଲେ। ମନ୍ଦିର ନିକଟ ହୋଇ ଆସିଲା। ରାସ୍ତାରେ ପ୍ରବଳ ଭିଡ଼ ହୋଇଥାଏ। ଖରା ଓ ଗରମ ହେତୁ ଦିନ

ଦଶଟା ବେଳେ ମଧ୍ୟ ଦେହରୁ ଗମ୍‌ଗମ୍ ଝାଳ ବହୁଥାଏ। ଆଗରେ ଗ୍ଲିଥାଏ ଧନୁର୍ଦାସ ଓ ପଛରେ ହେମାମ୍ବା। ଧନୁର୍ଦାସ ନିଜେ ଝାଳରେ ବୁଡ଼ି ଯାଇଥାଏ। ଏତେ ଭିଡ଼ରେ ନିଜେ ଗ୍ଲିବା ଅତ୍ୟନ୍ତ କଷ୍ଟକର ହେଉଥିବା ସତ୍ତ୍ୱେ ସେ ତା'ର ସୁକୋମଳାଙ୍ଗୀ ପ୍ରେୟସୀକୁ ଖରାରୁ ରକ୍ଷା କରିବାକୁ ତା' ମୁଣ୍ଡ ଉପରେ ଛତାଟିଏ ଟେକି ଧରି ତା' ଆଡ଼କୁ ମୁହଁ କରି ପଛୁଆ ପଛୁଆ ଗ୍ଲିଥାଏ। ସେତେବେଳେ ରାସ୍ତାର ଖାଲଢିପ ପ୍ରତି ତା'ର ଦୃଷ୍ଟି ନ ଥାଏ କି ନିଜ ଦେହ ପ୍ରତି ଖାତିରି ନ ଥାଏ।

ଯେଉଁମାନେ ପୂର୍ବରୁ ଧନୁର୍ଦାସ କଥା ଜାଣିଥାନ୍ତି, ସେମାନଙ୍କ ପାଇଁ ଏହା ତ କିଛି ନୂଆ କଥା ନ ଥିଲା, କିନ୍ତୁ ନୂଆ ଲୋକମାନଙ୍କ ପାଇଁ ଏହା ଅତ୍ୟନ୍ତ କୁତୂହଳର ବିଷୟ ଥିଲା। ଏମିତି ବିଚିତ୍ର ସ୍ତୈଣ ପୁରୁଷଟିକୁ ଦେଖି କେତେକ ଲୋକ ପଛକୁ ବୁଲି ବାରମ୍ବାର ତାକୁ ଗ୍ହୁଁଥାନ୍ତି ଏବଂ ମୁରୁକି ହସା ଦେଇ ଗ୍ଲିଯାଉଥାନ୍ତି। କେତେକ ମନେ ମନେ ଅନ୍ୟ କିଛି କଥା ଅନୁମାନ କରି ଅଥବା କେହି ବିଶିଷ୍ଟ ମହିଳା ବୋଲି ଭାବି ନୀରବରେ ଗ୍ଲିଯାଉଥାନ୍ତି।

ସେହି ସମୟରେ ଶ୍ରୀରାମାନୁଜାଗ୍ର୍ଯ୍ୟ ଶ୍ରୀରଙ୍ଗମ୍ କ୍ଷେତ୍ରରେ ଅବସ୍ଥାନ କରୁଥିଲେ। ସେ ମନ୍ଦିରକୁ ଯିବା ବେଳେ ଅଗ୍ଣକ ଜନଗହଳି ଭିତରେ ଏହି ଦୃଶ୍ୟ ତାଙ୍କ ଦୃଷ୍ଟିରେ ପଡ଼ିଗଲା। ସ୍ତୈଣ ପୁରୁଷର ଭାବଭଙ୍ଗୀ କିଛି ଭିନ୍ନ ପ୍ରକାରର ହୋଇଥାଏ। ସେ ତାକୁ ଦେଖିବାମାତ୍ରେ ତା'ର ଚରିତ୍ର ବିଷୟରେ ଅନୁମାନ କରିନେଲେ। ତା'ର ଏହି କାର୍ଯ୍ୟକଳାପ ତାଙ୍କୁ ଅଦ୍ଭୁତ ଲାଗିଲା। ସେ ନିଜର ଜଣେ ଅନୁଗାମୀ ଶିଷ୍ୟକୁ ପଗ୍ରିଲେ—"କିଏ ଏହି ନିର୍ଲଜ୍ଜ ବ୍ୟକ୍ତି, ଯିଏ ଏତେ ଜନଗହଳି ଭିତରେ ମଧ୍ୟ ଏପରି ସ୍ତୈଣ ବ୍ୟବହାର କରିବାକୁ ଲଜ୍ଜା ବୋଧ କରୁ ନାହିଁ?" ଶିଷ୍ୟଟି କହିଲା—"ଏ ହେଉଛି ପହିଲମାନ୍ ଧନୁର୍ଦାସ; ଆଉ ସେ ସ୍ତ୍ରୀଲୋକଟି ଗୋଟିଏ ବେଶ୍ୟା ଥିଲା। ତା'ର ରୂପ ସୌନ୍ଦର୍ଯ୍ୟରେ ଇଏ ଏତେ ମୋହିତ ହୋଇଯାଇଛି ଯେ ଦଣ୍ଡେମାତ୍ର ତା'ର ମୁଖ ନ ଦେଖିଲେ ବ୍ୟାକୁଳ ହୋଇ ପଡୁଛି। ତେଣୁ ଏବେ ଧନୁର୍ଦାସ ତାକୁ ନିଜ ପାଖରେ ଆଣି ରଖିଛି।"

ପତିତ ଓ ପଥଭ୍ରଷ୍ଟ ଜୀବଙ୍କ ଦୁଃଖରେ ଦୁଃଖୀ ହେବା ସନ୍ଥଜନଙ୍କର ସ୍ୱଭାବ। ଆଗ୍ର୍ଯ୍ୟଙ୍କ ମନରେ ବିଚରା ପଥଭ୍ରଷ୍ଟ ଜୀବ ପ୍ରତି ଦୟା ଆସିଲା। ସେ ଶିଷ୍ୟକୁ କହିଲେ—"ତାକୁ କହିବ, ସେ ଅପରାହ୍ଣରେ ଆସି ମୋତେ ଦେଖା କରିବ।"

ଶିଷ୍ୟ ଯାଇ ଧନୁର୍ଦାସକୁ ଗୁରୁଦେବଙ୍କ ଆଦେଶ ଜଣାଇଦେଲା। ଧନୁର୍ଦାସ ଶ୍ରୀରାମାନୁଜାଗ୍ର୍ଯ୍ୟଙ୍କ ଆଦେଶ ଶୁଣି ଚମକି ପଡ଼ିଲା। ସେ ମନେ ମନେ ଭାବିଲା,

ମୋର ନିର୍ଲଜ୍ଜ ବ୍ୟବହାର ଦେଖି ବୋଧହୁଏ ସ୍ୱାମୀଜୀ ଅପ୍ରସନ୍ନ ହୋଇଛନ୍ତି; ସେଥିପାଇଁ ମୋତେ ମଠକୁ ଡକାଇଛନ୍ତି। ସତ କଥା। ମୋ ପରି ନିର୍ଲଜ୍ଜ ଆଉ କିଏ ଅଛି! ଏତେ ଲୋକ ଶ୍ରଦ୍ଧାଭକ୍ତିର ସହିତ ପ୍ରଭୁ ରଙ୍ଗନାଥଙ୍କୁ ଦର୍ଶନ କରିବାକୁ ଆସିଛନ୍ତି; ପାହାଚକୁ ଛୁଇଁ ଛୁଇଁ ପ୍ରଣାମ କରି କରି ଯାଉଛନ୍ତି, ଦୂରରୁ ମନ୍ଦିର ଚୂଡ଼ାକୁ ଦର୍ଶନ କରି କରଯୋଡ଼ି ପ୍ରଣାମ କରୁଛନ୍ତି, ଅଥଚ ମୁଁ ଅଧମ ସ୍ତ୍ରୀର ମୁହଁକୁ ଚାହିଁ ଚାହିଁ ଯାଉଛି! କେତେ ମୋର ସ୍ତ୍ରୀ ପ୍ରତି ଆସକ୍ତି। ଶ୍ରୀରାମାନୁଜାଚାର୍ଯ୍ୟ ମୋତେ ନିଶ୍ଚୟ ଗାଳି ଦେବେ, ମୋ ଉପରେ ବହୁତ ବିଗିଡ଼ିବେ। କ'ଣ କରିବି? ନ ଯିବା ବି ଠିକ୍ ହେବ ନାହିଁ। ତାଙ୍କ ଆଦେଶର ଅବଜ୍ଞା ହେବ, ତାଙ୍କର ଅପମାନ ହେବ। ଏପରି ନାନା କଥା ଭାବି ଶେଷରେ ସେ ତାଙ୍କ ପାଖକୁ ଯିବାକୁ ରାଜି ହୋଇଗଲା।

ଏଣେ ଶ୍ରୀରାମାନୁଜାଚାର୍ଯ୍ୟ ମନ୍ଦିରକୁ ଯାଇ ଶ୍ରୀରଙ୍ଗନାଥଙ୍କୁ ଦର୍ଶନ କଲେ। ତାଙ୍କ ମନରେ ସେହି ବିମୁଖ ଜୀବର ଦୟନୀୟ ସ୍ଥିତି ବାରମ୍ବାର ଉଙ୍କି ମାରୁଥାଏ। ସେ ଧନୁର୍ଦ୍ଦାସ ନିମନ୍ତେ ପ୍ରଭୁଙ୍କୁ ପ୍ରାର୍ଥନା କରି କହିଲେ—"ହେ ଦୟାମୟ! ହେ କରୁଣାସାଗର!! ତୁମେ ତ ରୂପମାଧୁର୍ଯ୍ୟର ଅନନ୍ତ ନିଧି। ତୁମର ମନମୋହନ ରୂପ ଦେଖି କୋଟି କୋଟି କାମଦେବ ମଧ୍ୟ ଲଜ୍ଜିତ ହୋଇଯିବେ। ତେଣୁ ହେ ମୋର ସ୍ୱାମୀ! ବିଚରା ପତିତ ଜୀବ ପ୍ରତି ଟିକିଏ ଦୟା କର। ତୁମର ନେତ୍ରାନନ୍ଦଦାୟୀ ଅସୀମ ମାଧୁର୍ଯ୍ୟନିଧି ମନମୋହନ ରୂପର ଲେଶମାତ୍ର ଝଲକ ଦେଖାଇ ତାକୁ ପତନ ଗର୍ତ୍ତରୁ ଉଦ୍ଧାର କର ପ୍ରଭୁ। ଅବଶ୍ୟ ତା'ର ଏଭଳି ସୁକୃତ ଅଛି କି ନା ମୁଁ ଜାଣେନା, ତଥାପି ଅହୈତୁକୀ ଦୟା କରିବା ତ ତୁମର ସ୍ୱଭାବ! ତାକୁ ତୁମ ସୌନ୍ଦର୍ଯ୍ୟରେ ଆକୃଷ୍ଟ କରି ତୁମ ଶ୍ରୀଚରଣରେ ଶରଣ ଦିଅ।"

ପ୍ରଭୁ ତାଙ୍କ ସିଦ୍ଧ ଭକ୍ତଙ୍କର କରୁଣାର୍ଦ୍ର ହୃଦୟ ଓ ପରଦୁଃଖକାତର ସ୍ୱଭାବ ଦେଖି ତାଙ୍କର ପ୍ରାର୍ଥନା ସ୍ୱୀକାର କଲେ। ଆଚାର୍ଯ୍ୟଙ୍କୁ ଅନୁଭବ ହେଲା, ସତେ ଯେପରି ଭଗବାନ ତାଙ୍କ ପ୍ରାର୍ଥନାକୁ ସମର୍ଥନ କରି ତାଙ୍କୁ କହୁଛନ୍ତି—"ଭକ୍ତବର! ତୁମର ଏ ପବିତ୍ର ଭାବନାରେ ମୁଁ ଅତ୍ୟନ୍ତ ପ୍ରୀତ ହେଲି। ତୁମେ ଯାହା ପାଇଁ ଏତେ ଚିନ୍ତିତ, ମୁଁ ତାକୁ କେମିତି ବା ଛାଡ଼ି ପାରିବି। ଏଣିକି ଧନୁର୍ଦ୍ଦାସର କଲ୍ୟାଣ ହୋଇଗଲା ବୋଲି ଜାଣ। ତୁମେ କେବଳ ଥରଟିଏ ମୋର ଦର୍ଶନ ପାଇଁ ତାକୁ ମୋ ସମ୍ମୁଖକୁ ଡାକି ଆଣ।"

ତେଣେ ଧନୁର୍ଦ୍ଦାସ ମଧ୍ୟାହ୍ନ ଭୋଜନ ସାରି ଅପରାହ୍ନ ବେଳକୁ ମଠରେ ପହଞ୍ଚିଲା। ମନ ଭିତରେ ଅନେକ ଆଶଙ୍କା ଓ ଭୟ। ଶିଷ୍ୟଙ୍କ ଠାରୁ ଧନୁର୍ଦ୍ଦାସର

ଆଗମନ କଥା ଶୁଣି ଆଗ୍ର୍ଯ୍ୟ ତାକୁ ଭିତରକୁ ଡାକିଲେ । ସେ ତା' ଉପରେ ବିରକ୍ତ ନ ହୋଇ ସାଧାରଣ ଭାବରେ ତାକୁ ତା'ର ସେହି ଅଦ୍ଭୁତ ବ୍ୟବହାରର କାରଣ ପଗ୍ଚରିଲେ । ଧନୁର୍ଦ୍ଦାସ ଅତ୍ୟନ୍ତ ବିନୀତ ଭାବରେ ହାତ ଯୋଡ଼ି କହିଲା—''ସ୍ୱାମୀଜୀ! ମୁଁ ସେହି ସ୍ତ୍ରୀର ରୂପରେ ପାଗଳ ହୋଇଯାଇଛି । ତାକୁ ଦଣ୍ଡେମାତ୍ର ନ ଦେଖିଲେ ମୋ ମନ ଅସ୍ଥିର ହୋଇ ପଡୁଛି । ସତ କହୁଛି ଗୋସେଇଁ! ମୋର କାମବାସନା ଏତେ ପ୍ରବଳ ନୁହେଁ, କିନ୍ତୁ ତା'ର ରୂପ ମୋତେ ଏତେ ମୋହିତ କରି ଦେଇଛି ଯେ ମୁଁ ତାକୁ ଛାଡ଼ି ରହିପାରୁ ନାହିଁ । ମୋତେ ଯାହା ଆଦେଶ ଦେବେ ମୁଁ ମାନିବି; କିନ୍ତୁ ତା'ଠାରୁ ମୋତେ ଦୂର ନ କରନ୍ତୁ ଗୋସେଇଁ!'' ସ୍ୱାମୀଜୀ କହିଲେ—''ଯଦି ମୁଁ ତା'ଠାରୁ ତୋତେ ଅଧିକ ସୁନ୍ଦର ରୂପ ଦେଖାଇଦେବି, ତେବେ?''

—''ତା'ଠାରୁ ଅଧିକ ସୁନ୍ଦର ରୂପ ଦେଖାଇଦେଲେ ମୁଁ ନିଶ୍ଚୟ ତାକୁ ଛାଡ଼ିଦେବି ।''

—''ନାଇଁ, ନାଇଁ, ଏମିତି କରିବାଟା ଠିକ୍ ହେବ ନାହିଁ । ସେ ଗୋଟିଏ ବେଶ୍ୟା ଥିଲା । ଏବେ ତୁମ ପାଖରେ ରହି ସେ ତା'ର ପୂର୍ବ ସ୍ୱଭାବ ଛାଡ଼ି ଦେଇଛି । ତାକୁ ଏକ କୂଳ କିନାରା ମିଳିଯାଇଛି । ସେ ତୁମର ସ୍ତ୍ରୀ ହୋଇଯାଇଛି । ତା' ଜୀବନରେ ବିରାଟ ପରିବର୍ତ୍ତନ ଆସିଛି । ତୁମେ ତାକୁ ଛାଡ଼ିଦେଲେ ସେ ପୁଣି ବାରାଙ୍ଗନା ହୋଇଯିବ । ତେଣୁ ମୋ ମତରେ ତୁମେ ତାକୁ ପରିତ୍ୟାଗ ନ କର । ତାକୁ ପତ୍ନୀ କରି ନିଜ ପାଖରେ ରଖ । କିନ୍ତୁ ତା' ପ୍ରତି ଏତେ ଆସକ୍ତ ହୋଇ ଯେଉଁ ବୁଦ୍ଧିବିବେକ ହରାଇ ବସିଛ, ସେଭଳି ଆଚରଣ ଆଉ କରିବ ନାହିଁ । ଯଦି ମୋ କଥାରେ ତୁମେ ରାଜି ହେବ, ତେବେ ମୁଁ ତୁମର ମନକୁ ଆକର୍ଷିତ କରିନେବା ଭଳି ସୁନ୍ଦର ରୂପ ଦେଖାଇଦେବି । ଏମିତି ରୂପ ଦେଖାଇଦେବି ଯେ ହେମାମ୍ବା ତା' ତୁଳନାରେ ତୁମକୁ ତୁଚ୍ଛ ପରି ଦେଖାଯିବ ।''

ଧନୁର୍ଦ୍ଦାସ ତାଙ୍କ କଥାରେ ସମ୍ମତ ହୋଇଗଲା । ଆଗ୍ର୍ଯ୍ୟସ୍ୱାମୀ ତାକୁ କହିଲେ—''ତୁମେ ତେବେ ଆଜି ସନ୍ଧ୍ୟାରେ ଶ୍ରୀରଙ୍ଗନାଥଙ୍କ ଆଳତି ହେବାବେଳେ ମନ୍ଦିରକୁ ଆସି ମୋତେ ଦେଖା କର । କିନ୍ତୁ ମନେରଖ ଏକୁଟିଆ ଆସିବ ।''

ଧନୁର୍ଦ୍ଦାସ ଫେରିଗଲା । ତା'ର ହୃଦୟ ମଧ୍ୟରେ ଜମି ଯାଇଥିବା ଅପଦସ୍ତ ହେବାର ଅନେକ କାଳ୍ପନିକ ଆଶଙ୍କା ଗୋଟିଏ ଦୀର୍ଘଶ୍ୱାସରେ ବାହାରି ଯାଇ ମନକୁ ହାଲୁକା କରିଦେଲା । କିନ୍ତୁ ସେ ଭାବିଲା—''ମୁଁ ବୃଥାରେ ଭୟ କରୁଥିଲି । ଭାବିଥିଲି, ଆଗ୍ର୍ଯ୍ୟ ମୋତେ ବହୁତ ଗାଳି ଦେବେ; କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ

ମୋପରି ହୀନଜାତିକୁ ମଠ ଭିତରକୁ ଡାକିଲେ, ମୋତେ ସ୍ନେହରେ ପାଖରେ ବସାଇଲେ। ମୋତେ ଏତେ ସାନ୍ତ୍ୱନା ଦେଇ ବୁଝାଇଲେ। ତାଙ୍କ କଥାରୁ ଜଣାପଡ଼ୁଛି, ସେ ମୋ ଉପରେ ଦୟାଦୃଷ୍ଟି ରଖିଛନ୍ତି।''

ଘରକୁ ଯାଇ ଧନୁର୍ଦ୍ଦାସ ନିଷ୍କପଟ ଭାବରେ ହେମାମ୍ବା ଆଗରେ ସବୁ କଥା କହିଦେଲା। ହେମାମ୍ବା ମଧ୍ୟ ଚାହୁଁ ନ ଥିଲା ଯେ ଧନୁର୍ଦ୍ଦାସ ତା' ରୂପରେ ଏତେ ଆସକ୍ତ ହୋଇ ଲୋକଲଜ୍ଜା ଛାଡ଼ି ଜନସମାଗମ ମଧ୍ୟରେ ବି ତା' ମୁଖକୁ ଚାହିଁ ଚାହିଁ ପଛୁଆ ପଛୁଆ ଚାଲୁ। ଏହା ତା' ପାଇଁ ଲଜ୍ଜାଜନକ ଥିଲା। ଏବେ ସେ ଧନୁର୍ଦ୍ଦାସର ପତ୍ନୀ ହୋଇ ସାରିଛି। ଧନୁର୍ଦ୍ଦାସର ସ୍ୱଭାବରେ ପରିବର୍ତ୍ତନ ଆଣିବା ତା'ର କାମ୍ୟ ହୋଇଯାଇଛି। ଧନୁର୍ଦ୍ଦାସ କାଳେ ତାକୁ ଛାଡ଼ିଦେବ, କେବଳ ସେଇ ଭୟରେ ସେ ମୁହଁ ଖୋଲି ତାକୁ ଏ କଥା କହିପାରୁ ନ ଥିଲା। ହୁଏତ ଆଜି ଆଚାର୍ଯ୍ୟସ୍ୱାମୀ କିଛି ତା'ର ସ୍ୱଭାବ ସୁଧାରି ଦେବେ, ଏହି ଆଶାରେ ଧନୁର୍ଦ୍ଦାସ କଥା ଶୁଣି ସେ ମନେ ମନେ ଖୁସୀ ମଧ୍ୟ ହେଲା।

ସଂଧ୍ୟା ହେଲା। ଧନୁର୍ଦ୍ଦାସ ରଙ୍ଗନାଥଙ୍କ ମନ୍ଦିରରେ ପହଞ୍ଚିଲା। ସ୍ୱାମୀଜୀଙ୍କ ନିକଟକୁ ଯିବାବେଳେ କେହି ବି ତାକୁ ଅଟକାଇଲେ ନାହିଁ। ଆଚାର୍ଯ୍ୟ ତାକୁ କହିଲେ, ''ଆଳତି ସମୟରେ ଠାକୁରଙ୍କ ସମ୍ମୁଖରେ ହାତଯୋଡ଼ି ଠିଆହୋଇ ମନଯୋଗପୂର୍ବକ ଠାକୁରଙ୍କୁ ଦର୍ଶନ କରିବ।'' ଆଚାର୍ଯ୍ୟ ତ ପ୍ରଥମରୁ ଏହି ପଥଭ୍ରଷ୍ଟ ଜୀବର ଉଦ୍ଧାର ନିମନ୍ତେ ଭଗବାନଙ୍କୁ ପ୍ରାର୍ଥନା କରିଥିଲେ। ତେଣୁ ଭଗବାନ ସାମାନ୍ୟ ଝଲକ ଦେଖାଇବାକୁ ସ୍ଥିର କରିଥିଲେ। ପରଦା ଖୋଲିବା ମାତ୍ରେ ପ୍ରଭୁ ରଙ୍ଗନାଥଙ୍କ ଉପରେ ଧନୁର୍ଦ୍ଦାସର ଦୃଷ୍ଟି ପଡ଼ିଗଲା। ଆଳତିର ଉଜ୍ଜ୍ୱଳ ଦୀପ୍ତିରେ ଠାକୁରଙ୍କର ଶ୍ରୀଅଙ୍ଗ ଝଲସି ଉଠିଲା। ପ୍ରଭୁ ହଠାତ୍ ତାଙ୍କର ଅପ୍ରାକୃତ ସ୍ୱରୂପ ଦେଖାଇଦେଲେ।

ଆହା! କି ଅପୂର୍ବ ଦିବ୍ୟ ରୂପ ପ୍ରଭୁଙ୍କର! ଆପାଦ ମସ୍ତକ ସର୍ବାଙ୍ଗରେ କି ମାଧୁର୍ଯ୍ୟ, କି ଲଳିତ ମନୋହର ବେଶ! କେଡ଼େ ସୁନ୍ଦର ମୁଖମଣ୍ଡଳ! ଯେଉଁ ଅଙ୍ଗରେ ଥରେ ତା'ର ଆଖି ପଡୁଥାଏ, ସେଠାରୁ ଆଉ ହଟିବାକୁ ଚାହୁଁ ନ ଥାଏ; ସତେ ଯେପରି ତା'ର ସୌନ୍ଦର୍ଯ୍ୟ ପିପାସୁ ନେତ୍ରଯୁଗଳ ସେହି ରୂପକୁ ପିଇଯିବାକୁ ଚାହୁଁଥାନ୍ତି। ପଲକପାତ ମଧ୍ୟ ତାକୁ ଅସହ୍ୟ କଷ୍ଟ ଦେଉଥାଏ। ସେ ସ୍ଥାଣୁ ପରି, ଅଚଳ ମୂର୍ତ୍ତି ପରି ନିର୍ବାକ୍ ହୋଇ କେବଳ ପ୍ରକମ୍ପିତ ଓଷ୍ଠ ଓ ବିସ୍ଫାରିତ ନେତ୍ରରେ ଚାହିଁ ରହିଥାଏ ପ୍ରଭୁଙ୍କର ମୁଖମଣ୍ଡଳକୁ। ହର୍ଷ ଓ ବିସ୍ମୟରେ ତା'ର ମୁଖ ପ୍ରଫୁଲ୍ଲିତ

ହୋଇ ଉଠିଥାଏ ସତ, କିନ୍ତୁ ନେତ୍ର କୋଣରୁ ତା'ର ଅଜାଣତରେ ବହି ଚାଲିଥିବା ଅଶ୍ରୁ ସୃଷ୍ଟି କରୁଥାଏ ତା'ର ଅବ୍ୟକ୍ତ ଆନନ୍ଦର ଉଚ୍ଛ୍ୱସିତ ଉଦ୍‌ବେଳନ ।

ତତ୍‌କ୍ଷଣାତ୍ ସେହି ଅପ୍ରାକୃତ ସୌନ୍ଦର୍ଯ୍ୟକୁ ପ୍ରଭୁ ଅନ୍ତର୍ହିତ କରିନେଲେ । କେବଳ ସେହି ରୂପକୁ ଯେ ଅନ୍ତର୍ହିତ କରିନେଲେ, ତା' ନୁହେଁ; ସେହି ରୂପସୌନ୍ଦର୍ଯ୍ୟର ଗୋଟିଏ ମାତ୍ର ଢେଉରେ ଭସାଇ ନେଲେ ଧନୁର୍ଦାସର ସମସ୍ତ କଳଙ୍କିତ ଆକର୍ଷଣ ଓ ଜାଗତିକ ବିକାରମୟ ରୂପାସକ୍ତି । ସେହି ଦିବ୍ୟ ରୂପର ଅପୂର୍ବ ଶୋଭା ହଠାତ୍ କେଉଁଆଡ଼େ ଅଦୃଶ୍ୟ ହୋଇଯିବାରୁ ଧନୁର୍ଦାସ ମଣିହରା ସର୍ପପରି ବ୍ୟାକୁଳ ହୋଇପଡ଼ିଲା । ତା'ର ଅସହ୍ୟ ବେଦନା ପ୍ରତପ୍ତ ଅଶ୍ରୁରେ ପରିଣତ ହୋଇଗଲା । ସେ ଦୌଡ଼ିଯାଇ ଶ୍ରୀରାମାନୁଜାଚାର୍ଯ୍ୟଙ୍କ ପାଦତଳେ ଲୋଟିପଡ଼ିଲା । ହୃଦୟ କନ୍ଦରରୁ ଉଠୁଥିବା ପ୍ରବଳ କୋହ ହେତୁ କେବଳ କଇଁ କଇଁ ଶବ୍ଦ ବାହାରୁଥାଏ ସିନା, ମୁଖରୁ ବାଣୀ ସ୍ଫୁରିତ ହେଉ ନ ଥାଏ ।

ଆଚାର୍ଯ୍ୟ ତାକୁ ତଳୁ ଉଠାଉଲେ । ଧନୁର୍ଦାସ କହିଲା—"ଗୁରୁଦେବ! ଗୋସାଇଁ!! ମୋତେ ସେ ରୂପ ଆଉ ଥରେ ଦେଖାଇ ଦିଅନ୍ତୁ ଗୋସେଇଁ! ମୋ ନୟନ ସେ ରୂପ ଦେଖିବାକୁ ବ୍ୟାକୁଳ ହେଉଛି । ମୋତେ ଯାହା ଆଦେଶ ଦେବେ ମୁଁ କରିବାକୁ ପ୍ରସ୍ତୁତ । କହିବେ ଯଦି ମୁଁ ମୋ ଦେହରୁ ନିଜ ହାତରେ ମାଂସ ଖଣ୍ଡ ଖଣ୍ଡ କାଟି ଆପଣଙ୍କ ଚରଣରେ ଅର୍ପଣ କରିଦେବି, କିନ୍ତୁ ସେହି ସୌନ୍ଦର୍ଯ୍ୟସାରସର୍ବସ୍ୱ ବିଶ୍ୱବିମୋହନ ରୂପ ଯେପରି ମୋ ଆଖି ଆଗରୁ ଅପସରି ନ ଯାଉ, ଏତିକି କୃପା କରନ୍ତୁ ଗୋସେଇଁ!"

ଧନୁର୍ଦାସର ବିରହବ୍ୟାକୁଳ ସ୍ଥିତି ଲକ୍ଷ୍ୟ କରି ଶ୍ରୀରାମାନୁଜାଚାର୍ଯ୍ୟ ତାକୁ ଅନେକ ପ୍ରକାରେ ବୁଝାଇସୁଝାଇ ଶାନ୍ତ କଲେ ଏବଂ ଘରକୁ ଫେରିଯିବାକୁ ଆଦେଶ ଦେଲେ । ତାଙ୍କ ଆଦେଶରେ ସେ ଘରକୁ ଫେରି ଆସିଲା, କିନ୍ତୁ ଏଥର ମନଟି ଆଉ ତା' ପାଖରେ ନ ଥିଲା । ମନଟି ତାହାର ହଜି ଯାଇଥିଲା ସେହି ରୂପସାଗରଙ୍କର ଅଙ୍ଗ-ପ୍ରତ୍ୟଙ୍ଗରୂପୀ ଅଗଣିତ ତରଙ୍ଗମାଳାରେ । ତା'ର ଆଉ ହେମାମ୍ବା ପ୍ରତି ଆକର୍ଷଣ ରହିଲା ନାହିଁ; କେବଳ ଆଚାର୍ଯ୍ୟଙ୍କ ଆଦେଶ ହେତୁ ସେ ତାକୁ ପରିତ୍ୟାଗ ନ କରି ପତ୍ନୀରୂପେ ଘରେ ରଖିଲା । ସୌନ୍ଦର୍ଯ୍ୟର ପ୍ରକୃତ ରହସ୍ୟ ତାକୁ ଜଣାପଡ଼ିଗଲା ।

ବାସ୍ତବରେ ଦେଖିବାକୁ ଗଲେ ପ୍ରାକୃତ ସୌନ୍ଦର୍ଯ୍ୟର କୌଣସି ଶାଶ୍ୱତ ସଂଜ୍ଞା ନାହିଁ, ଏହା ମନ-ବୁଦ୍ଧିର ଏକ ବିକାର । ଦ୍ରଷ୍ଟାର ଆକର୍ଷଣ ଓ ଦୁର୍ବଳତା ହିଁ ଦୃଶ୍ୟଠାରେ ସୌନ୍ଦର୍ଯ୍ୟ ଆରୋପ କରିଥାଏ । ସେଇଥିପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ

ରୂପସୌନ୍ଦର୍ଯ୍ୟର ମୂଲ୍ୟାଙ୍କନ ଭିନ୍ନ ଭିନ୍ନ ଲୋକଙ୍କ ଦୃଷ୍ଟିରେ ଭିନ୍ନ ଭିନ୍ନ ହୋଇଥାଏ। ଗୋଟିଏ ସୁନ୍ଦରୀ ନାରୀ ତା'ର ଅବୋଧ ସନ୍ତାନକୁ ମାଆ ପରି ଦିଶୁଥିବା ବେଳେ ଜଣେ କାମୁକ ପୁରୁଷକୁ ଭୋଗ୍ୟା ରୂପେ ଦିଶେ; ଜଣେ ଦେହାତୀତ ଯୋଗୀକୁ ସେ ହାଡ଼-ମାଂସର ପୁତ୍ତଳିକା ପରି ଦିଶୁଥିବା ବେଳେ ଗୋଟିଏ ଭୋକିଲା ସିଂହକୁ ଖାଦ୍ୟ ରୂପେ ଦିଶେ। ସମସ୍ତଙ୍କୁ ତା'ର ରୂପସୌନ୍ଦର୍ଯ୍ୟ ସମାନରୂପେ ଆକର୍ଷିତ କରେ ନାହିଁ। କୁକୁରର କୁକୁରୀ ଠାରେ ଆକର୍ଷଣ ହୁଏ, ସୁନ୍ଦରୀ ନାରୀଠାରେ ନୁହେଁ।

ସେ ଯାହା ହେଉ ନା କାହିଁକି, ଇନ୍ଦ୍ରିୟ ଓ ବିଷୟ ମଧ୍ୟରେ ଘଟୁଥିବା ଏହି ପାରସ୍ପରିକ ଆକର୍ଷଣ ପାର୍ଥିବ ଜଗତର ବ୍ୟାପାର। ଭଗବାନଙ୍କର ଚିଦାନନ୍ଦମୟ ଇନ୍ଦ୍ରିୟ-ଅଗୋଚର ସ୍ୱରୂପ କିନ୍ତୁ ଏହାଠାରୁ ସମ୍ପୂର୍ଣ୍ଣ ଭିନ୍ନ; ତଥାପି ରୂପ ପ୍ରତି ଅଧିକ ଆସକ୍ତି ଥିବାରୁ ପ୍ରଭୁ ଧନୁର୍ଦ୍ଦାସକୁ ନିଜ ସୌନ୍ଦର୍ଯ୍ୟର ଏକ ଲବ କଣିକାର ଝଲକ ମାତ୍ର ଦେଖାଇ ତାକୁ କୁତ୍ସିତ ଆକର୍ଷଣରୁ ନିବୃତ୍ତ କରି ନିଜ ଆଡ଼କୁ ଆକର୍ଷିତ କରିନେଲେ। ସେ ସେଇ ଗୋଟିଏ ଝିଙ୍କାରେ ଭଗବାନଙ୍କର ହୋଇଗଲା। ସେହିଦିନଠାରୁ ସେ ସେହି ଅଲୌକିକ ସୌନ୍ଦର୍ଯ୍ୟର ଦର୍ଶନ ଲାଳସାରେ ଭଗବାନଙ୍କ ଭଜନରେ ମଗ୍ନ ହୋଇଗଲା। ତାର ଜୀବନ ଅତ୍ୟନ୍ତ ପବିତ୍ର ହୋଇଗଲା। ତା'ର ନିଷ୍ଠା ଦେଖି ଆଚାର୍ଯ୍ୟ ତାକୁ ଶିଷ୍ୟରୂପେ ସ୍ୱୀକାର କଲେ। ଧନୁର୍ଦ୍ଦାସର ମତି ଦେଖି ହେମାମ୍ବା ମଧ୍ୟ ତା'ର ଅନୁଗାମୀ ହୋଇଗଲା। ଉଭୟେ ଶ୍ରୀରାମାନୁଜାଚାର୍ଯ୍ୟଙ୍କ ସଂପ୍ରଦାୟ ବିଷୟରେ ଅବଗତ ହୋଇ ଉଚ୍ଚକୋଟୀର ବୈଷ୍ଣବ ପାଲଟି ଗଲେ। ଉଭୟଙ୍କ ଆଚରଣ ଆଦର୍ଶ ଓ ଅନୁକରଣୀୟ ହୋଇଗଲା।

ଅନେକ କ୍ଷେତ୍ରରେ ଦେଖିବାକୁ ମିଳେ ଯେ ସାଧାରଣ ସ୍ଥିତିର ସାଧକ ଅଧ୍ୟାତ୍ମ କ୍ଷେତ୍ରରେ ଯେତେ ଉନ୍ନତି କରି ନ ପାରେ, ପତିତ ଓ ଅଧମ ସ୍ଥିତିରୁ ଉପରକୁ ଉଠିଥିବା ଲୋକ ନିଜର ପୂର୍ବ ଘୃଣିତ ନାରକୀୟ ସ୍ଥିତି ପ୍ରତି ଏତେ ବିମୁଖ ହୋଇଯାଏ ଯେ ଖୁବ୍ ଶୀଘ୍ର ସେ ଅସାଧନ ତ୍ୟାଗ କରି ପରମ ନିଷ୍ଠାରେ ପ୍ରତିଷ୍ଠିତ ହୋଇଯାଏ। ତା'ର ସାଧନା ଅତ୍ୟନ୍ତ ତୀବ୍ର ଗତିରେ ବର୍ଦ୍ଧମାନ ହୁଏ। ଧନୁର୍ଦ୍ଦାସ ଗୁରୁକୃପାରେ ପରମ ଅନୁଗ୍ରହୀତ ହୋଇଥିବାରୁ ଖୁବ୍ ଶୀଘ୍ର ଗୁରୁ ଶ୍ରୀରାମାନୁଜାଚାର୍ଯ୍ୟଙ୍କର ଅତ୍ୟନ୍ତ ବିଶ୍ୱାସ ଭାଜନ ଓ ଅନୁଗତ ହୋଇଗଲା।

ଶ୍ରୀରାମାନୁଜାଚାର୍ଯ୍ୟ ସେତେବେଳକୁ ବୃଦ୍ଧ ହୋଇଯାଇଥାନ୍ତି। ବାର୍ଦ୍ଧକ୍ୟ ହେତୁ ତାଙ୍କୁ ଜଣେ ଶିଷ୍ୟ କାନ୍ଧରେ ହାତ ରଖି ଚାଲିବାର ଆବଶ୍ୟକତା ପଡୁଥାଏ। ସେ କାବେରୀ ନଦୀରେ ସ୍ନାନ କରିବାକୁ ଯିବାବେଳେ ପ୍ରାୟ ତାଙ୍କର କୌଣସି ବ୍ରାହ୍ମଣ

ଶିଷ୍ୟ କାନ୍ଧରେ ହାତ ଭରା ଦେଇ ଯାଆନ୍ତି; ମାତ୍ର ସ୍ନାନ ସାରି ଫେରିବା ବେଳେ ଧନୁର୍ଦ୍ଦାସ କାନ୍ଧରେ ଭରା ଦେଇ ଆସନ୍ତି। ଏ ଘଟଣା ଦେଖି ଧୀରେ ଧୀରେ ବ୍ରାହ୍ମଣ ଶିଷ୍ୟଙ୍କ ମନରେ ଅସହିଷ୍ଣୁତା ବଢ଼ିବାକୁ ଲାଗିଲା। ଶେଷରେ ଜଣେ ଶିଷ୍ୟ ମୁହଁ ଖୋଲି ପଚ୍ଚାରିଦେଲା—"ଗୁରୁଦେବ! ଆମେ ସବୁ ଥାଉ ଥାଉ ଆପଣ ସ୍ନାନ ପରେ ଧନୁର୍ଦ୍ଦାସକୁ କାହିଁକି ସ୍ପର୍ଶ କରୁଛନ୍ତି?"

ଆଗ୍ଚର୍ଯ୍ୟ ଉତ୍ତର ଦେଲେ—"ମୁଁ ମୋ ହୃଦୟର ଅଭିମାନ ନଷ୍ଟ କରିବାକୁ ଏଭଳି କରୁଛି। ତା'ଛଡ଼ା ଧନୁର୍ଦ୍ଦାସର ଆଚରଣ ଏଠାକାର ଅନ୍ୟ ବ୍ରାହ୍ମଣମାନଙ୍କ ଠାରୁ ଉତ୍ତମ ବୋଲି ମୁଁ ହୃଦୟଙ୍ଗମ କରେ।" ଆଗ୍ଚର୍ଯ୍ୟ କେବଳ ଏହି ଘଟଣାରୁ ନୁହେଁ, ଅନେକ ଅନ୍ୟ ଘଟଣାରୁ ମଧ୍ୟ ସେହି ଶିଷ୍ୟମାନଙ୍କର ଧନୁର୍ଦ୍ଦାସ ପ୍ରତି ଈର୍ଷ୍ୟା କଥା ଜାଣିପାରୁଥିଲେ। ବୈଷ୍ଣବ ହୋଇଥିବା ସେହି ଶିଷ୍ୟମାନଙ୍କର ବ୍ରାହ୍ମଣତ୍ୱର ଅଭିମାନ ଏବେ ସୁଦ୍ଧା ଦୂର ହୋଇ ନ ଥିଲା। ତେଣୁ ସେ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ସହ ଧନୁର୍ଦ୍ଦାସର ଶ୍ରେଷ୍ଠତା ପ୍ରମାଣିତ କରି ସେମାନଙ୍କୁ ଶିକ୍ଷା ଦେବାକୁ ଗ୍ଚହିଁଲେ।

ଦିନେ ରାତିରେ ଆଗ୍ଚର୍ଯ୍ୟ ତାଙ୍କର ଜଣେ ବିଶ୍ୱସ୍ତ ଅନ୍ତରଙ୍ଗ ଶିଷ୍ୟକୁ ଏକାନ୍ତକୁ ଡାକି, ଆଶ୍ରମବାସୀ ସବୁ ବ୍ରାହ୍ମଣ ଶିଷ୍ୟଙ୍କର ବସ୍ତ୍ରରୁ ଗ୍ଚଖଣ୍ଡେ ଲେଖାଏଁ କନା ଗୁପ୍ତରୂପେ ଚିରି ଆଣିବାକୁ ଆଦେଶ ଦେଲେ। ସେ ଗୁରୁଙ୍କର ଆଦେଶ ଅନୁସାରେ ସେମାନଙ୍କର ବସ୍ତ୍ର ଚିରି ଆଣିଲା। ସକାଳୁ ସମସ୍ତେ ନିଜ ନିଜ ବସ୍ତ୍ର ଚିରା ହୋଇଥିବା ଦେଖି ପରସ୍ପରକୁ ଦୋଷାରୋପଣ କରିବା ସହିତ ଭୀଷଣ କଳହ କଲେ। ଗୁରୁଙ୍କ ନିର୍ଦ୍ଦେଶ ଅନୁସାରେ ଚିରିଥିବା ଶିଷ୍ୟଟି କିଛି ନ କହି ଚୁପ୍ ରହିଲା।

ବଡ଼ ବଡ଼ ଜ୍ଞାନପୂର୍ଣ୍ଣ କଥା ଅନ୍ୟକୁ ଉପଦେଶ ଦେବା, ଭାଷଣ ଦେବା ବହୁତ ସହଜ; କିନ୍ତୁ ନିଜ ଜୀବନରେ କେତେ ପ୍ରତିଫଳିତ ହୋଇଛି, ତାହା ପରିସ୍ଥିତି ଆସିଲେ ହିଁ ଜଣାପଡ଼େ।

ସଂସାରକୁ ଅସାର ଓ ଅସତ୍ୟ ବୋଲି ବୁଝିବା ନିମନ୍ତେ ପ୍ରୟାସ କରି ସାଧନା କରୁଥିବା ଶିଷ୍ୟମାନେ ସାଧାରଣ ବସ୍ତ୍ର ଖଣ୍ଡିକୁ ସତ୍ୟ ମଣି ପରସ୍ପର କଳହରତ ହେଲେ। ଗୁରୁଦେବ କିଛି ନ କହି ସେମାନଙ୍କ ପାଇଁ ନୂଆ ବସ୍ତ୍ରର ବ୍ୟବସ୍ଥା କରିଦେଲେ। କିଛି ଦିନ ବିତିଗଲା। ଥରେ ଆଗ୍ଚର୍ଯ୍ୟ ସେହି ବ୍ରାହ୍ମଣ ଶିଷ୍ୟମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ଡକାଇ କହିଲେ—"ମୋର ଗୋଟିଏ ଆଦେଶ ପାଳନ କର। ମୁଁ ଆଜି ଧନୁର୍ଦ୍ଦାସକୁ ମଠରେ ସତ୍‌ସଙ୍ଗ ବାହାନାରେ ଅଧିକ ରାତି ପର୍ଯ୍ୟନ୍ତ ଅଟକାଇ ରଖିବି। ତୁମେମାନେ ତା' ଘରକୁ ଯାଇ ହେମାମ୍ବାର ସବୁ ଗହଣାଗାଣ୍ଠି

ଚୋରି କରି ଆଣି ମୋତେ ଦିଅ।''

ଗୁରୁଙ୍କର ଆଦେଶକୁ କେହି ଅମାନ୍ୟ କରି ପାରିଲେ ନାହିଁ। ରାତି ହୋଇଯିବାରୁ ଶିଷ୍ୟମାନେ ଚୋରି କରିବାକୁ ଗଲେ। ବେଶୀ ରାତି ହୋଇଯିବାରୁ ହେମାମ୍ବା ପଲଙ୍କ ଉପରେ ଗଡ଼ପଡ଼ ହୋଇ ସ୍ୱାମୀଙ୍କୁ ପ୍ରତୀକ୍ଷା କରୁଥାଏ। କବାଟ ଅଧା ଖୋଲାଥାଏ। ଶିଷ୍ୟମାନଙ୍କ ଫୁସ୍‌ଫାସ୍ କଥାବାର୍ତ୍ତାରୁ ହେମାମ୍ବା ଜାଣିଗଲା ଯେ ବୈଷ୍ଣବମାନେ ସମ୍ଭବତଃ ଚୋରି କରିବାକୁ ଆସିଛନ୍ତି। ତେଣୁ ସେ ଜାଣିଶୁଣି ଗାଢ଼ ନିଦ୍ରାରେ ଶୋଇବାର ଅଭିନୟ କଲା। କାରଣ ତା'ର ଦୃଢ଼ ବିଶ୍ୱାସ ଥିଲା ଯେ ସମସ୍ତ ଧନସମ୍ପତ୍ତି ନାଶବାନ୍। ସେଗୁଡ଼ିକ କେବଳ ଦୈହିକ ଉପଭୋଗରେ ନ ଲାଗି ଯଦି ଠାକୁରସେବା ଓ ସାଧୁ-ବୈଷ୍ଣବଙ୍କ ସେବାରେ ଉପଯୋଗ ହୋଇ ପାରିବ, ତେବେ ସେହି ଧନ ସାର୍ଥକ ହୋଇଯିବ।

ବୈଷ୍ଣବମାନେ ପାଦ ଚିପି ଚିପି ଭିତରେ ପ୍ରବେଶ କଲେ। ହେମାମ୍ବା ଅଚେତ ପରି ଶୋଇଥିବାର ଦେଖି ତାର ଗୋଟିଏ ପଟ ଅଙ୍ଗରୁ ସହଜରେ ଯେତିକି ଅଳଙ୍କାର କାଢ଼ି ହେଲା କାଢ଼ିନେଲେ। ହେମାମ୍ବା ଭିବିଲା, ବୈଷ୍ଣବମାନେ ଆର ପଟ ଅଙ୍ଗର ଗହଣା ନେଇ ପାରିଲେ ନାହିଁ। ତେଣୁ ମୋତେ କଡ଼ ଲେଉଟେଇବାକୁ ହେବ। ଏହା ଭାବି ସେ କଡ଼ ଲେଉଟାଇ ହାତଗୋଡ଼ ପସାରିଦେଲା। ଏତିକିରେ ବୈଷ୍ଣବମାନେ ଡରିଗଲେ। ହେମାମ୍ବାର ନିଦ୍ରା ଭାଙ୍ଗିବାର ସମ୍ଭାବନା ଦେଖି ସେମାନେ ଭୟରେ ସେତିକି ଗହଣା ନେଇ ପଳାଇଗଲେ। ସେମାନେ ମଠରେ ପହଞ୍ଚିବା ପରେ ସ୍ୱାମୀ ଶ୍ରୀରାମାନୁଜାଚାର୍ଯ୍ୟ ଧନୁର୍ଦ୍ଦାସକୁ ବିଦାୟ ଦେଲେ। ଧନୁର୍ଦ୍ଦାସ ଚାଲିଯିବା ପରେ ସେ ସେହି ଶିଷ୍ୟମାନଙ୍କୁ ପୁଣି କହିଲେ— "ତୁମେମାନେ ଏବେ ପୁଣିଥରେ ଯାଅ। ବାହାରେ ଲୁଚି ରହି ଶୁଣିବ ଯେ ସେ ପତିପତ୍ନୀ କ'ଣ ସବୁ କଥାବାର୍ତ୍ତା ହେଉଛନ୍ତି?''

ଧନୁର୍ଦ୍ଦାସ ଘରେ ପହଞ୍ଚିବା ପରେ ସେମାନେ ପହଞ୍ଚି ବାହାରୁ କାନ ଡେରି ସେ ଦୁହିଙ୍କ କଥା ଶୁଣିଲେ। ଧନୁର୍ଦ୍ଦାସ ହେମାମ୍ବାଠାରୁ ସବୁ କଥା ଜାଣିବା ପରେ ତା' ଉପରେ ଖୁବ୍ ବିରକ୍ତ ହେଉଥାଏ। ସେ କହୁଥାଏ—"ଏବେ ସୁଦ୍ଧା ତୋର ଧନ-ସମ୍ପତ୍ତିର ଲୋଭ ଗଲା ନାହିଁ! ତୁଚ୍ଛ ଗହଣା ଲୋଭରେ ତୁ କଡ଼ ଲେଉଟାଇ ବୈଷ୍ଣବମାନଙ୍କୁ ଡରାଇଦେଲୁ! ଗହଣାରେ ଏ ହାଡ଼ମାଂସର ଶରୀରକୁ ସଜାଇ ତୁ କି ଲାଭ ପାଇବୁ? ଶେଷରେ ତ ସବୁଛାଡ଼ି ଯିବାକୁ ପଡ଼ିବ। ଯାହାକୁ ତୁ ଏତେ ସୁନ୍ଦରଭାବରେ ସଜାଉଛୁ, ସେ ନିଆଁରେ ପୋଡ଼ି ପାଉଁଶ ହୋଇଯିବ। ଧିକ୍ ତୋର

ଜୀବନକୁ । ଏବେ ମୁଁ ଆଉ ତୋତେ ପାଖରେ ରଖିବି ନାହିଁ । ଯା' ଗ୍ଲିଯା ଏଠୁ । ଯାହାଠାରେ ବୈଷ୍ଣବଙ୍କ ପ୍ରତି ଶ୍ରଦ୍ଧା ଭାବ ନାହିଁ, ତା'ଠାରେ ମୋର କିଛି ପ୍ରୟୋଜନ ନାହିଁ ।''

ବିଗ୍ଚରୀ ହେମାମ୍ବା କାନ୍ଦି ପକାଇଲା; ସେ ସ୍ୱାମୀଙ୍କ ପାଦ ଧରି ପକାଇ କହିଲା—''ମୋ କଥା ବିଶ୍ୱାସ କର । ମୁଁ ସେମାନଙ୍କୁ ଡରାଇବାକୁ କଡ଼ ଲେଉଟାଇ ନ ଥିଲି । ମୁଁ ଭାବିଲି କଡ଼ ଲେଉଟାଇଲେ ଆରପାଖର ଗହଣା ସବୁ ଖୋଲି ନେବାକୁ ସେମାନଙ୍କୁ ସୁବିଧା ହେବ । କିନ୍ତୁ ମୁଁ କଣ ଜାଣିଥିଲି ଯେ ସେମାନେ ଡରି ପଳାଇବେ ବୋଲି! ହାୟ ମୋର କେଡେ ଦୁର୍ଭାଗ୍ୟ । ସ୍ୱାମୀ! ମୋତେ ଏଇଥରକ କ୍ଷମା କରିଦିଅ । ଆଉ କେବେ ଏଭଳି ଭୁଲ୍ ହେବ ନାହିଁ ।''

କୌଣସି ପ୍ରକାରେ ଧନୁର୍ଦାସ ତାକୁ କ୍ଷମା କଲା । ବ୍ରାହ୍ମଣ ଶିଷ୍ୟମାନେ ମଠକୁ ଫେରିଆସି ଗୁରୁଦେବଙ୍କୁ ସବୁ କଥା ଶୁଣାଇଲେ । ଆଗ୍ଚର୍ଯ୍ୟ ସେମାନଙ୍କର ଚିରାବସ୍ତ୍ର ଖଣ୍ଡମାନ ଦେଖାଇ କହିଲେ—''ଦେଖିଲ ତ? ତୁମେମାନେ ସେଦିନ ଏହି କନା ଖଣ୍ଡେ ଖଣ୍ଡେ ପାଇଁ ପରସ୍ପର ମଧ୍ୟରେ ଝଗଡ଼ା କରୁଥିଲ ନା? ଏବେ ଧନୁର୍ଦାସର ବୈଷ୍ଣବ ଭକ୍ତିର ପରିଚୟ ପାଇଲ ତ? ମୁଁ ତା'ର ଏହି ଶୁଦ୍ଧ ଅନ୍ତଃକରଣର ନିର୍ମଳ ଭାବକୁ ଚିହ୍ନି ତାକୁ ଆଦର କରୁଥିଲି, ତା' କାନ୍ଧରେ ହାତ ଭରା ଦେଇ କାବେରୀରୁ ଫେରୁଥିଲି । ଏଥର ବୁଝିଲ ତ! ଏଥର ତୁମର ମନର ସନ୍ଦେହ ତୁଟିଗଲା ନା ନାହିଁ?'' ଶିଷ୍ୟମାନଙ୍କର ମୁଖ ଲଜ୍ଜାରେ ଅବନତ ହୋଇଗଲା । ସେମାନେ ନିଜ ନିଜର ଭୁଲ୍ ବୁଝି ପାରିଲେ ।

ଏହାପରେ ଆଗ୍ଚର୍ଯ୍ୟ ଧନୁର୍ଦାସକୁ ଡାକି କହିଲେ—''ଧନୁର୍ଦାସ! ମୁଁ ଗୋଟିଏ ବିଶେଷ ଉଦ୍ଦେଶ୍ୟରେ ତୁମର ଏ ଗହଣା ସବୁ ଅଣାଇଥିଲି । ତୁମେ କିଛି ଖରାପ ଭାବିବ ନାହିଁ ।'' ଧନୁର୍ଦାସ ଅତ୍ୟନ୍ତ ନମ୍ରତାର ସହ କହିଲା—''ଗୁରୁଦେବ! ମୁଁ ଆପଣଙ୍କର ଦାସ; ମୋ ପାଖରେ ଏ ଶରୀର ସମେତ ଯାହା କିଛି ଅଛି, ସେସବୁ ଯଥାର୍ଥରେ ଆପଣଙ୍କର । ଏ ସବୁକୁ ଆପଣ ଯେପରି ଇଚ୍ଛା ସେପରି ଉପଯୋଗ କରି ପାରନ୍ତି । ଏଥିରେ ମୋର କାହିଁକି ଆପତ୍ତି ରହିବ?''

ସ୍ୱାମୀ ଶ୍ରୀରାମାନୁଜାଗ୍ଚର୍ଯ୍ୟ ଧନୁର୍ଦାସର ଦୃଢ଼ ନିଷ୍ଠା ଦେଖି ମନେ ମନେ ଖୁସି ହେଲେ । ହେମାମ୍ବା ଏପରି ଭଗବଦ୍‌ଭକ୍ତଙ୍କୁ ସ୍ୱାମୀରୂପେ ପାଇ ତରିଗଲା । ଆଜି ମଧ୍ୟ ବୈଷ୍ଣବ ସମାଜରେ ଧନୁର୍ଦାସର ନାମ ଆଦର ସହିତ ନିଆଯାଏ ।



# ଭକ୍ତିମତୀ କରମେତୀବାଈ

ଦେବଦୁର୍ଲ୍ଲଭ ମାନବ ଦେହ ପାଇ ଯିଏ ବିଷୟ ଭୋଗରେ ଆସକ୍ତ ରହେ, ସେ ଜଗତରେ ଅତ୍ୟନ୍ତ ନିନ୍ଦନୀୟ। କିନ୍ତୁ ଏ ନଶ୍ୱର ଦେହରେ ଯେ ଅବିନାଶୀ ପ୍ରଭୁଙ୍କ ସାନ୍ନିଧ୍ୟ ଲାଭ କରି ପାରିଲା ତା' ଜୀବନ ଧନ୍ୟ। ଏଭଳି ଭାଗ୍ୟବତୀ ଥିଲେ ଭକ୍ତିମତୀ କରମେତୀବାଈ।

ରାଜସ୍ଥାନ ପ୍ରଦେଶର ଖଣ୍ଡେଲା ଗ୍ରାମ। ଶେଖାବତ ରାଜାଙ୍କର କୁଳପୁରୋହିତ ମହାମନା ଶ୍ରୀପରଶୁରାମଜୀ। ଅତ୍ୟନ୍ତ ପବିତ୍ର ବ୍ରାହ୍ମଣ। ଭଗବାନଙ୍କ ପାଇଁ ତାଙ୍କର ଜୀବନ ଉତ୍ସର୍ଗୀକୃତ। ତାଙ୍କର ଧର୍ମପତ୍ନୀ ମଧ୍ୟ ଅତ୍ୟନ୍ତ ଧର୍ମପରାୟଣା। ଏଭଳି ଭକ୍ତଦମ୍ପତିଙ୍କ ଗୃହରେ ଜନ୍ମ ଲାଭ କରିଥିଲେ ଭକ୍ତିମତୀ କରମେତୀ। ବାପା-ମାଆଙ୍କର ଗୋଟିଏ ବୋଲି ଅଲିଅଳି କନ୍ୟା। ରୂପରେ ଯେପରି ସୁନ୍ଦର ସେହିପରି ଗୁଣବତୀ ମଧ୍ୟ। କାହିଁକି ବା ନ ହୁଅନ୍ତେ? ଯାହାର ହୃଦୟରେ ଭକ୍ତି ମହାରାଣୀ ନିବାସ କରନ୍ତି, ସେଠାରେ ସମସ୍ତ ସଦ୍‌ଗୁଣ ବିକଶିତ ହେବା ସ୍ୱାଭାବିକ।

ଶୁଆ ଯେପରି ପରିପକ୍ୱ ଫଳରେ ଚଞ୍ଚୁଘାତ କରେ, ସେହିପରି କୋଟି କୋଟି କାମଦେବଙ୍କ ରୂପ ସୌନ୍ଦର୍ଯ୍ୟକୁ ତିରସ୍କୃତ କରୁଥିବା ମନମୋହନ ଶ୍ରୀଶ୍ୟାମସୁନ୍ଦର କରମେତୀଙ୍କ ହୃଦୟକୁ ନିଜର ମନ୍ଦିରରେ ପରିଣତ କରିଦେଇଥିଲେ। ପ୍ରତିଦିନ ଭକ୍ତିମତୀ କରମେତୀ ପ୍ରଭୁଙ୍କ ମାନସିକ ସେବାରେ ମଗ୍ନ ହୋଇଯାଆନ୍ତି। କେତେବେଳେ ଯେ ସକାଳ ଓ ସନ୍ଧ୍ୟା ହୋଇଯାଏ, କିଛି ଜଣାପଡ଼େ ନାହିଁ। ତାଙ୍କର ସର୍ବାଙ୍ଗ ପ୍ରେମରେ ପୁଲକିତ ହୋଇଯାଉଥାଏ। ନେତ୍ରରୁ ଅବିରଳ ଆନନ୍ଦାଶ୍ରୁ ବିଗଳିତ ହେଉଥାଏ। କେତେବେଳେ ପ୍ରଭୁଙ୍କ ବିରହରେ ହେ ନାଥ! ହେ ନାଥ! କହି ଉଚ୍ଚସ୍ୱରରେ ରୋଦନ କରନ୍ତି ତ ଆଉ କେତେବେଳେ ପ୍ରଭୁଙ୍କ ସାନ୍ନିଧ୍ୟ ଲାଭ କରି ପୁଲକିତ ହେଉଥାନ୍ତି।

ଗୃହର ପରିବେଶ ମଧ୍ୟ ତାଙ୍କ ଭକ୍ତିଭାବ ପାଇଁ ଅତ୍ୟନ୍ତ ଅନୁକୂଳ ଥିଲା। ମହାମନା ଶ୍ରୀ ପରଶୁରାମ ପ୍ରକାଣ୍ଡ ବିଦ୍ୱାନ ଥିଲେ। ସେ ପ୍ରତିଦିନ ତାଙ୍କ ଗୃହ ପ୍ରାଙ୍ଗଣରେ ଭାଗବତ କଥା କୁହନ୍ତି। ଅନେକ ଭକ୍ତଜନ ତାଙ୍କ ଗୃହରେ କଥା ଶ୍ରବଣ ପାଇଁ ଏକତ୍ର ହୁଅନ୍ତି। ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ବ୍ରଜଗୋପୀମାନଙ୍କର ଆନ୍ତରିକ ସ୍ନେହ ଭାବନା କଥା ଶୁଣି ସେଥିରେ ତନ୍ମୟ ହୋଇଯାଆନ୍ତି ଭକ୍ତିମତୀ କରମେତୀ। କେବେ କେବେ ରୁକ୍ମିଣୀ ଭଗବାନଙ୍କ ନିକଟକୁ ବ୍ରାହ୍ମଣଙ୍କ ହାତରେ ପଠାଇଥିବା

ଚିଟାଉ କଥା ଚର୍ଚ୍ଚା ହେଲାବେଳେ ତାଙ୍କ ମନରେ ପ୍ରଭୁଙ୍କ ପ୍ରତି ଅନେକ ମଧୁର ଭାବନା ଜାଗ୍ରତ ହୁଏ। ସେ ଭାବନ୍ତି "ପ୍ରଭୁ କ'ଣ ମୋତେ ଆପଣା ଦାସୀ ରୂପେ ଅଙ୍ଗୀକାର କରିବେ ନାହିଁ !"

ଭଗବାନଙ୍କର ପ୍ରତିଜ୍ଞା ଯେ ଭକ୍ତ ଯେଉଁ ଭାବରେ ତାଙ୍କୁ ଭଜେ, ସେ ତାକୁ ସେହିଭାବରେ ଆଶ୍ରୟ ପ୍ରଦାନ କରନ୍ତି। ଭକ୍ତିମତୀ କରମେତୀଙ୍କ ଅନ୍ତର ଭାବନାକୁ ପ୍ରଭୁ ଅଙ୍ଗୀକାର କଲେ। ସେ ଏକାନ୍ତରେ ପ୍ରଭୁଙ୍କ ସହିତ କେତେ କଣ ବାର୍ତ୍ତାଳାପ କରୁଥାନ୍ତି, ତାଙ୍କୁ ନିଜ ମନକଥା କହିଚାଲନ୍ତି। ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ମାଧୁର୍ଯ୍ୟ ଭାବନା ଦିନକୁ ଦିନ ବୃଦ୍ଧି ପାଇଲା।

ପଣ୍ଡିତ ପରଶୁରାମଜୀ ଝିଅର ଏଭଳି ଭକ୍ତି ଦେଖି ଅତ୍ୟନ୍ତ ଆନନ୍ଦିତ। ତା'ର ଭାବନା ପରିପୁଷ୍ଟ କରିବା ପାଇଁ ସେ ଯଥାସମ୍ଭବ ପ୍ରଚେଷ୍ଟା କରନ୍ତି। ଏଭଳି ଘୋର କଳିକାଳରେ ଯେଉଁଠି ଚାରିଆଡ଼େ କେବଳ ସାଂସାରିକ ବିଷୟ ଚର୍ଚ୍ଚା, ସେଠାରେ କରମେତୀ ନିଜର ଭକ୍ତିଲତାକୁ କୃଷ୍ଣପ୍ରେମରୂପୀ ଜଳ ଅଭିସେଚନ କରି ଧୀରେ ଧୀରେ ପରିପୁଷ୍ଟ କରିଚାଲିଲେ।

ପ୍ରଭୁ ଭକ୍ତିରେ ଅହରହ ମଗ୍ନ ହେବାରୁ ତାଙ୍କର ସମସ୍ତ କର୍ମ 'ଇତି' ଅର୍ଥାତ୍ ସମାପ୍ତ ହୋଇଯାଇଥିଲା, ସେଥିପାଇଁ ବୋଧହୁଏ ତାଙ୍କର ନାମ କରମେତୀ ହେଲା। ଅଥବା ପ୍ରତ୍ୟେକ ଜୀବ ପ୍ରତି ତାଙ୍କ ଅନ୍ତରରେ ମୈତ୍ରୀ ଭାବନା ଥିବାରୁ କର+ମୈତ୍ରୀ ଶବ୍ଦ ଦୁଇଟି ଧୀରେ ଧୀରେ ଅପଭ୍ରଂଶ ହୋଇ କରମେତୀ ନାମ ରହିଗଲା। ସେ ଯାହାହେଉ ନା କାହିଁକି, ନାମ ଅନୁରୂପ କାର୍ଯ୍ୟ କରି ସେ ସମସ୍ତ କର୍ମଶୃଙ୍ଖଳକୁ କାଟି ଦେଇଥିଲେ।

ଶୁକ୍ଳପକ୍ଷର ଚନ୍ଦ୍ରକଳା ଭଳି ଭକ୍ତିମତୀ କରମେତୀ ବାଲ୍ୟାବସ୍ଥାରୁ ପରିଣେୟା ବୟସରେ ପଦାର୍ପଣ କଲେ। ପିତା-ମାତା ତାଙ୍କପାଇଁ ସୁଯୋଗ୍ୟ ବରଟିଏ ଚୟନ କରି ବାଲ୍ୟାବସ୍ଥାରେ ତାଙ୍କର ବିବାହ କାର୍ଯ୍ୟ ସମ୍ପାଦନ କରିଦେଲେ। ଏବେ ବାପା-ମାଆଙ୍କର ଗୋଟିଏ ଚିନ୍ତା ଯେ ଝିଅଟିକୁ ଉଚିତ ସମୟରେ ଶାଶୁଘରରେ ଛାଡ଼ିଦେଲେ ସେମାନେ ନିଶ୍ଚିନ୍ତ ହୁଅନ୍ତେ।

ସେ ସମୟ ମଧ୍ୟ ପାଖେଇ ଆସିଲା। ବାଲ୍ୟବିବାହ ସମୟରେ କରମେତୀ କିଛି ଜାଣି ନ ଥିଲେ, କିନ୍ତୁ ଏବେ ତାଙ୍କର ବେଶ୍ ଜ୍ଞାନ ହୋଇଗଲାଣି। ପ୍ରଭୁଙ୍କୁ ସେ ସ୍ୱାମୀରୂପେ ବରଣ କରି ସାରିଛନ୍ତି। ଶାଶୁଘରକୁ ଯିବା କଥା ଶୁଣି ସେ ଚିନ୍ତିତ ହୋଇପଡ଼ିଲେ। ଭାବିଲେ—"ଅସ୍ଥି, ଚର୍ମ, ତ୍ୱଗ୍ ନିର୍ମିତ ଏ ନଶ୍ୱର ମନୁଷ୍ୟଦେହ

ପ୍ରକୃତ ପ୍ରେମର ପାତ୍ର ନୁହେଁ। ଶ୍ରୀକୃଷ୍ଣଙ୍କ ଚିନ୍ମୟ ଦିବ୍ୟବପୁ ହିଁ ମୋ ପ୍ରିୟତମ ହେବାର ଯୋଗ୍ୟ। ଜନ୍ମ-ମୃତ୍ୟୁର କରାଳ ଗ୍ରାସରେ କବଳିତ ବରକୁ ବରଣ କରି କି ଲାଭ? ଯାହାଙ୍କୁ ପାଇଲେ ଶଙ୍ଖା-ସିନ୍ଦୂର ସବୁଦିନ ପାଇଁ ଅଲିଭା ହୋଇ ରହି ପାରିବ, ତାଙ୍କୁ ବରଣ କରିବା କଥା।'' ଭକ୍ତିମତୀ ମୀରାଙ୍କ ଚରିତ କେବେକେବେ ତାଙ୍କ ମନକୁ ଅନୁରାଗ ରଙ୍ଗରେ ଅନୁରଞ୍ଜିତ କରିଦିଏ ତ ଆଉ କେତେବେଳେ ଶ୍ରୀମଦ୍ଭାଗବତରେ କଥିତ ଆତ୍ମଦେବଙ୍କ ପ୍ରତି ଗୋକର୍ଣ୍ଣଙ୍କ ଉପଦେଶ ତାଙ୍କୁ ବୈରାଗ୍ୟର ଚରମ ସୀମାରେ ପହଞ୍ଚାଇଦିଏ । ତା'ଛଡ଼ା ପିଲାଦିନରୁ ଯାହାଙ୍କ କୋଳରେ ଅସରନ୍ତି ସ୍ନେହ ପାଇ ବଢ଼ିଛନ୍ତି, ସେହି ବାପ-ମାଆଙ୍କ ପ୍ରତି ରହିଥିବା ମମତା ବାନ୍ଧି ରଖୁଥାଏ ଭକ୍ତିମତୀ କରମେତୀଙ୍କ ପାଦଯୁଗଳକୁ। କ'ଣ କରିବେ କିଛି ଭାବି ପାରୁ ନ ଥାନ୍ତି।

ରାତି ବିତିଚାଲିଲା। ପ୍ରଭାତ ପାଖେଇ ଆସୁଥାଏ। ରାତି ପାହିଲେ ଶାଶୁଘରକୁ ଯିବାପାଇଁ ଅନେକ ବନ୍ଦୋବସ୍ତ। ମିଠାଇ ଓ ପିଠାପଣା ଇତ୍ୟାଦିର ବ୍ୟବସ୍ଥା ଚାଲିଥାଏ। କରମେତୀଙ୍କ ଆଖିକୁ ନିଦ ନାହିଁ। ମନ କଥା କାହା ଆଗରେ ବା ପ୍ରକାଶ କରିବେ, ଆଉ ତାଙ୍କ କଥାକୁ ବୁଝିବ ବା କିଏ? ପ୍ରଭୁଙ୍କ ଚରଣରେ ବିନତି କରୁଥାନ୍ତି—''ହେ ପ୍ରଭୁ! ମୋତେ ଆପଣାର କରିନିଅ। ଏ ଜଞ୍ଜାଳରୁ ମୁକ୍ତ କରି ତୁମ ଚରଣରେ ସ୍ଥାନ ଦିଅ।''

ଦୟାମୟ ପ୍ରଭୁ ଭକ୍ତର ଗୁହାରୀ ଶୁଣିଲେ। ସହସା ତାଙ୍କ ମନରେ ଏ ଭାବନା ଜାଗ୍ରତ ହେଲା, ଯାହା ହୋଇଯାଉ ପଛେ ଗୃହ ତ୍ୟାଗ କରି ବୃନ୍ଦାବନକୁ ଚାଲିଯିବା ଶ୍ରେୟସ୍କର। କିନ୍ତୁ ପୁଣି ଭାବିଲେ—ଏଭଳି ପଦକ୍ଷେପ ନେବା ଅଧର୍ମ ହେବ ନାହିଁ ତ? ନା, ପ୍ରଭୁଙ୍କୁ ପାଇବା ଜୀବର ପରମ ଧର୍ମ। ପରମ ଧର୍ମ ନିଶ୍ଚିତରୂପେ ଦେହ-ଧର୍ମ ଅଥବା ସାମାଜିକ ଧର୍ମଠାରୁ ଅତି ଶ୍ରେଷ୍ଠତର। ଯଦି କିଏ ଗୁରୁଜନଙ୍କ କଥା ଉଲ୍ଲଘଂନ କରି ନିଜର ବିବାହିତ ସ୍ୱାମୀଙ୍କୁ ଛାଡ଼ିଦେଇ ପର ପୁରୁଷକୁ ଭଲପାଏ, ତାହା ନିଶ୍ଚିତ ଅବୈଧାନିକ ହେବ। କିନ୍ତୁ ଭଗବାନ ତ ଜୀବ ପାଇଁ ପର ନୁହନ୍ତି, ତାଙ୍କୁ ପାଇବା ମାର୍ଗରେ ବାଧା ଦେଉଥିବା ସମାଜର କୌଣସି ଶୃଙ୍ଖଳକୁ କାଟିଦେବା ଅଶୋଭନୀୟ ନୁହେଁ।

ଅନ୍ଧକାରମୟ ରାତି ତା'ର ନିସ୍ତବ୍ଧତାରେ ଭୟର ସାମ୍ରାଜ୍ୟ ବିସ୍ତାର କରିଥାଏ। ସମସ୍ତେ ନିଦ୍ରିତ। ପନ୍ଦର ଷୋହଳ ବର୍ଷର କନ୍ୟା। ଗାଁଆ ମୁଣ୍ଡରେ ଥିବା ପୋଖରୀ ଏବଂ ଠାକୁରଙ୍କ ମନ୍ଦିର ଛଡ଼ା ସେ ତା' ଜୀବନ କାଳ ମଧ୍ୟରେ ବାହାରକୁ କେବେ

ଗୋଡ଼ କାଢ଼ି ନାହିଁ । ତଥାପି ତା' ମନରେ ଭୟର ନାମଗନ୍ଧ ନ ଥାଏ । ଶ୍ୟାମସୁନ୍ଦରଙ୍କୁ ହୃଦୟରେ ବିରାଜମାନ କରାଇ ସେ ବୃନ୍ଦାବନ ଅଭିମୁଖେ ବାହାରି ପଡ଼ିଲା ଅର୍ଦ୍ଧ ରାତ୍ରିରେ । ମନେହେଉଥାଏ ସତେଯେପରି ତା'ର ହୃଦୟସ୍ଥ ସ୍ନେହରୂପୀ ଘୃତ ଦ୍ୱାରା ପ୍ରଜ୍ୱଳିତ ପ୍ରଭୁଙ୍କ ଶ୍ୟାମମୂର୍ତ୍ତିରୂପୀ ମସାଲ ତା'ର ଗନ୍ତବ୍ୟ ମାର୍ଗକୁ ଆଲୋକିତ କରୁଅଛି । ପ୍ରଭୁ ତା' ସଙ୍ଗରେ ସତତ ବିରାଜମାନ, ପୁଣି ଭୟର ସ୍ଥାନ କାହିଁ? ଆଗାମୀ ପ୍ରଭାତ ତା' ପାଇଁ ନିଶ୍ଚୟ ସୁଖମୟ ହେବ । ସେ ପ୍ରଭୁଙ୍କ ଦର୍ଶନ ପାଇ କୃତାର୍ଥ ହେବ, ସାଧୁ-ସନ୍ଥଙ୍କ ସାନ୍ନିଧ୍ୟ ଲାଭ କରି ଜୀବନ ଧନ୍ୟ କରିବ ।

ପ୍ରଭାତ ହୋଇସାରିଛି । ନିତିଦିନ ଭଳି ଆଜି କରମେତୀର ସୁଲଳିତ କଣ୍ଠସ୍ୱରରେ ଗୃହ ଗୁଞ୍ଜିତ ହେଉ ନାହିଁ । ସେ ସବୁଦିନ ତା' ପ୍ରଭୁଙ୍କ ସେବା କାର୍ଯ୍ୟ ପାଇଁ ପୁଷ୍ପ ଚୟନ କରି ଆଣେ । ପ୍ରଭାତ ଅବକାଶ ଗାନ କରି ପ୍ରଭୁଙ୍କୁ ଉଠାଏ, ସ୍ନାନାଦି କରି ଗୃହମାର୍ଜନା କରେ । ଠାକୁରଘରେ ପଶି କେତେ ଜଣାଣ ଗାଏ । କିନ୍ତୁ ଆଜି ସବୁର ବିରାମ ଘଟିଛି । ଗୃହଟି ନିସ୍ତବ୍ଧ । ଏ ନିସ୍ତବ୍ଧତା ସୃଷ୍ଟି କରିଛି ଭକ୍ତଦମ୍ପତିଙ୍କ ମନରେ ଆଶଙ୍କାର ସଘନ କୁହୁଡ଼ି ।

ପିତାମାତା ଉଠି ଦେଖନ୍ତି ତ କରମେତୀ ଶୟନ କକ୍ଷରେ ନାହିଁ । ଠାକୁରଙ୍କ ଘରେ ମଧ୍ୟ ନାହିଁ । ପାଖପଡ଼ିଶା ଘରେ ପଗ୍ଚରିଲେ । ସମସ୍ତେ ନିରୁତ୍ତର । ମହାମନା ପରଶୁରାମ ବୁଝିଗଲେ ଯେ ଅନୁରାଗ ଓ ବୈରାଗ୍ୟର ଆବେଗରେ କରମେତୀ ନିଶ୍ଚୟ ଗୃହ ଛାଡ଼ି ଗ୍ଚଲିଯାଇଛି । କିନ୍ତୁ ଲୋକେ ତ ଏ କଥା ବୁଝିବେ ନାହିଁ । ଯାହା ତୁଣ୍ଡରେ ଯାହା ଆସିବ, କହିବେ । ନିଶ୍ଚୟ କଳଙ୍କ କାଳିମା ଲଗାଇବେ । ଆଜି ସେ ଶାଶୁଘରକୁ ଯିବାର ସବୁ ବ୍ୟବସ୍ଥା ହୋଇ ସାରିଛି । କାହାକୁ କି ମୁହଁ ଦେଖାଇବେ । ସେ ଆଉ ବିଳମ୍ବ ନ କରି ରାଜାଙ୍କ ନିକଟରେ ଏ ଦୁଃଖଦ ସମାଗ୍ଚର ଜଣାଇଲେ । ରାଜପୁରୋହିତ ହିସାବରେ ରାଜ୍ୟରେ ତାଙ୍କର ଖ୍ୟାତି କିଛି କମ୍ ନ ଥିଲା । ସମସ୍ତେ ତାଙ୍କୁ ଭଲଭାବେ ଜାଣନ୍ତି । ରାଜା କାଳବିଳମ୍ବ ନ କରି ସୈନ୍ୟ-ସାମନ୍ତଙ୍କୁ ଚତୁର୍ଦ୍ଦିଗକୁ ପ୍ରେରିତ କଲେ ।

ତେଣେ କରମେତୀ ରାତିଯାକ ଗ୍ଚଲି ଗ୍ଚଲି କ୍ଳାନ୍ତ ହୋଇ ପଡ଼ିଥାନ୍ତି । ରାଜସ୍ଥାନର ପ୍ରଶସ୍ତ ମରୁଭୂମି । ଯେଉଁଆଡ଼େ ଆଖି ପଡ଼େ କେବଳ ବାଲୁକା ସ୍ତୁପ । କେଉଁଠି ବସି ବିଶ୍ରାମ କରିବା ପାଇଁ ଗଛଛାଇ ମଧ୍ୟ ନ ଥାଏ । ହଠାତ୍ ସେ ଘୋଡ଼ାଙ୍କ ଟାପୁର ଶବ୍ଦ ଶୁଣିବାକୁ ପାଇଲେ । ବୁଝିଗଲେ ରାଜାଙ୍କର ସୈନ୍ୟମାନେ ତାଙ୍କୁ ଖୋଜିବା ପାଇଁ ନିଶ୍ଚୟ ବାହାରି ପଡ଼ିଲେଣି । ଯଦି ସେ ଧରାପଡ଼ିଯାଆନ୍ତି ତାଙ୍କର

ସବୁ ଉଦ୍ୟମ ନିଷ୍ଫଳ ହୋଇଯିବ । ଆଖପାଖରେ ଆତ୍ମଗୋପନ ପାଇଁ କୌଣସି ଗିରିକନ୍ଦର ଅଥବା ଜଙ୍ଗଲ ନ ଥାଏ । ସୈନ୍ୟମାନେ ପାଖେଇ ଆସୁଥାନ୍ତି । କ'ଣ କରିବେ ? ହଠାତ୍ ସେ ଦେଖିଲେ ଯେ ଶୃଗାଳ, ଶାଗୁଣା ମାଂସ ଖାଇସାରି ଛାଡି ଦେଇଥିବା ଗୋଟିଏ ମୃତ ଓଟର ବିଶାଳ ହାଡ଼କଙ୍କାଳ ପଡ଼ିଛି । ନିରୁପାୟ ହୋଇ ତାଂ ଭିତରେ ପଶିଯାଇ ସେ ଆତ୍ମଗୋପନ କଲେ ।

ପ୍ରଭୁଙ୍କ କୃପାରୁ ଭକ୍ତିମତୀ ବାଳିକା ପାଇଁ ଦୁର୍ଗନ୍ଧମୟ କଙ୍କାଳରୁ ଆଜି ସୁଗନ୍ଧ ପ୍ରସାରିତ ହେଲା । ଯାହାଙ୍କ କରୁଣାରୁ ଅଗ୍ନି ଶୀତଳ ଓ ବିଷ ଅମୃତ ହୋଇପାରେ, ତାଙ୍କ କୃପା ବଳରେ ଦୁର୍ଗନ୍ଧ ଯେ ସୁଗନ୍ଧରେ ରୂପାନ୍ତରିତ ହୋଇଯିବ, ଏହା କେଉଁ ବଡ଼ କଥା ଅବା! ତା'ଛଡ଼ା ନାଗଶାପ ଦଂଶନ କରିଥିବା ବ୍ୟକ୍ତିକୁ ଯେପରି ନିମ୍ବପିତା ମଧ୍ୟ ମଧୁର ଲାଗେ, ସେହିପରି ସଂସାରର ବିଷୟରୂପୀ ଦୁର୍ଗନ୍ଧରୁ ରକ୍ଷା କରୁଥିବାରୁ ବାଳିକାକୁ ତାହା ସୁଗନ୍ଧ ଭଳି ବୋଧ ହେଲା ।

ସୈନ୍ୟମାନଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା । ନିରାଶ ହୋଇ ସେମାନେ ରାଜ୍ୟକୁ ଫେରିଗଲେ । ସେତେବେଳକୁ ମୃତ ଓଟର କଙ୍କାଳ ମଧ୍ୟରେ କରମେତୀଙ୍କୁ ତିନିଦିନ ବିତିଯାଇଥାଏ । ସେ ତା' ମଧ୍ୟରୁ ବାହାରି ଦେଖନ୍ତି ତ କେତେକ ତୀର୍ଥଯାତ୍ରୀ ଗଙ୍ଗାସ୍ନାନ ଉଦ୍ଦେଶ୍ୟରେ ଶୂକରକ୍ଷେତ୍ର ଯାଉଛନ୍ତି । ସେ ସେମାନଙ୍କ ସହିତ ଗଙ୍ଗା ଅଭିମୁଖେ ଆଗେଇ ଚାଲିଲେ । ଭାବିଲେ—"ଶୃଗାଳ, ଶାଗୁଣା ଭକ୍ଷଣ କରିଥିବା ହାଡ଼କଙ୍କାଳ ସ୍ପର୍ଶର ଅପବିତ୍ରତାକୁ ସେ ପ୍ରଥମେ ଗଙ୍ଗାସ୍ନାନ କରି ମାର୍ଜନ କରିନେବେ ଏବଂ ତା'ପରେ ପ୍ରଭୁଙ୍କ ପରମ ପବିତ୍ର ବୃନ୍ଦାବନ ଧାମରେ ପ୍ରବେଶ କରିବେ ।"

ତା' ଦେହରେ ଅନେକ ବହୁମୂଲ୍ୟ ସ୍ୱର୍ଣ୍ଣ ଆଭୂଷଣ ଶୋଭାପାଉଥାଏ । ସ୍ୱର୍ଣ୍ଣରେ କଳିଯୁଗର ନିବାସ । ଚୋର-ଡାକୁମାନେ ମଧ୍ୟ ହଇରାଣ କରି ପାରନ୍ତି । ତା'ଛଡ଼ା ଏସବୁ ଭକ୍ତିରେ ଅନ୍ତରାୟ ସୃଷ୍ଟି କରିବ ବୋଲି ଭାବି ଗଙ୍ଗାସ୍ନାନ ପରେ ସେ ବ୍ରାହ୍ମଣମାନଙ୍କୁ ସମସ୍ତ ଆଭୂଷଣ ଦାନ କରିଦେଲେ ଏବଂ ତାଙ୍କଠାରୁ କୃଷ୍ଣଭକ୍ତିର ଆଶୀର୍ବାଦ ପାଇ ବୃନ୍ଦାବନ ଅଭିମୁଖେ ଯାତ୍ରା କଲେ ।

ଶ୍ରୀଧାମ ବୃନ୍ଦାବନରେ ରଙ୍ଗନାଥ ଠାକୁରଙ୍କ ମନ୍ଦିର ନିକଟସ୍ଥ ପରମ ପବିତ୍ର ତୀର୍ଥ ସ୍ଥାନ । ବ୍ରହ୍ମକୁଣ୍ଡ ନାମରେ ତାହା ସର୍ବଜନ ବିଦିତ । କୁହାଯାଏ ଯେ ପିତାମହ ବ୍ରହ୍ମା ବତ୍ସାହରଣ ପରେ ନିଜର ଅପରାଧ କ୍ଷମା କରାଇ ସେହି ସ୍ଥାନରେ ଭଗବାନଙ୍କୁ ସ୍ତୁତିପ୍ରାର୍ଥନା ସହିତ ପ୍ରଦକ୍ଷିଣା ଓ ନମସ୍କାର କରିଥିଲେ । ସେହି

ଦିନଠାରୁ ଏ ତୀର୍ଥ ପ୍ରଭୁଙ୍କ ଲୀଳା ସ୍ମରଣ କରାଉଛି। ଭକ୍ତିମତୀ କରମେତୀ ସେଠାରେ ନିବାସ କଲେ। ସେ ଅହର୍ନିଶ ପ୍ରଭୁଙ୍କ ଧ୍ୟାନରେ ବିଭୋର ରହୁଥାନ୍ତି। ସିଂହ, ସର୍ପ, ହରିଣ, ମୟୂର ପ୍ରଭୃତି ବନ୍ୟଜନ୍ତୁ ତାଙ୍କ ଗୃହରେ ଉପନୀତ ନବ ଅତିଥିଙ୍କ ରକ୍ଷା ଦାୟିତ୍ୱ ବହନ କରି ପହରା ଦେଉଥାନ୍ତି। ସର୍ବାଙ୍ଗ ବ୍ରଜଧୂଳିରେ ଧୂସରିତ। ଶୁଷ୍କ ବଟପତ୍ର ପରିଧାନ କରିଥାନ୍ତି। ତାଙ୍କୁ ଦେଖି ମନେ ହେଉଥାଏ ସତେଯେପରି ମୂର୍ତ୍ତିମତୀ ତପସ୍ୟା ଭଗବାନଙ୍କ ଧ୍ୟାନରେ ନିମଗ୍ନ ହୋଇଛି।

ତେଣେ କରମେତୀଙ୍କ ବାପା ଶ୍ରୀପରଶୁରାମଜୀ କନ୍ୟାର ବିୟୋଗରେ ଅଧୀର ହୋଇପଡୁଥାନ୍ତି। ତା'ର ସ୍ନେହ କଥା ମନେପଡ଼ି ତାଙ୍କ ମନକୁ ବାରମ୍ବାର ଆନ୍ଦୋଳିତ କରୁଥାଏ। ସେ କରମେତୀର ଆନ୍ତରିକ ଭକ୍ତି-ଭାବନା ସହିତ ବେଶ୍ ପରିଚିତ ଥିଲେ। ପିଲାବେଳେ ଭାଗବତ କଥା ପ୍ରସଙ୍ଗରେ ବୃନ୍ଦାବନ କଥା ଶୁଣିଲା ବେଳେ ତା' ମନ ବ୍ୟାକୁଳ ହୋଇ ପଡୁଥିଲା। ଭାବିଲେ, କରମେତୀ ନିଶ୍ଚୟ ମଥୁରା କି ବୃନ୍ଦାବନ ଯାଇଥିବ। ଏହା ଭାବି ଶ୍ରୀପରଶୁରାମଜୀ ମଥୁରା ଆସିଲେ।

ସେତେବେଳର ବୃନ୍ଦାବନ ସଘନ ବୃକ୍ଷଲତାରେ ପରିପୂର୍ଣ୍ଣ ଥାଏ। ସ୍ଥାନେ ସ୍ଥାନେ ସାଧୁ-ସନ୍ଥଙ୍କ କୁଟିର ଶୋଭା ପାଉଥାଏ। ସାଧୁ-ସନ୍ଥ ଏବଂ ବନ୍ୟ ପଶୁଙ୍କୁ ଛାଡ଼ିଦେଲେ ଅନ୍ୟ ଲୋକଙ୍କ ଗମନାଗମନ କଦବା କ୍ୱଚିତ୍ ହୁଏ। ଜଣେ ଫୁଲବିକାଳୀ ସବୁଦିନ ଫୁଲ ନେବା ପାଇଁ ମଥୁରାରୁ ବୃନ୍ଦାବନକୁ ଆସୁଥାଏ। କରମେତୀର ଏଭଳି ଭଗବଦ୍‌ଭକ୍ତି ଦଶା ବିଷୟରେ ସେ ମଥୁରା ଲୋକଙ୍କୁ ଶୁଣାଉଥାଏ।

ତେଣେ ପରଶୁରାମ ଆସି ଲୋକମାନଙ୍କୁ ତାଙ୍କ କନ୍ୟାଙ୍କ ବିଷୟରେ ପଚରା-ଉଚରା କଲେ। ଲୋକେ କହିଲେ—ଆମେ ତା' ନାଆଁ ତ ଜାଣି ନାହୁଁ, କିନ୍ତୁ କିଛି ଦିନ ହେଲା ଜଣେ ଭକ୍ତିପରାୟଣା କନ୍ୟା ବୃନ୍ଦାବନକୁ ଆସିଥିବା କଥା ଫୁଲବିକାଳୀ କହୁଥିଲା। ତାକୁ ପଚ୍ଚାରିଲେ ସେ ସବୁ କଥା କହି ପାରିବ। ଫୁଲବିକାଳୀ ଠାରୁ ସବୁ ତଥ୍ୟ ସଂଗ୍ରହ କରି ଜଣେ ଚତୁର୍ବେଦୀ ବ୍ରାହ୍ମଣଙ୍କୁ ସଙ୍ଗରେ ଧରି ସେ ବୃନ୍ଦାବନରେ ଏଣେତେଣେ ଖୋଜାଖୋଜି କଲେ। କିନ୍ତୁ ଏତେ ସଘନ ବନରେ ଖୋଜିବା ଅତି ଦୁଷ୍କର କାର୍ଯ୍ୟ। ଗୋଟିଏ ବଡ଼ ବରଗଛରେ ଚଢ଼ି ଚ୍ଚାରିଆଡ଼େ ଦୃଷ୍ଟି ଦେଉ ଦେଉ ହଠାତ୍ କରମେତୀଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା। କରମେତୀଙ୍କ ଭକ୍ତିଭାବ ଅବର୍ଣ୍ଣନୀୟ। ନେତ୍ରରୁ ଦୁଇ ଧାର ଅଶ୍ରୁ ପ୍ରବାହିତ ହୋଇ ତାଙ୍କ ବକ୍ଷସ୍ଥଳକୁ ଆର୍ଦ୍ର କରିଚ୍ଚାଲିଥାଏ। ଚନ୍ଦ୍ର ଉଦୟ ହେଲେ

ଚନ୍ଦ୍ରକାନ୍ତମଣି ଯେପରି ଦ୍ରବିତ ହୋଇଯାଏ, ସେହିପରି ମନେ ହେଉଥାଏ କୃଷ୍ଣଭକ୍ତିର ଆବିର୍ଭାବରେ ତାଙ୍କର ଚିତ୍ତ ଦ୍ରବିତ ହୋଇ ନେତ୍ରପଥ ଦେଇ ବାହାରକୁ ନିର୍ଗତ ହେଉଛି। ପ୍ରଭୁଙ୍କ ଦର୍ଶନ ପାଇଁ ସେ ବ୍ୟାକୁଳ ହୃଦୟରେ ହା କୃଷ୍ଣ! ହା କୃଷ୍ଣ! କହି ଧରଣୀରେ ଲୋଟି ଯାଉଥାନ୍ତି।

ଭଗବତ୍‌ପ୍ରେମରେ କନ୍ୟାକୁ ବିହ୍ୱଳ ଦେଖି ପରଶୁରାମ ନିଜକୁ ଧନ୍ୟ ମଣିଲେ। ସେ ନିଜ ମନର ଆବେଗକୁ ଆଉ ବେଶୀ ସମୟ ଅଟକାଇ ପାରିଲେ ନାହିଁ। ଗଛରୁ ହଠାତ୍ ଓହ୍ଲାଇ ଆସି ସେ ଝିଅର ପାଦତଳେ ଲୋଟିଗଲେ। କିନ୍ତୁ କରମେତୀଙ୍କର ବାହ୍ୟ ଜ୍ଞାନ ନ ଥାଏ। ପ୍ରଭୁଙ୍କ ଧ୍ୟାନରେ ଦୀର୍ଘ ଦୁଇ ଘଣ୍ଟା କାଳ ବ୍ୟତୀତ ହୋଇଗଲା। ତା'ପରେ ଅତି କଷ୍ଟରେ ସେ ପ୍ରକୃତିସ୍ଥ ହେଲେ। ବାପାଙ୍କୁ ଚିହ୍ନି ପାରୁ ନ ଥାନ୍ତି। ତାଙ୍କୁ ଲାଗୁଥାଏ ସତେ ଯେପରି ତାଙ୍କର ପ୍ରିୟତମ ଶ୍ରୀକୃଷ୍ଣ ତାଙ୍କୁ କୋଳେଇ ନେବାକୁ ଆଗଭର ହେଉଛନ୍ତି। କାହିଁକି ବା ନ ହୁଅନ୍ତା, ତାଙ୍କ ଦୃଷ୍ଟିରେ କୃଷ୍ଣଙ୍କ ବ୍ୟତୀତ ଆଉ କେହି ତାଙ୍କର ଆପଣାର ନ ଥିଲେ ! ସର୍ବତ୍ର ଭଗବାନଙ୍କୁ ଦେଖୁଥିବା କରମେତୀଙ୍କ ନେତ୍ରର ଅବିରଳ ଅଶ୍ରୁପ୍ରବାହ ବୃନ୍ଦାବନର ପାବନ ଭୂମିକୁ ପ୍ରେମାଦ୍ର କରୁଥାଏ।

ଝିଅ ହୃଦୟରେ ଜାଗରିତ କୃଷ୍ଣପ୍ରେମକୁ ଦେଖି ପଣ୍ଡିତ ପରଶୁରାମଙ୍କ ହୃଦୟ ଆନନ୍ଦରେ ଉଚ୍ଛୁଳି ଉଠିଲା। ମନେ ହେଉଥାଏ ତାଙ୍କ ହୃଦୟର ଉତ୍ତାଳ ତରଙ୍ଗ ଆନନ୍ଦସିନ୍ଧୁର କୂଳ ଲଙ୍ଘନ କରିଯିବ। କିନ୍ତୁ ପିଲାଟିବେଳୁ କୋଳରେ ପାଳିଥିବା ଝିଅର ସୁକୁମାର ଅଙ୍ଗକାନ୍ତିରେ ବୈରାଗ୍ୟର ବେଶଭୂଷା ଦେଖି ସେ ବିଷାଦରେ ଅବସନ୍ନ ହୋଇ ପଡ଼ିଲେ। ହର୍ଷ ଓ ବିଷାଦରେ ଅଭିଭୂତ ହୃଦୟ ଆଜି ମର୍ଯ୍ୟାଦାରୂପୀ ବନ୍ଧକୁ ଭାଙ୍ଗିଦେଲା। ସେ ଝିଅର ପାଦତଳେ ପଡ଼ିଗଲେ। ଅଧୀର ମନରେ ବିଳାପ କରି କହିଲେ—"ମାଆ! ତୁ ଏ କଣ କଲୁ? ଆମ ଦୁଇଜଣକୁ ଏକାକୀ ଛାଡ଼ି ତୁ ପଳାଇଆସିଲୁ! ମୁଁ ରାଜାଙ୍କର କୁଳପୁରୋହିତ। ମୋର ଆଜି ନାକ କଟିଗଲା। ସବୁ ପ୍ରତିଷ୍ଠା ଆଜି ଧୂଳିସାତ୍ ହୋଇଗଲା। ଶିରୀଷ କୁସୁମ ପରି ତୋର ସୁକୁମାର ଅଙ୍ଗ ଅରଣ୍ୟର ଏ ଅସହ୍ୟ କଷ୍ଟକୁ କଣ ସହି ପାରିବ? ମୁଁ ଏବେ ମୋ ଆଖି ଆଗରେ ଅନେକ ହିଂସ୍ର ଜନ୍ତୁ ଦେଖିଲି। ମୁଁ ଆସିବାରୁ ସେମାନେ ଏଣେତେଣେ ପଳାଇଗଲେ। ଯଦି ତୋର କିଛି ଅନିଷ୍ଟ ହୋଇଯାଏ, ତେବେ ଭଜନରେ ନିଶ୍ଚୟ ବ୍ୟାଘାତ ଘଟିବ ମାଆ! ଏ ଘୋର ବନରେ ତୋତେ କିଏ ସହାୟ ହେବ। ଚାଲ୍ ମାଆ! ମୋ ସହିତ ଘରକୁ ଫେରିଚାଲ୍। ତୁ ଶାଶୁଘରକୁ ନ ଗଲେ କୌଣସି

ଆପତ୍ତି ନାହିଁ। ଘରେ ରହି ଆନନ୍ଦ ମନରେ ପ୍ରଭୁଙ୍କ ଭଜନ କରିବୁ।''

କରମେତୀ କହିଲେ—''ବାପା! ଆପଣ ଖରାପ ଭାବିବେ ନାହିଁ। ଛୋଟ ମୁହଁରେ ବଡ଼ କଥା। ମୋ ଅପରାଧ କ୍ଷମା କରିବେ। ଆପଣ ଯେଉଁ ନାକ କଟିବା କଥା କହିଲେ, ତାହା ଅଯଥାର୍ଥ। ନାକ ଥିଲେ ସିନା କଟିବ। ମୂଳରୁ ତ ନାକ ନାହିଁ, ପୁଣି କଟିବ କ'ଣ? ପ୍ରକୃତ ନାକ (ପ୍ରତିଷ୍ଠା) ହେଉଛି ଭଗବାନଙ୍କ ଭକ୍ତି। ଏ ଭକ୍ତି 'ନାକଲୋକ' ଅର୍ଥାତ୍ ସ୍ୱର୍ଗରେ ମଧ୍ୟ ଦୁର୍ଲଭ। ବିଷୟ ବିଳାସରେ ରାତିଦିନ ବୁଡ଼ି ରହିଥିବା ଦେବଗଣ କଣିକାଏ ଭକ୍ତି ପାଇଁ ଲାଳାୟିତ ରହନ୍ତି। ସେମାନେ ପବିତ୍ର ଭାରତଭୂମିରେ ଜନ୍ମ ହୋଇ ଭକ୍ତି ଲାଭ କରିବାକୁ ଆଶା କରନ୍ତି। ବାପା! ଭକ୍ତିହୀନ ମନୁଷ୍ୟ ଜୀବନ୍ତ ଶବ ସହିତ ସମାନ। ଗୋଟାଏ ଶବର ପୁଣି କି ପ୍ରତିଷ୍ଠା? ସଂସାରର ବିଷୟ ଭୋଗ କରି କରି ଦେହ ଜର୍ଜର ହୋଇଯାଉଛି, ଅଙ୍ଗ-ପ୍ରତ୍ୟଙ୍ଗ ଶିଥିଳ ହୋଇପଡୁଛି, ବାଳ ପାଚିଯାଉଛି, ଆଖି ଆଗରେ ଜୁଳୁଜୁଳିଆ ପୋକ ବୁଲୁଥିବା ପରି ଦେଖାଯାଉଛି, ତଥାପି ଏ ନିର୍ଲଜ୍ଜ ମନ ବିଷୟକୁ ଛାଡୁ ନାହିଁ। ସବୁ ବିଷୟସୁଖ 'ଚର୍ବିତ ଚର୍ବଣ' ଭଳି ନିରର୍ଥକ। ଏଥିରେ ସାର ବୋଲି କିଛି ନାହିଁ। ଆଖି ବୁଜିଦେବା ମାତ୍ରେ ସବୁ ଶୂନ୍ୟ ହୋଇଯିବ। ବାପା! ଏ ଦେହ ଅସ୍ଥି-ମାଂସ-ରୁଧିରର ଏକ ପିଣ୍ଡ। ତେଣୁ ଏହାକୁ ମୁଁ ବୋଲି କେବେ ଭାବ ନାହିଁ। ସ୍ତ୍ରୀ-ପୁତ୍ରଙ୍କୁ କଦାପି ଆପଣାର ଭାବ ନାହିଁ। ଅହର୍ନିଶ ସଂସାରର କ୍ଷଣଭଙ୍ଗୁରତା ଅନୁଭବ କର। ଏଠାକାର କୌଣସି ବସ୍ତୁ ସ୍ଥାୟୀ ନୁହେଁ। ପାଣି ଫୋଟକା ଭଳି କ୍ଷଣକେ ସବୁ ଉଭେଇଯିବ। କେବଳ ବୈରାଗ୍ୟ ରସ ଆସ୍ୱାଦନ କରି ପ୍ରଭୁଙ୍କ ଚରଣରେ ମନ ଦିଅ। ଭଗବାନଙ୍କ ପ୍ରତି ଭକ୍ତି ହିଁ ପରମ ଧର୍ମ। ତାହାକୁ ଆଶ୍ରା କର। ଅନ୍ୟାନ୍ୟ ଲୌକିକ ଧର୍ମରୁ ବିମୁଖ ହୋଇ ସାଧୁସନ୍ଥଙ୍କର ସେବା କର। ମନ ଭିତରୁ ଭୋଗ ଲାଳସା ପରିତ୍ୟାଗ କରିଦିଅ। ଅନ୍ୟର ଗୁଣ-ଦୋଷ ଦେଖ ନାହିଁ। ଦିବାନିଶି ଭଗବତ୍‌ସେବାରେ ମନଦେଇ ହରିକଥାରସ ପାନ କର।''

ମହାମନା ପରଶୁରାମ ତ କୌଣସି ସାଧାରଣ ମାନବ ନ ଥିଲେ। ଅଗାଧ ପାଣ୍ଡିତ୍ୟ ଥିଲା ତାଙ୍କ ଭିତରେ। ତଥାପି ଆଜି ପର୍ଯ୍ୟନ୍ତ ବିଷୟରୁ ବୈରାଗ୍ୟ ହୋଇ ନ ଥିଲା। ଝିଅର ଏଭଳି ଅନୁଭବସିଦ୍ଧ ବଚନ ଗୁଳିପରି ତାଙ୍କ ହୃଦୟରେ ପ୍ରବେଶ କରି ହୃଦୟର ଅଜ୍ଞାନଗ୍ରନ୍ଥିକୁ କାଟିଦେଲା। ଆଜି ତାଙ୍କ ମୋହ ପରଦା ଦୂରେଇଗଲା। ଝିଅର ଉପଦେଶ ଶୁଣି ସେ ମଧ୍ୟ ସବୁଦିନ ପାଇଁ ବୃନ୍ଦାବନରେ ରହି ପ୍ରଭୁଙ୍କ ଭଜନ କରିବାକୁ ନିର୍ଣ୍ଣୟ କଲେ।

ଏକାକିନୀ ବୃଦ୍ଧା ମାଆଙ୍କର ଜୀବନରକ୍ଷା ପାଇଁ କରମେତୀ ବାପାଙ୍କୁ ଗୃହରେ ରହି ଭଜନ କରିବାକୁ କହିଲେ। ଯମୁନା କୂଳରୁ ତାଙ୍କୁ ଶ୍ରୀକୃଷ୍ଣଙ୍କର ଗୋଟିଏ ସୁନ୍ଦର ଶ୍ରୀବିଗ୍ରହ ମିଳିଥିଲା। ସେହି ବିଗ୍ରହଙ୍କୁ ବାପାଙ୍କ ହସ୍ତରେ ସମର୍ପଣ କରି ତାଙ୍କ ସେବାପୂଜାର ଦାୟିତ୍ୱ ପ୍ରଦାନ କଲେ ଏବଂ ଗୃହରେ ରହି ବୃନ୍ଦାବନ ଧାମର ଧ୍ୟାନ କରିବାକୁ କହିଲେ।

ଝିଅକୁ ଛାଡ଼ି ପରଶୁରାମଙ୍କ ପାଦ ଘରକୁ ଫେରିବାକୁ କଦାପି ଆଗଭର ହେଉ ନ ଥାଏ। କିନ୍ତୁ ବିଧିର ବିଧାନ ସେଇଆ ଥିଲା। ପ୍ରଭୁଙ୍କ ଚରଣାଶ୍ରୟରେ ଝିଅକୁ ଅର୍ପଣ କରି ସେ ଅତି କଷ୍ଟରେ ଗୃହକୁ ଫେରିଲେ। ଦିନବେଳେ ଫେରିଲେ ଗାଁଆ ଲୋକେ କେତେ କଥା ପଚ଼ାରିବେ। ସେ କାହାକୁ କି ଉତ୍ତର ଦେବେ କିଛି ଭାବି ପାରୁ ନ ଥାନ୍ତି। ତେଣୁ ସେ ଦିନଟି ଗାଁ ବାହାରେ ବିତାଇ ରାତ୍ରି କାଳରେ ଗୃହରେ ପ୍ରବେଶ କଲେ। ପତ୍ନୀ ଆଗରେ ଝିଅର ଭକ୍ତିଭାବନା କଥା ବର୍ଣ୍ଣନା କଲେ। ଭକ୍ତଦମ୍ପତ୍ତି ଆନନ୍ଦରେ ମଗ୍ନ ହେଲେ। ପରଶମଣିର ସ୍ପର୍ଶରେ ଯେପରି ଅନେକ ଲୌହପିଣ୍ଡ ସ୍ୱର୍ଣ୍ଣରେ ପରିଣତ ହୋଇଯାଆନ୍ତି, ସେହିପରି ଭକ୍ତିମତୀ କରମେତୀଙ୍କ ପରି ଝିଅକୁ ଜନ୍ମ ଦେଇଥିବାରୁ ଭକ୍ତଦମ୍ପତ୍ତି କୃତାର୍ଥ ହେଲେ।

କରମେତୀ ଦେଇଥିବା ପ୍ରଭୁଙ୍କର ଶ୍ରୀବିଗ୍ରହକୁ ଠାକୁରଘରେ ବିରାଜମାନ କରାଇ ମହାମନା ପରଶୁରାମ ପ୍ରଭୁଙ୍କ ସେବାରେ ଦିବାନିଶି ମଗ୍ନ ରହୁଥାନ୍ତି। ଭଗବତ୍‌ସେବା ହୋଇଗଲା ତାଙ୍କ ହୃଦୟର ଏକମାତ୍ର ସମ୍ପତ୍ତି। ଏଣେତେଣେ ଯାଆଆସ କରିବା, ଲୋକଙ୍କ ସଙ୍ଗରେ ବେଶୀ ମିଳାମିଶା କରିବା ଆଉ ତାଙ୍କୁ ଭଲ ଲାଗିଲା ନାହିଁ। ସେ ଭାବିଲେ ଏତେଦିନ ଯାଏ ସେ ରାଜାଙ୍କର ଆଶ୍ରିତ ଥିଲେ, ତାଙ୍କୁ ଆଶୀର୍ବାଦ ଦେଉଥିଲେ, ଏବେ କିନ୍ତୁ ସେ ପ୍ରଭୁଙ୍କର ଚରଣାଶ୍ରିତ। ବିଶ୍ୱର କଲ୍ୟାଣ ତାଙ୍କର ଏକମାତ୍ର କାମ୍ୟ। ଏହା ଭାବି ସେ ରାଜଦରବାରକୁ ମଧ୍ୟ ଯିବା ବନ୍ଦ କରିଦେଲେ।

କିଛି ଦିନ ପରେ ଦିନେ ରାଜାଙ୍କର କୁଳପୁରୋହିତଙ୍କ କଥା ମନେ ପଡ଼ିଲା। କର୍ମଚ଼ାରୀମାନଙ୍କୁ ତାଙ୍କ କଥା ପଚ଼ାରିଲେ। ଜଣେ କହିଲା—'ମଣିମା! ଏବେ ସେ ଦିବାନିଶି ନିଜ ଘରେ ଭଗବାନଙ୍କ ସେବା-ପୂଜାରେ ଓ ସତ୍ସଙ୍ଗରେ ମଗ୍ନ ରହୁଛନ୍ତି।' ଏ ସମାଚ଼ାର ଶୁଣି କୁଳପୁରୋହିତଙ୍କ ପ୍ରତି ତାଙ୍କ ହୃଦୟର ଶ୍ରଦ୍ଧା ବହୁଗୁଣିତ ହୋଇଗଲା। ସେ ତାଙ୍କୁ ଡକାଇ ପଠାଇଲେ। କର୍ମଚ଼ାରୀମାନଙ୍କୁ ଅତି ସ୍ନେହରେ ପରଶୁରାମ କହିଦେଲେ ଯେ ରାଜାଙ୍କୁ କହିବ ମୁଁ ଏଇଠି ଥାଇ ତାଙ୍କୁ ଆଶୀର୍ବାଦ

ଦେଉଛି। ଭଗବାନଙ୍କ ଚରଣରେ ତାଙ୍କର ଭକ୍ତି ବଢୁ ଏବଂ ସେ ସପରିବାର ସକୁଶଳେ ରହନ୍ତୁ। କିନ୍ତୁ ମୁଁ ପ୍ରଭୁଙ୍କ ଚାକର ହୋଇଗଲି, ଆଉ ରାଜଦରବାରକୁ ଯାଇ ପାରିବି ନାହିଁ। ଏଭଳି ସମାଚାର ପାଇ ରାଜାଙ୍କ ମନ ପରଶୁରାମଙ୍କ ଦର୍ଶନ ପାଇଁ ଲାଳାୟିତ ହୋଇ ଉଠିଲା। ସେ ଏକାନ୍ତ ସମୟ ଦେଖି ପହଞ୍ଚିଲେ ପରଶୁରାମଙ୍କ ଗୃହରେ। ତାଙ୍କ ହୃଦୟରେ ଅଦ୍ଭୁତ ପ୍ରଭୁପ୍ରେମ ଆବିର୍ଭୂତ ହେବା ଦେଖି ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ। ପରଶୁରାମଙ୍କ ଠାକୁରସେବାର ଅବର୍ଣ୍ଣନୀୟ ରୀତିନୀତି ରାଜାଙ୍କ ମନ କିଣି ନେଉଥାଏ। ସେ ତାଙ୍କ ଚରଣ ବନ୍ଦନା କରି ଝିଅର ଶୁଭ ସମାଚାର ପଚାରିଲେ।

ଝିଅ କଥା ମନେ ପଡ଼ିବାରୁ ପରଶୁରାମଙ୍କ କଣ୍ଠ କୁଣ୍ଠିତ ହୋଇଗଲା। ସେ ଅଧୀର ହୋଇ କାନ୍ଦି କାନ୍ଦି କହିଲେ—"ମହାରାଜ! ସେ କଣ ଆଉ ମୋର ଝିଅ ହୋଇ ଅଛି! ସେ ତ ଶ୍ୟାମସୁନ୍ଦରଙ୍କ ଚରଣ ସେବିକା ହୋଇ ସାରିଛି। ପ୍ରଭୁ ତାକୁ ଆପଣାର କରିନେଇ ଅଭୟ ପାଦପଦ୍ମରେ ସ୍ଥାନ ଦେଇଛନ୍ତି। ଶ୍ୟାମବିରହିଣୀ ପରି ସେ ବୃନ୍ଦାବନର କୁଞ୍ଜ-ନିକୁଞ୍ଜରେ ତା' ପ୍ରାଣପ୍ରିୟକୁ ଖୋଜି ଖୋଜି ପ୍ରେମରେ ପାଗଳିନୀ ହୋଇଯାଇଛି। ମୁଁ ପିଲାଟି ଦିନରୁ ତା' ହୃଦୟରେ ଥିବା ପ୍ରଭୁଭକ୍ତିର ସଂସ୍କାରକୁ ବେଶ୍ ଚିହ୍ନି ପାରିଥିଲି। ଭାଗବତରେ ଗୋପୀମାନଙ୍କ ପ୍ରସଙ୍ଗ ଶୁଣିବା ବେଳେ ସେ ଅଧୀର ହୋଇ ପଡୁଥିଲା। ସେହି ଦିନଠାରୁ ସେ ଶ୍ରୀକୃଷ୍ଣଙ୍କୁ ନିଜର ସ୍ୱାମୀରୂପେ ବରଣ କରି ସାରିଥିଲା। ଆଜି ତା'ର ସେହି ଅଭିଳାଷ ଠାକୁରେ ପୂର୍ଣ୍ଣ କରିଛନ୍ତି।" ପରଶୁରାମଙ୍କ କଥା ଶୁଣି ରାଜାଙ୍କ ନୟନରୁ ଲୋତକର ଧାର ବହି ଆସିଲା। ଏଭଳି ଭକ୍ତିପରାୟଣା କରମେତୀର ଦର୍ଶନ ପାଇଁ ତାଙ୍କ ହୃଦୟ ବ୍ୟାକୁଳ ହୋଇ ଉଠିଲା। ସେ କହିଲେ—"ମହାତ୍ମନ୍! ଥରକ ପାଇଁ କରମେତୀର ଦର୍ଶନ କରିବାକୁ ମୋତେ ଆଜ୍ଞା ଦିଅନ୍ତୁ। ମୋ ଚିତ୍ତ ଏଭଳି ଭକ୍ତିମତୀକୁ ଦର୍ଶନ କରିବା ପାଇଁ ଆତୁର ହୋଇ ପଡ଼ିଛି। ମୁଁ ତାକୁ ବୁଝାଇ ସୁଝାଇ ସଙ୍ଗରେ ନେଇ ଆସିବି। ଯଦି ସେ ନ ମାନେ, ତେବେ କେବଳ ଦର୍ଶନ କରି ନିଜର ଜୀବନ ଧନ୍ୟ କରିବି।" ପରଶୁରାମ ପ୍ରଥମେ ରାଜାଙ୍କୁ ମନା କଲେ। କିନ୍ତୁ ତାଙ୍କର ଅତ୍ୟଧିକ ପ୍ରେମ ଭାବନା ଦେଖି ସ୍ୱୀକୃତି ପ୍ରଦାନ କରିଦେଲେ।

ରାଜା ଆସି ପହଞ୍ଚିଲେ ଶ୍ରୀଧାମ ବୃନ୍ଦାବନରେ। ସେ ଯମୁନାକୂଳରେ କରମେତୀର ପ୍ରଥମ ଦର୍ଶନ ପାଇ ସ୍ତମ୍ଭୀଭୂତ ହୋଇଗଲେ। କରମେତୀର ଭକ୍ତିମୟ ଅଦ୍ଭୁତ ସ୍ଥିତି ଦେଖି ତାଙ୍କ ମନ ପଞ୍ଛୁ ପାଲଟିଗଲା। ସେ ଦେଖିଲେ, ଯମୁନାର

ନୀଳ ଜଳରାଶିରେ ଶ୍ୟାମସୁନ୍ଦରଙ୍କ ଅଙ୍ଗକାନ୍ତି ଦର୍ଶନ କରି କରମେତୀ ଚିତ୍ର ପ୍ରତିମା ଭଳି ନିସ୍ତବ୍ଧ ହୋଇଯାଇଛି । ତା' ନେତ୍ରରୁ ଲୋତକଧାର ପ୍ରବାହିତ ହୋଇ ଯମୁନାର ନୀଳ ଜଳରେ ମିଶିଯାଇଥାଏ । ସତେ ଯେପରି ସେ ଏହି ଲୋତକ ଧାରାକୁ ଦୂତ ଭାବରେ ପଠାଇଛି ପ୍ରିୟତମଙ୍କୁ ପାଛୋଟି ଆଣିବା ପାଇଁ । ପ୍ରେମ ସ୍ୱରୂପିଣୀ କରମେତୀର ଅଙ୍ଗ ଅଙ୍ଗରେ ଭକ୍ତିଲକ୍ଷଣର ଅପୂର୍ବ ବିକାଶ । ତାର ଦେହ ଆଉ ଲୌକିକ ହୋଇ ନ ଥାଏ । ଲାଗୁଥାଏ ସତେ ଯେପରି ଅପ୍ରାକୃତ ପ୍ରେମର ପୁଞ୍ଜୀଭୂତ ସ୍ୱରୂପଟିଏ ଯମୁନାକୂଳରେ ପ୍ରଭୁଙ୍କ ଧ୍ୟାନରେ ଆଜି ନିମଗ୍ନ ।

ରାଜା କରମେତୀର ଏଭଳି ସ୍ଥିତି ଦେଖି ଅବାକ୍ ହୋଇଗଲେ । ଏଭଳି ଭକ୍ତିନିମଗ୍ନ କନ୍ୟାକୁ ଗୃହକୁ ଫେରିବା ପାଇଁ କହିବାକୁ ତାଙ୍କର ଆଉ ସାହସ ହେଲା ନାହିଁ । ସେ ତା' ପାଦତଳେ ବାରମ୍ବାର ପ୍ରଣାମ କରି ନେତ୍ରର ଲୋତକ ମାଧ୍ୟମରେ ନିଜ ଅନ୍ତରର ଭାବନାକୁ ପ୍ରକାଶ କଲେ । ରାଜାଙ୍କ ଅନ୍ତରର ବିନୀତ ଭାବନା ଜାଣିପାରି କରମେତୀ କହିଲେ—"ମଣିମା! ତୁମକୁ ମୋ କଥା କଟୁ ଲାଗିପାରେ, କିନ୍ତୁ ମୁଁ ତୁମର ଅଭିଳାଷ ପୂର୍ଣ୍ଣ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ । ଏ ଅଭାଗିନୀ କରମେତୀର ହୃଦୟ ଶ୍ୟାମ ରଙ୍ଗରେ ଅନୁରଞ୍ଜିତ ହୋଇସାରିଛି । ଆଉ କାହା ପାଇଁ ଏଥିରେ ସ୍ଥାନ ନାହିଁ । ପ୍ରାଣ, ଯଶକୀର୍ତ୍ତି, ମାନ-ସମ୍ମାନ ସବୁ କିଛି ଚ୍ୟୁଲିଯାଉ ପଛେ, ଧର୍ମକର୍ମ ସବୁ କିଛି ଧୂଳିସାତ୍ ହୋଇଯାଉ ପଛେ, ଏ ଦେହକୁ ଯେତେ ଦାରୁଣ ଯାତନା ମିଳୁ ପଛେ, ମୁଁ ଆଉ ମୋ ପ୍ରିୟତମଙ୍କୁ ଛାଡ଼ି ପାରିବି ନାହିଁ । ଏ ଜୀବନ ତାଙ୍କ ଚରଣରେ ବିକା ହୋଇ ସାରିଛି । ତୁମେ ଆଉ ମୋତେ ବୃନ୍ଦାବନ ଛାଡ଼ି ଯିବାକୁ ବାଧ୍ୟ କର ନାହିଁ ।" ରାଜା ବିନମ୍ର ଭାବରେ ଅତି ଆଗ୍ରହର ସହିତ କିଛି ସେବା କରିବାକୁ ଅନୁମତି ମାଗିଲେ । କିନ୍ତୁ କରମେତୀ ସମ୍ପୂର୍ଣ୍ଣ ଅନିଚ୍ଛା ପ୍ରକାଶ କଲେ । ବାରମ୍ବାର ମନା କରିବା ସତ୍ତ୍ୱେ ରାଜା ଆଗ୍ରହପୂର୍ବକ ବ୍ରହ୍ମକୁଣ୍ଡ ନିକଟରେ ତାଙ୍କ ପାଇଁ ଗୋଟିଏ କୁଟୀର ନିର୍ମାଣ କରିଦେଲେ । ଭକ୍ତିସ୍ୱରୂପା କରମେତୀଙ୍କୁ ଶତ ଶତ ପ୍ରଣାମ ଜଣାଇ ରାଜା ଫେରିଗଲେ ନିଜର ରାଜ୍ୟକୁ । ରାଜାଙ୍କ ଉପରେ କରମେତୀର ପ୍ରେମବୈଚିତ୍ର୍ୟ ଦଶାର ଗଭୀର ପ୍ରଭାବ ପଡ଼ିଲା । ସେ ତା' କଥା ମନେ ପକାଇ ପକାଇ ପ୍ରେମରେ ବିଭୋର ହୋଇଯାଉଥାନ୍ତି । କରମେତୀର ଭକ୍ତି ପ୍ରଭାବରୁ ରାଜାଙ୍କର ଶେଷ ଜୀବନ ମଧ୍ୟ ପ୍ରଭୁ ଆରାଧନାରେ ବ୍ୟତୀତ ହେଲା ।

ରାଜାଙ୍କ ନିର୍ମିତ କୁଟୀରର ଧ୍ୱଂସାବଶେଷ ଅଦ୍ୟାବଧି ମଧ୍ୟ ଦେଖିବାକୁ

ମିଳେ । ସେହି କୁଟୀରରେ ରହି କରମେତୀ ଶେଷ ଜୀବନ ପର୍ଯ୍ୟନ୍ତ ଭକ୍ତିସରିତାରେ ଅବଗାହନ କରିଚ୍ଲିଲେ । ତାଙ୍କ ଜୀବନର ଅନୁପମ ତ୍ୟାଗ, ବୈରାଗ୍ୟ ଓ ଅନୁରାଗ ଗାଥା ଭକ୍ତଜନଙ୍କ ଜୀବନରେ ଭରିଦିଏ ନବୀନ ଉତ୍ସାହ ।

କୁହାଯାଏ ଯେ ଥରେ କରମେତୀ ଏଭଳି ଭଜନ-ଧ୍ୟାନରେ ମଗ୍ନ ହୋଇଗଲେ ଯେ ଅଠର ଦିନ ପର୍ଯ୍ୟନ୍ତ ସେମିତି ଅଖିଆ ଅପିଆ ବସି ରହିଲେ । ତାଙ୍କର ଦେହଜ୍ଞାନ ରହିଲା ନାହିଁ । ଧୀରେ ଧୀରେ ଦେହ କ୍ଷୀଣ ହୋଇଚ୍ଲିଲା । ଚ୍ଲିବାକୁ ଶକ୍ତି ରହିଲା ନାହିଁ । ତାଙ୍କୁ ଅତ୍ୟନ୍ତ କୃଶକାୟ ଦେଖି ପ୍ରଭୁ ଶ୍ୟାମସୁନ୍ଦର ସନ୍ଥରୂପରେ ତାଙ୍କୁ ଦର୍ଶନ ଦେଇ କହିଲେ—ମାଆ! ଏଇ ପ୍ରସାଦ ନିଅ । କରମେତୀ କହିଲେ—"ମହାତ୍ମନ୍! ଦୟା କରି ମୋତେ ଏଭଳି ପ୍ରସାଦ ଦିଅ, ଯାହା ଥରେ ଖାଇଦେଲେ ଆଉ ଭୋକଶୋଷ ଲାଗିବ ନାହିଁ । ଏହା ଭଗବାନଙ୍କ ସ୍ମରଣରେ ବିଘ୍ନ ସୃଷ୍ଟି କରୁଛି ।" ସନ୍ଥ ରୂପଧାରୀ ଭଗବାନ କହିଲେ—"ତୁମ ମନସ୍କାମନା ନିଶ୍ଚୟ ପୂର୍ଣ୍ଣ ହେବ । ଏଇ ପ୍ରସାଦ ପାଇ ଦେଖ ।" ଗୋଟିଏ ଗ୍ରାସ ନେବା ପରେ କରମେତୀଙ୍କ ରୋମ ରୋମରେ ଖେଳିଗଲା ଆନନ୍ଦର ପ୍ରବାହ । ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ପୁଲକିତ ହୋଇ ଉଠିଲା । ସେ ଭକ୍ତିପୂତ ଚିତ୍ତରେ ସନ୍ଥଙ୍କ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ଭଗବାନ ଦର୍ଶନ ଦେଇ ନିଜର କରକମଳରେ ତାଙ୍କର ମସ୍ତକ ଆଉଁସି ଦେଲେ । କରମେତୀ ପ୍ରଭୁଙ୍କ ଦର୍ଶନ ପାଇ କୃତାର୍ଥ ହେଲେ । ସେହିଦିନଠାରୁ ଆଉ କେବେ ବି ଭୋକଶୋଷ ତାଙ୍କ ଭକ୍ତିରେ ବାଧା ସୃଷ୍ଟି କଲା ନାହିଁ । କ୍ଷଣକୁ କ୍ଷଣ ପ୍ରଭୁଙ୍କ ତ୍ରିଭୁବନ ସୁନ୍ଦର ଘନଶ୍ୟାମ ମୂର୍ତ୍ତି ସ୍ଫୁରିତ ହେଲା ତାଙ୍କ ମାନସପଟରେ । ପ୍ରଭୁଙ୍କ ଅମିତ କରୁଣାଭାଜନ ସେହି ତପସ୍ୱିନୀ ଦେବୀ ଦିବାନିଶି ଧ୍ୟାନମଗ୍ନ ହୋଇ ପ୍ରେମମୟ ଦିବ୍ୟ ବୃନ୍ଦାବନ ଧାମ ଲାଭ କଲେ ।



## ଭକ୍ତ ଶ୍ରୀମାଧବ ଦାସ

ପରମ ପବିତ୍ର କାନ୍ୟକୁବ୍‌ଜ ବ୍ରାହ୍ମଣ କୁଳରେ ଶ୍ରୀମାଧବ ଦାସଙ୍କର ଜନ୍ମ । ତାଙ୍କର ହୃଦୟ ଅହର୍ନିଶ ମହାପ୍ରଭୁ ଜଗନ୍ନାଥଙ୍କ ଭକ୍ତିରେ ରସାଣିତ ହେଉଥିଲା । ପିଲାଟି ଦିନରୁ ତାଙ୍କର ଅନାବିଳ ହୃଦୟରେ ପ୍ରକାଶିତ ହେଉଥିଲା ଭକ୍ତିମିଶ୍ରିତ ବୈରାଗ୍ୟର ଅଙ୍କୁର । ଅଗାଧ ପାଣ୍ଡିତ୍ୟ ସହିତ ସେ ଅନୁଭବ କରି ପାରିଥିଲେ ଜଗତର ନଶ୍ୱରତା । କୁହାଯାଏ ଯେ ବେଦବ୍ୟାସ ହିଁ ମାଧବଦାସଙ୍କ ରୂପରେ

ଆବିର୍ଭୂତ ହୋଇଥିଲେ। କଥାଟି ନିରାଟ ସତ୍ୟ। ତାଙ୍କ ହୃଦୟରେ ବିରାଜମାନ ଲୋକହିତକାରୀ ଭାବନାରୁ ଏ କଥା ସ୍ପଷ୍ଟରୂପେ ପ୍ରମାଣିତ ହୋଇଯାଏ।

ଭଗବାନ ସମସ୍ତ ଦିବ୍ୟଗୁଣର ଅଗାଧ ସମୁଦ୍ର ହୋଇଥିଲେହେଁ ତାଙ୍କର ବିନମ୍ରତା, ସୌଶିଲ୍ୟ ଓ କାରୁଣିକତା ବିଶେଷଭାବେ ଜଗତ ବିଦିତ। ବେଦବ୍ୟାସଙ୍କ ଅବତାରରେ ଏହା ସ୍ପଷ୍ଟରୂପେ ପରିଲକ୍ଷିତ ହୁଏ। ସାକ୍ଷାତ୍ ଭଗବାନଙ୍କ ଅବତାର ହୋଇ ମଧ୍ୟ ବେଦବ୍ୟାସ କଦାପି ଆପଣା ଭଗବତ୍ତା ଦେଖାଇ ନାହାନ୍ତି। ସେ ସର୍ବଦା ଜଣେ ଭକ୍ତ ରୂପରେ ନିଜର ପରିଚୟ ଦେଇଛନ୍ତି। ଅନ୍ୟ ଅବତାରରେ କେଉଁଠି କେମିତି ଭଗବାନଙ୍କ ଐଶ୍ୱର୍ଯ୍ୟ ପ୍ରକାଶ ହେବାର ଦେଖାଯାଏ, କିନ୍ତୁ ବେଦବ୍ୟାସ ଏହାକୁ ଗୁପ୍ତ ରଖିଛନ୍ତି। ନାରଦଙ୍କ ଆଗମନରେ ସେ ଆସନରୁ ଉଠି ତାଙ୍କୁ ପୂଜା-ଅର୍ଚ୍ଚନା କରିଛନ୍ତି। ତା'ଛଡ଼ା ରାଜା ପରୀକ୍ଷିତଙ୍କୁ ଭାଗବତ ଶୁଣାଇବା ପାଇଁ ପରମ ବୈରାଗୀ ଶୁକଦେବଙ୍କ ଆଗମନ ହେବା ଦେଖି ତାଙ୍କ ପିତା ବ୍ୟାସଦେବ ମଧ୍ୟ ଆସନ ତେଜି ଅଭ୍ୟର୍ଥନା ଜଣାଇଛନ୍ତି। ଏହା ଥିଲା ଶ୍ରୀବେଦବ୍ୟାସଙ୍କ ବିନମ୍ରତାର ପରିସୀମା। ସେହିଭଳି ଭକ୍ତ ମାଧବ ଦାସ ମଧ୍ୟ ବିନମ୍ର ଗୁଣରେ ବିଭୂଷିତ ଥିଲେ।

କଳିଯୁଗୀୟ ଜୀବଙ୍କୁ ଅଳ୍ପାୟୁ, ଅଳ୍ପବୁଦ୍ଧି, ବିବିଧ ବାଧା-ବିଘ୍ନରେ ଗ୍ରସିତ ଏବଂ ସ୍ୱସାଧନା ନିର୍ଣ୍ଣୟରେ ଅସମର୍ଥ ଦେଖି ଭଗବାନ ବେଦବ୍ୟାସ ବେଦକୁ ଚାରି ଭାଗରେ ବିଭକ୍ତ କରିଦେଲେ—ଋକ୍, ଯଜୁଃ, ସାମ ଓ ଅଥର୍ବ। ଇତିହାସ ଓ ପୁରାଣସମୂହକୁ ପଞ୍ଚମ ବେଦରୂପରେ ସ୍ୱୀକାର କରାଯାଏ—**'ଇତିହାସ ପୁରାଣଂ ଚ ପଞ୍ଚମୋ ବେଦ ଉଚ୍ୟତେ।'** ଅଳ୍ପଜ୍ଞ ଜନତାଙ୍କ ଉପରେ କରୁଣା କରି ବେଦବ୍ୟାସ ଏହିପରି ବିଭାଗ କରିଦେଲେ। ତାଙ୍କର ଆନ୍ତରିକ ଉଦ୍ଦେଶ୍ୟ ଥିଲା ଯେ ଯାହାଙ୍କର ସ୍ମରଣ ଶକ୍ତି ଅତ୍ୟନ୍ତ କ୍ଷୀଣ, ସେମାନେ ମଧ୍ୟ ବେଦର ତାତ୍ପର୍ଯ୍ୟ ବୁଝି ପାରନ୍ତୁ।

ସ୍ତ୍ରୀ, ଶୂଦ୍ର ଓ ପତିତ ଦ୍ୱିଜାତି ବେଦଶ୍ରବଣର ଅଧିକାରୀ ନୁହନ୍ତି। ତେଣୁ ସେମାନେ ଶାସ୍ତ୍ରୋକ୍ତ କର୍ମ କରିବାରେ ଭୁଲ୍ କରି ପାରନ୍ତି। ସେଭଳି ଲୋକଙ୍କ ଉପରେ କୃପା କରି ବେଦବ୍ୟାସ ମହାଭାରତ ରଚନା କରିଦେଲେ। **ସେହିପରି ଭକ୍ତ ମାଧବ ଦାସ ମଧ୍ୟ ବେଦବାଣୀ ସଂସ୍କୃତ ବୁଝି ପାରୁ ନ ଥିବା ଲୋକଙ୍କ ପାଇଁ ବେଦ, ଶାସ୍ତ୍ର ଓ ପୁରାଣ ଇତ୍ୟାଦିର ଭାବକୁ ପ୍ରାକୃତ ଭାଷାରେ (ମାତୃଭାଷାରେ) ବିଭିନ୍ନ ଛାନ୍ଦରେ ଲେଖିଦେଲେ।**

ଭକ୍ତ ମାଧବ ଦାସ ଭକ୍ତିଭାବାପନ୍ନ ହୋଇଥିଲେ ମଧ୍ୟ ବୈରାଗ୍ୟ ରସର ରସିକ ଥିଲେ। ବାଲ୍ୟକାଳରୁ ଗୀତା, ଭାଗବତ ଇତ୍ୟାଦି ଶାସ୍ତ୍ରର ମର୍ମ ବୁଝିଥିବାରୁ ତାଙ୍କ ମନରେ ସ୍ୱାଭାବିକ ଭାବେ ସଂସାର ପ୍ରତି ଅରୁଚି ଆସିଯାଇଥିଲା। ସାଂସାରିକ ଭୋଗକୁ ନଶ୍ୱର ଜାଣି ସେ ଜଳରେ ପଦ୍ମପତ୍ର ଭଳି ରହୁଥିଲେ କେବଳ ସଂସାରରେ କର୍ତ୍ତବ୍ୟ ସମ୍ପାଦନ ପାଇଁ। ପୁତ୍ରମାନେ ଟିକିଏ ବଡ଼ ହୋଇଗଲେ ସେମାନଙ୍କ ଉପରେ ସମ୍ପୂର୍ଣ୍ଣ କାର୍ଯ୍ୟଭାର ନ୍ୟସ୍ତ କରି ବୈରାଗ୍ୟପୂର୍ଣ୍ଣ ଜୀବନ କଟାଇବା ପାଇଁ ଅନେକ ଥର ସେ ଭାବିଥିଲେ। କିନ୍ତୁ ପିଲାମାନେ ବଡ଼ ହେବେ କ'ଣ, ବରଂ ତାହାରି ମଧ୍ୟରେ ତାଙ୍କର ସତୀ ସାଧ୍ୱୀ ପତିବ୍ରତା ସ୍ତ୍ରୀ ତାଙ୍କୁ ଛାଡ଼ି ସବୁଦିନ ପାଇଁ ସଂସାରରୁ ବିଦାୟ ନେଲେ। ଏ ଘଟଣାଟି ତାଙ୍କ ହୃଦୟରେ ଥିବା ବୈରାଗ୍ୟର ଅଙ୍କୁରକୁ ପୁଷ୍ପିତ ଓ ପଲ୍ଲବିତ କରି ବିରାଟକାୟ ବୃକ୍ଷରେ ପରିଣତ କରିଦେଲା। ସେ ମନ ମଧ୍ୟରେ ଦୃଢ଼ ନିର୍ଣ୍ଣୟ କରିନେଲେ ଯେ ଭଗବାନ ହିଁ ଏ ସଂସାରର ପାଳକ। ସେ ଥାଉ ଥାଉ ଯେ ନିଜକୁ ପାଳନକର୍ତ୍ତା ବୋଲି ଭାବେ ତା'ଠାରୁ ମୂର୍ଖ ଆଉ କିଏ ବା ହୋଇପାରେ? ଯେ ସଂସାରକୁ ପାଳୁଛନ୍ତି, ସେ ଏହି ପିଲାମାନଙ୍କୁ ମଧ୍ୟ ପାଳିବେ। ଅଯଥା ଚିନ୍ତା କରି କିଛି ଲାଭ ନାହିଁ। ଏବେ ପିଲାମାନେ ଅବୋଧ, କାଲି ବଡ଼ ହୋଇ ବିବାହ କରିବେ, ତା'ପରେ ସେମାନଙ୍କର ପିଲାଛୁଆ ହେବେ। ପୁଣି ନାତି-ନାତୁଣୀଙ୍କ ଦାୟିତ୍ୱ। ଏମିତି ମାୟାମୋହର ବନ୍ଧନ ତ ଲାଗି ରହିଥିବ। ସମସ୍ୟା ପରେ ସମସ୍ୟା ଆସୁଥିବ। ପୁଣି ଜୀବ ପ୍ରଭୁଙ୍କୁ ଡାକିବ କେତେବେଳେ? ନା, ଆଉ କାଳବିଳମ୍ବ କରି ଲାଭ ନାହିଁ। ଶୀଘ୍ର ପ୍ରଭୁଙ୍କ ଭଜନରେ ମନୋନିବେଶ କରିବା ଦରକାର। ଦୟାମୟଙ୍କ ଉପରେ ସନ୍ତାନମାନଙ୍କ ଭାର ଅର୍ପଣ କରିଦେଇ ଗୃହବନ୍ଧନ ପରିତ୍ୟାଗପୂର୍ବକ ସେ ଶ୍ରୀକ୍ଷେତ୍ର ପୁରୀ ଧାମକୁ ଯାତ୍ରା କଲେ। ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ସେ ଜୀବନର ସମସ୍ତ ପୂର୍ବ ସ୍ମୃତିକୁ ଭୁଲିଗଲେ। ଶ୍ରୀରଙ୍ଗାଚରଣରେ ହୃଦୟର ଶ୍ରଦ୍ଧାସୁମନ ସମର୍ପଣ କରି ସେ ପ୍ରଭୁଙ୍କୁ ତାଙ୍କ ଧାମରେ ନିବାସ କରିବାର ଅନୁମତି ମାଗିଲେ। ଭକ୍ତବତ୍ସଳ ମହାବାହୁ ଜଗନ୍ନାଥ ମଧ୍ୟ ପ୍ରେମୀ ଭକ୍ତକୁ ପାଇ ଆତ୍ମତୃପ୍ତ ହେଲେ। ନିର୍ଦ୍ଧନ ବ୍ୟକ୍ତି ଧନ ପାଇ ଆତ୍ମହରା ହୋଇଯିବା ପରି ଭକ୍ତକୁ ପାଇ ଜଗନ୍ନାଥ ଆଜି ପରମ ପ୍ରସନ୍ନ। ପ୍ରଭୁଙ୍କ ଚରଣାରବିନ୍ଦରେ ଅସରନ୍ତି ବିନତି କରି ଭକ୍ତ ମାଧବ ଦାସ ସମୁଦ୍ର କୂଳରେ ପତ୍ରକୁଡ଼ିଆଟିଏ କରି ରହିଲେ।

ଧୀରେ ଧୀରେ ପ୍ରଭୁଙ୍କ ଭଜନରେ ମନ ଏତେ ନିମଗ୍ନ ହୋଇଗଲା ଯେ ସେ

ଭୁଲିଗଲେ ଦେହର କ୍ଷୁଧା-ପିପାସା ଧର୍ମକୁ। ତାଙ୍କର ଆଉ ଦେହଜ୍ଞାନ ରହିଲା ନାହିଁ। ଅଖିଆ ଅପିଆ ତିନି ଦିନ ତିନି ରାତି ବିତିଗଲା। ପ୍ରଭୁଙ୍କ ଅଖଣ୍ଡ ଧ୍ୟାନରେ ସେ ମଗ୍ନ ଥାଆନ୍ତି। ଭକ୍ତ ସିନା ଦେହଚିନ୍ତା କରେ ନାହିଁ, କିନ୍ତୁ ପ୍ରଭୁ କ'ଣ ତାକୁ ଭୁଲିଯିବେ? ସେ ଆଉ ମନ୍ଦିରରେ ରହି ପାରିଲେ ନାହିଁ। ରତ୍ନ ସିଂହାସନ ଛାଡ଼ି ରତ୍ନଥାଳିରେ ଶୟନଭୋଗ ପ୍ରସାଦ ଧରି ବାହାରି ପଡ଼ିଲେ ମହୋଦଧି ଅଭିମୁଖେ। ପ୍ରାଣପ୍ରିୟା ଲକ୍ଷ୍ମୀ ଦେବୀ ପଚାରିଲେ—ଏ କ'ଣ ସ୍ୱାମୀ! ଅର୍ଦ୍ଧରାତ୍ରିରେ କେଉଁ କାର୍ଯ୍ୟ ପଡ଼ିଲା? ରତ୍ନଥାଳିରେ ବିବିଧ ବ୍ୟଞ୍ଜନ ଧରି କେଉଁଠାକୁ ଯାଉଛନ୍ତି? ପ୍ରଭୁଙ୍କ ନେତ୍ରରୁ ଦୁଇ ଧାର ଅଶ୍ରୁ ଝରି ଆସି ତାଙ୍କ ବକ୍ଷସ୍ଥଳକୁ ଆର୍ଦ୍ର କରିଦେଲା। ଲକ୍ଷ୍ମୀଙ୍କ ପ୍ରଶ୍ନ ତାଙ୍କ ମନରେ ସୃଷ୍ଟି କଲା ଭକ୍ତର ଅବାଧ ସ୍ମୃତିକୋହ। ସେ ମନକଥା ବ୍ୟକ୍ତ କରିବାକୁ ଚାହୁଁଥାନ୍ତି, କିନ୍ତୁ 'ମୋ ଭକ୍ତ ମାଧବ..., ମୋ ଭକ୍ତ ମାଧବ ଦାସ ଅଖିଆ ଅପିଆ ପଡ଼ିଛି' କହିଲା ବେଳକୁ ତାଙ୍କ କଣ୍ଠ ଅବରୁଦ୍ଧ ହୋଇଯାଉଥାଏ। ଲକ୍ଷ୍ମୀ ମାତା ପ୍ରଭୁଙ୍କ ଅଧୀର ଭାବ ଦେଖି ବୁଝିଗଲେ ଯେ ନିଶ୍ଚୟ କୌଣସି ଭକ୍ତ ଉପରେ କରୁଣାସିନ୍ଧୁ ଆଜି କରୁଣାର୍ଦ୍ର ହୋଇ ପଡ଼ିଛନ୍ତି। ସେ କହିଲେ—"ସ୍ୱାମୀ! ସହଧର୍ମିଣୀର ସ୍ୱାମୀଙ୍କ ଶୁଭକାର୍ଯ୍ୟରେ ନିଶ୍ଚୟ ଅଧିକାର ରହିଛି। ମୋତେ ବି ସାଙ୍ଗରେ ନେଇ ଚାଲନ୍ତୁ ନା! ମୋତେ ମଧ୍ୟ କିଛି ସେବା କରିବାର ସୌଭାଗ୍ୟ ପ୍ରଦାନ କରନ୍ତୁ ସ୍ୱାମୀ! ସେଭଳି ଭକ୍ତଙ୍କ ଦର୍ଶନ ପାଇ ମୁଁ ଜୀବନ ଧନ୍ୟ କରିବି!"

ପ୍ରଭୁଙ୍କ ହାତରୁ ବିବିଧ ବ୍ୟଞ୍ଜନ ପୂର୍ଣ୍ଣ ରତ୍ନଥାଳି ନେଇ ଜଗନ୍ମାତ ମହାଲକ୍ଷ୍ମୀ ତାଙ୍କ ସାଙ୍ଗରେ ବାହାରି ପଡ଼ିଲେ ଭକ୍ତଙ୍କ ଦର୍ଶନ ଅଭିଳାଷରେ। ତାଙ୍କ ଶ୍ରୀଅଙ୍ଗର ଶୋଭା କିଏ ବା ବର୍ଣ୍ଣନ କରି ପାରିବ! ଅପୂର୍ବ ଅଙ୍ଗକାନ୍ତିରେ ଦଶଦିଗ ଆଲୋକିତ ହୋଇ ଉଠୁଥାଏ। ଚରଣରେ ନୁପୂରର ଝଙ୍କାର କଳହଂସଙ୍କ ଆଳାପ ଭଳି ଅତି ସୁଖଦ ବୋଧ ହେଉଥାଏ। ମହାପ୍ରଭୁ ମାଆ ଲକ୍ଷ୍ମୀଙ୍କ ସହିତ ଯାଇ ଅପେକ୍ଷା କଲେ ମାଧବ ଦାସଙ୍କ ପତ୍ରକୁଡ଼ିଆର ଦ୍ୱାରଦେଶରେ।

ସେତେବେଳକୁ ଭକ୍ତ ମାଧବ ଦାସ କୁଟୀରର ଦ୍ୱାରଆଡ଼କୁ ପିଠିକରି ବସିଥାନ୍ତି। ଯୁଗଳକିଶୋରଙ୍କ ଯୋଗୀଜନ ମୋହିନୀ ମୂର୍ତ୍ତି ବାରମ୍ବାର ସ୍ଫୁରିତ ହେଉଥାଏ ତାଙ୍କ ହୃଦୟ ସିଂହାସନରେ। ମହାଲକ୍ଷ୍ମୀଙ୍କ ଆବିର୍ଭାବରେ ସହସା ତାଙ୍କୁ ବୋଧହେଲା ସତେ ଯେପରି ବିଜୁଳି ଚମକି ଉଠିଲା କି? ସେ ପଛକୁ ଚାହିଁଦେବା ମାତ୍ରକେ ଦେଖିଲେ ଯେ ମହାପ୍ରଭୁଙ୍କ ସହିତ ମହାଲକ୍ଷ୍ମୀ ବିରାଜମାନ ହୋଇଛନ୍ତି। ତାଙ୍କ ହସ୍ତରେ ବିବିଧ ବ୍ୟଞ୍ଜନ ଭରା ରତ୍ନଥାଳି। ସେ କିନ୍ତୁ ସ୍ପଷ୍ଟଭାବେ ସେ ରୂପକୁ

ଦର୍ଶନ କରିପାରିଲେ ନାହିଁ। ତାଙ୍କ ଆଖି ଜଳକା ମାରିଲା ପରି ହୋଇଗଲା। ମାଧବ ଦାସ ଜାଣିଗଲେ ଯେ ଦୟାମୟ ପ୍ରଭୁ ଭକ୍ତର ଦୟନୀୟ ସ୍ଥିତି ଦେଖି ଆଉ ସହି ପାରିଲେ ନାହିଁ। ସେଥିପାଇଁ ପ୍ରସାଦ ଥାଳି ଧରି ନିଜେ ବିଜେ କରିଛନ୍ତି ତାଙ୍କ ପତ୍ରକୁଡ଼ିଆକୁ। ପ୍ରଭୁଙ୍କ କୃପା ଅନୁଭବ କରି ସେ ନିଜକୁ ସୌଭାଗ୍ୟଶାଳୀ ମଣିଲେ ସତ, କିନ୍ତୁ ପ୍ରଭୁ ନିଜର ବଡ଼ିମା ହରାଇ ତାଙ୍କ ଭଳି ଜଣେ ତୁଚ୍ଛ ଅଧମ ସେବକର ସେବା କରିବାକୁ ଆସିଛନ୍ତି—ଏ କଥାଟି ତାଙ୍କ ମନରେ ବାରମ୍ବାର ଆଘାତ ଦେଲା। ସେ ଅଧୀର ହୋଇ ପଡ଼ିଲେ।

ମହାଲକ୍ଷ୍ମୀ ସେଇଠି ଭୋଗଥାଳିଟି ରଖିଦେଇ ପ୍ରଭୁଙ୍କ ସହିତ ଫେରି ଆସିଲେ ଶ୍ରୀମନ୍ଦିରକୁ। ଭକ୍ତ ମାଧବ ଦାସ ମହାପ୍ରଭୁଙ୍କର ଦିବ୍ୟ ମହାପ୍ରସାଦ ସେବନ କରି ଭାବବିଭୋର ହୋଇ ଉଠୁଥାନ୍ତି। ରାତି ଅଧିକ ହୋଇ ଯାଇଥାଏ। ପ୍ରଭୁଙ୍କ ରତ୍ନ ଥାଳି କାହାକୁ ଫେରାଇବେ! କୁଟୀର ଆଖପାଖରେ କେହି ଦେଖାଯାଉ ନ ଥାନ୍ତି। ଖଣ୍ଡିଏ ବସ୍ତ୍ରରେ ଥାଳିଟିକୁ ବାନ୍ଧି ମୁଣ୍ଡ ଉପରେ ରଖି ସେ ସେଇଠି ଶୋଇଗଲେ।

ଏଣେ ପ୍ରଭାତ ହେବା ଜାଣି ପଣ୍ଡାମାନେ ଠାକୁରଙ୍କ ସେବା ପାଇଁ ପ୍ରବେଶ ହେଲେ ଶ୍ରୀମନ୍ଦିରରେ। ସବୁ ଦିନ ଠାରୁ ଆଜି ଦିନଟି କେମିତି ଅଲଗା ଅଲଗା ଲାଗୁଥାଏ। ପ୍ରଭୁଙ୍କ ବାସନ-କୁସନ ସବୁ ଏଣେତେଣେ ପଡ଼ିଥାଏ। କି ଆଶ୍ଚର୍ଯ୍ୟ! ଶୟନ ଭୋଗ କୁଆଡ଼େ ଗଲା? ଏଁ! ଭୋଗ ନାହିଁ କି ରତ୍ନଥାଳି ନାହିଁ! କିଏ ନେଲା? ମନ୍ଦିରର ସବୁ କବାଟ ତ ଭଲଭାବେ ବନ୍ଦ ଥିଲା, ପୁଣି କିଏ କେଉଁବାଟେ ଭିତରକୁ ପଶିଲା! କେହି କିଛି ଭାବି ପାରୁ ନ ଥାନ୍ତି। କିନ୍ତୁ ପଛ କଥା ଚିନ୍ତା କରି କି ଲାଭ? ଏବେ ଖୋଜିବାକୁ ହେବ ଯେ ରତ୍ନଥାଳି ଗଲା କୁଆଡ଼େ। ଘଡ଼ିକ ଭିତରେ କଥାଟି ପୁରୀସାରା ଖେଳିଗଲା। ସମସ୍ତେ ଖୋଜାଖୋଜି ଆରମ୍ଭ କରିଦେଲେ। କିନ୍ତୁ କାହାକୁ କେଉଁଠି ମିଳିଲା ନାହିଁ। ପଣ୍ଡାମାନେ ଶେଷକୁ ଯାଇ ପହଞ୍ଚିଲେ ଭକ୍ତ ମାଧବ ଦାସଙ୍କ ପତ୍ରକୁଡ଼ିଆରେ। ଦେଖିଲେ, ମାଧବ ଦାସ ଘୋର ନିଦ୍ରାରେ ଶୋଇଛନ୍ତି। ତାଙ୍କ ମୁଣ୍ଡ ପାଖରେ ଖଣ୍ଡିଏ ବସ୍ତ୍ରରେ ବନ୍ଧା ହୋଇଛି ପ୍ରଭୁଙ୍କ ରତ୍ନଥାଳି। ଭାବିଲେ, ଏଇ ହେଉଛି ଅସଲ ଚୋର। ଜାଣିଶୁଣି ଆମକୁ ଦେଖି ଡେଙ୍ଗ ଶୋଇଛି ନିଶ୍ଚୟ।

ନ ବୁଝି ନ ବିଚାରି ପଣ୍ଡାମାନେ ଦଉଡ଼ିରେ ତାଙ୍କୁ ବାନ୍ଧି ପିଟି ପକାଇଲେ ବେତ ବାଡ଼ିରେ। ମାଧବ ଦାସ କିଛି ବୁଝି ପାରୁ ନ ଥାନ୍ତି ଯେ ପ୍ରଭୁଙ୍କର ଏ କି ଲୀଳା! ରାତିରେ ସେ ମହାପ୍ରସାଦ ଖୁଆଇଲେ ଏବଂ ସକାଳୁ ସକାଳୁ ମାଡ଼

ଖୁଆଉଛନ୍ତି । ହେଉ, ସବୁ କିଛି ତାଙ୍କରି ଖେଳ । ଏହା ଭାବି ସେ ନିର୍ବିକାର ଚିତ୍ତରେ ସବୁ ସହିଗଲେ । କିନ୍ତୁ ମହାପ୍ରଭୁ ଜଗନ୍ନାଥ ଭକ୍ତର କଷ୍ଟ ସହିବେ ବା କିପରି? ସେ ଭକ୍ତଙ୍କ ପିଠିରେ ବାଜୁଥିବା ସବୁ ବେତମାଡ଼ ନିଜ ଉପରକୁ ନେଇଗଲେ ।

ଜଗନ୍ନାଥ ମହାପ୍ରଭୁ ଏଭଳି ଲୀଳା କାହିଁକି କଲେ? ସେ ଚାହିଁଥିଲେ କ'ଣ ପଣ୍ଡାମାନଙ୍କୁ ଅନ୍ୟ କୌଣସି ଉପାୟରେ ବୁଝାଇ ପାରି ନ ଥାନ୍ତେ? ଏହା ପଛରେ ଦୁଇଟି କାରଣ ରହିଛି । ପ୍ରଥମତଃ ଭଗବାନ ଭାବିଲେ ଯେ ଏମିତି ସେ କେତେଦିନ ଭକ୍ତ କୁଟୀରରେ ଅଧା ରାତିରେ ପ୍ରସାଦ ପହଞ୍ଚାଇବେ, କୌଣସି ସ୍ଥାୟୀ ବ୍ୟବସ୍ଥା କରିବା ପାଇଁ ଏ ଘଟଣା ଦ୍ୱାରା ଭକ୍ତର ମହିମା ବିସ୍ତାର କରିବା ଦରକାର । ଦ୍ୱିତୀୟତଃ ଏହା ତାଙ୍କର ଭକ୍ତବତ୍ସଳତା । ବାତ୍ସଲ୍ୟମୟୀ ମାଆ ଯେପରି ସନ୍ତାନ ଉପରେ ପଡୁଥିବା ବିପତ୍ତିକୁ ନିଜେ ସହିଯାଇ ତାକୁ ରକ୍ଷା କରେ, ସେହିପରି ଭଗବାନ ଭକ୍ତ ଉପରେ ପଡୁଥିବା ବେତମାଡ଼ ନିଜ ପିଠିରେ ସହିଗଲେ ।

ଏଣେ ଶ୍ରୀମନ୍ଦିରରେ ମଙ୍ଗଳ ଆଳତି ପରେ ପଣ୍ଡାମାନେ ପ୍ରଭୁଙ୍କୁ ସ୍ନାନାଦି କଲାବେଳେ ସେ ବାରମ୍ବାର କଷ୍ଟରେ ଚିତ୍କାର କରୁଥାନ୍ତି । ପ୍ରଭୁଙ୍କୁ ବ୍ୟାକୁଳ ଦେଖି ପୂଜାରୀ ପଚାରିଲେ—ପ୍ରଭୁ! ଆଜି ଆପଣ ଏତେ ବ୍ୟଥିତ କାହିଁକି? କି କଷ୍ଟ ହୋଇଛି ଆପଣଙ୍କୁ? ଭଗବାନ ହାତଠାରି ପିଠିରେ ପଡ଼ିଥିବା ବେତବାଡ଼ିର ରକ୍ତାକ୍ତ ନୋଳା ଦେଖାଇ କହିଲେ—"ତୁମେମାନେ ନିଜେ ପିଟିଲ, ଆଉ ପଚାରୁଛ ଯେ କି କଷ୍ଟ! ମୁଁ ମୋ ଭକ୍ତକୁ ରତ୍ନଥାଳିରେ ପ୍ରସାଦ ଦେଇଥିଲି, ଏଥିରେ ତୁମର ଆପତ୍ତି କ'ଣ? ରତ୍ନଥାଳି ମୋର ଏବଂ ଭକ୍ତ ବି ମୋର । ମୋର ସବୁ ସମ୍ପତ୍ତିରେ ତା'ର ସମ୍ପୂର୍ଣ୍ଣ ଅଧିକାର ରହିଛି । ତୁମେ ତାକୁ ପିଟିବାକୁ କିଏ?" ଏଥର ପୂଜାରୀମାନେ ବୁଝି ପାରିଲେ ଯେ ଆଜି ଭକ୍ତ ମାଧବ ଦାସଙ୍କ ପିଠିରେ ବାଜିଥିବା ବେତମାଡ଼ ଭଗବାନ ନିଜ ପିଠିରେ ବହନ କରିଛନ୍ତି । ସେମାନେ ନିଜର ଅପରାଧ ପାଇଁ ପ୍ରଭୁଙ୍କ ଚରଣରେ ବାରମ୍ବାର କ୍ଷମା ପ୍ରାର୍ଥନା କରି କହିଲେ—ପ୍ରଭୁ! ଆମେ ଅବୋଧ, ତୁମ ଭକ୍ତକୁ ଚିହ୍ନି ପାରିଲୁ ନାହିଁ । ଏଇଥର ଆମକୁ କ୍ଷମା କରିଦିଅ । ଆଉ ଏଭଳି ଭୁଲ୍ ହେବ ନାହିଁ ପ୍ରଭୁ!

ଭଗବାନ କହିଲେ—"ମୁଁ କ୍ଷମା କରିବାକୁ କିଏ? ତୁମେ ଯାହାର ଅପରାଧ କରିଛ, ତା' ପାଦତଳେ ପଡ଼ି କ୍ଷମାଭିକ୍ଷା କର । ମୁଁ ସର୍ବଦା ଭକ୍ତର ଅଧୀନ । ସତୀ ସାଧ୍ୱୀ ପତିବ୍ରତା ସ୍ତ୍ରୀ ଯେପରି ଭକ୍ତି ବଳରେ ସ୍ୱାମୀର ମନକୁ ଜିଣିଯାଏ, ସେହିପରି ମୋର ଅନନ୍ୟ ଭକ୍ତ ମୋ ମନ ଉପରେ ସମ୍ପୂର୍ଣ୍ଣ ଅଧିକାର ପାଇଥାଏ । ଏବେ

ତୁମେ ଭକ୍ତ ମାଧବ ଦାସଙ୍କୁ କ୍ଷମା ମାଗି ସସମ୍ମାନେ ମୋ ନିକଟକୁ ଘେନି ଆସ।''

ସମସ୍ତେ ନିଜର ଅପରାଧ ପାଇଁ ଭକ୍ତଙ୍କ ପାଦତଳେ କ୍ଷମାଭିକ୍ଷା କଲେ। ଭକ୍ତ ମାଧବ ଦାସ ନିଜର ସାଧୁଗୁଣରେ ସେମାନଙ୍କୁ ପ୍ରବୋଧନା ଦେଇ କହିଲେ— ''ତୁମେମାନେ ଆଦୌ ମନସ୍ତାପ କର ନାହିଁ। ଏଥିରେ ତୁମର କିଛି ଦୋଷ ନାହିଁ। ସବୁ ସେହି ଲୀଳାମୟଙ୍କର ଲୀଳା। ଚାଲ ଆମେ ସମସ୍ତେ ପ୍ରଭୁଙ୍କ ମନ୍ଦିରରେ ଆଜି ନାମ ସଂକୀର୍ତ୍ତନ କରିବା।'' କୀର୍ତ୍ତନ ଆରମ୍ଭ ହୋଇଗଲା। ଜଗମୋହନରେ ଭକ୍ତ ମାଧବ ଦାସଙ୍କ ସହିତ ପଣ୍ଡାମାନେ ଆନନ୍ଦରେ ନାମ-ସଂକୀର୍ତ୍ତନ କରି ନୃତ୍ୟ କରୁଥିବାର ଦେଖି ଭଗବାନଙ୍କ ମନ ପ୍ରଫୁଲ୍ଲିତ ହୋଇ ଉଠିଲା। କ୍ଷଣକ ମଧ୍ୟରେ ସେ ସମସ୍ତଙ୍କ ହୃଦୟରେ ଭକ୍ତିରସ ମନ୍ଦାକିନୀ ପ୍ରବାହିତ କରି ସମସ୍ତଙ୍କୁ ସେଥିରେ ପ୍ଲାବନ କରିଦେଲେ।

ମାଧବ ଦାସଙ୍କ ଜୟ ଜୟକାରରେ ଶ୍ରୀକ୍ଷେତ୍ର ପୁରୀ ଗୁଞ୍ଜାୟମାନ ହେଉଥାଏ। ଯେଉଁଠି ଯାହା ମୁହଁରୁ ଶୁଣିବ ସେଇ ଗୋଟିଏ କଥା। ସମସ୍ତେ କୁହାକୁହି ହେଉଥାନ୍ତି ''ଧନ୍ୟ ସେହି ଭକ୍ତ ମାଧବ ଦାସ, ଯାହାଙ୍କ ପାଇଁ ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ୱୟଂ ସମୁଦ୍ରକୂଳକୁ ରତ୍ନଥାଳିରେ ପ୍ରସାଦ ନେଇ ଯାଇଥିଲେ!'' ଲୋକଙ୍କ ଦୃଷ୍ଟିରେ ଏହା ପ୍ରଶଂସା ହୋଇଥିଲେହେଁ ମାଧବ ଦାସଙ୍କୁ ଲାଗୁଥାଏ ଭକ୍ତିରେ କଣ୍ଟକ ଭଳି। ସେ ଜନମୁଖରୁ ନିଜର ପ୍ରଶଂସା ଶୁଣି ଲଜ୍ଜା ବୋଧ କରିବା ସହିତ ମନେ ମନେ ନିଜକୁ ଧିକ୍କାର କରୁଥାନ୍ତି। କହୁଥାନ୍ତି—''ମୋ ଭଳି ତୁଚ୍ଛ ସେବକକୁ ଧିକ୍। ହାୟ! ମୁଁ ପ୍ରଭୁଙ୍କୁ କେବେହେଲେ ଟିକିଏ ସୁଖ ତ ଦେଇ ପାରିଲି ନାହିଁ, ଓଲଟା ତାଙ୍କୁ ସବୁବେଳେ କଷ୍ଟ ଦେଲି। ମୋ ପାଇଁ ମୋ ପ୍ରଭୁ ବେତମାଡ଼ ସହିଲେ। କେତେ ସୁକୋମଳ ତାଙ୍କର ଶ୍ରୀଅଙ୍ଗ! ଭକ୍ତଜନ ଯେଉଁ ଲାବଣ୍ୟମୟ ଶ୍ରୀଅଙ୍ଗରେ ପୁଷ୍ପ, ଚନ୍ଦନ ଅର୍ପଣ କରନ୍ତି, ମୁଁ ତାଙ୍କୁ ମାଡ଼ ଖୁଆଇ ସଂସାରରେ ଭକ୍ତ ବୋଲାଉଛି! ଏହାଠାରୁ ବଳି ଦୁଃଖର କଥା ଆଉ କଣ ବା ହୋଇପାରେ? ଏହା ମୋ ପାଇଁ ସମ୍ମାନ ନୁହେଁ, ବରଂ ଭକ୍ତିରେ ଘୋର କଳଙ୍କ।''

\+ \+ \+

ମନ୍ଦିରରେ ଠାକୁରଙ୍କ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ କରି ଭକ୍ତ ମାଧବ ଏତେ ଭାବବିହ୍ୱଳିତ ହୋଇଯାଆନ୍ତି ଯେ ତାଙ୍କର ବାହ୍ୟଜ୍ଞାନ ରହେ ନାହିଁ। ଲାଗୁଥାଏ ଅପଲକ ନେତ୍ରରେ ପ୍ରଭୁଙ୍କୁ ସେ ପିଇଯିବେ କି ସତେ? ଚକୋର ଚନ୍ଦ୍ରକୁ ଚାହିଁବା ପରି ସେ ପ୍ରଭୁଙ୍କ ଲାବଣ୍ୟ ଅଙ୍ଗକାନ୍ତିକୁ ଏକଲୟରେ ଦର୍ଶନ କରନ୍ତି। କେତେବେଳେ ଯେ ରାତି

ହୋଇଯାଏ ତାଙ୍କୁ ଜଣା ପଡ଼େ ନାହିଁ। ବେଳେ ବେଳେ ରାତ୍ରିରେ ମଧ୍ୟ ମନ୍ଦିର ଭିତରେ ସେ ଶୋଇ ପଡ଼ନ୍ତି। କିନ୍ତୁ ଏ କଥା ଅନ୍ୟ କାହାକୁ ଜଣାପଡ଼େ ନାହିଁ। ଜାଣିଥାନ୍ତି କେବଳ ଭଗବାନ ଓ ସେ ନିଜେ। ପ୍ରଭୁଙ୍କୁ ଯେତେ ଦର୍ଶନ କଲେ ସୁଦ୍ଧା ଅତୃପ୍ତ ପ୍ରାଣରେ ପୁନଃ ପୁନଃ ଦର୍ଶନର ଅଭିଳାଷ ଜାଗ୍ରତ ହେଉଥାଏ। ତା' ଛଡ଼ା ଦିନ ବେଳେ ଭକ୍ତମାନଙ୍କର ଭିଡ଼ ଲାଗିଥିବାରୁ ନିରୋଳାରେ ପ୍ରଭୁଙ୍କ ସହିତ ଦି'ପଦ କଥା ହେବାର ଅବସର ମିଳେ ନାହିଁ। ସେଇଥିପାଇଁ ସେ ରାତିରେ ମନ୍ଦିରରେ ରହିଯାଆନ୍ତି। ଯଦିବା ପ୍ରଭୁଙ୍କ ଶୟନ ଆଳତି ପରେ ପଟ ପହଡ଼ ପଡ଼ିଗଲେ ପୂଜାରୀମାନେ କାହାକୁ ମନ୍ଦିରରେ ରଖାଇ ଦିଅନ୍ତି ନାହିଁ, ତଥାପି ଭକ୍ତ ମାଧବ ଦାସଙ୍କୁ କେହି କିଛି କହନ୍ତି ନାହିଁ। ସେ ସେମିତି ବସି ଥାଆନ୍ତି। ଏକେ ତ ପ୍ରଭୁଙ୍କ ଇଚ୍ଛା ବିନା କେହି ତାଙ୍କୁ ଦେଖିପାରନ୍ତି ନାହିଁ। ତା' ଛଡ଼ା ଭଗବାନ ଯାହାକୁ ରଖିବା ପାଇଁ ଚାହିଁବେ, ତାକୁ ବାହାର କରିବାକୁ କାହାର ବା ସାମର୍ଥ୍ୟ ଅଛି?

ସମସ୍ତେ ଚାଲିଯିବା ପରେ ଭକ୍ତ ଓ ଭଗବାନ ପରସ୍ପରକୁ ନିଜର ମନ କଥା ଖୋଲି କହନ୍ତି। ରାତି ସାରା ସୁଖଦୁଃଖ ଚାଲେ ଦୁହିଁଙ୍କ ମଧ୍ୟରେ। ଥରେ ଶୀତ ଦିନେ ପ୍ରଭୁ ଜଗନ୍ନାଥ ମାଧବ ଦାସଙ୍କୁ ମନ୍ଦିରରେ ରହିଯିବାକୁ କହିଲେ। ପ୍ରବଳ ଶୀତ ପଡ଼ିଥାଏ। ଯେତିକି ପିନ୍ଧିଛନ୍ତି ସେତିକି; ଘୋଡ଼େଇ ହେବାକୁ କିଛି ନ ଥାଏ ତାଙ୍କ ପାଖରେ। ଶୀତରେ ବରଡ଼ା ପତ୍ର ଭଳି ଥରୁଥାନ୍ତି ସେ। ଭକ୍ତବତ୍ସଳ ଭଗବାନ ଭକ୍ତକୁ ଶୀତ ଲାଗିବା ଦେଖି ତାଙ୍କ କମ୍ବଳଟିକୁ ଘୋଡ଼େଇ ଦେଲେ ଭକ୍ତ ଦେହରେ। ଥଣ୍ଡା ଦିନେ କମ୍ବଳର ଉଷ୍ଣତା ପାଇ ଭକ୍ତ ମାଧବ ଦାସ ନିଘୋଡ଼ ନିଦରେ ଶୋଇ ପଡ଼ିଛନ୍ତି। ରାତି ସାରା ଠାକୁରଙ୍କ ସହିତ ଗପସପ ହୋଇଥିବାରୁ ପାହାନ୍ତିଆ ପହରକୁ ଆଉ ତାଙ୍କର ନିଦ ଭାଙ୍ଗିଲା ନାହିଁ। ପ୍ରଭାତ ବେଳାରେ ଭକ୍ତଜନ ଆସି ଦେଖନ୍ତି ତ ମନ୍ଦିର ଭିତରେ ପ୍ରଭୁଙ୍କ କମ୍ବଳ ଘୋଡ଼େଇ ହୋଇ ନିଶ୍ଚିନ୍ତରେ ଘୁଙ୍ଗୁଡ଼ି ମାରୁଛନ୍ତି ମାଧବ ଦାସ। କିନ୍ତୁ ତାଙ୍କୁ କେହି କିଛି କହିଲେ ନାହିଁ। ପୂର୍ବରୁ ଅନେକ ଥର ସେମାନେ ତାଙ୍କ କରାମତି ଦେଖି ସାରିଛନ୍ତି, ତେଣୁ ସମସ୍ତେ ଭାବିଲେ ପ୍ରଭୁ ନିଶ୍ଚୟ କୌଣସି ଲୀଳା କରିଥିବେ! ଏହିପରି ଭକ୍ତ ଓ ଭଗବାନଙ୍କର ଅନ୍ତରଙ୍ଗ ଲୀଳା ମଧ୍ୟରେ ଅନେକ ଦିନ ବିତିଗଲା।

ଦିନକର କଥା। ମାଧବ ଦାସ ସମୁଦ୍ରକୂଳରେ ଅଚେତ ପରି ପଡ଼ିଥାନ୍ତି! ରାତି ସାରା ପତଳା ଝାଡ଼ା ହେବାରୁ ଆଉ ଉଠିବାକୁ ତାଙ୍କ ଦେହରେ ଶକ୍ତି ନ ଥାଏ। ପାଟିରେ ପାଣି ଟିକିଏ ଦେବାକୁ ମଧ୍ୟ ପାଖରେ କେହି ନ ଥାନ୍ତି। ଦୟାମୟ ପ୍ରଭୁ

ଭକ୍ତର ଦୁଃଖ ଆଉ ସହି ପାରିଲେ ନାହିଁ। ସେ ସହସା ଉପସ୍ଥିତ ହେଲେ ଭକ୍ତର ପର୍ଣ୍ଣକୁଟୀରରେ। ଭକ୍ତର ମନ ଜାଣି ସବୁ ପ୍ରକାର ସେବା କରୁଥାନ୍ତି ମହାବାହୁ। ଶୋଷ ଲାଗିଲେ ପାଣି ପିଆଉଥାଆନ୍ତି ଏବଂ ହାତ ଧରି ପାଇଖାନା କରାଉଥାଆନ୍ତି। ଝାଡ଼ା ଲୁଗା ଧୋଇଦେଇ ନୂଆ ଲୁଗା ପିନ୍ଧାଇ ଦେଉଥାନ୍ତି। ନାନା ପ୍ରକାର ପଥ୍ୟ ଦେଇ ରୋଗ ଦୂର କରିବାକୁ ଚେଷ୍ଟା କରୁଥାନ୍ତି। ପ୍ରଭୁଙ୍କ ଦର୍ଶନ ଓ ଅଙ୍ଗସ୍ପର୍ଶରେ ଭକ୍ତର ରୋମ ରୋମରେ ଶିହରଣ ଖେଳି ଯାଉଥାଏ। ସେ ଜାଣି ପାରିଲେ ଯେ ମହାପ୍ରଭୁ ରତ୍ନ ସିଂହାସନ ଛାଡ଼ି ଆଜି ତାଙ୍କ ସେବାରେ ଉପସ୍ଥିତ। ପ୍ରଭୁଙ୍କର ଯୋଗୀମନମୋହିନୀ ରୂପକୁ ଦର୍ଶନ କରି ସେ ଆତ୍ମହରା ହୋଇଗଲେ। କହିଲେ— "ଦୟାମୟ! ମୋ ଭଳି ଅଧମ ପାଇଁ ଏଭଳି ତୁଚ୍ଛ ସେବା କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହେଲେ ନାହିଁ ଆପଣ! ନିଜର ଈଶତ୍ୱ ଭୁଲି ଏତେ ନୀଚ ସେବା କରିବାକୁ ଆଗଭର ହୋଇ ଆସିଲେ! ମୁଁ ଜୀବନରେ କି ସୁଖ ଦେଇଛି ଆପଣଙ୍କୁ? ଧିକ୍କାର ମୋର ଏ ଅଭାଗା ପ୍ରାଣକୁ। ଏଭଳି ପ୍ରାଣ ରଖି ଲାଭ କ'ଣ?" ଭଗବାନ କହିଲେ—"ମାଧବ! ତୁମେ ଏତେ ମନସ୍ତାପ କରୁଛ କାହିଁକି? ଭକ୍ତର ସେବା କରିବାରେ ମୋତେ ଭାରି ଆନନ୍ଦ ମିଳେ। ମୋ ଭକ୍ତ ଏମିତି ଅସହାୟ ହୋଇ ପଡ଼ିଥିବ, ଆଉ ମୁଁ ମନ୍ଦିରରେ ସୁଖରେ ଦିନ କାଟୁଥିବି? ଏହା କ'ଣ ଶୋଭା ପାଇବ ମୋତେ? ଲୋକେ କହିବେ ଯେ ଦେଖ, ବିଚ୍ରା ସାଧୁ ହୋଇ ଜୀବନ ସାରା ପ୍ରଭୁଙ୍କୁ ଭଜିଲା, ଅଥଚ ଦୁଃଖ ବେଳେ ପାଣି ମୁନ୍ଦାଏ ଦେବାକୁ କେହି ନାହିଁ। ଏ କଥା କଣ ମୋତେ ବାଧିବ ନାହିଁ? ମୋର ନିର୍ମଳ କୀର୍ତ୍ତିରେ ଏହା କ'ଣ କଳଙ୍କ ହେବ ନାହିଁ? ମୋର ପ୍ରତିଜ୍ଞା ଯେ ଭକ୍ତ ମୋତେ ଯେଭଳି ଭଲପାଏ, ମୁଁ ମଧ୍ୟ ତାକୁ ସେଭଳି ଭଲପାଏ। ଆଚ୍ଛା କୁହ, ମୁଁ ଆସିବାରୁ ତୁମକୁ କଷ୍ଟ ହେଲା କି?"

"ନା, ପ୍ରଭୁ! ତୁମ ଦର୍ଶନ ଠାରୁ ବଳି ମୋ ଜୀବନରେ ଆଉ ସୁଖଦ ଘଟଣା କଣ ବା ହୋଇପାରେ! ତୁମର ଦର୍ଶନ ଓ ସ୍ପର୍ଶ ପାଇ ତ ମୁଁ ଧନ୍ୟ ହେଲି; କିନ୍ତୁ ତୁମେ ଯେ ଏଭଳି ହୀନ ସେବା କରିବ, ଏ କଥା ମୋତେ ଭଲ ଲାଗୁ ନାହିଁ।"— ଅଧୀର ହୋଇ କହି ଉଠିଲେ ମାଧବ ଦାସ।

"ଆଉ କିଛି ଉପାୟ ନାହିଁ ମାଧବ! ତୁମକୁ ଏଭଳି ଅସହାୟ ଅବସ୍ଥାରେ ଛାଡ଼ି ମୁଁ ସୁଖରେ ରହି ପାରିବି ନାହିଁ ଶ୍ରୀମନ୍ଦିରରେ।"—କହିଲେ ମହାପ୍ରଭୁ।

—"ଉପାୟ କାହିଁକି ନାହିଁ ପ୍ରଭୁ! ତୁମେ ତ ଈଶ୍ୱର! ଚାହିଁଲେ ସବୁ କିଛି କରି ପାରିବ। ଏଇ ଛାର ରୋଗ କେତେ, ତୁମେ ଚାହିଁଲେ କ୍ଷଣକ ମଧ୍ୟରେ ସମସ୍ତ

ପ୍ରାରବ୍ଧ କର୍ମ-ବନ୍ଧନ ମଧ୍ୟ କାଟି ଦେଇ ପାରିବା।''

—''କିନ୍ତୁ ମୁଁ ସେ ଭଳି କରିବାକୁ ଚାହୁଁ ନ ଥିଲି ମାଧବ! ସେଭଳି କରି ଦେଇଥିଲେ ମୋତେ ତୁମ ସେବାର ସୁଯୋଗ ମିଳିଥାନ୍ତା କି? ତା'ଛଡ଼ା ତୁମର ପ୍ରାରବ୍ଧ ଅବଶେଷ ରହିବା ମଧ୍ୟ ଭଲ ନୁହେଁ। ମୁଁ ଚାହୁଁଥିଲି ଏମିତି ସବୁ କର୍ମ ଭୋଗ କରାଇ ଶୀଘ୍ର ମୋ ପାଖକୁ ଡାକି ଆଣିବି ତୁମକୁ। ଏଣିକି ତୁମର ସବୁ କର୍ମବନ୍ଧନ କଟିଗଲା।''

ଭକ୍ତବତ୍ସଳ ଭଗବାନ ଏତିକି କହିବା ମାତ୍ରେ ମାଧବ ଦାସଙ୍କର ସମସ୍ତ ରୋଗ ଅପସରି ଗଲା। ପ୍ରଥମତଃ ଲୀଳାମୟଙ୍କ କୃପାରୁ ସକଳ ପ୍ରାରବ୍ଧ ଭୋଗ ସମାପ୍ତ ହୋଇଗଲା ଏବଂ ପ୍ରଭୁଙ୍କ ପରମାନନ୍ଦମୟ ବିଗ୍ରହ ଦର୍ଶନ ଓ ସ୍ପର୍ଶ ଲାଭ କରି ସେ ସବୁ ଦୁଃଖ ଭୁଲିଗଲେ।

ସ୍ୱପୁରୁଷାର୍ଥ ଓ ପୁଣ୍ୟ ବଳରେ ମିଳୁଥିବା ଯଶକୀର୍ତ୍ତିର ଏକ ନିର୍ଦ୍ଦିଷ୍ଟ ସୀମା ରହିଥାଏ। ପୁଣ୍ୟ କ୍ଷୀଣ ହୋଇଗଲେ କୀର୍ତ୍ତି ମଧ୍ୟ ନଷ୍ଟ ହୋଇଯାଏ। କିନ୍ତୁ ପ୍ରଭୁଙ୍କ କରୁଣାରୁ ମିଳୁଥିବା କୀର୍ତ୍ତି କଦାପି ଧୂଳିସାତ୍ ହୁଏ ନାହିଁ। ଭଗବାନ ଯାହାର ଯଶ ପତାକା ନିଜ ହାତରେ ଉଡ଼ାଇବାକୁ ଚାହାନ୍ତି, ତାହାକୁ ଭାଙ୍ଗି ଦେବାର ଶକ୍ତି କାହାର ବା ହୋଇପାରେ! କିନ୍ତୁ ଏ ଯଶ-କୀର୍ତ୍ତି ଛେଳି ଭଳି ଭକ୍ତିରୂପୀ ଲତାକୁ ଖାଇଯାଏ। ଏହା ଭକ୍ତିରେ କଳଙ୍କ ତୁଲ୍ୟ।

ଭକ୍ତ ମାଧବ ଦାସଙ୍କୁ ଏଭଳି କୀର୍ତ୍ତି ବିସ୍ତାର ଦେହରେ କଣ୍ଟା ଫୋଡ଼ିହେବା ଭଳି ଲାଗୁଥାଏ। ସେଥିରୁ ମୁକ୍ତି ପାଇବାର ସେ ଏକ ସୁନ୍ଦର ଉପାୟ ଖୋଜି ବାହାର କଲେ। ଭାବିଲେ—ଯଦି ଘର ଘର ବୁଲି ସେ ଭିକ୍ଷା ମାଗନ୍ତି, ତେବେ ଲୋକେ ଧୀରେ ଧୀରେ ତାଙ୍କୁ ଅସମ୍ମାନ କରିବେ। ଠିକ୍ ସେଇଆ ହେଲା। ଆଗରୁ ଲୋକମାନେ ନାନା ପ୍ରକାର ଚମତ୍କାର ଦେଖି ମାଧବ ଦାସଙ୍କ ପର୍ଣ୍ଣକୁଟୀରରେ ବିବିଧ ଫଳମୂଳ, ପିଠାପଣା ଆଦି ଦ୍ରବ୍ୟ ଗଦା କରୁଥିଲେ। କିନ୍ତୁ ଭିକ୍ଷା ମାଗିବା ପରେ ଲୋକଙ୍କ ନିୟମସେବାରେ କିଛି ନ୍ୟୂନତା ଦେଖାଗଲା। ଲୋକେ କୁହାକୁହି ହେଲେ—''ବାବାକୁ ବୋଧହୁଏ ଆଉ ଖାଇବାକୁ ମିଳୁନି। ଲାଗୁଛି ସିଦ୍ଧିର ପ୍ରଭାବ ଧୀରେ ଧୀରେ କମିଗଲାଣି। ନହେଲେ ଏମିତି ଘର ଘର ବୁଲି ଭିକ ମାଗନ୍ତା କାହିଁକି?'' ଲୋକମୁଖରୁ ଏଭଳି ଅପକୀର୍ତ୍ତି ଶୁଣି ମାଧବ ଦାସ ମନେ ମନେ ଭାରି ଆନନ୍ଦିତ ହେଉଥାନ୍ତି।

ଭିକ୍ଷା କରିବାକୁ ଯିବାବେଳେ ସେ ପ୍ରଥମେ ଜଣେ ବୁଢ଼ୀ ଲୋକର ଘରୁ

ମାଗିବା ଆରମ୍ଭ କରନ୍ତି। ସେହି ଘରଟି ଥାଏ ଭକ୍ତଙ୍କ ପାଇଁ ପ୍ରଥମ ଘର। ବୁଢ଼ୀଟି କିନ୍ତୁ ପ୍ରଚଣ୍ଡ ରାଗୀ ଲୋକ। କଥା କଥାକେ ନିଆଁଝୁଲ ହୋଇଯାଏ। ଦୁଆରକୁ କୌଣସି ଭିକାରି ଆସିଲେ ଦି'ଗ୍ରି ପଦ କଟୁ ବଚନ ନ କହିବା ପର୍ଯ୍ୟନ୍ତ ଛାଡ଼େ ନାହିଁ। ମାଧବ ଦାସ ପ୍ରତିଦିନ ତା' ଦୁଆରକୁ ଯାଇ 'ଜୟ ଜଗଦୀଶ' କହି ଡାକନ୍ତି। ଡାକରା ଶୁଣିବା କ୍ଷଣି ବୁଢ଼ୀ ଘର ଭିତରୁ ଅନେକ କଟୁ କଥା କହି କହି ବାହାରି ଆସେ ଦୁଆରକୁ—ଏ ବାବାଟାର କିଛି କାମ ନାହିଁ ନା କ'ଣ ମ? ସବୁ ଦିନ ସକାଳୁ ସକାଳୁ ଅମଳ କରି ରଖିଥିବା ପରି ବାବୁଙ୍କ ଭଳି ପହଞ୍ଚି ଯାଉଛି। ହଇରେ! ଏତେ ବଡ଼ ଗଣ୍ଡିଟାଏ ସଞ୍ଚିଛୁ, କାମ କରି ଖାଇପାରୁ ନାହୁଁ। ଛି ଛି; ***'ଅକର୍ମା ସାଧୁ ଭୂଇଁକୁ ବୋଝ।'*** ଏମିତି କେତେ କଣ ପ୍ରଳାପ କରିଯାଏ ସେ। କିନ୍ତୁ ଭକ୍ତ ମାଧବ ଦାସ ଭଲମନ୍ଦ କିଛି ନ କହି ଫେରି ଯାଆନ୍ତି।

ବୁଢ଼ୀ ଲୋକଟି ଦୁଇ ତିନି ଦିନ ପର୍ଯ୍ୟନ୍ତ ଏମିତି କଟୁ କଥା କହି ଘରୁ ତଡ଼ିଦେଲା ବାବାଙ୍କୁ। କିନ୍ତୁ ଚତୁର୍ଥ ଦିନ ସେ ଆଉ ସହି ପାରିଲା ନାହିଁ। 'ଜୟ ଜଗଦୀଶ' ଡାକରା ଶୁଣିବା କ୍ଷଣି ଘରୁ ତମତମ ହୋଇ ବାହାରି ଆସି ହାତରେ ଧରିଥିବା ଚୁଲି ଲିପା ଲୁଣ୍ଡାକନାଟିକୁ ବିରକ୍ତ ହୋଇ ତାଙ୍କ ଉପରକୁ ଫୋପାଡ଼ି ଦେଲା। ଭକ୍ତ ଭାବିଲେ—ବାଃ! ଯାହାହେଉ, ଏତେ ଦିନ ପରେ ବୁଢ଼ୀର କିଛି ଦେବା ପାଇଁ ତ ମନ ବଳିଲା! ଆଜି ଲୁଣ୍ଡାକନା ଦେଇଛି, କାଲି ଡାଲି-ଚାଉଳ ଦେବ। ଏଭଳି ଭାବି ସେ ଆନନ୍ଦରେ ସେହି ଲୁଣ୍ଡାକନାଟିକୁ ନେଇ କୁଟୀରରେ ପହଞ୍ଚିଲେ। ପ୍ରଥମେ ତାହାକୁ ଧୋଇଧାଇ ସଫା କରିଦେଲେ। ତା'ପରେ କନାଟିକୁ ଟିକି ଟିକି କରି ସଳିତା ତିଆରି କଲେ। ସନ୍ଧ୍ୟା ଆଳତି ବେଳକୁ ପ୍ରଭୁଙ୍କ ଆଗରେ ସେ ଯେତେବେଳେ ଦୀପ ଜଳାଇଛନ୍ତି, ବୁଢ଼ୀ ହୃଦୟରେ ଥିବା ସବୁ ଅଜ୍ଞାନ ଦୂରେଇ ଗଲା। ସତେ ଯେପରି ଭକ୍ତ ମାଧବ ଦାସ ଦୀପଦାନ ମାଧ୍ୟମରେ ବୁଢ଼ୀ ମାଆ ପାଇଁ ପ୍ରଭୁଙ୍କ ନିକଟରେ ଗୁହାରି ଜଣାଇ ତା'ର ଆତ୍ମକଲ୍ୟାଣ କରିଦେଲେ। ବୁଢ଼ୀ ଏବେ ତା'ର ଭୁଲ୍ ବୁଝି ପାରିଲା। ପରଦିନ ଭକ୍ତ ତା' ଦୁଆରକୁ ଭିକ୍ଷା ପାଇଁ ଯିବାବେଳେ ସେ ନିଜର ଅପରାଧ ପାଇଁ ତାଙ୍କ ଚରଣରେ କ୍ଷମା ମାଗିଲା ଏବଂ ଘରକୁ ଡାକିନେଇ ଆଦରରେ ବିବିଧ ବ୍ୟଞ୍ଜନ ଖାଇବାକୁ ଦେଲା। ଭକ୍ତ ଜାଣିଗଲେ ଯେ ଏସବୁ ପ୍ରଭୁଙ୍କ କରାମତି। ତାଙ୍କ କୃପାରୁ ଆଜି ବୁଢୀ ମାଆର ହୃଦୟ ବଦଳିଯାଇଛି!

ଏକ ଅଦ୍ଭୁତ ଘଟଣା। ଥରେ ଜଣେ ଦିଗ୍‌ବିଜୟୀ ପଣ୍ଡିତ ଶାସ୍ତ୍ରାର୍ଥରେ ଅନେକ

ବିଦ୍ୱାନଙ୍କୁ ପରାସ୍ତ କରି କାଶୀରେ ପହଞ୍ଚିଲେ। କାଶୀ ପଣ୍ଡିତମାନେ ପଚ୍ଚାରିଲେ— ମହାଶୟେ! ଆପଣ ନୀଳାଚଳ ଧାମ ପୁରୀରେ ମାଧବ ଦାସଙ୍କୁ ଭେଟିଛନ୍ତି କି ନାହିଁ? ସେ କହିଲେ—ଏବେ ତ ମୁଁ ପୁରୀ ଯାଇ ନାହିଁ। ପଣ୍ଡିମାନେ କହିଲେ— ପ୍ରଥମେ ତାଙ୍କ ସଙ୍ଗେ ଶାସ୍ତ୍ରାର୍ଥ କରି ତା' ପରେ କାଶୀ ଆସିବେ। କାଶୀରେ ଶେଷ ନିଷ୍ପତ୍ତି କରାଯିବ। ଅତି ଉତ୍ସାହର ସହ ଦିଗ୍‌ବିଜୟୀ ପଣ୍ଡିତ ବାହାରିଲେ ଶ୍ରୀକ୍ଷେତ୍ର ପୁରୀ ଅଭିମୁଖେ। ପୁରୀରେ ପହଞ୍ଚି ସେ ସବୁ ପଣ୍ଡିତଙ୍କୁ ଶାସ୍ତ୍ରାର୍ଥ ପାଇଁ ଆହ୍ୱାନ କରିବା ସହିତ ମାଧବ ଦାସଙ୍କ ଠିକଣା ପଚ୍ଚାରିଲେ। ପଣ୍ଡିତମାନେ ଦିଗ୍‌ବିଜୟୀଙ୍କ ନାଆଁ ଶୁଣିଥାନ୍ତି। ସେମାନେ ଶାସ୍ତ୍ରାର୍ଥ କରିବା ଭୟରେ କହିଲେ—ଆମେମାନେ ସମସ୍ତେ ଅନନ୍ତ ଶ୍ରୀ ବିଭୂଷିତ ଶ୍ରୀମାଧବ ଦାସଙ୍କ ଶିଷ୍ୟ। ସେ ସମୁଦ୍ରକୂଳରେ ପର୍ଣ୍ଣକୁଟୀରରେ ନିବାସ କରନ୍ତି। ଆପଣ ସମସ୍ତଙ୍କ ସହିତ ଶାସ୍ତ୍ରାର୍ଥ କରି ଏତେ କଷ୍ଟ କରିବା ଦରକାର ନାହିଁ। ଯଦି କେବଳ ମାଧବ ଦାସଙ୍କୁ ହରାଇ ଦିଅନ୍ତି, ଆମେ ସମସ୍ତେ ହାର ମାନିନେବୁ ଏବଂ ଆପଣଙ୍କୁ ବିଜୟ ପତ୍ରିକା ଲେଖିଦେବୁ।

ପଣ୍ଡିତ ମହାଶୟ ମନରେ ଗର୍ବ କରି ପହଞ୍ଚିଲେ ସମୁଦ୍ରକୂଳରେ। ମାଧବ ଦାସ ପ୍ରଭୁଭକ୍ତିରେ ତଲ୍ଲୀନ ଥାଆନ୍ତି। ତାଙ୍କୁ ଶାସ୍ତ୍ରାର୍ଥ ପାଇଁ ଆହ୍ୱାନ କରିବାରୁ ସେ ଅନିଚ୍ଛା ପ୍ରକାଶ କଲେ। କହିଲେ—"ମହାନୁଭବ! ମୁଁ ଜଣେ ତୁଚ୍ଛ ସେବକ। ଆପଣଙ୍କ ଭଳି ମହାନ୍ ଦିଗ୍‌ବିଜୟୀଙ୍କ ସହିତ ଶାସ୍ତ୍ରାର୍ଥ କରିବାର ଶକ୍ତି ମୋର କାହିଁ? ମୁଁ ପରାଜୟ ପତ୍ର ଲେଖି ଦେଉଛି। ଆପଣ ସାଦରେ ସ୍ୱୀକାର କରନ୍ତୁ।"

ଶାସ୍ତ୍ରୀୟ ବିବାଦରେ ପଡ଼ିବା ଭକ୍ତିରେ ଅନ୍ତରାୟ ବୋଲି ଭାବି ମାଧବ ଦାସ କୌଣସି ପ୍ରକାରେ ସେଥିରୁ ବିରତ ହେବାକୁ ଚାହିଁଲେ। ଦିଗ୍‌ବିଜୟୀ କିନ୍ତୁ ଏହାକୁ ନିଜର ବଡ଼ିମା ମାନି ଗର୍ବ ମନରେ ପ୍ରମାଣ ପତ୍ର ଘେନି ପହଞ୍ଚିଲେ କାଶୀ ନଗରୀରେ। ପଣ୍ଡିତମାନଙ୍କୁ କହିଲେ—"ଏବେ ତ ତୁମେ ଶାସ୍ତ୍ରାର୍ଥ କରିବ, ଆଉ ଟାଳିବାକୁ ତ ତୁମ ପାଖରେ କୌଣସି ରାସ୍ତା ନାହିଁ? ଏଇ ଦେଖ! ବିଜୟ ପତ୍ର ଧରି ଆସିଛି ମାଧବ ଦାସଙ୍କ ଠାରୁ। ସେ ଶାସ୍ତ୍ରାର୍ଥ କରିବା ପୂର୍ବରୁ ଭୟରେ ହାର ମାନି ମୋତେ ଏ ପତ୍ର ଲେଖି ଦେଇଛନ୍ତି।"

ପତ୍ରିକା ଖୋଲି ଦେଖିଲାବେଳକୁ ସେଥିରେ ଲେଖାଅଛି ଯେ "ମାଧବ ଦାସ ବିଜୟୀ ଓ ଦିଗ୍‌ବିଜୟୀ ପରାଜୟୀ।" କାଶୀ ପଣ୍ଡିତମାନେ ପରିହାସ କରି କହିଲେ— "ଭଲକରି ପତ୍ର ପଢ଼ିଛ କି ସେମିତି ମନେ ମନେ ଗୁଡ଼ ଖାଉଛ? ଦେଖ କ'ଣ ଲେଖାଅଛି ପତ୍ରିକାରେ!" ଦିଗ୍‌ବିଜୟୀ ବାରମ୍ବାର ଲୁଗା କାନିରେ ଚଷମା ସଫା

କରି ଆଖିରୁ ଲେଞ୍ଚରା ପୋଛି ପତ୍ରିକା ପଢୁଥାନ୍ତି, କିନ୍ତୁ ଯେତେଥର ପଢ଼ିଲେ ବି ତାଙ୍କୁ ସେଇଆ ଦେଖାଯାଉଥାଏ। ତାଙ୍କ କ୍ରୋଧର ସୀମା ରହିଲା ନାହିଁ। ମାଧବ ଦାସଙ୍କ ଉପରେ କ୍ରୋଧିତ ହୋଇ ସେ ସେଇଠୁ ଅଖିଆ ଅପିଆ ବାହାରିଲେ ପୁରୀକୁ। ତାଙ୍କ ନିକଟରେ ପହଞ୍ଚି କହିଲେ—"ଠକ! ମୋ ସହିତ ତୁ କପଟ କଲୁ। ପରାଜୟ ପତ୍ରିକା ଲେଖିବା ପରିବର୍ତ୍ତେ ନିଜର ବିଜୟ ପତ୍ରିକା ଲେଖିଦେଲୁ।" ମାଧବ ଦାସ ସ୍ମିତହାସ୍ୟରେ କହିଲେ—ମହାଶୟେ! ଆପଣଙ୍କ ପଢ଼ିବାରେ ବୋଧହୁଏ ଭୁଲ୍ ରହିଯାଇଥିବ। ପତ୍ରିକାଟି ଖୋଲି ଦେଖାନ୍ତୁ ତ। ପୁଣି ଥରେ ପତ୍ରିକା ଖୋଲି ପଢ଼ିଲାବେଳକୁ ଲେଖାଅଛି ଯେ 'ଦିଗ୍‌ବିଜୟୀ ବିଜୟୀ ଓ ମାଧବ ଦାସ ପରାଜୟୀ।' ଏ କି ବିଚିତ୍ର ଘଟଣା! ଦିଗ୍‌ବିଜୟୀ ପଣ୍ଡିତ ଭ୍ରମରେ ପଡ଼ିଗଲେ। କହିଲେ—"ତୁ ନିଶ୍ଚୟ ଗୋଟାଏ ଗୁଣିଆ। ମୋତେ ଭ୍ରମିତ କରିବାକୁ ଚାହୁଁଛୁ ତୁ? ମୁଁ କିନ୍ତୁ ଛାଡ଼ିବା ଲୋକ ନୁହଁ। ଲିଖିତ ପତ୍ରିକା ଉପରେ କୌଣସି ବିଶ୍ୱାସ ନାହିଁ। ଏଥର ମୁଁ ତୋ ମୁହଁରେ କଳା ବୋଳି, କାନରେ ଜୋତାମାଳର କୁଣ୍ଡଳ ପିନ୍ଧାଇ ଗଧ ଉପରେ ବସାଇ ପୁରୀ ସାରା ବୁଲାଇବି। ଲୋକେ ଜାଣିପିବେ ଯେ ସତରେ ମାଧବ ଦାସ ହାରିଗଲା ବୋଲି। ତେବେ ଯାଇ ପ୍ରକୃତ ପ୍ରମାଣ ମିଳି ପାରିବ।" ମାଧବ ଦାସ ମୌନ ସମ୍ମତି ଦେଇ ଚାଲିଗଲେ ସ୍ନାନାଦି ନିତ୍ୟକର୍ମ ଉଦ୍ଦେଶ୍ୟରେ। ଦିଗ୍‌ବିଜୟୀ ପଣ୍ଡିତ କଳା ରଙ୍ଗ, ଜୋତାମାଳ ଓ ଗଧ ଇତ୍ୟାଦିର ବ୍ୟବସ୍ଥା କରି ତାଙ୍କୁ ଅପେକ୍ଷା କରିଥାନ୍ତି।

ମାଧବ ଦାସଙ୍କ ପରି ଭକ୍ତର ଅପମାନ ପ୍ରଭୁ ଜଗନ୍ନାଥ କେମିତି ବା ସହି ପାରନ୍ତେ! ସହସା ସେ ଜଣେ ବିଦ୍ୟାର୍ଥୀ ବେଶ ଧରି ଦିଗ୍‌ବିଜୟୀଙ୍କ ସମ୍ମୁଖରେ ଉପସ୍ଥିତ ହେଲେ। କହିଲେ—"ମହାଶୟ! ଶାସ୍ତ୍ରାର୍ଥ ନ କରି ବିଜୟର ପ୍ରମାଣ ପତ୍ରିକା ନେବା କଥା ଭୁଲି ଯାଆନ୍ତୁ। ବିଜୟର ଇଚ୍ଛା ପୂରଣ କରିବାକୁ ଚାହୁଁଥିଲେ ପ୍ରଥମେ ମୋ ସହିତ ଶାସ୍ତ୍ରାର୍ଥ କରନ୍ତୁ।"

"ତୁମେ କିଏ? କେଉଁଠି ରହୁଛ? କ'ଣ କରୁଛ?" ପଚାରିଲେ ଦିଗ୍‌ବିଜୟୀ।

"ମୁଁ ମହାମନା ୧୦୮ ଶ୍ରୀଯୁକ୍ତ ଶ୍ରୀ ଶ୍ରୀ ମାଧବ ଦାସଙ୍କର ଶିଷ୍ୟ। ପୁରୀରେ ଶ୍ରୀମନ୍ଦିରରେ ରହି ଭକ୍ତଜନଙ୍କର ସେବା କରିବା ମୋର ପ୍ରଥମ କାମ।"—କହିଲେ ମହାପ୍ରଭୁ।

ଦିଗ୍‌ବିଜୟୀ ଶାସ୍ତ୍ରାର୍ଥ ପାଇଁ ପ୍ରସ୍ତୁତ ହେବା ପୂର୍ବରୁ ଭଗବାନ ତାଙ୍କର ସ୍ମରଣ ଶକ୍ତି ଅପହରଣ କରିନେଲେ ଏବଂ ଅତି ସାଧାରଣ ପ୍ରଶ୍ନଟିଏ ପଚାରିଦେଲେ।

ପଣ୍ଡିତ ଆବାକାବା ହୋଇଗଲେ। ତାଙ୍କ ପାଟିକୁ ଉତ୍ତର ଆସିଲା ନାହିଁ। ଶେଷରେ ତାଙ୍କୁ ନିଜର ହାର ସ୍ୱୀକାର କରିବାକୁ ପଡ଼ିଲା। ବିଦ୍ୟାର୍ଥୀ ରୂପଧାରୀ ମହାପ୍ରଭୁ ଜଗନ୍ନାଥ କହିଲେ—"ମୋ ଗୁରୁଙ୍କ ପାଇଁ ତୁମେ କଳା ରଙ୍ଗ, ଜୋତାମାଳ, ଗଧ ଇତ୍ୟାଦି ଯେଉଁ ସବୁ ଯୋଗାଡ଼ କରିଛ, ସେସବୁ ତୁମ ପାଇଁ ବ୍ୟବହାର ହେବ। ଆସ, ଆନନ୍ଦରେ ଗଧ ପିଠିରେ ବିରାଜମାନ ହୁଅ। ମୁଁ ତୁମ ମୁହଁରେ କଳା ରଙ୍ଗ ବୋଳି ଜୋତାମାଳ ପିନ୍ଧାଇ ପୁରୀସାରା ପରିକ୍ରମା କରାଇବି।" ଅନିଚ୍ଛା ସତ୍ତ୍ୱେ ଦିଗ୍‌ବିଜୟୀଙ୍କୁ ସବୁ ମାନିବାକୁ ପଡ଼ିଲା। କୌତୁକୀ ଭଗବାନ ପଣ୍ଡିତଙ୍କୁ ଗଧ ପିଠିରେ ବସାଇ ଆଗେ ଆଗେ ଚଲାଉ ଥାଆନ୍ତି ଏବଂ ପଛରୁ ଅନେକ ବାଳୁଙ୍ଗା ପିଲାଙ୍କୁ ଏକତ୍ର କରି ଥଟ୍ଟାରେ ହୋ! ହୋ! କରି ମଝିରେ ମଝିରେ କହୁଥାନ୍ତି—

***'ପଣ୍ଡିତ ହାରିଲେ ହରିବୋଲ ଦିଅ ସକଳ ପୁରୀ ନିବାସୀ।'***

ସ୍ନାନାଦି ନିତ୍ୟକର୍ମ ସାରି ମାଧବ ଦାସ ଆସି ଦେଖନ୍ତି ତ ହରିବୋଲ ଧ୍ୱନିରେ ପୁରୀ ସହର କମ୍ପି ଉଠୁଛି। ପାଖକୁ ଯାଇ ଦେଖିଲା ବେଳକୁ ଦିଗ୍‌ବିଜୟୀ ପଣ୍ଡିତେ ଗଧ ପିଠିରେ ବସିଛନ୍ତି ଏବଂ ପିଲାମାନେ ପଛରୁ ହୋ ହୋ କରି ଥଟ୍ଟା-ପରିହାସ କରୁଛନ୍ତି। ପଚ୍ଚାରିଲେ—ମହାଶୟ! ଏ କ'ଣ କରୁଛନ୍ତି? ଏହା ତ ମୋ ପାଇଁ ଉପଯୁକ୍ତ ଥିଲା। ଆପଣଙ୍କ ଭଳି ପଣ୍ଡିତ ଗଧ ପିଠିରେ କାହିଁକି ବସିଛନ୍ତି? ପଣ୍ଡିତ କହିଲେ—ତୋ ଶିଷ୍ୟ ମୋତେ ଶାସ୍ତ୍ରଚର୍ଚ୍ଚାରେ ପରାଜିତ କରି ଏମିତି ଲୋକହସା କରୁଛି। ଏଇ ଦେଖ! ପଛେ ପଛେ ପିଲାମାନଙ୍କ ମେଳରେ ହୋ ହୋ କରି କେମିତି ମୋତେ ପରିହାସ କରୁଛି। ପିଲାମାନଙ୍କ ଗହଣରେ ପ୍ରଭୁ ଜଗନ୍ନାଥଙ୍କୁ ଦେଖି ମାଧବ ଦାସ ଜାଣିଗଲେ ଯେ ସବୁ ସେହି ଲୀଳାମୟ ଠାକୁରଙ୍କ ଲୀଳା।

ତତ୍‌କ୍ଷଣାତ୍ ଭକ୍ତ ମାଧବ ଦାସ ପିଲାମାନଙ୍କୁ ତଡ଼ିଦେଇ ଦିଗ୍‌ବିଜୟୀ ପଣ୍ଡିତଙ୍କୁ ଗଧ ପିଠିରୁ ଓହ୍ଲାଇ ଦେଲେ ଏବଂ ତାଙ୍କ ମୁହଁରେ ବୋଳା ଯାଇଥିବା କଳା ରଙ୍ଗ ଧୋଇଦେଇ ତାଙ୍କ ପାଦତଳେ ପଡ଼ି କ୍ଷମା ଯାଚନା କଲେ। ମାଧବ ଦାସଙ୍କ ଭଳି ପରମ ସନ୍ଥଙ୍କର ସ୍ପର୍ଶ ଲାଭ କରିବାରୁ ଦିଗ୍‌ବିଜୟୀ ପଣ୍ଡିତଙ୍କ ଅନନ୍ତ ଜନ୍ମର ପାପରାଶି କ୍ଷଣକେ ଭସ୍ମୀଭୂତ ହୋଇଗଲା। ପୂର୍ବରୁ ତ ଭଗବାନ ସବୁ ଅଭିମାନ ଧୂଳିସାତ୍ କରି ସାରିଥିଲେ, ଏଥର ତାଙ୍କର ଅନ୍ତଶ୍ଚକ୍ଷୁ ଖୋଲିଗଲା। ସେ ନିଜର ଭୁଲ୍ ବୁଝି ପାରି ମାଧବ ଦାସଙ୍କ ଚରଣରେ ପଡ଼ି ବାଳକ ଭଳି ଅଧୀର ହୋଇ କ୍ରନ୍ଦନ କଲେ। ନବନୀତ ସମ ଭକ୍ତହୃଦୟ ଆଉ ସେ କ୍ରନ୍ଦନ ସହ୍ୟ କରି ପାରିଲା ନାହିଁ। ଦିଗ୍‌ବିଜୟୀଙ୍କୁ ଆଲିଙ୍ଗନ କରି ସେ ତାଙ୍କୁ ସଦୁପଦେଶ ଦେଇ

କହିଲେ—ମହାଶୟେ! ଖଳ ଲୋକଙ୍କର ବିଦ୍ୟା, ଧନ ଓ ଶକ୍ତି ଯଥାକ୍ରମେ ବିବାଦ, ଗର୍ବ ଓ ଅନ୍ୟମାନଙ୍କୁ ଦୁଃଖ ଦେବା ପାଇଁ ଉପଯୋଗ ହୁଏ; କିନ୍ତୁ ଆପଣଙ୍କ ଭଳି ପଣ୍ଡିତଙ୍କ ପକ୍ଷେ ଏହା ଶୋଭା ପାଏ ନାହିଁ। ଆଜିଠାରୁ ଆପଣଙ୍କ ବିଦ୍ୟା, ଧନ ଓ ଶକ୍ତି ଜନହିତରେ ଉପଯୋଗ ହେବା ଉଚିତ। କୁହାଯାଇଛି—

**ବିଦ୍ୟା ବିବାଦାୟ ଧନଂ ମଦାୟ**
**ଶକ୍ତିଃ ପରେଷାଂ ପରପୀଡନାୟ।**
**ଖଳସ୍ୟ ସାଧୁର୍ବିପରୀତମେତଜ୍-**
**ଜ୍ଞାନାୟ ଦାନାୟ ଚ ରକ୍ଷଣାୟ॥**

ପ୍ରଭୁଙ୍କ ଭକ୍ତି ବିନା ଏ ନର ପଶୁସମ। ପ୍ରଭୁ ଜଗନ୍ନାଥଙ୍କ ଚରଣାରବିନ୍ଦରେ ଶରଣ ପଶି ନିଜ ଜୀବନ ଧନ୍ୟ କର। ଆଜିଠୁ ତାଙ୍କ ଭଜନରେ ଅବଶିଷ୍ଟ ଜୀବନ ବିତାଇବା ପାଇଁ ସଙ୍କଳ୍ପବଦ୍ଧ ହୁଅ। ଏହିପରି ଅନେକ ଉପଦେଶ ଦେଇ ସେ ତାଙ୍କୁ ବୈଷ୍ଣବ ଦୀକ୍ଷା ପ୍ରଦାନପୂର୍ବକ ଶ୍ରୀକ୍ଷେତ୍ରରେ ରହି ପ୍ରଭୁଭକ୍ତି ପାଇଁ ଆଜ୍ଞା ଦେଲେ।

ମାଧବ ଦାସଙ୍କୁ କିନ୍ତୁ ଭଗବାନଙ୍କ ଏଭଳି କୌତୁହଳ ଲୀଳା ଭଲ ଲାଗିଲା ନାହିଁ। ମନ୍ଦିରକୁ ଯାଇ ସେ ପ୍ରଭୁଙ୍କ ଉପରେ ବିରକ୍ତ ହୋଇ ପଚ୍ଚାରିଲେ—"ଏତେ ଚଗଲା ହେବା କ'ଣ ଭଲ? ମୋ ବଦଳରେ ଏତେ ବଡ଼ ଦିଗ୍‌ବିଜୟୀ ପଣ୍ଡିତଙ୍କୁ ଗଧ ପିଠିରେ ବସାଇ ଅପମାନ କାହିଁକି କଲ ତୁମେ? ମୁଁ ଗଧ ପିଠିରେ ବସିଯାଇଥାନ୍ତି। ସାଧୁର ମାନ-ଅପମାନ କ'ଣ ଅଛି?" ଭଗବାନ କହିଲେ—"ସାଧୁ ଅପମାନର ଫଳ ତାକୁ ମିଳିବା ଦରକାର ଥିଲା। ତୁମ ବଦଳରେ ନୁହେଁ, ମୁଁ ମୋ ବଦଳରେ ତାକୁ ଗଧ ପିଠିରେ ବସାଇଲି। ଶାସ୍ତ୍ରାର୍ଥ ମୋ ସଙ୍ଗରେ ହୋଇଥିଲା, ତୁମେ ବ୍ୟସ୍ତ ହେବାର କ'ଣ ଅଛି?"

+ + + +

ଭକ୍ତ ମାଧବ ଦାସ ନୀଳାଚଳ ଧାମରେ ନିବାସ କରି ଭଗବାନଙ୍କର ମଧୁରାତିମଧୁର ଲୀଳା ଚରିତ୍ର ଗାନ କରୁଥାନ୍ତି। ଥରେ ତାଙ୍କ ମନରେ ବ୍ରଜଦର୍ଶନର ଅଭିଳାଷ ଜାଗ୍ରତ ହେଲା। ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ ସମ୍ମୁଖରେ ନିଜର ଇଚ୍ଛା ପ୍ରକାଶ କରିବାରୁ ଭଗବାନ ମଧ୍ୟ ତାଙ୍କ ସଙ୍ଗରେ ଯିବା ପାଇଁ ବାହାରିଲେ। ସେ ପ୍ରଭୁଙ୍କୁ ବହୁ ପ୍ରକାରେ ବୁଝାଇ କହିଲେ—"ଦୂର ବାଟ, ବାଟରେ ଅନେକ ଦୁଃଖ-କଷ୍ଟ ସହିବାକୁ ପଡ଼ିବ। ଖାଇବା ପିଇବାର ଠିକଣା ନାହିଁ। ଆମେ ତ ସାଧୁଲୋକ ଭୋକ ଉପାସରେ ରହିଯିବୁ। କିନ୍ତୁ ତୁମର ସୁକୋମଳ ଶ୍ରୀଅଙ୍ଗ ଏ କଷ୍ଟ ସହି

ପାରିବ ନାହିଁ। ତୁମ ଭଳି ରାଜକୁମାରଙ୍କ ପାଇଁ ମାର୍ଗରେ ସମୁଚିତ ବ୍ୟବସ୍ଥା ହୋଇ ପାରିବ ନାହିଁ. ତେଣୁ ତୁମେ ମୋ ସାଙ୍ଗରେ ଯିବାର ହଠ ଛାଡ଼ିଦିଅ। ଚିନ୍ତା କର ନାହିଁ. ମୁଁ ଖୁବ୍ ଶୀଘ୍ର ଫେରି ଆସିବି, ତୁମେ ଏଇଠି ଥାଅ।''

ଏଭଳି ନାନା ପ୍ରକାରେ ବୁଝାଇ ଭକ୍ତ ମାଧବ ଦାସ ବ୍ରଜଯାତ୍ରା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ। ପ୍ରଭୁଙ୍କ ମନ କିନ୍ତୁ ମାନିଲା ନାହିଁ। ତାଙ୍କ ପଛେ ପଛେ ସେ ମଧ୍ୟ ଗୁପ୍ତରୂପରେ ଗ୍ଲଲେ। ମାଧବ ଦାସ ଅଳ୍ପ କିଛି ବାଟ ଯାଇଛନ୍ତି, ଅଗ୍ଦନକ ତାଙ୍କୁ ପ୍ରବଳ ଭୋକ ଲାଗିଲା। ଭାବିଲେ—ବଡ଼ ଆଶ୍ଚର୍ଯ୍ୟ କଥା! ଆଜି ଏତେ ଶୀଘ୍ର ଭୋକ ଲାଗିଲା କାହିଁକି? ମୂଳ କଥା ହେଲା ଯେ ପ୍ରଭୁ ଜଗନ୍ନାଥଙ୍କୁ ଭୋକ ଲାଗିଥିଲା। କିନ୍ତୁ ସେ କାହାକୁ କହିବେ? ମାଧବ ଦାସଙ୍କୁ କହିବାକୁ ଡରୁଥାନ୍ତି। ତାଙ୍କୁ କହିଲାମାତ୍ରେ ସେ ନିଶ୍ଚୟ କହିବେ ଯେ —''ମୁଁ ତ ପ୍ରଥମରୁ ମନା କରୁଥିଲି, ପୁଣି ମୋ ସାଙ୍ଗରେ କାହିଁକି ବାହାରି ଆସିଲ? ଏଭଳି ଅପରିଚିତ ଜାଗାରେ ମୁଁ କେଉଁଠୁ କି ବ୍ୟବସ୍ଥା କରିବି?'' ତେଣୁ ଭଗବାନ କିଛି ନ କହି ତାଙ୍କର କ୍ଷୁଧା ଜାଗ୍ରତ କରିଦେଲେ। ଭକ୍ତ ବୁଝିଗଲେ ଯେ ସବୁ ଲୀଳାମୟଙ୍କ ଲୀଳା। ମାର୍ଗରେ ସେ ଜଣେ ଭକ୍ତିମତୀ ବୃଦ୍ଧା ମାଆଙ୍କର ଅତିଥି ହେଲେ।

ବୃଦ୍ଧା ମାଆଙ୍କର ଅତ୍ୟନ୍ତ ଶ୍ରଦ୍ଧା ଭାବନା ଦେଖି ପ୍ରଭୁ ତାଙ୍କୁ ପ୍ରକଟରୂପରେ ଦର୍ଶନ ଦେଇ ଧନ୍ୟ କରିବାକୁ ମନସ୍ଥ କଲେ। ପିତା-ପୁତ୍ର ଗୋଟିଏ ପତ୍ରରେ ପ୍ରସାଦ ସେବନ କରିବା ପରି ମାଧବ ଦାସଙ୍କ ସଙ୍ଗରେ ବିରାଜମାନ ହୋଇଗଲେ ତ୍ରୈଲୋକ୍ୟନାଥ ଭଗବାନ। ପ୍ରଭୁଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଓ ବାଲ୍ୟ ଚପଳତା ଦର୍ଶନ କରି ବୃଦ୍ଧା ମା'ଙ୍କ ହୃଦୟସିନ୍ଧୁରେ ତରଙ୍ଗାୟିତ ହେଲା ବାତ୍ସଲ୍ୟ ସ୍ନେହର ଅପାର କଲ୍ଲୋଳ। ତାଙ୍କ ନେତ୍ର ଅଶ୍ରୁଛଳଛଳ ହୋଇଗଲା। ସେ ମାଧବ ଦାସଙ୍କୁ ପଗ୍ଦରିଲେ—''ଏ ଶ୍ୟାମଳ ପିଲାଟିକୁ କେଉଁଠୁ ଭୁଲାଇ ଆଣିଲ? ଏହାର ବାତ୍ସଲ୍ୟମୟୀ ମାଆ ଯା ବିହୁନେ କେମିତି ଦିନ ବଞ୍ଚୁଥିବ! ତୁମେ ସାଧୁ ବୋଲି କ'ଣ ପିଲାଟିକୁ ମଧ୍ୟ ଭୋକ ଉପାସରେ କଷ୍ଟ ଦେଉଥିବ! ତୁମ ମନରେ ଦୟାମାୟା ବୋଲି କିଛି ଅଛି କି ନାହିଁ?''

ମାଧବ ଦାସ ଜାଣି ପାରିଲେ ଯେ ଭକ୍ତିମତୀ ବୃଦ୍ଧା ମା'ଙ୍କ ଉପରେ କରୁଣା କରି ପ୍ରଭୁ ତାଙ୍କୁ ସାକ୍ଷାତ୍ ଦର୍ଶନ ଦେଇଛନ୍ତି। ତାଙ୍କର ଭାଗ୍ୟକୁ ପ୍ରଶଂସା କରି ସେ ସେଠାରୁ ବାହାରି ପଡ଼ିଲେ। ମାର୍ଗରେ ଅନ୍ୟ ଜଣେ ଭକ୍ତଦମ୍ପତିଙ୍କ ଗୃହରେ ଆତିଥ୍ୟ ସ୍ୱୀକାର କରି ତା'ପରେ ବୃନ୍ଦାବନକୁ ଯାତ୍ରା କଲେ।

ପ୍ରଭୁ ଜଗନ୍ନାଥ ସାଙ୍ଗରେ ଥାଆନ୍ତି, ତେଣୁ ମାଧବ ଦାସଙ୍କ ମନ ଲାଗିଯାଏ। ତାଙ୍କ ସାଙ୍ଗରେ କଥାବାର୍ତ୍ତା ହୋଇ ସେ ମାର୍ଗ ଅତିକ୍ରମ କରିଚ୍ଚଲିଥାନ୍ତି। ଶ୍ରୀଧାମ ବୃନ୍ଦାବନ ଯେତିକି ଯେତିକି ପାଖେଇ ଆସୁଥାଏ, ତାଙ୍କ ହୃଦୟସାଗରରେ ପ୍ରେମତରଙ୍ଗ ସେତେ ସେତେ କୂଳଲଘଂନ କରିଯାଉଥାଏ। ଭାବୁଥାନ୍ତି—"ଏ ହେଉଛି ସେହି ଦିବ୍ୟ ବ୍ରଜମଣ୍ଡଳ, ଯେ କି ମୋ ପ୍ରଭୁଙ୍କୁ ଅପାର ସୁଖ ପ୍ରଦାନ କରିଛି। ଏହି ପବିତ୍ର ଧାମରେ ମୋର ଆରାଧ୍ୟ ଶ୍ରୀରାଧାମାଧବ ଜୀଉ ନାନା ପ୍ରକାର ଲୀଳା କରି ଭକ୍ତଜନଙ୍କୁ ଆନନ୍ଦ ପ୍ରଦାନ କରିଛନ୍ତି ଏବଂ ଅନେକ ସନ୍ଥ ବୈଷ୍ଣବ ଭଜନରତ ହୋଇଛନ୍ତି ଏହି ଧାମରେ।"

ବ୍ରଜଧାମର ସୀମାରେ ପହଞ୍ଚି ପ୍ରଥମେ ସାଷ୍ଟାଙ୍ଗ ପ୍ରଣିପାତ କଲେ। ସତରେ କେତେ ମନ ମୁଗ୍ଧକର ବାତାବରଣ! ଗ୍ରୀଷ୍ମ ଋତୁରେ ମଧ୍ୟ ବସନ୍ତ ଋତୁର ଅପୂର୍ବ ଛଟା ଭକ୍ତଙ୍କର ମନକୁ ଚ୍ଚୋରାଇ ନେଉଥାଏ। ନାମ-ସଂକୀର୍ତ୍ତନ ସହିତ ଖୋଳ, କରତାଳ ଓ ହରିବୋଲ-ହୁଳହୁଳି ଧ୍ୱନିରେ ମୁଖରିତ ହୋଇ ଉଠୁଥାଏ ଖଣ୍ଡମଣ୍ଡଳ। ସ୍ଥାନେ ସ୍ଥାନେ ଠାକୁରଙ୍କ ପୂଜା ଆରାଧନାରେ ମଗ୍ନ ଥାଆନ୍ତି ଭକ୍ତମଣ୍ଡଳୀ। ଅଗଣିତ ଗଗନଚୁମ୍ବୀ ମନ୍ଦିର ପ୍ରଭୁଙ୍କର କୀର୍ତ୍ତିଗାନ କରୁଥାନ୍ତି। ମନ୍ଦିର ଶିଖରରେ ଉଡୁଥିବା ଧ୍ୱଜା ସତେ ଯେପରି ହାତ ହଲାଇ ଭକ୍ତଜନଙ୍କୁ ଡାକୁଥାନ୍ତି ପ୍ରଭୁଙ୍କ ଦର୍ଶନ କରାଇ କୃତାର୍ଥ କରିବା ପାଇଁ। ଯୁଆଡ଼େ ଦୃଷ୍ଟି ଯାଏ ସର୍ବତ୍ର ତୁଳସୀ ବଗିଚ୍ଚା। ତୁଳସୀ ମଞ୍ଜରୀରେ ମଧୁଲୋଭୀ ଭ୍ରମରଗଣ ଗୁଣୁ ଗୁଣୁ ହୋଇ ଗୁଞ୍ଜାର କରୁଥାନ୍ତି। ଏଭଳି ଆମୋଦପ୍ରଦ ପରିବେଶ ଦେଖି ଆତ୍ମବିଭୋର ହୋଇଗଲେ ଭକ୍ତ ମାଧବ ଦାସ।

କିଞ୍ଚିତ୍ ବାହ୍ୟଜ୍ଞାନ ଫେରି ପାଇବା ପରେ ଠାକୁର ଶ୍ରୀ ବାଙ୍କେବିହାରୀଙ୍କ ଦର୍ଶନର ଅଭିଳାଷ ତାଙ୍କ ମନକୁ ଅଧୀର କରିପକାଇଲା। ସେ ସର୍ବପ୍ରଥମେ ପହଞ୍ଚିଲେ ବାଙ୍କେବିହାରୀଙ୍କ ମନ୍ଦିରରେ। ତାଙ୍କୁ ଲାଗିଲା ପ୍ରଥମ ଦର୍ଶନରେ ପ୍ରଭୁ ଯେପରି ତାଙ୍କ ମନକୁ ଚ୍ଚୋରେଇ ନେଲେ। ସେ ମନେ ମନେ ଭାବିଲେ "ମୁଁ ଶୁଣିଥିଲି ଯେ ବ୍ରଜର ଠାକୁର ଲହୁଣୀଚ୍ଚୋର, କିନ୍ତୁ ଆଜି ଅନୁଭବ କଲି ଯେ ସେ ଭକ୍ତର ଚିତ୍ତଚ୍ଚୋର ମଧ୍ୟ।" ଆଖିରେ ଆଖି ମିଶାଇ ହୃଦୟ ସିଂହାସନରେ ବିରାଜମାନ କରାଇଲେ ଭୁବନମୋହନ ଶ୍ୟାମସୁନ୍ଦରଙ୍କୁ।

ସେତେବେଳେ ବୃନ୍ଦାବନରେ ଏଭଳି ବ୍ୟବସ୍ଥା ଥିଲା ଯେ ପାରା, ମୟୂର, ଶୁଆ, ବାନର ପ୍ରଭୃତି ପଶୁ-ପକ୍ଷୀମାନଙ୍କୁ ଏବଂ ପ୍ରତ୍ୟେକ ଦର୍ଶନାର୍ଥୀଙ୍କୁ ସିଝା ଚ୍ଚୋଲା ମିଳେ। ସନ୍ଥ-ବୈଷ୍ଣବଙ୍କ ପାଇଁ ଠାକୁରଙ୍କ ଛପନଭୋଗ ପ୍ରସାଦର ମଧ୍ୟ ବ୍ୟବସ୍ଥା

ଥାଏ। ସେଠାରେ ସୋଲା ସିଝା ବଣ୍ଟା ହେଉଥିବାର ଦେଖି ମାଧବ ଦାସ ହାତ ପତାଇ ମୁଠାଏ ନେଇ ଆସିଲେ। ଯଦିବା ଦ୍ୱାରପାଳ ତାଙ୍କୁ ବୈଷ୍ଣବ ବୋଲି ଚିହ୍ନିପାରି କହିଲା ଯେ ଆଜ୍ଞା! ଟିକିଏ ଅପେକ୍ଷା କରନ୍ତୁ, ଅଳ୍ପ ସମୟ ମଧ୍ୟରେ ଠାକୁରଙ୍କର ଛପନଭୋଗ ପ୍ରସାଦ ମିଳିବ, କିନ୍ତୁ ସେ ତା' କଥାକୁ ଗୁରୁତ୍ୱ ନ ଦେଇ ସୋଲା ସିଝା ମୁଠାଏ ନେଇ ଯମୁନା କୂଳକୁ ଚାଲିଗଲେ। ଯମୁନା କୂଳର ସ୍ୱଚ୍ଛ ବାଲୁକା ଉପରେ ଆସନ ବିଛାଇ ବାଙ୍କେବିହାରୀଙ୍କୁ ଆବାହନପୂର୍ବକ ବିରାଜମାନ କରାଇଲେ ଏବଂ ସୋଲାଭୋଗ ପାଇବାକୁ ନିବେଦନ କଲେ। ଭକ୍ତର ଭାବନାକୁ ସ୍ୱୀକାର କରି ପ୍ରଭୁ ଠାକୁର ଶ୍ରୀବଙ୍କେବିହାରୀ ସୋଲାଭୋଗ ପାଇଲେ।

ଏଣେ ପରମ ରସିକ ସନ୍ଥ ସ୍ୱାମୀ ଶ୍ରୀ ହରିଦାସ ପ୍ରଭୁଙ୍କ ଆଗରେ ଛପନ ଭୋଗ ରଖି ଧ୍ୟାନରେ ଭୋଗ ପାଇବା ପାଇଁ ନିବେଦନ କରୁଥାନ୍ତି, କିନ୍ତୁ ଠାକୁରେ ସ୍ୱୀକାର କରୁ ନ ଥାନ୍ତି। ସ୍ୱାମୀଜୀ ପଚାରିଲେ—କଣ ହେଲା ପ୍ରଭୁ! ଭୋଗ ପାଉ ନାହାନ୍ତି କାହିଁକି? ଠାକୁରେ କହିଲେ—ମୋତେ ଭୋକ ନାହିଁ। ସ୍ୱାମୀଜୀ କାରଣ ଜାଣିବାକୁ ଆଗ୍ରହ ପ୍ରକାଶ କରିବାରୁ ଠାକୁରେ କହିଲେ—ମାଧବ ଦାସ ମୋତେ ଯମୁନାକୂଳରେ ସୋଲାଭୋଗ ଖୁଆଇ ଦେଇଛି, ତେଣୁ ଆଉ ଭୋକ ଲାଗୁ ନାହିଁ। ସ୍ୱାମୀ ଶ୍ରୀ ହରିଦାସଙ୍କୁ ସବୁ ରହସ୍ୟ ଜଣାପଡ଼ିଗଲା। ସେ ଯମୁନାକୂଳରୁ ମାଧବ ଦାସଙ୍କୁ ସାଦରେ ଘେନି ଆସିବାକୁ ଶିଷ୍ୟଗଣଙ୍କୁ ଆଜ୍ଞା ଦେଲେ। ଶିଷ୍ୟମାନେ ଆଜ୍ଞା ଶିରୋଧାର୍ଯ୍ୟ କରି ମାଧବ ଦାସଙ୍କ ସମୀପକୁ ଗଲେ ଏବଂ ସବୁ ବୃତ୍ତାନ୍ତ କହି ସାଦରେ ପାଛୋଟି ଆଣିଲେ। ଦୁଇ ଭକ୍ତଙ୍କ ମିଳନରେ ଅପୂର୍ବ ଆନନ୍ଦ-ସରିତା ପ୍ରବାହିତ ହେଲା। ସ୍ୱାମୀ ଶ୍ରୀହରିଦାସ ମାଧବ ଦାସଙ୍କୁ ବୁଝାଇ କହିଲେ—ତୁମେ ଜଗତରୁ ଉଦାସୀନ ରହିବା ତ ଭଲ କଥା, କିନ୍ତୁ ଠାକୁରଙ୍କ ଠାରୁ ଏବଂ ଠାକୁରଙ୍କ ମହାପ୍ରସାଦରୁ ଉଦାସୀନ ହେବା ଉଚିତ ନୁହେଁ। ଏହା ତ ସାଧୁ-ସନ୍ଥଙ୍କର ପ୍ରାଣଧନ। ଏହିପରି ଅନେକ ରହସ୍ୟମୟ ହରିକଥା କହି ଶ୍ରୀବୃନ୍ଦାବନର ରସ ଉପାସନା ପ୍ରଣାଳୀ ବୁଝାଇ କହିଲେ। ମାଧବ ଦାସ କହିଲେ—ମୁଁ ଜାଣିବାକୁ ଚାହୁଁଥିଲି ଯେ ତୁମ ଠାକୁର ଗୋପାଳ କି ମହଲ ଠାକୁର। ଏବେ ଜାଣିଗଲି ଯେ ଏ ହେଉଛନ୍ତି ମହଲ ଠାକୁର। ଗୋପାଳ ହୋଇଥିଲେ ସୋଲାଭୋଗ ଖାଇ ହଜମ କରି ନେଇଥାନ୍ତେ। ମହଲ ଠାକୁର ହୋଇଥିବାରୁ ହଜମ କରି ପାରିଲେ ନାହିଁ, ପେଟ କାଟିହେଲା। ସ୍ୱାମୀ ଶ୍ରୀ ହରିଦାସ ହସି ହସି କହିଲେ—ତୁମେ ଜଗନ୍ନାଥ ମହାପ୍ରଭୁଙ୍କର ଭକ୍ତ, ତେଣୁ ତାଙ୍କୁ ସୋଲାଭୋଗ ଲଗାଇବା ତୁମ ପକ୍ଷେ ଉଚିତ ଥିଲା। ଆମ

ଠାକୁର ତ ଅତି ସରସ ଓ ସୁକୁମାର, ତାଙ୍କର ପ୍ରୀତିର ରୀତି ଓ ଭୋଗରାଗ ମଧ୍ୟ ଅତି ସରସ, ମଧୁର ଓ ସୁକୋମଳ। ଏହିଭଳି ଦୁଇ ଭକ୍ତଙ୍କ ମଧ୍ୟରେ ଅନେକ ଆମୋଦ-ପ୍ରମୋଦ ଚାଲିଲା।

ଭକ୍ତ ମାଧବ ଦାସ ବ୍ରଜମଣ୍ଡଳର ବିଭିନ୍ନ ତୀର୍ଥ ଭ୍ରମଣ କରି ଭାଣ୍ଡୀର ବନରେ ପହଞ୍ଚିଲେ। ଭାଣ୍ଡୀର ବନରେ ଭାଣ୍ଡୀରବଟ ଓ ଭାଣ୍ଡୀରକୂପ ଅତି ଦର୍ଶନୀୟ ସ୍ଥାନ। ଭଗବାନ ବତ୍ସାସୁରକୁ ମାରିବା ପରେ ଗୋପବାଳକମାନେ ବାଛୁରୀ ବଧର ପ୍ରାୟଶ୍ଚିତ୍ତ ରୂପେ ତୀର୍ଥସ୍ନାନ କରିବାକୁ କହିଲେ। କିନ୍ତୁ ଭଗବାନ ସେମାନଙ୍କୁ ଭଣ୍ଡାଇ ଦେବାକୁ ଏଣୁତେଣୁ କହିଲେ ଯେ—"ମୁଁ କ'ଣ ବାଛୁରୀ ମାରିଛି, ମୁଁ ତ ଗୋଟାଏ ରାକ୍ଷସକୁ ବଧ କଲି।" କିନ୍ତୁ ଗୋପବାଳକମାନେ ବାଧ୍ୟ କରି କହିଲେ ଯେ ରାକ୍ଷସ ହେଲେ କଣ ହେଲା, ବାଛୁରୀ ରୂପରେ ତ ଆସିଥିଲା? ତେଣୁ ତୁମକୁ ସ୍ନାନ କରିବାକୁ ପଡ଼ିବ। ତେଣୁ ଭଗବାନ ଶ୍ରୀକୃଷ୍ଣ ସେଠାରେ ଭାଣ୍ଡୀରକୂପ ପ୍ରକଟ କରିଦେଲେ ଏବଂ ସମସ୍ତ ତୀର୍ଥଙ୍କୁ ସେଇଠି ଆବାହନପୂର୍ବକ ସ୍ନାନ କରି ପାପମୁକ୍ତ ହେଲେ।

ସେହି ଭାଣ୍ଡୀରବନରେ 'କ୍ଷେମଦାସ' ନାମକ ଜଣେ ବୈରାଗୀ ସାଧୁ ନିବାସ କରୁଥିଲେ। ମାଧବ ଦାସ ଗୋଟିଏ ଗଛ ତଳେ ବିଶ୍ରାମ କରିଥିବା ଦେଖି ସେ ତାଙ୍କ ପ୍ରତି ଈର୍ଷା କଲେ। ବିରକ୍ତ ହୋଇ କହିଲେ—"ଚାଲିଯା ଏଠାରୁ। ଏଠି ସାଧୁମାନଙ୍କ ପାଇଁ ଅନ୍ନଛତ୍ର ଚାଲୁ ନାହିଁ କି ନିମନ୍ତ୍ରଣ ଦିଆଯାଉ ନାହିଁ। କୁଆଡୁ ବୁଲି ବୁଲି ଆସିଗଲା କେଜାଣି—***ଜଣା ନାହିଁ ଚିହ୍ନା ନାହିଁ, ମୁଁ ତୁମର କୁଣିଆ ଭାଇ।*** ଆମେ ଅନାସକ୍ତ ସାଧୁ। ଜଙ୍ଗଲରେ ଅକିଞ୍ଚନ ଭାବରେ ଭଗବାନଙ୍କୁ ଡାକୁଛୁ! ଆମ ପାଖରେ ଜିନିଷପତ୍ର କୁଆଡୁ ଆସିବ।" ମାଧବ ଦାସ ବିନମ୍ର ଭାବରେ କହିଲେ—ବାବା! ମୋ ଦ୍ୱାରା ଆପଣଙ୍କୁ କୌଣସି କଷ୍ଟ ହେବ ନାହିଁ। ମୁଁ ରାତିଟା ଏଇଠି କାଟିଦେଇ ସକାଳ ହେଲେ ପଳେଇଯିବି। ଆପଣ ନିଶ୍ଚିନ୍ତରେ ରହନ୍ତୁ। ମୁଁ ଲୁଣ ଟିକିଏ ବି ଆପଣଙ୍କୁ ମାଗିବି ନାହିଁ।

ସାଧୁ ନିଶ୍ଚିନ୍ତ ହୋଇ କୁଟୀରରେ ଖିରି ତିଆରି କରି ଲୁଚେଇ ଲୁଚେଇ ଖାଇବା ଆରମ୍ଭ କଲେ। ପ୍ରଭୁଙ୍କ ଲୀଳା ବଡ଼ ବିଚିତ୍ର। ସେ ସନ୍ଥ ଅପମାନର ପ୍ରତ୍ୟକ୍ଷ ଫଳ ଦେଖାଇଦେଲେ। ଖିରି ଭିତରେ ଅସଂଖ୍ୟ ପୋକ ସାଲୁବାଲୁ ହେଲେ। କ୍ଷେମଦାସ ନିଜର ଭୁଲ୍ ବୁଝିପାରି ସନ୍ଥଙ୍କ ଚରଣରେ ଅପରାଧ ପାଇଁ କ୍ଷମାଭିକ୍ଷା କଲେ। ମାଧବ ଦାସ ତାଙ୍କୁ ଶିକ୍ଷା ଦେଇ କହିଲେ—କୁଟିଆ ତିଆରି

କରି ରହୁଛ, ଆଉ ସାଧୁଙ୍କୁ ଅପମାନ କରୁଛ! ସମସ୍ତେ ଭଗବାନଙ୍କର ସନ୍ତାନ। କୌଣସି ଭଲ ଜିନିଷ ଏକୁଟିଆ ଖାଇବା କଥା ନୁହେଁ—**'ଏକଃ ସ୍ୱାଦୁ ନ ଭୁଞ୍ଜୀତ'**। ପ୍ରଭୁଙ୍କ ପ୍ରସାଦ ବାଣ୍ଟି ଖାଇବା କଥା—***'ବାଣ୍ଟିଣ ଖାଇ, ବୈକୁଣ୍ଠେ ଯାଇ। ଲୁଗ୍ରଇ ଖାଇ, ନର୍କେ ପଡ଼ଇ।'*** ଯେ ଅତିଥି ସତ୍କାର ନ କରି ନିଜେ ଭକ୍ଷଣ କରେ ସେ ପାପୀ ପାପ ହିଁ ଭକ୍ଷଣ କରେ ବୋଲି ଜାଣିରଖ। ଖିରିରେ ବୁଲୁଥିବା ପୋକଗୁଡ଼ିକ ତୁମକୁ ନରକର ସୂଚନା ଦେଉଛନ୍ତି। ଯଦି ତୁମେ ଏ ପାପରୁ ମୁକ୍ତ ହେବାକୁ ଚାହୁଁଛ, ତେବେ ଯେତେ ଯାହା ଧନ ସଂଗ୍ରହ କରିଛ, ସବୁ ସାଧୁସେବାରେ ଲଗାଇଦିଅ ଏବଂ ମଥୁରା ବିଶ୍ରାମଘାଟରେ ଯାଇ ସବୁଦିନ ଝାଡୁ ଦିଅ ତଥା ସନ୍ଥଙ୍କ ଉଚ୍ଛିଷ୍ଟ ପ୍ରସାଦ ସେବନ କର। ତେବେ ଯାଇ ତୁମର କଲ୍ୟାଣ ହେବ। କ୍ଷେମଦାସ ତାଙ୍କ ଆଦେଶ ଶିରୋଧାର୍ଯ୍ୟ କରି ନିଜର ପାପ କାଳିମା ଧୋଇଦେଲେ।

ଭକ୍ତ ମାଧବ ଦାସ ଶୁଣିବାକୁ ପାଇଲେ ଯେ ହରିୟାଣାର ଗୋଲା ଗ୍ରାମରେ ତାଙ୍କ ରଚିତ 'ଜୟ ଜୟ ଲୀଳା' ଗ୍ରନ୍ଥ ଗାୟନ ହେଉଛି। ତାଙ୍କ ମନରେ କୁତୂହଳ ଜାତ ହେଲା ଯେ ଭକ୍ତଜନ ପ୍ରଭୁଙ୍କ ଲୀଳାଗାନ କରି କିଭଳି ରସ ଆସ୍ୱାଦନ କରୁଛନ୍ତି ଟିକିଏ ଦେଖିବା। ଯଦି ପ୍ରେମୀଭକ୍ତବୃନ୍ଦ ଗ୍ରନ୍ଥଟିକୁ ସମ୍ମାନ କରୁଥିବେ ତେବେ ଗ୍ରନ୍ଥ ପ୍ରଣୟନ ପରିଶ୍ରମକୁ ସେ ସାର୍ଥକ ମଣିବେ। ତା'ଛଡ଼ା ଲୀଳା ଶ୍ରବଣର ସୌଭାଗ୍ୟ ମଧ୍ୟ ତାଙ୍କୁ ମିଳିଯିବ। ଏ ସବୁ ଉଦ୍ଦେଶ୍ୟରେ ସେ ପହଞ୍ଚିଲେ ହରିଆଣାର ଗୋଲା ଗ୍ରାମରେ। ଯେଉଁ ଆଶ୍ରମରେ ଲୀଳାଗାନ ହେଉଥିଲା, ସେଠାରେ ରହି କଥା ଶୁଣିଲେ ଏବଂ ନିଜର ପରିଚୟ ନ ଦେଇ ଠାକୁରଙ୍କ ସେବା ପାଇଁ ଗୋବର ଘସି ତିଆରି କରିବା କାର୍ଯ୍ୟରେ ନିଯୁକ୍ତ ହେଲେ। କିଛି ଦିନ ପରେ ପୁରୀରୁ ଜଣେ ଭକ୍ତ ସେ ଆଶ୍ରମରେ ପହଞ୍ଚିଲେ। ମାଧବ ଦାସଙ୍କୁ ଘସି ତିଆରି କରୁଥିବା ଦେଖି ସେ ଚକିତ ହୋଇଗଲେ ଏବଂ ସେଠାକାର ମହନ୍ତଙ୍କୁ ତାଙ୍କର ପରିଚୟ ଦେଲେ। ମହନ୍ତଙ୍କୁ ଲାଗିଲା ସତେ ଯେପରି ତାଙ୍କ ଉପରେ ବଜ୍ର ପଡ଼ିଗଲା। ସେ ନିଜର ଅଜ୍ଞାନ ପାଇଁ ତାଙ୍କ ପାଦତଳେ ପଡ଼ି କ୍ଷମା ପ୍ରାର୍ଥନା କରି ବହୁତ ପଶ୍ଚାତ୍ତାପ କଲେ ଏବଂ ଗୋଟିଏ ସିଂହାସନରେ ମାଧବ ଦାସଙ୍କୁ ବିରାଜମାନ କରାଇ ଷୋଡ଼ଶୋପଚାର ବିଧିରେ ପୂଜା ଅର୍ଚ୍ଚନା କଲେ। ମାଧବ ଦାସଙ୍କୁ ଏସବୁ ଭଲ ଲାଗୁ ନ ଥାଏ। ଧୀରେ ଧୀରେ ତାଙ୍କର ପ୍ରତିଷ୍ଠା ବଢ଼ିବାରୁ ସେ ଆଉ ସେଠାରେ ନ ରହି ଶ୍ରୀକ୍ଷେତ୍ର ପୁରୀ ଉଦ୍ଦେଶ୍ୟରେ ଯାତ୍ରା କଲେ।

ମାଧବ ଦାସଙ୍କୁ ଘର ଛାଡ଼ିବାର ବହୁ ଦିନ ହୋଇଯାଇଥାଏ । ପୁରୀ ଫେରିବା ବାଟରେ ତାଙ୍କ ଗାଆଁ ପଡ଼ିଲା । ସେ ଭାବିଲେ ବୃଦ୍ଧା ଜନନୀକୁ ଓ ପିଲାମାନଙ୍କୁ ଟିକିଏ ଦେଖାକରି ଗଲେ ଭଲ ହେବ । ସେ ଗାଁଆ ଲୋକଙ୍କୁ ଅଚିହ୍ନା ଲୋକ ଭଳି ମାଆଙ୍କ ସମାଗ୍ଚର ପଗ୍ଚରି ଯାଇ ଜନ୍ମସ୍ଥାନରେ ପହଞ୍ଚିଲେ । ବୃଦ୍ଧା ମାଆ ମଧ୍ୟ ତାଙ୍କୁ ଚିହ୍ନି ପାରୁ ନ ଥାନ୍ତି । ସାଧୁଙ୍କୁ ସତ୍କାର କରିବା ଭଳି ମାଆ ତାଙ୍କୁ ଭୋଜନ କରାଇଲେ । ଭୋଜନ କଲାବେଳେ ସେ ପଗ୍ଚରିଲେ—"ବାପ! ତୁମେ କେଉଁଠି ରହୁଛ?" ସେ କହିଲେ—"ଜଗନ୍ନାଥ ଧାମ ପୁରୀରେ ରହୁଛି ମାଆ!" ମାଆ ପଗ୍ଚରିଲେ—"ଆଚ୍ଛା! ତୁମେ ମୋ ମାଧବକୁ ଚିହ୍ନିଛ? ସେ ମଧ୍ୟ ଆଜିକାଲି ପୁରୀରେ ରହୁଛି!" "ମୁଁ ତୋର ସେଇ ମାଧବ ମାଆ!"—କହିଲେ ମାଧବ ଦାସ ।

ମାଆ ଟିକିଏ ବିରକ୍ତି ଭାବ ପ୍ରକାଶ କରି କହିଲେ—"ତୁ ମୋର ମାଧବ ହୋଇ ନ ପାରୁ । ମୁଁ ଶୁଣୁଛି ଯେ ପ୍ରଭୁ ଜଗନ୍ନାଥ କୁଆଡ଼େ ମୋ ମାଧବ ଉପରେ କୃପା କରି ତାକୁ ଦର୍ଶନ ଦେଉଛନ୍ତି ଓ ତା' ସହିତ କଥାବାର୍ତ୍ତା ହେଉଛନ୍ତି! ତେବେ ସେ ଏଭଳି ଦୟାଳୁ ପ୍ରଭୁଙ୍କୁ ପଛ କରି, ମାତା-ପୁତ୍ରାଦିଙ୍କ ସ୍ନେହପାଶରେ ଆକର୍ଷିତ ହୋଇ ଘରକୁ ଆସିବ! ଆଉ ଯଦି ତୁ ମୋର ମାଧବ ହୋଇଥାଉ ତେବେ ତୋ ଭଳି କୁଳାଙ୍ଗାରକୁ ଜନ୍ମ ଦେଇଥିବା ମୋ ଭଳି ଜନନୀକୁ ଧିକ୍ । ଏଭଳି ପୁତ୍ର ହେବା ଅପେକ୍ଷା ତ ମୁଁ ବାଂଝ ହୋଇଥିଲେ ଭଲ ହୋଇଥାନ୍ତା!"

ମାଆଙ୍କ ବଚନ ମାଧବ ଦାସଙ୍କ ହୃଦୟରେ ଶର ଭଳି ବିଦ୍ଧ ହୋଇଗଲା । ସେ ସେହିକ୍ଷଣି ମାଆଙ୍କ ଚରଣରେ ବନ୍ଦନା କରି ପୁରୀକୁ ବାହାରିଗଲେ । ଶପଥ କଲେ ଯେପର୍ଯ୍ୟନ୍ତ ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ପାଇ ନାହାନ୍ତି, ସେପର୍ଯ୍ୟନ୍ତ କିଛି ଖିଆପିଆ କରିବେ ନାହିଁ । ତିନି ଦିନ ବିତିଗଲା । ପ୍ରଭୁ ଜଗନ୍ନାଥ ବାଟରେ ଜଣେ ମହାଜନ ଭକ୍ତକୁ ସ୍ୱପ୍ନରେ କହିଲେ—"ମାଧବ ଦାସକୁ ମୋ ସାକ୍ଷୀ ଦେଇ ପ୍ରସାଦ ସେବନ ପାଇଁ ଅନୁରୋଧ କରିବୁ । ସେ ତିନି ଦିନ ହେଲା ଉପବାସରେ ଯାତ୍ରା କରି କରି କ୍ଳାନ୍ତ ହୋଇ ପଡ଼ିଲାଣି । ସେ ନ ଖାଇବାରୁ ମୁଁ ମଧ୍ୟ ତିନି ଦିନ ହେଲା ଅଖିଆଅପିଆ ଦୁଃଖ ପାଉଛି ।" ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମହାଜନେ ତାଙ୍କୁ ପ୍ରସାଦ ସେବନ କରାଇଲେ । ମାଧବ ଦାସ ପୁରୀରେ ପଦାର୍ପଣ କରି ପ୍ରଭୁଙ୍କ ଦର୍ଶନ କଲେ ଏବଂ ଜୀବନର ଅବଶିଷ୍ଟ ସମୟ ପୁରୀଧାମରେ ରହି ପ୍ରଭୁଙ୍କ ସ୍ମରଣରେ ବିତାଇଲେ ।

ଭାବବିନୋଦିଆ ଠାକୁର ମାଧବ ଦାସଙ୍କ ସହିତ ଅନେକ ବିନୋଦ କରନ୍ତି ।

ଥରେ ପ୍ରଭୁଙ୍କୁ ବିଷଣ୍ଣ ମନରେ ବସିଥିବା ଦେଖି ମାଧବ ଦାସ ପଚାରିଲେ—"ଜୟ ଜୟ ପ୍ରଭୁ! ଆଜି ତୁମର ମନ ଏତେ ଦୁଃଖୀ କାହିଁକି? କଣ ହୋଇଛି ମୋ ଆଗରେ ଖୋଲି କହନ୍ତୁ।" ଠାକୁରେ କହିଲେ—"ମାଧବ! କ'ଣ କରିବା। ଏ ବର୍ଷଟା ପୂରା ବିତିଗଲା, କିନ୍ତୁ ପାଚିଲା ପଣସ ଖାଇବାକୁ ମିଳିଲା ନାହିଁ। ରାଜାଙ୍କ ବଗିଚାରେ ଅଜସ୍ର ପଣସ ପାଚିଛି, କିନ୍ତୁ ଆମକୁ ମିଳିବାକୁ ନାହିଁ। ତୁମେ ଟିକିଏ ସହଯୋଗ କଲେ ଆଜି ପଣସ ଭୋଗ ଲଗାନ୍ତେ!" ମାଧବ ଦାସ କହିଲେ—"ପ୍ରଭୁ! ପିଲାବେଳେ ଗଛ ଚଢ଼ିବାର କିଛି ଅଭ୍ୟାସ ଥିଲା, କିନ୍ତୁ ଏବେ ଗଛ ଚଢ଼ିବାକୁ ଡର ଲାଗୁଛି। ବୁଢ଼ା ହୋଇଗଲିଣି, ଗୋଡ଼ହାତ ଗୋଟାପଣେ ଥରୁଛି। ତା'ଛଡ଼ା ଚୋରି କାମ ତ ମୁଁ ଆଦୌ ଶିଖି ନାହିଁ। ତେଣୁ ମୋ ଦ୍ୱାରା ଏହା ସମ୍ଭବ ହେବ ନାହିଁ।" ବଳଭଦ୍ର ଦେବ ଶ୍ରୀଜଗନ୍ନାଥଙ୍କ ପାଖରେ ବିରାଜମାନ ଥିଲେ। ସେ କହିଲେ—"ତୁମେ ଚିନ୍ତା କର ନାହିଁ। ତୁମର କିଛି ଅସୁବିଧା ହେବ ନାହିଁ। ଆମେ ଦୁହେଁ ତୁମକୁ ଗଛରେ ଚଢ଼େଇ ଦେବୁ।"

ବିଚାର ଗୃହୀତ ହୋଇଗଲା। ଅର୍ଦ୍ଧ ନିଶାରେ ଶ୍ରୀଜଗନ୍ନାଥ ଓ ବଳଭଦ୍ର ଦେବ ମାଧବ ଦାସଙ୍କୁ ସଙ୍ଗରେ ଘେନି ବଗିଚାରେ ପଶିଲେ। ବଳଭଦ୍ର ମାଧବ ଦାସଙ୍କୁ ଗଛରେ ଚଢ଼େଇ ଦେଲେ। ସେ ପାଚିଲା ପାଚିଲା ବଡ଼ ବଡ଼ ପଣସ ଦେଖି ତଳକୁ ପକାଇଲେ। ଦୁଇ ଭାଇ ମନବୋଧ କରି ଖାଇଲେ। ତେଣେ ଗଛରୁ ପଣସ ପଡ଼ିବାର ଦୁଲ୍‌ଦାଲ୍ ଶବ୍ଦ ଶୁଣି ବଗିଚା ଜଗୁଆଳୀଙ୍କ ନିଦ ଭାଙ୍ଗିଗଲା। ଚୋର ପଶିଛନ୍ତି ଭାବି ସେମାନେ ଠେଙ୍ଗା ଧରି ଦୌଡ଼ିଲେ। ପିଲାବେଳୁ ପ୍ରଭୁଙ୍କୁ ଚୋରି କରିବାର କୌଶଳ ଜଣା ଅଛି, ତେଣୁ ଜଗୁଆଳୀ ଆସିବା ଜାଣି ଦୁଇ ଭାଇ ତ ପାଚେରି ଡେଇଁ ପଳେଇଗଲେ, ଅଥଚ ଧରା ପଡ଼ିଗଲେ ମାଧବ ଦାସ। ଅନ୍ଧାର ରାତିରେ ମୁହଁକୁ ମୁହଁ ଦିଶୁ ନ ଥାଏ। ଚୋର ଭାବି ଜଗୁଆଳୀମାନେ ତାଙ୍କୁ ନିର୍ଘାତ ମାଡ଼ ମାରିଲେ ଏବଂ ରାତି ସାରା ବାନ୍ଧି ରଖିଲେ।

ସକାଳ ହେବାରୁ ରାଜାଙ୍କ ଆଗରେ ମାଧବ ଦାସଙ୍କୁ ହାଜର କରାଗଲା। ରାଜା ତାଙ୍କୁ ଭଲଭାବେ ଚିହ୍ନିଥାନ୍ତି। ତାଙ୍କୁ ଏଭଳି ସ୍ଥିତିରେ ଦେଖି ରାଜାଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ! ସେ ସହସା ଆସନରୁ ଉଠିଆସି ତାଙ୍କ ପାଦତଳେ ଭକ୍ତିପୂତ ଚିତ୍ତରେ ପ୍ରଣାମ କଲେ। ଏହା ଦେଖି ଜଗୁଆଳୀମାନେ ଭୟରେ ବରଡ଼ା ପତ୍ର ଭଳି ଥରିଲେ। ରାଜା କ୍ରୋଧିତ ହୋଇ ସେମାନଙ୍କୁ ଦଣ୍ଡ ଦେବାକୁ ଚାହୁଁଥିଲେ, କିନ୍ତୁ ମାଧବ ଦାସ ବାରଣ କରି କହିଲେ, ମଣିମା! ଏମାନେ ସ୍ୱକର୍ତ୍ତବ୍ୟ କରି

ରାଜସେବକର ଧର୍ମ ପାଳନ କରିଛନ୍ତି, ତେଣୁ ଏମାନେ ବରଂ ପୁରସ୍କାରର ପାତ୍ର। ମାଧବ ଦାସଙ୍କ ଆଜ୍ଞା ପାଳନ କରି ରାଜା ସେମାନଙ୍କ ନାଆଁରେ ବାରମାଣେ ଜମି ଲେଖିଦେଲେ।

ମାଧବ ଦାସଙ୍କ ସଙ୍ଗରେ ପ୍ରଭୁ ତାଙ୍କ ବଗିଚ୍ଚାରୁ ପଣସ ଖାଇବାକୁ ଆସିଥିବା କଥା ଶୁଣି ରାଜା ଅତ୍ୟନ୍ତ ଭାବବିହ୍ୱଳ ହୋଇ ପଡ଼ିଲେ। ଏହି ଲୀଳା ମାଧ୍ୟମରେ ମହାପ୍ରଭୁ ଜଗନ୍ନାଥ ତାଙ୍କ ଉପରେ କରୁଣା କରିଛନ୍ତି ଭାବି ସେ ପ୍ରଭୁଙ୍କ ପାଦପଦ୍ମରେ କୋଟି କୋଟି ପ୍ରଣାମ ଜଣାଇଲେ ଏବଂ ସବୁଦିନ ପାଇଁ ବଗିଚ୍ଚାଟିକୁ ପ୍ରଭୁଙ୍କ ନାଆଁରେ ତମ୍ବାପତ୍ର ଉପରେ ଲେଖିଦେଇ ଜୀବନ କୃତାର୍ଥ କଲେ।

ସାରା ସଂସାର ପ୍ରଶ୍ନ କରେ ଯେ ଭଗବାନଙ୍କୁ କିଏ ଦେଖିଛି? କାହାରିକୁ ସେ ଦିଶନ୍ତି ନାହିଁ। କିନ୍ତୁ ଭକ୍ତ ଭାବରେ ବଶ ହୋଇ ସେ ସାକ୍ଷାତ୍ ତା ସଙ୍ଗେ ଲୀଳା କରିଥାନ୍ତି। ଯେଉଁ ଭକ୍ତର ଯେପରି ଭାବ, ତା ସଙ୍ଗେ ଭଗବାନ ସେହିପରି ଲୀଳା କରିଥାନ୍ତି। ଭକ୍ତ ମାଧବ ଦାସଙ୍କର ଭାବ ଦେଖି ଭଗବାନ ସଖ୍ୟଭାବରେ ତାଙ୍କ ସଙ୍ଗେ ନାନା ଲୀଳା କରି ସୁଖ ପାଉଥିଲେ। ସମଗ୍ର ଜଗତର ସୁଖଦାତାଙ୍କୁ ସୁଖ ଦେଉଥିବା ଭକ୍ତର ଜୀବନ ସତରେ ଧନ୍ୟ।



## ଭକ୍ତ ଶ୍ରୀବିଲ୍ୱମଙ୍ଗଳ

ହୃଦୟରେ ଥରେମାତ୍ର ଭକ୍ତିବୀଜ ରୋପଣ ହୋଇଗଲା ପରେ ତାହା ଶତଚେଷ୍ଟା କଲେ ମଧ୍ୟ ନଷ୍ଟ ହେବ ନାହିଁ। କୌଣସି କୁସଙ୍ଗରେ ପଡ଼ିଗଲେ କିଛି ଦିନ ପାଇଁ ତାହା ହୁଏତ ସୁପ୍ତ ରହିଯାଇ ପାରେ, କିନ୍ତୁ ଦିନ ଆସିବ ଅନୁକୂଳ ସାର-ପାଣି ମିଳିଗଲେ ତାହା ନିଶ୍ଚିତ ଅଙ୍କୁରିତ ହୋଇଯିବ। ଭଗବାନ ଅର୍ଜୁନଙ୍କୁ ଆଶ୍ୱାସନା ଦେଇ କହିଛନ୍ତି—''ହେ ପାର୍ଥ! ଇହଲୋକ ବା ପରଲୋକରେ କେଉଁଠି ହେଲେ ବି ମୋ ଭକ୍ତର ବିନାଶ ହୁଏ ନାହିଁ। ଆତ୍ମକଲ୍ୟାଣ ମାର୍ଗରେ ଯିଏ ଥରେ ପାଦ ରଖିଛି, ସେ ନିଶ୍ଚୟ ସଫଳତାର ଚରମ ସୀମାରେ ପହଞ୍ଚିବ।''

ଏହି ଭଗବଦ୍‌ବାଣୀର ଜ୍ୱଳନ୍ତ ଉଦାହରଣ ହେଲେ ଭକ୍ତ ଶ୍ରୀବିଲ୍ୱମଙ୍ଗଳ। ସେ ଦାକ୍ଷିଣାତ୍ୟର ବେଣାନଦୀ କୂଳରେ ପବିତ୍ର ବ୍ରାହ୍ମଣ ପରିବାରରେ ଜନ୍ମ ଲାଭ କରିଥିଲେ। ଜୀବନରେ ଅନେକ ଝଡ଼ଝଞ୍ଜା ଓ ବାଧା-ବିଘ୍ନ ମଧ୍ୟରେ ଗତି କରି ମଧ୍ୟ ଶେଷକୁ ସେ ପ୍ରଭୁଙ୍କୁ ପାଇ ଜୀବନ ଧନ୍ୟ କରିଥିଲେ। କୁହାଯାଏ ଯେ

ସଂସାରର ମଙ୍ଗଳ ପାଇଁ ବିଲ୍ୱବୃକ୍ଷ ତୁଲ୍ୟ ମଙ୍ଗଳସ୍ୱରୂପ ବିଲ୍ୱମଙ୍ଗଳ ଥିଲେ ଭଗବାନଙ୍କର ମହାନ୍ କୃପାପାତ୍ର । ବିଲ୍ୱମଙ୍ଗଳଙ୍କ ବାପାଙ୍କ ନାମ ଥିଲା ଶ୍ରୀରାମଦାସ । ସେ ଥିଲେ ଅତ୍ୟନ୍ତ କୁଳୀନ ଓ ସଦାଗ୍ରରୀ ବ୍ରାହ୍ମଣ । ବାଲ୍ୟକାଳରୁ ଗୃହର ପବିତ୍ର ବାତାବରଣରେ ବିଲ୍ୱମଙ୍ଗଳ ବଢ଼ି ଗ୍ରଲିଲେ । ପିତା-ମାତାଙ୍କ ଭକ୍ତିର ପ୍ରଭାବ ତାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ସେ ଅଧିକ ସମୟ ପ୍ରଭୁଙ୍କ ଆରାଧନାରେ ବିତାଉଥିଲେ । କିନ୍ତୁ କୁସଙ୍ଗର ପ୍ରଭାବ କେତେବେଳେ ଯେ ମନକୁ କୁମାର୍ଗକୁ ଟାଣିନେବ ତାହା କହିବା ଅତି ଦୁଷ୍କର । ସେଥିପାଇଁ ଗୀତାରେ ଭଗବାନ ଅର୍ଜୁନଙ୍କୁ ସତର୍କ କରାଇ କହିଛନ୍ତି—

**ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋନୁବିଧିୟତେ ।**
**ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି ॥**

(୨ । ୬୭)

''ହେ ଅର୍ଜୁନ! ବିଷୟରେ ବିଚରଣ କରୁଥିବା ଇନ୍ଦ୍ରିୟଗଣଙ୍କ ମଧ୍ୟରୁ ଯେଉଁ ଇନ୍ଦ୍ରିୟଟି ମନକୁ ନିଜର ଅନୁଗାମୀ କରାଇ ନିଏ, ସେହି ମନ ଜଳରେ ବାୟୁ ନୌକାକୁ ଅପହରଣ କଲାପରି ମନୁଷ୍ୟର ବୁଦ୍ଧିକୁ ଅପହରଣ କରିନିଏ ।''

ଏ କଥା ଭାଗବତରେ ମଧ୍ୟ କୁହାଯାଇଛି ଯେ ମନକୁ କଦାପି ମିତ୍ର ବୋଲି ଭାବିବ ନାହିଁ । ପୋଖରୀ କୂଳରେ ଉଠିଥିବା ବେଣାବୁଦା, କୁଶ ଓ ଅନ୍ୟାନ୍ୟ ଘାସ ଜାତୀୟ ଗୁଳ୍ମ ଯେପରି ଧୀରେ ଧୀରେ ପୋଖରୀରୁ ପାଣି ଶୋଷି ନିଅନ୍ତି, ସେହିପରି ମନ ବୁଦ୍ଧିକୁ ନିଜର ବଶ କରିନିଏ । କେବେ ଏଭଳି ଅଭିମାନ କରିବ ନାହିଁ ଯେ ମନ ବଶୀଭୂତ ହୋଇଗଲା ବୋଲି । ତା' ପ୍ରତି ବିଶ୍ୱାସ କରିବାର ଅର୍ଥ ନିଜର ଅଧୋପତନକୁ ନିମନ୍ତ୍ରଣ ଦେବା—

**ନ କୁର୍ଯ୍ୟାତ୍ କର୍ହିଚିତ୍ ସଖ୍ୟଂ ମନସି ହ୍ୟନବସ୍ଥିତେ ।**
**ଯଦ୍ ବିଶ୍ରମ୍ଭାଦ୍ ଚିରାଚ୍ଚୀର୍ଣ୍ଣଂ ତପଶ୍ଚସ୍କନ୍ଦ ଈଶ୍ୱରଃ ॥**

''ଅବ୍ୟବସ୍ଥିତ ମନକୁ କଦାପି ମିତ୍ର ଭାବିବ ନାହିଁ । ତାହାକୁ ବିଶ୍ୱାସ କରିବାରୁ ମହାଦେବଙ୍କ ଭଳି ଈଶ୍ୱର ମଧ୍ୟ ଚିରାଚରିତ ତପସ୍ୟାରୁ ବିରତ ହୋଇଯାଇଥିଲେ ।''

ଚଞ୍ଚଳ ମନର ବଶୀଭୂତ ହୋଇଯିବାରୁ ବିଲ୍ୱମଙ୍ଗଳଙ୍କର ଜୀବନ ଧାରା ବଦଳିଗଲା । ସେ ଚିନ୍ତାମଣି ବେଶ୍ୟା ପ୍ରତି ଆକୃଷ୍ଟ ହୋଇ ନିଜକୁ ତା' ହାତର ଖେଳନା କଣେଇ କରିଦେଲେ । ନଦୀରେ ଏକ ପାର୍ଶ୍ୱରେ ରହୁଥାନ୍ତି ବିଲ୍ୱମଙ୍ଗଳ

ଏବଂ ଅପର ପାର୍ଶ୍ୱରେ ରହୁଥାଏ ଚିନ୍ତାମଣି ବେଶ୍ୟା । ଏକଦା କୌଣସି କାର୍ଯ୍ୟରେ ବିଲ୍ୱମଙ୍ଗଳ ଯାଇଥିଲେ ନଦୀ ସେ ପାଖ ସହରକୁ । ଦୈବଯୋଗକୁ ସେଦିନ ଚିନ୍ତାମଣିର ବେଶ୍ୟାଳୟରେ ଉତ୍ସବ ଆୟୋଜିତ ହୋଇଥାଏ । ଗାନତାନରେ କମ୍ପି ଉଠୁଥାଏ ବେଶ୍ୟାଳୟର ରାଜସିକ ପରିବେଶ । ସହସା ବିଲ୍ୱମଙ୍ଗଳଙ୍କ ମନ ଆକୃଷ୍ଟ ହୋଇଗଲା ଗ୍ରାମ୍ୟ ଗୀତରେ । କୌତୁହଳବଶତଃ କଣ ହେଉଛି ବୋଲି ଜାଣିବା ପାଇଁ ସେ ବେଶ୍ୟାଳୟରେ ପହଞ୍ଚିଗଲେ । ସେ ସେମାନଙ୍କ ବେଶଭୂଷା, ଭାବଭଙ୍ଗୀ ଓ ନୃତ୍ୟଗୀତରେ ମୁଗ୍ଧ ହୋଇ ନିଜର ଆତ୍ମଗରିମା ହରାଇ ବସିଲେ । ଅପରପକ୍ଷେ ବିଲ୍ୱମଙ୍ଗଳଙ୍କ ବ୍ରହ୍ମତେଜସମ୍ପନ୍ନ ମୁଖକାନ୍ତି ଦର୍ଶନ କରି ଚିନ୍ତାମଣି ବେଶ୍ୟା ମଧ୍ୟ ତାଙ୍କ ପ୍ରତି କାମାସକ୍ତ ହୋଇଗଲା । ଉଭୟେ ପାରସ୍ପରିକ ଆକର୍ଷଣରେ ବାନ୍ଧି ହୋଇଗଲେ । ଦୁହିଁଙ୍କର ଜୀବନ ସେହି ଘୃଣିତ କର୍ମରେ ବିତିବାକୁ ଲାଗିଲା ।

ଏ ଘଟଣାରୁ ମନୁଷ୍ୟ କୁସଙ୍ଗରୁ କେତେ ଦୂରେଇ ରହିବା କଥା, ତାହା ଶିଖିବା ଉଚିତ । ବିଲ୍ୱମଙ୍ଗଳ ବ୍ରାହ୍ମଣ-ସଂସ୍କାର ଓ ସଦ୍‌ଗୁଣରେ ସମ୍ପନ୍ନ ଥିଲେ ମଧ୍ୟ ବେଶ୍ୟାକୁ ଦେଖିବା କ୍ଷଣି ତାଙ୍କର ସବୁ ଜ୍ଞାନ, ଧ୍ୟାନ ଓ ଧୈର୍ଯ୍ୟ ଦୂରେଇଗଲା । ତେଣୁ ଯଥାର୍ଥରେ କୁହାଯାଇଛି, "ଯେପର୍ଯ୍ୟନ୍ତ ହୃଦୟରେ କାମରୂପୀ ଅଗ୍ନି ଲାଗି ନାହିଁ, ସେହି ପର୍ଯ୍ୟନ୍ତ ମନୁଷ୍ୟର ପାଣ୍ଡିତ୍ୟ, କୁଳୀନତା ଓ ବିବେକ କାମ କରେ । ଏ ପୃଥିବୀପୃଷ୍ଠରେ ମତ୍ତଗଜର କୁମ୍ଭସ୍ଥଳକୁ ବିଦୀର୍ଣ୍ଣ କରିପାରିବା ଭଳି ଯୋଦ୍ଧାଙ୍କର ଅଭାବ ନାହିଁ, ଅନେକ ଲୋକ ବଳବାନ୍ ସିଂହକୁ ମାରିବାରେ ମଧ୍ୟ ଦକ୍ଷ ହୋଇ ପାରନ୍ତି, କିନ୍ତୁ କାମଦେବର ଦର୍ପକୁ ନଷ୍ଟ କରିବା ମନୁଷ୍ୟଙ୍କ ସଂଖ୍ୟା ବିରଳ ।"

ଏ କଥା ନିରାଟ ସତ୍ୟ ଯେ କାମୀ ପୁରୁଷ ପାଇଁ ଲୋକଲଜ୍ଜା ଓ ଡରଭୟ ବୋଲି କିଛି ରହେ ନାହିଁ—**'କାମାତୁରାଣାଂ ନ ଭୟଂ ନ ଲଜ୍ଜା ।'** ବିଲ୍ୱମଙ୍ଗଳ ଯେଉଁ ହୃଦୟ ସିଂହାସନରେ ପ୍ରଭୁଙ୍କୁ ବସାଇ ଆରାଧନା କରୁଥିଲେ, ଏବେ ସେଠାରେ ବସାଇ ଦେଲେ ଚିନ୍ତାମଣିକୁ । ତାଙ୍କର ଏକମାତ୍ର ଦୈନନ୍ଦିନ କାର୍ଯ୍ୟ ରହିଗଲା ଚିନ୍ତାମଣିକୁ ପ୍ରସନ୍ନ କରିବା । ତା'ର ପ୍ରେମପାଶରେ ବାନ୍ଧି ହୋଇ ସେ ନିଜର ବୃଦ୍ଧ ପିତା-ମାତାଙ୍କୁ ଓ ପତିବ୍ରତା ସ୍ତ୍ରୀକୁ ମଧ୍ୟ ପରିତ୍ୟାଗ କରିବାକୁ ପଛଘୁଞ୍ଚା ଦେଲେ ନାହିଁ । ସେ କାହା କଥା ନ ଶୁଣି ଅଧିକ ସମୟ ରହିଲେ ଚିନ୍ତାମଣିର ବେଶ୍ୟାଳୟରେ ।

ଏ କଥା ତାଙ୍କ ବୃଦ୍ଧ ପିତା ଶ୍ରୀରାମଦାସଙ୍କ ମନରେ କଠୋର ଆଘାତ ଦେଲା । ସେ କେବେ ଭାବି ନ ଥିଲେ ଯେ ବିଲ୍ୱମଙ୍ଗଳ ଦିନେ ବେଶ୍ୟାଳୟରେ

ଦିନ କାଟିବ। ପୁତ୍ରର କୁକର୍ମରେ ଦୁଃଖୀ ହୋଇ ଅନେକ ଥର ସେ ତାକୁ ବୁଝାଇବାକୁ ଚେଷ୍ଟା ମଧ୍ୟ କରିଛନ୍ତି। କିନ୍ତୁ ତାଙ୍କର ସବୁ ଉଦ୍ୟମ ନିଷ୍ଫଳ ହୋଇଗଲା। ଶେଷକୁ ନିରାଶ ହୋଇ କର୍ମକୁ ଆଦରି ରହିବା ଛଡ଼ା ତାଙ୍କ ପାଇଁ ଅନ୍ୟ କୌଣସି ରାସ୍ତା ନ ଥିଲା। ରାତିଦିନ ପୁଅ କଥା ଝୁରି ଝୁରି ତାଙ୍କର ଦେହ ଦିନକୁ ଦିନ ଦୁର୍ବଳ ହୋଇଗଲା ଏବଂ ପରିଶେଷରେ ସେ ନିଜର ଶେଷ ନିଶ୍ୱାସ ତ୍ୟାଗ କରି ପରଲୋକ ଗମନ କଲେ।

ଏଥର ବିଲ୍ୱମଙ୍ଗଳ ହୋଇଗଲେ ପରମ ସ୍ୱତନ୍ତ୍ର। ଚିନ୍ତାମଣିର ବେଶ୍ୟାଳୟ ହୋଇଗଲା ତାଙ୍କର ସ୍ଥାୟୀ ନିବାସ ସ୍ଥାନ। ସେ ଚିନ୍ତାମଣିର ଆସକ୍ତିରେ ନିଜକୁ ଏଭଳି ହଜାଇ ଦେଲେ ଯେ ସଂସାରରେ ଯେପରି ତାଙ୍କ ପାଇଁ ଆଉ କେହି ହେଲେ ରହିଲେ ନାହିଁ। ଘରେ ସତୀ, ସାଧ୍ୱୀ ପତିବ୍ରତା ସ୍ତ୍ରୀର ବେଦନା କଥା ମଧ୍ୟ ସେ ଭୁଲିଯାଇଥିଲେ। ଏହିପରି ଚିନ୍ତାମଣିର ମୋହରେ ତାଙ୍କର ଦିନଗୁଡ଼ି ବିତିଚାଲିଲା। ପ୍ରତି ବର୍ଷ ଭଳି ତାଙ୍କ ବାପାଙ୍କର ଶ୍ରାଦ୍ଧ ଦିନ ପଡ଼ିବାରୁ ବିଲ୍ୱମଙ୍ଗଳଙ୍କର ସ୍ତ୍ରୀ ଏଭଳି ସ୍ଥିତିରେ କ'ଣ କରିବେ ବୋଲି ଗାଆଁ ଲୋକଙ୍କ ପରାମର୍ଶ ଲୋଡ଼ିଲେ। ଗାଆଁ ଲୋକେ କହିଲେ ଆମେ ଅନ୍ୟ ସବୁ ସାହାଯ୍ୟ କରିଦେବୁ ସିନା, କିନ୍ତୁ ପୁଅ ଥାଉ ଥାଉ ଅନ୍ୟ କିଏ ପିଣ୍ଡପାଣି ଦେବ? କେତେକ ବୃଦ୍ଧ ଲୋକ ବିଲ୍ୱମଙ୍ଗଳଙ୍କୁ ଡାକି ଆଣିବାକୁ ପ୍ରସ୍ତାବ ଦେଲେ। କିନ୍ତୁ କେହି ଯିବାକୁ ମଙ୍ଗିଲେ ନାହିଁ। ସମସ୍ତେ ଜାଣିଥିଲେ ଯେ ସେ କାହାରି କଥା ମାନିବା ସ୍ଥିତିରେ ନାହାନ୍ତି। ପରିଶେଷରେ ତାଙ୍କୁ ଡାକି ଆଣିବାକୁ ବାହାରିଲେ ତାଙ୍କର ସୁଲକ୍ଷଣା ପତିବ୍ରତା ସ୍ତ୍ରୀ। ସେ ଭଲଭାବେ ଜାଣିଥିଲେ ଯେ ତାଙ୍କ କଥା ବିଲ୍ୱମଙ୍ଗଳ ଆଦୌ ମାନିବେ ନାହିଁ। ତେଣୁ ସେ ପହଞ୍ଚିଲେ ଚିନ୍ତାମଣି ନିକଟରେ। ପାଦତଳେ ପ୍ରଣାମ ଜଣାଇ ବିନମ୍ର ଭାବରେ କହିଲେ—"ହେ ଦେବୀ! ମୋ ଉପରେ ଟିକିଏ ଦୟା କର। ଶ୍ୱଶୁରଙ୍କ ଶ୍ରାଦ୍ଧ ନିମନ୍ତେ ସ୍ୱାମୀଙ୍କୁ ଦିନକ ପାଇଁ ମୋ ସଙ୍ଗରେ ଯିବାକୁ ଆଜ୍ଞା ଦିଅ।"

ପତିବ୍ରତା ନାରୀର ଅନ୍ତର ବେଦନା ଓ ବିନମ୍ର ବ୍ୟବହାରରେ ତରଳିଗଲା ଚିନ୍ତାମଣିର ହୃଦୟ। ସେ ବେଶ୍ୟା ଥିଲା ସତ, କିନ୍ତୁ ସତୀଧର୍ମ ବିଷୟରେ ଯେ ସମ୍ପୂର୍ଣ୍ଣ ଅପରିଚିତ ଥିଲା, ତା' ନୁହେଁ। ବେଶ୍ ବୁଝି ପାରିଥିଲା ସେ ପାତିବ୍ରତ୍ୟର ମର୍ଯ୍ୟାଦାକୁ। ଅତି ଆଦରରେ ସେ ବିଲ୍ୱମଙ୍ଗଳଙ୍କୁ ସେହି ପତିପରାୟଣା ସତୀ ନାରୀଙ୍କ ସହିତ ଯିବାକୁ ଅନୁମତି ପ୍ରଦାନ କରିଦେଲା।

ବିଲ୍ୱମଙ୍ଗଳ ଚିନ୍ତାମଣି କଥା ମାନି ଚାଲିଗଲେ ସତ, କିନ୍ତୁ ସେଠାରେ ତାଙ୍କର

ମନ ଆଦୌ ଲାଗିଲା ନାହିଁ। କଇଁଛର ମନ ଅଣ୍ଡା ପାଖରେ ରହିଥିବା ପରି ତାଙ୍କ ମନ ଲାଗି ରହିଲା ଚିନ୍ତାମଣିର ରୂପ ସୌନ୍ଦର୍ଯ୍ୟରେ। ସେ କେତେବେଳେ ପିତୃଶ୍ରାଦ୍ଧରୂପୀ ପିଞ୍ଜରାରୁ ମୁକ୍ତ ହୋଇ ଉନ୍ମୁକ୍ତ ପକ୍ଷୀ ଭଳି ଉଡ଼ିଯିବେ ବେଶ୍ୟାଳୟକୁ, ତାହା ଚିନ୍ତା କରୁଥାନ୍ତି। କାଳବିଳମ୍ବ ତାଙ୍କ ପାଇଁ ଅସହ୍ୟ ହୋଇ ପଡୁଥିଲା। କୌଣସି ପ୍ରକାରେ ଶ୍ରାଦ୍ଧ ସାରି ସେ ପଳାଇଯିବାକୁ ବାହାରିଲେ ଚିନ୍ତାମଣି ନିକଟକୁ। ସେତେବେଳକୁ କିନ୍ତୁ ରାତ୍ରି ହୋଇ ଯାଇଥାଏ। ସମସ୍ତେ ତାଙ୍କୁ ରାତିରେ ଯିବାକୁ ବାରଣ କରୁଥାନ୍ତି, କିନ୍ତୁ ସେ କାହା କଥା ନ ଶୁଣି ନଦୀର ପ୍ରଖର ଜଳ ପ୍ରବାହ ସମୁଦ୍ର ଅଭିମୁଖେ ଧାବମାନ ହେବା ପରି ଆଗେଇ ଗ୍ଲଲିଲେ ଚିନ୍ତାମଣିର ମିଳନ ଆଶାରେ।

ବିଲ୍ୱମଙ୍ଗଳଙ୍କର ସ୍ତ୍ରୀ ଥିଲେ ପରମ ସାଧ୍ୱୀ ଓ ପତିବ୍ରତା। ସ୍ୱାମୀ ବେଶ୍ୟାଳୟରେ ରହିବା ଦିନଠାରୁ ସେ ବିରହ ବ୍ୟଥାରେ ହନ୍ତସନ୍ତ ହୋଇ ଦିନ କାଟୁଥିଲେ। ତାଙ୍କ ପାଇଁ ଜୀବନ ଧାରଣର ଅନ୍ୟ କୌଣସି ଆଧାର ନ ଥିଲା। ପିତୃଶ୍ରାଦ୍ଧ ପରେ ପ୍ରେମାବେଗରେ ବିଲ୍ୱମଙ୍ଗଳ ଚିନ୍ତାମଣି ନିକଟକୁ ଦୌଡ଼ିବା ଦେଖି ସେ ମଧ୍ୟ ତାଙ୍କର ଅନୁଗମନ କଲେ। କିନ୍ତୁ ଅନ୍ଧାର ରାତିରେ ସ୍ୱାମୀଙ୍କୁ ପାଇବା ତାଙ୍କ ପକ୍ଷେ ଅସମ୍ଭବ ହୋଇ ପଡ଼ିଲା। ସେ ଭାବିଲେ ଏଭଳି ଆଶ୍ରୟହୀନ ପ୍ରାଣକୁ ଧାରଣ କରି ଆଉ କି ଲାଭ? ପ୍ରାଣ ବିସର୍ଜନ କରିବା ବରଂ ଏହାଠାରୁ ଶ୍ରେୟସ୍କର ହେବ। ଏହି ଭାବନାରେ ସେ ପ୍ରଭୁଙ୍କୁ ସ୍ମରଣ କରି କୃଷ୍ଣବେଣା ନଦୀରେ ଝାସଦେଲେ।

ଏଥର ବିଲ୍ୱମଙ୍ଗଳଙ୍କ ପରୀକ୍ଷାର ସମୟ ଆସିଗଲା। ତାଙ୍କ ପ୍ରୀତିର ଅବାଧ ଗତିରେ ବାଧା ସୃଷ୍ଟି କଲା କୂଳ ଲଙ୍ଘନ କରି ବହୁଥିବା କୃଷ୍ଣବେଣା ନଦୀ। ମନେ ମନେ ଭାବୁଥାନ୍ତି ଯେ ନଦୀର ପ୍ରଖର ସ୍ରୋତରେ ଭାସିଗଲେ ପ୍ରାଣ ଯିବ ଏବଂ ଚିନ୍ତାମଣିର ବିୟୋଗରେ ମଧ୍ୟ ପ୍ରାଣ ଯିବ। କୌଣସି ଉପାୟରେ ଯଦି ନଦୀ ପାର ହୋଇଯାଆନ୍ତି, ତେବେ ଚିନ୍ତାମଣିର ଦର୍ଶନ ମିଳିବ। ତେଣୁ ବିରହ ଅଗ୍ନିରେ ଜଳି ମରିବା ଅପେକ୍ଷା ନଦୀର ଶୀତଳ ଜଳରେ ପ୍ରାଣ ଗ୍ଲଲିଯିବା ବରଂ ଭଲ। ଏଭଳି ସ୍ଥିର କରି ସେ ହଠାତ୍ ଡେଇଁ ପଡ଼ିଲେ ନଦୀର ପ୍ରଖର ସ୍ରୋତକୁ। କିଛି ବାଟ ପହଁରିବା ପରେ ହାତଗୋଡ଼ ଆଉ କାମ କଲା ନାହିଁ। ଅକାତକାତ ପାଣିରେ ତାଙ୍କର ସାହସ ହଜିଗଲା। ଯୁଆଡ଼େ ଗ୍ଲହିଁଲେ ଖାଲି ଜଳମୟ, କୂଳ ଦିଶୁ ନ ଥାଏ। ସେ କୌଣସି ଆଶ୍ରୟ ଖୋଜୁଥାନ୍ତି। ଦୈବଯୋଗକୁ ଉପର ପଟୁ ଭାସି ଆସୁଥିବା ଏକ ଶବର ଆଶ୍ରୟ ତାଙ୍କୁ ମିଳିଗଲା। ବେଶ୍ୟା ସଙ୍ଗେ ମିଳନର ଉତ୍କଣ୍ଠାରେ ତାହା ଯେ ତାଙ୍କ ପତ୍ନୀଙ୍କ ଶବ, ଏ କଥା ତାଙ୍କୁ ଜଣା ପଡ଼ିଲା ନାହିଁ।

ତାହାକୁ ନାବ କରି ସେ ପାର ହୋଇଗଲେ ଅଥଳ ନଦୀକୁ। ଧନ୍ୟ ସେହି ପତିବ୍ରତା ନାରୀକୁ, ଯିଏ ମୃତ୍ୟୁ ପରେ ମଧ୍ୟ ନିଜ ମୃତ ଶରୀର ଦ୍ୱାରା ସ୍ୱାମୀଙ୍କ ପ୍ରାଣରକ୍ଷା କରି ମହତ୍ତର ସେବା କରି ପାରିଲା! ପରବର୍ତ୍ତୀ ସମୟରେ ସେହି ମୃତଦେହକୁ ଦେଖି ଚିନ୍ତାମଣି ଓ ବିଲ୍ୱମଙ୍ଗଳଙ୍କ ମନରେ ପରମ ବୈରାଗ୍ୟ ସୃଷ୍ଟି ହୋଇ ପାରିଲା!

ବିଲ୍ୱମଙ୍ଗଳ କୌଣସି ସାଧାରଣ ମନୁଷ୍ୟ ନ ଥିଲେ। ଭଗବାନ ତାଙ୍କୁ ଆପଣାର କରି ସାରିଥିଲେ। ସେ ପୂର୍ବଜନ୍ମର ସଂସ୍କାର ଯୋଗୁଁ ମାୟାମୋହିତ ହୋଇ ବେଶ୍ୟାର ପ୍ରେମରେ ପାଗଳ ଭଳି ନିଜ ପ୍ରାଣକୁ ବାଜି ଲଗାଇ ନଦୀକୁ ଡେଇଁ ପଡ଼ିଲେ। ମଝି ନଦୀରେ ତାଙ୍କୁ ବୁଡ଼ି ଯାଉଥିବାର ଦେଖି ଭଗବାନ ନନ୍ଦନନ୍ଦନ ଭାବିଲେ, "ଧନ୍ୟରେ ବିଲ୍ୱମଙ୍ଗଳ! ଧନ୍ୟ ତୋର ପ୍ରେମ! ଏମିତି ପ୍ରେମୀ ତ ମୋତେ ଦରକାର। ଏହାର ପ୍ରାଣ ରକ୍ଷା କରି ନିଶ୍ଚୟ ଏହାକୁ ମୁଁ ମୋ ଆଡ଼କୁ ଟାଣିନେବି।" ଏଭଳି ବିଚାର କରି ସେ ତାଙ୍କୁ ସେହି ଶବର ଆଶ୍ରୟ ଦେଇ ତାଙ୍କ ପ୍ରାଣ ରକ୍ଷା କଲେ।

ଘନ ଅନ୍ଧକାର ରାତିରେ ନଦୀ ପାର ହୋଇ ବିଲ୍ୱମଙ୍ଗଳ ଟିକିଏ ଆଶ୍ୱସ୍ତ ହେଲେ। ମନେ ମନେ ଭାବୁଥାନ୍ତି, "ସତରେ ଚିନ୍ତମଣି କେତେ ଭଲ ପାଉଛି ମୋତେ! ମୋ ଆସିବା ଜାଣି କେଡ଼େ ସୁନ୍ଦର ନାବଟିଏ ପଠାଇ ମୋ ପ୍ରାଣରକ୍ଷା କରିଦେଲା! ଯାହାହେଉ, ଏଥର କେମିତି ତା' ଭବନରେ ପ୍ରବେଶ କରିବି?"

ବେଶ୍ୟାଳୟର ଚାରି ପାଖରେ ବୁଲି ବୁଲି ଦେଖିଲେ ଯେ ସବୁ ଦ୍ୱାର ଭିତରୁ ବନ୍ଦ। ସହସା ସେ ଦେଖିଲେ ରସି ପରି କିଛି ଗୋଟାଏ ଲଟକିଛି। ତାହା ପ୍ରକୃତରେ ଥିଲା ଗୋଟିଏ ବିରାଟକାୟ ସର୍ପ। ସର୍ପଟି ଛାତ ଉପରେ ଗୋଟିଏ ବାଉଁଶରେ ଗୁଡ଼େଇ ହୋଇ ତଳକୁ ଲମ୍ବିଥାଏ। ତାହାକୁ ଦଉଡ଼ି ଭାବି ସେ ମନେ ମନେ ଚିନ୍ତାମଣିକୁ ଅଶେଷ ଧନ୍ୟବାଦ ଦେଲେ ଏବଂ ସେହି ସାପଟିକୁ ଧରି ଛାତ ଉପରକୁ ଚଢ଼ିଗଲେ। ଯାଇ ଦେଖନ୍ତି ତ ସିଡ଼ି କବାଟ ମଧ୍ୟ ବନ୍ଦ ଅଛି। ସେ ଚିନ୍ତାମଣିକୁ ନିଦରୁ ଉଠାଇବା ଉଚିତ ମନେକଲେ ନାହିଁ। ଭାବିଲେ ରାତି ଅଧରେ କବାଟ ବାଡ଼େଇଲେ ପଡ଼ିଶା ଘରର ଲୋକେ ଉଠିଯାଇ ପାରନ୍ତି ଏବଂ ଚୋର ଭାବି ପାଟିତୁଣ୍ଡ କରି ପାରନ୍ତି। ତା' ଛଡ଼ା ଏଥିରେ ଅଧିକ ବିଳମ୍ବ ହେବ। ଗୋଟିଏ ଗୋଟିଏ କ୍ଷଣ ତାଙ୍କୁ ଯୁଗ ସମ ମନେ ହେଉଥାଏ। ତେଣୁ ସେ ହଠାତ୍ ଛାତ ଉପରୁ ଅଗଣାକୁ ଡେଇଁ ପଡ଼ିଲେ। ଧୁମ୍ କରି ଶବ୍ଦ ହେବାରୁ ଅଗ୍ନନକ

ଚିନ୍ତାମଣିର ନିଦ ଭାଙ୍ଗିଗଲା। କ'ଣ ପଡ଼ିଲା ବୋଲି ଆସି ଦେଖିଲା ବେଳକୁ ବିଲ୍ୱମଙ୍ଗଳ!

ଚିନ୍ତାମଣି ମୁଣ୍ଡରେ ହାତ ଦେଲା। ଆଶ୍ଚର୍ଯ୍ୟରେ ପଚାରିଲା—"ବିଲ୍ୱମଙ୍ଗଳ ତୁମେ ଏ କ'ଣ କଲ! ଏ ଘନ ଅନ୍ଧକାର ରାତିରେ ଜୀବନକୁ ପାଣିଛଡ଼ାଇ ଚାଲି ଆସିଲ ମୋ ଘରକୁ? ତୁମ ପତ୍ନୀ କ'ଣ ତୁମକୁ ବାରଣ କଲେ ନାହିଁ।" ବିଲ୍ୱମଙ୍ଗଳ ସହର୍ଷ କଣ୍ଠରେ କହି ଉଠିଲେ—"ଚିନ୍ତାମଣି! ତୁମ ଆଗରେ ସେ ତୁଚ୍ଛ ନାରୀର ମହତ୍ତ୍ୱ ବା କେତେ? ତା'ର ସାହସ କାହିଁ ମୋତେ ଅଟକାଇବା ପାଇଁ।" ଟିକିଏ ଦୁଃଖୀ ହୋଇ କହିଲା ଚିନ୍ତାମଣି—"ନାଇଁ, ନାଇଁ। ସେ ପତିବ୍ରତା ନାରୀ ଆଗରେ ମୋର ବା କି ମହତ୍ତ୍ୱ? କେଉଁଠି ସେ ପରମ ପତିବ୍ରତା ନାରୀ, ଆଉ କେଉଁଠି ମୁଁ କୁଳକଳଙ୍କିନୀ ଦୁରାଚାରିଣୀ ବେଶ୍ୟା! ମୁଁ ପତିବ୍ରତା ଧର୍ମ ପାଳନ କରି ନାହିଁ ସତ, କିନ୍ତୁ ଆଜି ବେଶ୍ ବୁଝି ପାରିଲି ପାତିବ୍ରତ୍ୟର ମହତ୍ତ୍ୱ। ନିଶ୍ଚୟ ସେ ତୁମ ସୁଖରେ ସୁଖୀ ହେବାର ବ୍ରତ ନେଇ ତୁମକୁ ବାରଣ କଲେ ନାହିଁ। କିନ୍ତୁ ତୁମେ ଏଭଳି ପ୍ରଖର ନଦୀ ସ୍ରୋତକୁ ପାର ହୋଇ ଆସିଲ କିପରି?" ବିଲ୍ୱମଙ୍ଗଳ ହସି ହସି କହିଲେ—"ମୋତେ ପରିହାସ କରୁଛ ଚିନ୍ତାମଣି! ମୋ ପାଇଁ ତୁମେ ସବୁ ବ୍ୟବସ୍ଥା କଲ! ନଦୀ ପାର ହେବାକୁ ନୌକା ପଠାଇଲ ଏବଂ ଛାତ ଉପରକୁ ଚଢ଼ିବା ପାଇଁ ଦଉଡ଼ି ଓହଳାଇ ଦେଇଥିଲ ଆଉ ପଚାରୁଛ ଯେ ଆସିଲ କେମିତି! ମୁଁ ତୁମ ପ୍ରୀତି ଭାବନାରେ ଅତ୍ୟନ୍ତ ପ୍ରସନ୍ନ। ଆଜି ମୁଁ ବୁଝି ପାରିଲି ଯେ ସତରେ ତୁମେ ମୋତେ କେତେ ଭଲ ପାଉଛ!"

ବିଲ୍ୱମଙ୍ଗଳଙ୍କର ଏ ସବୁ କଥା ଚିନ୍ତାମଣି ମନରେ ସୃଷ୍ଟି କରୁଥାଏ ଆଶ୍ଚର୍ଯ୍ୟର ଅଟ୍ଟାଳିକା। ପ୍ରକୃତ ତଥ୍ୟ ଜାଣିବା ପାଇଁ ତାଙ୍କୁ ସଙ୍ଗରେ ଘେନି ସେ ପହଞ୍ଚିଲା ଛାତ ଉପରେ। ଦେଖିଲା ଗୋଟାଏ ବିରାଟକାୟ ସର୍ପ ବାଉଁଶରେ ଗୁଡ଼େଇ ହୋଇ ତଳକୁ ଓହଳିଛି। ପୁଣି ନଦୀକୂଳକୁ ଯାଇ ଦେଖିଲା ଯେ ସେହି ପତିବ୍ରତା ନାରୀର ଶବକୁ ନୌକା ଭାବି ତା' ଆଶ୍ରୟରେ ବିଲ୍ୱମଙ୍ଗଳ ନଦୀ ପାର ହୋଇଛନ୍ତି।

ଏ ଦୃଶ୍ୟ ଦେଖି ଚିନ୍ତାମଣି ହୃଦୟରେ ଜନ୍ମ ନେଲା ବୈରାଗ୍ୟର ଉତ୍ତାଳ ତରଙ୍ଗ। ତା'ର ନେତ୍ର ରକ୍ତିମ ହୋଇଗଲା। ଅଧର କମ୍ପି ଉଠିଲା। ସେ ବିଲ୍ୱମଙ୍ଗଳକୁ ଧିକ୍କାର କରି କହିଲା—ତୁମେ ମୋର ଏହି ହାଡ଼ମାଂସ ଦେହରେ ଯେତିକି ପ୍ରୀତି ଯୋଡ଼ିଛ, ଯଦି ସେତିକି ପ୍ରୀତି ଭଗବାନ ଶ୍ୟାମସୁନ୍ଦରଙ୍କ ଚରଣରେ ଯୋଡ଼ିଥାନ୍ତ, ତେବେ ତୁମର ଜନ୍ମ ସଫଳ ହୋଇ ଯାଇଥାନ୍ତା। କ'ଣ ଅଛି ଏ ଦେହରେ?

ଅସ୍ଥିରୂପୀ ସ୍ତମ୍ଭ ଉପରେ ରକ୍ତ-ମାଂସ-ଶୋଣିତ ଲେପିତ ଏବଂ ଚର୍ମ ବେଷ୍ଟିତ ମଳ-ମୂତ୍ରର ଏହି ଭାଣ୍ଡରେ ଆସକ୍ତ ହୋଇ ଆମେ ଦୁହେଁ ନିଜର ଇହଲୋକ-ପରଲୋକ ନଷ୍ଟ କରିଦେଲେ। ଧିକ୍କାର ଆମ ଜୀବନକୁ।

ସତରେ, ଚିନ୍ତାମଣି ବାସ୍ତବ କଥାଟି କହିଲା। ମୃତ୍ୟୁ ପରେ ଯେଉଁ ଦେହକୁ ପୋତିଦେଲେ କୃମି ଖାଇ ମାଟିରେ ମିଶାଇଦେବେ, ଫୋପାଡ଼ିଦେଲେ ପଶୁ-ପକ୍ଷୀ ଖାଇ ବିଷ୍ଠାରେ ପରିଣତ କରିଦେବେ ଏବଂ ଜଳାଇ ଦେଲେ ଭସ୍ମ ହୋଇ ଉଡ଼ିଯିବ, ତାହା ଦ୍ୱାରା ଦୈହିକ ଭୋଗ ଉପଭୋଗ କରି ସୁଖୀ ହେବାର ଲାଳସା ରଖିବା ମୂର୍ଖତା ନୁହେଁ ତ ଆଉ କ'ଣ? ସକାଳେ ତିଆରି ହୋଇଥିବା ଯେଉଁ ଅନ୍ନ ସଂଧ୍ୟାବେଳକୁ ନଷ୍ଟ ହୋଇଯାଏ, ତାହାର ରସରେ ପରିପୁଷ୍ଟ ଏ ଦେହକୁ ନିତ୍ୟ ରଖିବାକୁ ଚେଷ୍ଟା କରିବା କେତେ ଅଜ୍ଞତା ନୁହେଁ ସତେ—

**ଯତ୍‌ପ୍ରାତଃ ସଂସ୍କୃତଂ ଗ୍ରନ୍ନଂ ସାୟଂ ତଚ୍ଚ ବିନଶ୍ୟତି।**
**ତଦୀୟରସସମ୍ପୁଷ୍ଟେ କାୟେ କୋ ନାମ ନିତ୍ୟତା॥**

(ଭା. ମାହାତ୍ମ୍ୟ ୫। ୬୧)

ସ୍ତ୍ରୀର ରୂପ ଲାବଣ୍ୟ ବର୍ଣ୍ଣନା କରୁଥିବା କବିମାନଙ୍କୁ ଆକ୍ଷେପ କରି ରାଜା ଭର୍ତ୍ତୃହରି ଯଥାର୍ଥରେ କହିଛନ୍ତି—

**ମୁଖଂ ଶ୍ଳେଷ୍ମାଗାରଂ ତଦପି ଚ ଶାଶାଙ୍କେନ ତୁଳିତଂ**
**ସ୍ତନୌ ମାଂସ ଗ୍ରନ୍ଥୀ କନକକଳଶାବିତ୍ୟୁପମିତୌ।**
**କ୍ଷରନ୍ ମୂତ୍ରକ୍ଳିନ୍ନଂ କରିବରକରସ୍ପର୍ଶଜଘନେ**
**ମୁହୁର୍ନିନ୍ଦ୍ୟଂ ରୂପଂ କବିଜନ ବିଶେଷୈର୍ଗୁରୁକୃତମ୍॥**

ଯେଉଁ ମୁଖ କଫର ଭଣ୍ଡାର, ତାହାକୁ ଚନ୍ଦ୍ରମା ସହିତ ତୁଳନା କରାଯାଇଛି। ଦୁଇଟି ମାଂସ ପିଣ୍ଡୁଳାକୁ ତୁଳନା କରାଯାଇଛି ସ୍ୱର୍ଣ୍ଣ କଳସ ସହିତ। ମୂତ୍ରସ୍ରାବରେ ସିକ୍ତ ଜଙ୍ଘଦ୍ୱୟକୁ ହସ୍ତୀର ଶୁଣ୍ଢ ସହିତ ତୁଳନା କରି କବିଜନ ସ୍ତ୍ରୀର ନିନ୍ଦନୀୟ ରୂପକୁ କେତେ ଅତିରଞ୍ଜିତ ନ କରିଛନ୍ତି ସତେ! ସେମାନଙ୍କ ଲେଖନୀରୁ ଝରି ଆସିଥିବା ଉପମା କିନ୍ତୁ ସମ୍ପୂର୍ଣ୍ଣ ଅସଙ୍ଗତ। କାମୁକ ପୁରୁଷ ମନରେ ଥିବା ଆସକ୍ତି କାରଣରୁ ସ୍ତ୍ରୀର ଅଙ୍ଗ ତାକୁ ଲାବଣ୍ୟମୟ ଜଣାପଡ଼େ। ନଚେତ୍ ଏଥିରେ ସାର ତତ୍ତ୍ୱ ବୋଲି କିଛି ନାହିଁ। ଏ ନଶ୍ୱର ଦେହ ପାଇ ଯିଏ ପ୍ରଭୁଙ୍କୁ ଭଜି ପାରିଲା ସେ ନର ବଡ଼ ଚତୁର। ବିଷୟ ଭୋଗରେ ଲିପ୍ତ ଥିବା ମନୁଷ୍ୟ ପଶୁଠାରୁ ମଧ୍ୟ ହୀନ। ପଶୁ ତ ନିଜ ପାପକର୍ମର ଫଳ ଭୋଗ କରି ମାନବ ଦେହ ଅଭିମୁଖେ

ଗତି କରୁଛି, କିନ୍ତୁ ଦେବଦୁର୍ଲଭ ମାନବଦେହ ପାଇ ମନୁଷ୍ୟ ବିଷୟଭୋଗରେ ବୁଡ଼ିରହି ପଶୁଜନ୍ମ ପାଇଁ ମାର୍ଗ ପ୍ରଶସ୍ତ କରୁଛି।

ଚିନ୍ତାମଣି ନାନାପ୍ରକାରେ ବିଲ୍ୱମଙ୍ଗଳଙ୍କୁ ବୁଝାଇବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ପଶ୍ଚାତ୍ତାପ କଲା ଏବଂ କହିଲା—"ଏତେ ଦିନ ଅଜ୍ଞାନରେ ଯାହା ହୋଇଗଲା ହୋଇଗଲା, ଆଜିଠାରୁ କିନ୍ତୁ ମୁଁ ଆଉ ସେ ଭୁଲ୍ କରିବି ନାହିଁ। ପ୍ରଭୁଙ୍କର ମୋ ଉପରେ ଅତିଶୟ କୃପା। ଆଜି ମୋର ଜ୍ଞାନନେତ୍ର ଖୋଲିଗଲା। ମନପ୍ରାଣ ସବୁ କିଛିକୁ ମୁଁ ମୋର ସେହି ପ୍ରାଣ ପ୍ରିୟତମ ଶ୍ୟାମସୁନ୍ଦରଙ୍କ ପାଦତଳେ ଢାଳିଦେବି। ଏବେ ତୁମ ଇଚ୍ଛା ଯାହା ତୁମେ ସେଇଆ କର, କିନ୍ତୁ ମୋର ଅଟଳ ନିର୍ଣ୍ଣୟରୁ ମୁଁ ପଛଘୁଞ୍ଚା ଦେବି ନାହିଁ।"

ଚିନ୍ତାମଣିର ହୃଦୟସ୍ପର୍ଶୀ ବାଣୀ ଶୁଣି ବିଲ୍ୱମଙ୍ଗଳଙ୍କ କାମବାସନା ଧୀରେ ଧୀରେ ଅପସରି ଗଲା। ସେ ଜୀବନର ହିତାହିତ ଜାଣି ପାରିଲେ। ଗୋଟି ଗୋଟି କରି ତାଙ୍କର ସମସ୍ତ ପୂର୍ବସ୍ମୃତି ଫେରି ଆସିଲା। କାମାନ୍ଧ ହୋଇ ବୃଦ୍ଧ ପିତା-ମାତା ଓ ଧର୍ମ ପରାୟଣା ସତୀ ନାରୀ ପ୍ରତି କରିଥିବା ଦୁର୍ବ୍ୟବହାରକୁ ସେ ଭୁଲି ପାରୁ ନ ଥାନ୍ତି। କିନ୍ତୁ ସେ ସମୟ ତ ଆଉ ହାତରେ ନାହିଁ, ଲେଡ଼ି ଗୁଡ଼ କହୁଣିକୁ ବୋହି ସାରିଲାଣି। ଏବେଠୁ କ'ଣ କରିବାକୁ ହେବ ସେ ବ୍ୟାକୁଳ ମନରେ ପଚ୍ଚାରିଲେ ଚିନ୍ତାମଣିକୁ।

ଚିନ୍ତାମଣି କହିଲା—"ମୁଁ ବଜାଉଛି ବୀଣା ଏବଂ ତୁମେ ବଜାଅ ମୃଦଙ୍ଗ। ସଙ୍ଗୀତର ତାଳେ ତାଳେ ଆମେ ସ୍ମରଣ କରିବା ପ୍ରଭୁଙ୍କର ଦିବ୍ୟ ନାମ ଓ ମାଧୁର୍ଯ୍ୟମୟୀ ଲୀଳାକୁ। ଆଜିଠାରୁ ଆମେ ଦୁହେଁ ହୋଇଯିବା ଶ୍ୟାମସୁନ୍ଦରଙ୍କ ସହଚରୀ। ଆମର ମନ ପ୍ରାଣ ସବୁକିଛି ସମର୍ପିତ ହୋଇଯିବ ତାଙ୍କ ପଦାରବିନ୍ଦରେ।"

ଚିନ୍ତାମଣିର ଅମୃତ ବଚନ ବିଲ୍ୱମଙ୍ଗଳଙ୍କ ରୋମ ରୋମରେ ଭରିଦେଲା ପ୍ରଭୁଭକ୍ତିର ଦିବ୍ୟ ଚେତନା। ସେ ଦୁହେଁ ଆଉ କାଳବିଳମ୍ବ ନ କରି ଆରମ୍ଭ କଲେ ପ୍ରଭୁଙ୍କ ସୁମଧୁର ଲୀଳାଗାନ। ସାହିପଡ଼ିଶା ଘରର ଲୋକେ ଆଶ୍ଚର୍ଯ୍ୟରେ କାନଡେରି ଶୁଣୁଥାନ୍ତି ଯେ ଏ କ'ଣ ହେଉଛି? ଯେଉଁଠି ଦିବାନିଶି ବ୍ୟାପି ରହିଥିଲା ଗ୍ରାମ୍ୟଗୀତର କଳୁଷିତ ବାତାବରଣ, ସେଠାରୁ ଶୁଭୁଛି ପ୍ରଭୁଙ୍କର ନାମ ଧ୍ୱନି! ଏ କି ବିଚିତ୍ର ଖେଳ!

ଧନ୍ୟ ସେହି ରାତ୍ରି, ଯେଉଁଥିରେ ଭଗବାନଙ୍କର ଦୁଇ ଜଣ ଭକ୍ତ ନାମ-ସଂକୀର୍ତ୍ତନରେ ବିଭୋର ହୋଇ ଦେହଜ୍ଞାନ ଭୁଲି ଯାଇଛନ୍ତି। ଧୀରେ ଧୀରେ ରାତ୍ରିର

ଘନ ଅନ୍ଧକାର ଅପସରି ଗଲା । ପ୍ରଭାତ ପାଖେଇ ଆସିଲା । ସୂର୍ଯ୍ୟଦେବ ପୂର୍ବଦିଗକୁ ତାଙ୍କର କୋମଳ କିରଣରେ ଭରିଦେଲେ । ମନେ ହେଉଥାଏ ସତେ ଯେପରି ଆଜିର ପ୍ରଭାତରେ ସୂର୍ଯ୍ୟଦେବ ଏ ଦୁଇ ପ୍ରେମିକ ପ୍ରେମିକାଙ୍କ ଜୀବନରେ ଉଜ୍ଜ୍ୱଳମୟ କୋମଳ କିରଣ ବିଚ୍ଛୁରିତ କରି ଦେଇଛନ୍ତି । ଚିନ୍ତାମଣି ଓ ବିଲ୍ୱମଙ୍ଗଳ ପରସ୍ପରକୁ ଅଭିବାଦନ କରି ପୂର୍ବକୃତ ନିର୍ଣ୍ଣୟ ଅନୁସାରେ ନିଜ ନିଜର ଗନ୍ତବ୍ୟ ପଥରେ ଆଗେଇ ଚ଼ାଲିଲେ । ଦୁହିଙ୍କ ମନରେ ଅପାର ହର୍ଷ । କାହିଁକି ବା ନ ହୁଅନ୍ତା! ଦୁହେଁ ଯେ ବିଷୟବାସନାକୁ ଦୂରକୁ ଠେଲିଦେଇ ପ୍ରଭୁଭକ୍ତିର ମାର୍ଗ ଚୟନ କରି ସାରିଛନ୍ତି ।

ବିଲ୍ୱମଙ୍ଗଳଙ୍କର ଯେଉଁ ହୃଦୟରେ ବସିଥିଲା ଚିନ୍ତାମଣି, ଏଥର ସେଠାରେ ସ୍ଥାନ ଅଧିକାର କଲେ ଭକ୍ତମନମୋହନ ଶ୍ୟାମସୁନ୍ଦର । ତାଙ୍କ ହୃଦୟ ଦର୍ଶନ ଅଭିଳାଷରେ ଖୋଜି ବୁଲିଲା ପ୍ରଭୁଙ୍କର ସେହି ନବଜଳଧର ଅଙ୍ଗକାନ୍ତିକୁ । ଏଥିପାଇଁ ସେ ଜଣେ ମାର୍ଗଦର୍ଶକ ଗୁରୁଙ୍କର ଆବଶ୍ୟକତା ଅନୁଭବ କଲେ । ପ୍ରଭୁଙ୍କ କରୁଣାରୁ ପରମ ପ୍ରେମୀ ଶ୍ରୀ ସୋମଗିରିଙ୍କ ସହିତ ତାଙ୍କର ଭେଟ ହେଲା । ସେ ବିଲ୍ୱମଙ୍ଗଳଙ୍କୁ ଉତ୍ତମ ଅଧିକାରୀ ଜାଣି ପ୍ରଭୁଭକ୍ତିର ମାର୍ଗଦର୍ଶନ ଦେଲେ । ବିଲ୍ୱମଙ୍ଗଳ ବର୍ଷେ ପର୍ଯ୍ୟନ୍ତ ଗୁରୁଙ୍କ ସାନ୍ନିଧ୍ୟରେ ରହି ପ୍ରେମ-ସରିତାରେ ଅବଗାହନ କଲେ । ସେଠାରେ ସେ ନିତ୍ୟ ନବୀନ ଭକ୍ତିରସମୟ କାବ୍ୟ ଅଧ୍ୟୟନ କରୁଥାନ୍ତି ଏବଂ ହୃଦୟ ବାଟିକାରେ ପ୍ରସ୍ଫୁଟିତ ଭକ୍ତି ସୁମନକୁ ଶ୍ଳୋକବଦ୍ଧ କରି ପ୍ରଭୁଙ୍କ ଚରଣରେ ସମର୍ପଣ କରୁଥାନ୍ତି । ପ୍ରଭୁ ଚରଣରେ ଅର୍ପିତ ଭକ୍ତିସୁମନର ଫଳସ୍ୱରୂପ ତାଙ୍କ ହୃଦୟରେ ଜାଗରିତ ହେଲା ଶ୍ୟାମସୁନ୍ଦରଙ୍କ ଦର୍ଶନର ଉତ୍କଣ୍ଠା । ସେ ଭାବୁଥାନ୍ତି—ହାୟ! ସେ ଦିନ କେବେ ଆସିବ, ଯେବେ ମୁଁ ବୃନ୍ଦାବନଧାମରେ ପ୍ରଭୁଙ୍କ ସାନ୍ନିଧ୍ୟ ଲାଭ କରିବି! ପ୍ରଭୁଙ୍କର ତ୍ରିଭଙ୍ଗ ଲଳିତ ଠାଣି, ସୁନ୍ଦର କପୋଳ, ଅନୁପମ ନାସିକା, ମନ୍ଦ ସ୍ମିତହାସ, ଅରୁଣ ଅଧର ଓ ଅଭୟ ଭୁଜଦଣ୍ଡ ଦର୍ଶନ କରି ମୋ ଜୀବନ ଅବଶ୍ୟ କୃତାର୍ଥ ହୋଇଯିବ । ଏ ଅତୃପ୍ତ ପ୍ରାଣରେ ସଂଚ଼ରିତ ହେବ ନବୀନ ଉତ୍ସାହ!

ଏଥର ତାଙ୍କର ବିରହ ଉତ୍କଣ୍ଠା କୂଳଲଘଂନ କରିଗଲା । ସେ ଅଧୀର ହୋଇ ବାହାରି ପଡ଼ିଲେ ବୃନ୍ଦାବନ ଅଭିମୁଖେ । ମାର୍ଗରେ ଗୋଟିଏ ସୁନ୍ଦର ଜଳାଶୟର ରମଣୀୟତା ଦର୍ଶନ କରି ତାଙ୍କର ମନ ଅଟକି ଗଲା । ସେଠାରେ ସେ କିଛି ସମୟ ପାଇଁ ବିରାଜମାନ ହେଲେ । ପ୍ରଭୁପ୍ରେମରେ ବିଭୋର ହୋଇଥିବା ଯୋଗୁଁ ତାଙ୍କର

ମନ ଅନ୍ତର୍ମୁଖୀ ହୋଇଯାଇଥାଏ। ଆଖି ଟେକି କାହାକୁ ଗ୍ରହିଁବାକୁ ତାଙ୍କ ନେତ୍ର ପାଇଁ ଅବକାଶ ନ ଥାଏ। ପ୍ରଭୁଙ୍କର ନବଘନ ମୂରତି ବାରମ୍ବାର ନାଚୁଥାଏ ତାଙ୍କ ନେତ୍ର ପଥରେ।

ଏଭଳି ପ୍ରେମମଗ୍ନ ସ୍ଥିତିର ଚର୍ଚ୍ଚା କାନକୁ କାନ ହୋଇ ଗାଁଆ ସାରା ଖେଳିଗଲା। ସମସ୍ତେ ତାଙ୍କ ଦର୍ଶନ ଅଭିଳାଷରେ ପହଞ୍ଚିଲେ ସରୋବର ନିକଟରେ। ଭଗବାନଙ୍କୁ କିନ୍ତୁ ଏଭଳି ପ୍ରଶଂସା ଭଲ ଲାଗିଲା ନାହିଁ। ଜନପ୍ରଶଂସାକୁ ଭକ୍ତ ବିଲ୍ୱମଙ୍ଗଳଙ୍କ ପାଇଁ ଅନିଷ୍ଟକର ଭାବି ଲୀଳାଧର ଗୋଟିଏ ଅଦ୍ଭୁତ ଲୀଳା ରଚିଲେ। ଏ ଘଟଣାଟି ଥିଲା ତାଙ୍କ ପାଇଁ ସୁରକ୍ଷା କବଚ। କିଛି ସମୟ ମଧ୍ୟରେ ସରୋବରରୁ ଜଳ ନେବା ପାଇଁ ଜଣେ ରୂପବତୀ ପତିବ୍ରତା ନାରୀ ଆସି ପହଞ୍ଚିଲେ। ତାଙ୍କର ରୂପଲାବଣ୍ୟରେ ବିମୋହିତ ହୋଇଗଲେ ବିଲ୍ୱମଙ୍ଗଳ। ଯେଉଁ ନୟନରେ ଅନ୍ୟ କାହା ପାଇଁ ସ୍ଥାନ ନ ଥିଲା, ସେ ଆଜି ସତୀ ନାରୀର ରୂପ ସୌନ୍ଦର୍ଯ୍ୟ ପାନ କରିବାକୁ ଅମାନିଆ ହୋଇ ଉଠିଲା। ସେହି ସତୀ ଜଣକ ଜଳ ଘେନି ଘରକୁ ଫେରି ଯାଆନ୍ତେ ତାଙ୍କର ଅନୁଗମନ କଲେ ବିଲ୍ୱମଙ୍ଗଳ। ତାଙ୍କର ବିବେକ ହଜି ଯାଇଥିଲା ଯେ ଜଣେ ବିରକ୍ତ ସାଧୁବେଶ ଧାରଣ କରିଥିବା ସାଧୁ ପାଇଁ ଏହା ସମ୍ପୂର୍ଣ୍ଣ ଅଶୋଭନୀୟ। ଲୋକେ ତାଙ୍କୁ କଣ କହିବେ, ସେଥିପ୍ରତି ମଧ୍ୟ ତାଙ୍କର ଦୃଷ୍ଟି ରହିଲା ନାହିଁ। ଜଳ କଳସୀ ଧରି ସେହି ସତୀ ନାରୀ ଗୃହ ମଧ୍ୟରେ ପ୍ରବେଶ କରିଗଲେ। ବିଲ୍ୱମଙ୍ଗଳ ତାଙ୍କର ରୂପ ଲାବଣ୍ୟ ଦର୍ଶନ ଅଭିଳାଷରେ ପ୍ରତୀକ୍ଷା କଲେ ଦ୍ୱାରଦେଶରେ। ଆସକ୍ତି ଯୋଗୁଁ ତାଙ୍କର ହୃଦୟ ବ୍ୟଥିତ ଓ ଅସ୍ଥିର ହେଉଥାଏ।

ପତିବ୍ରତାର ସ୍ୱାମୀ କୌଣସି କାର୍ଯ୍ୟ ସମ୍ପାଦନ କରି ସେହି ସମୟରେ ଗୃହକୁ ଫେରିଲେ। ଦ୍ୱାରଦେଶରେ ସାଧୁ ଠିଆ ହୋଇଥିବାର ଦେଖି ସେ ସ୍ତ୍ରୀକୁ ପଗ୍ରରିଲେ— "ବାବା ବାହାରେ ଠିଆ ହୋଇଛନ୍ତି କାହିଁକି? ଭିକ୍ଷା ଦେଇ ତାଙ୍କୁ ଉଚିତ ଅଭ୍ୟର୍ଥନା କରି ନାହଁ କି?" ସତୀ ନାରୀ ମୂଳରୁ ଶେଷ ପର୍ଯ୍ୟନ୍ତ ସ୍ୱାମୀଙ୍କୁ ସବୁ ଘଟଣା ଖୋଲି କହିଦେଲେ। ସେକଥା ଶୁଣି ତାଙ୍କ ସ୍ୱାମୀଙ୍କ ମନରେ ବିଲ୍ୱମଙ୍ଗଳଙ୍କ ପ୍ରତି କୁଦୃଷ୍ଟି ହେଲା ନାହିଁ। କାରଣ ସେ ଥିଲେ ଜଣେ ପରମ ଭକ୍ତ। ବରଂ ସେ ଏହାକୁ ଭଗବାନଙ୍କ ବିଧାନ ମନେକଲେ। ସେ ଭଲଭାବେ ଜାଣିଥିଲେ ଯେ ପ୍ରକୃତରେ ଭକ୍ତଠାରେ ଯଦି କଦାଚିତ୍ କୌଣସି ଊଣା ଦେଖାଯାଏ, ତେବେ ତାହା ଭକ୍ତ ପାଇଁ ଭଗବାନଙ୍କର ସୁରକ୍ଷା କବଚ। ସ୍ନେହମୟୀ ମାଆ ଯେପରି ଶିଶୁକୁ ବିବିଧ ଅଳଙ୍କାରରେ

ସଜାଇ ଦେଇ ନଜର ଲାଗିଯିବା ଭୟରେ ମୁଣ୍ଡରେ କଳା ଟୋପାଟିଏ ଲଗାଇ ଦିଏ, ସେହିପରି ଭକ୍ତର ସୁରକ୍ଷା ପାଇଁ ଅବଗୁଣ ରୂପୀ କଳା ଟୋପାଟିଏ ଲଗାଇ ଦିଅନ୍ତି ଭଗବାନ। ଏ ରହସ୍ୟ ନ ବୁଝି ଭକ୍ତର ଅବଗୁଣ ଦେଖୁଥିବା ବ୍ୟକ୍ତି ନରକଗାମୀ ହୁଏ।

ସେ ଶୀଘ୍ର ଯାଇ ଆଦରର ସହିତ ବିଲ୍ୱମଙ୍ଗଳଙ୍କୁ ଘରକୁ ପାଛୋଟି ଆଣିଲେ। କହିଲେ—"ମହାତ୍ମନ୍! ଆପଣଙ୍କ ଦର୍ଶନ ପାଇ ମୁଁ ଆଜି କୃତାର୍ଥ ହେଲି। ଆପଣଙ୍କ ଭଳି ସନ୍ଥଙ୍କ ପାଦ ପଡ଼ିବାରୁ ମୋର ଗୃହ ଆଜି ପବିତ୍ର ହୋଇଗଲା। ମୋତେ ଚରଣାମୃତ ସେବନର ସୌଭାଗ୍ୟ ଦେଇ ଆପଣ ଧନ୍ୟ କରିଦେଲେ।" ଏହିଭଳି ଅନେକ ଅନୁନୟ ବିନୟ ହୋଇ ସେ ବିଲ୍ୱମଙ୍ଗଳଙ୍କ ମନୋବାଞ୍ଛା ଜାଣିବାକୁ ଚାହିଁଲେ ଏବଂ ତାହା ପୂର୍ଣ୍ଣ କରିବା ନିମନ୍ତେ ପତ୍ନୀକୁ ଅନୁମତି ଦେଲେ।

ସ୍ୱାମୀଙ୍କ ଆଜ୍ଞା ଶିରୋଧାର୍ଯ୍ୟ କଲେ ସେହି ପତିବ୍ରତା ନାରୀ। ବିବିଧ ବସ୍ତ୍ରାଭୂଷଣ ଧାରଣପୂର୍ବକ ଠାକୁରଙ୍କ ପ୍ରସାଦ ଘେନି ପହଞ୍ଚିଲେ ବିଲ୍ୱମଙ୍ଗଳଙ୍କ ନିକଟରେ। ନୂପୁର ଧ୍ୱନି ଓ ବସ୍ତ୍ରାଳଙ୍କାର ଝଙ୍କାରରୁ ବିଲ୍ୱମଙ୍ଗଳଙ୍କୁ ତାଙ୍କ ଆଗମନର ସୂଚନା ମିଳିଗଲା। ସତୀ ନାରୀ ବିନମ୍ର ଭାବରେ ହାତ ଯୋଡ଼ି ବିଲ୍ୱମଙ୍ଗଳଙ୍କ ସମ୍ମୁଖରେ ଉପସ୍ଥିତ ହେଲେ। ବିଲ୍ୱମଙ୍ଗଳ ତାଙ୍କୁ ଅନାଇ ଦେବା ମାତ୍ରେ ତାଙ୍କ ହୃଦୟରେ ଶିହରଣ ଖେଳିଗଲା। ତାଙ୍କର ସତୀତ୍ୱ ଓ ଭକ୍ତିଭାବର ଗଭୀର ପ୍ରଭାବ ପଡ଼ିଲା ବିଲ୍ୱମଙ୍ଗଳଙ୍କ ଉପରେ। ତାଙ୍କର ଅନ୍ତଶ୍ଚକ୍ଷୁ ଉନ୍ମୀଳିତ ହୋଇଗଲା। ମନରୁ ବିଷୟ ବାସନାର କାଳୁଷ୍ୟ ଧୀରେ ଧୀରେ ଅପସରି ଗଲା। ବିଷୟର ପ୍ରଖର ସ୍ରୋତରେ ବହି ଯାଉଥିବା ବୁଦ୍ଧିକୁ ସେ ବିବେକ ରୂପୀ ନାବିକ ଦ୍ୱାରା ସ୍ଥିର କଲେ। ସାଧୁବେଶ ପ୍ରତି ସହସା ତାଙ୍କର ଦୃଷ୍ଟି ଫେରିଗଲା। ସେ ମନେ ମନେ ପଶ୍ଚାତ୍ତାପ କରି ଭାବିଲେ—"ଏଇ ଆଖି ଦୁଇଟି ମୋତେ ଅନେକ ଦୁଃଖ ଦେଲେଣି। ଭଗବାନଙ୍କୁ ପାଇବା ଉଦ୍ଦେଶ୍ୟରେ ମୁଁ ଚିନ୍ତାମଣିକୁ ଛାଡ଼ିଲି, ଅଥଚ ମାର୍ଗରେ ଆହୁରି ଏକ ପ୍ରତିବନ୍ଧ ସୃଷ୍ଟି ହେଲା। ଯେପର୍ଯ୍ୟନ୍ତ ଏ ଭୂତ ତୁଲ୍ୟ ଆଖି ଦୁଇଟି ଥିବ, ମୋତେ ଏମିତି ଅନେକ ଦୁଃଖ ଦେଉଥିବ। ମୂଳରୁ ଏହାକୁ ଫୁଟେଇଦେଲେ ସବୁ ଅଡୁଆ ତୁଟିଯିବ।" ଏଭଳି ଭାବି ସେ ସେହି ପତିବ୍ରତା ନାରୀକୁ କହିଲେ—"ଦେବୀ! ମୋତେ ଦୁଇଟି ଛୁଞ୍ଚି ଦେଇପାରିବ କି?" ସତୀ ନାରୀ ବୁଝି ପାରୁ ନ ଥାନ୍ତି ଯେ ଏଠି ଛୁଞ୍ଚିର କି କାମ? କିନ୍ତୁ ମୁହଁ ଖୋଲି ପଚାରିବାକୁ ତାଙ୍କର ସାହସ ମଧ୍ୟ ହେଉ ନ ଥାଏ। ସେ ଆଜ୍ଞା ପାଳନ କରି ଦୁଇଟି ମୁନିଆ ଛୁଞ୍ଚି ଆଣିଦେଲେ।

ବିଲ୍ୱମଙ୍ଗଳ ଛୁଞ୍ଚି ଦୁଇଟିକୁ ତାଙ୍କ ହାତରୁ ନେଇ ଭଗବାନଙ୍କୁ ସ୍ମରଣ କଲେ।

କୌଣସି କାର୍ଯ୍ୟ କରିବା ପୂର୍ବରୁ ଭଗବାନଙ୍କୁ ସ୍ମରଣ କରିବା ଭକ୍ତର ସହଜ ସ୍ୱଭାବ। ଭୁଲ୍ ହେଉ ବା ଠିକ୍ ହେଉ, ସବୁକିଛି ସେ ପ୍ରଭୁଙ୍କ ପାଦତଳେ ସମର୍ପଣ କରିଦିଏ। ଭଗବାନଙ୍କ ମାୟାରେ ବିମୋହିତ ଦେବର୍ଷି ନାରଦଙ୍କ ମନରେ ବିଶ୍ୱମୋହିନୀ କନ୍ୟା ସଙ୍ଗେ ବିବାହ କରିବାର ଇଚ୍ଛା ସୃଷ୍ଟି ହେବା କ୍ଷଣି ସେ ପ୍ରଥମେ ଭଗବାନଙ୍କୁ ଜଣାଇଥିଲେ। ସେ ଜାଣିଥିଲେ ଯେ ପ୍ରଭୁଙ୍କ ଛଡ଼ା ଏ କାର୍ଯ୍ୟରେ ତାଙ୍କୁ ଆଉ କେହି ସାହାଯ୍ୟ କରି ପାରିବେ ନାହିଁ। ପ୍ରଭୁ ତାଙ୍କ ପାଇଁ ଯାହା ବି କରିବେ, ସେଥିରେ ତାଙ୍କର ନିଶ୍ଚୟ ମଙ୍ଗଳ ହେବ। ସେହିପରି ପ୍ରଭୁଭକ୍ତିରେ ବିଘ୍ନ ସୃଷ୍ଟି କରୁଥିବା ଆଖି ଦୁଇଟିକୁ ଫୁଟେଇବା ପୂର୍ବରୁ ବିଲ୍ୱମଙ୍ଗଳ ପ୍ରଭୁଙ୍କୁ ଜଣାଇ କହିଲେ— "ପ୍ରିୟତମ! ଏହି ଆଖି ଦୁଇଟି ଯୋଗୁଁ ମୁଁ ତୁମଠାରୁ ବିମୁଖ ହୋଇ ବିଷୟ ଲାଳସାରେ କୁକୁର ଭଳି ଏଣେତେଣେ ବୁଲି ବୁଲି ବହୁ ଦୁଃଖ ପାଇଲି। ଇଏ ମୋତେ ପାଦେ ପାଦେ ଖାଲରେ ପକାଇ ଆସିଲେ। ତୁମଠାରୁ ବିମୁଖ କରାଇ କୁପଥକୁ ଟାଣି ନେଉଥିବା ଏଭଳି ଅଭାଗା ଆଖିକୁ ମୁଁ ଆଉ ରଖିବାକୁ ଚାହେଁନା। ଏଣିକି ମୋତେ ମାର୍ଗ ଦେଖାଇବାର ଦାୟିତ୍ୱ ତୁମର।" ଏତିକି କହି ସେ ସହସା ମୁନିଆ ଛୁଞ୍ଚିର ଅଗ୍ରଭାଗରେ ଆଖି ଦୁଇଟିକୁ ଫୁଟେଇ ଦେଲେ। ଆଖିରୁ ଧାରାଶ୍ରାବଣ ଭଳି ଝର ଝର ରୁଧିର ବହି ଚାଲିଲା। ବିଲ୍ୱମଙ୍ଗଳଙ୍କ ଚିତ୍ତରେ ତିଳେମାତ୍ର ଦୁଃଖ ନାହିଁ। କେହି ଭୂତପ୍ରେତ କବଳରୁ ମୁକୁଳିଗଲେ ଯେପରି ଶାନ୍ତି ଲାଭ କରେ, ସେହିପରି ପ୍ରଭୁଭକ୍ତିରେ ଅନ୍ତରାୟ ସୃଷ୍ଟି କରୁଥିବା ଭୂତ ତୁଲ୍ୟ ଆଖିକୁ ତ୍ୟାଗ କରିଦେଇ ଥିବାରୁ ତାଙ୍କ ମନରେ ଅପାର ଆନନ୍ଦ। ସେ ପ୍ରଭୁଙ୍କ ନାମ-ସଂକୀର୍ତ୍ତନରେ ନିମଗ୍ନ। କିନ୍ତୁ ସେହି ସତୀ ନାରୀ ଭୟରେ ବରଡ଼ା ପତ୍ର ଭଳି ଥରୁଥାନ୍ତି। ତାଙ୍କ ମନରେ ଭୟ ସୃଷ୍ଟି କରୁଥାଏ ବିଲ୍ୱମଙ୍ଗଳଙ୍କ ଦୟନୀୟ ସ୍ଥିତି ଏବଂ ସ୍ୱାମୀଙ୍କର ତାଙ୍କ ପ୍ରତି ସନ୍ଦେହର ଆଶଙ୍କା। ସେ ଅଧୀର ଚିତ୍ତରେ ବେଗ ବେଗ ହୋଇ ଯାଇ ସ୍ୱାମୀଙ୍କୁ ଏ ଘଟଣା ଜଣାଇଲେ। ସ୍ୱାମୀ ଦୌଡ଼ି ଆସି ଦେଖନ୍ତି ତ ମହାନ୍ ଆଶ୍ଚର୍ଯ୍ୟ ଘଟଣା! ସେ ବ୍ୟାକୁଳ ହୋଇ କହିଲେ—"ମହାତ୍ମନ୍! ଏ କ'ଣ ହେଲା? ଆପଣଙ୍କ ଭଳି ସନ୍ଥଙ୍କୁ ଦୁଃଖ ଦେଇ ଆମେ ବଡ଼ ଅପରାଧ କଲୁ।" ବିଲ୍ୱମଙ୍ଗଳ ଆଶ୍ୱାସନା ଦେଇ କହିଲେ—"ତୁମେ ହିଁ ପ୍ରକୃତରେ ସାଧୁ। ମୁଁ ତ କେବଳ ନାମକୁମାତ୍ର ସାଧୁବେଶ ଧରିଛି। ମୋ'ଠାରେ ଲେଶମାତ୍ର ସାଧୁତା ନାହିଁ। ତୁମେ ନିଶ୍ଚିନ୍ତ ରୁହ, ଏଥିରେ ତୁମର କୌଣସି ଭୁଲ୍ ନାହିଁ।" ଭକ୍ତଦମ୍ପତି ଆର୍ତ୍ତ

ଜଣ୍ଠରେ କହିଲେ—"ଭଗବନ୍! ଆପଣ ଆମ ଘରେ ଆନନ୍ଦରେ ରହନ୍ତୁ, ଆମେ ଆଜୀବନ ମନପ୍ରାଣ ଦେଇ ଆପଣଙ୍କର ସେବା କରିବୁ।" ବିଲ୍ୱମଙ୍ଗଳ ସ୍ମିତହାସ୍ୟ କରି କହିଲେ—"ତୁମେ ଦୁହେଁ ଯେଉଁଭଳି ସେବା କରିଛ, ତାହା ଆଜି ପର୍ଯ୍ୟନ୍ତ କେହିହେଲେ କରି ନ ଥିଲେ। ମୁଁ ତୁମ ସେବାରେ ଖୁବ୍ ସନ୍ତୁଷ୍ଟ।"

ଏତିକି କହି ବିଲ୍ୱମଙ୍ଗଳ ବୃନ୍ଦାବନ ଅଭିମୁଖେ ଆଗେଇ ଗ୍ଲିଲେ। ଦୁଷ୍ଟ ନେତ୍ର ଦୁଇଟି ଗ୍ଲିଯିବା ପରେ ଏବେ ତାଙ୍କର ହୃଦୟନେତ୍ର ଖୋଲିଗଲା। ତାଙ୍କ ମାନସପଟରେ ଅହରହ ନାଚି ଉଠିଲା ରାଧାକୃଷ୍ଣଙ୍କର ମୋହିନୀମୂର୍ତ୍ତି। ପ୍ରଭୁଙ୍କ ପ୍ରେମରେ ମଗ୍ନ ହୋଇ ଯାଉ ଯାଉ ସେ ଜଙ୍ଗଲିଆ ରାସ୍ତାରେ ବାଟବଣା ହୋଇଗଲେ। କୁଆଡ଼େ ଯିବେ କିଛି ନିଶ୍ଚୟ କରି ନ ପାରି କେହି ଆସିଲେ ବାଟ ପଗ୍ଚରିବେ ବୋଲି ଭାବି ସେଇଠି ଗୋଟିଏ ଗଛ ମୂଳରେ ବସି ରହିଲେ। କିନ୍ତୁ ଏଭଳି ଘୋର ଜଙ୍ଗଲ ଭିତରକୁ କିଏ କାହିଁକି ବା ପଶିବ? ଭୋକ-ଉପାସରେ ଅପେକ୍ଷା କରି କରି ତିନି ଦିନ ବିତିଗଲା। କରୁଣାନିଧାନ ଭଗବାନ ଆଉ ଭକ୍ତର ଦୁଃଖ ସହି ପାରିଲେ ନାହିଁ। ଏଭଳି ଅସହାୟ ଅବସ୍ଥାରେ ସେ ଯଦି ଭକ୍ତକୁ ବାଟ ନ ଦେଖାଇବେ, ତେବେ ତାଙ୍କର ଭକ୍ତବତ୍ସଳ ବାନା ଆଉ କେତେବେଳକୁ ସାର୍ଥକ ହେବ? ପ୍ରଭୁ ଗୋପବାଳକ ବେଶରେ ଆସି ବିଲ୍ୱମଙ୍ଗଳଙ୍କୁ ମଧୁର କଣ୍ଠରେ ପଗ୍ଚରିଲେ—"ବାବା! ଏ ଘୋର ଜଙ୍ଗଲରେ ତୁମେ ଏକୁଟିଆ କାହିଁକି ବସିଛ? ତୁମର ସାଥୀମାନେ କ'ଣ ତୁମକୁ ଛାଡ଼ି ଗ୍ଲିଗଲେ? କୁଆଡ଼େ ଯିବାକୁ ଗ୍ଚହଁ ତୁମେ?" ବିଲ୍ୱମଙ୍ଗଳ କହିଲେ—"ଏ ସଂସାରରେ ବୃନ୍ଦାବନବିହାରୀଙ୍କ ଛଡ଼ା ମୋର କେହି ସାଙ୍ଗସାଥୀ ନାହାନ୍ତି। ଯାହାକୁ ସାଥୀ ଭାବିଥିଲି ସେ ଆଖି ଦୁଇଟି ମୋତେ ଖାଲରେ ପକାଇଲେ। ତେଣୁ ସେମାନେ ମୋତେ ଛାଡ଼ିବା ପୂର୍ବରୁ ମୁଁ ସେମାନଙ୍କୁ ଛାଡ଼ିଦେଲି।" ସେ ତାଙ୍କ ଦୁଃଖ କାହାଣୀ କହି ସାରି ବାଳକକୁ ତା'ର ପରିଚୟ ପଗ୍ଚରିବାରୁ ଭଗବାନ କହିଲେ—"ମୁଁ ଗଉଡ଼ ଘରର ପିଲା। ମୋ ନାଆଁ ଗୋପାଳ। ଏଇଠି ଆମର ଘର। ମୁଁ ସବୁଦିନ ଏଇ ବାଟରେ ଯାଆଆସ କରେ। ଆଜି ତୁମ ଉପରେ ମୋ ନଜର ପଡ଼ିଲା। ଲାଗୁଛି, ତୁମେ ବହୁ ଦିନ ହେଲା କିଛି ଖାଇ ନାହଁ। ମୋ ପାଖରେ କିଛି ଖାଇବା ଜିନିଷ ଅଛି, ଖାଇବ?" ବିଲ୍ୱମଙ୍ଗଳ ତ ଭୋକରେ ଆଉଟୁପାଉଟୁ ହେଉଥିଲେ, ସେ ମଉନ ସହମତି ଦେଇ ସବୁ ସଫା କରିଦେଲେ। ଆଜି ତାଙ୍କୁ ପ୍ରଭୁଙ୍କ ପ୍ରଦତ୍ତ ପ୍ରସାଦରେ ଅଦ୍ଭୁତ ସ୍ୱାଦ ଅନୁଭବ ହେଲା। ତାଙ୍କର ସର୍ବାଙ୍ଗରେ ଭଗବତ୍‌ପ୍ରେମର ସାତ୍ତ୍ୱିକ ଲକ୍ଷଣ

ଦେଖାଗଲା । ସେ ମନେ ମନେ ଭାବିଲେ—"ପ୍ରଭୁ କାଳେ ମୋ ଉପରେ କରୁଣା କରି ଆସି ନାହାନ୍ତି ତ? ପୁଣି ଭାବିଲେ ପ୍ରବଳ ଭୋକ ଲାଗୁଥିବାରୁ ବୋଧହୁଏ ଖାଦ୍ୟ ଅଧିକ ସ୍ୱାଦିଷ୍ଟ ଲାଗିଲା ।" ସେ ଆଉ ଅଧିକ ଯୁକ୍ତିତର୍କ ନ କରି ସେ କଥାକୁ ଭୁଲିଗଲେ ।

ଗୋପାଳ ବେଶଧାରୀ ଭଗବାନ ବିଲ୍ୱମଙ୍ଗଳଙ୍କ ହାତ ଧରି ନେଇ ଗୋଟିଏ ସଘନ ବୃକ୍ଷ ତଳେ ବସାଇଦେଲେ । ପ୍ରଭୁଙ୍କ ଦିବ୍ୟ କରସ୍ପର୍ଶ ପାଇ ବିଲ୍ୱମଙ୍ଗଳଙ୍କ ଦେହରେ ଶିହରଣ ଖେଳିଗଲା । ସେ ଅଷ୍ଟସାତ୍ତ୍ୱିକ ଭାବରେ ମଗ୍ନ ହୋଇଗଲେ । ସେ ଭାବିପାରୁ ନ ଥାନ୍ତି ଯେ ଏ କ'ଣ ହେଉଛି । ପୁଣି ବିଚାର କଲେ ଗଉଡ଼ ପିଲାଟି ପ୍ରତି ମୋହ ହେଉ ନାହିଁ ତ? ଭଗବାନଙ୍କୁ ଗୁହାରୀ କରି କହିଲେ—"ହେ ଭଗବାନ୍! ଏମିତି ଆଉ କେତେ ହନ୍ତସନ୍ତ କରିବ? କେତେ କେଉଁଠି ଖାଲରେ ପକାଇବ? ଚିନ୍ତାମଣିର ମୋହପାଶରୁ ମୁକୁଳି ଆସି ମୋହିତ ହେଲି ନାରୀର ରୂପସୌନ୍ଦର୍ଯ୍ୟରେ । ସେଠାରୁ କୌଣସି ପ୍ରକାରେ ମୁକୁଳି ଆସି ପଡ଼ିଲି ଏ ପିଲାଟିର ମୋହରେ । ସେଠାରେ ସିନା ଆଖିର ଦୋଷ ଭାବି ତାହାକୁ ଫୁଟାଇ ଦେଲି, ଏବେ କ'ଣ କରିବି? ପ୍ରଭୁ! ତୁମେ ହିଁ ମୋର ଭରସା । ତୁମ ବିନା ଏ ମୋହଜାଲରୁ ମୁକୁଳାଇବାକୁ କେହି ନାହିଁ ।"

ବିଲ୍ୱମଙ୍ଗଳଙ୍କୁ ଚିନ୍ତିତ ଦେଖି ଭଗବାନ ମନ୍ଦ ମନ୍ଦ ହସି କହିଲେ—"ବାବା! କେଉଁ ବିଚାରରେ ହଜିଗଲ? କୁହ, ମୁଁ ତୁମର ଆଉ କି ସେବା କରି ପାରିବି?" ବିଲ୍ୱମଙ୍ଗଳ କହିଲେ—"ଧନ ରେ! ମୁଁ ବୃନ୍ଦାବନ ଯିବାକୁ ଚାହୁଁଛି । ବହୁ ଦିନରୁ ଏ ଅଭାଗା ନେତ୍ର ପ୍ରଭୁଙ୍କର ଦର୍ଶନ ପାଇଁ ବ୍ୟାକୁଳ ହେଉଛି । ମୋତେ ନେଇ ଟିକିଏ ବୃନ୍ଦାବନରେ ଛାଡ଼ି ଦେଇ ପାରିବୁ? କିନ୍ତୁ ତୁ ତ ପିଲା ଲୋକ, ଏତେ ଦୂର ଯିବୁ କେମିତି? ତୋତେ ତ ରାସ୍ତା ମଧ୍ୟ ଜଣା ନ ଥିବ?" ଭଗବାନ କହିଲେ—"ଚିନ୍ତା କର ନାହିଁ ବାବା! ମୋତେ ସବୁ ରାସ୍ତା ଜଣା ଅଛି । ଖୁବ୍ ଶୀଘ୍ର ମୁଁ ତୁମକୁ ବୃନ୍ଦାବନରେ ପହଞ୍ଚାଇ ଦେବି । ଏଇ ନିଅ, ମୋ ହାତ ଧର । ମୁଁ ଆଗେ ଆଗେ ଚାଲୁଛି ଆଉ ତୁମେ ମୋ ପଛେ ପଛେ ଚାଲ । କିନ୍ତୁ ବାବା! ଖରାପ ଭାବିବ ନାହିଁ ଯଦି ଗୋଟିଏ କଥା ପଚାରିବି? ତୁମର ତ ଆଖି ନାହିଁ, ପୁଣି ତୁମେ ଠାକୁରଙ୍କୁ ଦର୍ଶନ କରିବ କେମିତି?" ବିଲ୍ୱମଙ୍ଗଳଙ୍କ ନେତ୍ରରୁ ଦୁଇ ଧାର ଲୋତକ ଝରି ପଡ଼ିଲା । ସେ ବ୍ୟାକୁଳ କଣ୍ଠରେ କହିଲେ—"ମୋ ପ୍ରଭୁ ବଡ଼ ଦୟାଳୁ । ସେ ଚାହିଁଲେ ଏହି ଜ୍ୟୋତିହୀନ ନେତ୍ରରେ ଶକ୍ତି ଦାନ କରି ମୋତେ ଦର୍ଶନ

ଦେଇପାରିବେ । ମୁଁ ସିନା ତାଙ୍କୁ ଦେଖିବାକୁ ଅକ୍ଷମ, ସେ କ'ଣ ମୋତେ ଦେଖି ପାରିବେ ନାହିଁ। ମୋ ଦେଖିବାର ମହତ୍ତ୍ୱ ବା କ'ଣ? ମୋ ପ୍ରାଣଧନ ମୋତେ ଦେଖି ଖୁସୀ ହୋଇଗଲେ ମୁଁ ପ୍ରସନ୍ନ ହେବି ।'' ଏତିକି କହି ସେ ପିଲାଟିର ହାତ ଧରି ଧୀରେ ଧୀରେ ଚାଲିବା ଆରମ୍ଭ କଲେ ।

ଭଗବାନଙ୍କ ପ୍ରସାଦରୁ ଓ କଣ୍ଠ ସ୍ୱରରୁ ବିଲ୍ୱମଙ୍ଗଳଙ୍କ ମନରେ ଯେଉଁ ସନ୍ଦେହ ଥିଲା, ତାହା ଏବେ ପ୍ରଭୁଙ୍କର ଦିବ୍ୟ କରସ୍ପର୍ଶରୁ ମୋଚନ ହୋଇଗଲା । ସେ ଜାଣିଗଲେ ଯେ ଇଏ କୌଣସି ସାଧାରଣ ବାଳକ ନୁହେଁ। ମୋତେ ଅସହାୟ ଦେଖି ପ୍ରଭୁ ନିଜେ ଆସି ବାଟ କଢ଼ାଉଛନ୍ତି । ସେ ଏଥର ସତର୍କ ହୋଇଗଲେ । ଆଜନ୍ମ କାଙ୍ଗାଳକୁ ପରଶମଣି ମିଳିବା ପରି ସେ ପ୍ରଭୁଙ୍କ ସୁକୋମଳ ହସ୍ତକୁ ଜାବୁଡ଼ି ଧରିବାକୁ ଚେଷ୍ଟା କରନ୍ତେ ଭଗବାନ ତାଙ୍କ ହାତମୁଠାରୁ ଖସି ପଳାଇଲେ । ପ୍ରଭୁଙ୍କ ବିୟୋଗ ଯନ୍ତ୍ରଣାରେ ତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ଉଚ୍ଚସ୍ୱରରେ କ୍ରନ୍ଦନ କରି ଗାଇଲେ—

ହସ୍ତମୁତ୍‌କ୍ଷିପ୍ୟ ଯାତୋଽସି ବଳାତ୍ କୃଷ୍ଣ କିମଦ୍ଭୁତମ୍ ।
ହୃଦୟାତ୍ ଯଦି ନିର୍ଯାସି ପୌରୁଷଂ ଗଣୟାମି ତେ ॥

[ହାତ ଛଡ଼ାଇଣ ଚାଲିଯାଅ କୃଷ୍ଣ ଜାଣି ମୋତେ ନିରିବଳ ।
ହୃଦୟରୁ ଯେବେ ବାହାରି ଯିବ ହେ! ତେବେ ଜାଣିବି ସବଳ ॥]

ଭଗବାନ ଆଉ ଧରାଦେଲେ ନାହିଁ। ସେ ଏଥର ଦୂରରୁ ବାଟ କଢ଼ାଇ କଢ଼ାଇ ଆଗେ ଆଗେ ଚାଲିଲେ । ପ୍ରଭୁଙ୍କର ସେହି ସ୍ୱାଦିଷ୍ଟ ପ୍ରସାଦ, ମଧୁର କଣ୍ଠ ଓ ଦିବ୍ୟ କରସ୍ପର୍ଶ ବିଲ୍ୱମଙ୍ଗଳଙ୍କ ହୃଦୟରେ ବସି ଯାଇଥିଲା । ସେସବୁକୁ ସ୍ମରଣ କରି କରି ସେ କେତେବେଳେ ଅଧୀର ହୋଇ ବିଳାପ କରୁଥାନ୍ତି ତ ଆଉ କେତେବେଳେ ପ୍ରଣୟ କୋପରେ ଠାକୁରଙ୍କୁ ଉପାଲମ୍ଭ ଦେଉଥାନ୍ତି । ପ୍ରଭୁଙ୍କ ଦର୍ଶନ ଉତ୍କଣ୍ଠାରେ ବ୍ୟାକୁଳ ହୋଇ କେତେବେଳେ ଗୁହାରୀ ଜଣାଇ କହୁଥାନ୍ତି—

ହେ ଦେବ ହେ ଦୟିତ ହେ ଭୁବନୈକବନ୍ଧୋ
ହେ କୃଷ୍ଣ ହେ ଚପଳ ହେ କରୁଣୈକସିନ୍ଧୋ ।
ହେ ନାଥ ହେ ରମଣ ହେ ନୟନାଭିରାମ
ହା ହା କଦା ନୁ ଭବିତାସି ପଦଂ ଦୃଶୋର୍ମେ ॥

[ହେ ଦେବ! ହେ ପ୍ରିୟତମ! ଜଗତ ବାନ୍ଧବ । ହେ କୃଷ୍ଣ! ହେ ଚପଳ! ହେ କରୁଣା ଅର୍ଣ୍ଣବ ॥
ହେ ନାଥ! ହେ ରମଣ! ହେ ନୟନାଭିରାମ । କେବେ ମୁଁ ପାଇବି ତୁମ ଶ୍ରୀମୁଖ ଦର୍ଶନ ॥]

**ଅମୂନ୍ୟଧନ୍ୟାନି ଦିନାନ୍ତରାଣି,**
**ହରେ ତ୍ୱଦାଲୋକନମନ୍ତରେଣ ।**
**ଅନାଥବନ୍ଧୋ କରୁଣୈକସିନ୍ଧୋ**
**ହା ହନ୍ତ ହା ହନ୍ତ କଥଂ ନୟାମି ॥**

ଅର୍ଥ—''ହେ ଦୀନବନ୍ଧୁ! ହେ କରୁଣାସାଗର! ହେ ହରି! ତୁମେ ହିଁ କୁହ, ତୁମ ଦର୍ଶନ ବିହୁନେ ମୁଁ ଏହି ଅସାର ଦିନଗୁଡ଼ିକୁ କେମିତି ବ୍ୟତୀତ କରିବି ।''

ବିଲ୍ୱମଙ୍ଗଳଙ୍କ ହୃଦୟରୁ ନିର୍ଗତ ଏହିପରି ଅନେକ ଶ୍ଳୋକ 'ଶ୍ରୀକୃଷ୍ଣକର୍ଣ୍ଣାମୃତ' ନାମରେ ପ୍ରସିଦ୍ଧ ହେଲା । ପ୍ରକୃତରେ ତାହା ଶ୍ରୀକୃଷ୍ଣଙ୍କ କର୍ଣ୍ଣକୁ ଅମୃତ ତୁଲ୍ୟ ଆନନ୍ଦ ପ୍ରଦାନ କରିବାକୁ ସମର୍ଥ । ଭଗବାନ ବିଲ୍ୱମଙ୍ଗଳଙ୍କ ପାଖେ ପାଖେ ରହି ସବୁ ଶୁଣୁଥାନ୍ତି, କିନ୍ତୁ ତାଙ୍କୁ ଧରା ଦେଉ ନ ଥାନ୍ତି । କଳା ମେଘରେ ବିଜୁଳି କ୍ଷଣ କ୍ଷଣକେ ଲୁପ୍ତ ଓ ପ୍ରକାଶିତ ହେବା ପରି ଭଗବାନ ଲୁଚୁକାଳି ଖେଳି ଖେଳି ତାଙ୍କୁ ବାଟ କଢ଼ାଉଥାନ୍ତି । ପ୍ରଭୁଙ୍କ ମାୟା ବଳରେ ଦଣ୍ଡକ ଭିତରେ ସେ ବୃନ୍ଦାବନରେ ପହଞ୍ଚିଗଲେ ।

ବିଲ୍ୱମଙ୍ଗଳଙ୍କ ହୃଦୟରେ ଧୀରେ ଧୀରେ ପ୍ରଭୁମିଳନର ଉତ୍କଣ୍ଠା ଏତେ ତୀବ୍ରତର ହୋଇଗଲା ଯେ ଭଗବାନ ଆଉ ଲୁଚି ରହି ପାରିଲେ ନାହିଁ । ସେ ତ୍ରିଭଙ୍ଗ ଲଳିତ ଠାଣିରେ ତାଙ୍କ ସମ୍ମୁଖରେ ପ୍ରକଟ ହୋଇ ମଧୁର ସ୍ୱରରେ ବଂଶୀ ବାଦନ କଲେ । ପ୍ରଭୁଙ୍କ ସୁମଧୁର ବଂଶୀ ଧ୍ୱନି ଶ୍ରବଣରେ ବିଲ୍ୱମଙ୍ଗଳଙ୍କ ମଳିନ ମୁଖ ସୂର୍ଯ୍ୟ କିରଣରେ ବିକଶିତ ପଦ୍ମ ପରି ପ୍ରଫୁଲ୍ଲିତ ହୋଇଗଲା । ବଂଶୀ ସ୍ୱନରୁ ଓ ପରିବେଶର ଦିବ୍ୟତାରୁ ସେ ପ୍ରଭୁଙ୍କ ଆଗମନର ସଂକେତ ପାଇଗଲେ । ତାଙ୍କ ମନପକ୍ଷୀ ଆଉ ପଞ୍ଜୁରି ଭିତରେ ସ୍ଥିର ହୋଇ ରହିବାକୁ ଅକ୍ଷମ ହୋଇପଡ଼ିଲା । ଏଥର ତାଙ୍କର ନେତ୍ର ଯୁଗଳ ପ୍ରଭୁଙ୍କ ଶ୍ରୀଅଙ୍ଗ ମାଧୁରୀ ପାନ କରିବାକୁ ବ୍ୟାକୁଳ ହୋଇ ଉଠିଲା । ମାତ୍ର ଜ୍ୟୋତିହୀନ ହୋଇଥିବା କାରଣରୁ ତାଙ୍କ ପକ୍ଷେ ତାହା ସମ୍ଭବ ନ ଥିଲା । ଏହି ଅସାମର୍ଥ୍ୟ ଯୋଗୁଁ ଆଜି ବିଲ୍ୱମଙ୍ଗଳଙ୍କ ମନରେ ଅପାର କଷ୍ଟ । ଯେଉଁ ଆଖି ଦୁଇଟିକୁ ଫୁଟାଇ ଦେଇ ସେ ଦିନେ ଖୁସୀ ହୋଇଥିଲେ ଆଜି ତାହା ତାଙ୍କୁ ଅସହ୍ୟ ଦୁଃଖ ଦେଲା । ଭାବିଲେ—''ଅଯଥା ଆଖି ଦୁଇଟିକୁ ଫୁଟାଇଦେଲି, ନହେଲେ ଆଜି ମୋ ପ୍ରିୟତମଙ୍କୁ ଦର୍ଶନ କରି କୃତାର୍ଥ ହୋଇଥାନ୍ତି ।'' ଅନ୍ତର୍ଯାମୀ ଭଗବାନ ଭକ୍ତର ହୃଦୟ ବେଦନା ବୁଝିପାରିଲେ । ତଥାପି ତାଙ୍କର ମନ ବିଢ଼ିବା ପାଇଁ ସେ ପଗ୍ଚରିଲେ—''ବାବା! ମୁଁ ତୁମର ପ୍ରିୟତମ, ତୁମ ଆଗରେ ଠିଆ ହୋଇଛି । ତୁମେ କ'ଣ ମୋତେ ଦେଖିବାକୁ ଗ୍ଚହୁଁନ?'' ବିଲ୍ୱମଙ୍ଗଳ କାନ୍ଦି କାନ୍ଦି କହିଲେ—''ଦୟାମୟ!

ଏ ଅଭାଗା ନେତ୍ରର ସୌଭାଗ୍ୟ କାହିଁ ଯେ ତୁମକୁ ଦର୍ଶନ କରିବ! ତୁମେ ଦୟାକରି ମୋତେ ଦର୍ଶନ ଦେଲ, ଏତିକି ମୋ ପାଇଁ ବଡ଼ କଥା।'' ତାଙ୍କ ନେତ୍ରରୁ ବହି ଗ୍ଲୁଲିଥିବା ଲୋତକ ଧାର ପୋଛିଦେବା ଛଳରେ ଭଗବାନ ତାଙ୍କର ଦିବ୍ୟ କରକମଳ ଛୁଆଇଁ ଦେଲେ। ପ୍ରଭୁଙ୍କ କୋମଳ କରସ୍ପର୍ଶରେ ବିଲ୍ୱମଙ୍ଗଳଙ୍କର ସମସ୍ତ ଦୁଃଖ କ୍ଷଣକେ ଅପସରି ଗଲା। ତାଙ୍କର ଦୃଷ୍ଟିଶକ୍ତି ଫେରି ଆସିଲା। ସେ ସୌନ୍ଦର୍ଯ୍ୟନିଧାନ ପ୍ରଭୁଙ୍କର ଅପୂର୍ବ ଦର୍ଶନ ପାଇ ଆନନ୍ଦସାଗରରେ ମଗ୍ନ ହୋଇଗଲେ। ତାଙ୍କୁ ଲାଗିଲା ସତେ ଯେପରି ସମଗ୍ର ସୃଷ୍ଟିର ସୌନ୍ଦର୍ଯ୍ୟ ଏକତ୍ର ପୁଞ୍ଜୀଭୂତ ହୋଇ ସାକାର ବିଗ୍ରହ ଧାରଣ କରିଛି। ତୃଷାର୍ତ୍ତ ବ୍ୟକ୍ତି ଶୀତଳ ଜଳ ପାନ କରିବାକୁ ବ୍ୟାକୁଳ ହେବା ପରି ତାଙ୍କର ପ୍ରତିଟି ଇନ୍ଦ୍ରିୟ ଓ ମନ-ପ୍ରାଣ ପ୍ରଭୁଙ୍କ ରୂପ ମାଧୁରୀ ଆସ୍ୱାଦନ କରିବାକୁ ଆତୁର ହୋଇଗଲେ। ସ୍ୱୟଂ ତୃଷା ଯଦି ସୁମଧୁର ଶୀତଳ ଜଳ ରୂପ ଧାରଣ କରେ, ତେବେ ତାହା ତୃଷାର୍ତ୍ତ ବ୍ୟକ୍ତିର ତୃଷା ମେଣ୍ଟାଇବ କିପରି? ସେହି ସ୍ଥିତି ହୋଇଗଲା ବିଲ୍ୱମଙ୍ଗଳଙ୍କର। ପ୍ରଭୁଙ୍କର ଦର୍ଶନୀୟ ତିଳକ, ଆଜାନୁଲମ୍ବିତ ବନମାଳା ଓ ମଧୁର ସ୍ମିତହାସ୍ୟ ଦର୍ଶନ କରି ସେ ବିମୁଗ୍ଧ ହେଉଥାନ୍ତି। ଯେତେ ଦେଖୁଥିଲେ ମଧ୍ୟ ତାଙ୍କ ମନଭ୍ରମର ତୃପ୍ତ ହେଉ ନ ଥାଏ। ତାଙ୍କର ଦର୍ଶନ ଉତ୍କଣ୍ଠା ପ୍ରଶମିତ ହେବା ପରିବର୍ତ୍ତେ କ୍ଷଣକୁ କ୍ଷଣ ବୃଦ୍ଧି ପାଉଥାଏ। ଭକ୍ତବତ୍ସଳ ଭଗବାନ କରୁଣା ଦୃଷ୍ଟିରେ ଓ କୋମଳ କରସ୍ପର୍ଶରେ ବିଲ୍ୱମଙ୍ଗଳଙ୍କ ମନୋବାଞ୍ଛା ପୂର୍ଣ୍ଣ କରି ସହସା ଅନ୍ତର୍ଦ୍ଧାନ ହୋଇଗଲେ। ମୀନକୁ ଜଳରୁ କାଢ଼ିଦେବା ପରି ସେ ପ୍ରଭୁଙ୍କ ଅଦର୍ଶନରେ ଅଚେତ ହୋଇ ପଡ଼ିଲେ। ତାଙ୍କର ଉତ୍କଣ୍ଠା ଆହୁରି ଶତଗୁଣ ବଢ଼ିଗଲା। ଏଥର ସେ ନେତ୍ରପଥରେ ପ୍ରଭୁଙ୍କର ଭୁବନମୋହିନୀ ଛବିକୁ ହୃଦୟ ମନ୍ଦିରରେ ବିରାଜମାନ କରାଇ ଦିବାନିଶି ତାଙ୍କ ଆରାଧନାରେ ମଗ୍ନ ରହିଲେ।

ବିଲ୍ୱମଙ୍ଗଳ ଯିବା ଦିନଠାରୁ ଚିନ୍ତାମଣି ଜାଗତିକ ବିଷୟରୁ ବିମୁଖ ହୋଇ ଏକଲୟରେ ଠାକୁରଙ୍କୁ ସ୍ମରଣ କରିବା ସହିତ ପାଖରେ ବିଲ୍ୱମଙ୍ଗଳଙ୍କର ଚିତ୍ରଟିଏ ରଖି ଭକ୍ତିଭାବରେ ପ୍ରତିଦିନ ପୂଜା କରୁଥାଏ। ତାହାର ଶ୍ରଦ୍ଧା ଓ ଭକ୍ତି ପ୍ରଭାବରୁ ସେହି ଚିତ୍ରରେ ମଧ୍ୟ କେତେ ଥର ଦିବ୍ୟ ଲକ୍ଷଣ ପ୍ରକାଶ ପାଉଥିଲା। ଉଲ୍ଲେଖ ଅଛି ଯେ ଯେଉଁଦିନ ବିଲ୍ୱମଙ୍ଗଳ ତାଙ୍କର ଆଖି ଫୁଟାଇ ଦେଇଥିଲେ, ସେଦିନ ଚିତ୍ରର ଆଖିରୁ ଦୁଇ ଧାର ରକ୍ତ ବାହାରିଥିବାର ଚିନ୍ତାମଣି ଅନୁଭବ କରିଥିଲା। ସେହିପରି ତାଙ୍କୁ ଠାକୁରଙ୍କ ଦର୍ଶନ ହେବା ସମୟରେ ସେହି ଚିତ୍ରରେ ମଧ୍ୟ ଚିନ୍ତାମଣିକୁ ଅପୂର୍ବ ଉଜ୍ଜ୍ୱଳ କାନ୍ତି ଅନୁଭବ ହୋଇଥିଲା। ତା' ବ୍ୟତୀତ ଜନମୁଖରୁ

ମଧ୍ୟ ଚିନ୍ତାମଣି ଶୁଣିଲା ଯେ ବିଲ୍ୱମଙ୍ଗଳ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କ ଦର୍ଶନ ପାଇ କୃତାର୍ଥ ହୋଇଗଲେ । ଏହା ଶୁଣି ସେ ନିଜର ଉପଦେଶ ଓ. ଜୀବନକୁ କୃତାର୍ଥ ମଣିଲା । ବିଲ୍ୱମଙ୍ଗଳଙ୍କ ସହିତ ତା'ର ପ୍ରେମ ସମ୍ବନ୍ଧ ଥିବା ଅନୁଭବ କରି ତା' ହୃଦୟରେ ଉଚ୍ଛୁଳି ଉଠିଲା ଆନନ୍ଦଲହରୀ । ସେ ଭାବିଲା—"ଯେଉଁ ଦୟାମୟ ମୋର ପ୍ରିୟତମଙ୍କୁ ଦର୍ଶନ ଦେଇଛନ୍ତି, ସେ ନିଶ୍ଚୟ ମୋ ଭଳି ଅଭାଗିନୀକୁ ଦର୍ଶନ ଦେଇ କୃତାର୍ଥ କରିବେ ।"

ଏଥର ସେ ମଧ୍ୟ ସବୁକିଛି ପରିତ୍ୟାଗ କରି ବୃନ୍ଦାବନ ଉଦ୍ଦେଶ୍ୟରେ ଯାତ୍ରା କଲା । ବୃନ୍ଦାବନରେ ସାଧୁସନ୍ଥଙ୍କ ଠାରୁ ବିଲ୍ୱମଙ୍ଗଳଙ୍କ ଠିକଣା ପଚାରି ସେ ତାଙ୍କ ନିକଟରେ ପହଞ୍ଚିଲା । ବିଲ୍ୱମଙ୍ଗଳ ଚିନ୍ତାମଣି ଆସିଥିବାର ସଂକେତ ପାଇ ଆସନ ଉପେକ୍ଷି ଭକ୍ତିଭାବରେ ତାଙ୍କୁ ଅଭିନନ୍ଦନ ଜଣାଇଲା । ଚିନ୍ତାମଣି ମଧ୍ୟ ବିଲ୍ୱମଙ୍ଗଳଙ୍କ ପାଦତଳେ ବନ୍ଦନା କରି ତାକୁ ବହୁମାନ କଲେ । ଦୁଇ ପ୍ରଭୁପ୍ରେମୀ ପରସ୍ପରକୁ ଦେଖି ଆନନ୍ଦିତ ହେଉଥାନ୍ତି । ଦୁହିଙ୍କ ନେତ୍ରରୁ ଅବିରଳ ଆନନ୍ଦାଶ୍ରୁ ବହି ଚାଲିଥାଏ । ଦୁହେଁ ପ୍ରଭୁପ୍ରେମରେ ଏତେ ବିଲୀନ ହୋଇ ଯାଇଥାନ୍ତି ଯେ କେହି କିଛି କହିବାକୁ ସକ୍ଷମ ହେଉ ନ ଥାନ୍ତି । ଦୁହିଙ୍କର ବାକ୍‌ଶକ୍ତି ଅବରୁଦ୍ଧ ହୋଇଯାଇଥିଲେ ହେଁ ହୃଦୟର ଭାଷାରେ ଦୁହେଁ ପରସ୍ପରକୁ ସମ୍ମାନ ଜଣାଇଲେ । ମଧ୍ୟାହ୍ନ ସମୟ ହେବାରୁ ବିଲ୍ୱମଙ୍ଗଳ ଚିନ୍ତାମଣିକୁ ଠୁଙ୍ଗାରେ କ୍ଷୀରୀ ପ୍ରସାଦ ଦେଲେ । ଚିନ୍ତାମଣି ପଚାରିଲେ—"ଏଭଳି ଦିବ୍ୟ ପ୍ରସାଦ ତୁମେ କେଉଁଠୁ ପାଇଲ?" ସେ ଉତ୍ତର ଦେଲେ—"ଏ ଅଧମ ଦାସ ପ୍ରତି ପ୍ରଭୁଙ୍କର ଅପାର କରୁଣା । ସେ ମୋ ପାଇଁ ପ୍ରତିଦିନ ଏହିପରି ପ୍ରସାଦ ପଠାଉଛନ୍ତି ।" ଚିନ୍ତାମଣି କହିଲା—"ପ୍ରଭୁ ତୁମକୁ ଦେଇଥିବା ପ୍ରସାଦ ମୁଁ କେମିତି ପାଇଯିବି? ନା, ଏହା ଉଚିତ ନୁହେଁ । ଶ୍ୟାମସୁନ୍ଦର ଯଦି ମୋତେ ନିଜ ହାତରେ ପ୍ରସାଦ ଦେବେ, ତେବେ ଯାଇ ମୁଁ ପାଇବି । ଯିଏ ତୁମ ଉପରେ କରୁଣା କରିଛନ୍ତି, ସେ ନିଶ୍ଚୟ ମୋ ଉପରେ କରୁଣା କରିବେ ।" ଏହିଭଳି ଦୃଢ଼ ପ୍ରତିଜ୍ଞା କରି ଭକ୍ତ ଦ୍ୱୟ ସେଦିନ ଉପବାସରେ ପ୍ରଭୁଙ୍କ ବାଟ ଚାହିଁ ବସି ରହିଲେ । ଦୁହିଙ୍କର ପ୍ରେମ ନିଷ୍ଠାରେ ପ୍ରଭୁ ଅତ୍ୟନ୍ତ ପ୍ରସନ୍ନ ହୋଇ ଶ୍ରୀରାଧାରାଣୀଙ୍କୁ କହିଲେ—"ପ୍ରିୟେ! ପରମ ରସିକ ବିଲ୍ୱମଙ୍ଗଳଙ୍କର ପ୍ରେମିକା ଓ ପ୍ରେରଣାଦାତ୍ରୀ ଆସିଛନ୍ତି, ତୁମେ ଯାଇ ତାଙ୍କୁ ସତ୍କାର କର ।" ଶ୍ରୀରାଧାରାଣୀ କହିଲେ—"ପ୍ରିୟତମ! ସେ ତ ତୁମ ହାତରୁ ପ୍ରସାଦ ପାଇବା ପାଇଁ ଦୃଢ଼ ସଙ୍କଳ୍ପ କରିଛନ୍ତି, ତେଣୁ କେବଳ ମୁଁ ଗଲେ ଚଳିବ ନାହିଁ, ମୋ ସହିତ ତୁମକୁ ମଧ୍ୟ ଯିବାକୁ ହେବ ।" ଏହିପ୍ରକାରେ

ରସଘନ ଯୁଗଳମୂର୍ତ୍ତି ଶ୍ରୀରାଧା-କୃଷ୍ଣ ଚିନ୍ତାମଣିକୁ ଦର୍ଶନ ଏବଂ ପ୍ରସାଦ ଦେଇ କୃତାର୍ଥ କଲେ ।

ଉଲ୍ଲେଖ ଅଛି ଯେ ଥରେ ବିଲ୍ୱମଙ୍ଗଳଙ୍କ ପ୍ରାର୍ଥନାରେ ପ୍ରସନ୍ନ ହୋଇ ପ୍ରଭୁ ରାମଚନ୍ଦ୍ର ଧନୁଶର ଓ ରାଜ ମୁକୁଟ ପରିବର୍ତ୍ତେ ମୋହନ ବଂଶୀ ଓ ମୟୂର ଚନ୍ଦ୍ରିକା ଧାରଣ କରି ତାଙ୍କୁ ଦର୍ଶନ ଦେଇଥିଲେ । ଏହିପରି ପ୍ରଭୁଙ୍କ ଲୀଳା ଆସ୍ୱାଦନ କରି ଭକ୍ତ ଦ୍ୱୟ ବୃନ୍ଦାବନରେ ନିବାସ କଲେ । ପ୍ରଭୁଭକ୍ତିରେ ମଗ୍ନ ହୋଇ ଶେଷ ଜୀବନ ଅତିବାହିତ କରିବା ସହିତ ସେ ଦୁହେଁ ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ଲୀଳାର ଅଧିକାରୀ ହୋଇଥିଲେ ।

ଚିନ୍ତାମଣି ଓ ବିଲ୍ୱମଙ୍ଗଳଙ୍କ ପୂର୍ବଜନ୍ମ ସମ୍ବନ୍ଧରେ ଏକ କିମ୍ବଦନ୍ତୀ ଶୁଣିବାକୁ ମିଳେ । ଚିନ୍ତାମଣି ପୂର୍ବ ଜନ୍ମରେ କୌଣସି ରାଜାଙ୍କର ଅଲିଅଳି କନ୍ୟା ଥିଲେ । ଦୈବଯୋଗେ ଖୁବ୍ କମ୍ ବୟସରେ ତାଙ୍କର ଦେହାନ୍ତ ଘଟିଲା । ପ୍ରାଚୀନ ପ୍ରଥା ଓ ଝିଅ ପ୍ରତି ଅତ୍ୟଧିକ ମୋହ ଥିବା କାରଣରୁ ରାଜା ଅନେକ ସ୍ୱର୍ଣ୍ଣାଭୂଷଣରେ ତାହାର ମୃତ ଦେହକୁ ମଣ୍ଡିତ କରାଇ ମାଟି ତଳେ ପୋତିଦେଲେ । ଜଣେ ସନ୍ନ୍ୟାସୀ ଦୂରରୁ ଏ ସବୁ ଘଟଣା ଦେଖୁଥାନ୍ତି । ସାଧୁସନ୍ଥଙ୍କ ପଙ୍ଗତ କରାଇବା ପାଇଁ ତାଙ୍କୁ ପ୍ରଚୁର ଧନ ଲୋଡ଼ା ଥିଲା । ତେଣୁ ଲୋକମାନେ ରାଜକନ୍ୟାକୁ ପୋତି ଦେଇ ଫେରିଯିବା ପରେ ସନ୍ନ୍ୟାସୀ ମନେ ମନେ ଭାବିଲେ, "ଯଦି କୌଣସି ପ୍ରକାରେ ମୋତେ ଏହି ଗହଣା ସବୁ ମିଳିଯାଆନ୍ତା, ତେବେ ମୋର କାର୍ଯ୍ୟ ସୁଗ୍ଭରୁରୂପେ ହୋଇଯାଆନ୍ତା । ଆଉ କାହା ଆଗରେ ମୋତେ ହାତ ପତାଇବାକୁ ପଡ଼ନ୍ତା ନାହିଁ । ବେକାରରେ ଗହଣାଗୁଡ଼ାକ ମାଟିରେ ପୋତି ହୋଇଗଲେ କି ଲାଭ ମିଳିବ?" ଯଦିଓ ସର୍ବତ୍ୟାଗୀ ସନ୍ନ୍ୟାସୀ ପକ୍ଷେ ଏଭଳି ଧନ ସଂଗ୍ରହ କରି ପୁନଃ ତାକୁ ସାଧୁସେବାରେ ବିନିଯୋଗ କରିବା ଶାସ୍ତ୍ରାନୁମୋଦିତ ନୁହେଁ; ଏହା କାଦୁଅରେ ପଶି ଗୋଡ଼ ଧୋଇବା ସଙ୍ଗେ ସମାନ ଏବଂ ଏଭଳି ନିନ୍ଦ୍ୟ ଉପାୟରେ ଧନ ଲାଭ କରିବା ଆହୁରି ଅଧିକ କଳଙ୍କିତ କାର୍ଯ୍ୟ । ତଥାପି ସାଧୁସେବା ପ୍ରତି ତାଙ୍କର ଗଭୀର ନିଷ୍ଠା ଥିବାରୁ ସେ ଏହିପରି ବିଗ୍ଭର କରି ଅର୍ଦ୍ଧରାତିରେ ଯାଇ ପହଞ୍ଚିଲେ ଶ୍ମଶାନରେ । ମାଟି ଖୋଳି ରାଜକନ୍ୟାର ଦେହରୁ ଗହଣା କାଢ଼ିବାକୁ ହାତ ବଢ଼ାଇବା ମାତ୍ରେ ଶୂନ୍ୟବାଣୀ ହେଲା—"ମୋର ଗହଣା କାଢ଼ି ମୋତେ କାହିଁକି ଆଭୂଷଣହୀନ କରୁଛ?" ସନ୍ନ୍ୟାସୀ କହିଲେ—"ସାଧୁସନ୍ଥଙ୍କ ପଙ୍ଗତ ପାଇଁ ମୋର ଧନ ଦରକାର ।" ପୁଣି ଶବ୍ଦ ଶୁଭିଲା—"ଏଥିପାଇଁ ମୋ ଦେହରୁ ଗହଣା କାଢ଼ ନାହିଁ । ମୋ ବାପାଙ୍କ

ନିକଟକୁ ଯାଅ । ମୋ ପଲଙ୍କର ମୁଣ୍ଡ ପଟ ଦୁଇ ଖୁରା ତଳେ ଦୁଇଟି ସୁନା ଇଟା ପୋତା ହୋଇଛି । ବାପାଙ୍କ ଠାରୁ ତାହା ମାଗି ଆଣି ସାଧୁସନ୍ଥଙ୍କ ପଙ୍ଗତର ବ୍ୟବସ୍ଥା କର । ସନ୍ୟାସୀ ଆସି ରାଜାଙ୍କୁ ଏ ସବୁ ଘଟଣା ଜଣାଇବାରୁ ରାଜା ଅତି ଆନନ୍ଦରେ ସୁନା ଇଟା ଦୁଇଟି ଦେଇଦେଲେ । କିନ୍ତୁ ସନ୍ୟାସୀଙ୍କର ଉତ୍ସବ ପାଇଁ ତାହା ମଧ୍ୟ ଯଥେଷ୍ଟ ହେଲା ନାହିଁ । ତେଣୁ ସେ ପୁନର୍ବାର ଯାଇ ରାଜକନ୍ୟାର ସମାଧି ଉପରୁ ମାଟି କାଢ଼ି ତା'ର ସବୁ ଗହଣା କାଢ଼ିନେଲେ । ସେସବୁକୁ ବନ୍ଧାବନ୍ଧି କରି ଫେରିବା ବେଳକୁ ଆକାଶବାଣୀ ହେଲା—"ସାବଧାନ! ସନ୍ୟାସୀ ହୋଇ ତୁମେ ଧନ ଲୋଭରେ ସ୍ତ୍ରୀକୁ ସ୍ପର୍ଶ କରି ଭୀଷଣ ଅପରାଧ କରିଛ । ସନ୍ୟାସୀ ପାଇଁ କାଞ୍ଚନ ଓ କାମିନୀର ସ୍ପର୍ଶ ସମ୍ପୂର୍ଣ୍ଣ ବର୍ଜିତ । ତେଣୁ ଏହି ଅପରାଧର ଫଳସ୍ୱରୂପ ପରଜନ୍ମରେ ତୁମେ ବ୍ରାହ୍ମଣକୁଳରେ ଜନ୍ମ ପାଇଲେହେଁ ବେଶ୍ୟାମାଗୀ ହେବ ।" ସନ୍ୟାସୀ କହିଲେ—"କାହିଁକି? ମୁଁ ତ ନିଜ ପାଇଁ ଏ କାର୍ଯ୍ୟ କରି ନାହିଁ, ଯାହା ବି କରିଛି ସାଧୁସନ୍ଥଙ୍କ ସେବା ପାଇଁ କରିଛି । ପୁଣି ମୋତେ ଅପରାଧ କାହିଁକି ଲାଗିବ?" ଶବ୍ଦ ଶୁଭିଲା—"ତୁମର ସାଧୁସେବା ବ୍ୟର୍ଥ ହେବ ନାହିଁ । ତାହାର ଫଳସ୍ୱରୂପ ବେଶ୍ୟାଗମନ ରୂପୀ ଘୋର ପତନଗର୍ତ୍ତରେ ପଡ଼ିବା ସତ୍ତ୍ୱେ ତୁମକୁ ଈଶ୍ୱରଙ୍କର ଦର୍ଶନ ମିଳିବ?" ସନ୍ୟାସୀ ପଚାରିଲେ—"ମୋତେ କେଉଁ ଉପାୟରେ ଈଶ୍ୱରଙ୍କ ଦର୍ଶନ ମିଳିବ, ଦୟାକରି ତାହାର ମାର୍ଗ ବତାଇଦେବେ କି?" ଶବ୍ଦ ଶୁଭିଲା—"ପରଜନ୍ମରେ ମୁଁ ହେବି ବେଶ୍ୟା ଏବଂ ତୁମେ ହେବ ମୋଠାରେ ଅନୁରାଗୀ ପ୍ରେମିକ । କିଛି ଦିନ ଅନ୍ତେ ମୋର ସତ୍‌ପ୍ରେରଣାରେ ପ୍ରେରିତ ହୋଇ ତୁମେ ଭଗବତ୍‌ମାର୍ଗରେ ଅଗ୍ରସର ହେବ । ତା' ସହିତ ମୁଁ ମଧ୍ୟ ବିଷୟବାସନାରୁ ବିମୁଖ ହୋଇ ପ୍ରଭୁଙ୍କ ଭଜନରେ ମନନିବେଶ କରିବି, ଯଦ୍ଦ୍ୱାରା ଆମ୍ଭ ଦୁହିଙ୍କର ଉଦ୍ଧାର ହେବ । ସନ୍ୟାସୀ ପଚାରିଲେ—"ମୁଁ ଜାଣିବାକୁ ଚାହେଁ ଯେ କେଉଁ ଅପରାଧ କାରଣରୁ ତୁମେ ଏତେ ଶ୍ରେଷ୍ଠ ରାଜକନ୍ୟାରୁ ପତିତା ହୋଇ ବେଶ୍ୟାକୁଳରେ ଜନ୍ମ ନେବ? ତୁମ ଚରିତ୍ର ତ ଗଙ୍ଗା ଭଳି ଅତ୍ୟନ୍ତ ପବିତ୍ର! ପୁଣି ତୁମର ଏଭଳି ପତନ କାହିଁକି?" ଶୂନ୍ୟବାଣୀ ହେଲା—"ତୁମ ଭଳି ଧର୍ମଭ୍ରଷ୍ଟ ସନ୍ୟାସୀଙ୍କର ସ୍ପର୍ଶ ଯୋଗୁଁ ମୋତେ ବେଶ୍ୟାକୁଳରେ ଜନ୍ମ ନେବାକୁ ପଡ଼ିବ ।" ସନ୍ୟାସୀ ଆଉ କିଛି ନ କହି ନୀରବରେ ସେଠାରୁ ଫେରିଗଲେ । ପରଜନ୍ମରେ ସେହି ସନ୍ୟାସୀ ବିଲ୍ୱମଙ୍ଗଳ ରୂପରେ ବ୍ରାହ୍ମଣକୁଳରେ ଜନ୍ମ ହୋଇ ଭଗବାନଙ୍କୁ ପାଇଥିଲେ ।



# ରଘୁ ଅରକ୍ଷିତ

ଜଗଦାନନ୍ଦକନ୍ଦ ଜଗନ୍ନାଥଙ୍କ ଲୀଳା ବଡ଼ ବିଚିତ୍ର। ପ୍ରଣତଜନର ପାଖେ ପାଖେ ରହି ସେ ତାକୁ ସକଳ ସଂକଟରୁ ଉଦ୍ଧାର କରିବା ପାଇଁ କେତେ ଯେ ଅଦ୍ଭୁତ ଲୀଳା ରଚିଥାନ୍ତି, ତାହାକୁ ସାଧାରଣ ମାନବ ବୁଝି ପାରିବ ନାହିଁ। ତାଙ୍କ ଶ୍ରୀଚରଣ ଆଶ୍ରୟକୁ ଯିଏ ଥରେ ଗ୍ଭଲିଯାଏ ଏବଂ ଦୁଇ ଭୁଜ ଉଠାଇ ହୃଦୟର ସହ ନିଜକୁ ସମର୍ପିତ କରିଦିଏ, ତାହାକୁ ସେ କେବେ ନିଜ ଅଭୟ ବରଦ ବାହୁଛାୟାରୁ ଅନ୍ତର କରି ପାରନ୍ତି ନାହିଁ। ସେ ସର୍ବସମର୍ଥ, କିନ୍ତୁ ଏତିକି କରିବାକୁ ଅସମର୍ଥ। ତାଙ୍କ ଲୀଳାର ଏହା ଏକ ଅଦ୍ଭୁତ ବିଡ଼ମ୍ବନା ଯେ ତାଙ୍କ ଭକ୍ତ ଜଗତ ଦୃଷ୍ଟିରେ କେବେ କେବେ ଗରିବ ଓ ଅବହେଳିତ ଦେଖାଯାଇଥାଏ। କିନ୍ତୁ ଜାଣି ରଖିବା ଉଚିତ ଯେ, ଭଗବାନ ନିଜ କୃପା-ପରିଧିର ବାହାରକୁ ଛାଡ଼ି ନ ଦେବା ପାଇଁ ଏହିପରି ଘଟଣାଚକ୍ର ସଂଯୋଜନା କରିଥାନ୍ତି। ପ୍ରଭୁ କେବେ କେବେ ଭକ୍ତକୁ ତା'ର ଆତ୍ମୀୟ ସ୍ୱଜନଙ୍କ ଠାରୁ ବହୁ ଦୂରକୁ ନେଇଯାଇ ତା'ର ସମସ୍ତ ବିଜାତୀୟ ନାଶବାନ୍ ଆଶ୍ରୟର ମୂଳଚ୍ଛେଦନ କରିଥାନ୍ତି ତ ଆଉ କେତେବେଳେ ସର୍ବସ୍ୱ ହରଣ କରି ତା'ର ଆସ୍ଥା ଓ ବିଶ୍ୱାସକୁ ନିଜ ମଙ୍ଗଳମୟ ବିଧାନ ଉପରେ ଅଟଳରୂପେ ସ୍ଥାପିତ କରିଥାନ୍ତି। ପ୍ରଭୁଙ୍କ ପ୍ରେରିତ ପ୍ରତ୍ୟେକ ବିଧାନ ଭକ୍ତକୁ କୃପାବାରିରେ ଅଭିଷିକ୍ତ କରିଥାଏ ତା' ଅଜାଣତରେ। ସଂସାରରେ ସେ ନିଜକୁ ଅରକ୍ଷିତ ଭାବିଥାଏ ସତ, କିନ୍ତୁ ସ୍ୱୟଂ ଜଗତପିତା ହୋଇଥାନ୍ତି ତା'ର ରକ୍ଷକ। ଭକ୍ତ ହିଁ ଭଗବାନଙ୍କର ପ୍ରାଣଧନ। ତେଣୁ ପ୍ରଭୁ ତା' ନିକଟରେ ଛାଇ ପରି ରହି ପ୍ରତି ପଦକ୍ଷେପରେ ତାକୁ ରକ୍ଷା ନ କରିବେ ବା କିପରି? ଏହିପରି ଜଣେ ପ୍ରଭୁ ଆଶ୍ରିତ ଭକ୍ତ ଥିଲେ ରଘୁନାଥ ମହାପାତ୍ର। ଲୋକମୁଖରେ ସେ ରଘୁ ଅରକ୍ଷିତ ନାମରେ ଅଧିକ ପରିଚିତ।

ରଘୁନାଥଙ୍କ ଜନ୍ମସ୍ଥାନ ଥିଲା ହରିପୁର। ତାଙ୍କ ପିତା କୃଷ୍ଣଚନ୍ଦ୍ର ମହାପାତ୍ର ଥିଲେ ସେ ଅଞ୍ଚଳର ଖ୍ୟାତନାମା ଜମିଦାର। ଧନସମ୍ପତ୍ତି, ଦାସଦାସୀ କିଛି ଅଭାବ ନ ଥିଲା ତାଙ୍କ ପରିବାରରେ। ଅତିଥି ଅଭ୍ୟାଗତଙ୍କର ଆଗମନ ଓ ସେବା ସତ୍କାର ହେତୁ ତାଙ୍କ ବାସଭବନରେ ସବୁବେଳେ ଗହଳଚହଳ ଲାଗି ରହୁଥିଲା। ଜମିଦାର କୃଷ୍ଣଚନ୍ଦ୍ରଙ୍କ ସହଧର୍ମିଣୀ କମଳା ଥିଲେ ସାକ୍ଷାତ୍ କମଳାଦେବୀଙ୍କ ପରି। ତାଙ୍କର ପତିବ୍ରତା ଧର୍ମରେ ଯେତିକି ନିଷ୍ଠା, ହୃଦୟ ସେହିପରି ଉଦାର। ତେଣୁ ଭଗବାନଙ୍କ

କୃପାରୁ ଭକ୍ତ ରଘୁନାଥଙ୍କ ଭଳି ସୁପୁତ୍ର ତାଙ୍କ କୋଳମଣ୍ଡନ କରିଥିଲେ । ବାଲ୍ୟକାଳରୁ ରଘୁନାଥଙ୍କ ସ୍ୱଭାବ ଥିଲା ଅତ୍ୟନ୍ତ ଶାନ୍ତ । ତାଙ୍କ ସୁଶୀଳତା, ବିନମ୍ରତା, ମଧୁର ବାଣୀ ଓ ଶିଷ୍ଟ ବ୍ୟବହାରରେ ସମସ୍ତେ ମୁଗ୍ଧ ହୋଇଯାଉଥିଲେ । ଭଗବାନଙ୍କ ପ୍ରତି ଭକ୍ତିଭାବନା ତାଙ୍କ ବାଳସୁଲଭ କୋମଳ ହୃଦୟରେ ଆପେ ଆପେ ପ୍ରସ୍ଫୁଟିତ ହୋଇଥିଲା । ତେଣୁ ସେ ନିତିଦିନ ମନ୍ଦିରକୁ ଯାଇ ଠାକୁରଙ୍କ ଦର୍ଶନ କରନ୍ତି, ନିଜ ହୃଦୟର ଆବେଗଭରା ଉଦ୍‌ଗାର ଠାକୁରଙ୍କୁ ଶୁଣାନ୍ତି । ଏହିପରି ତାଙ୍କ ଜୀବନର ପ୍ରଥମ ସୋପାନ କଟିଗଲା । ତାଙ୍କୁ ସତର ବର୍ଷ ବୟସ ହେବା ବେଳକୁ ପିତାମାତା ତାଙ୍କର ବିବାହ ପାଇଁ ଆୟୋଜନ କଲେ । କଳାବତୀପୁର ବାସିନ୍ଦା ଗଙ୍ଗାଧର କରଣଙ୍କ ସୁଲକ୍ଷଣା କନ୍ୟା ଅନ୍ନପୂର୍ଣ୍ଣାଙ୍କ ସହ ତାଙ୍କର ଶୁଭ ପରିଣୟ ଅନୁଷ୍ଠିତ ହେଲା । ଅନ୍ନପୂର୍ଣ୍ଣା ରୂପରେ ଯେମିତି, ଗୁଣରେ ମଧ୍ୟ ସେମିତି । ସାତ ଭାଇଙ୍କର ସେ ଏକମାତ୍ର ଅଲିଅଳି ଭଉଣୀ । ସେ ଦୃଷ୍ଟିରୁ ଘରେ ସମସ୍ତେ ତାକୁ ଅଧିକ ସ୍ନେହ କରୁଥିଲେ ଏବଂ ତା'ର ବିବାହ ମଧ୍ୟ ମହାସମାରୋହରେ ସମ୍ପନ୍ନ ହେଲା ।

ସୁକୁମାରୀ ସୁଲକ୍ଷଣା ବୋହୂଟି ପାଇଲା ପରେ କମଳାଙ୍କ ଆନନ୍ଦ କହିଲେ ନ ସରେ । କିନ୍ତୁ ସବୁଦିନ ସମାନ ଯାଏ ନାହିଁ । ସୁଖ ପରେ ଦୁଃଖ ଏବଂ ଦିନ ପରେ ରାତି ସଂସାରର ଅବାରିତ ନିୟମ । ଅଗ୍ନକ କେଉଁଆଡୁ ଦାରୁଣ ଦୁର୍ଭିକ୍ଷ ଅନାଟନର ଦିନ ମାଡ଼ି ଆସିଲା । ଲାଗେ ଲାଗେ କେତେ ବର୍ଷ ଶସ୍ୟହାନି ଘଟିବାରୁ ଲୋକେ ଉଦରର ଜ୍ୱାଳା ଶାନ୍ତ କରିବା ପାଇଁ ଗହଣାଗାଣ୍ଠି, କଂସା ବାସନ ବିକ୍ରି କରି ଓ ବନ୍ଧକ ପକାଇ ନିଃସ୍ୱ ହୋଇଗଲେ । ଚତୁର୍ଦ୍ଦିଗରେ ହା-ଅନ୍ନର ଚିତ୍କାର । କୃଷ୍ଣଚନ୍ଦ୍ରଙ୍କ ଦୟାଳୁ ହୃଦୟ ଲୋକମାନଙ୍କର ଏଭଳି ଦୟନୀୟ ସ୍ଥିତି ଦେଖି ଦ୍ରବିତ ହୋଇଗଲା । ସେ ଲଗାଣ କରିଥିବା ଧନରାଶିକୁ ଆଦାୟ ନ କରି ଛାଡ଼ କରିଦେଲେ ଏବଂ ନିଜ ପାଖରେ ଯାହା କିଛି ଧାନ-ଚାଉଳ ଟଙ୍କା ପଇସା ଥିଲା, ତାକୁ ମଧ୍ୟ ଦରିଦ୍ର ଓ ଦୁଃଖୀମାନଙ୍କ ମଧ୍ୟରେ ବାଣ୍ଟିବାକୁ ଲାଗିଲେ । କ୍ରମେ କ୍ରମେ ତାଙ୍କର ଗଚ୍ଛିତ ଧନଭଣ୍ଡାର ଶୂନ୍ୟ ହେବାକୁ ବସିଲା ।

ମଣିଷ ସ୍ୱଚ୍ଛଳ ଅବସ୍ଥାରେ ଯେପରି ମର୍ଯ୍ୟାଦାରେ ଚଳି ଆସିଥାଏ, ସଂକଟ ସମୟରେ ମଧ୍ୟ ତାହା ସହଜରେ ଛାଡ଼ି ପାରେ ନାହିଁ । ଏହି କାରଣରୁ ଅନ୍ୟକୁ ଋଣ ଦେଉଥିବା କୃଷ୍ଣ ମହାପାତ୍ର ଆଜି ସ୍ୱୟଂ ଋଣୀ ହୋଇଗଲେ । କାଳକ୍ରମେ ଋଣ ପରିଶୋଧର ଚିନ୍ତା ସାଙ୍ଗକୁ ରୋଗ ଆକ୍ରମଣ କଲା କୃଷ୍ଣଚନ୍ଦ୍ରଙ୍କୁ ଏବଂ ସେ ହେଲେ ମୃତ୍ୟୁଶଯ୍ୟାଶାୟୀ । ମରଣଶଯ୍ୟାରେ ସେ ରଘୁନାଥଙ୍କୁ ଡାକି କହିଲେ—

''ବାବୁରେ! ମୋର ଶେଷ ସମୟ ଆସିଗଲା। ଦୁଃଖର କଥା, ମୁଁ ବାପ ହୋଇ ଆଜି ତୋ ମୁଣ୍ଡରେ ଋଣର ଏକ ବିରାଟ ବୋଝ ଲଦି ଦେଇ ଯାଉଛି! ଗୋଟିଏ କଥା ମନେ ରଖିବୁ। ମୁଁ ଆଣିଥିବା ଋଣ ସବୁକୁ ଯଥାସାଧ୍ୟ ଶୁଝି ଦେବାକୁ ଚେଷ୍ଟା କରିବୁ। କାହାରିକୁ ଠକି ଦେବାକୁ ମନରେ ବିଗ୍ଚର ମଧ୍ୟ ଆଣିବୁ ନାହିଁ।'' ଏତିକି କହି କୃଷ୍ଣଚନ୍ଦ୍ର ସବୁଦିନ ପାଇଁ ଆଖି ବୁଜିଦେଲେ। ପତିପ୍ରାଣା କମଳା ମଧ୍ୟ ପୁତ୍ରକୁ ଆଶ୍ୱାସନା ଦେଇ ସ୍ୱାମୀଙ୍କ ଚିତାରେ ତାଙ୍କର ସହଗମନ କଲେ। ଏକାସଙ୍ଗେ ପିତାମାତାଙ୍କ ବିୟୋଗରେ ରଘୁନାଥଙ୍କ ମୁଣ୍ଡରେ ଦାରୁଣ ବଜ୍ରପାତ ହେଲା। ତଥାପି ଭଗବାନଙ୍କ ବିଧାନକୁ ସମ୍ମାନ ଜଣାଇ ସେ ଦୁଃଖକଷ୍ଟରେ କାଳାତିପାତ କଲେ।

ଅନ୍ନପୂର୍ଣ୍ଣା ସେତେବେଳେ ବାପଘରେ ଥାଏ। କାରଣ ସେ କାଳରେ ଏହା ଏକ ସାଧାରଣ ପ୍ରଥା ଥିଲା ଯେ ବିବାହ ପରେ କନ୍ୟା ଘରଯୋଗ୍ୟା ହେବା ପର୍ଯ୍ୟନ୍ତ ବାପଘରେ ରହୁଥିଲା। ତା ଛଡ଼ା ଅନ୍ନପୂର୍ଣ୍ଣା ବଡ଼ଘରର ଝିଅ। ସାତ ଭାଇଙ୍କର ଏକମାତ୍ର ଅଲିଅଳି ଭଉଣୀ। ତେଣୁ ସମସ୍ତେ ତାକୁ ସ୍ନେହ ଶ୍ରଦ୍ଧା କରୁଥିଲେ। ତା'ର ବାପାଭାଇଙ୍କ ପାଖରେ ପ୍ରଚୁର ଧନ ଥିଲା ସତ, କିନ୍ତୁ ସେମାନେ ଥିଲେ ହୃଦୟହୀନ ଓ କୃପଣ। ସାଧାରଣତଃ ଧନୀ ଲୋକଙ୍କ ହୃଦୟ କଠୋର ହୋଇଯାଏ। ସେମାନେ ଅନ୍ୟର ଦୁଃଖକୁ ବୁଝି ପାରନ୍ତି ନାହିଁ। ନିଜେ ଦିନରାତି ଭୋଗବିଳାସରେ ବୁଡ଼ି ରହନ୍ତି, କିନ୍ତୁ ଅନ୍ୟର ଦୁଃଖ ଦେଖି ଆଖି ବୁଜି ପକାନ୍ତି। ସେମାନଙ୍କର ଧନ ଉପଯୁକ୍ତ ସମୟରେ କାମରେ ଲାଗିପାରେ ନାହିଁ। ସେମାନେ କେବଳ ମହୁମାଛି ପରି ଧନ ସଂଗ୍ରହ କରିବାରେ ହିଁ ବ୍ୟସ୍ତ ରହନ୍ତି। ଏପରି କି ନିଜ ପୁଅଝିଅଙ୍କ ଠାରୁ ମଧ୍ୟ ଧନ ଲୁଗ୍ଚଇ ରଖନ୍ତି, ଯେଉଁମାନେ ଭବିଷ୍ୟତରେ ବିନା ଚେଷ୍ଟାରେ ମଧ୍ୟ ସେହି ସଞ୍ଚିତ ଧନର ଉତ୍ତରାଧିକାରୀ ହେବେ। ଛାତିକୁ ପଥର କରି ସେମାନେ ପିତାମାତାଙ୍କ ଦୁଃଖକଷ୍ଟକୁ ମଧ୍ୟ ଆଖିବୁଜି ସହି ଯାଆନ୍ତି, କିନ୍ତୁ ସେମାନଙ୍କ ପାଇଁ ପଇସାଟିଏ ଖର୍ଚ୍ଚ କରିବାକୁ ତାଙ୍କ ବିବେକ କହେ ନାହିଁ। ତେଣୁ ଜ୍ୱାଇଁର ଏଭଳି ଦୁର୍ଦ୍ଦିନ ଓ ଦୁରବସ୍ଥାରେ ମଧ୍ୟ ଗଙ୍ଗାଧର କିଛି ସାହାଯ୍ୟ କରିବାକୁ ଆଗେଇ ଆସିଲେ ନାହିଁ। ସବୁକିଛି ଜାଣି ମଧ୍ୟ ନ ଜାଣିଲା ପରି ରହିଲେ। ରଘୁନାଥ ମଧ୍ୟ ଶ୍ୱଶୁରଙ୍କୁ ସାହାଯ୍ୟ ମାଗିଲେ ନାହିଁ। ଘରେ ଯାହା କିଛି ଥିଲା, ସବୁ ବିକ୍ରି କରି କରଜ ଶୁଝିଦେଲେ ଏବଂ ଯଉତୁକରୂପେ ଶ୍ୱଶୁରଘରୁ ମିଳିଥିବା ଧନରେ ଦେବସେବାର ନିୟମିତ ବ୍ୟବସ୍ଥା କରିଦେଇ ନିଜ ଭାଗ୍ୟକୁ ଆଦରି ନେବା ପାଇଁ ଘରୁ ବାହାରି ପଡ଼ିଲେ।

ନିୟତିର ଦୁର୍ଲଘ୍ୟ ରେଖାକୁ ଅତିକ୍ରମ କରିଯିବାକୁ କାହାର ବା ସାମର୍ଥ୍ୟ ଅଛି। ତାହାର ନିୟତ ବିଧାନକୁ ମଥାପାତି ଅଙ୍ଗୀକାର କରିବାକୁ ସମସ୍ତେ ବାଧ୍ୟ। କିନ୍ତୁ ସେହି ବିଧାନକୁ ବଦଳାଇ ନ ପାରିଲେ ମଧ୍ୟ ମଣିଷ ତାହାକୁ ଯଦି ଠିକ୍‌ରୂପେ ସଦୁପଯୋଗ କରିବ, ତେବେ ଅଙ୍ଗାର ଗର୍ଭରୁ ହୀରା ଜନ୍ମିବା ପରି ଘୋର ଦୁର୍ଦ୍ଦିନର ଅନ୍ଧକାର ମଧ୍ୟରୁ ସେ ଉଜ୍ଜ୍ୱଳ ଚରିତ୍ର ହୋଇ ବାହାରି ଆସି ଜଗତକୁ ଉଦ୍ଭାସିତ କରି ପାରିବ ତା'ର ଦିବ୍ୟାଲୋକ ପ୍ରଭାବରେ। ଦୁଃଖ ହିଁ ମଣିଷକୁ ଦେଦୀପ୍ୟମାନ ପ୍ରତିଭା ଦେଇ ଗଢ଼େ। ସୁବର୍ଣ୍ଣକୁ ବିଶୁଦ୍ଧ ଓ ପରିଷ୍କୃତ କରିବା ପାଇଁ ବଣିଆ ତାକୁ ନିଆଁରେ ପୋଡ଼େ, ହାତୁଡ଼ିରେ ପିଟେ ଓ ଉହାରେ ଘଷେ; କିନ୍ତୁ ଏହି ସବୁ ପ୍ରକ୍ରିୟା ଦ୍ୱାରା ସୁନାର ମହତ୍ତ୍ୱ ହ୍ରାସ ପାଏ ନାହିଁ, ବରଂ ତା'ର ସୁପ୍ତ କାନ୍ତି ବିକଶିତ ହୁଏ। ଭଗବାନ ମଧ୍ୟ ଭକ୍ତ ପ୍ରତି ସେହିପରି ବ୍ୟବହାର କରନ୍ତି। ଭକ୍ତର ପୂର୍ବକୃତ ପାପ ପ୍ରକ୍ଷାଳନ କରିବା ସହିତ ତା' ହୃଦୟକୁ ସମସ୍ତ ଜାଗତିକ ପ୍ରତ୍ୟାଶାଶୂନ୍ୟ କରି ଏକନିଷ୍ଠ ଭଗବଦ୍ ବିଶ୍ୱାସରେ ରସାଣିତ କରିଦେବା ଉଦ୍ଦେଶ୍ୟରେ ସେ ଦୁଃଖ ପ୍ରେରଣ କରନ୍ତି। କିନ୍ତୁ ଭକ୍ତ ସେହି ଦୁଃଖରେ ଭାଙ୍ଗି ପଡ଼ି ପତନର ପଥକୁ ଆଦରି ନିଏ ନାହିଁ କି ପ୍ରତିକାର ପାଇଁ କୌଣସି ବ୍ୟକ୍ତି ବା ବସ୍ତୁର ଆଶ୍ରୟ ନିଏ ନାହିଁ। ସେ ଆଶ୍ରୟ ନିଏ କେବଳ ପ୍ରଭୁଙ୍କର। ତାଙ୍କରି ଠାରେ ତା'ର ଅନନ୍ୟତା ହୁଏ ଦୃଢ଼ ଓ ଅଟଳ। ତା'ପରେ ପ୍ରଭୁ ତା'ର ସାଧନ-ସାଧ୍ୟ, ଜୀବନ-ମରଣ ଓ ଯୋଗକ୍ଷେମର ଭାର ସ୍ୱୟଂ ବହନ କରନ୍ତି। କିନ୍ତୁ ସାଧାରଣ ଲୋକେ ଦୁଃଖର ଉପକାରିତାକୁ ବୁଝି ନ ପାରି ଜୀବନର ପରମ ଲାଭରୁ ବଞ୍ଚିତ ରହିଯାଆନ୍ତି।

ଜମିଦାର ପୁଅ ଆଜି ଦାଣ୍ଡର ଭିକାରୀ। ଯିଏ ଦିନେ ଦୁଃଖ କଣ ବୋଲି ଜାଣି ନ ଥିଲା, ଆଜି ସେ ଉଦର କଟାଳ ସହି ନ ପାରି ଗାଁ ଗାଁ ବୁଲି ଭିକ୍ଷା ମାଗୁଛି। ଦିନେ ଗୋଟିଏ ଗଛମୂଳେ ରାତିରେ ବିଶ୍ରାମ କରିବା ବେଳେ ରଘୁନାଥ ଭାବିଲେ, "କେବଳ ପେଟ ଗୃଖଣ୍ଡକ ପାଇଁ ଏମିତି ଭିକ୍ଷା ମାଗି ମାଗି କାଳାତିପାତ କରି ଲାଭ କ'ଣ? ପଶୁପକ୍ଷୀ କଣ ଏହା କରୁ ନାହାନ୍ତି! ଶ୍ରୀକ୍ଷେତ୍ର ଯାଇ ଭଗବାନଙ୍କ ନାମ ଗାଇ ଗାଇ ଜୀବନ ବିତାଇବା ବରଂ ଭଲ। ସେ ଯେମିତି ରଖିବେ, ସେମିତି ରହିବି। ଆନନ୍ଦବଜାରରୁ ଶ୍ରୀଜଗନ୍ନାଥଙ୍କ କୈବଲ୍ୟ କଣିକା ସାଉଁଟି ଖାଇ ଜୀବନ କଟାଇ ଦେବି। ଜଗତର ନାଥ ଜଗନ୍ନାଥଙ୍କୁ ଦର୍ଶନ କରିବାର ସୌଭାଗ୍ୟ ମଧ୍ୟ ମୋତେ ମିଳିଯିବ।"

ଏଭଳି ଚିନ୍ତା କରି ସେ ପରଦିନ ସକାଳୁ ସିଧା ଗ୍ଲିଲେ ନୀଳାଚଳ। ଶ୍ରୀମନ୍ଦିରରେ ଜଗନ୍ନାଥ ମହାପ୍ରଭୁଙ୍କୁ ଗ୍ହିଁଦେବା ମାତ୍ରେ ଅନ୍ତରର କୋହକୁ ସେ ଆଉ ସମ୍ଭାଳି ପାରିଲେ ନାହିଁ। ଆନନ୍ଦାଶ୍ରୁ ଧାର ଧାର ହୋଇ ବହି ଗ୍ଲିଲା ନେତ୍ର ଯୁଗଳରୁ। ସେ ଧନ୍ୟ ହୋଇଗଲେ। ସତେ ଯେପରି ନିରାଶ୍ରୟକୁ ଆଶ୍ରୟ ମିଳିଗଲା। ପ୍ରଭୁଙ୍କ ଆଗରେ ହାତ ଯୋଡ଼ି ଠିଆ ହୋଇ ନିରବଚ୍ଛିନ୍ନ ଅଶ୍ରୁଧାରା ମାଧ୍ୟମରେ ସେ କହି ଗ୍ଲିଲେ ନିଜ ନିରାଶ୍ରୟ ଜୀବନର ଦୁଃଖଦ ଅନୁଭୂତି। ପ୍ରଭୁ ତ ଅନ୍ତର୍ଯାମୀ। ତାଙ୍କୁ କଣ ଭକ୍ତ ଅନ୍ତର୍ହୃଦୟର ବେଦନା ଜଣା ନାହିଁ! ସେ ତ ଜାଣି ଜାଣି ତାକୁ ଜଞ୍ଜାଳମୟ ଜୀବନରୁ ମୁକ୍ତ କରି ଟାଣି ଆଣିଛନ୍ତି ନିଜ ପାଖକୁ କେବଳ ଆପଣାର କରିନେବା ପାଇଁ। ଭଗବାନ ଗ୍ହାନ୍ତି, ସେ ଦାରିଦ୍ର୍ୟର ରୌଦ୍ରତାପ ସହନ କରି ପଦ୍ମ ସଦୃଶ ବିକଶିତ ହେଉ; ତା' ଭକ୍ତିଭାବର ପ୍ରଭାବରେ ଜଗତ ଚମତ୍କୃତ ହେଉ। କିନ୍ତୁ ଭକ୍ତ ତ ସାଧାରଣ ମାନବ। ଏତେ ଦିନରେ ଆଜି ଅନାଥର ନାଥଙ୍କୁ ସାକ୍ଷାତ୍ ସମ୍ମୁଖରେ ପାଇଛି। ତାଙ୍କ ଆଗରେ ସେ ନିଜର ଗୁହାରୀ ନ ଶୁଣାଇ ହୃଦୟ ମଧ୍ୟରେ କଣ ଗ୍ପି ରଖି ପାରିବ? ତେଣୁ ତାଙ୍କ କୋହ-ଉଦ୍‌ବେଳିତ ହୃଦୟରୁ ବାହାରି ପଡ଼ିଲା—"ହେ ଦୀନବନ୍ଧୁ! ହେ ଆର୍ତ୍ତତ୍ରାଣ! ପିତାମାତାଙ୍କୁ ହରାଇବା ଦିନଠାରୁ ମୁଁ ଅନାଥ ହୋଇଯାଇଛି। ଏତେ ବଡ଼ ଦୁନିଆରେ କେବଳ ତୁମ ବ୍ୟତୀତ ମୋର ଆଉ କେହି ସାହା ଭରସା ନାହିଁ। ମନ କହୁଛି, ତୁମରି ଚରଣଯୁଗଳର ଆଶ୍ରୟରେ ଏଇଠି ପଡ଼ି ରହନ୍ତି। କିନ୍ତୁ ମୋ କହିବାରେ କ'ଣ ହେବ ପ୍ରଭୁ? ତୁମ ଇଚ୍ଛା ନ ଥିଲେ କିଛି ହୋଇ ପାରିବ ନାହିଁ। ତେଣୁ ଏ ଅରକ୍ଷିତକୁ ରଖିଲେ ରଖ, ମାରିଲେ ମାର। ଆଜିଠାରୁ ମୁଁ ତୁମ ପାଦପଦ୍ମର ଶରଣରେ ପଡ଼ି ରହିଲି। ହେ ମହାବାହୁ! ତୁମର ଯାହା ଇଚ୍ଛା ସେଇଆ କର।"

ଭକ୍ତର ଅମାୟିକ ହୃଦୟରୁ ନିର୍ଗତ ଆକୁଳ ନିବେଦନର ସ୍ୱର ଯେତେ କ୍ଷୀଣ ହେଲେ ମଧ୍ୟ ତାହା ତତ୍‌କ୍ଷଣାତ୍ ଭଗବାନଙ୍କ କାନରେ ପଡ଼ିଯାଏ। ଭଗବାନଙ୍କ କାନ ତ ସବୁଠି ବିଦ୍ୟମାନ। ଗୀତାରେ କୁହାଯାଇଛି—**'ସର୍ବତଃ ଶ୍ରୁତିମଲ୍ଲୋକେ।'** ଭକ୍ତ ଯେଉଁଠି ଡାକେ, ସେଇଠାରେ ମଧ୍ୟ ତାଙ୍କର କାନ ଅଛି। ତେଣୁ ଭଗବାନ ଭକ୍ତକୁ ଆଶ୍ୱାସନା ଦେବା ପାଇଁ ସାମାନ୍ୟ ଚମତ୍କାରିତା ଦେଖାଇଦେଲେ। ରଘୁନାଥଙ୍କୁ ଲାଗିଲା, ଭଗବାନ ସତେ ଯେପରି ଅଭୟ ବରଦ ହସ୍ତ ଉଠାଇ କହୁଛନ୍ତି, "ରଘୁ! ତୁ ମୋର ଅତି ଆପଣାର। ଭକ୍ତଙ୍କର ରକ୍ଷକ ମୁଁ ଥାଉ ଥାଉ ତୁ ଅରକ୍ଷିତ ହେଲୁ କିପରି? ଏଠି ତୁ ନିର୍ଭୟରେ ମୋର ମହାପ୍ରସାଦ ସେବନ କରି ବିଚରଣ କର।"

ପ୍ରଭୁଙ୍କ ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରି ରଘୁନାଥ ଶ୍ରୀକ୍ଷେତ୍ରରେ ରହିଲେ । ଶ୍ରୀଜଗନ୍ନାଥଙ୍କୁ ପ୍ରତିଦିନ ଦର୍ଶନ କରି ଏବଂ ଯେଉଁଠି ଯାହାକିଛି ମହାପ୍ରସାଦ ମିଳିଯାଏ, ତାହାକୁ ସେବନ କରି ସେ ମହା ଆନନ୍ଦରେ ପ୍ରଭୁଭକ୍ତିରେ ମଗ୍ନ ରହିଲେ । ଗୃହବନ୍ଧନର ମମତା ଡୋରି ତ ଆଉ କିଛି ନଥିଲା ଯେ ବାରମ୍ବାର ପଛକୁ ଟାଣିବ । ସବୁକିଛି ଚାଲିଯାଇଛି । ତେଣୁ ଭଗବାନଙ୍କ କୃପାରୁ ତାଙ୍କ ମନ ପ୍ରଭୁପ୍ରେମରେ ଏତେ ନିମଗ୍ନ ରହିଲା ଯେ ସେ ପୂର୍ବ ପରିସ୍ଥିତି ଓ ଘରଦ୍ୱାର କଥା ସମ୍ପୂର୍ଣ୍ଣ ଭୁଲିଗଲେ । ଏପରିକି ପିତ୍ରାଳୟରେ ରହୁଥିବା ତାଙ୍କର ସୁକୁମାରୀ ପତ୍ନୀ ଅନ୍ନପୂର୍ଣ୍ଣାର ସଦ୍ୟ ପ୍ରସ୍ଫୁଟିତ ପଦ୍ମ ତୁଲ୍ୟ ମୁଖମଣ୍ଡଳର ଛବି ମଧ୍ୟ ତାଙ୍କ ମାନସପଟରୁ ଲିଭିଗଲା ।

କିଛି ଦିନ ପରେ ରଘୁନାଥଙ୍କ ଭିକ୍ଷାବୃତ୍ତି ଓ ଦାରିଦ୍ର୍ୟ ଅବସ୍ଥାର ଖବର ପଡ଼ିଲା ଶ୍ୱଶୁରଙ୍କ କାନରେ । ଏଭଳି ଗରିବ ଭିକାରିକୁ ଜ୍ୱାଇଁ ବୋଲି କହିବାକୁ ତାଙ୍କ ମନ ସ୍ୱୀକୃତି ଦେଲା ନାହିଁ । ରଘୁନାଥଙ୍କୁ ସେ ନିଜ ଆତ୍ମସମ୍ମାନରେ କଳଙ୍କ ମନେକରି ମନଇଚ୍ଛା ଗାଳିଦେଲେ ଏବଂ ପୁଅମାନଙ୍କୁ ଡାକି ବିବାହିତା ଅନ୍ନପୂର୍ଣ୍ଣାକୁ ଅନ୍ୟତ୍ର ବାହା ଦେବାକୁ ବିଚାର କଲେ । ବାପ ଯେମିତି, ପୁଅମାନେ ମଧ୍ୟ ସେମିତି । ସେମାନଙ୍କ ବିବେକରୂପୀ ସୂର୍ଯ୍ୟକୁ ବୃଥା ଆତ୍ମସମ୍ମାନ ଓ ଧନଗର୍ବ ରାହୁ ପରି ଆଚ୍ଛାଦିତ କରିଦେଲା । ବାସ୍ତବରେ ଧନବତ୍ତାର ଅହଂକାର ବ୍ୟକ୍ତିର ହିତାହିତ ଜ୍ଞାନ ନଷ୍ଟ କରିଦିଏ । ସେ ଧର୍ମ-କର୍ମକୁ ନ ଦେଖି ମନଇଚ୍ଛା କାର୍ଯ୍ୟ କରିଯାଏ । ଅନ୍ନପୂର୍ଣ୍ଣାର ବାପାମାଆ ଓ ଭାଇମାନଙ୍କ ହୃଦୟରେ ସ୍ନେହର ଛଦ୍ମବେଶ ଧରି ଏଭଳି ଘୋର ପାପ ଆସି ବସା କରିଗଲା ଯେ ସେମାନେ ବିବାହିତା କନ୍ୟାର ସତୀତ୍ୱ ରକ୍ଷା ଓ ନିଜର କନ୍ୟାଦାନ ସଙ୍କଳ୍ପ ପ୍ରତି ଦୃଷ୍ଟି ନ ଦେଇ ଅନ୍ନପୂର୍ଣ୍ଣାର ଦ୍ୱିତୀୟ ବିବାହ ପାଇଁ ମନସ୍ଥ କରିନେଲେ । କେହି ବି ଅନ୍ନପୂର୍ଣ୍ଣାର ପୁନର୍ବିବାହ ପ୍ରସ୍ତାବର ବିରୋଧ କଲେ ନାହିଁ । ବରପାତ୍ର ଖୋଜା ଚାଲିଲା । ଶେଷରେ ରାଜ୍ୟର ମନ୍ତ୍ରୀ ବାସୁଦେବ ମହାପାତ୍ରଙ୍କ ପୁଅ ସଙ୍ଗେ ବିବାହ ସ୍ଥିର ହୋଇଗଲା । ଗଙ୍ଗାଧର ଯେମିତି ହୃଦୟଶୂନ୍ୟ ଓ ନିଷ୍ଠୁର, ବାସୁ ମହାପାତ୍ର ମଧ୍ୟ ତଦ୍ରୂପ ଧନଲୋଭୀ ଓ ଅନ୍ୟାୟୀ । ସେଥିପାଇଁ ଦୁହିଙ୍କର ଯତି ପଡ଼ିଗଲା । ବାସୁ ମହାପାତ୍ର ଧନ ଲୋଭରେ ବିବାହିତା କନ୍ୟାକୁ ମଧ୍ୟ ବୋହୂ କରି ନେବାକୁ କୁଣ୍ଠାବୋଧ କଲେ ନାହିଁ । ଫାଲ୍‌ଗୁନ ଶୁକ୍ଳ ପଞ୍ଚମୀକୁ ବିବାହ ଦିନ ସ୍ଥିର ହେଲା ।

ଅନ୍ନପୂର୍ଣ୍ଣା ଏବେ ତ ଆଉ ଅବୋଧ ବାଳିକା ହୋଇ ନାହିଁ । ବାପାଭାଇଙ୍କର ଏପରି ନିର୍ଣ୍ଣୟ ଶୁଣିବା ମାତ୍ରେ ତା' ହୃଦୟରେ ସତେ ଯେପରି ଅକସ୍ମାତ୍ ଏକ

ଛୁରିକା ଭେଦ କରି ଚାଲିଗଲା । ବିଚାରୀ ଅବଳା କ'ଣ କରିବ, କିଛି ଭାବି ପାରିଲା ନାହିଁ । ଚିତ୍ତ ତା'ର ବ୍ୟାକୁଳ ହୋଇ ଉଠିଲା । ମନେ ମନେ ଭଗବାନଙ୍କୁ ଆକୁଳ ନିବେଦନ କଲା—''ହେ ଭଗବାନ! ଏ ସବୁ କ'ଣ ଘଟି ଯାଉଛି ପ୍ରଭୁ! ମୋର ପ୍ରାଣନାଥ ଥାଉ ଥାଉ ମୁଁ ଅନ୍ୟ ଜଣକୁ କିପରି ବିବାହ କରିବି? ମୋର ଏ ଦେହ ଓ ପ୍ରାଣ ଜଣକୁ ସମର୍ପିତ ହୋଇ ସାରିଛି । ପୁଣି ମୁଁ ଅନ୍ୟର ପାଣିଗ୍ରହଣ କିପରି କରିବି? ମୋତେ କ'ଣ ତୁମେ ଦୋଚାରୁଣୀ କରାଇବ? ହେ ପ୍ରଭୁ! ତୁମେ ବିପତ୍ତି ସମୟରେ ଗଜରାଜକୁ ଉଦ୍ଧାର କରିଥିଲ, ଦ୍ରୌପଦୀର ମହତ ରକ୍ଷା କରିଥିଲ, ଏବେ ମୋତେ କ'ଣ ଏ ବିପଦରୁ ରକ୍ଷା କରିବ ନାହିଁ? ତୁମେ ତ ଅନ୍ତର୍ଯାମୀ, ମୁଁ ଅଧିକ କ'ଣ ବା ତୁମକୁ କହିବି? ମୋର ସତୀତ୍ୱ ରକ୍ଷା କର ପ୍ରଭୁ! ତୁମେ ରକ୍ଷା ନ କଲେ ମୁଁ ବ୍ୟଭିଚାରିଣୀ ହେବା ପୂର୍ବରୁ ଏ ପ୍ରାଣ ବିସର୍ଜନ କରିଦେବି ।''

ଅନ୍ନପୂର୍ଣ୍ଣା ଏକାନ୍ତ ସ୍ଥାନରେ ବସି ଲୁଚି ଲୁଚି ଅଶ୍ରୁ ଝରାଉଥାଏ; ଏହିପରି ଦିନରାତି ଠାକୁରଙ୍କୁ ପ୍ରାର୍ଥନା କରୁଥାଏ । ଚିନ୍ତାରେ ତାକୁ ଅନ୍ନଜଳ ମଧ୍ୟ ରୁଚୁ ନ ଥାଏ; ହସଖୁସୀ ସୁହାଉ ନ ଥାଏ । ରାତିରେ ଆଖିକୁ ନିଦ ଆସେ ନାହିଁ । ଏହିପରି କେତେ ଦିନ ବିତିଗଲା । ତାଙ୍କ ଘରେ ଗୋଟିଏ ଦାସୀ ଥିଲା । ଦାସୀ କୋଳରେ ଅନ୍ନପୂର୍ଣ୍ଣା ପିଲାଟିବେଳୁ ଲାଳିତ ପାଳିତ ହୋଇଥିଲା । ଦିନେ ଅନ୍ନପୂର୍ଣ୍ଣା ଅତିଶୟ ମର୍ମବେଦନାକୁ ହୃଦୟରେ ଲୁଚାଇ ରଖି ନ ପାରି ତା' ଆଗରେ ନିଜ ମନ କଥା ପ୍ରକାଶ କରି କହିଲା—''ତୁମେ ମୋର ମାଆ ସମାନ । ମୋ ଦୁଃଖର ନିରାକରଣ ପାଇଁ ମୋତେ ଟିକେ ସାହାଯ୍ୟ କର । ମୋ ସ୍ୱାମୀ ନୀଳାଚଳରେ ରହୁଛନ୍ତି । ଏଠାରୁ କେହି ଯଦି ପୁରୀ ଯାଉଥାଏ, ମୋତେ ଜଣାଇଲେ ମୁଁ ତା ହାତରେ ସ୍ୱାମୀଙ୍କ ପାଖକୁ ପତ୍ରଟିଏ ଦିଅନ୍ତି । ମୋର ଆଶା, ସେ ପତ୍ର ପାଇ ନିଶ୍ଚୟ ଆସି ମୋତେ ନେଇଯିବେ ।''

ଦିନେ କିଛି ଲୋକ ପୁରୀ ଯିବାକୁ ପ୍ରସ୍ତୁତ ହେଉଥିବାର ଜାଣି ଦାସୀ ଏ ଖବରଟି ଅନ୍ନପୂର୍ଣ୍ଣାକୁ ଜଣାଇଦେଲା । ଅନ୍ନପୂର୍ଣ୍ଣା ସକଳ ବୃତ୍ତାନ୍ତ ଜଣାଇ ଲେଖିଲା—''ପ୍ରାଣନାଥ! ଯଦି ତୁମର ଏ ଚରଣସେବିକା ଉପରେ ଦୟା ଥାଏ, ତେବେ ଯେତେ ଶୀଘ୍ର ଆସି ମୋତେ ଏଠାରୁ ନେଇଯାଅ । ତୁମର ଦୁରବସ୍ଥା ଦେଖି ଏଠାରେ ସମସ୍ତେ ମୋତେ ମନ୍ତ୍ରୀପୁଅକୁ ବାହା କରିଦେବା ପାଇଁ ସ୍ଥିର କରିଛନ୍ତି । ଆସନ୍ତା ଫାଲ୍‌ଗୁନ ଶୁକ୍ଳ ପଞ୍ଚମୀକୁ ବିବାହ ଦିନ ଧାର୍ଯ୍ୟ ହୋଇଛି । ତୁମେ ଆସିବ କି ନ ଆସିବ ତୁମେ ଜାଣ । କିନ୍ତୁ ତୁମ ଅପେକ୍ଷାରେ ମୁଁ ଏଠି ଦିନ ଗଣୁଛି । ମୋ କଣ୍ଠ ପୂରିବା ପୂର୍ବରୁ ଯଦି ମୋତେ ଦର୍ଶନ ନ ଦେବ, ତେବେ

ତୁମ ନାମରେ ମୁଁ ଆତ୍ମହତ୍ୟା କରିବି ।"

ଏଭଳି ଲେଖି ସେ ପତ୍ରଟି ଦାସୀ ହାତରେ ଦେଇ କହିଲା—"ଏ ପତ୍ରଟି ଲୋକମାନଙ୍କୁ ଦେଇ କହିବ ପତ୍ରଟି ଯେପରି ହେଲେ ବି ସେମାନେ ମୋ ସ୍ୱାମୀଙ୍କ ପାଖରେ ପହଞ୍ଚାଇ ଦେବେ । ଏଥିପାଇଁ ମୁଁ ସେମାନଙ୍କ ନିକଟରେ ଜନ୍ମ-ଜନ୍ମାନ୍ତରେ ଋଣୀ ରହିବି ।" ଲୋକମାନେ ଅନ୍ନପୂର୍ଣ୍ଣାର ଦୁଃଖ ପ୍ରତି ସମବେଦନା ଜଣାଇଲେ ଏବଂ ପତ୍ରଟି ନେଇ ପୁରୀ ଅଭିମୁଖେ ଯାତ୍ରା କଲେ । ମାଘ ଶେଷ ଆଡ଼କୁ ସେମାନେ ପୁରୀରେ ପହଞ୍ଚିଲେ । କିଛି ଦିନ ପର୍ଯ୍ୟନ୍ତ ରଘୁର କିଛି ଠିକଣା ମିଳିଲା ନାହିଁ । ଦିନେ ହଠାତ୍ ସିଂହଦ୍ୱାର ପାଖରେ ଦେଖା ମିଳିଯିବାରୁ ସେମାନେ ପତ୍ରଟି ତାକୁ ଦେଇଦେଲେ । ପତ୍ରଟି ପଢ଼ିବା ମାତ୍ରେ ରଘୁର ଚିତ୍ତ ବ୍ୟାକୁଳ ହୋଇ ଉଠିଲା । ସ୍ତ୍ରୀ ପ୍ରତି ଆସକ୍ତି ଯେ ତାଙ୍କ ବ୍ୟାକୁଳତାର କାରଣ ଥିଲା ତା' ନୁହେଁ, ଜଣେ ସତୀ ନାରୀର ଆକୁଳ ନିବେଦନ ଓ ମର୍ମନ୍ତୁଦ ଦୁଃଖ ସାଙ୍ଗକୁ ବିଗ୍ରରୀ ନିରୀହ ଅବଳା ପ୍ରତି ହେଉଥିବା ଅସତ୍ୟ ଓ ଅଧର୍ମ ବ୍ୟବହାର ତାଙ୍କୁ ଦୁଃଖୀ କରିଦେଲା । ପୁଣି ଧର୍ମକୁ ସାକ୍ଷୀ ରଖି ସେ ତା'ର ପାଣି ଗ୍ରହଣ କରିଛନ୍ତି; ତାକୁ ନ ବଞ୍ଚାଇବା ତାଙ୍କ ପକ୍ଷେ ଅଧର୍ମ ହେବ । ଏହି ଧର୍ମସଂକଟ ତାଙ୍କୁ ବ୍ୟାକୁଳ କରିଦେଲା ।

ଫାଲ୍‌ଗୁନ ଶୁକ୍ଳ ପଞ୍ଚମୀ ଆଉ ମାତ୍ର ଦଶ ଦିନ ଥାଏ; ଅଥଚ ପୁରୀଠାରୁ କଳାବତୀ ପୁର ମାସକର ରାସ୍ତା । କିପରି ଅନ୍ନପୂର୍ଣ୍ଣା ପାଖରେ ପହଞ୍ଚିବ ଏବଂ ତା'ର ପ୍ରାଣରକ୍ଷା କରିବ କିଛି ଭାବି ପାରୁ ନ ଥାଏ ରଘୁନାଥ । ସେ ଭାବିଲା, ଏ ସଂକଟ ସମୟରେ କେବଳ ଜଗନ୍ନାଥଙ୍କ ବ୍ୟତୀତ ତାଙ୍କୁ ଆଉ କେହି ସାହାଯ୍ୟ କରି ପାରିବେ ନାହିଁ । ତେଣୁ ଶ୍ରୀମନ୍ଦିରକୁ ଯାଇ ପ୍ରଭୁଙ୍କ ଆଗରେ ଅନ୍ନପୂର୍ଣ୍ଣାର ପ୍ରାଣରକ୍ଷା ପାଇଁ ବିନତି କଲା । ଶେଷରେ ସିଂହଦ୍ୱାର ସମୀପରେ ଛିଣ୍ଡା କନ୍ଥାଟି ପାରି ଆର୍ତ୍ତଭାବରେ ପ୍ରଭୁଙ୍କୁ ପ୍ରାର୍ଥନା କରୁ କରୁ କେତେବେଳେ ତାଙ୍କୁ ନିଦ୍ରା ଆସି ଯାଇଛି । କିନ୍ତୁ ଭକ୍ତବତ୍ସଳ ପ୍ରଭୁ ଭକ୍ତର ବିପତ୍ତିରେ କଣ ନିଶ୍ଚିନ୍ତରେ ଶୋଇ ପାରନ୍ତି । ପ୍ରଭୁ ନିଜ ମାୟାଶକ୍ତି ବଳରେ ରଘୁକୁ ସେଇଭଳି ନିଦ୍ରିତ ଅବସ୍ଥାରେ କଳାବତୀପୁର ଗଙ୍ଗାଧର କରଣଙ୍କ ଦ୍ୱାରଦେଶରେ ପହଞ୍ଚାଇଦେଲେ ।

ସକାଳ ହେଲା, ରଘୁର ନିଦ୍ରା ଭାଙ୍ଗିଲା । ସେ ଚାରିଆଡ଼କୁ ଚାହିଁ ଆଶ୍ଚର୍ଯ୍ୟରେ ପଡ଼ିଗଲା । ଭାବିଲା, ଏ କେଉଁ ସ୍ଥାନରେ ମୁଁ ଶୋଇଛି? ଏ ତ ସିଂହଦ୍ୱାର ନୁହେଁ! ସ୍ଥାନଟି ଅପରିଚିତ ଭଳି ଲାଗୁଛି । ଏ କେଉଁ ସହର? ଏ ତ ପୁରୀ ଭଳି ଲାଗୁ

ନାହିଁ! ମୁଁ ସ୍ୱପ୍ନ ଦେଖୁ ନାହିଁ ତ! ସ୍ଥାନଟିକୁ ଚିହ୍ନି ନ ପାରିବା ରଘୁ ପାଇଁ ବିଚିତ୍ର ନୁହେଁ; କାରଣ ବିବାହ ପରେ ରଘୁ କେବେ ଶ୍ୱଶୁର ଘରକୁ ଆସି ନ ଥିଲା। ତେଣୁ ରାସ୍ତାରେ ଯିବା ଆସିବା କରୁଥିବା ଲୋକଙ୍କୁ ସେ ପଚାରିଲା—"ଭାଇ! ଏ କେଉଁ ସହର? ଏ ବିରାଟ କୋଠାଟି କାହାର?" ଲୋକେ କହିଲେ—"ଏଇଟା କଳାବତୀପୁର ଆଉ ଏ ମହଲ ହେଉଛି ପ୍ରଖ୍ୟାତ ସାହୁକାର ଗଙ୍ଗାଧର କରଣଙ୍କ ଘର।" ଶ୍ୱଶୁରଙ୍କ ନାମ ଶୁଣିବାମାତ୍ରେ ରଘୁର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ଏହା ନିଶ୍ଚେ ପ୍ରଭୁଙ୍କ କରାମତି ବୋଲି ଭାବି ତା ଆଖିରୁ କୃତଜ୍ଞତାର ଅଶ୍ରୁଧାର ବୋହିବାକୁ ଲାଗିଲା। ମନେ ମନେ ସେ କହିଲା—"ପ୍ରଭୁ! ତୁମ ବିନା ଏ ଭଳି କାର୍ଯ୍ୟ କରିବାକୁ ଆଉ କିଏ ବା ସମର୍ଥ। ମୋର ମନୋବେଦନାକୁ ଜାଣି ତୁମେ ଏଭଳି ଅଲୌକିକ ଲୀଳା ରଚିଲ। ସତ କଥା, ଯାହାଙ୍କ ସଙ୍କଳ୍ପ ମାତ୍ରକେ ସମଗ୍ର ବ୍ରହ୍ମାଣ୍ଡ ସୃଷ୍ଟି ହୁଏ ଓ ଧ୍ୱଂସ ହୁଏ, ତାଙ୍କ ପକ୍ଷରେ ଏହା କି ବିଚିତ୍ର ଅବା!"

ଭାବବିହ୍ୱଳ ହୋଇ ରଘୁନାଥ ମନେ ମନେ ଏମିତି କେତେ କ'ଣ କହିଯାଉଥିଲା। ଇତି ମଧ୍ୟରେ ତା'ର ଶଳା ଘରୁ ବାହାରି ଆସି ରଘୁକୁ ଦେଖି ପକାଇଲା। ଶୀଘ୍ର ଯାଇ ସେ ଘରେ ଖବର ଦେବାରୁ ସମସ୍ତେ ଆଚମ୍ବିତ ଓ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ। ବାହାରକୁ ଆସି ଦେଖନ୍ତି ତ ରଘୁ ମଇଳା ଓ ଛିଣ୍ଡା ଲୁଗା ଖଣ୍ଡେ ପିନ୍ଧି ପିଣ୍ଡାରେ ବସିଛି। ନୁଖୁରା ବାଳ। ରୂପ ପାଗଳ ପରି। ଏ ଦୃଶ୍ୟ ଦେଖି ସମସ୍ତଙ୍କ ମନ ବିଷଣ୍ଣତାରେ ଭରିଗଲା। ମନେ ମନେ ଭାବିଲେ, କୁଆଡ଼େ ବୁଲି ବୁଲି ଏ ଏଠାକୁ କେମିତି ଚାଲି ଆସିଲା? ବଡ଼ ଅଡୁଆରେ ପକାଇ ଦେଲା। କିନ୍ତୁ ଅନ୍ନପୂର୍ଣ୍ଣାର ଆନନ୍ଦ କହିଲେ ନ ସରେ। ମନେ ମନେ ଭଗବାନଙ୍କୁ ସେ ଅସଂଖ୍ୟ ଧନ୍ୟବାଦ ଜଣାଇଲା।

ମାତ୍ର ରଘୁନାଥର ଉପସ୍ଥିତି ଗଙ୍ଗାଧରଙ୍କ ହୃଦୟରେ କଣ୍ଟା ପରି ଫୋଡ଼ି ହେଉଥାଏ; ତଥାପି ଲୋକଲଜ୍ଜାକୁ ଡରି ଗଙ୍ଗାଧର ଉପର ମନରେ ଜୋଇଁଙ୍କୁ ଘର ଭିତରକୁ ଡାକି ଆଣିଲେ। ରଘୁ ସ୍ନାନାଦି କରି ସାରିବା ପରେ ତାକୁ ନୂଆ ଲୁଗା ପିନ୍ଧାଇଲେ। ଜୋଇଁ ପାଇଁ ଭଲ କରି ରୋଷେଇ କରାଗଲା। ରଘୁନାଥ ଠାକୁରଙ୍କୁ ନିବେଦନ କରି ଭୋଜନ କଲା। 'ବିଷକୁମ୍ଭ ପୟୋମୁଖମ୍' ଉକ୍ତି ଅନୁସାରେ ସେମାନେ ହୃଦୟର କପଟକୁ ଲୁଚାଇବା ପାଇଁ ଉପରେ ଉପରେ ମଧୁର ବାର୍ତ୍ତାଳାପ କଲେ। ଦୁଗ୍ଧଫେଣ ପରି ଶୁଭ୍ର ସୁକୋମଳ ଶଯ୍ୟାରେ ରଘୁନାଥ ବିଶ୍ରାମ କଲା। ଅନ୍ନପୂର୍ଣ୍ଣା ନାରୀସୁଲଭ ଲଜ୍ଜାରେ ମସ୍ତକ ଅବନତ କରି ଆସି ବସିଗଲା ସ୍ୱାମୀଙ୍କ

ପାଦ ପାଖରେ। ଧୀରେ ଧୀରେ ସ୍ୱାମୀଙ୍କ ପାଦ ମଞ୍ଜାଳିବାକୁ ଲାଗିଲା। ଦୀର୍ଘ ଦିନ ବିଚ୍ଛେଦର କେତେ କେତେ କଥା ଏକାବେଳକେ ତା' ମନରେ ଉଙ୍କି ମାରୁଥିଲା ମୁଖଦ୍ୱାର ଦେଇ ବାହାରିବା ପାଇଁ। କିନ୍ତୁ ସେ ଗୋଟିଏ ବି ଶବ୍ଦ କହି ପାରିଲା ନାହିଁ। ଠିକ୍ ଏଇ ଅବସ୍ଥା ଥିଲା ରଘୁନାଥର। କେବଳ ଅଶ୍ରୁଛଳଛଳ ନେତ୍ର ପ୍ରକାଶିତ କରିଥିଲା ହୃଦୟର କେଇପଦ ଅବ୍ୟକ୍ତ କଥା। ଉଭୟଙ୍କ ନେତ୍ରବାରି ସିଞ୍ଚନରେ ଶୀତଳ ହୋଇଗଲା ନବଦମ୍ପତିଙ୍କ ବିରହ ତାପିତ ପ୍ରାଣ।

ଏଣେ ନୀରବତାର ଅବ୍ୟକ୍ତ ସ୍ୱରରେ, ଦୁଇଟି ବିରହୀ ହୃଦୟ-ବୀଣାର ଅଶ୍ରୁରେଖାରୂପୀ କୋମଳ ତାର ନବଦମ୍ପତିଙ୍କ ମିଳନ ସଙ୍ଗୀତର ମଧୁର ଝଙ୍କାର ଆରମ୍ଭ କରୁଥିବା ବେଳେ, ତେଣେ ଅନ୍ୟ ଏକ କକ୍ଷରେ ନିଷ୍ଠୁର ଗଙ୍ଗାଧରଙ୍କ ପରିବାର ନଅଟି ଜିହ୍ୱାରୂପୀ ଯନ୍ତ୍ରକୁ ଗୋଟିଏ ସୂତ୍ରରେ ବାନ୍ଧି ଦମ୍ପତିଙ୍କର ନିତ୍ୟ ବିଚ୍ଛେଦ ନିମନ୍ତେ ଭୟଙ୍କର ରାଗ ଗାଇବା ଆରମ୍ଭ କରିଦେଇଥିଲେ। ଅନ୍ନପୂର୍ଣ୍ଣାର ପୁନର୍ବିବାହ ରାସ୍ତାରୁ ରଘୁନାଥକୁ ଚିରଦିନ ପାଇଁ କିପରି ହଟାଇବେ ଏବଂ ତାଙ୍କର ଜୀବନ ନାଟିକା କିପରି ସମାପ୍ତ କରିବେ, ସେହି ଆଲୋଚନା ଗୁପ୍ତରୂପେ ଚାଲିଥିଲା ସାତ ପୁଅ ଓ ବାପାମାଆଙ୍କ ମଧ୍ୟରେ। ଶେଷରେ ସ୍ଥିର ହୋଇଗଲା ଯେ ରାତିକୁ ଜୋଇଁଙ୍କ ଖାଦ୍ୟରେ ବିଷ ମିଶାଇ ଦିଆଯିବ।

ସଂଧ୍ୟା ହେଲା। ରୋଷେଇ ଆରମ୍ଭ ହେଲା। ପାପମୂର୍ତ୍ତି ଗଙ୍ଗାଧରଙ୍କ ପତ୍ନୀ ଚୁପ୍‌ଚାପ ଖାଦ୍ୟ ଦ୍ରବ୍ୟରେ ବିଷ ମିଶାଇ ଦେଲା। କିନ୍ତୁ ଦିନବେଳେ ପିତାମାତା ଓ ଭାଇମାନଙ୍କର ଫୁସ୍‌ଫାସ୍ କଥାବାର୍ତ୍ତା ଅନ୍ନପୂର୍ଣ୍ଣା ମନରେ କିଛି ସନ୍ଦେହ ସୃଷ୍ଟି କରିଦେଇଥିଲା। ସେ ରୋଷେଇ କାର୍ଯ୍ୟରେ ମାଆକୁ ସାହାଯ୍ୟ କରିବା ଛଳରେ ରୋଷେଇ ଘରକୁ ପଶିଗଲା। କିନ୍ତୁ ଷଡ଼ଯନ୍ତ୍ରକାରିଣୀ ମାଆ ତାକୁ ସେଠାରେ ରଖାଇ ନ ଦେବା ଉଦ୍ଦେଶ୍ୟରେ କହିଲା—"ତୁ ଆଜି ମୋତେ ସାହାଯ୍ୟ କରିବା ଦରକାର ନାହିଁ। ଏତେ ଦିନ ପରେ ଜୋଇଁ ଆସିଛନ୍ତି। ତୁ ଯାଇ ତାଙ୍କର ସେବା କର।" ମାଆ ତାକୁ ସେଠାରୁ ବିଦା କରିବା ପାଇଁ ଏହିପରି ଅନେକ ଥର କହିବା ସତ୍ତ୍ୱେ ଅନ୍ନପୂର୍ଣ୍ଣା ଗୁପ୍ତ ରହସ୍ୟ ଜାଣିବା ପାଇଁ କିଛି ସମୟ ସେଠାରେ ରହିଗଲା। ତାକୁ ରହସ୍ୟ ସବୁ ଜଣା ପଡ଼ିବାକୁ ଅଧିକ ସମୟ ଲାଗିଲା ନାହିଁ। ପିତାମାତାଙ୍କର ଏଭଳି ହୀନ ଉଦ୍ଦେଶ୍ୟ ଜାଣିପାରି ତା' ହୃଦୟ ଅନିଷ୍ଟ ଆଶଙ୍କାରେ ଥରି ଉଠିଲା। ସେ କାଳବିଳମ୍ବ ନ କରି ଚାଲିଲା ସ୍ୱାମୀଙ୍କୁ ଏ ଖବର ଜଣାଇଦେବା ପାଇଁ। ମାତ୍ର ଭାଇମାନେ ସେତେବେଳକୁ ରଘୁନାଥକୁ ଭ୍ରମଣ କରାଇବା ବାହାନାରେ

ସଙ୍ଗରେ ନେଇ ବାହାରକୁ ଚାଲିଯାଇଥାନ୍ତି। ସେ ମନସ୍ତାପ ଓ ଚିନ୍ତାରେ ଅସ୍ଥିର ହୋଇ ପଡ଼ିଲା। କି ଉପାୟ କରିବ? କିପରି ସ୍ୱାମୀର ପ୍ରାଣ ରକ୍ଷା କରିବ? ହଠାତ୍ ତା' ମୁଣ୍ଡକୁ ଗୋଟିଏ ବୁଦ୍ଧି ଆସିଲା। ଛୋଟିଆ ତାଳପତ୍ର ଖଣ୍ଡିକରେ 'ସାବଧାନ! ବିଷ ମିଶିଛି' ଲେଖିଦେଲା; ଭାବିଲା, କୌଣସି ପ୍ରକାରେ ଖାଦ୍ୟ ଭିତରେ ପତ୍ରଟି ଲୁଚାଇ ସ୍ୱାମୀଙ୍କୁ ସାବଧାନ କରାଇଦେବ। ତେଣୁ ସେ ରୋଷେଇ ଘର ଆଡ଼କୁ ଚାଲିଲା।

ଲୀଳାଧାରୀଙ୍କ ଲୀଳା ବଡ଼ ଅଦ୍ଭୁତ। ସେ ମଣିଷର ମନରେ ବେଳେ ବେଳେ ଏଭଳି ପ୍ରେରଣା ଦେଇଦିଅନ୍ତି ଯେ ଘଟଣାଚକ୍ର କିଛି ନୂଆ ମୋଡ଼ ନେଇଯାଏ। ଅନ୍ନପୂର୍ଣ୍ଣା ରୋଷେଇ ଘର ପାଖରେ ପହଞ୍ଚିଛି କି ନାହିଁ, ଠିକ୍ ସେହି ସମୟରେ ଜୋଇଁଙ୍କ ପାଇଁ ଖାଦ୍ୟପଦାର୍ଥ ସବୁ ଥାଳିରେ ସଜାଇ ରଖି ସାରି ତା' ମାଆ ରୋଷେଇ ଘରୁ ବାହାରି ଆସିଲା। ଜୋଇଁଙ୍କ ଖାଇବା ଘରେ ସବୁ ବ୍ୟବସ୍ଥା କରିବାକୁ ହେବ। ବାହାରେ ଅନ୍ନପୂର୍ଣ୍ଣା ଠିଆ ହୋଇଥିବାର ଦେଖି ସେ କହିଲା— "ମାଆ ରେ! ରୋଷେଇ ଘର ଖୋଲା ଅଛି। କାଳେ ବିଲେଇ ପଶିଯିବ, ତୁ ଏଇଠି ଟିକେ ନଜର ରଖିଥା। ମୁଁ ଜୋଇଁଙ୍କ ଖାଇବା ଘରେ ସବୁ ବ୍ୟବସ୍ଥା କରିଦେଇ ଆସୁଛି।"

ଅନ୍ନପୂର୍ଣ୍ଣା ଠିକ୍ ଏଇ ସୁଯୋଗ ଖୋଜୁଥିଲା। କାଳବିଳମ୍ବ ନ କରି ଚୁପ୍‌ଚାପ ସେ ଘର ଭିତରକୁ ପଶିଗଲା। ଦେଖିଲା, ସୁବର୍ଣ୍ଣ ଥାଳିରେ ସରୁ ଅନ୍ନ, ଡାଲି, ତରକାରୀ, ଖିରି, ଖେଚଡ଼ି, ଆରିସା, ମଣ୍ଡାପିଠା ପ୍ରଭୃତି ଜୋଇଁଙ୍କ ପାଇଁ ବଢ଼ାଯାଇଛି। କିନ୍ତୁ ସେ କେଉଁଥିରେ ପତ୍ରଟିକୁ ରଖିବ, ଯାହା ଫଳରେ ତା'ସ୍ୱାମୀ ପ୍ରଥମ ଗ୍ରାସ ନେବା ପୂର୍ବରୁ ଜାଣି ପାରିବେ। ପତିବ୍ରତା ନାରୀକୁ ସ୍ୱାମୀର ରୁଚି ଅଜଣା ନ ଥାଏ। ସେ ଜାଣେ ସ୍ୱାମୀଙ୍କୁ ମଣ୍ଡାପିଠା ଭାରି ପ୍ରିୟ। ତେଣୁ ସେ ମଣ୍ଡାପିଠା ମଧ୍ୟରେ ପତ୍ରଟି ପୂରାଇ ଦେଲା।

ଗଙ୍ଗାଧରଙ୍କ ସ୍ତ୍ରୀ ଆସି ଥାଳି ନେଇଗଲା ଏବଂ ଜୋଇଁଙ୍କୁ ଖାଇବାକୁ ଡାକିଲା। ମନ ମଧ୍ୟରେ ମାରିବାକୁ ଷଡ଼ଯନ୍ତ୍ର, ଅଥଚ ବାହ୍ୟ ଆଦର ଅଭ୍ୟର୍ଥନାରେ ତିଳେମାତ୍ର ତ୍ରୁଟି ନାହିଁ। ଏଭଳି କପଟରେ କେବଳ ସରଳମତି ରଘୁନାଥ କାହିଁକି, ମାତା ଜାନକୀ ଓ ରାମଭକ୍ତ ହନୁମାନ ମଧ୍ୟ ଠକି ଯାଇଥିଲେ। ଭକ୍ତର ହୃଦୟ ନିଷ୍କପଟ ଓ ମାୟାଶୂନ୍ୟ, ତେଣୁ ସେ ମଧ୍ୟ ସମସ୍ତଙ୍କୁ ନିଜର ଅନୁରୂପ ଦେଖେ। ବିନା କାରଣରେ ସେ କାହିଁକି ବା କାହାକୁ ସନ୍ଦେହ କରିବ?

ରଘୁନାଥ ହାତମୁହଁ ଧୋଇ ଆସନରେ ବସି ପଡ଼ିଲା ଏବଂ ହାତରେ ଜଳ ଘେନି ପ୍ରଭୁ ଜଗନ୍ନାଥଙ୍କୁ ଭୋଜନ ଅର୍ପଣ କଲା। ଅନ୍ନପୂର୍ଣ୍ଣା ଦୂରରୁ ସବୁ ଲକ୍ଷ୍ୟ କରୁଥାଏ। ହୃଦୟରେ ତା'ର ତୀବ୍ର କମ୍ପନ ଓ ମନ ଅସ୍ଥିର। ଯଦି ସ୍ୱାମୀ ପିଠା ଛାଡ଼ି ଅନ୍ୟ କିଛି ଖାଇବା ଆରମ୍ଭ କରିଦେବେ, ତେବେ କଥା ସରିଯିବ। ସେ ପୁଣି ଭାବିଲା—ସମୟ ଆସିଲେ ଦେଖାଯିବ। ଏତେ ଭୟ କରି ଲାଭ କ'ଣ? ବଡ଼ ପାଟିରେ ଡାକି କହିଦେବି। ଭଗବାନ କିନ୍ତୁ ଅନ୍ନପୂର୍ଣ୍ଣାକୁ ଅଧିକ ଚିନ୍ତା କରିବାକୁ ଅବସର ଦେଲେ ନାହିଁ। ତା'ର ଇଚ୍ଛା ହିଁ ହେଲା। ରଘୁନାଥ ପ୍ରଥମେ ସେହି ପିଠାଟି ଉଠାଇଲା। ପିଠାଟି ଭାଙ୍ଗିବା ମାତ୍ରେ ତା' ହାତରେ ପଡ଼ିଲା ଛୋଟିଆ ପତ୍ରଟିଏ। ପତ୍ରଟି ପଢ଼ିବା ମାତ୍ରେ ଷଡ଼ଯନ୍ତ୍ରକୁ ବୁଝିବା ପାଇଁ ତାକୁ ଅଧିକ ସମୟ ଲାଗିଲା ନାହିଁ। ଅନ୍ନପୂର୍ଣ୍ଣା ଏ କଥା ଲକ୍ଷ୍ୟ କରୁଥାଏ। କିନ୍ତୁ ତା'ର ପାପିନୀ ମାଆ ତାକୁ ସେଠାରେ ରଖାଇ ଦେଲା ନାହିଁ। ଏଣୁତେଣୁ କାମ ବାହାନାରେ ସେଠାରୁ ଡାକି ଆଣିଲା। କାରଣ ତା' ମନରେ ଭୟ ଥିଲା ଯେ ଏ ଥାଉ ଥାଉ ରଘୁନାଥ ଠାରେ ଯଦି ବିଷର ପ୍ରଭାବ ପ୍ରକାଶ ପାଇଯିବ, ତେବେ ଅସୁବିଧା। ଅନ୍ନପୂର୍ଣ୍ଣା ମଧ୍ୟ ବିନା ଆପତ୍ତିରେ ସେଠାରୁ ଚାଲିଗଲା। କାରଣ ତା'ର ବିଶ୍ୱାସ ଥିଲା ଯେ ସ୍ୱାମୀ ସତର୍କ ସୂଚନା ପାଇ ସାରିଲେଣି ଯେତେବେଳେ, କେବେହେଲେ ସେ ଖାଦ୍ୟ ଖାଇବେ ନାହିଁ।

କିନ୍ତୁ ଘଟଣା ଘଟିଲା ଭିନ୍ନ ପ୍ରକାର। ରଘୁନାଥ ସମ୍ମୁଖରେ ବର୍ତ୍ତମାନ ଏକ ବିରାଟ ଧର୍ମସଂକଟ ଉପସ୍ଥିତ। ପାଟିକୁ ଯାଉଥିବା ହାତଟି ଅଧାରୁ ଅଟକିଗଲା। ପାଟିକୁ ନେବ କି ଥାଳିରେ ରଖିଦେବ, କିଛି ନିର୍ଣ୍ଣୟ କରି ପାରିଲା ନାହିଁ। ଭାବିଲା, "ହାୟ! ମୁଁ ଏ କ'ଣ କଲି! ବିଷମିଶ୍ରିତ ଦ୍ରବ୍ୟ ପ୍ରଭୁଙ୍କୁ ଅର୍ପଣ କଲି! ହେ ପ୍ରଭୁ! ମୋର ଅଜ୍ଞାନ କୃତ ଅପରାଧକୁ କ୍ଷମା କର। ହେ ଜଗନ୍ନାଥ! ଏବେ ମୁଁ କ'ଣ କରିବି, କିଛି ବୁଦ୍ଧି ଦିଶୁ ନାହିଁ। ତୁମକୁ ଅର୍ପଣ କରିବା ପରେ ଏହା ପ୍ରସାଦ ହୋଇ ସାରିଛି। ପ୍ରସାଦକୁ ଅବମାନନା କିପରି କରିବି? ଏ ବିଷମିଶ୍ରିତ ଦ୍ରବ୍ୟ ନ ଖାଇଲେ କ'ଣ ମୁଁ ଅମର ହୋଇଯିବି? ଜନ୍ମ ହେଲେ ଦିନେ ନା ଦିନେ ମରିବା ସୁନିଶ୍ଚିତ। ତେବେ ତୁମ ପ୍ରସାଦ ସେବନ କରି ନ ମରିବି କାହିଁକି? ତୁମକୁ ବିଷ ଦେଇ ସାରିଲିଣି ଯେତେବେଳେ, ନିଜ ପ୍ରାଣ ପ୍ରତି ମୋହ କରିବା ଘୋର ଅପରାଧ ହେବ। ଏ ପ୍ରାଣ ଯାଉ ବା ରହୁ, ତୁମ ଇଚ୍ଛା।"

ପ୍ରକୃତ ଭକ୍ତର ଭଗବାନ ହିଁ ସର୍ବସ୍ୱ। ଭକ୍ତର ଶରୀର, ମନ, ବୁଦ୍ଧି, ଇନ୍ଦ୍ରିୟ

ପ୍ରଭୃତି ଭଗବାନଙ୍କୁ ଅର୍ପିତ ହୋଇ ସାରିଥାଏ। ସେଗୁଡ଼ିକ ଉପରେ ତା'ର ସ୍ୱତନ୍ତ୍ର ଅଧିକାର ନ ଥାଏ। ସେ ଭଗବାନଙ୍କ ପଦାର୍ଥର ରକ୍ଷକମାତ୍ର। ତା'ର ସମସ୍ତ କର୍ମ ଉଦ୍ଦିଷ୍ଟ ହୋଇଥାଏ ଭଗବାନଙ୍କର ପୂଜା ଓ ପ୍ରସନ୍ନତା ପାଇଁ। ସେ ଭୋଜନ କରେ କେବଳ ଭଗବାନଙ୍କ ପ୍ରସନ୍ନତା ପାଇଁ; ଶରୀରକୁ ସୁସ୍ଥ ଓ ସୁନ୍ଦର ରଖେ କେବଳ ତାଙ୍କ ପଦାର୍ଥର ସୁରକ୍ଷା ପାଇଁ। ଆଜି କିନ୍ତୁ ଭକ୍ତ ରଘୁନାଥ ଦେଇ ସାରିଛି ତା' ପ୍ରାଣନାଥଙ୍କୁ ଭୟଙ୍କର ବିଷ। ତେବେ ସେ ତୁଚ୍ଛ ହାଡ଼ମାଂସର ଶରୀର ପ୍ରତି ପୁଣି କାହିଁକି ମମତ୍ୱ କରିବ? ତାହାକୁ ପ୍ରଭୁଙ୍କଠାରୁ କାହିଁକି ଛଡ଼ାଇ ଆଣିବ? ଏହାଛଡ଼ା ଭଗବାନଙ୍କୁ ଅର୍ପିତ ପ୍ରତ୍ୟେକ ଦ୍ରବ୍ୟ ପ୍ରସାଦ ହୋଇଯାଏ। ତାହାକୁ ଉପେକ୍ଷା କରିବା ମଧ୍ୟ ଅପରାଧ। ତେଣୁ ସେ ପ୍ରଭୁଙ୍କ ପ୍ରସାଦକୁ ସାଦରେ ସେବନ କରିବାକୁ ସ୍ଥିର କରିନେଲା। ସରଳ ଭକ୍ତର ପବିତ୍ର ଭାବନାକୁ ଭଗବାନ ଜାଣିଗଲେ। ଏହା ପୂର୍ବରୁ ସେ ଅନେକ ଥର ବିଷକୁ ଅମୃତ କରିଛନ୍ତି। ପ୍ରହ୍ଲାଦ ପାଇଁ ସେ ବିଷକୁ ଅମୃତ କରିଥିଲେ। ମୀରାବାଈ ପାଇଁ ମଧ୍ୟ ବିଷ ଅମୃତ ହୋଇଯାଇଥିଲା। ଆଜି ସେହି ଭଗବାନ ଜଣେ ଭକ୍ତର କଷଣକୁ ଦେଖି ନୀରବ ରହିଯିବେ! କଦାପି ନୁହେଁ।

ରଘୁନାଥ ସବୁ ଜାଣି ମଧ୍ୟ ଅବିଚଳିତ ଚିତ୍ତରେ ସେହି ହଳାହଳ ମିଶ୍ରିତ ଅନ୍ନ ଗୋବିନ୍ଦଙ୍କ ନାମ ସ୍ମରଣ କରି କରି ଭକ୍ଷଣ କଲା। ପ୍ରସାଦ ହୋଇଥିବାରୁ ଥାଳିରେ ଗୋଟିଏ କଣିକା ମଧ୍ୟ ଛାଡ଼ିଲା ନାହିଁ। ବିଷ ଅତ୍ୟନ୍ତ ତୀବ୍ର ଥିଲା। ଅବିଳମ୍ବେ ଦେହରେ ସୃଷ୍ଟି ହେଲା ଭୟଙ୍କର ପ୍ରତିକ୍ରିୟା। ତୀବ୍ର ବେଦନାରେ ରଘୁ ସଂଜ୍ଞାଶୂନ୍ୟ ହୋଇ ଢଳି ପଡ଼ିଲା ସେଇ ଅଇଁଠା ଥାଳି ପାଖରେ। ଅଳ୍ପ କିଛି ସମୟ ମଧ୍ୟରେ ତା'ର ପ୍ରାଣପକ୍ଷୀ ଉଡ଼ିଗଲା ଶରୀର-ପିଞ୍ଜରା ମଧ୍ୟରୁ। ନିଷ୍ଠୁର ହୃଦୟା ଶାଶୁ ମନରେ ନିଜ ସଫଳତା ହେତୁ ଅପାର ଆନନ୍ଦ। ସେ ଦଉଡ଼ି ଯାଇ ସ୍ୱାମୀକୁ ଓ ପୁଅମାନଙ୍କୁ ଡାକି ଆଣିଲା। ସମସ୍ତେ ତାଙ୍କର ମନୋବାଞ୍ଛା ପୂର୍ଣ୍ଣ ହୋଇଥିବାରୁ ମନେ ମନେ ଖୁବ୍ ଆନନ୍ଦିତ ହେଲେ। ସମସ୍ତେ ସ୍ଥିର କରିନେଲେ ଯେ ସକାଳ ହେବାମାତ୍ରେ ଶବକୁ ପୋତିଦେବେ ଏବଂ ଲୋକେ ପଚ୍ଚାରିଲେ କହିବେ ଯେ ସାପକାମୁଡ଼ାରେ ଜୋଇଁଙ୍କର ମୃତ୍ୟୁ ଘଟିଲା। ଏହା ସ୍ଥିର କରି ସେମାନେ ଭଲ କରି କବାଟ କିଳିଦେଇ ଚାଲିଗଲେ।

ଘରେ କେବଳ ଅନ୍ନପୂର୍ଣ୍ଣାକୁ ଛାଡ଼ି ଅନ୍ୟ ସମସ୍ତଙ୍କ ମନ ମଧ୍ୟରେ ଲୁଚି ରହିଛି ଏକ ଅପ୍ରକଟ ଆନନ୍ଦ। କିନ୍ତୁ ଅନ୍ନପୂର୍ଣ୍ଣା ଆଖିକୁ ନିଦ କାହିଁ! ରଘୁନାଥ ଖାଇବା ବେଳେ ସେ ମାଆ କଥା ମାନି ଅନ୍ୟତ୍ର ଚାଲିଯାଇଥିଲା ସତ, କିନ୍ତୁ ତା'ର

ମନ ଆଶଙ୍କାରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ନ ଥିଲା। ସ୍ୱାମୀ ଥାଳିରେ ବିଷମିଶ୍ରିତ ଖାଦ୍ୟ ଦେଖି କେଉଁ ପତିବ୍ରତା ସ୍ତ୍ରୀ ବା ଶାନ୍ତିରେ ରହି ପାରିବ! ସେ ନିଜ ଶୟନ କକ୍ଷର ଆଖପାଖରେ ଶଙ୍କାକୁଳ ମନରେ ଇତସ୍ତତଃ ବୁଲୁଥାଏ। ଶୁନ୍‌ଶାନ୍ ରାତିରେ ମାତାପିତା ଓ ଭାଇଙ୍କର ଫୁସ୍‌ଫାସ୍ କଥାବାର୍ତ୍ତା ତା'ର ସନ୍ଦେହକୁ ଆହୁରି ଘନୀଭୂତ କରିଦେଲା। କେହି ନ ଥିବା ଦେଖି ସେ ଧୀରେ ଧୀରେ ଚାଲିଲା ସ୍ୱାମୀଙ୍କର ଭୋଜନ କକ୍ଷ ଆଡ଼କୁ। ଦେଖିଲା, କବାଟ ବନ୍ଦ। ଝରକା ଫାଙ୍କରେ ଦିଶୁଛି ସ୍ତିମିତ ପ୍ରଦୀପର ଅସ୍ପଷ୍ଟ ଆଲୋକ। ସେଇ ଫାଙ୍କ ଦେଇ ଭିତରକୁ ଚାହିଁଦେବା ମାତ୍ରେ ସେ ଯାହା ଦେଖିଲା, ସେଥିରେ ତା' ଦେହରୁ ପାଏ ରକ୍ତ ଶୁଖିଗଲା। "ହାୟ! ଏ କ'ଣ ହେଲା ସ୍ୱାମୀ! ସତେ କଣ ତୁମେ ସେ ବିଷମିଶ୍ରିତ ଖାଦ୍ୟ ଭକ୍ଷଣ କଲ? ମୋତେ ଏ ଘୋର ଭୟଙ୍କର ଦୁନିଆରେ ଏକାକିନୀ କରି କେଉଁଆଡ଼େ ଚାଲିଗଲ ପ୍ରାଣନାଥ!" ଏପରି କହୁ କହୁ ଅନ୍ନପୂର୍ଣ୍ଣାର ଦେହ ବରଡ଼ାପତ୍ର ପରି ଥରିବାକୁ ଲାଗିଲା ଏବଂ ସେ ସେଇଠାରେ ମୂର୍ଚ୍ଛିତ ହୋଇ ଢଳି ପଡ଼ିଲା।

କିଛି ସମୟ ପରେ ମୂର୍ଚ୍ଛା ଭାଙ୍ଗିଲା। ଆଖି ଖୋଲି ଚାହିଁଲା ବେଳକୁ ଚାରିଆଡ଼େ ଅନ୍ଧାର। ଶୁନ୍‌ଶାନ୍ ରାତିର ନୀରବତାକୁ ଭଙ୍ଗ କରୁଛି କେବଳ ଝିଙ୍କାରିର କର୍କଶ ଶବ୍ଦ। ଏବେ ଅବଳା ସତୀକୁ ଆହା ବୋଲି ପଦେ କହିବାକୁ କେହି ନାହିଁ।

ମଣିଷର ଯେତେବେଳେ ସବୁଆଡ଼ୁ ସାହା ଭରସା ତୁଟିଯାଏ, ସେତେବେଳେ ସେ ଏକ ସର୍ବବ୍ୟାପକ ଓ ସର୍ବସମର୍ଥ ଶକ୍ତି ଉପରେ ନିଜର ସମ୍ପୂର୍ଣ୍ଣ ଭାର ଛାଡ଼ିଦିଏ। ସେତିକିବେଳେ ସେହି ଅନନ୍ୟାଶ୍ରିତ ହୃଦୟର ଅନ୍ତରତମ ପ୍ରଦେଶରୁ ଯେଉଁ ଆକୁଳ ନିବେଦନ ବାହାରି ପଡ଼େ; ତାହା ଅଖିଳ ବିଶ୍ୱାକାଶକୁ ଭେଦ କରି ଭଗବାନଙ୍କ ପରମ ଧାମରେ ପହଞ୍ଚିଯାଏ। ଭଗବାନ ଭକ୍ତର ସେହି ଆକୁଳ ନିବେଦନକୁ ଉପେକ୍ଷା କରି ପାରନ୍ତି ନାହିଁ। ଠିକ୍ ସେଇଆ ହେଲା। ସତୀ ଅନ୍ନପୂର୍ଣ୍ଣା ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେବାକୁ ନିର୍ଣ୍ଣୟ କରି ଭଗବାନଙ୍କୁ ଅନ୍ତିମ ପ୍ରାର୍ଥନା କଲା।

ଭଗବାନଙ୍କ ରତ୍ନ ପଲଙ୍କ ଦୋହଲି ଉଠିଲା। ଭୃତ୍ୟର କଷଣ ସହି ନ ପାରି ପ୍ରଭୁ ତତ୍‌କ୍ଷଣାତ୍ ରଘୁନାଥର ମୃତ ଦେହ ପଡ଼ିଥିବା ଆବଦ୍ଧ କୋଠରୀରେ ଆବିର୍ଭୂତ ହେଲେ। ଭଗବାନଙ୍କ ନୀଳମଣି ତୁଲ୍ୟ ଉଜ୍ଜ୍ୱଳ କାନ୍ତିରେ କୋଠରୀଟି ଜାଜ୍ୱଲ୍ୟମାନ ହୋଇ ଉଠିଲା। ଭଗବାନ ସ୍ନେହମୟୀ ଜନନୀ ପରି ରଘୁନାଥକୁ

ଉଠାଇ ନେଲେ ନିଜ କୋଳକୁ । ପ୍ରଭୁ ନିଜ କୋମଳ କରକମଳରେ ତା'ର ସର୍ବାଙ୍ଗକୁ ଧୀରେ ଧୀରେ ଆଉଁସି ଦେଲେ ଏବଂ ମଧୁର ଅମୃତବର୍ଷିଣୀ ସ୍ୱରରେ ଡାକିଲେ—"ପ୍ରିୟ ରଘୁନାଥ! ଉଠ୍ । ବହୁତ ଶୋଇଗଲୁ; ଏଥର ଆଖି ଖୋଲ । ମୁଁ ତୋର ସହାୟକ ଥାଉ ଥାଉ ବିଷ ତୋର କ'ଣ କରିବ?" ଭଗବାନଙ୍କ କରସ୍ପର୍ଶ ପାଇ ରଘୁନାଥର ମୃତପିଣ୍ଡରେ ପୁନଃ ପ୍ରାଣ ସଞ୍ଚାର ହୋଇଗଲା । ***ଯାହାକୁ ରଖିବେ ଅନନ୍ତ । କି କରିପାରେ ବଳବନ୍ତ ॥*** ଯେଉଁ ସର୍ବ ସମର୍ଥ ଭଗବାନ ଦୂବକୁ ଦାରୁ କରି ପାରନ୍ତି, ଅଗ୍ନିକୁ ଶୀତଳ କରି ପାରନ୍ତି, ଅସମ୍ଭବକୁ ସମ୍ଭବ କରି ପାରନ୍ତି, ତାଙ୍କ ପକ୍ଷେ ଭକ୍ତକୁ ପୁନର୍ଜୀବନ ଦେବା କେଉଁ ବଡ଼ କଥା ଅବା? ସେହି ପ୍ରଭୁ ତ ଦିନେ ଅଭିଶପ୍ତା ଅହଲ୍ୟାର ପାଷାଣ ମୂର୍ତ୍ତିରେ ପ୍ରାଣ ସଞ୍ଚାର କରିଥିଲେ । ସେଇ ତ ଗୁରୁମାତାଙ୍କୁ ତାଙ୍କ ମୃତ ପୁତ୍ର ଫେରାଇ ଦେଇଥିଲେ । ପୁଣି ପରୀକ୍ଷିତଙ୍କୁ ନବଜୀବନ ପ୍ରଦାନ କରିଥିଲେ । ଆଜି ସେ ଆଉ ଗୋଟିଏ ଭକ୍ତକୁ ପୁନର୍ଜୀବିତ କରାଇ **'କର୍ତ୍ତୁମକର୍ତ୍ତୁଂ ଅନ୍ୟଥାକର୍ତ୍ତୁଂ ସମର୍ଥ ଈଶ୍ୱରଃ'** ଉକ୍ତିକୁ ସାର୍ଥକ କରିଦେଲେ ।

ରଘୁନାଥ ନିଦ୍ରାରୁ ଉଠିଲା ପରି ଉଠି ବସିଲା । ତତ୍‌କ୍ଷଣାତ୍ ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ । ମନୁଷ୍ୟକୁ ହଠାତ୍ ଗାଢ଼ ନିଦ୍ରାରୁ ଉଠାଇ ଦେଲେ ତାକୁ ଯେପରି ବାହ୍ୟ ଚେତନାକୁ ଫେରି ଆସିବାକୁ କିଛି କ୍ଷଣ ସମୟ ଲାଗେ, ଠିକ୍ ସେହିପରି ରଘୁନାଥର ଅବସ୍ଥା । କେହି ଜଣେ ତାକୁ ଡାକି ନିଦ୍ରାରୁ ଉଠାଇଲା, ଅଥଚ କେହି କେଉଁଠି ଦିଶୁ ନାହିଁ! ଗ୍ୱରିଆଡ଼େ ଘନ ଅନ୍ଧାର । ଭଗବତ୍‌ପ୍ରେରଣାରୁ ତା'ର ପୂର୍ବ ସ୍ମୃତି ଜାଗ୍ରତ ହୋଇଗଲା । ସମସ୍ତ ଘଟଣା ତା' ମାନସପଟରେ ନାଚିବାକୁ ଲାଗିଲା । ଭାବିଲା, "ମୁଁ ତ ସେଇ ରଘୁନାଥ! ମୁଁ ତ ବିଷ ଖାଇ ଭୟାନକ ଯନ୍ତ୍ରଣାରେ ଛଟପଟ ହେଉଥିଲି । ତା'ପରେ କ'ଣ ହେଲା ମୋତେ ଜଣା ନାହିଁ । ସମ୍ଭବତଃ ମୁଁ ମରି ଯାଇଥିଲି । କିନ୍ତୁ ସେହି ଭୀଷଣ ଯନ୍ତ୍ରଣାକୁ କିଏ ହରଣ କରିନେଲା? କିଏ ମୋର ନିଷ୍ପ୍ରାଣ ଶରୀରରେ ପୁନଃ ପ୍ରାଣ ସଞ୍ଚାର କଲା? ହଁ ହଁ ବୁଝିଗଲି, ନିଶ୍ଚେ ଏହା ମୋ କରୁଣାମୟ ପ୍ରଭୁଙ୍କ କରାମତି । ତାଙ୍କ ବିନା ଏ ଦୁନିଆରେ ମୋର ଆଉ କିଏ ସହାୟକ ଅଛି? ହେ ଦୟାମୟ! ହେ ଭକ୍ତବତ୍ସଳ! ଏସବୁ ତୁମରି ଖେଳ । ତୁମ ଲୀଳାଖେଳାର ରହସ୍ୟକୁ ତୁମେ ହିଁ ଜାଣ । ତୁମେ କେତେବେଳେ ସ୍ନେହରେ କୋଳକୁ ନେଇ ଗେଲ କରୁଛ ତ ପୁଣି କେତେବେଳେ କୋଳରୁ ତଳକୁ ପକାଇ ଦେଉଛ । ମୋ ଭଳି ଅଧମ ଜୀବ ତୁମର ଅଦ୍ଭୁତ

ଲୀଳାକୁ କ'ଣ ବା ବୁଝିବ? ମୁଁ ବୁଝି ଲାଭ ବା କ'ଣ? ତୁମେ ମୋ ପାଖେ ପାଖେ ରହିଛ ଯେହେତୁ ଯେତେ ବିପଦ ଆସିଲେ ବି ମୋର ଭୟ ନାହିଁ। ପ୍ରଭୁ! ଯେତେ ପାରୁଛ ମୋ ଉପରେ ବିପଦ ପରେ ବିପଦ ଅଜାଡ଼ି ପକାଅ। କାରଣ ସେହି ବିପଦ ପଛେ ପଛେ ତୁମ ଅପାର କୃପାକୁ ଅନୁଭବ କରି ମୁଁ ଧନ୍ୟ ହୋଇଯିବି। ତୁମର ମନମୋହନ ରୂପମାଧୁରୀ ଦର୍ଶନ କରିବାର ସୌଭାଗ୍ୟ ପାଇଯିବି।''

ଭକ୍ତ ରଘୁନାଥ ଏହିଭଳି ଭାବବିହ୍ୱଳ ଅବସ୍ଥାରେ ଭଗବାନଙ୍କୁ କେତେ କ'ଣ କହି ଯାଉଥାଏ। କେତେବେଳେ ହସୁଥାଏ ତ କେତେବେଳେ କାନ୍ଦୁଥାଏ। ପୁଣି କେତେବେଳେ ଭଗବାନଙ୍କ ନାମ-ଗୁଣ ଗାନ କରି ଉନ୍ମତ୍ତ ପରି ନାଚୁଥାଏ। ଏହିପରି ପ୍ରଭୁପ୍ରେମରେ ମଗ୍ନ ହୋଇ ବିତିଗଲା ରଘୁନାଥର ରାତି। କିନ୍ତୁ ଭକ୍ତର ଅନିଷ୍ଟ ଘଟାଇଥିବା ସମଗ୍ର ପରିବାରରେ କାହାରି ଆଖିକୁ ସୁଖନିଦ୍ରା ଆସି ନାହିଁ। କେବଳ ବାରମ୍ବାର କଡ଼ ଲେଉଟାଇ ରାତି ବିତିଗଲା। ରଘୁନାଥର ବିଷଜ୍ୱାଳା ଅପେକ୍ଷା ଏହି ପାପୀମାନଙ୍କର ହୃଦୟର ଜ୍ୱାଳା ବହୁ ଗୁଣ ଅଧିକ ଥିଲା। ପରକୁ ଦୁଃଖ ଦେଇ କେହିଁ କଣ ନିଜେ ସୁଖରେ ରହିପାରେ? ଚିନ୍ତା, ସନ୍ତାପ, ଆଶଙ୍କା, ଭୟ ତାକୁ ବିଛା ଭଳି ଅନବରତ ଦଂଶନ କରେ। ଆଜି ଗଙ୍ଗାଧରଙ୍କ ପରିବାରର ସେହି ଦଶା। ନିଜେ ଗଙ୍ଗାଧର, ତାଙ୍କ ସ୍ତ୍ରୀ ଓ ସାତ ପୁଅ ରାତି ସାରା ଅସଂଖ୍ୟ କାଳ୍ପନିକ ଭୟରେ ଛଟପଟ ହେଉଥାନ୍ତି। ସାମାନ୍ୟ ଶବ୍ଦ କେଉଁଠୁ ଶୁଣିଲେ ସେମାନଙ୍କ ଛାତିରେ ଛନକା ପଶି ଯାଉଥାଏ। 'କାଳେ ଏ କଥା ପ୍ରକାଶ ପାଇଯିବ', 'କେହି କାଳେ ରାଜଦରବାରରେ ଖବର ଦେଇଦେବ!' ଏହିଭଳି ନାନା ଚିନ୍ତାରେ ଦଗ୍ଧୀଭୂତ ହୋଇ ହୋଇ ରାତି ପାହିଲା। ମୁର୍ଦ୍ଦାରକୁ ଶୀଘ୍ର ଶୀଘ୍ର ଗାତ ଖୋଳି ପୋତି ପକାଇବା ଉଦ୍ଦେଶ୍ୟରେ ସାତ ପୁଅଙ୍କ ସଙ୍ଗେ ସ୍ୱୟଂ ଗଙ୍ଗାଧର ଆସି କବାଟ ଖୋଲିଲେ। ଦିବାଲୋକରେ ପ୍ରକାଶିତ ଘର ଭିତରକୁ ଗ୍ଚହିଁଦେଇ ସେମାନେ ସମସ୍ତେ ଆଚମ୍ବିତ ଓ ଅବାକ୍ ହୋଇଗଲେ। ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ। ଦେଖିଲେ, ରଘୁନାଥ ଖାଇବା ଆସନରେ ସ୍ଥିର ଭାବରେ ବସିଛି। ଶରୀର ପୁଲକିତ। ମୁଖମଣ୍ଡଳରେ ଏକ ଦିବ୍ୟ ଆଭା। ଓଷ୍ଠରେ କମ୍ପନ। ନିମୀଳିତ ନେତ୍ରରୁ ବହି ଗ୍ଚଲିଛି ଦୁଇଟି ସଦ୍ୟସ୍ରାବୀ ଅଶ୍ରୁଧାରା। କିଛି ଅଶ୍ରୁ ଗଣ୍ଡସ୍ଥଳକୁ ପ୍ଲାବିତ କରି ନିମ୍ନଗାମୀ ହୋଇ ବହି ଗ୍ଚଲିଛି ତ ଆଉ କିଛି ପିଇ ଯାଉଛି ଓଷ୍ଠ। ମଝିରେ ମଝିରେ ପ୍ରକମ୍ପିତ ଓଷ୍ଠରୁ ଅସ୍ପଷ୍ଟରୂପେ ଗଦ୍‌ଗଦ ବାଣୀରେ ଉଚ୍ଚାରିତ ହେଉଛି 'ରାମ କୃଷ୍ଣ ହରି' ଧ୍ୱନି। ଦେହର କାନ୍ତିରୁ ଜଣାପଡୁଛି ସତେ ଯେପରି କେହି ଜଣେ ଦିବ୍ୟ

ଧାମର ଦେବତା ବସିଛନ୍ତି । ଆଶ୍ଚର୍ଯ୍ୟରେ ସମସ୍ତେ ଜଡ଼ବତ୍ ହୋଇଗଲେ । ସମସ୍ତେ ପରସ୍ପର ମୁହଁକୁ ଗ୍ୱହୁଁଥାନ୍ତି, ଅଥଚ କାହାରି ପାଟିରୁ ବଚନ ବାହାରୁ ନ ଥାଏ । ଧୀରେ ଧୀରେ ସେମାନେ ଭିତରକୁ ଗଲେ । ସେମାନଙ୍କର ଗ୍ୱଲିବାର ଶବ୍ଦ କାନରେ ପଡ଼ିବାରୁ ରଘୁନାଥ ହଠାତ୍ ଦୁଇ ବାହୁ ପ୍ରସାରିତ କରି ପ୍ରଳାପ କରି ଉଠିଲା—''ଆସ, ଆସ ପ୍ରଭୁ!'' ଏତିକି କହି ସେ ଧଡ଼ପଡ଼ ହୋଇ ଉଠି ଠିଆ ହୋଇଗଲା । ଆଖି ଖୋଲି ଗ୍ୱହିଁଦେଲ ଭାବିଲା---''ଆରେ, ଏ ତ ମୋ ପ୍ରଭୁ ନୁହନ୍ତି । ଏ ତ ମୋତେ ମାରିବାକୁ ଷଡ଼ଯନ୍ତ୍ର କରିଥିବା ଦଳ ।''

ଭାବରେ ଉନ୍ମତ୍ତ ରଘୁନାଥ ପୁଣି ସେହି ଆସନରେ ବସି ପଡ଼ିଲା । ଗଙ୍ଗାଧରଙ୍କ ହୃଦୟର କମ୍ପନ ବହୁଗୁଣ ବଢ଼ିଯାଇଥାଏ । ସେ ଭାବିଲେ—ଏ ସାଧାରଣ ମନୁଷ୍ୟ ନୁହେଁ । ନିଶ୍ଚୟ ମଣିଷ ରୂପରେ କୌଣସି ଦେବତା । ନଚେତ୍ ମଣିଷ କ'ଣ ଏଭଳି ଉତ୍କଟ ବିଷ ଖାଇ କେବେ ବଞ୍ଚି ପାରିବ? ସମସ୍ତେ ଭୟରେ ରଘୁନାଥର ପାଦ ଧରି କ୍ଷମା ମାଗିଲେ । କିନ୍ତୁ ଭକ୍ତ ହୃଦୟ ତ ଉଦାର । ସେ ତ କାହାରିକୁ ଦୋଷୀ ମଧ୍ୟ ଭାବେ ନାହିଁ, ପୁଣି କ୍ଷମା ଦେବ କ'ଣ? ସେ ଭାବେ, ତା' ପ୍ରତି ଆସୁଥିବା ସୁଖ-ଦୁଃଖ ସବୁ କିଛି ତା'ର ପରମ ଆରାଧ୍ୟ ଭଗବାନଙ୍କର ମଙ୍ଗଳମୟ ବିଧାନ । ଦୁଃଖ ପ୍ରେରଣ କରି ଭଗବାନ ତା'ର ଅଶୁଭ ନାଶ କରନ୍ତି । କିନ୍ତୁ ବିଧାତାଙ୍କର ଏହା ବିଚିତ୍ର ବିଡ଼ମ୍ବନା ଯେ ଦୁଃଖ ଦେବାରେ ନିମିତ୍ତ ହୋଇଥିବା ବ୍ୟକ୍ତିକୁ ଜଗତ ଦୋଷୀ କହିଥାଏ ।

ଦୁଃଖରେ ହିଁ ମନୁଷ୍ୟର ବାସ୍ତବିକ ପ୍ରଗତି ହୁଏ । ମନୁଷ୍ୟ ଦୁଃଖର କାରଣ ଅନ୍ୱେଷଣ କରି ତାହାକୁ ଚିରଦିନ ପାଇଁ ଦୂରେଇ ଦେଇ ଅଖଣ୍ଡ ଅନନ୍ତ ସୁଖର ଉପଲବ୍ଧି କରିବାକୁ ସମର୍ଥ ହୁଏ । ସେ ଜନ୍ମ-ମରଣରୁ ମୁକ୍ତ ହୋଇଯାଏ । ଭଗବାନଙ୍କୁ ଆପଣାର କରିଥିବା ଭକ୍ତ ତ ଦୁଃଖରେ ଭଗବାନଙ୍କୁ ଡାକି ବା ଭଗବତ୍‌ମାର୍ଗରେ ଯାଇ ଇନ୍ଦ୍ରିୟ ଅଗୋଚର ଭଗବାନଙ୍କୁ ମଧ୍ୟ ଇନ୍ଦ୍ରିୟ ଦ୍ୱାରା ପ୍ରତ୍ୟକ୍ଷ ଦର୍ଶନ କରେ ଏବଂ ତାଙ୍କର ଏଭଳି କୃପା ଲାଭ କରେ, ଯାହା କି କଠୋର ତପସ୍ୟା କରିଥିବା ମୁନି-ଋଷିଙ୍କ ପାଇଁ ମଧ୍ୟ ଦୁର୍ଲଭ ।

ଅନ୍ୟ ଏକ ଦୃଷ୍ଟିକୋଣରୁ ବିଗ୍ୱର କଲେ ମନୁଷ୍ୟ ନିଜର କୃତକର୍ମର ଫଳ ହିଁ ଭୋଗ କରେ । ସେ ଅନ୍ୟ ପ୍ରତି ଯାହା କରିଥାଏ, ତାହା ପ୍ରାରବ୍ଧରୂପେ ତା' ସମ୍ମୁଖକୁ ଆସେ । ତେଣୁ ଏଥିରେ ଅନ୍ୟର ବା କ'ଣ ଦୋଷ?

ସେ ଯାହାହେଉ, ରଘୁନାଥ ସେମାନଙ୍କୁ ଦୋଷୀ ନ ଭାବି ଏ ଘଟଣାକୁ

ନିଜର କୃତକର୍ମର ଫଳଭୋଗ ମନେକଲା ଏବଂ କହିଲା—"ପୂର୍ବଜନ୍ମରେ ହୁଏତ ମୁଁ କାହାକୁ ବିଷ ଦେଇଥିଲି, ଆଜି ମୋ ପ୍ରତି ମଧ୍ୟ ସେଇଆ ହେଲା । ଏହା ମୋ ପ୍ରଭୁଙ୍କର ବିଧାନ ଥିଲା । ତୁମମାନଙ୍କ ଯୋଗୁଁ ଆଜି ମୁଁ ପ୍ରଭୁଙ୍କ କୃପା ଅନୁଭବ କରି ଧନ୍ୟ ହେଲି । ତେଣୁ ମନଦୁଃଖ ନ କରି ମୋର ଗୋଟିଏ କଥା ଶୁଣ । ମୋର ଦାରିଦ୍ର୍ୟ ଅବସ୍ଥା ଦେଖି ତୁମେ ମୋର ସ୍ତ୍ରୀ ଅନ୍ନପୂର୍ଣ୍ଣାକୁ ଅନ୍ୟତ୍ର ବିବାହ ଦେବାକୁ ସ୍ଥିର କରିଛ । ଯଦି ତୁମ ବିଚାରରେ ଏଇଟା ଠିକ୍, ତେବେ ମୁଁ ଫେରି ଯାଉଛି । କିନ୍ତୁ ଧର୍ମକୁ ଯଦି ତୁମର ଭୟ ଥାଏ, ତେବେ ମୋ ସ୍ତ୍ରୀକୁ ମୋ ସଙ୍ଗରେ ପଠାଇଦିଅ । ସେ ମୋ ସୁଖ-ଦୁଃଖର ସଙ୍ଗିନୀ । ମୁଁ ମୋ କହିବାର କଥା କହିଦେଲି, ଏଣିକି ତୁମ ଇଚ୍ଛା । ଏତିକି କହି ରଘୁନାଥ ଭଗବାନଙ୍କର 'ମୁକୁନ୍ଦ', 'ମାଧବ', 'ମୁରାରି' ପ୍ରଭୃତି ନାମ ଉଚ୍ଚାରଣ କରି କରି ଘରୁ ବାହାରି ଆସିଲେ । ଗଙ୍ଗାଧର ପ୍ରଭୃତି ପଛରୁ ଯାଇ ତାଙ୍କୁ ଅଟକାଇଲେ ଏବଂ କହିଲେ—"ଆଜିକ ରହିଯାଅ, କାଲି ତୁମ ସଙ୍ଗରେ ଅନ୍ନପୂର୍ଣ୍ଣାକୁ ପଠାଇ ଦେବୁ ।" କିନ୍ତୁ ରଘୁନାଥ ଆଉ ଗଙ୍ଗାଧରଙ୍କ ପାପପୂର୍ଣ୍ଣ ଭବନ ମଧ୍ୟକୁ ଯିବାକୁ ରାଜି ହେଲେ ନାହିଁ । ବାଧ୍ୟ ହୋଇ ଗଙ୍ଗାଧର ଅନ୍ନପୂର୍ଣ୍ଣାର ମତାମତ ଜାଣିବାକୁ ଘରକୁ ଆସିଲେ ।

ଅନ୍ନପୂର୍ଣ୍ଣା ଗତ ରାତିରେ ଭଗବାନଙ୍କ ଆବିର୍ଭାବ ଦୃଶ୍ୟ ଦେଖି ମୂର୍ଚ୍ଛିତ ହୋଇଯାଇଥିଲା । ମୂର୍ଚ୍ଛା ଭାଙ୍ଗିବା ପରେ ସ୍ୱାମୀ ଜୀବନ ଫେରି ପାଇଛନ୍ତି ବୋଲି ଜାଣି ନିଜ କକ୍ଷକୁ ଚାଲି ଆସିଥିଲା । କିନ୍ତୁ ଭାଇମାନେ ତା' କୋଠରୀକୁ ବାହାରୁ ତାଲା ଦେଇ ବନ୍ଦ କରିଦେଇଥିଲେ । ବିଚାରୀ ପଞ୍ଜୁରୀରେ ଆବଦ୍ଧ ପକ୍ଷୀ ପରି ଛଟପଟ ହେଉଥାଏ । ଗଙ୍ଗାଧର ଯାଇ ତାଲା ଖୋଲି ଅନ୍ନପୂର୍ଣ୍ଣାକୁ ପଚାରିଲେ— "ତୁ କ'ଣ ଚାହୁଁଛୁ ଅନୁ? ତୋର ଏହି ଭିକାରି ସ୍ୱାମୀ ସଙ୍ଗରେ ଯିବୁ ନା ଆମ କଥା ମାନିବୁ?" ନିଜ ଜନ୍ମଦାତା ପିତାଙ୍କ ମୁଖରୁ ଏଭଳି କଥା ଶୁଣି ଜଣେ ସତୀ ନାରୀର ହୃଦୟରେ କିଭଳି କଷ୍ଟ ହୋଇଥିବ, ତାହାକୁ ପୁରୁଷମାନେ ବୁଝି ପାରିବେ ନାହିଁ । ପିତାଙ୍କ ସମ୍ମୁଖରେ ଏଭଳି ପ୍ରଶ୍ନର ଉତ୍ତର ଦେବା ଝିଅ ପକ୍ଷେ ସଂକୋଚର ବିଷୟ ନିଶ୍ଚୟ, କିନ୍ତୁ ଆଜି ପରିସ୍ଥିତି ତାକୁ ଉତ୍ତର ଦେବାକୁ ବାଧ୍ୟ କରିଛି । ତେଣୁ ସେ ସଂକୋଚରେ ମଥା ଅବନତ କରି ମଧ୍ୟ ନିଜର ଅଟଳ ନିର୍ଣ୍ଣୟ ଶୁଣାଇଦେଲା । ସେ କହିଲା—"ବାପା! ମୋ ଅପରାଧ କ୍ଷମା କରିବ । ତୁମେ ମୋତେ ଧର୍ମକୁ ସାକ୍ଷୀ ରଖି ତାଙ୍କ ସଙ୍ଗେ ବିବାହ କରି ଦେଇଛ । ମୁଁ ତାଙ୍କୁ ସ୍ୱାମୀରୂପେ ସ୍ୱୀକାର କରି ସାରିଛି । ଏଣିକି ସେ ହିଁ ମୋର ସ୍ୱାମୀ । ମୁଁ ସତୀ ନାରୀ । ସତୀ ନାରୀର ସ୍ୱାମୀ

ହିଁ ଏକମାତ୍ର ଗତି । ମୋ ସ୍ୱାମୀ କାଙ୍ଗାଳ ହୁଅନ୍ତୁ ବା ଦାଣ୍ଡର ଭିକାରି ହୁଅନ୍ତୁ, ସେ ହିଁ ମୋ ପାଇଁ ଦେବତା । ମୁଁ ତାଙ୍କରି ସଙ୍ଗରେ ଯିବି ।''

ଏତିକି କହୁ କହୁ କ୍ରୋଧ ଓ ହୃଦୟର କୋହରେ ଲଜ୍ଜାର ବନ୍ଧ ଭାଙ୍ଗିଗଲା । ଦାନବଦର୍ପଦଳିନୀ ଦୁର୍ଗାଙ୍କ ପରି ତା' ମୁଖମଣ୍ଡଳ ଲାଲ ହୋଇଗଲା । ସେ ଲୋତକ ପୂରିତ ରକ୍ତିମ ନୟନରେ ସିଂହିଣୀ ପରି ଗର୍ଜନ କରି କହି ଉଠିଲା— ''ତୁମେ ମୋର ବାପା ହୋଇ ମୋତେ ଦୋଗ୍ଚରୁଣୀ କରି ଦେବାକୁ ଚାହୁଁଛ? ମୋ ସ୍ୱାମୀଙ୍କ ଠାରୁ ଅଲଗା କରି ମୋତେ ପରପୁରୁଷ ହାତରେ ସମର୍ପି ଦେବାକୁ ଚାହୁଁଛ? ଅସମ୍ଭବ, ଏହା ସମ୍ପୂର୍ଣ୍ଣ ଅସମ୍ଭବ । ତୁମମାନଙ୍କ ଇଚ୍ଛା କଦାପି ପୂର୍ଣ୍ଣ ହୋଇ ପାରିବ ନାହିଁ । ମନେରଖ, ମୋ ପିଣ୍ଡରେ ପ୍ରାଣ ଥାଉ ଥାଉ ମୋତେ ଆଉ କେହି ସ୍ପର୍ଶ କରି ପାରିବ ନାହିଁ । ଏହା ଘଟିବା ପୂର୍ବରୁ ମୁଁ ଆତ୍ମହତ୍ୟା କରି ସାରିଥିବି । ଆଉ ଏ କଥା ମଧ୍ୟ ମନେରଖ, ତୁମର ଏ ସୁଖର ସଂସାର ଗୋଟିଏ ସତୀର ଅଭିଶାପରେ କ୍ଷଣକ ମଧ୍ୟରେ ଜଳିପୋଡ଼ି ଭସ୍ମ ହୋଇଯିବ ।''

ଜଳରେ ଉତ୍ତାପ କେତେ ସମୟ ବା ରହିବ? ଶୀତଳତା ତା'ର ସ୍ୱାଭାବିକ ଧର୍ମ । ଶାନ୍ତ, ସରଳ ଅନ୍ନପୂର୍ଣ୍ଣାର କ୍ରୋଧ ଓ ଉତ୍ତେଜନା ଅଧିକ ସମୟ ରହି ପାରିଲା ନାହିଁ । ତାହା ଲୁହ ମାଧ୍ୟମରେ ଦ୍ରବିତ ହୋଇ ବହିଗଲା । ସେ ପୁଣି ଗଙ୍ଗାଧରଙ୍କ ପାଦ ଧରି ବିନତି କଲା—''ବାପା! ମୋତେ ମୋ ସ୍ୱାମୀଙ୍କ ସଙ୍ଗରେ ବିଦା କରିଦିଅ । ସେ ମୋ ଜୀବନର ଏକମାତ୍ର ଅବଲମ୍ବନ । ସେ ଯୋଗୀ ହେଲେ ମୁଁ ତାଙ୍କ ଭିକ୍ଷା ଥାଳ । ତାଙ୍କୁ ଛାଡ଼ି ମୁଁ ବଞ୍ଚି ପାରିବି ନାହିଁ ।''

ରଘୁନାଥର ଅଲୌକିକ ପ୍ରଭାବ ଓ ଅନ୍ନପୂର୍ଣ୍ଣାର ରୋଦନ ଦେଖି ଭୟ ଓ ଅନିଷ୍ଟ ଆଶଙ୍କାରେ ସମସ୍ତେ ଅନିଚ୍ଛା ସତ୍ତ୍ୱେ ଅନ୍ନପୂର୍ଣ୍ଣାକୁ ରଘୁନାଥ ସଙ୍ଗରେ ପଠାଇ ଦେବାକୁ ସମ୍ମତ ହୋଇଗଲେ । ଗଙ୍ଗାଧର ରଘୁନାଥ ନିକଟରେ କ୍ଷମା ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଅନ୍ନପୂର୍ଣ୍ଣାକୁ ବସ୍ତ୍ରାଳଙ୍କାରରେ ବିଭୂଷିତା କରାଇ ତା' ହାତରେ ସମର୍ପି ଦେଲେ । ଅନ୍ନପୂର୍ଣ୍ଣା ସ୍ୱାମୀଙ୍କ ପାଦ ତଳେ ଆତ୍ମସମର୍ପଣ କରି ସତେ ଯେପରି ଅଭୟ ଆଶ୍ରୟ ପାଇଗଲା । ସେ ରଘୁନାଥଙ୍କୁ କହିଲା, ପ୍ରାଣନାଥ! ଆମେ ଆଉ ଏଠି ରହିବା ଭଲ ନୁହେଁ । ତୁମର ଯେଉଁଠିକି ଯିବାକୁ ଇଚ୍ଛା ଚାଲ । ତୁମର ଏ ଚରଣସେବିକା ତୁମ ସଙ୍ଗେ ସଙ୍ଗେ ରହିବ । ପତ୍ନୀର କଥା ଶୁଣି ରଘୁନାଥ 'ଜୟ ଜଗନ୍ନାଥ' କହି ପୁରୀ ଅଭିମୁଖେ ଚାଲିଲେ ।

ଗଙ୍ଗାଧର ପରିସ୍ଥିତିର ଚାପରେ ପଡ଼ି ଝିଅକୁ ପଠାଇ ଦେଲେ ସତ, କିନ୍ତୁ

ଜଣେ ଭିକାରି ହାତରେ କନ୍ୟା ଟେକିଦେଇ ତାଙ୍କ ମନ ଅଶାନ୍ତ ସମୁଦ୍ରରେ ଉବୁଟୁବୁ ହେଉଥିଲା। ଏଣେ ଅନ୍ନପୂର୍ଣ୍ଣାର ମାଆ ଆଉ ଗୋଟିଏ ନୂଆ ଷଡ଼ଯନ୍ତ୍ର ରଚିଲା। ପାପୀ ଲୋକମାନଙ୍କୁ ସବୁବେଳେ ପାପବୁଦ୍ଧି ଦିଶେ। ସେ ବିବାହ ସ୍ଥିର ହୋଇଥିବା ମନ୍ତ୍ରୀ ପୁଅ ପାଖକୁ ଖବର ପଠାଇଦେଲା ଯେ "ଅନ୍ନପୂର୍ଣ୍ଣାର ସେହି ପୂର୍ବ କାଙ୍ଗାଳ ସ୍ୱାମୀ ଆସି ତାକୁ ନେଇ ପଳାଇ ଯାଉଛି। ଆମେ କନ୍ୟା ନ ଦେବାର ନାନା ଉପାୟ କରି ମଧ୍ୟ ହାରିଗଲୁ। ତୁମର ଯଦି କିଛି ଉପାୟ ଅଛି କର।" ଏ ଖବର ପାଇବା ମାତ୍ରେ ମନ୍ତ୍ରୀ ଓ ମନ୍ତ୍ରୀପୁଅ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ହଜାର ହଜାର ଅଶ୍ୱାରୋହୀ ଓ ପଦାତିକ ସୈନ୍ୟଙ୍କୁ ସଙ୍ଗରେ ଧରି ରଘୁ ଉପରେ ଆକ୍ରମଣ କରିବାକୁ ବାହାରି ପଡ଼ିଲେ। ପାଦରେ ଚାଲି ଚାଲି ଯାଉଥିବା ନବଦମ୍ପତିଙ୍କ ନିକଟରେ ପହଞ୍ଚିବାକୁ ସୈନ୍ୟବାହିନୀକୁ ବା କେତେ ସମୟ ଲାଗିବ! ପଛରୁ ଘୋଡ଼ାଙ୍କ ଟାପୁ ଶବ୍ଦ ଓ ସୈନ୍ୟବାହିନୀର ଜୟ ଘୋଷ ଶୁଣି ରଘୁନାଥ ପଛକୁ ବୁଲି ଚାହିଁଦେଲା। ବିଶାଳ ସୈନ୍ୟବାହିନୀକୁ ଦେଖି ରଘୁନାଥ ଆଶ୍ଚର୍ଯ୍ୟରେ ପଡ଼ିଗଲା। ଚାହୁଁ ଚାହୁଁ ମନ୍ତ୍ରୀ ପୁଅ ରଘୁନାଥ ନିକଟରେ ପହଞ୍ଚି ଯାଇ ଗର୍ଜନ କରି ଡାକ ଦେଲା—"ରେ ନାରୀଚୋର! ମୋ ହୃଦୟର ଧନକୁ ଚୋରାଇ ନେଇ ତୁ କୁଆଡ଼େ ଯାଉଛୁ? ଯଦି ପ୍ରାଣ ପ୍ରତି ମୋହ ଅଛି, ଯେତେ ଶୀଘ୍ର ଏ ସୁନ୍ଦରୀକୁ ଛାଡ଼ି ପଳାଇଯା। ନଚେତ୍ ବୃଥାରେ ତୁ ତୋର ଏ ଅମୂଲ୍ୟ ଜୀବନ ହରାଇବୁ।"

ଏ ଘଟଣା ଦେଖି ଅନ୍ନପୂର୍ଣ୍ଣା ଭୟରେ ଥରହର ହେଲା। ସେ କହିଲା—"ଏଇ ସେ ମନ୍ତ୍ରୀପୁଅ। ଏଇ ଦୁଷ୍ଟ ହାତରେ ମୋତେ ସମର୍ପି ଦେବାକୁ ବାପା ଚାହୁଁଥିଲେ। ମୋ ମନ୍ଦକପାଳ ଦେଖ, ପୁଣି ଏକ ବିପଦ ଆସି ପଡ଼ିଲା। ଏ ନିଶ୍ଚୟ ତୁମକୁ ମାରି ମୋତେ ନେଇଯିବ।" କିନ୍ତୁ ରଘୁନାଥର ଅରକ୍ଷରକ୍ଷକ ଜଗନ୍ନାଥଙ୍କ ଉପରେ ଅଟଳ ବିଶ୍ୱାସ। ସେ କାହିଁକି କାହାକୁ ଭୟ କରିବ? ତେଣୁ ସେ ହସି ହସି ଅନ୍ନପୂର୍ଣ୍ଣାକୁ କହିଲା—"ତୁମେ ବୃଥାରେ ଭୟ କରୁଛ। ସ୍ୱୟଂ ଜଗନ୍ନାଥ ଆମର ରକ୍ଷକ ଥାଉଁ ଥାଉଁ ଡର କାହାକୁ? ସେ ଚାହିଁଲେ ଏ ବିପତ୍ତିକୁ ନିମେଷକ ମଧ୍ୟରେ କାଟି ଦେଇ ପାରିବେ। ଯିଏ ରାତିକ ଭିତରେ ପୁରୀରୁ ମୋତେ କଳାବତୀ ପୁରରେ ପହଞ୍ଚାଇ ତୁମ ସଙ୍ଗେ ଭେଟ କରାଇ ଦେଲେ, ଯିଏ ଉତ୍କଟ ବିଷଜ୍ୱାଳାରେ ମରିଥିବା ପ୍ରାଣୀକୁ ବଞ୍ଚାଇ ଦେଲେ, ସେ ଏ ବିପଦରୁ ମଧ୍ୟ ଉଦ୍ଧାର କରିବେ। କେବଳ ତାଙ୍କୁ ସ୍ମରଣ କର।"

ଲୀଳାମୟ ପ୍ରଭୁ କେତେବେଳେ ଯେ କେଉଁ ଲୀଳା କରିବାକୁ ଚାହାନ୍ତି,

କେହି ତାହା ଜାଣିପାରେ ନାହିଁ । ରଘୁନାଥ ଓ ଅନ୍ନପୂର୍ଣ୍ଣା ଏହିଭଳି କଥାବାର୍ତ୍ତା ହେଉ ହେଉ ହଠାତ୍ କେଉଁଠୁ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଦୁଇ ଜଣ ତେଜସ୍ୱୀ ରାଜକୁମାର ଏପଟରୁ ଦୁଇଟି ଘୋଡ଼ାରେ ଚଢ଼ି ଆସି ସେମାନଙ୍କ ନିକଟରେ ପହଞ୍ଚିଗଲେ ଏବଂ ସେମାନଙ୍କ ବିପଦ ଦେଖି ପଚାରିଲେ—"ତୁମେ କିଏ? କେଉଁଠିକୁ ଯାଉଛ? ଏ ସୁନ୍ଦରୀ ତରୁଣୀଟି କିଏ? ତୁମ ପଛରେ ଏ ସୈନ୍ୟ ବାହିନୀ କାହିଁକି ଅନୁଧାବନ କରୁଛି?"

ରଘୁନାଥ ସମସ୍ତ ବୃତ୍ତାନ୍ତ ଶୁଣାଇ ସାରି କହିଲା—"ଏ ସଂସାରରେ ଏକମାତ୍ର ପ୍ରଭୁ ଜଗନ୍ନାଥଙ୍କ ବ୍ୟତୀତ ମୋର ଆଉ କେହି ସାହା ଭରସା ନାହିଁ । ସେ ମୋତେ ମାରିଲେ ମାରିବେ, ରଖିଲେ ରଖିବେ । ତାଙ୍କ ଇଚ୍ଛା । ଏ ବିପଦରେ ମୁଁ ତାଙ୍କରି ଶରଣାଗତ ।"

ସେ ବୀର ଦୁହେଁ ତ ସାଧାରଣ ରାଜକୁମାର ନ ଥିଲେ । ସେ ଥିଲେ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର । ଭକ୍ତକୁ ରକ୍ଷା କରିବା ପାଇଁ ଦୁହେଁ ରାଜକୁମାର ବେଶରେ ଉପସ୍ଥିତ ହୋଇଥିଲେ । ସବୁ କଥା ଜାଣି ମଧ୍ୟ ଲୀଳାସ୍ୱରୂପରେ କିଛି ନ ଜାଣିଲା ଭଳି ପଚାରୁଥିଲେ । ତେଣୁ ସେ ଭକ୍ତଦମ୍ପତିଙ୍କୁ ଅଭୟ ବାଣୀ ଶୁଣାଇ ନିଜ ନିଜର ଖଡ଼୍‌ଗ ଓ ଢାଲ ଧରି ଭକ୍ତରକ୍ଷଣ ପାଇଁ ପ୍ରସ୍ତୁତ ହୋଇଗଲେ । ମାୟା ବଳରେ ପ୍ରଭୁ କୋଟି କୋଟି ସୈନ୍ୟରୂପ ଧାରଣ କଲେ । ଏତେ ବଡ଼ ବିଶାଳ ସୈନ୍ୟବାହିନୀ ରଘୁନାଥକୁ ରକ୍ଷା କରୁଥିବା ଦେଖି ମନ୍ତ୍ରୀପୁଅ ଭୟରେ ଥରହର ହେଲା । ସାପକୁ ଦେଖି ବେଙ୍ଗ ପଲ ଏତେତେଣେ ଲୁଚି ଯିବା ପରି ସମସ୍ତ ସୈନ୍ୟ ଓ ସ୍ୱୟଂ ମନ୍ତ୍ରୀପୁଅ ପ୍ରାଣଭୟରେ ପଳାୟନ କଲେ । ରାଜକୁମାର ଦୁହେଁ ଭକ୍ତଦମ୍ପତିଙ୍କୁ ସେ ରାଜ୍ୟର ସୀମା ପାର କରାଇ ଦେଇ ନିର୍ଭୟରେ ପୁରୀ ଯିବାକୁ କହିଲେ ଏବଂ ନିଜେ ବିଦାୟ ମାଗିଲେ । ରଘୁନାଥ ଓ ଅନ୍ନପୂର୍ଣ୍ଣା ତାଙ୍କୁ ଶତ ଶତ ପ୍ରଣାମ କରିବା ସଙ୍ଗେ ସଙ୍ଗେ କୃତଜ୍ଞତା ଜଣାଇ କହିଲେ—"ବୀରବର! ଆଜି ଆପଣମାନଙ୍କ କୃପାରୁ ଆମ୍ଭେ ଦୁହେଁ ଦୁଷ୍ଟଙ୍କ କବଳରୁ ରକ୍ଷା ପାଇଲୁ । ଆପଣ ଯିଏ ବି ହୁଅନ୍ତୁ ନା କାହିଁକି, ଆମ ପାଇଁ ସାକ୍ଷାତ୍ ଜୀବନଦାତା । ଆପଣଙ୍କ ଚରଣରେ କୋଟି କୋଟି ପ୍ରଣାମ ।" ବୀର ରୂପଧାରୀ ଭଗବାନ ଭକ୍ତର ଭାବ ଦେଖି ମନ୍ଦ ମନ୍ଦ ହସି ସେଠାରୁ ଚାଲିଗଲେ । ରଘୁନାଥ ଭଗବାନଙ୍କୁ ଚିହ୍ନି ପାରିଲା ନାହିଁ । ସ୍ୱାଭାବିକ କଥା, ଭଗବାନ ସ୍ୱୟଂ ଯଦି ମାୟା ପରଦାରେ ନିଜକୁ ଆବୃତ କରି ଆସିବେ, ତାଙ୍କୁ କିଏ ବା ଚିହ୍ନି ପାରିବ? କିନ୍ତୁ ରଘୁନାଥର ଏତିକି ଅବଶ୍ୟ ବିଶ୍ୱାସ ଥିଲା ଯେ

ଭଗବାନଙ୍କ ଅଶେଷ କୃପାରୁ ହିଁ ତା'ର ସେହି ଘୋର ବିପଦ କଟିଗଲା।''

କିଛି ଦିନ ମଧ୍ୟରେ ପତି-ପତ୍ନୀ ଦୁହେଁ ପହଞ୍ଚିଲେ ଶ୍ରୀକ୍ଷେତ୍ରରେ। ରତ୍ନ ସିଂହାସନରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କରିବା ମାତ୍ରେ ତାଙ୍କର ସମସ୍ତ କ୍ଳେଶ ଓ ପଥଶ୍ରାନ୍ତି କେଉଁଆଡ଼େ ଉଭେଇ ଗଲା। ଅନ୍ନପୂର୍ଣ୍ଣାଙ୍କୁ ପିତା ଗଙ୍ଗାଧର ଯାହା କିଛି ଧନ ଦେଇଥିଲେ, ସେଥିରେ ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଘରଟିଏ କିଣିଲେ। ସେହିଠାରେ ଭଗବାନଙ୍କ ନାମ ଓ ଗୁଣ ଶ୍ରବଣ କୀର୍ତ୍ତନ କରି ପ୍ରଭୁପ୍ରେମରେ ନିମଗ୍ନ ରହିଲେ।

ରଘୁନାଥ ପ୍ରତିଦିନ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରେ। ଗରୁଡ଼ ପଛରେ ଠିଆ ହୋଇ କଳା ଶ୍ରୀମୁଖକୁ ଚାହିଁଦେବା ମାତ୍ରେ ତା' ଅନ୍ତରରେ ଉଚ୍ଛୁଳି ଉଠେ ଅମାନିଆ କୋହର ଅସଂଖ୍ୟ ତରଙ୍ଗ। ସେ ଅପଲକ ନୟନରେ ଚାହିଁ ରହେ ପ୍ରଭୁଙ୍କୁ। ଆଖିରେ ଆଖି ମିଶିଯାଏ। ଅଶ୍ରୁପୂରିତ ଲୋଚନରେ ଚାହିଁ ରହି ଅବ୍ୟକ୍ତ ବାଣୀରେ ଶୁଣାଏ ପ୍ରଭୁଙ୍କୁ ନିଜର ସୁଖ-ଦୁଃଖ। ଅନାଥର ନାଥ ଜଗନ୍ନାଥ ହିଁ ତାର ସର୍ବସ୍ୱ। ତାଙ୍କରି ଆଶ୍ରାରେ ରହି ଏବଂ ତାଙ୍କରି ନାମ-ଗୁଣ ସ୍ମରଣ କରି ସେ ଶ୍ରୀକ୍ଷେତ୍ରରେ ନିର୍ଭୟରେ ଦିନ କାଟେ। ମନରେ ଛଳ ନାହିଁ କି କପଟ ନାହିଁ। ଭିକ୍ଷା କରି ଯାହା କିଛି ଆଣେ, ତାହାକୁ ଅନ୍ନପୂର୍ଣ୍ଣା ରୋଷେଇ କରେ। ରୋଷେଇ ସରିଲେ ଭଗବାନଙ୍କୁ ନିବେଦନ କରି ସେଥିରେ ଦୁଇ ପ୍ରାଣୀ ଉଦର ପୋଷଣ କରନ୍ତି। ପତିପ୍ରାଣା ଅନ୍ନପୂର୍ଣ୍ଣା ସ୍ୱାମୀଙ୍କୁ ଦେବତା ପ୍ରାୟ ମଣି ମନପ୍ରାଣ ଦେଇ ତାଙ୍କର ସେବା କରେ। ସ୍ୱାମୀ ଖାଇ ସାରିଲେ ଅବଶିଷ୍ଟ ଅନ୍ନ ବାଢ଼ି ଆଣି ପରମ ସନ୍ତୋଷରେ ଭୋଜନ କରେ। ସ୍ୱାମୀ-ସ୍ତ୍ରୀ ଦୁହେଁ ଶ୍ରୀଜଗନ୍ନାଥଙ୍କ ନାମ-ଯଶ ଗାନ କରି ପରମ ଆନନ୍ଦ ଲାଭ କରନ୍ତି। ସକଳ ପ୍ରାଣୀଙ୍କ ପ୍ରତି ଦୟା କରନ୍ତି। ନିଜେ ଭିକ୍ଷାରେ ଜୀବନ ନିର୍ବାହ କରୁଥିଲେ ମଧ୍ୟ ବ୍ରାହ୍ମଣ, ବୈଷ୍ଣବ ବା ଅତିଥି କେହି ଦ୍ୱାରଦେଶରେ ପହଞ୍ଚିଗଲେ କାହାରିକୁ ନିରାଶ କରନ୍ତି ନାହିଁ। ତାଙ୍କୁ ଅତି ସମ୍ମାନର ସହିତ ଘର ମଧ୍ୟକୁ ଡାକି ନେଇ ଅନ୍ନ-ଜଳରେ ସନ୍ତୁଷ୍ଟ କରି ଆନନ୍ଦିତ ହୁଅନ୍ତି ଏବଂ ଅତିଥିସେବାରେ ନିଜକୁ ପରମ ଭାଗ୍ୟବାନ୍ ମନେ କରନ୍ତି। ଏହିରୂପେ କଟିଯାଏ ଭକ୍ତ ଦମ୍ପତ୍ତିଙ୍କ ଦିନଗୁଡ଼ିକ।

କ୍ରମେ କ୍ରମେ ରଘୁନାଥର ଅତିଥିସେବାର ପ୍ରଶଂସା ଜନମୁଖରୁ ଶୁଣିବାକୁ ମିଳିଲା। ଏଭଳି ଦୀନ-ଦରିଦ୍ର ହୋଇ ମଧ୍ୟ ଅତିଥି ଅଭ୍ୟାଗତଙ୍କ ସେବା କରିବା କଥା ଶୁଣି ଲୋକେ ରଘୁନାଥକୁ ଧନ୍ୟ ଧନ୍ୟ କହିଲେ। ଦିନେ ଶ୍ରୀଜଗନ୍ନାଥଙ୍କ

ଦର୍ଶନ କରିବା ନିମନ୍ତେ ବହୁ ଦୂରରୁ ଆସିଥିବା ବୈଷ୍ଣବ ପାଞ୍ଚ ସାତ ଜଣ ପ୍ରଭୁଙ୍କ ଦର୍ଶନ ସାରି ଭୋଜନ ଆଶାରେ ବୁଲୁଥିଲେ। ଲୋକଙ୍କ ମୁଖରୁ ରଘୁନାଥର ଅତିଥିସେବା କଥା ଶୁଣି ସେମାନେ ତା' ଦ୍ୱାରଦେଶରେ ପହଞ୍ଚି ଡାକ ଦେଲେ। ରଘୁନାଥ ଘରୁ ବାହାରି ଆସି ସାଧୁଙ୍କୁ ଦର୍ଶନ କରି ଆନନ୍ଦିତ ହେଲା। ପ୍ରଣାମ କରି ସାରି ହାତଯୋଡ଼ି କହିଲା—"ମୁଁ ଆପଣଙ୍କର କି ସେବା କରି ପାରିବି, ମୋତେ ଆଦେଶ ଦିଅନ୍ତୁ।" ସାଧୁମାନେ ଭୋଜନର ଅଭିଳାଷ ବ୍ୟକ୍ତ କରି କହିଲେ—"ଆମ୍ଭେମାନେ ଦୂର ଦେଶରୁ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ପାଇଁ ଆସିଥିଲୁ। ଏବେ ଆମ୍ଭେମାନେ କ୍ଷୁଧାର୍ତ୍ତ। ଭିକ୍ଷା ଆଶାରେ ବୁଲୁ ବୁଲୁ ଲୋକଙ୍କ ମୁହଁରୁ ତୁମର ପ୍ରଶଂସା ଶୁଣି ତୁମ ଦ୍ୱାରକୁ ଆସିଛୁ। ଆମ ଭୋଜନ ପାଇଁ କିଛି ବ୍ୟବସ୍ଥା କର। ଭଗବାନ ନିଶ୍ଚୟ ତୁମର ମଙ୍ଗଳ କରିବେ।"

ସାଧୁମାନଙ୍କର କଥା ଶୁଣି ରଘୁ ଚିନ୍ତାରେ ପଡ଼ିଗଲା। ସେ ନିଜେ ମଧ୍ୟ ନିତି ମାଗିଲେ ନିତି ଖାଏ। ଜଣେ ଦୁଇ ଜଣ ହୋଇଥିଲେ କୌଣସି ପ୍ରକାରେ ବ୍ୟବସ୍ଥା କରି ଦିଅନ୍ତା। କିନ୍ତୁ ଏତେ ଅତିଥିଙ୍କ ପାଇଁ ହଠାତ୍ ଯୋଗାଡ଼ କରିବା ତା' ଭଳି କାଙ୍ଗାଳ ପକ୍ଷେ ସହଜ କଥା ନୁହେଁ। ତଥାପି ଅତିଥିଙ୍କୁ ନିରାଶ କିପରି କରିବ? ତେଣୁ ବୈଷ୍ଣବମାନଙ୍କୁ ସସମ୍ମାନେ ଆସନରେ ବସାଇ ଘର ଭିତରକୁ ଯାଇ ଅନ୍ନପୂର୍ଣ୍ଣାକୁ ସକଳ ବୃତ୍ତାନ୍ତ କହିଲା। ଅନ୍ନପୂର୍ଣ୍ଣା ତ ସାଧାରଣ ନାରୀ ନୁହେଁ। ସ୍ୱାମୀଙ୍କ ଧର୍ମରେ ସହଯୋଗ ଦେଇ ସେ ସହଧର୍ମିଣୀ ଶବ୍ଦକୁ ଯଥାର୍ଥରେ ସାର୍ଥକ କରିଛି। ତେଣୁ ସେ ସଙ୍ଗେ ସଙ୍ଗେ ନିଜ ଦେହରୁ ଅଳଙ୍କାରମାନ କାଢ଼ି ପକାଇ ସ୍ୱାମୀଙ୍କ ହସ୍ତରେ ଦେଇ କହିଲା—"ଏ ଅଳଙ୍କାର ସବୁ ନିଅ। ସାହୁକାର ପାଖରେ ବନ୍ଧା ପକାଇ ଧନ ନେଇ ଆସ। ସେଥିରେ ସାଧୁଙ୍କ ଚର୍ଚ୍ଚା ହୋଇଯିବ। ଏ ଭୂଷଣ ଦେହରେ ଥାଇ କି ଲାଭ? ଦୟାଭାବ ହିଁ ମନୁଷ୍ୟର ବାସ୍ତବ ଭୂଷଣ। ଧନ ବା ସୁବର୍ଣ୍ଣ ଯଦି ଆବଶ୍ୟକ ସମୟରେ କାମରେ ନ ଲାଗିଲା, ସାଧୁଙ୍କ ଚର୍ଚ୍ଚା ଯଦି ହୋଇ ନ ପାରିଲା, ତେବେ ତାହାର ମୂଲ୍ୟ କ'ଣ?"

ଅନ୍ନପୂର୍ଣ୍ଣାଠାରୁ ଏଭଳି ଉଦାର ବାକ୍ୟ ଶୁଣି ତା'ପ୍ରତି କୃତଜ୍ଞତାରେ ରଘୁନାଥର ନେତ୍ର ଅଶ୍ରୁ ଛଳଛଳ ହୋଇଗଲା। ସେ ତାହାର ପତିବ୍ରତା ଧର୍ମକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାକୁ ନିଜର ଆଶଙ୍କା ବ୍ୟକ୍ତ କରି କହିଲା—"ମୁଁ ଏତେ ଅଳଙ୍କାର ନେଇଗଲେ ଲୋକେ ମୋତେ ସନ୍ଦେହ କରିବେ। କହିବେ, ଏ କାଙ୍ଗାଳ ପାଖରେ ଏତେ ଅଳଙ୍କାର କେଉଁଠୁ ଆସିଲା? ନିଶ୍ଚୟ ଚୋରି କରି କେଉଁଠୁ ଆଣିଛି। ତେଣୁ

ତୁ ନିଜେ ସାହୁକାର ଘରକୁ ଯାଇ ଗହଣା ବନ୍ଧା ପକାଇ ଟଙ୍କା ଆଣିଲେ ଭଲ ହେବ।" ସ୍ୱାମୀର କହିବା ଅନୁସାରେ ଅନ୍ନପୂର୍ଣ୍ଣା ସାହୁକାର ଘରେ ପହଞ୍ଚିଲା। ନିଜର ଗହଣା ସବୁ ସାହୁକାର ଆଗରେ ରଖି କହିଲା—"ମହାଜନେ! ଆମକୁ ଏ ସଙ୍କଟ ସମୟରେ ଏତିକି ଦୟା କର। ଏ ଗହଣା ବନ୍ଧକ ରଖି ମୋତେ ଶହେ ମୋହର ଦିଅ। ଆଠ ଦିନ ପରେ ତୁମକୁ ସୁଧ ସହିତ ମୂଳଧନ ଦେଇ ଗହଣା ନେଇଯିବୁ। ତୁମର ଧନ ଆଜି ସାଧୁ ସେବାରେ ଲାଗିବ। ଭଗବାନ ତୁମର ମଙ୍ଗଳ କରିବେ।"

ଭଗବାନଙ୍କ ମାୟା ବଡ଼ ବିଚିତ୍ର। ନିଜେ ଭଗବାନ ହିଁ ତାଙ୍କ ମାୟାକୁ ଜାଣନ୍ତି। କେତେବେଳେ ସେ କ'ଣ କରିବାକୁ ଚାହାନ୍ତି, ମାନବ ଛାର ତାକୁ କ'ଣ ବା ବୁଝିବ? ବେଳେ ବେଳେ ଭକ୍ତ ଜୀବନରେ ଅଘଟଣ ଘଟାଇ ତା'ର ଯଶସୌରଭକୁ ବିସ୍ତାର କରିବାର ଅଦ୍ଭୁତ ଲୀଳା ମଧ୍ୟ ଭଗବାନ କରିଥାନ୍ତି। ଅନ୍ନପୂର୍ଣ୍ଣାର ରୂପ ଲାବଣ୍ୟ ଦେଖି ଓ ମୃଦୁ ମଧୁର ବାଣୀ ଶୁଣି ଧନିକ ମନରେ କାହିଁକି କେଜାଣି ପାପ ବାସନା ଜାଗ୍ରତ ହୋଇଗଲା। ସାଧାରଣତଃ ଧନ, ଯୌବନ, ପ୍ରଭୁତ୍ୱ ଓ ଅବିବେକ ଯେଉଁଠି ଥାଏ, ସେଠି ପାପ ପ୍ରବେଶ କରିବା ଅତି ସହଜ। ତେଣୁ ସେ ଅନ୍ନପୂର୍ଣ୍ଣା ପ୍ରତି ଆସକ୍ତ ହୋଇଗଲା ଏବଂ କହିଲା—"ତୋ ରୂପ ଦେଖି ମୋ ମନ ମୁଗ୍ଧ ହୋଇଯାଇଛି। ତୁ ଯଦି ଆଜି ରାତିରେ ମୋତେ ପ୍ରୀତି ଦାନ ଦେବୁ, ତେବେ ବିନା ବନ୍ଧକରେ ମୁଁ ତୋତେ ଧନ ଦେଇଦେବି।"

ଧନିକର ପାପ କଥା ଶୁଣିବା ମାତ୍ରେ ସତୀ ଅନ୍ନପୂର୍ଣ୍ଣା ମସ୍ତକରେ ସତେ ଯେପରି ବଜ୍ରପାତ ହେଲା। ଆହା! ଅଭାବ ଓ ଧର୍ମସଙ୍କଟର ସୁଯୋଗ ନେଇ ଆଶାଲତା ଉପରେ ଏଭଳି ନିଷ୍ଠୁର ଆଘାତ! ସାମାନ୍ୟ ଧନ ପାଇଁ ଇଜ୍ଜତ ଓ ଆତ୍ମସମ୍ମାନର ଏତେ ବଡ଼ ବଳିଦାନ! ଅନ୍ନପୂର୍ଣ୍ଣା ଅନ୍ତର କ୍ଷୁବ୍ଧ ହୋଇ ଉଠିଲା। ତଥାପି ସ୍ୱାମୀଙ୍କ ଧର୍ମସଂକଟ ସ୍ଥିତିକୁ ଅନୁମାନ କରି ମନକୁ ଶାନ୍ତ କଲା ଏବଂ ସ୍ୱାମୀଙ୍କୁ ଏ କଥା ଜଣାଇବା ପାଇଁ ଫେରି ଆସିଲା।

କିନ୍ତୁ ସ୍ୱାମୀ ରଘୁନାଥ ଆଜି ଅତିଥିସେବା ନିମନ୍ତେ ଜୀବନର ଯେକୌଣସି ମୂଲ୍ୟ ଦେବା ପାଇଁ ପ୍ରସ୍ତୁତ। ଅତିଥି ତା' ପାଇଁ ସ୍ୱୟଂ ନାରାୟଣ ତୁଲ୍ୟ। ସେ ଅନ୍ନପୂର୍ଣ୍ଣା ମୁଖରୁ ସାହୁକାର କଥା ଶୁଣି ପ୍ରଥମେ ଦୋଦୁଲ୍ୟମାନ ସ୍ଥିତିରେ ପଡିଗଲା। ଭାବିଲା, ଏହା ମୋ ପାଇଁ ନୀତିବିରୁଦ୍ଧ କର୍ମ। ମୋତେ ଦୋଷ ଲାଗିବ। ପୁଣି ଭାବିଲା, ଏହା ନିଶ୍ଚେ ଭଗବାନଙ୍କ ପରୀକ୍ଷା। ଭଗବାନ କଣ କରିବାକୁ ଚାହୁଁଛନ୍ତି,

ସେ ଜାଣନ୍ତି। ବର୍ତ୍ତମାନ ପରିସ୍ଥିତିରେ ମୋତେ ସତ୍ୟରକ୍ଷା କରିବାକୁ ହେବ। ଯେମିତି ହେଲେ ବି ଅତିଥିଙ୍କ ସେବା କରିବାକୁ ହେବ। ତେଣୁ ସେ ଜଗନ୍ନାଥଙ୍କୁ ସ୍ମରଣ କରି ସାହୁକାର କଥାରେ ରାଜି ହେବାକୁ ଅନ୍ନପୂର୍ଣ୍ଣାକୁ କହିଲା। ଅନ୍ନପୂର୍ଣ୍ଣା ପତିବ୍ରତା ନାରୀ। ସ୍ୱାମୀଙ୍କ ଆଜ୍ଞାକୁ କିପରି ବା ଲଙ୍ଘନ କରନ୍ତା। ସେ ଆଉ କାଳବିଳମ୍ବ ନ କରି ଚାଲିଲା ମହାଜନ ପାଖକୁ। ମହାଜନକୁ ରାତିରେ ଆସିବାକୁ କହି ତା'ଠାରୁ ଧନ ଆଣି ସ୍ୱାମୀକୁ ଦେଲା। ଧନ ପାଇ ରଘୁନାଥ ଆନନ୍ଦ ମନରେ ଚାଲିଲା ପ୍ରଭୁଙ୍କ ସିଂହଦ୍ୱାର ଅଭିମୁଖେ। ସୁଆରଙ୍କୁ ଧନ ଦେଇ ନାନା ପ୍ରକାର ସୁମିଷ୍ଟ ଓ ସ୍ୱାଦିଷ୍ଟ ପ୍ରସାଦ ରନ୍ଧନ କରିବାକୁ ବରାଦ ଦେଲା। ସୁଆରମାନେ ରଘୁର କହିବା ଅନୁସାରେ ସରୁ ଅନ୍ନ, କ୍ଷୀରୀ, ଖେଚେଡ଼ି, ନାନା ପ୍ରକାର ତରକାରୀ, ସରପୁଳି, ଗଜା, କାକରା, ଦହି ପ୍ରଭୃତି ତିଆରି କରି ଠାକୁରଙ୍କୁ ମଣୋହି କରାଇଲେ ଏବଂ ପ୍ରସାଦ ନେଇ ରଘୁକୁ ଦେଇ ଆସିଲେ। ଏଥର ରଘୁ ଆନନ୍ଦ ମନରେ ବୈଷ୍ଣବଙ୍କ ପାଇଁ ପତ୍ର ପାରି ପ୍ରଭୁଙ୍କ ପ୍ରସାଦ ପରଷି ଦେଲା। ସମସ୍ତେ ମନ ସନ୍ତୋଷରେ ଭୋଜନ କଲେ ଏବଂ ଭକ୍ତ ଦମ୍ପତିଙ୍କୁ କଲ୍ୟାଣ କରି ନିଜ ଗନ୍ତବ୍ୟ ପଥରେ ଚାଲିଗଲେ।

ରାତି ହେଲା। ରଘୁ ଅନ୍ନପୂର୍ଣ୍ଣାକୁ ଡାକି କହିଲା—"ଯାହା ପାଇଁ ଆଜି ଆମେ ବୈଷ୍ଣବ ସେବା କରିବାର ସୌଭାଗ୍ୟ ଲାଭ କଲେ, ତାଙ୍କ ଋଣ ଆଜି ତୋତେ ଶୁଝିବାକୁ ପଡ଼ିବ। ସେ ଆମ ଘରକୁ ଆସିଲେ ମୋ'ଠାରୁ ତାକୁ ଶତେ ଗୁଣ ଆଦର କରି ତା'ର ଚରଣ ସେବା କରିବୁ। ଯଦି ମୋ ପ୍ରତି ତୋର ସ୍ନେହ ଅଛି, ତେବେ ସାହୁକାରର ମନୋକାମନା ପୂରଣ କରିବୁ।" ଏତିକି କହି ରଘୁନାଥ ଅନ୍ନପୂର୍ଣ୍ଣା କକ୍ଷ ନିକଟରୁ ଦୂରକୁ ଚାଲିଗଲା।

ଅନ୍ନପୂର୍ଣ୍ଣା ପାଇଁ ଉପସ୍ଥିତ ହେଲା କଠୋର ପରୀକ୍ଷାର ସମୟ। ସେ ଭାବିଲା, "ମୋ ସ୍ୱାମୀ ତ ନିଜର ଧର୍ମ-ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲେ, ଏବେ ମୋର ଧର୍ମ କିପରି ରକ୍ଷା ହେବ? ଏ ଧନିକ ତ ନିଜର ଧର୍ମ ବୁଝିଲା ନାହିଁ; ଏତେ ସମ୍ପତ୍ତିର ଅଧିକାରୀ ହୋଇ ମଧ୍ୟ ଧର୍ମକାର୍ଯ୍ୟରେ କିଛି ସଦ୍‌ବିନିଯୋଗ କରିବା ପରିବର୍ତ୍ତେ ବର୍ତ୍ତମାନ ଆସିବ ତାର ମୂଲ୍ୟ ଆଦାୟ କରିବାକୁ; ମୂଲ୍ୟ ତ ନୁହେଁ ପାପ ଅର୍ଜନ କରିବାକୁ। ଧିକ୍ ତୁମେ ଧନବାନ୍; ଧିକ୍ ତୁମ ଧନ! କଣ ଏହି ତୁମ ଧନର ସଦୁପଯୋଗ!"

ତଥାପି ସ୍ୱାମୀଙ୍କ ବଚନ ରକ୍ଷା କରିବାକୁ ହେବ। ଅନ୍ନପୂର୍ଣ୍ଣା ଦୀପଟିଏ ଜାଳି

ପଲଙ୍କ ଉପରେ ବସି ପ୍ରଭୁଙ୍କୁ ସ୍ମରଣ କଲା—"ହେ ପ୍ରଭୁ! ହେ ଦ୍ରୌପଦୀ ଲଜ୍ଜା ନିବାରଣକାରୀ! କେତେ କେତେ ସଂକଟରୁ ତୁମେ ଭକ୍ତଙ୍କୁ ଉଦ୍ଧାର କରିଛ। ଆଜି ମୋର ସତୀତ୍ୱ ରକ୍ଷା ପାଇଁ ତୁମେ କ'ଣ କରିବ, ତୁମେ ହିଁ ଜାଣ। ମୁଁ ତ ତୁମ ହାତର ଖେଳଣା।" ଏହିପରି ପ୍ରଭୁଙ୍କୁ ସ୍ମରଣ କରୁ କରୁ କାମାତୁର ସାହୁକାର ଗଳାଖଙ୍କାର ମାରି ରଘୁର ଘରେ ପହଞ୍ଚିଲା। ଅନ୍ନପୂର୍ଣ୍ଣା ଘର ଭିତରୁ କହିଲା— "ଆସ ସାହୁକାରେ! ଭୟ ନ କରି ଭିତରକୁ ଆସ। ମୁଁ ଏକା ଅଛି। ପ୍ରଭୁ ନରହରି ମୋର ରକ୍ଷକ। ସେ ହିଁ ମୋର ଭରସା।"

ଧନିକ ସିନା ନିଜର ଧର୍ମ ବୁଝିଲା ନାହିଁ, ମାତ୍ର ଭଗବାନ କଣ ଧାର୍ମିକର ଧର୍ମରକ୍ଷା କରିବେ ନାହିଁ? **'ଧର୍ମୋ ରକ୍ଷତି ରକ୍ଷିତଃ'**— ଯେ ଧର୍ମ ରକ୍ଷା କରେ, ଧର୍ମ ତାହାକୁ ରକ୍ଷା କରେ। ଭଗବାନ ତାଙ୍କର ମାୟା ରଚନା କରିଦେଲେ। କାମୁକ ସାହୁକାର କବାଟ ଖୋଲିଦେଇ ପଲଙ୍କ ଉପରକୁ ଗ୍ରହିଁଦେଲା। ହଠାତ୍ ତାକୁ ଦିଶିଲା ଏକ ଆଶ୍ଚର୍ଯ୍ୟଜନକ ଦୃଶ୍ୟ। ସେ ଦେଖିଲା, ପଲଙ୍କ ଉପରେ ଅନ୍ନପୂର୍ଣ୍ଣା ପ୍ରଭୁ ଶ୍ରୀହରିଙ୍କ କୋଳରେ ବସିଛି। କି ପରମ ଅଦ୍ଭୁତ ଶୋଭା! ସତେ ଯେପରି ଲକ୍ଷ୍ମୀ-ନାରାୟଣ, କି ଶିବ-ପାର୍ବତୀ, କି ଇନ୍ଦ୍ର-ଇନ୍ଦ୍ରାଣୀ ବସିଛନ୍ତି। ଭକ୍ତପତ୍ନୀକୁ ଭଗବାନ ଏପରି ରକ୍ଷା କରୁଥିବା ଦେଖି ସାହୁକାର ଭୟରେ ବରଢ଼ାପତ୍ର ପରି ଥରିବାକୁ ଲାଗିଲା। ସେ ଭାବିଲା, ଏ ତ ନାରୀ ନୁହେଁ, ସାକ୍ଷାତ୍ ଜ୍ୱଳନ୍ତ ଅଗ୍ନିଶିଖା। ମୁଁ ଏଥିରେ ଆଜି ଡେଇଁବାକୁ ଯାଉଥିଲି। ହାୟ! ମୁଁ ମୂଢ଼ ପାମର, ଏ ମହା ସତୀ ପ୍ରତି ପାପବସନା କରିଥିଲି! ମହା ବିଷଧର ଫଣାରେ ହାତ ମାରିବାକୁ ଯାଉଥିଲି! ମନରେ ଏହିପରି ଭୟ କରି ସଙ୍ଗେ ସଙ୍ଗେ ଯାଇ ସତୀ ପାଦତଳେ ଲମ୍ବ ହୋଇ ପଡ଼ିଗଲା ମହାଜନ। ସତୀ ଅନ୍ନପୂର୍ଣ୍ଣା ଧନିକର ବିପରୀତ ମତି ଦେଖି କହିଲା— "ଏ କ'ଣ କରୁଛ ମହାଜନେ! ଉଠ, ପଲଙ୍କ ଉପରକୁ ଆସ।"

— "ନା, ମାଆ! ମୋତେ ରକ୍ଷା କର। ହେ ପରମ ସତୀ! ମୋ ଅପରାଧ କ୍ଷମା କର। ମୁଁ ଅଧମ ତୁମ ମହିମା ନ ଜାଣି କେଡ଼େ ଅପରାଧ କରିବାକୁ ଯାଉଥିଲି। ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମାତା କେବେ କୁମାତା ହୁଏ ନାହିଁ। ମାତା କେବେ ପୁତ୍ରର ଦୋଷ ଧରେ ନାହିଁ। ମାତା ଗର୍ଭରେ ଥାଇ ପୁତ୍ର କେତେ ପାଦ ପ୍ରହାର କରେ, ମାଆ କୋଳରେ କେତେ ଅଳି ଅର୍ଦ୍ଦଳି କରେ, ବହୁ ଦୁଷ୍ଟାମି ମଧ୍ୟ କରେ; କିନ୍ତୁ ମାଆ ତାହାକୁ ଦୋଷ ବୋଲି ଭାବେ ନାହିଁ। ହୃଦୟର ଅସୀମ ସ୍ନେହ ଦେଇ ସେ ସନ୍ତାନକୁ ଲାଳନ-ପାଳନ କରେ। ମାଆ! ତୁମେ ତୁମର ଏ

ଦୁଷ୍ଟ ସନ୍ତାନ ପ୍ରତି ଦୟା କର। ଆଜି ତୁମ କୃପାଦୃଷ୍ଟିରେ ମୁଁ ମୋକ୍ଷଭାଗୀ ହେଲି ମାଆ!"

—ଅନୁତାପର ଅଶ୍ରୁ ଝରାଇ ସାହୁକାର ଏହିପରି ବିଳାପ କରୁଥାଏ ଏବଂ ବାରମ୍ବାର ସତୀ ପାଦତଳେ ଲୋଟି ପଡୁଥାଏ। ତେଣେ ସତ୍ୟନିଷ୍ଠ ଭକ୍ତ ରଘୁନାଥ ଭାବୁଥାଏ, ଧନୀ ମୋତେ ଧନ ଦେଇଥିଲା, ତା'ର ଅଭିଳାଷ ପୂର୍ଣ୍ଣ ହେଲା କି ନାହିଁ? ତା' କାମନା ପୂର୍ଣ୍ଣ ନ ହେଲେ ସତ୍ୟ ଭଗ୍ନ ହେବ। ତେଣୁ ସେ ଧୀରେ ଧୀରେ ଘର ଆଡ଼କୁ ଗଲା। ଅନ୍ନପୂର୍ଣ୍ଣା ପାଦତଳେ ସାହୁକାରକୁ ଦେଖି ଆଶ୍ଚର୍ଯ୍ୟରେ ପଚାରିଲା—"ଏ କ'ଣ କରୁଛ ସାହୁକାରେ! ଛାର ଯୁବତୀ ପାଦ ତଳେ କାହିଁକି ଲୋଟୁଛ?" ସାହୁକାର ଦୌଡ଼ି ଆସି ଅଶ୍ରୁଳ ନେତ୍ରରେ ରଘୁନାଥର ପାଦ ଧରି କ୍ଷମା ମାଗିଲା ଏବଂ ସକଳ ବୃତ୍ତାନ୍ତ ଶୁଣାଇ କହିଲା—"ପଲଙ୍କ ଉପରକୁ ଚାହିଁ ଦେଖ, ସ୍ୱୟଂ ପ୍ରଭୁ ବିଜେ କରି ତୁମ ପତ୍ନୀଙ୍କୁ କୋଳରେ ଧରିଛନ୍ତି।"

କିନ୍ତୁ ପ୍ରଭୁ ସେତେବେଳକୁ ଅନ୍ତର୍ଦ୍ଧାନ ହୋଇ ସାରିଥିଲେ। ସମସ୍ତେ ଭାବବିହ୍ୱଳ ହୋଇଗଲେ। ରଘୁ ଓ ଧନିକ ପରସ୍ପରକୁ ଆଲିଙ୍ଗନ କରି ପ୍ରଭୁଙ୍କ ଅପାର ମହିମା ଗାନ କରି ଆନନ୍ଦରେ ବିଭୋର ହୋଇଗଲେ। ମହାଜନର ଜୀବନ ବଦଳିଗଲା, ସେ ଯଥାର୍ଥରେ ମହାଜନ ପାଲଟିଗଲା। ମହାନ୍ ଜନ ହୋଇଗଲା। ସେ ଆନନ୍ଦ ମନରେ ରଘୁନାଥକୁ ଆହୁରି ଅଧିକ ଧନ ସାହାଯ୍ୟ କଲା। ଭକ୍ତଦମ୍ପତି ସାରା ଜୀବନ ଶ୍ରୀହରିଙ୍କ ପାଦପଦ୍ମକୁ ସ୍ମରଣ କରି ପ୍ରଭୁପ୍ରେମରେ ଦିନ କାଟିଲେ। ଅନ୍ତକାଳରେ ଦେହ ତ୍ୟାଗ କରି ପରମପଦ ଲାଭ କଲେ।

ଭକ୍ତ ଭଗବାନଙ୍କର ପରମ ଗଣ୍ଠିଧନ। ଭକ୍ତ ଯେତେବେଳେ ନିଜର ସର୍ବସ୍ୱ ତ୍ୟାଗ କରି କେବଳ ପ୍ରଭୁଙ୍କ ପଦାରବିନ୍ଦରେ ଅବିଚଳ ଆସ୍ଥା କରେ, ଭଗବାନ ତାକୁ କଦାପି ହତାଦର କରନ୍ତି ନାହିଁ। ଜଗତରେ ଗୁଣହୀନ, ଧନହୀନ, ଶକ୍ତିହୀନ ବ୍ୟକ୍ତିର ଅନାଦର ହୁଏ; କେହି ତାହାକୁ ଭଲ ପାଆନ୍ତି ନାହିଁ। କିନ୍ତୁ ଭଗବାନ ଗୁଣ ପ୍ରଭୃତିକୁ ଦେଖନ୍ତି ନାହିଁ, ସେ ଦେଖନ୍ତି ଭକ୍ତର ଭାବ। ଭକ୍ତ ପାଇଁ ସେ ନିରାକାରରୁ ସାକାର ହୋଇ ପାରନ୍ତି, ନିଜର ପ୍ରତିଜ୍ଞା ମଧ୍ୟ ଭଙ୍ଗ କରି ପାରନ୍ତି, ନିଜ ମର୍ଯ୍ୟାଦାରୁ ବହୁ ତଳକୁ ଖସି ଆସି ନୀଚାତିନୀଚ କାର୍ଯ୍ୟ ମଧ୍ୟ କରି ପାରନ୍ତି। କେବଳ ଆବଶ୍ୟକ ଭକ୍ତର ପୂର୍ଣ୍ଣ ସମର୍ପଣ ଭାବନା। ସେତିକି ହେଲେ ଭଗବାନ ଭକ୍ତର ଯୋଗ ଓ କ୍ଷେମ ସବୁକିଛି ବହନ କରନ୍ତି। ଜଗତରେ ଅରକ୍ଷିତ ହୋଇଯାଏ ପୂର୍ଣ୍ଣ ସୁରକ୍ଷିତ। ମେରୁ ତୁଲ୍ୟ ନାନା ଦୁର୍ଲଙ୍ଘ୍ୟ ବିପତ୍ତିକୁ ଅନାୟାସରେ ଅତିକ୍ରମ

କରି ଭକ୍ତ ଜଗତରେ ନିର୍ଭୟରେ ବିଚରଣ କରେ—

**ମାତା ଅଙ୍କେ ଶିଶୁ ହୋଇଣ ନିଶ୍ଚିନ୍ତ ଶୟନ କରେ ଯେସନେ ।**
**ପ୍ରଭୁଙ୍କ ଆଶ୍ରୟେ ଭକତ ନିର୍ଭୟେ ଭବେ ଭ୍ରମଇ ତେସନେ ॥**



# ଭକ୍ତ ଦାମା ପନ୍ତ

ତ୍ରୟୋଦଶ ଶତାବ୍ଦୀର କଥା । ସେତେବେଳେ ମହାରାଷ୍ଟ୍ରରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥାଏ । ଚତୁର୍ଦ୍ଦିଗରେ ହା-ହାକାର । ଅନ୍ନ ନ ପାଇ ହଜାର ହଜାର ଲୋକ ମୃତ୍ୟୁମୁଖରେ ପଡୁଥାନ୍ତି । ଗଛରେ ପତ୍ରଟିଏ ମଧ୍ୟ ଦେଖିବାକୁ ମିଳୁ ନ ଥାଏ । ପ୍ରାଣ ବିକଳରେ ଲୋକେ ଗଛରୁ ପତ୍ର ଖୁଣ୍ଟି ଖାଇଯାଉଥାନ୍ତି । କଷ୍ଟର ସୀମା ନାହିଁ । ଯେତିକି ଲୋକ ବଞ୍ଚିଥିଲେ, ସେମାନଙ୍କ ଦେହକୁ ଚାହିଁଲେ ଭୟ ଲାଗୁଥାଏ । ଦେଖିବାକୁ ପ୍ରେତ ଭଳି । ପେଟ ପିଠିରେ ଲାଖି ଯାଇଥାଏ । ଚକ୍ଷୁ କୋଟରଗତ । ଦେହରେ ରକ୍ତ-ମାଂସ ବୋଲି କିଛି ନାହିଁ । ଜଣାପଡୁଥାଏ ସତେ ଯେପରି ହାଡ଼ କଙ୍କାଳର ଛାଞ୍ଚ ଉପରେ ପରସ୍ତେ ଚର୍ମ ଛାଉଣି କରି ଦିଆଯାଇଛି ।

ସେତେବେଳେ ମୁସଲମାନଙ୍କ ରାଜତ୍ୱ ସମୟ । ଗୋବଲକୁଣ୍ଡା ବେଦରଶାହୀ ରାଜ୍ୟ ଅନ୍ତର୍ଗତ ମଙ୍ଗଳବେଢ଼ା ପ୍ରାନ୍ତର ପ୍ରଧାନ ସୁବେଦାର ପଦବୀରେ ପ୍ରଶାସନ କାର୍ଯ୍ୟ ସମ୍ଭାଳୁଥାନ୍ତି ଦାମା ପନ୍ତ । ଦାମା ପନ୍ତ ଜଣେ ଉଦାର ଓ ଭକ୍ତିପରାୟଣ ବ୍ୟକ୍ତି । ପାଣ୍ଡୁରଙ୍ଗ ଠାକୁରଙ୍କ ଚରଣରେ ତାଙ୍କର ପ୍ରଗାଢ଼ ନିଷ୍ଠା । ଭକ୍ତ ଦାମା ପନ୍ତ ଓ ତାଙ୍କ ସ୍ତ୍ରୀ ପ୍ରଭୁଙ୍କ ପାଦପଦ୍ମରେ ନିଜର ମନପ୍ରାଣ ଢାଳିଦେଇ ଅବିରତ ତାଙ୍କ ସେବାରେ ଜୀବନକୁ ନିୟୋଜିତ କରିଥାନ୍ତି । ଭକ୍ତଦମ୍ପତି ନିଜର ପ୍ରତ୍ୟେକ କର୍ତ୍ତବ୍ୟକୁ ପ୍ରଭୁଙ୍କର ସେବା ମନେକରି ନିଷ୍କାମଭାବରେ ପାଳନ କରନ୍ତି । ଦୁଃଖୀ ଦରିଦ୍ରଙ୍କ ସେବାରେ ସର୍ବସ୍ୱ ଅର୍ପଣ କରି ମଧ୍ୟ ଆତ୍ମଗର୍ବ ପ୍ରକାଶ କରନ୍ତି ନାହିଁ । ସକଳ ପ୍ରାଣୀଙ୍କ ହୃଦୟରେ ଭଗବାନଙ୍କୁ ଦେଖନ୍ତି । ଏଭଳି ଭକ୍ତ ଲୋକମାନଙ୍କ ଦୁଃଖ ଦେଖି କିପରି ବା ନୀରବ ରହି ପାରିବେ? ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କ ପାଇଁ ତାଙ୍କ ହୃଦୟ କରୁଣାରେ ଦ୍ରବିତ ହୋଇଗଲା । ଜନତା ଜନାର୍ଦ୍ଦନଙ୍କର ଏପରି ଅନ୍ନକଷ୍ଟ ସେ ଆଉ ସହି ପାରିଲେ ନାହିଁ । ସେ ଭାବିଲେ, ବାଦଶାହଙ୍କୁ ଜଣାଇ ସରକାରୀ ପଦ୍ଧତିରେ ପଦକ୍ଷେପ ନେବାରେ ବହୁ ବିଳମ୍ବ ଘଟିବ । ସେତେବେଳକୁ ଅସଂଖ୍ୟ ଲୋକ ପ୍ରାଣ ହରାଇ ସାରିଥିବେ । ଫସଲ ମରିଯିବା ପରେ କିଆରିକୁ

ପାଣି ମଡ଼ାଇବା ପରି କିଛି ଲାଭ ହେବ ନାହିଁ। ତେଣୁ ସେ କାଳବିଳମ୍ବ ନ କରି ସାହାଯ୍ୟ କରିବାକୁ ଆଗେଇ ଆସିଲେ। ପରେ ସେ ବାଦଶାହଙ୍କର ଆଦରର ପାତ୍ର ହେବେ କି କୋପଦୃଷ୍ଟିର ଶିକାର ହେବେ, ସେ ବିଷୟରେ ଆଦୌ ଚିନ୍ତା କଲେ ନାହିଁ।

ବାସ୍ତବରେ ଭକ୍ତ ହୃଦୟ ଲହୁଣୀଠାରୁ ମଧ୍ୟ ଅଧିକ କୋମଳ। ଲହୁଣୀ ତ ନିଜେ ଉତ୍ତାପ ପାଇଲେ ତରଳେ, କିନ୍ତୁ ଭକ୍ତର ହୃଦୟ ଅନ୍ୟର ଦୁଃଖରେ ଦ୍ରବିତ ହୋଇଯାଏ। ନିଜ ଉପରେ ଯେତେ ଦୁଃଖ ପଡ଼ିଲେ ମଧ୍ୟ ଭକ୍ତ ବିବ୍ରତ ହୁଏ ନାହିଁ, ମାତ୍ର ଅନ୍ୟର ତିଳେମାତ୍ର ଦୁଃଖ ତା' ପାଇଁ ଅସହ୍ୟ ହୋଇପଡ଼େ। ଉଦାର ଭାବ ଭକ୍ତଜନଙ୍କର ଏକ ଅମୂଲ୍ୟ ଭୂଷଣ। ପ୍ରଭୁଙ୍କ ଉଦାର ସ୍ୱଭାବ ଅବତରିତ ହୋଇଥାଏ ଭକ୍ତଜନଙ୍କ ଠାରେ। ସେ ନିଜ ଜୀବନକୁ ମଧ୍ୟ ଉତ୍ସର୍ଗ କରି ଦିଅନ୍ତି ଅନ୍ୟର ଦୁଃଖ ଉପଶମ କରିବା ନିମନ୍ତେ। ଏଭଳି ତ୍ୟାଗୀମାନେ ଭଗବାନଙ୍କର ପରମ ପ୍ରିୟ।

ଗୃଧ୍ରରାଜ ଜଟାୟୁ ଜଗଜ୍ଜନନୀ ସୀତାଙ୍କୁ ମହାପାପୀ ରାବଣ କବଳରୁ ମୁକୁଳାଇବାକୁ ଯାଇ ଆତ୍ମବଳି ଦେଇଦେଲେ। ଦେବଗଣଙ୍କ ଦୁଃଖ ଦୂର କରିବା ପାଇଁ ଦଧୀଚି ଋଷି ନିଜର ଅମୂଲ୍ୟ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ। କୁହାଯାଇଛି—ଉଦାର ସ୍ୱଭାବର ବ୍ୟକ୍ତିଙ୍କ ପକ୍ଷେ ଜଗତରେ କୌଣସି ଜିନିଷ ଅଦେୟ ନାହିଁ। ଭକ୍ତ ଦାମା ପନ୍ତ ନିର୍ଭୀକ ଭାବରେ ନିଜ ପ୍ରାଣକୁ ବାଜି ଲଗାଇ ଅନ୍ନକଷ୍ଟ ପୀଡ଼ିତ ପ୍ରଜାଙ୍କ ରକ୍ଷା ଅର୍ଥେ ରାଜ୍ୟର ଅନ୍ନଭଣ୍ଡାର ବିତରିତ କରିଦେଲେ। ଦୟାରୂପୀ ସରିତାର ପ୍ରଖର ସ୍ରୋତରେ ଭାସି ଯାଇଥିଲା ତାଙ୍କର ରାଜଦଣ୍ଡ ଭୟ। ଦୁର୍ଭିକ୍ଷ ପ୍ରପୀଡ଼ିତ ହଜାର ହଜାର ଲୋକଙ୍କ ପ୍ରାଣ ରକ୍ଷା ହୋଇଗଲା। ଏଥିରେ ପ୍ରଭୁଙ୍କର ଅସୀମ କୃପା ଅନୁଭବ କରି ଦାମା ପନ୍ତଙ୍କ ଆତ୍ମା ଶାନ୍ତି ଲାଭ କଲା।

କିନ୍ତୁ ଏ ଜଗତ ବଡ଼ ବିଚିତ୍ର। ଏଠି ସବୁ ପ୍ରକାରର ଲୋକ ଅଛନ୍ତି। ଉଦାର ଓ ପୁଣ୍ୟାତ୍ମା ପୁରୁଷଙ୍କୁ ଅକାରଣେ ନିନ୍ଦା କରିବା ଏବଂ ଗୁଣବାନ୍ ଓ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତିଙ୍କର ଉତ୍କର୍ଷ ସହି ନ ପାରିବା ଲୋକଙ୍କର ଏଠି ଅଭାବ ନାହିଁ। ଛଅକୁ ନଅ କରି ଚୁଗୁଲି କରିବା ଖଳ ଲୋକଙ୍କର ସହଜ ସ୍ୱଭାବ। ଏହା ନ କଲେ ତାଙ୍କର ଖାଦ୍ୟ ହଜମ ହୁଏ ନାହିଁ। ନଗଣ୍ୟ ସ୍ୱାର୍ଥ ପାଇଁ ଅନ୍ୟ ବିରୁଦ୍ଧରେ ହାତ ଟେକି ସେମାନେ ନିଜକୁ ବଡ଼ ଭାବନ୍ତି। ଦାମା ପନ୍ତଙ୍କର ଜଣେ ନିମ୍ନ ପଦସ୍ଥ କର୍ମଚାରୀ (ନାଏବ ସୁବେଦାର) ତାଙ୍କ ପ୍ରତି ଈର୍ଷାଭାବ ରଖୁଥାଏ। ଏହି ସୁଯୋଗରେ ସେ

ବାଦଶାହଙ୍କ ନିକଟରେ ଦାମା ପନ୍ତଙ୍କ ବିରୁଦ୍ଧରେ ଅଭିଯୋଗ କଲା । ସେ ଭାବୁଥାଏ— "ଏହା ଏକ ସ୍ୱର୍ଣ୍ଣିମ ଅବସର । କୌଣସି ପ୍ରକାରେ ମିଛଖଚ କହି ଯ୍ୟାକୁ ପଦଚ୍ୟୁତ କରିଦେଲେ, ମୁଁ ହୋଇଯିବି ମୁଖ୍ୟ ପ୍ରଶାସକ ।" ସେ ବାଦଶାହଙ୍କ ନିକଟକୁ ପତ୍ର ଲେଖିଲା ଯେ "ଏ ଦାମା ପନ୍ତ ବଡ଼ ଆତ୍ମଗର୍ବୀ । ନିଜର କୀର୍ତ୍ତି ବିସ୍ତାର କରିବା ପାଇଁ ରାଜ୍ୟର ସମସ୍ତ ଅନ୍ନଭଣ୍ଡାର ଖାଲି କରି କାଙ୍ଗାଳ ଲୋକଙ୍କୁ ବାଣ୍ଟିଦେଲା । ଲୋକଙ୍କ ଆଗରେ ଭଲପଣିଆ ଦେଖାଇ ଆଜି ଏ କାହାରିକୁ ମାନୁ ନାହିଁ । ଆପଣଙ୍କ ଭଳି ଦୟାଳୁ ପ୍ରଜାବତ୍ସଳ ବାଦଶାହଙ୍କୁ ବେଖାତିର କରୁଛି । ମୁଁ ପଗ୍ଚରିବାରୁ କହୁଛି, ସେ ବାଦଶାହ କିଏ? ମୁଁ ଏ ରାଜ୍ୟର ସର୍ବେସର୍ବା । ମୋ ଇଚ୍ଛା, ମୁଁ ଯାହା କରି ପାରିବି । ଯା' ବାଦଶାହକୁ କହିବୁ, ସେ ମୋର କ'ଣ କରିବ?"

ଏହିପରି ଲେଖି ସେ ବାଦଶାହଙ୍କ ମନରେ ଦାମା ପନ୍ତଙ୍କ ପ୍ରତି ବିଦ୍ୱେଷ ସୃଷ୍ଟି କରିଦେଲା । ରାଜା ଗୋଜା । ଥରେ ଯାହା ତାଙ୍କ ମୁଣ୍ଡକୁ ପଶିଯାଏ, ତାହା ଆଉ ସହଜରେ ବାହାରେ ନାହିଁ । ତା' ଛଡ଼ା କୌଣସି କୌଣସି ରାଜାଙ୍କ ପାଖରେ ଏଭଳି ଜଣେ ଜଣେ ସ୍ୱାର୍ଥପର ଲୋକ ଥାଆନ୍ତି, ଯେ କି ନିଜ ସ୍ୱାର୍ଥ ସାଧନ ପାଇଁ ଅକାରଣେ ଅନ୍ୟର ଅନିଷ୍ଟ ତ ପାଞ୍ଚନ୍ତି, ଏପରି କି ତିଳକୁ ତାଳ କରି କହି ରାଜାଙ୍କ କ୍ରୋଧକୁ ବହୁଗୁଣିତ କରି ଦିଅନ୍ତି । ରାମଚନ୍ଦ୍ରଙ୍କ ଶାସନ ହୋଇନି ଯେ ରାଜା ନିଜେ ଯାଇ ପ୍ରଜାଙ୍କ ସୁଖ-ଦୁଃଖ ନିରୀକ୍ଷଣ କରିବେ ଓ ସତ୍ୟାସତ୍ୟ ଜାଣିବେ ।

ବାଦଶାହ ନାଏବ ସୁବେଦାରଙ୍କ ପତ୍ରକୁ ବିଶ୍ୱାସ କଲେ । ତାଙ୍କ ଆଖି କ୍ରୋଧରେ ଲାଲ ହୋଇଗଲା । ଏଭଳି ଅପମାନଜନକ ଶବ୍ଦ ପଢ଼ି ତାଙ୍କ ମୁଣ୍ଡକୁ ରାଗ ଚଢ଼ିଗଲା । ସେ ହଠାତ୍ ସେନାପତିକୁ ଆଦେଶ ଦେଲେ—"ସେନାପତି! ହଜାରେ ସୈନିକଙ୍କୁ ଧରି ଯାଅ । ଯେମିତି ହେଲେ ବି ଦାମା ପନ୍ତକୁ ବନ୍ଦୀ କରି ମୋ ପାଖରେ ହାଜର କର ।"

ସେ ଏହି ଆଶଙ୍କାରେ ସୈନ୍ୟ ପଠାଇଥିଲେ ଯେ ଦାମା ପନ୍ତ କାଙ୍ଗାଳ ଲୋକଙ୍କୁ ଖାଦ୍ୟଶସ୍ୟ ବିତରିତ କରି ସମ୍ଭବତଃ ହାତରେ ରଖିଥିବେ । ସେମାନେ ଦାମା ପନ୍ତଙ୍କର ପକ୍ଷ ନେଇ ବିଦ୍ରୋହ କରି ପାରନ୍ତି । ତେଣୁ ସୈନ୍ୟ ସେମାନଙ୍କୁ ଦମନ କରି ପାରିବେ । ଦଳବଳଙ୍କୁ ସଙ୍ଗରେ ଧରି ସେନାପତି ମଙ୍ଗଳବେଢ଼ାରେ ପହଞ୍ଚିଲେ । ସୈନିକଙ୍କୁ ଦେଖି ଗାଁ ଲୋକେ ବରଢ଼ାପତ୍ର ଭଳି ଥରୁଥାନ୍ତି । କିଏ କଣ ଦୋଷ କରିଛି? ବାଦଶାହଙ୍କ ସେନାପତି ଆଜି ଆମ ଗାଁକୁ କାହିଁକି ଆସିଛନ୍ତି? ଏବେ କ'ଣ କରିବା? ଏହିଭଳି ସମସ୍ତେ କୁହାକୁହି ହେଉଥାନ୍ତି ।

ସେନାପତି ଦାମା ପନ୍ତଙ୍କ ଦାଣ୍ଡଦୁଆରେ ପାଟି କରି ଡାକ ଛାଡ଼ିଲା। କୋଳାହଳରେ ଚଉଦିଗ କମ୍ପୁଥାଏ। ସୈନିକମାନେ "ମାର, ଧର, ଟାଣିଆଣ, ବାନ୍ଧି ନେଇଯାଅ" ଇତ୍ୟାଦି ନାନା ପ୍ରକାର କଥା କହୁଥାନ୍ତି। ସେତେବେଳେ ଦାମା ପନ୍ତ ପ୍ରଭୁ ପାଣ୍ଡୁରଙ୍ଗଙ୍କ ପୂଜାରେ ନିମଗ୍ନ। ବାହ୍ୟ ଜ୍ଞାନ ନ ଥାଏ। ମହାବାହୁଙ୍କ ବରଦହସ୍ତର ଆଶ୍ରିତ ଭକ୍ତର ଚିନ୍ତା କଣ? ସବୁ ତାଙ୍କରି ହାତରେ ସମର୍ପି ଦେଇ ସେ ତାଙ୍କ ଚରଣରେ ଲୟ ଲଗାଇଥାନ୍ତି। ଦାଣ୍ଡ ଦୁଆରେ କୋଳାହଳ ଶୁଣି ଦାମା ପନ୍ତଙ୍କ ପତ୍ନୀ ବାହାରକୁ ଆସି ସେମାନଙ୍କୁ ଆଶ୍ୱସ୍ତ କଲେ। ସେ ନିର୍ଭୀକ ଭାବରେ କହିଲେ—"ଥୟ ଧର। ସେ ଠାକୁରଙ୍କ ପୂଜାରେ ବସିଛନ୍ତି। ପୂଜା ସରିଲେ ଆପେ ଆପେ ଆସିବେ। ତାଙ୍କ ନିତ୍ୟକର୍ମ ନ ସରିବାଯାଏ ତୁମେମାନେ ଶତ ଚେଷ୍ଟା କଲେ ମଧ୍ୟ ମୁଁ ତୁମକୁ ଭିତରକୁ ଛାଡ଼ିବି ନାହିଁ। ତୁମେମାନେ ଏଇଠି ଅପେକ୍ଷା କର।"

ସତୀ ନାରୀର ବାଣୀରେ କି ଅଦ୍ଭୁତ ଶକ୍ତି ଥିଲା କେଜାଣି! ଏତେ ଉତ୍ତେଜିତ ସ୍ୱରରେ ଚିତ୍କାର କରୁଥିବା ସେନାପତି ମଧ୍ୟ ତାଙ୍କ ସତୀତ୍ୱ ଶକ୍ତି ଆଗରେ ଅଭିଭୂତ ହୋଇଗଲା। ତା'ର ଗର୍ବ ଓ କ୍ରୋଧ ହଠାତ୍ ଶାନ୍ତ ହୋଇଗଲା। ସେ ନୀରବରେ ଦାଣ୍ଡ ଦୁଆରେ ଅପେକ୍ଷା କଲା।

ଦାମା ପନ୍ତ ପୂଜା ସାରି ଉଠିଲେ। ସ୍ତ୍ରୀ ତାଙ୍କୁ ସେନାପତିଙ୍କ ଆସିବା ବୃତ୍ତାନ୍ତ ଶୁଣାଇଲେ। ଭକ୍ତ ଦାମା ଜାଣିଗଲେ ଯେ ଖଳ ଲୋକଙ୍କ ପ୍ରବଞ୍ଚନାରେ ପଡ଼ି ବାଦଶାହ କ୍ରୋଧ ଜର୍ଜରିତ ହୋଇଯାଇଛନ୍ତି। ଦୁର୍ଭିକ୍ଷ ପୀଡ଼ିତ ପ୍ରଜାଙ୍କୁ ଅନ୍ନ ବାଣ୍ଟିବାର ଖବର ପାଇ ସେ ମୋତେ ବାନ୍ଧି ନେବାକୁ ସୈନିକ ପଠାଇଛନ୍ତି। ତଥାପି ତାଙ୍କ ମନରେ ତିଳେମାତ୍ର ଭୟ ନ ଥାଏ। ଠାକୁରଙ୍କ ଖେଳ ଭାବି ମନେ ମନେ ସେ ଆନନ୍ଦିତ ହେଉଥାନ୍ତି। ସେ ପତ୍ନୀକୁ ଆଶ୍ୱାସନା ଦେଇ କହିଲେ— "ପ୍ରିୟେ! ଚିନ୍ତା କର ନାହିଁ। ଭଗବାନ ନିଶ୍ଚୟ ମଙ୍ଗଳ କରିବେ। ମୁଁ ମୋର କର୍ତ୍ତବ୍ୟ ପାଳନ କରିଛି। ପୂର୍ବରୁ ମୁଁ ଜାଣିଥିଲି ଯେ ଏ କର୍ମରେ କ୍ରୁଦ୍ଧ ହୋଇ ବାଦଶାହ ନିଶ୍ଚୟ କଠୋର ଦଣ୍ଡ ଦେବେ। କିନ୍ତୁ ଦଣ୍ଡଭୟରେ ମୁଁ କଣ ପ୍ରଜାଙ୍କର ଅନାହାରଜନିତ ମୃତ୍ୟୁକୁ ନୀରବରେ ଦେଖି ପାରିଥାନ୍ତି? ଦୟାମୟ ପାଣ୍ଡୁରଙ୍ଗଙ୍କର ପ୍ରତ୍ୟେକ ବିଧାନ ମଙ୍ଗଳମୟ। ପ୍ରଭୁ ଯଦି ଏଇଥିରେ ଖୁସୀ, ଆମେ ଦୁଃଖ କରିବା କାହିଁକି? ତାଙ୍କ ପ୍ରସନ୍ନତାଠାରୁ ବଳି ସଂସାରରେ ଆଉ ବଡ଼ କଥା କ'ଣ ଅଛି?"

ପତ୍ନୀକୁ ସାନ୍ତ୍ୱନା ଦେଇ ଦାମା ପନ୍ତ ବାହାରକୁ ଆସିଲେ । ଆସି ଦେଖନ୍ତି ତ ସୈନ୍ୟ ସାମନ୍ତ ଧରି ସେନାପତି ଦାଣ୍ଡ ଦୁଆରେ ଛିଡ଼ା ହୋଇଛନ୍ତି । ଭକ୍ତଙ୍କ ଭକ୍ତି-ରସ-ପ୍ଲାବିତ ହୃଦୟ, ସୌମ୍ୟ ମୁଖାକୃତି ଓ କୋମଳ ବ୍ୟବହାରରେ ସେନାପତିଙ୍କ କ୍ରୋଧ ଜଳନ୍ତା ନିଆଁରେ ପାଣି ପଡ଼ିଲା ପରି ଶାନ୍ତ ହୋଇଗଲା । ଭକ୍ତଙ୍କ ପକ୍ଷେ ଏହା କ'ଣ ବା ବିଚିତ୍ର! ପ୍ରଭୁଙ୍କ ସହ ଭକ୍ତର ଆତ୍ମୀୟ ସମ୍ବନ୍ଧ ଥିବାରୁ ସେ ପ୍ରଭୁଙ୍କ ସାଧର୍ମ୍ୟ ଲାଭ କରିଥାଏ । ଭଗବାନଙ୍କୁ ଦର୍ଶନ କରି ଦୁଷ୍ଟମାନେ ମଧ୍ୟ ଯେପରି ଭଗବାନଙ୍କ କୋମଳ ସ୍ୱଭାବ ଓ ରୂପ ଛଟାରେ ମୋହିତ ହୋଇଯାଆନ୍ତି, ଠିକ୍ ସେହିପରି ଭକ୍ତଙ୍କ ଦର୍ଶନରେ ଅତ୍ୟନ୍ତ ପାପିଷ୍ଠ ଓ କ୍ରୂର ବ୍ୟକ୍ତି ଜୀବନରେ ମଧ୍ୟ ବିରାଟ ପରିବର୍ତ୍ତନ ଆସିଥାଏ । ଭାଗବତରେ କୁହାଯାଇଛି, ସୂର୍ଯ୍ୟଦେବଙ୍କ ଆଗମନରେ ରାତ୍ରିର ଘନ ଅନ୍ଧକାର ଉଭେଇଯିବା ପରି ଭକ୍ତଙ୍କ ଦର୍ଶନରେ ଭବବନ୍ଧନ କଟିଯାଏ—

ସାଧୂନାଂ ସମଚିତ୍ତାନାଂ ସୁତରାଂ ମତ୍କୃତାତ୍ମନାମ୍ ।
ଦର୍ଶନାନ୍ନୋ ଭବେଦ୍‌ବନ୍ଧଃ ପୁଂସୋଽକ୍ଷ୍ଣୋ ସବିତୁର୍ଯଥା ॥

ପୁଣି କ୍ରୋଧ ଶାନ୍ତ ହୋଇଯିବା କେଉଁ ବଡ଼ କଥା ଅବା! ସେନାପତି ଯୋଡ଼ହସ୍ତ ହୋଇ ଅତ୍ୟନ୍ତ ବିନମ୍ରଭାବରେ କହିଲା—"ବାଦଶାହ ଆପଣଙ୍କୁ ଡକାଇ ପଠାଇଛନ୍ତି । ଆପଣ ଆମ ସଙ୍ଗରେ ଚାଲନ୍ତୁ ।" ଦାମା ପନ୍ତ କହିଲେ—"ଟିକିଏ ଅପେକ୍ଷା କର, ମୁଁ ଘରେ କହିଦେଇ ଆସୁଛି ।"

ସେ ଘରକୁ ଯାଇ ସ୍ତ୍ରୀକୁ ସମସ୍ତ ବୃତ୍ତାନ୍ତ ଶୁଣାଇଲେ । ଏଭଳି ଅପ୍ରୀତିକର ସମାଚାର ପାଇ ମଧ୍ୟ ସ୍ତ୍ରୀଙ୍କ ମନରେ କ୍ଷୋଭ ଜାତ ହୋଇ ନ ଥିଲା । ଏ ବିଷମ ସଂକଟରେ ମଧ୍ୟ ସେ ଦୟାମୟଙ୍କ ଅପାର କରୁଣା ଅନୁଭବ କଲେ । ଅତ୍ୟନ୍ତ ଧୈର୍ଯ୍ୟର ସହ କହିଲେ—"ପ୍ରାଣନାଥ! ଆମେ ପ୍ରଭୁ ପଣ୍ଢରିନାଥଙ୍କ ଚରଣାଶ୍ରିତ । ସେ ଯାହା ବି କରିବେ, ସେଥିରେ ଆମର ମଙ୍ଗଳ ନିହିତ । ସେ ପରମ ଦୟାଳୁ । ତୁମ ମନୋଭାବ ଜାଣିପାରି ଏବେ ତୁମକୁ ସାଂସାରିକ ଜଞ୍ଜାଳଜାଲରୁ ମୁକ୍ତ କରିଦେଲେ । ଏ ଘଟଣା ଛଳରେ ପ୍ରଭୁ ତୁମକୁ ଏକାନ୍ତବାସର ସୁବର୍ଣ୍ଣ ସୁଯୋଗ ପ୍ରଦାନ କରିଛନ୍ତି । ଭଲ ହେଲା, ଏବେ ତୁମେ କେବଳ ତାଙ୍କ ପାଦପଦ୍ମରେ ମନପ୍ରାଣ ଢାଳିଦିଅ । ଆମ ପାଇଁ ଏହା ସଂକଟ ନୁହେଁ, ବରଂ ପ୍ରଭୁଙ୍କ ଭକ୍ତବତ୍ସଳତାର ସଂକେତ । ତାଙ୍କୁ ପାସୋରିଯିବା ହିଁ ଘୋର ବିପତ୍ତି । ପ୍ରଭୁଙ୍କ ସ୍ମୃତି ତୁଳନାରେ ଏ ସାଂସାରିକ ପ୍ରତିକୂଳ ପରିସ୍ଥିତିର ମହତ୍ତ୍ୱ ବା କ'ଣ? ସ୍ୱାର୍ଥ ପାଇଁ ତ ସଂସାରରେ

ସବୁ ଲୋକ ଦୁଃଖ ସହୁଛନ୍ତି । କିନ୍ତୁ ଏହା ସେମାନଙ୍କର କେଉଁ ମହତପଣିଆ ଅବା? ପରହିତ କରି ଯଦି ଆମେ ଦଣ୍ଡ ପାଇବା, ତାହା ଆମ ପାଇଁ ଆନନ୍ଦର ବିଷୟ । ଏଭଳି ଦଣ୍ଡ କେତେ ଜଣକୁ ବା ମିଳେ? ସେହି ଦୟାମୟ ଯାହାକୁ ଆପଣାର କରି ନିଅନ୍ତି, ତା'ର ଭକ୍ତିରୂପୀ ବୃକ୍ଷର ମୂଳକୁ ସୁଦୃଢ଼ କରିବା ନିମନ୍ତେ ଏଭଳି ଲୀଳା କରନ୍ତି । କିନ୍ତୁ ସ୍ୱାମୀ! ମୋ ମନରେ କେବଳ ଏତିକି ଦୁଃଖ ଯେ ଏ ଦାସୀ ତୁମ ଚରଣସେବାରୁ ବଞ୍ଚିତ ରହିବ ।''

ଜଣେ ପତିବ୍ରତା ଓ ଭଗବତ୍‌ପରାୟଣା ନାରୀ ମୁଖରୁ ଏଭଳି ଧର୍ମଯୁକ୍ତ ବଚନ ବାହାରିବା କିଛି ବଡ଼ କଥା ନୁହେଁ । ସେ ସହଧର୍ମିଣୀ । ସ୍ୱାମୀଙ୍କର କର୍ତ୍ତବ୍ୟରୂପୀ ଧର୍ମରେ ତା'ର ମଧ୍ୟ ଅଧିକାର ଅଛି । ସ୍ୱାମୀ ଯଦି କାରାଦଣ୍ଡକୁ ଭଗବତ୍ ବିଧାନ ମନେକରି ସହର୍ଷ ଅଙ୍ଗୀକାର କରିବାକୁ ପ୍ରସ୍ତୁତ, ତେବେ ସ୍ତ୍ରୀ ସେହି ବିଧାନକୁ କାହିଁକି ଅବମାନନା କରି ଆଖିରୁ ଲୁହ ଗଡ଼ାଇବ । ତା' ପାଇଁ ଏହା ପରମ ତପସ୍ୟା । ସ୍ୱାମୀ କାରାଗାରରେ ଦିନ କାଟିଲେ ସେ ଏଇଠି ଗୃହରେ ରହି ସ୍ୱାମୀଙ୍କ ବିରହରେ ବନ୍ଦୀରୂପେ ଦିନ କାଟିବ । ସ୍ୱାମୀଙ୍କ ସୁଖରେ ଯେ ସୁଖୀ ହୋଇଛି, ସେ ଆଜି ସ୍ୱାମୀଙ୍କ ଦୁଃଖରେ ମଧ୍ୟ ସହଭାଗୀ ହେବ । ଏହା ହିଁ ପତିବ୍ରତା ଧର୍ମ । ଏହି ଧର୍ମ ହିଁ ନାରୀକୁ ବନ୍ଦନୀୟା ଓ ପୂଜନୀୟା କରିଥାଏ ।

ପତ୍ନୀଠାରୁ ବିଦାୟ ମାଗି ଦାମା ପନ୍ତ ଘରୁ ବାହାରି ଆସିଲେ । ସେନାପତିଙ୍କ ଆଦେଶରେ ତାଙ୍କ ହାତରେ ହାତକଡ଼ି ପକାଗଲା । ତାଙ୍କ ମନରେ କିନ୍ତୁ ବନ୍ଦୀ ହେବାର ଦୁଃଖ ନ ଥିଲା କି ପଦଚ୍ୟୁତ ହେବାର ଚିନ୍ତା ନ ଥିଲା । ହୁଅନ୍ତା ବି କେମିତି? ସେ ତ ମାନ-ଅପମାନ ଓ ନିନ୍ଦା-ପ୍ରଶଂସାରୁ ଊର୍ଦ୍ଧ୍ୱକୁ ଚାଲିଯାଇଥିଲେ । ତାଙ୍କର ନିଜର ତଥାକଥିତ ଶରୀର ପ୍ରତି ଲେଶମାତ୍ର ମମତ୍ୱ ନ ଥିଲା । ସେ ସର୍ବସ୍ୱ ପ୍ରଭୁଙ୍କ ଚରଣରେ ସମର୍ପଣ କରିଦେଇଥିଲେ । ନିଜ ଅନ୍ତରାତ୍ମାରେ ବିରାଜିତ ପ୍ରଭୁଙ୍କ ପ୍ରେରଣାରେ ସେ ଲୋକମାନଙ୍କର ଦୁଃଖ ଦୂର କରିବାକୁ ନିଜର ପୂର୍ଣ୍ଣ ସାମର୍ଥ୍ୟ ପ୍ରୟୋଗ କରି ଦେଇଛନ୍ତି । ତେଣିକି ପ୍ରଭୁଙ୍କ ଇଚ୍ଛା । ଅପମାନ ମିଳିଲେ ପ୍ରଭୁଙ୍କର, ସମ୍ମାନ ମିଳିଲେ ମଧ୍ୟ ପ୍ରଭୁଙ୍କର । ତାଙ୍କ ପଦାରବିନ୍ଦରେ ମନପ୍ରାଣ ଢାଳିଦେଇ ସେ ହୋଇଯାଇଥିଲେ ପ୍ରଭୁଙ୍କ ହାତର କ୍ରୀଡ଼ନକ । ପ୍ରଭୁଙ୍କ ନାମ ସ୍ମରଣ କରି ସେ ଚାଲିଲେ ସେନାପତିଙ୍କ ସଙ୍ଗରେ ।

ଗୋବଲକୁଣ୍ଡା ଯିବା ରାସ୍ତାରେ ପଣ୍ଢରପୁର ପଡ଼େ । ସେ ବାଟ ଦେଇ ଚାଲାବେଳେ ଦାମା ପନ୍ତଙ୍କ ମନ ପ୍ରଭୁ ପଣ୍ଢରିନାଥଙ୍କ ଦର୍ଶନ ପାଇଁ ବ୍ୟାକୁଳ ହୋଇ

ଉଠିଲା। ସେ ମନେ ମନେ ଜଣାଉଥାନ୍ତି—'ହେ ଦୟାନିଧି! ଏ ଅଧମକୁ କଣ ତୁମର ଶେଷ ଦର୍ଶନ ମିଳିବ ନାହିଁ? ମୋ ଜୀବନର ଅଭିଳାଷ କଣ ମନରେ ରହିଯିବ ପ୍ରଭୁ? କିଏ ଜାଣେ, ଏ ଜୀବନରେ ତୁମକୁ ଆଉ ଦେଖି ପାରିବି କି ନ ପାରିବି?'' ସେ ସେନାପତି ଆଗରେ ନିଜ ଇଷ୍ଟଦର୍ଶନର ଇଚ୍ଛା ବ୍ୟକ୍ତ କଲେ। କିନ୍ତୁ ସେନାପତି ତ ବାଦଶାହଙ୍କର ଆଦେଶପାଳକ। ଅଭିଯୁକ୍ତ ଆସାମୀକୁ ଛାଡ଼ିଦେବେ କିପରି? ନିଜେ ତ ହିନ୍ଦୁ ମନ୍ଦିରକୁ ଯିବେ ନାହିଁ; ତା'ଛଡ଼ା ଆସାମୀ ଯଦି ଏଇ ବାହାନାରେ କେଉଁଆଡ଼େ ଖସି ଚ୍ଯାଲିଯିବ, ତେବେ ବାଦଶାହ ସେନାପତିକୁ ନିଶ୍ଚୟ ଦଣ୍ଡ ଦେବେ। ତେଣୁ ସେନାପତି ଦାମା ପନ୍ତଙ୍କ ଅନୁରୋଧ ଅଗ୍ରାହ୍ୟ କରିଦେଲେ। କିନ୍ତୁ ପ୍ରଭୁ ଯଦି ନିଜେ ଦର୍ଶନ ଦେବାକୁ ଚାହୁଁଥିବେ, ତାଙ୍କ ଇଚ୍ଛାକୁ କିଏ ଟାଳି ପାରିବ? ଦାମା ପନ୍ତ ବିନୟ ହୋଇ ସେନାପତିକୁ ପୁଣି ଥରେ ଅନୁରୋଧ କଲେ ଏବଂ ଧର୍ମକୁ ସାକ୍ଷୀ ରଖି ଶପଥ କଲେ ଯେ ସେ ଠାକୁରଙ୍କୁ ଦର୍ଶନ କରିସାରି ନିଶ୍ଚୟ ତାଙ୍କ ପାଖକୁ ଫେରି ଆସିବେ। ସେନାପତିଙ୍କ ମନ ପରିବର୍ତ୍ତନ ହୋଇଗଲା। ସେ ଦାମା ପନ୍ତଙ୍କୁ ଶୀଘ୍ର ଫେରି ଆସିବାକୁ ତାଗିଦ୍ କରି ଛାଡ଼ିଦେଲେ।

ଦାମା ପନ୍ତଙ୍କ ଆନନ୍ଦର ସୀମା ନ ଥାଏ। ପ୍ରଭୁଙ୍କ ଦର୍ଶନ ଲାଳସାରେ ସେ ବେଗ ବେଗ ହୋଇ ଚାଲିଲେ ମନ୍ଦିର ଆଡ଼କୁ। ମନ ମଧ୍ୟରେ ଉଦ୍‌ବେଳିତ ହେଉଥାଏ ଭଗବତ୍‌ପ୍ରେମର ଉଚ୍ଛ୍ୱସିତ ତରଙ୍ଗ। ମନ୍ଦିର ଭିତରେ କଳା ଶ୍ରୀଅଙ୍ଗକୁ ଚାହିଁଦେବା ମାତ୍ରେ ସେ ନିଜର ଦେହଜ୍ଞାନ ହରାଇ ବସିଲେ। ଅପଲକ ନୟନରେ ନିଜ ପ୍ରାଣବଲ୍ଲଭଙ୍କୁ ଦର୍ଶନ କରି କେଉଁ ଶବ୍ଦରେ ସେ ସ୍ତୁତି କରିବେ, ଭାବି ପାରିଲେ ନାହିଁ। ତନୁ ପୁଲକିତ ହୋଇଗଲା। ପଣସ କଣ୍ଟା ପରି ଶରୀରର ରୋମରାଜି ଟାଙ୍କୁରି ଉଠିଲା। ନେତ୍ର ଯୁଗଳରୁ ବହି ଚାଲିଲା ଅବିରତ ଅଶ୍ରୁଧାରା। ମନେ ହେଉଥାଏ ସତେ ଯେପରି ସେ ଆଜି ପ୍ରଭୁଙ୍କୁ ନିଜ ମଧ୍ୟରେ ସମାହିତ କରିନେବେ। ତାଙ୍କର ଚିର ଆକାଂକ୍ଷା ଆଜି ପୂର୍ଣ୍ଣ ହୋଇଛି। ସେତେବେଳେ ତାଙ୍କ ମୁଖରୁ କେବଳ ଏଇ ଗୋଟିଏ କଥା ବାହାରୁଥାଏ—''ହେ ଦୟାମୟ! ତୁମ ଇଚ୍ଛା ପୂର୍ଣ୍ଣ ହେଉ। ତୁମେ ଯଦି ମୋତେ ଦଣ୍ଡ ଦେଇ ଖୁସୀ ହେବ, ମୁଁ ଆଦୌ ଦୁଃଖ କରିବି ନାହିଁ। ଏହା ମୋ ପାଇଁ ହେବ ତୁମ କରୁଣାର ନିଦର୍ଶନ।''

ଏଣେ ଅଧିକ ବିଳମ୍ବ ହେବାରୁ ସେନାପତି ଆସାମୀ ଖସିଯିବା ଆଶଙ୍କା କରି ବ୍ୟସ୍ତ ହେଉଥାନ୍ତି। ଅସ୍ଥିରତାରେ ସିଂହଦ୍ୱାର ସମ୍ମୁଖରେ ଏପଟ ସେପଟ ହେଉଥାନ୍ତି

ଏବଂ ବାରମ୍ବାର ମନ୍ଦିର ଭିତରକୁ ଟେକି ହୋଇ ଚ୍ୱହୁଁଥାନ୍ତି ଓ ଡାକ ପକାଉଥାନ୍ତି । କିନ୍ତୁ ତେଣେ ଦାମା ପନ୍ତ ଠାକୁରଙ୍କ ସଙ୍ଗେ ଅନ୍ତରଙ୍ଗ ଆଳାପ କରୁ କରୁ ବାହ୍ୟ ଜଗତକୁ ଭୁଲିଯାଇଛନ୍ତି । ସେନାପତି ଯେ ଅପେକ୍ଷା କରିଛି, ଏ କଥା ତାଙ୍କର ଆଦୌ ମନେ ନାହିଁ । ଚ୍ୱରି ଚକ୍ଷୁର ମିଳନ ଘଟିଛି । କଣ୍ଠ ବାଷ୍ପରୁଦ୍ଧ । ଓଷ୍ଠ ପ୍ରକମ୍ପିତ । କେବଳ ଚକ୍ଷୁଯୁଗଳରୁ ପ୍ରବାହିତ ଦୁଇଟି ବେଗଗାମୀ ସଜଳ ସ୍ରୋତ ବ୍ୟକ୍ତ କରୁଛି ଅନ୍ତରର ଭାଷା । ସମସ୍ତ ଇନ୍ଦ୍ରିୟ ନିଷ୍କ୍ରିୟ ଓ ନିସ୍ତବ୍ଧ । ପ୍ରଭୁଙ୍କ ମନମୋହନ ରୂପ ଦର୍ଶନରେ ପଲକପାତର ଅନ୍ତରାୟ ମଧ୍ୟ ଅସହ୍ୟ ହେଉଛି । କିଛି କ୍ଷଣ ମଧ୍ୟରେ ତାଙ୍କର ବାହ୍ୟ ଚେତନା ଫେରିଲା । ସେ ଭାବିଲେ, ଆରେ! ମୁଁ ତ ସେନାପତିଙ୍କୁ ସିଂହଦ୍ୱାରରେ ଠିଆ କରାଇଦେଇ ଆସିଛି । ତାଙ୍କୁ ସତ୍ୟ ବାକ୍ୟ ଦେଇ ଆସିଛି । ସେ ବିଚରା ଅଯଥା ବ୍ୟସ୍ତ ଓ ଚିନ୍ତିତ ହେଉଥିବେ । ଏହା ଭାବି ସେ ଭଗବାନଙ୍କ ପାଦପଦ୍ମରେ ପୁନଃ ପୁନଃ ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ ଜନମନମୋହିନୀ ଦିବ୍ୟ ମୂର୍ତ୍ତିକୁ ହୃଦୟ ସିଂହାସନରେ ବିରାଜମାନ କରାଇ ପ୍ରଭୁଙ୍କ ଠାରୁ ବିଦାୟ ମାଗି ମନ୍ଦିରରୁ ବାହାରିଲେ । ସେନାପତି ତାଙ୍କୁ ଦେଖି ଆଶ୍ୱସ୍ତ ହେଲେ ଏବଂ ତାଙ୍କ ସତ୍ୟବାଦିତାକୁ ମନେ ମନେ ପ୍ରଶଂସା କଲେ । ଏଥର ଦାମା ପନ୍ତ ଚ୍ୱଲିଲେ ସେନାପତିଙ୍କ ସଙ୍ଗରେ ।

ତେଣେ ବାଦଶାହଙ୍କ ଦରବାର ଚ୍ୱଲିଥାଏ । ସମସ୍ତ ସଭାସଦଙ୍କ ସମେତ ବାଦଶାହ ଦାମା ପନ୍ତଙ୍କ ବାଟ ଚ୍ୱହିଁ ବସିଥାନ୍ତି । ବିଳମ୍ବ ହେବାରୁ ତାଙ୍କ କ୍ରୋଧ କ୍ଷଣକୁ କ୍ଷଣ ବଢ଼ି ଚ୍ୱଲିଥାଏ । ସତେ ଯେପରି ନାଗ ସାପ ଲାଙ୍ଗୁଡ଼ରେ କିଏ ହାତ ମାରି ଦେଇଛି । ସମସ୍ତେ ପ୍ରତୀକ୍ଷାରତ । ଠିକ୍ ସେତିକିବେଳେ ଗୋଟିଏ ବାର ତେର ବର୍ଷର ପିଲା ଆସିଲା । ଶ୍ୟାମଳ ରଙ୍ଗ । କିଶୋର ବୟସ । ଗାଉଁଲିଆ ଢଙ୍ଗ । ହାତରେ ବାଡ଼ିଟାଏ ଧରିଛି । କାନ୍ଧରେ ପକାଇଛି ଗୋଟିଏ କଳା କମ୍ବଳ । ମନରେ ଟିକିଏ ବି ଭୟ ନାହିଁ । ପିଲାଟି ଦ୍ୱାରରକ୍ଷକକୁ ଅନୁରୋଧ କରି କହିଲା—"ଦୟା କରି ମୋତେ ବାଦଶାହଙ୍କ ପାଖକୁ ଯିବାକୁ ଅନୁମତି ଦିଅନ୍ତୁ । କିଛି ଜରୁରୀ କାର୍ଯ୍ୟରେ ମୋତେ ଏଠାକୁ ପଠାଯାଇଛି ।" ଦ୍ୱାରରକ୍ଷକ ଏଭଳି ଅଦ୍ଭୁତ ପିଲାଟିର ଆଗମନ କଥା ବାଦଶାହଙ୍କୁ ଜଣାଇଲା । ବାଦଶାହ ପ୍ରଥମେ ଭାବିଲେ, ଏତେ ଛୋଟ ପିଲାର ଦରବାରରେ କି କାମ? ତଥାପି ପିଲାଟିର ନିର୍ଭୀକତାକୁ ଅନୁମାନ କରି ସେ ପ୍ରବେଶ ଅନୁମତି ଦେଇଦେଲେ । ପିଲାଟି ସିଧା ଚ୍ୱଲିଲା ବାଦଶାହଙ୍କ ନିକଟକୁ । କହିଲା—"ସଲାମ ବାଦଶାହ! ମୁଁ ମଙ୍ଗଳବେଢ଼ାର ଦାମା ପନ୍ତଙ୍କ

ଆଦେଶରେ ଆପଣଙ୍କ ଦରବାରରେ ଉପସ୍ଥିତ ହୋଇଛି ।''

ଦାମା ପନ୍ତଙ୍କ ନାଆଁ ଶୁଣିବା କ୍ଷଣି ଅଗ୍ନିରେ ଘିଅ ଢାଳିବା ପରି ବାଦଶାହ ରାଗରେ ତମତମ ହୋଇ ଉଠିଲେ । କଠୋର ସ୍ୱରରେ ପଚ୍ଚାରିଲେ—''ତୋ ନାଆଁ କ'ଣ?'' ପିଲାଟି ଉତ୍ତର ଦେଲା—''ହଜୁର! ମୋ ନାଆଁ ବିଠୁ । ମୁଁ ଚମାର ପିଲା । ମୋ ମାଲିକ ଦାମା ପନ୍ତ ବଡ଼ ଦୟାଳୁ ଲୋକ । ତାଙ୍କରି ଅନ୍ନରେ ମୁଁ ପ୍ରତିପାଳିତ । ସେ ମୋର ମାଲିକ ।'' ପିଲାଟିର ଅପୂର୍ବ ରୂପମାଧୁରୀ, ବାଲ୍ୟ ଚପଳତା ଓ ହୃଦୟସ୍ପର୍ଶୀ ସୁମଧୁର ବାଣୀ କାହା ମନକୁ ବା ମୋହି ନ ନେବ? ତା ବାଣୀରେ କେଉଁ ମୋହିନୀ ଶକ୍ତି ଥିଲା କେଜାଣି, ବାଦଶାହ ମନ୍ତ୍ରମୁଗ୍ଧ ପରି ସ୍ତବ୍ଧ ହୋଇଗଲେ । କେବଳ ନିର୍ନିମେଷ ନୟନରେ ଚାହିଁ ରହିଲେ ବିଠୁକୁ । ଅଗ୍ନିରେ ଜଳ ସିଞ୍ଚନ ପରି ତାଙ୍କର କ୍ରୋଧ ପ୍ରଶମିତ ହୋଇଗଲା । ଅନ୍ତରରେ ତରଙ୍ଗାୟିତ ହେଲା ବାତ୍ସଲ୍ୟର ଅଥଳ ପାରାବାର । ସେ ଆଉ ନିଜ ଆୟତ୍ତରେ ରହି ପାରିଲେ ନାହିଁ । ସତେ ଅବା ତାଙ୍କର ମନକୁ ଚୋରାଇ ନେଇଛି ବିଠୁ । କିଛି କ୍ଷଣ ପରେ ସେ ଅତି ବାତ୍ସଲ୍ୟପୂର୍ଣ୍ଣ କୋମଳ ସ୍ୱରରେ ପଚ୍ଚାରିଲେ—''ତୁ ଏଠାକୁ ଆସିବାର ଅଭିପ୍ରାୟ କ'ଣ? ତୁ କ'ଣ ଚାହୁଁଛୁ?'' ପିଲାଟି ମୃଦୁ ଭାଷାରେ ଉତ୍ତର ଦେଲା—''ହଜୁର! ଧୃଷ୍ଟତା କ୍ଷମା କରିବେ । ଆପଣଙ୍କ ରାଜ୍ୟରେ ଦୁର୍ଭିକ୍ଷ ପ୍ରପୀଡ଼ିତ ପ୍ରଜାଜନ ଖାଇବାକୁ ନ ପାଇ ହା-ହାକାର କରୁଥିଲେ । ସେମାନଙ୍କର କୌଣସି ସାହା ଭରସା ନ ଥିଲା । ମୋ ସ୍ୱାମୀ ସେମାନଙ୍କର ପ୍ରାଣରକ୍ଷା ଅର୍ଥେ ରାଜ୍ୟର ଶସ୍ୟଭଣ୍ଡାରରୁ ସମସ୍ତ ଶସ୍ୟ ବିତରଣ କରି ଦେଇଥିଲେ । ଆଜି ମୁଁ ସେହି କ୍ଷତି ଭରଣା କରିବାକୁ ଆସିଛି । ଆପଣ ଦୟା କରି ଏ ଧନ ଗ୍ରହଣ କରନ୍ତୁ ଏବଂ ପାଉତିଟିଏ ଦେଇ ମୋତେ ଯିବାକୁ ଅନୁମତି ଦିଅନ୍ତୁ ।''

ବାଦଶାହ ଅବାକ୍ ହୋଇ ପିଲାଟିକୁ ଚାହିଁଥାନ୍ତି । ତାଙ୍କର ବୁଦ୍ଧି ବଦଳିଗଲା । ସେ ନିଜର ମନ୍ଦକୃତ୍ୟ ପାଇଁ ମନେ ମନେ ନିଜକୁ ଧିକ୍କାର କଲେ । ଭାବିଲେ—''ହାୟ! କେଡ଼େ ଦୁଃଖର କଥା । ଖଳ ଲୋକଙ୍କ ପ୍ରବଞ୍ଚନାରେ ପଡ଼ି ମୁଁ ଆଜି ଏଡ଼େ ହୀନ କର୍ମ କଲି । ଦେଶର ଖାଦ୍ୟଶସ୍ୟ ଭଣ୍ଡାର ଦେଶବାସୀଙ୍କ ଉପକାରରେ ହିଁ ତ ଲାଗିଥାନ୍ତା । ମୁଁ ନ ବୁଝି ନ ବିଚାରି ଦାମା ପନ୍ତଙ୍କ ଭଳି ସାଧୁ ପୁରୁଷଙ୍କୁ ଦୁର୍ନୀତି ଅଭିଯୋଗରେ ବନ୍ଦୀ କରି ଆଣିବାକୁ ସୈନ୍ୟ ପଠାଇଦେଲି!'' ପଶ୍ଚାତ୍ତାପ ସହିତ ବିଠୁର ଅଦ୍ଭୁତ ଅନୁପମ ରୂପ କାନ୍ତି ତାଙ୍କ ହୃଦୟରେ ସୃଷ୍ଟି କଲା ଏକ ଅବ୍ୟକ୍ତ ଆଲୋଡ଼ନ ।

ବାଦଶାହଙ୍କ ବ୍ୟାକୁଳତା ଓ ଅନ୍ୟମନସ୍କତା ଲକ୍ଷ୍ୟ କରି ବିଠୁ କାଖରେ ଜାକିଥିବା ଥଳିଟିକୁ କାଢ଼ି ତାଙ୍କ ଆଗରେ ରଖିଦେଲା। କହିଲା—"ହଜୁର! କେଉଁ ଭାବନାରେ ବୁଡ଼ିଗଲେ? ମୋତେ ଶୀଘ୍ର ବିଦାୟ ଦିଅନ୍ତୁ। ବିଳମ୍ବ ହେଉଛି। ମୋ ସ୍ୱାମୀ ମୋର ଫେରିବା ବାଟ ଗ୍ରହିଁ ବସିଥିବେ। ଏ ସୁନା ମୋହର ଗ୍ରହଣ କରି ମୋତେ ଶୀଘ୍ର ପ୍ରାପ୍ତିପତ୍ର ଲେଖି ଦିଅନ୍ତୁ।"

ବାଦଶାହ ନିମିଷକ ପାଇଁ ମଧ୍ୟ ବିଠୁକୁ ନେତ୍ରପଥରୁ ଦୂରେଇ ଦେବାକୁ ଗ୍ରହୁଁ ନ ଥାନ୍ତି। ସେ ଭାବୁଥାନ୍ତି ତା'ର ନୀଳମଣି ସମ ଶ୍ୟାମଳ ରୂପଛଟାକୁ ନେତ୍ରାଞ୍ଜନ କରି ରଖନ୍ତେ? କିନ୍ତୁ କ'ଣ କରିବେ? ସମାଜରେ ଲୋକଲଜ୍ଜା ହେବ। ଲୋକେ କଣ କହିବେ? ବାଦଶାହଙ୍କ ଭଳି ଲୋକ ଗୋଟିଏ ମୋଚି ପିଲା ପ୍ରତି ଆସକ୍ତ ହୋଇଗଲେ! ସେ ବାଧ୍ୟ ହୋଇ ନିଜକୁ ପ୍ରକୃତିସ୍ଥ କରିବାକୁ ଚେଷ୍ଟା କଲେ। କିନ୍ତୁ ସେହି ଶ୍ୟାମଳ ପିଲାଟି ତ ପ୍ରକୃତରେ ମୋଚି ପିଲା ନୁହେଁ, ସେ ତ ସ୍ୱୟଂ ଭୁବନମୋହନ ଶ୍ୟାମସୁନ୍ଦର। ଯିଏ ଥରେ ସେଇ ନଟନାଗର ରସିକଶେଖରଙ୍କ ଅନୁପମ ଠାଣିକୁ ଗ୍ରହିଁଦେଲା, ସେ ଆଉ ପ୍ରକୃତିସ୍ଥ ହେବା କ'ଣ ସମ୍ଭବ? କୌଣସି ପ୍ରକାରେ କୋଷାଧ୍ୟକ୍ଷକୁ ଡାକି ଧନରାଶି ଜମା କରିବାକୁ ଆଜ୍ଞା ଦେଲେ। କୋଷାଧ୍ୟକ୍ଷ ଛୋଟିଆ ଥଳିଟିକୁ ଅଜାଡ଼ି ପକାଇଲା। କିନ୍ତୁ ଥଳିଟି ପୁନଃ ପୂର୍ବ ପରି ଧନରେ ପୂରିଗଲା। ସେ ଯେତେଥର ଖାଲି କରୁଥାଏ, ତାହା ପୁଣି ପୂରି ଯାଉଥାଏ। ଏ ବିଚିତ୍ର ଘଟଣା ଦେଖି ସେ ବିସ୍ମୟରେ ପଡ଼ିଗଲା। ଏମିତି କରି କରି ସେ କ୍ଳାନ୍ତ ହୋଇ ପଡ଼ିଲା। ଭାବିଲା, ଏ ପିଲାଟି ଯାଦୁକର ନୁହେଁ ତ? ଯାହାହେଉ ଶେଷରେ ହିସାବ ଅନୁସାରେ ଧନ ରଖି ପାଉତିଟିଏ କାଟିଦେଲା ଏବଂ ବିଠୁର ମାୟା ପ୍ରହେଳିକାରୁ ତ୍ରାହି ପାଇଲା।

ପାଉତି ଘେନି ବିଠୁ ବାଦଶାହଙ୍କ ନିକଟରେ ପହଞ୍ଚିଲା। ବାଦଶାହ ପାଉତି ଉପରେ ମୋହର ମାରି ଦସ୍ତଖତ କରିଦେଲେ। ବିଠୁ ବାଦଶାହଙ୍କୁ ଅଭିବାଦନ ଜଣାଇ ଆଖି ପିଛୁଳାକେ ଅଦୃଶ୍ୟ ହୋଇଗଲା। ବିଠୁକୁ ଦେଖିବାକୁ ନ ପାଇ ବାଦଶାହ ପାଗଳ ପରି ବିଠୁ! ବିଠୁ!! ଚିତ୍କାର କଲେ। ବିଠୁର ରୂପ, ଗ୍ରଲି, ମୃଦୁ ମଧୁର ବାକ୍ୟକୁ ସ୍ମରଣ କରି କରି ବହୁ ପ୍ରଳାପ କଲେ ଏବଂ ତାଙ୍କର ଚେତା ବୁଡ଼ିଗଲା। ବାରମ୍ବାର ତାଙ୍କ ମୁହଁରୁ ଗୋଟିଏ ଶବ୍ଦ ବାହାରୁଥାଏ—"ବିଠୁ! ବିଠୁ!!" ରାଜକର୍ମଗ୍ରରୀମାନେ ଚେତା ଫେରାଇ ଆଣିବାକୁ ଅନେକ ଚେଷ୍ଟା କଲେ। କିଛି କ୍ଷଣ ପରେ ବାଦଶାହ ଚେତା ଫେରି ପାଇଲେ। ରାଜ୍ୟର ଦେବାନ୍‌କୁ ଡାକି

କହିଲେ, ତୁମେ ଅବିଳମ୍ବେ ଯାଇ ଦାମା ପନ୍ତଙ୍କୁ ବନ୍ଦୀମୁକ୍ତ କର । ସେ ନିରପରାଧ । ତାଙ୍କୁ ସସମ୍ମାନେ ମୋ ନିକଟକୁ ଘେନି ଆସ ।

ଏପଟେ ଭକ୍ତ ଦାମା ପଣ୍ଢରପୁରରୁ ଠାକୁର ଦର୍ଶନ କରି କିଛି ଦୂର ପଥ ଅତିକ୍ରମ କରି ଆସିଥାନ୍ତି । ବହୁ ଦୂର ପଥ ହୋଇଥିବାରୁ ବାଟରେ କୌଣସି ସ୍ଥାନରେ ରାତି ବିତାଇବାକୁ ପଡ଼ିଲା । ପ୍ରଭାତରୁ ଉଠି ସ୍ନାନାଦି ନିତ୍ୟକର୍ମ ସାରି ଗୀତା ପଢ଼ିବାକୁ ସେ ବହି ଖୋଲିଲେ । ହଠାତ୍ ସେଥିରେ ଗୋଟିଏ ପାଉତି ଦେଖିବାକୁ ପାଇଲେ । ସେଥିରେ ଲେଖାଥିଲା—"ଦାମା ପନ୍ତଙ୍କ ଠାରୁ ଆଜି ଅନ୍ନଭଣ୍ଡାରର ସମସ୍ତ କ୍ଷତି ଭରଣା ବାବଦକୁ ଧନରାଶି ପ୍ରାପ୍ତ ହେଲା ।" ସରକାରୀ ମୋହର ସହିତ ବାଦଶାହଙ୍କ ସ୍ୱାକ୍ଷର ରହିଥାଏ ସେଇ ପାଉତି ଉପରେ । ଏ କି ଚମତ୍କାର! ଦାମା ପନ୍ତ ଚକିତ ହୋଇଗଲେ । କିନ୍ତୁ ସେଥିପ୍ରତି ବିଶେଷ ଧ୍ୟାନ ନ ଦେଇ ସେ ପୂଜାପାଠରେ ନିମଗ୍ନ ହୋଇଗଲେ । ପୂଜା ସମାପନ କରି ସେ ପ୍ରଣାମ କଲେ ଠାକୁରଙ୍କୁ । ଠିକ୍ ସେତିକିବେଳେ ଦେବାନ୍ ବାଦଶାହଙ୍କ ଆଦେଶ ଘେନି ପହଞ୍ଚିଲା । ବାଦଶାହଙ୍କ ଆଦେଶ କ୍ରମେ ସେନାପତି ତାଙ୍କୁ ବନ୍ଧନମୁକ୍ତ କରିଦେଲେ । ନାନା ସମ୍ଭାର ସହିତ ପାଲିଙ୍କିରେ ବସାଇ ତାଙ୍କୁ ଘେନିଗଲେ ବାଦଶାହଙ୍କ ନିକଟକୁ । ଦାମା ପନ୍ତଙ୍କ ମନରେ କିନ୍ତୁ ହର୍ଷ ନ ଥାଏ କି ବିଷାଦ ନ ଥାଏ । ସବୁ ସ୍ଥିତିରେ ସେ ନିର୍ବିକାର ରହି ଦେଖୁଥାନ୍ତି ପ୍ରଭୁଙ୍କର ଅବର୍ଣ୍ଣନୀୟ ଲୀଳା । ପ୍ରଭୁଙ୍କ ଇଚ୍ଛା ବିନା ଗଛରେ ପତ୍ରଟିଏ ମଧ୍ୟ ହଲେ ନାହିଁ । ସେ ତାଙ୍କୁ ପ୍ରଥମେ ଅପରାଧୀ ରୂପେ ଅଭିଯୁକ୍ତ କରି ବାନ୍ଧି ଅଣାଇଲେ ଏବଂ ସେଇ ନିଜେ ପୁଣି ଏବେ ବନ୍ଧନରୁ ମୁକ୍ତ କରାଉଛନ୍ତି! ଭକ୍ତକୁ କେବଳ ବନ୍ଧନମୁକ୍ତ କରାଇ ପ୍ରଭୁ ସନ୍ତୁଷ୍ଟ ନୁହନ୍ତି । ସେ ବାଦଶାହଙ୍କ ହୃଦୟକୁ ମଧ୍ୟ ବଦଳାଇବାକୁ ଚାହୁଁଛନ୍ତି । ତାଙ୍କୁ ନିଜ କୃପାକଟାକ୍ଷର ଭାଜନ କରାଇ ଭକ୍ତଟିଏ କରିଦେବାକୁ ଚାହୁଁଛନ୍ତି । ଆହା! କି ଅହୈତୁକୀ କୃପା ପ୍ରଭୁଙ୍କର! ଆପେ ଆପେ ଆସି ଦର୍ଶନ ଦେଉଛନ୍ତି ଜଣେ ସାଧନାହୀନ ମୁସଲମାନ ରାଜାକୁ ।

ଏଣେ ବାଦଶାହଙ୍କ ସ୍ଥିତି ବଡ଼ ବିଚିତ୍ର । ବିଠୁ ତାଙ୍କ ଦୃଷ୍ଟିପଥରୁ ଅଦୃଶ୍ୟ ହୋଇଯିବାରୁ ସେ ନିଜର ବାହ୍ୟଜ୍ଞାନ ହରାଇ ବସିଛନ୍ତି । ବିଠୁ ବିରହରେ ସେ ପାଗଳ ହୋଇଯାଇଛନ୍ତି । ବିଠୁର ସେହି ସୁମଧୁର ନାମଟି ହୋଇଛି ତାଙ୍କ ଜୀବନ ରକ୍ଷାର ଏକମାତ୍ର ସମ୍ବଳ । ବିଠୁକୁ ଖୋଜି ଆଣିବାକୁ ରାଜକର୍ମଚାରୀମାନେ ବହୁ ଚେଷ୍ଟା କଲେ । ବିଭିନ୍ନ ଦିଗକୁ ଯାଇ ଅଶ୍ୱାରୋହୀମାନେ ଖୋଜାଖୋଜି

କଲେ । କିନ୍ତୁ ସେହି ମାୟାଧରଙ୍କୁ କ'ଣ ଏମିତି ପାଇବା ସମ୍ଭବ? ଯାହାଙ୍କୁ କେତେ କେତେ ଯୋଗୀ, ମୁନିଋଷି, ତପସ୍ୱୀ ଯୁଗ ଯୁଗ ଧରି ଖୋଜି ପାଇ ନାହାନ୍ତି, ତାଙ୍କୁ ରାଜକର୍ମଚାରୀ କେଉଁଠି ବା ପାଇବେ? ସେ ତ କେବଳ ନିଜ ଇଚ୍ଛାରେ ଧରା ଦିଅନ୍ତି ।

ସମସ୍ତେ ନିରାଶ ହୋଇ ଫେରି ଆସିଲେ । ସବୁ ଉଦ୍ୟମ ନିଷ୍ଫଳ ହେଲା । ଏଥର ବାଦଶାହଙ୍କ ଅନ୍ତରରେ ଜାଗି ଉଠିଲା ଅସହ୍ୟ ବିରହ ବେଦନା । ମନେ ହେଉଥାଏ ବ୍ୟାକୁଳତା ରୂପୀ ଅନ୍ତର୍ବେଦନା କୂଳଲଙ୍ଘନ କରିଯିବ । ବିରହ ବେଦନାର ଅମାନିଆ ଉଚ୍ଛ୍ୱାସ ତାଙ୍କର କଠୋର ବୁକୁ ଫଟାଇ ରାଜମର୍ଯ୍ୟାଦାର ସମସ୍ତ ପ୍ରତିବନ୍ଧ ଭାଙ୍ଗି ଏକ ବେଗଗାମୀ ତଟିନୀ ପରି ଧାଇଁଯିବ ବିଠୁ ରୂପୀ ସାଗରର ଅନ୍ୱେଷଣରେ । ବିଠୁକୁ ଝୁରି ଝୁରି ସେ ବାତୁଳଙ୍କ ପରି ଏଣେତେଣେ ପଳାଇ ଯାଉଥାନ୍ତି । କେତେବେଳେ ଅଚେତ ହୋଇ ପଡ଼ିଯାଆନ୍ତି ତ ଆଉ କେତେବେଳେ ଦୌଡ଼ି ଯାଆନ୍ତି ରାଜରାସ୍ତା ଆଡ଼କୁ । "ବିଠୁ! ବିଠୁ!! ତୁ କୁଆଡ଼େ ଚାଲିଗଲୁ ବିଠୁ! ମୋତେ ଆଉ ଥରେମାତ୍ର ଦର୍ଶନ ଦେ । ତୋତେ ନ ଦେଖି ମୁଁ ବଞ୍ଚି ପାରିବି ନାହିଁ ରେ! କାହିଁ ମୋ ବିଠୁ? କୁଆଡ଼େ ଗଲା ସେ? ଏଭଳି ଚିତ୍କାର କରି କରି ସେ ସଡ଼କ ଉପରକୁ ଚାଲି ଆସିବା ମାତ୍ରେ ହଠାତ୍ ଦାମା ପନ୍ତଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ଦାମା ପନ୍ତଙ୍କୁ ସେନାପତି ଓ ଅନ୍ୟାନ୍ୟ ରାଜକର୍ମଚାରୀମାନେ ସମ୍ମାନର ସହ ବାଦଶାହଙ୍କ ନିକଟକୁ ଘେନି ଆସୁଥିଲେ । ଭକ୍ତ ଦାମା ପନ୍ତଙ୍କୁ ଦେଖିଦେବା କ୍ଷଣି ବାଦଶାହ ମହା ଆନନ୍ଦରେ ଦୌଡ଼ିଯାଇ ତାଙ୍କୁ କୁଣ୍ଢାଇ ପକାଇଲେ ଏବଂ ଅତି ବ୍ୟଗ୍ରତାର ସହ ତାଙ୍କ ହାତକୁ ହଲାଇ ପକାଇ କହିଲେ—"ଦାମା! ଦାମା!! ଶୀଘ୍ର କୁହ ଦାମା! ତୁମର ସେ ବିଠୁ କୁଆଡ଼େ ଗଲା? ଶୀଘ୍ର କୁହ, ମୋ ପ୍ରାଣଧନ ବିଠୁ ମୋତେ ଛାଡ଼ି କେଉଁଠି ଲୁଚିଗଲା । ତା' ବିହୁନେ ମୁଁ ବଞ୍ଚି ପାରିବି ନାହିଁ । ତୁମ ପାଦ ଧରୁଛି, ମୋତେ ବିଠୁକୁ ଥରେମାତ୍ର ଦେଖାଇଦିଅ । ଆହା! କି ସୁନ୍ଦର ତା'ର ମୁଖମଣ୍ଡଳ! କି ମଧୁର ତା'ର କଥା! ମୋ ମନକୁ ଚୋରାଇନେଇ କେଉଁଆଡ଼େ ସେ ଚାଲିଗଲା? ଶୀଘ୍ର କୁହ ଦାମା! ମୋ ବ୍ୟାକୁଳ ପ୍ରାଣକୁ ଶାନ୍ତି ଦିଅ ।"

ଦାମା ପନ୍ତ ଆଶ୍ଚର୍ଯ୍ୟରେ ପଡ଼ିଗଲେ । ସେ କିଛି ବୁଝି ପାରୁ ନ ଥାନ୍ତି । ପରମ ପରାକ୍ରମୀ ବାଦଶାହଙ୍କର ପୁଣି ଏଭଳି ବ୍ୟାକୁଳତା! ସେ ପାଗଳ ହୋଇଗଲେ ନା କ'ଣ? ଦାମା ପନ୍ତ ବିସ୍ମୟରେ ପଚାରିଲେ—"କିଏ ଏଇ ବିଠୁ? କାହା କଥା

ଆପଣ କହୁଛନ୍ତି? ମୁଁ କିଛି ବୁଝି ପାରୁନି!" ବାଦଶାହ ଅତି କାକୁତିମିନତି ହୋଇ କହିଲେ—"ଦାମା! ମୋତେ ଲୁଗ୍ଧଅ ନାହିଁ। ତୁମେ ତାକୁ ଧନ ପଇଠ କରିବାକୁ ପଠାଇଥିଲ, ଆଉ ଏବେ ମୋତେ ଲୁଗ୍ଧଉଛ! ସେ କହୁଥିଲା ଯେ ତୁମେ ତା'ର ମାଲିକ। ସେ ତୁମର ଚିର କୃତଜ୍ଞ ସେବକ। ଦାମା! ତୁମେ ବଡ଼ ପରୋପକାରୀ ଲୋକ। କେତେ କେତେ ଲୋକଙ୍କର ପ୍ରାଣ ରକ୍ଷା କଲ। ମୋର ଏତିକି ଉପକାର କର। ମୋତେ ସେଇ ମୋଚି ପିଲା ବିଠୁର ଠିକଣା ବତାଇଦିଅ। ମୁଁ ଚିରଦିନ ପାଇଁ ତୁମର ଋଣୀ ହୋଇ ରହିବି।"

ବାଦଶାହଙ୍କର ଏଭଳି ବ୍ୟାକୁଳତା ଦେଖି ଦାମା ପନ୍ତ ଅବାକ୍ ହୋଇଯାଇଥାନ୍ତି। କଣ ଉତ୍ତର ଦେବେ କିଛି ଭାବି ପାରୁ ନ ଥାନ୍ତି। ବାଦଶାହ ତାଙ୍କର ନୀରବତା ଦେଖି ପୁଣି କହିଲେ—"ଆଚ୍ଛା, ତୁମେ ମୋ ଉପରେ ଅଭିମାନ କରିଛ? ସେଇଥିପାଇଁ ମୋତେ ବିଠୁର ଠିକଣା କହୁ ନାହଁ? ଅବଶ୍ୟ ଠିକ୍ କଥା। ମୁଁ ତୁମ ନିକଟରେ ଅପରାଧୀ। ତୁମ ଭଳି ଉପକାରୀ ନିର୍ଦ୍ଦୋଷ ଲୋକକୁ ମୁଁ ଦଣ୍ଡିବାକୁ ଯାଉଥିଲି। କିନ୍ତୁ ଏବେ ମୁଁ ମୋର ଭୁଲ୍ ବୁଝି ପାରିଛି। ମୋତେ ଏବେ କ୍ଷମା କରିଦିଅ, ଆଉ ବିଠୁକୁ ଥରେ ମୋତେ ଦେଖାଇ ଦିଅ। ଆହା! କେଡ଼େ ସୁନ୍ଦର ଡଉଲ ଡାଉଲ ଶରୀର ତା'ର! ଶ୍ୟାମଳ ରଙ୍ଗ। ହାତରେ ଧରିଥାଏ ବାଡ଼ିଟିଏ। କାନ୍ଧରେ ପକାଇଥାଏ କଳା କମ୍ବଳଟିଏ। ତା' ଓଠରୁ ଝରି ପଡୁଥିବା ସ୍ମିତହାସ କେଡ଼େ ମଧୁର!"

'ଶ୍ୟାମଳ ଶରୀର', 'ବାଡ଼ି', 'କଳା କମ୍ବଳ' ପ୍ରଭୃତି ଶବ୍ଦ ଶୁଣି ଟିକେ ଗମ୍ଭୀର ହୋଇଗଲେ ଦାମା ପନ୍ତ। ଏହାର ରହସ୍ୟ କିଛି ବୁଝି ନ ପାରି ମନେ ମନେ ସ୍ମରଣ କଲେ ନିଜର ପରମ ଆରାଧ୍ୟ ପଣ୍ଢରିନାଥଙ୍କୁ। ସହସା ତାଙ୍କର ଅଜ୍ଞାନ ପରଦା ଦୂରେଇଗଲା। ସେ ବୁଝିଗଲେ ଯେ ଏସବୁ ସେହି ପଣ୍ଢରିନାଥ ବିଠଲଙ୍କ ଲୀଳା ଛଡ଼ା ଆଉ କିଛି ନୁହେଁ। ତାଙ୍କୁ ରକ୍ଷା କରିବାକୁ ପ୍ରଭୁ ମୋଚି ପିଲା ରୂପ ଧରି ବାଦଶାହଙ୍କ କ୍ଷତି ଭରଣା କରିଛନ୍ତି ଏବଂ ପାଉତି ନେଇ ଗୀତା ବହିରେ ରଖିଛନ୍ତି। ପ୍ରଭୁଙ୍କର ଏହି ଭକ୍ତବତ୍ସଳତା ସ୍ମରଣ କରୁ କରୁ ସେ ଆତ୍ମବିଭୋର ହୋଇଗଲେ। ତାଙ୍କ ନେତ୍ରକୋଣରୁ ଝରି ଆସିଲା କୃତଜ୍ଞତା ଅଶ୍ରୁର ଦୁଇଟି ଶୀତଳ ଧାରା। ସେ ପ୍ରଭୁଙ୍କୁ ଶତ ଶତ ପ୍ରଣାମ ଜଣାଇ କହିଲେ, "ଏ କ'ଣ କଲ ପ୍ରଭୁ? ତୁମେ ଶେଷରେ ମୋଚି ବେଶ ଧାରଣ କଲ! ଏ ଅଧମର ପ୍ରାଣ କଣ ଏତେ ମୂଲ୍ୟବାନ୍ ଯେ ତା' ପାଇଁ ତୁମେ ତୁମର ବଡ଼ପଣିଆକୁ ଛାଡ଼ିଦେଇ

ନିଜକୁ ମୋର ଦାସ ବୋଲି ପରିଚୟ ଦେଲ! ଧନ୍ୟ ପ୍ରଭୁ ତୁମର ଭକ୍ତବତ୍ସଳତା। ଧନ୍ୟ ତୁମର ଶରଣରକ୍ଷଣ ବାନା।''

ଏତିକି କହୁ କହୁ ତାଙ୍କର ହୃଦୟ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲା। ସେ ବାଦଶାହଙ୍କୁ କୁଣ୍ଢାଇ ପକାଇ କହିଲେ, ''ଆପଣ ଧନ୍ୟ ହୋଇଗଲେ ବାଦଶାହ! ଆଜି ଆପଣ ଜୀବନର ଚରମ ଫଳ ପାଇଗଲେ। ସେ ଆଉ କେହି ନୁହନ୍ତି; ସ୍ୱୟଂ ତ୍ରିଭୁବନପତି ପ୍ରଭୁ ପଣ୍ଢରିନାଥ ଆଜି ଆପଣଙ୍କୁ ଦର୍ଶନ ଦେଲେ।'' ଏହିପରି କହୁ କହୁ ତାଙ୍କର ସର୍ବାଙ୍ଗ ଅବଶ ହୋଇପଡ଼ିଲା। ପ୍ରଭୁଙ୍କର ଅପାର କରୁଣାକୁ ସ୍ମରଣ କରି ତାଙ୍କ ହୃଦୟ ବିଗଳିତ ହୋଇଗଲା। ସେ ଆନନ୍ଦରେ ''ଜୟ ପାଣ୍ଡୁରଙ୍ଗ! ଜୟ ବିଠଲ ପାଣ୍ଡୁରଙ୍ଗ!!'' ଉଚ୍ଚାରଣ କରି କରି ଅଚେତ ହୋଇ ପଡ଼ିଗଲେ।

ଭକ୍ତର ଭାବବିହ୍ୱଳ ସ୍ଥିତି ଦେଖି ଭଗବାନ ଆଉ ଲୁଚି ରହିପାରିଲେ ନାହିଁ। ସେ କାଳବିଳମ୍ବ ନ କରି ଭକ୍ତ ନିକଟରେ ଆବିର୍ଭୂତ ହୋଇଗଲେ। ଦାମା ପନ୍ତଙ୍କୁ କୋଳକୁ ଉଠାଇ ନେଇ ତାଙ୍କ ମୁଣ୍ଡ ଆଉଁସି ଦେଲେ। ପ୍ରଭୁଙ୍କ କୋମଳ କରସ୍ପର୍ଶରେ ଦାମା ପନ୍ତଙ୍କର ଚେତନା ଫେରି ଆସିଲା। ସେ ପ୍ରଭୁଙ୍କୁ ଦର୍ଶନ କରି ଆତ୍ମବିଭୋର ହୋଇଗଲେ। ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କରି କୃତଜ୍ଞତାର ଅଶ୍ରୁରେ ତାଙ୍କର ପାଦ ଧୋଇଦେଲେ। ପ୍ରଭୁ ତାଙ୍କ ଦୁଇ ବାହୁକୁ ଧରି ଉଠାଇ କହିଲେ, ''ଦାମା! ଉଠ। ତୁମେ ମନ ଊଣା କର ନାହିଁ। ଭକ୍ତର କାର୍ଯ୍ୟ କରିବାରେ ମୋତେ ଅପାର ଆନନ୍ଦ ମିଳେ। ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରୀତ। ତୁମ ପରି ପରୋପକାରୀ ଭକ୍ତ ଉପରେ ଜଞ୍ଜାଳ ପଡ଼ିଲେ ମୁଁ କଣ ଶାନ୍ତିରେ ରହି ପାରିବି? ମୋର ଏହି ରୂପ ଦର୍ଶନ କରି ତୁମ ଜୀବନ ଧନ୍ୟ ହେଲା। ତୁମ ପାଇଁ ଆଜି ଏ ମୋଗଲ ଶାସକ ବାଦଶାହଙ୍କୁ ମଧ୍ୟ ମୋର ଦର୍ଶନ ମିଳିଲା।''—ଏତିକି କହି ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ବାଦଶାହ ମଧ୍ୟ ସେହି ସୌନ୍ଦର୍ଯ୍ୟନିଧାନ ବଂଶୀଧାରୀଙ୍କ ଦର୍ଶନ ଲାଭ କରି କୃତାର୍ଥ ହୋଇଗଲେ।



# ବଡ଼ ବିପ୍ର ଓ ଛୋଟ ବିପ୍ର

ପଦ୍‌ଭ୍ୟାଂ ଚଲନ୍ ଯଃ ପ୍ରତିମାସ୍ୱରୂପୋ
ବ୍ରହ୍ମଣ୍ୟ ଦେବୋ ହି ଶତାହଗମ୍ୟମ୍ ।
ଦେଶଂ ଯଯୌ ବିପ୍ରକୃତେଽଦ୍ଭୁତେହଂ
ତଂ ସାକ୍ଷୀଗୋପାଳମହଂ ନତୋଽସ୍ମି ॥

''ଯେଉଁ ବ୍ରହ୍ମଣ୍ୟଦେବ ପ୍ରଭୁ ପ୍ରତିମାସ୍ୱରୂପ ହୋଇ ମଧ୍ୟ ବ୍ରାହ୍ମଣ ନିମନ୍ତେ ସୁଦୂର ବୃନ୍ଦାବନରୁ ପଦବ୍ରଜରେ ଶତ ଦିବସର ମାର୍ଗ ଅତିକ୍ରମ କରି କାଞ୍ଚିପୁରରେ ସାକ୍ଷୀ ଦେଲେ, ସେହି ଅଲୌକିକ ଲୀଳାଧାରୀ ସାକ୍ଷୀଗୋପାଳଙ୍କୁ ମୁଁ ପ୍ରଣାମ କରୁଛି ।''

ଭକ୍ତର ଭାବରେ ବଶ ହୋଇ ଭଗବାନ କେତେ ଯେ ବିଚିତ୍ର ଲୀଳା କରି ପାରନ୍ତି, ତାହା ଜାଣିବା ଅତି କଠିନ । ଯାହା କେବେ କେହି କାନରେ ଶୁଣି ନ ଥାନ୍ତି କି ଆଖିରେ ଦେଖି ନ ଥାନ୍ତି, ଭଗବାନ ସେ ଭଳି ଆଶ୍ଚର୍ଯ୍ୟମୟ ଲୀଳା କରି ଭକ୍ତବତ୍ସଳ ବାନାକୁ ସାର୍ଥକ କରନ୍ତି । ଏତଦ୍ଦ୍ୱାରା ସେ ଜଗତକୁ ଜଣାଇ ଦେବାକୁ ଚାହାନ୍ତି ଯେ ଭକ୍ତଠାରୁ ବଳି ତାଙ୍କର ଆଉ କେହି ପ୍ରିୟ ନାହିଁ । ଯିଏ ତାଙ୍କ ଉପରେ ଅନନ୍ୟ ଆଶ୍ରା କରିଥାଏ, ସେ ତା' ପାଇଁ ଅଚଳରୁ ସଚଳ ହୋଇଯାଆନ୍ତି, ନିରାକାରରୁ ସାକାର ହୋଇଯାଆନ୍ତି ଏବଂ ତଥାକଥିତ ନିୟମ ନୀତିକୁ ଛାଡ଼ି ତା'ର ଅନୁଧାବନ କରିଥାନ୍ତି ।

ଏଭଳି ଭାବବିନୋଦିଆ ଠାକୁର ହେଲେ ଶ୍ରୀ ସାକ୍ଷୀଗୋପାଳ ଭଗବାନ । ବୃନ୍ଦାବନ ଧାମ ଛାଡ଼ି ଓଡ଼ିଶାରେ ବିରାଜମାନ ହୋଇ ସେ ଅଦ୍ୟାବଧି ସୂଚିତ କରୁଛନ୍ତି ଭକ୍ତବାତ୍ସଲ୍ୟ ଗୁଣକୁ । କେହି ତାଙ୍କୁ ଦର୍ଶନ କଲେ ସେ ତା'ର ଇହକାଳ ଓ ପରକାଳର ସାକ୍ଷୀ ହୋଇଯାଆନ୍ତି । ତ୍ରିଭଙ୍ଗ ଲଳିତ ଠାଣି, ଛନ୍ଦା ଚରଣ, ଅଧରୋଷ୍ଠରେ ଅର୍ପିତ ମୋହନ ବଂଶୀ ଓ ଚନ୍ଦ୍ରବଦନର ଅପୂର୍ବ କାନ୍ତିରେ ସେ ଭକ୍ତଜନଙ୍କ ମନକୁ ମୋହି ନିଅନ୍ତି । ତାଙ୍କର ନବ ଘନ ସମ ସ୍ନିଗ୍ଧ ଓ କୁଞ୍ଚିତ କେଶରେ ଖୋସା ଯାଇଥିବା ମଲ୍ଲିଫୁଲ ଘନ ମେଘର ବୁକୁ ଚିରି ଝଟକି ଉଠୁଥିବା ପୂର୍ଣ୍ଣଚନ୍ଦ୍ର ଭଳି ମନେହୁଏ । ଶରତ୍‌କାଳୀନ ସ୍ୱଚ୍ଛ ସରୋବର ସମ ବଦନରେ ନେତ୍ର ଦ୍ୱୟ ପ୍ରସ୍ଫୁଟିତ ପଦ୍ମ ତୁଲ୍ୟ ସୁଶୋଭିତ ହୁଏ ଏବଂ ତା' ମଧ୍ୟରେ ଚଳଚଞ୍ଚଳ ପିତୁଳି ଦୁଇଟି ଖଞ୍ଜନ ପକ୍ଷୀ ଭଳି ନୃତ୍ୟ କରୁଥାଏ । ପ୍ରଭୁଙ୍କ ଶ୍ୟାମଳ ଅଙ୍ଗକାନ୍ତିରେ

ମୁକ୍ତା ମାଳା ଏଭଳି ଶୋଭା ପାଉଥାଏ, ସତେ ଯେପରି ଯମୁନାର ନୀଳ ଜଳରେ ଭାସି ଯାଉଛି ଫେଣମାଳା। ତାଙ୍କ କଟିଦେଶରେ ପୀତାମ୍ବର ଏଭଳି ଝିଲମିଲ୍ କରୁଥାଏ, ସତେ ଅବା ଗୋଟିଏ ନୀଳପଦ୍ମକୁ ପରିବେଷ୍ଟିତ କରିଅଛି ପୀତବର୍ଣ୍ଣର ପରାଗ। କର୍ଣ୍ଣରେ ଦୋଳାୟମାନ ମକରକୁଣ୍ଡଳର ଅଦ୍ଭୁତ କାନ୍ତିରେ ବିକଶିତ କପୋଳର ଛଟାକୁ ବହୁଗୁଣିତ କରୁଥାଏ ମନ୍ଦସ୍ମିତର ଅପୂର୍ବ ଦୀପ୍ତି। ମସ୍ତକରେ ସୁଶୋଭିତ ମଳୟଜ ଚନ୍ଦନ ବିନ୍ଦୁ। ତେବେ ଏଭଳି ତ୍ରିଭୁବନସୁନ୍ଦର ମନମୋହନ ବୃନ୍ଦାବନ ଛାଡ଼ି ଓଡ଼ିଶାରେ ବିରାଜମାନ ହେଲେ କାହିଁକି? ସେ କ'ଣ ବୃନ୍ଦାବନବାସୀଙ୍କ ମନକୁ ପାଇଲେ ନାହିଁ? ସେ ଯିବାବେଳେ କେହି କ'ଣ ତାଙ୍କୁ ଅଟକାଇବାକୁ ଚେଷ୍ଟା କଲେ ନାହିଁ? କିଏ ସେହି ଭାଗ୍ୟଶାଳୀ ଭକ୍ତ, ଯିଏ ତାଙ୍କୁ ପ୍ରେମ ଡୋରିରେ ବାନ୍ଧି ଶ୍ରୀଧାମ ବୃନ୍ଦାବନରୁ ଟାଣିନେଲା?

ଏଭଳି ମହତ୍ କାର୍ଯ୍ୟ କରିଥିଲେ କାଞ୍ଚିପୁରର ବିଦ୍ୟାନଗର ନିବାସୀ ଦୁଇ ବିପ୍ରବର। ବୟସରେ ଦୁହେଁ ପିତା-ପୁତ୍ର ଭଳି ହେବେ। ଧନ, ଜନ, ଯୋଗ୍ୟତା ଇତ୍ୟାଦିରେ ମଧ୍ୟ ଦୁହିଙ୍କ ମଧ୍ୟରେ ଆକାଶ ପାତାଳ ତଫାତ୍ ଥିଲା। ଛୋଟ ବିପ୍ର ସବୁ ଦୃଷ୍ଟିରୁ ଥିଲେ ହୀନିମାନ। ପିତାମାତା ପରଲୋକ ଗମନ କରିବା ପରେ ସଂସାରରେ ତାଙ୍କର ନିଜର ବୋଲି କେହି ନ ଥିଲେ। ଘୋର ଦାରିଦ୍ର୍ୟ ହୋଇଯାଇଥିଲା ତାଙ୍କ ଜୀବନର ଅଭିନ୍ନ ସାଥୀ। ଧନ ବୈଭବର ଅଭାବ ଥିଲେ ମଧ୍ୟ ସେ ଭକ୍ତିଭାବ ଓ ସେବାରେ ଅଗ୍ରଣୀ ଥିଲେ। ଧନ, ଜନ ଇତ୍ୟାଦିରେ ନ ହେଲେ ବି ମାନସିକ ଓ ଶାରୀରିକ ସେବା କରି ସେ ସମସ୍ତଙ୍କର ପ୍ରିୟ ଭାଜନ ହୋଇ ପାରିଥିଲେ। ବଡ଼ ବିପ୍ର ମଧ୍ୟ ଛୋଟ ବିପ୍ରଙ୍କ ପରି ପ୍ରଭୁଭକ୍ତି ଓ ସେବା ଭାବନାରେ ପରିପୂର୍ଣ୍ଣ ଥିଲେ। ତାଙ୍କ ଗୃହରେ ଧନରତ୍ନ ପୂରି ରହିଥିଲା। କୁଟୁମ୍ବ ପରିବାର ସମସ୍ତେ ଅନୁକୂଳ ଥିଲେ। ହେଲେ ସେ ଏ ସବୁକୁ ନିଜର ନ ଭାବି ପ୍ରଭୁଙ୍କ ସେବାରେ ଏବଂ ଜନତା ଜନାର୍ଦ୍ଦନଙ୍କ ସେବାରେ ବିନିଯୋଗ କରୁଥିଲେ।

କୁହାଯାଏ ଯେ ବନ୍ଧୁତ୍ୱ ସବୁବେଳେ ସମସ୍କନ୍ଧ ବ୍ୟକ୍ତିଙ୍କ ସଙ୍ଗେ ସ୍ଥାପିତ ହୋଇଥାଏ। କିନ୍ତୁ ଦୁଇ ବିପ୍ରଙ୍କ ଜୀବନରେ ଦେଖାଯାଇଥିଲା ଏହାର ବ୍ୟତିକ୍ରମ। ଦୁହିଙ୍କ ମଧ୍ୟରେ ବାହ୍ୟ ଦୃଷ୍ଟିରୁ ଅନେକ ପ୍ରଭେଦ ଥିଲେହେଁ ଦୁହିଙ୍କର ବନ୍ଧୁତ୍ୱ କ୍ଷୀରନୀର ଭଳି ଅତୁଟ ଥିଲା। ଜଣେ ଅନ୍ୟକୁ ଭଗବଦ୍‌ମାର୍ଗରେ ପ୍ରେରିତ କରିବାକୁ ଆପ୍ରାଣ ଚେଷ୍ଟା କରନ୍ତି। ଗୃହ କାର୍ଯ୍ୟରୁ ଅବକାଶ ମିଳିଲେ ଦୁହେଁ ଅଧ୍ୟାତ୍ମଚର୍ଚ୍ଚାରେ ସମୟ କାଟନ୍ତି। ଜଣେ ବକ୍ତା ହୋଇ ଭଗବାନଙ୍କ ଗୁଣ ଗାନ କଲେ ଅନ୍ୟ ଜଣେ

ମନଯୋଗପୂର୍ବକ ଶୁଣେ । ଏହିପରି ଭାବରେ ଦୁହେଁ ପରସ୍ପର ପାଇଁ ଅଧ୍ୟାତ୍ମଜୀବନର ସାଥୀ ହୋଇଥାନ୍ତି । ବାସ୍ତବରେ ଏହା ହିଁ ମିତ୍ରଧର୍ମର ଉତ୍କୃଷ୍ଟ ମାପଦଣ୍ଡ । ଶ୍ରୀମଦ୍ଭାଗବତରେ ଭଗବାନ ଋଷଭଦେବ ପୁତ୍ରମାନଙ୍କୁ ଉପଦେଶ ଦେଇ କହିଛନ୍ତି—"ଯିଏ ନିଜର ସ୍ୱଜନଙ୍କୁ ଆସନ୍ନ ମୃତ୍ୟୁରୁ ଉଦ୍ଧାର କରାଇବାର ଉପାୟ କରେ ନାହିଁ, ସେଭଳି ଗୁରୁ ଗୁରୁ ନୁହେଁ, ସ୍ୱଜନ ସ୍ୱଜନ ନୁହନ୍ତି, ପିତାମାତା ପିତାମାତା ନୁହନ୍ତି, ବନ୍ଧୁ ବନ୍ଧୁ ନୁହେଁ, ଦେବତା ଦେବତା ନୁହେଁ ଏବଂ ସ୍ୱାମୀ ସ୍ୱାମୀ ନୁହେଁ କି ସ୍ତ୍ରୀ ସ୍ତ୍ରୀ ନୁହେଁ ।"

ସଂସାରର ପ୍ରତ୍ୟେକ ସମ୍ବନ୍ଧ ଜଣେ ଅନ୍ୟକୁ ଭଗବଦ୍‌ମାର୍ଗରେ ପ୍ରେରିତ କରାଇବା ପାଇଁ ଉଦ୍ଦିଷ୍ଟ । ଏହି ଶାସ୍ତ୍ର ଉକ୍ତି ଚରିତାର୍ଥ ହୋଇଥିଲା ଦୁଇ ବିପ୍ରଙ୍କ ମୈତ୍ରୀରେ । ସତ୍ସଙ୍ଗରେ ଅନେକ ଥର ଭାଗବତର ଦଶମ ସ୍କନ୍ଧ ପଢ଼ାଯାଏ । ଭଗବାନଙ୍କ ଲୀଳାଧାମ ବୃନ୍ଦାବନର ବର୍ଣ୍ଣନା ଏବଂ ବ୍ରଜଗୋପୀମାନଙ୍କର କୃଷ୍ଣଙ୍କ ପ୍ରତି ପ୍ରେମଭାବ ବର୍ଣ୍ଣନା ଶୁଣି ଦୁଇ ବିପ୍ରଙ୍କ ମନ ବ୍ୟାକୁଳ ହୋଇ ଉଠିଲା ଶ୍ରୀଧାମ ବୃନ୍ଦାବନ ଦର୍ଶନ ପାଇଁ । ଦିନେ ଦୁହେଁ ତୀର୍ଥଯାତ୍ରା କ୍ରମରେ ଗୟା, ବାରାଣସୀ, ତୀର୍ଥରାଜ ପ୍ରୟାଗ ପ୍ରଭୃତି ନାନା ତୀର୍ଥ ଭ୍ରମଣ କରି ଆସି ପହଞ୍ଚିଲେ ମଥୁରାରେ । ସେଠାରୁ ଦ୍ୱାଦଶ ବନ ଦର୍ଶନ କରି ଓ ଗୋବର୍ଦ୍ଧନ ପରିକ୍ରମା ସାରି ପରିଶେଷରେ ଆସି ପହଞ୍ଚିଲେ ବୃନ୍ଦାବନରେ । ଗୋପାଳ ଜୀଉଙ୍କ ମୋହନ ମୂର୍ତ୍ତି ଦର୍ଶନ କରି ଦୁହେଁ ଆତ୍ମବିଭୋର ହୋଇଗଲେ । ତାଙ୍କର ଅନେକ ଦିନର ଭକ୍ତି ପିପାସା ପୂର୍ଣ୍ଣ କରି ଭଗବାନ ତାଙ୍କୁ ସ୍ମିତହାସ୍ୟ ମୂଲ୍ୟରେ ସବୁ ଦିନ ପାଇଁ କିଣି ନେଲେ ।

ଅନ୍ୟ ତୀର୍ଥ ଭ୍ରମଣ କରିବା ପାଇଁ ତାଙ୍କର ପୂର୍ବରୁ ବିଗ୍ଭର ଥିଲା, କିନ୍ତୁ ଗୋପାଳ ଜୀଉଙ୍କ ପ୍ରଥମ ଦର୍ଶନରେ ଦୁଇ ବିପ୍ର ସବୁଦିନ ପାଇଁ ତାଙ୍କର ହୋଇଯାଇଥିଲେ, ତେଣୁ ସେ ଦୁହେଁ ଅନ୍ୟ କୁଆଡ଼େ ନ ଯାଇ ବୃନ୍ଦାବନରେ ନିବାସ କଲେ । ବୃଦ୍ଧାବସ୍ଥା କାରଣରୁ ବଡ଼ ବିପ୍ର ଅଗ୍ନିନକ ରୋଗରେ ପଡ଼ିଗଲେ । ଗ୍ଭଲବୁଲ କରିବାକୁ ଦେହରେ ଶକ୍ତି ରହିଲା ନାହିଁ । ଏଭଳି ବିଷମ ସ୍ଥିତିରେ ଛୋଟ ବିପ୍ର ବେଶ୍ ବନ୍ଧୁତ୍ୱ ଧର୍ମ ନିର୍ବହନ କରି ମନପ୍ରାଣ ଲଗାଇ ତାଙ୍କର ସେବା କଲେ । କାୟାକୁ ଛାୟା ଅନୁସରଣ କଲା ଭଳି ସେ ସବୁବେଳେ ତାଙ୍କ ପାଖେ ପାଖେ ରହି ତାଙ୍କର ସେବା କରନ୍ତି ।

ଉଚିତ ସେବା ଓ ଉପଗ୍ଭର ପାଇ ଧୀରେ ଧୀରେ ତାଙ୍କର ରୋଗ ଭଲ ହୋଇଗଲା । ଛୋଟ ବିପ୍ର ବଡ଼ ବିପ୍ରଙ୍କ ହାତ ଧରି ଅନେକ ମନ୍ଦିର ବୁଲାଇ

ଠାକୁରଙ୍କ ଦର୍ଶନ କରାଉଥାନ୍ତି। ତାଙ୍କର ଏଭଳି ସେବାଭାବ ଓ ଭକ୍ତିପୂତ ହୃଦୟ ଦେଖି ବଡ଼ ବିପ୍ର ଭାବିଲେ, ମୁଁ ଯଦି ଏହାଙ୍କୁ ମୋର ପ୍ରାଣ ଦାନ କରିଦିଏ, ତେବେ ବି ଏଭଳି ସେବାର ଋଣ ପରିଶୋଧ ହୋଇ ପାରିବ ନାହିଁ। ମନ ମଧ୍ୟରେ ସେ ଛୋଟ ବିପ୍ରଙ୍କୁ ଅନେକ ଆଶୀର୍ବାଦ ଦେଉଥାନ୍ତି। କିନ୍ତୁ ସେତିକିରେ ତାଙ୍କ ମନ ମାନିଲା ନାହିଁ।

ଦିନେ ସେ ଶ୍ରୀ ଗୋପାଳ ଜୀଉଙ୍କ ମନ୍ଦିରରେ ବସିଥାନ୍ତି। ସହସା ତାଙ୍କ ମନରେ ଭାବ ଜାଗ୍ରତ ହେଲା ଯେ ଏଭଳି ସୁଚରିତ୍ର, ସେବାଭାବପରାୟଣ, ଭକ୍ତିମାନ୍ ଯୁବକ ସହ ଯଦି ମୁଁ ମୋର କନ୍ୟାର ପାଣିଗ୍ରହଣ କରାଇଦିଏ, ତେବେ ମୋ ମନ ନିଶ୍ଚୟ ଶାନ୍ତି ଲାଭ କରିବ। ଭକ୍ତର ସଙ୍ଗ ଲାଭ କରି ମୋର ଅଲିଅଳି କନ୍ୟା ନିଶ୍ଚୟ ଭକ୍ତିମତୀ ହୋଇ ପାରିବ। ସେ ଏହି ଭାବନାରେ ଏତେ ଅଭିଭୂତ ହୋଇଗଲେ ଯେ ମନ କଥା ଆଉ ବେଶୀ ସମୟ ଲୁଗ୍ଇ ରଖି ପାରିଲେ ନାହିଁ। ଭାବିଲେ ବୋଧହୁଏ ଠାକୁର ଏହି ପ୍ରସ୍ତାବକୁ ସ୍ୱୀକାର କରିନେଲେ। ସେଥିପାଇଁ ତାଙ୍କ ସମ୍ମୁଖରେ ଏଭଳି ସଦ୍ଭାବନା ଉଦୟ ହେଲା।

ଶ୍ରୀ ଗୋପାଳ ଜୀଉଙ୍କ ଆଗରେ ବଡ଼ ବିପ୍ର ଛୋଟ ବିପ୍ରଙ୍କୁ ତାଙ୍କ ମନ କଥା ଖୋଲି କହିଲେ, "ବନ୍ଧୁ! ଜୀବନରେ ତୁମ ଉପକାରର ମୂଲ୍ୟ ମୁଁ ଶୁଝାଇ ପାରିବି ନାହିଁ। ଅନ୍ଧର ଲଉଡ଼ି ପରି ମୋତେ ସହାୟ ହୋଇ ପୁଅ ଭଳି ତୁମେ ମୋର ଅନେକ ସେବା କଲ ଏବଂ ନାନା ତୀର୍ଥ ଭ୍ରମଣ କରାଇଲ। ତୁମକୁ ଗୋଟିଏ ମନ କଥା କହିବି। ଠାକୁରଙ୍କ ଦୟାରୁ ମୋ ମନରେ ଜାତ ହୋଇଛି ଗୋଟିଏ ମହତ୍ ପ୍ରେରଣା। ତୁମକୁ ମୁଁ ମୋର କନ୍ୟାରତ୍ନ ପ୍ରଦାନ କରିବାକୁ ଚ୍ହୁଁଛି। ସେ ଦେଖିବାକୁ ଯେପରି ସୁନ୍ଦରୀ, ସେହିପରି ସୁଶୀଳା ମଧ୍ୟ। ଲକ୍ଷ୍ମୀ ତୁଲ୍ୟ ମୋ କନ୍ୟାର ପାଣିଗ୍ରହଣ କରି ମୋର ମନୋରଥ ପୂର୍ଣ୍ଣ କର ବନ୍ଧୁ! ତୁମ ସେବାରେ ମୁଁ ଏତେ ଋଣୀ ହୋଇଯାଇଛି ଯେ ଏ ଜୀବନରେ ମୋ ପକ୍ଷେ ତାହା ପରିଶୋଧ କରି ପାରିବା ସମ୍ଭବ ନୁହେଁ। ଭାବୁଛି, ମୋର ଝିଅଟି ଯଦି ସେବା ବଳରେ ତୁମକୁ ସନ୍ତୁଷ୍ଟ କରିପାରେ, ତେବେ ମୋ ମନ ପ୍ରସନ୍ନ ହେବ।"

ଛୋଟ ବିପ୍ରଙ୍କୁ ବଡ଼ ବିପ୍ରଙ୍କ କଥା ଆକାଶ କୁସୁମ ଭଳି ଲାଗିଲା। ସେ ଭାବିଲେ, ବୋଧହୁଏ ଇଏ ଥଟ୍ଟା ପରିହାସ କରୁଛନ୍ତି। ସେ କିଛି କ୍ଷଣ ନୀରବ ରହି କହିଲେ, "ବନ୍ଧୁ! ବାପମାଆ ଛେଉଣ୍ଡ ମୋ ଭଳି ଦରିଦ୍ରକୁ ପରିହାସ କରିବାକୁ ତୁମେ ମଧ୍ୟ ପଛାଇଲ ନାହିଁ! ଧନ-ମାନଶୂନ୍ୟ ମୋ ଭଳି ତୁଚ୍ଛ ବ୍ରାହ୍ମଣ ସହିତ

ପୁଣି ତୁମ କନ୍ୟାର ବିବାହ! ଏଭଳି ଅସଙ୍ଗତ କଥା କୁହ ନାହିଁ ବନ୍ଧୁ! ଯିଏ ଶୁଣିବ ହସିବ! ତୁମେ ମହା କୁଳୀନ, ବିଦ୍ୟା-ଧନ ଇତ୍ୟାଦିରେ ଶ୍ରେଷ୍ଠ, ଆଉ ମୁଁ ସବୁ ଦୃଷ୍ଟିରୁ ହୀନିମାନ। କେଉଁଠି ରାମଚନ୍ଦ୍ର ଆଉ କେଉଁଠି ରାମ ଭଣ୍ଡାରୀ! ଏହା କ'ଣ କେବେ ସମ୍ଭବ ହୋଇପାରେ? କିନ୍ତୁ ତୁମେ ଆଦୌ ଚିନ୍ତା କର ନାହିଁ। ମୁଁ ତୁମଠାରୁ କିଛି ପାଇବା ଆଶାରେ ସେବା କରି ନାହିଁ। ଏହା ତ ମୋର କର୍ତ୍ତବ୍ୟ। ନିଜ ହାତରେ ନିଜର ମୁହଁ ଧୋଇ କେହି କ'ଣ ତାହାକୁ ସେବା ବୋଲି ଭାବେ। ଆଉ ଯଦି ତୁମେ ମୁଁ ସେବା କଲି ବୋଲି ଭାବୁଛ, ତେବେ ତା' ପ୍ରତିବଦଳରେ ସ୍ନେହଶ୍ରଦ୍ଧା ଦିଅ। ମୁଁ ଶୁଣିଥିଲି ଯେ ଭଗବାନ ଶ୍ରୀକୃଷ୍ଣ ବ୍ରହ୍ମଣ୍ୟଦେବ। ବ୍ରାହ୍ମଣର ସେବା କଲେ ଅନ୍ତରରେ କୃଷ୍ଣପ୍ରୀତି ଜାଗ୍ରତ ହୁଏ। ତେଣୁ ତୁମେ ଦୟା କରି ମୋତେ କୃଷ୍ଣଭକ୍ତିର ବରଦାନ ଦିଅ।''

ବଡ଼ ବିପ୍ର କହିଲେ—''ତୁମେ ମୋ କଥାରେ ସଂଶୟ କର ନାହିଁ। ମୋ ବଚନ ବେଦବାକ୍ୟ ଭଳି ଅଟଳ। ତାହା ଅନ୍ୟଥା ହେବ ନାହିଁ। ପ୍ରାଣ ଗ୍ଲିଯିବ ପଛେ, ମୁଁ ସତ୍ୟରୁ ଓହରିବି ନାହିଁ। ମୁଁ ଧନ, ମାନ ଅଥବା ରୂପସୌନ୍ଦର୍ଯ୍ୟ ଦେଖେ ନାହିଁ, ଦେଖେ ସତ୍‌ଚରିତ୍ର ଓ ସଦ୍‌ଗୁଣକୁ।''

ଛୋଟ ବିପ୍ରଙ୍କ ମନରେ ପୂର୍ଣ୍ଣ ବିଶ୍ୱାସ ହେଉ ନ ଥାଏ। ସେ କହିଲେ—''ତୁମେ କହିଲେ କ'ଣ ହେବ? ତୁମର ସ୍ତ୍ରୀ-ପୁତ୍ର ପ୍ରଭୃତି କ'ଣ ଏ ପ୍ରସ୍ତାବ ସ୍ୱୀକାର କରିବେ? ରୁକ୍ମିଣୀର ସ୍ୱୟଂବର କଥା ଶୁଣିଛ କି ନାହିଁ? ତା'ର ବାପା ଭୀଷ୍ମକ କୃଷ୍ଣଙ୍କୁ କନ୍ୟାଦାନ କରିବାକୁ ନିର୍ଣ୍ଣୟ କରିଥିବା ବେଳେ ତା'ର ଭାଇ ରୁକ୍ମୀ ବିରୋଧ କଲା। ପରିଶେଷରେ ଭୀଷ୍ମକ ବଡ଼ ପୁଅ ରୁକ୍ମୀର କଥା ମାନିବାକୁ ବାଧ୍ୟ ହେଲେ। ତୁମ ସ୍ଥିତି ସେମିତି ହୋଇଯିବନି ତ?''

ବଡ଼ ବିପ୍ର କହିଲେ—''କନ୍ୟା ମୋର ନିଜର ଧନ। ମୁଁ କାହାକୁ ବି ଦେବାକୁ ସ୍ୱତନ୍ତ୍ର। ଏଥିରେ ମୋତେ ବିରୋଧ କରିବାକୁ କିଏ ଅଛି? ମୋ କଥାକୁ କ'ଣ ଘର ଲୋକେ କାଟି ଦେବେ? ନା, ନା। ତୁମେ ଆଦୌ ସନ୍ଦେହ କର ନାହିଁ। ମୋ ପ୍ରସ୍ତାବ ସ୍ୱୀକାର କରି ମୋର ମନୋବାଞ୍ଛା ପୂର୍ଣ୍ଣ କର!''

ଛୋଟ ବିପ୍ର କହିଲେ—''ତୁମ କଥା ମାନି ମୁଁ ସ୍ୱୀକାର କରୁଛି ସତ, କିନ୍ତୁ ମୋତେ ସନ୍ଦେହ ଲାଗୁଛି।'' ବଡ଼ ବିପ୍ର କହିଲେ—''ତୁମର ସନ୍ଦେହ ମୋଚନ କରିବା ପାଇଁ ମୁଁ ଗୋପାଳ ଜୀଉଙ୍କୁ ସାକ୍ଷୀ ରଖି ତ୍ରିବାର ସତ୍ୟ କରି କନ୍ୟାଦାନର ସଙ୍କଳ୍ପ କରୁଛି। ପ୍ରାଣ ଗ୍ଲିଯିବ ପଛେ ମୋ ବଚନ ଯିବ ନାହିଁ।

ଏବେ ତ ତୁମର ବିଶ୍ୱାସ ହେଲା?''

ଗୋପାଳଙ୍କ ଆଗରେ ଶପଥ କରିବାରୁ ଛୋଟ ବିପ୍ର ମନରେ ବିଶ୍ୱାସ ଜାତ ହେଲା। ସେ ଠାକୁରଙ୍କୁ କହିଲେ—''ପ୍ରଭୁ! ତୁମେ ଆମର ସାକ୍ଷୀ ରହିଲ। ଯଦି କେହି ବିରୋଧ କରେ କି ଫାଙ୍କି ଦେବାକୁ ଚେଷ୍ଟା କରେ ତୁମେ ଯାଇ ସାକ୍ଷୀ ଦେବ।''

ତା'ପରେ ଆନନ୍ଦ ମନରେ ବହୁ ଦିନ ପର୍ଯ୍ୟନ୍ତ ଦୁଇ ବିପ୍ର ବୃନ୍ଦାବନରେ ନିବାସ କଲେ। ସେଠାକାର ଭକ୍ତି ପରିବେଶରେ ତାଙ୍କର ମନ ଲାଖିଗଲା। ଯେଉଁ ଧାମରେ ଉଦ୍ଧବଙ୍କ ଭଳି ଆତ୍ମଜ୍ଞାନୀ ଆତ୍ମବିଭୋର ହୋଇ ଦିନକ ବଦଳରେ ଅନେକ ମାସ ରହି ଯାଇଥିଲେ, ସେଠାରେ କେଉଁ ଭକ୍ତର ମନ ବା ନ ଲାଗିବ! ଶ୍ରୀକୃଷ୍ଣଙ୍କର ନାନାବିଧ କେଳିସ୍ଥଳ ଦର୍ଶନ କରିବା ସହିତ ଦେହକୁ ବ୍ରଜଧୂଳିରେ ଅଭିଷିକ୍ତ କରି ପାବନ କରିଦେଲେ ସେ ଦୁହେଁ। ଯମୁନାର ପବିତ୍ର ନୀଳ ଜଳରେ ସ୍ନାନ କରି ନେତ୍ର ଓ ମନକୁ ଧନ୍ୟ କଲେ। ଗୋପାଳ ଜୀଉଙ୍କ କ୍ଷୀର-ଲବଣୀ ପ୍ରସାଦ ସେବନରେ ଆନନ୍ଦରେ ଦିନ କାଟି କିଛି ଦିନ ପରେ ଘରକୁ ଫେରି ଆସିଲେ।

ଅନେକ ଦିନ ବିତିଗଲା। ପରିବେଶ ବଦଳିଗଲା। ଗୃହକାର୍ଯ୍ୟର ଗ୍ରପରେ ବଡ଼ ବିପ୍ର ବୃନ୍ଦାବନର କଥା ଭୁଲିଗଲେ। ଛୋଟ ବିପ୍ରଙ୍କ ମନରେ ବିବାହ ପ୍ରତି ଆଗ୍ରହ ନ ଥିଲା, କିନ୍ତୁ ଗୋପାଳ ଜୀଉଙ୍କ ଆଗରେ ଦେଇଥିବା ପ୍ରତିଶ୍ରୁତି ମନେ ପକାଇ ଦିନେ ସେ ବଡ଼ ବିପ୍ରଙ୍କୁ କହିଲେ—''ବନ୍ଧୁ! ତୁମେ ବୃନ୍ଦାବନରେ ଦେଇଥିବା ବଚନ ଭୁଲିଗଲ କି?' ବଡ଼ ବିପ୍ର ହସି ହସି କହିଲେ—''ସତରେ ବନ୍ଧୁ! ନାନା ପ୍ରକାର ଗୃହ ଜଞ୍ଜାଳରେ ବ୍ୟସ୍ତ ରହିବାରୁ ମୋର ବିସ୍ମୃତି ହୋଇଗଲା। କିନ୍ତୁ ତୁମେ ଭାବ ନାହିଁ ଯେ ମୁଁ ମୋ ବଚନରୁ ଓହରି ଯାଇଛି ବୋଲି। ତୁମେ ନିଶ୍ଚିନ୍ତ ରହ; ଘରେ ପିଲାମାନଙ୍କୁ ପଗ୍ରରି ମୁଁ ଯଥାଶୀଘ୍ର ବିବାହ ମୁହୂର୍ତ୍ତ ନିର୍ଣ୍ଣୟ କରିଦେବି।''

ଦୁଇ ବନ୍ଧୁ ଆନନ୍ଦରେ ପ୍ରଭୁଙ୍କୁ ସ୍ମରଣ କରି ନିଜ ନିଜ ଘରକୁ ଗ୍ରଲିଗଲେ। ବଡ଼ ବିପ୍ର ମନରେ ଚିନ୍ତା ଲାଗି ରହିଲା ଯେ ସେ କେମିତି ଘର ଲୋକଙ୍କୁ ଏ ପ୍ରସ୍ତାବ ଜଣାଇବେ। ସେ ଜାଣିଥିଲେ ଯେ ସେମାନେ ନିଶ୍ଚୟ ତାଙ୍କ କଥାକୁ ବିରୋଧ କରିବେ। ତଥାପି ସେ ପୁତ୍ର-ଭାରିଜାଙ୍କ ଆଗରେ କଥାଟି ରଖିବାକୁ ଉପଯୁକ୍ତ ଅବସର ଖୋଜୁଥାନ୍ତି।

ଭୁବନଭାସ୍କର ସୂର୍ଯ୍ୟଦେବ ଅସ୍ତାଚଳକୁ ଗମନ କରିବା ପରେ ସଂଧ୍ୟା

ଦେବୀଙ୍କର ଆଗମନ ହେଲା । ଠାକୁର ଘରେ କାହାଳୀ, ଶଙ୍ଖ, ମର୍ଦ୍ଦଳ, କରତାଳି ଇତ୍ୟାଦିର ସୁମଧୁର ସ୍ୱର ମୁଖରିତ କଲା ଗୃହ ପରିବେଶକୁ । ପରିବାରର ସବୁ ଲୋକେ ଆସି ରୁଣ୍ଡ ହେଲେ ଠାକୁରଙ୍କ ଘରେ । ସେତେବେଳେ ଆମ ହିନ୍ଦୁ ସଂସ୍କୃତିର ଏହା ଏକ ଚିରାଚରିତ ପ୍ରଥା ଥିଲା ଯେ ସଂଧ୍ୟାବେଳେ ଲୋକେ ସବୁ କାମ ଛାଡ଼ି ଠାକୁରଙ୍କୁ ସ୍ମରଣ କରନ୍ତି । ପ୍ରତ୍ୟେକଙ୍କ ଘରେ ଭାଗବତ ଅଧ୍ୟାୟେ ପଢ଼ାଯିବା ପରେ ପରିବାରର ସମସ୍ତ ସଦସ୍ୟ ମିଶି ଭଗବାନଙ୍କ ନାମ ସଂକୀର୍ତ୍ତନ କରନ୍ତି । ତା'ପରେ କିଛି ସତ୍ସଙ୍ଗ ଆଲୋଚନା କରାଯାଏ । ପରିଶେଷରେ ଗୁରୁଜନଙ୍କୁ ପ୍ରଣାମ କରି ତାଙ୍କ ଠାରୁ ଆଶୀର୍ବାଦ ପାଇବାର ବିଧାନ ରହିଥାଏ । ଏତଦ୍ୱାରା ଘରେ ପରସ୍ପର ମଧ୍ୟରେ ମୈତ୍ରୀପୂର୍ଣ୍ଣ ବାତାବରଣ ସ୍ଥାପିତ ହୁଏ । କାହା ମନରେ କୌଣସି କଥାକୁ ନେଇ ମନାନ୍ତର ହୋଇଥିଲେ ତାହା ଦୂର ହୋଇଯାଏ ।

ପାରମ୍ପରିକ ରୀତି ଅନୁସାରେ ଭାଗବତ ପାଠ, ସଂକୀର୍ତ୍ତନ ଓ ସତ୍ସଙ୍ଗ କ୍ରମରେ ସେଦିନ ବ୍ରାହ୍ମଣ ଘରଲୋକଙ୍କୁ ବୃନ୍ଦାବନ ବିଷୟରେ କହି ଭାବବିଭୋର କରିଦେଲେ । ତୀର୍ଥଯାତ୍ରାର ଆନନ୍ଦ ଓ ଦେହ ରୁଗ୍ଣ ହେବା କଥା ଆଲୋଚନା ପ୍ରସଙ୍ଗରେ ଛୋଟ ବିପ୍ରଙ୍କ ସେବା ଭାବନାର ଭୂରି ଭୂରି ପ୍ରଶଂସା କରି ତାଙ୍କ ପ୍ରତି ପରିବାର ଜନଙ୍କ ମନ ଆକୃଷ୍ଟ କରିଦେଲେ । କହିଲେ, ''ସତରେ! ଛୋଟ ବିପ୍ର ନ ଥିଲେ ମୋ ପ୍ରାଣ ରହି ନ ଥାନ୍ତା । ଅସମୟରେ ସେବା କରି ମୃତ୍ୟୁଲୋକରୁ ସେ ମୋର ପ୍ରାଣକୁ ଫେରାଇ ଆଣିଲେ । ମୁଁ ଭାବୁଛି ଏ ଜୀବନରେ ତାଙ୍କର ଋଣ ଶୁଝି ପାରିବି ନାହିଁ ।''

ଏଭଳି ପ୍ରଶଂସା ଶୁଣି ଛୋଟ ବିପ୍ରଙ୍କ ପ୍ରତି ଘର ଲୋକଙ୍କର ପ୍ରୀତି ଭାବନା ବହୁ ଗୁଣିତ ହୋଇଗଲା । ବଡ଼ ବିପ୍ର ଭାବିଲେ, ଝିଅର ବିବାହ ପ୍ରସ୍ତାବ ରଖିବା ପାଇଁ ଏହା ସୁନ୍ଦର ଅବସର । ସେ ମୂଳରୁ ଶେଷ ପର୍ଯ୍ୟନ୍ତ ସବୁ ଘଟଣା ଶୁଣାଇ ଗୋପାଳ ଜୀଉଙ୍କ ଆଗରେ ଛୋଟ ବିପ୍ରଙ୍କୁ ଦେଇଥିବା ପ୍ରତିଶ୍ରୁତି ବିଷୟ କହିଲେ । ବିବାହ କଥା ଶୁଣିବା ମାତ୍ରେ ଘର ଲୋକେ ସାପ ଲାଙ୍ଗୁଡ଼ରେ ବାଡ଼ି ବାଜିବା ପରି କ୍ରୋଧରେ ପ୍ରଜ୍ୱଳିତ ହୋଇଉଠିଲେ । କ୍ଷଣକ ମଧ୍ୟରେ ସମସ୍ତଙ୍କ ହାବଭାବ ବଦଳିଗଲା । ସ୍ତ୍ରୀ ମୁଣ୍ଡ ପିଟି କହିଲା—''ମୁଁ ମୋ ଝିଅକୁ ନଦୀରେ ଭସାଇ ଦେବି ବରଂ, ସେ ଦରିଦ୍ର ହାତକୁ ଟେକି ଦେବି ନାହିଁ । ମନେ ରଖିଥାଅ, ଯଦି ଭୁଲ୍‌ରେ ବି ଏ କଥା ହେଲା, ତେବେ ମୁଁ ନିଶ୍ଚୟ ବିଷ ଖାଇ ଆତ୍ମହତ୍ୟା କରିବି । କି ଗୁଣ ଅଛି ସେ ପିଲାଟା ପାଖରେ! ମୁଁ ବଞ୍ଚି ଥାଉ ଥାଉ ଏହା କଦାପି ହେବାକୁ

ଦେବି ନାହିଁ।'' ବଡ଼ ପୁଅ ରାଗରେ ତମତମ ହୋଇ କହିଲା—''ବାପା! କାନ ଖୋଲି ମୋ କଥା ଶୁଣିରଖ। ରାଜରାଣୀ ପରି ମୋ ଭଉଣୀର ବିଭାଘର ହେବ ଗୋଟାଏ ଅକିଞ୍ଚନ, ଅନାଥ, କାଙ୍ଗାଳ ସାଙ୍ଗରେ! ତୁମେ କାହାକୁ ପଚାରି ଏ ଭଳି ପ୍ରତିଶ୍ରୁତି ଦେଲ? ବନ୍ଧୁ ସମସ୍କନ୍ଧ ହେବା ଦରକାର; ଅପାତ୍ରରେ ବନ୍ଧୁତ୍ୱ ବ୍ୟବହାର କଦାପି ସମ୍ଭବ ନୁହେଁ। ଜନସମାଜରେ ଆମର ନିନ୍ଦା ହେବ। ଯଦି ତୁମେ ଏଭଳି କର, ତେବେ ଆଉ ମୋତେ ପାଇବ ନାହିଁ।''

ସାନ ପୁଅ ମଧ୍ୟ ବଡ଼ ଭାଇ ଓ ମାଆ କଥାରେ ସହମତ ହୋଇ ବାପାଙ୍କୁ ବିରୋଧ କଲା। ଏହିଭଳି ଘରେ କଳହ ବଢ଼ି ଚାଲିଲା। ବ୍ରାହ୍ମଣ ବିଚରା କିଂକର୍ତ୍ତବ୍ୟବିମୂଢ଼ ହୋଇ କହିଲେ—''ଧୈର୍ଯ୍ୟ ଧର! ଧୈର୍ଯ୍ୟ ଧର! ଟିକିଏ ଥଣ୍ଡା ମୁଣ୍ଡରେ ବିଚାର କର। ତୁମମାନଙ୍କ କଥା ମୁଁ ବୁଝି ପାରୁଛି; କିନ୍ତୁ ମୁଁ ତ ଗୋପାଳ ଜୀଉଙ୍କ ଆଗରେ କଥା ଦେଇ ସାରିଛି। ସତ୍ୟ ଲଙ୍ଘନ କରିବି କିପରି? ଦେଇଥିବା ବଚନରୁ ଓହରିଯିବା କେତେ ବଡ଼ ପାପ, ତାହା ବୁଝିଛ ନା ନାହିଁ? ରାଜା ବଳି ବାମନ ଭଗବାନଙ୍କୁ ତିନି ପାଦ ଭୂମି ଦେବା ପାଇଁ ଥରେ ଯେଉଁ ସତ୍ୟ କରିଦେଲା, ସେଥିରେ ଅଟଳ ରହିଲା। ଶୁକ୍ରାଚାର୍ଯ୍ୟ ମନା କରିବା ସତ୍ତ୍ୱେ ସେ ପଛଘୁଞ୍ଚା ଦେଲା ନାହିଁ। ଭାଗବତରେ କୁହାଯାଇଛି, ଯେ କାହାକୁ କିଛି ଦେବା ପାଇଁ ପ୍ରତିଶ୍ରୁତି ଦେଇ ଫାଙ୍କି ଦିଏ, ତାକୁ ଘୋର ନରକ ଭୋଗ କରିବାକୁ ପଡ଼େ—**'ନିଷ୍ଠାଂ ତେ ନରକେ ମନ୍ୟେ ହ୍ୟପ୍ରଦାତୁଃ ପ୍ରତିଶ୍ରୁତମ୍।'** ତେବେ ଜାଣୁ ଜାଣୁ ମୁଁ ମୋ ସତ୍ୟ ଛାଡ଼ିଦେବି କିପରି?''

ଘର ଲୋକେ କହିଲେ—''ଏ ଝିଅ କେବଳ ତୁମ ସମ୍ପତ୍ତି ନୁହେଁ ଯେ ତୁମେ ଯାହାକୁ ପାରିବ ଦେଇଦେବ। ଇଏ ଆମ ସମସ୍ତଙ୍କର ଧନ। ତେଣୁ ସମସ୍ତଙ୍କ ଅନୁମତି ବିନା କାହାକୁ ଦେବାର ଅଧିକାର ତୁମର ନାହିଁ। ଆଉ ଯଦି ତୁମେ କଥା ଦେଇଛ ବୋଲି କହୁଛ, ତେବେ ତାହାକୁ ଫାଙ୍କି ଦେବାର ଅନେକ ଉପାୟ ରହିଛି। ତୁମେ କଥା ଦେବାବେଳେ କିଏ ଦେଖିଛି ନା ଶୁଣିଛି? ତୁମେ କହିଦେବ ଯେ ସେତେବେଳେ ମୋ ମୁଣ୍ଡ ଠିକ୍ ନ ଥିଲା। ନଚେତ୍ କହିଦେବ ଯେ ସେ କଥା ମୋର ମନେ ନାହିଁ।'' ବ୍ରାହ୍ମଣ କହିଲେ—''କେହି ଦେଖି ନାହାନ୍ତି କେମିତି? ଗୋପାଳ ଜୀଉଙ୍କୁ ସାକ୍ଷୀ ରଖି ମୁଁ କନ୍ୟା ଦେବାକୁ ତ୍ରିବାର ସତ୍ୟ କରିଥିଲି। ଅନ୍ୟ କାହାକୁ ଠକି ଦେବା ସିନା ସହଜ, କିନ୍ତୁ ଠାକୁରଙ୍କୁ ତ ଠକି ହେବ ନାହିଁ! ଦରକାର ପଡ଼ିଲେ ଛୋଟ ବିପ୍ର ତାଙ୍କୁ ସାକ୍ଷୀ ଦେବାକୁ ଡାକି ଆଣିବ ବୋଲି

କହି ରଖିଛି । ତା' ଛଡ଼ା ଛଳନା ସତ୍ୟ ଭଳି ଜଣା ପଡ଼ୁଥିଲେ ମଧ୍ୟ ତାହା କଦାପି ସତ୍ୟ ହୋଇ ନ ପାରେ—**'ନୈତଦ୍ ସତ୍ୟଂ ଯଦ୍ ଛଳେନାନୁବିଦ୍ଧମ୍'** । ସାମାନ୍ୟ ଛଳନାପୂର୍ବକ **'ନର ବା କୁଞ୍ଜର ଅଶ୍ୱତ୍ଥାମା ହତୋ'** କହିଥିବାରୁ ଯୁଧିଷ୍ଠିରଙ୍କ ଭଳି ଧର୍ମାତ୍ମାଙ୍କୁ ମଧ୍ୟ ନରକ ଦର୍ଶନ କରିବାକୁ ପଡ଼ିଲା । ତେଣୁ ମୋ ଜୀବନ ଚାଲିଯିବ ପଛେ, ମୁଁ ଅସତ୍ୟ କହିବି ନାହିଁ ।'' ବଡ଼ ପୁଅ ବାପାଙ୍କ କଥାକୁ ତାଚ୍ଛଲ୍ୟ କରି କହିଲା—''ସାକ୍ଷୀ ଦେବାକୁ ବୃନ୍ଦାବନରୁ ଆସିବେ ଗୋପାଳ! ମୂର୍ତ୍ତି ପୁଣି ସାକ୍ଷୀ ଦେବ! ଅସମ୍ଭବ, ସମ୍ପୂର୍ଣ୍ଣ ଅସମ୍ଭବ! ହଉ, ଯଦି ତୁମେ ସେଇ ମରହଟିଆ କଥାକୁ ଧରି ବସୁଛ, ବସୁଥାଅ; ଆମର କିଛି ଆପତ୍ତି ନାହିଁ । ଛଳନା କଲେ ପାପ ଲାଗିବ ବୋଲି ଯଦି ତୁମର ଡର ଅଛି, ତେବେ ତୁମେ କିଛି ନ କହି ଚୁପ୍ ରହିବ । ଆମେ ସବୁ କଥା ବୁଝିନେବୁ ।''

ଏହିଭଳି ଘରେ ଧୀରେ ଧୀରେ କଳି ତକରାଳ ବଢ଼ି ଚାଲିଲା । ପାଖପଡ଼ିଶା ଘରର ଲୋକେ ଆସି ରୁଣ୍ଡ ହୋଇଗଲେ । ପାଟିତୁଣ୍ଡ ଶୁଣି ଛୋଟ ବିପ୍ର ମଧ୍ୟ ଆସି ପହଞ୍ଚିଗଲେ । ତାଙ୍କୁ ଦେଖି ନିଆଁରେ ଘିଅ ପଡ଼ିଯିବା ଭଳି ସେମାନଙ୍କ କ୍ରୋଧାଗ୍ନି ହୁ ହୁ ହୋଇ ଜଳି ଉଠିଲା । ସମସ୍ତେ ଏକ ସ୍ୱରରେ କହିଲେ—''ଯଦି ତୋତେ ଭଲ ଗତି ଅଛି, ପ୍ରାଣ ଘେନି ଏଠାରୁ ପଳେଇଯା । ନଚେତ୍ ଭଲ ହେବ ନାହିଁ । ହଇ ହୋ! ଦେଖ ଏଇଟାର କେଡ଼େ ସାହସ! ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଉଛି!

ଗାଆଁର ଭଦ୍ରଲୋକେ କହିଲେ—ରହ, ରହ! କଥା କ'ଣ? ଏତେ ପାଟିତୁଣ୍ଡ କାହିଁକି? ବଡ଼ ପୁଅ କହିଲା—ଇଏ ମୋ ବାପାଙ୍କୁ ଭାଙ୍ଗ ଖୁଆଇ ଅଚେତ କରିଦେଲା । ତାଙ୍କର ଲୁଗାପଟା, ଟଙ୍କା ପଇସା ସବୁ ନେଇଯାଇ ଶେଷକୁ ପ୍ରାଣ ନେବାକୁ ବସିଥିଲା । ବାପା ଅସହାୟ ଅବସ୍ଥାରେ ପ୍ରାଣ ବିକଳରେ ଝିଅ ବାହା କରିବାକୁ କଥା ଦେଇଦେଲେ । ଆତଙ୍କ କାଳ କଥା କେବେ କ'ଣ ସତ୍ୟ ହୋଇପାରେ? ଛୋଟ ବିପ୍ର ବିନମ୍ର ଭାବରେ କହିଲେ—''ମୋର ବିବାହ ପାଇଁ ଆଗ୍ରହ ନାହିଁ । ତୁମ ବାପା ଠାକୁରଙ୍କ ଆଗରେ ଦେଇଥିବା କଥାକୁ ମୁଁ ଖାଲି ମନେ ପକାଇ ଦେଲି । ଏହାଙ୍କର କାଳେ ଅନିଷ୍ଟ ହୋଇଯିବ, ସେଥିପାଇଁ ମୋ ମନରେ ଦୁଃଖ ।''

ଭଦ୍ର ଲୋକେ କହିଲେ—''ଇଏ ତୁମକୁ କଥା ଦେଇଥିଲେ ବୋଲି କୌଣସି ପ୍ରମାଣ ଅଛି? ଏଥିର କେହି ସାକ୍ଷୀ ଅଛନ୍ତି? ଯଦି କେହି ସାକ୍ଷୀ ଦେଇ ଦିଅନ୍ତି,

ତେବେ ତୁମ କଥାକୁ ସ୍ୱୀକାର କରାଯିବ।" ଛୋଟ ବିପ୍ର କହିଲେ—"ତୁମେମାନେ ନିୟମ କରି କୁହ। ଯଦି ଉଚିତ ନ୍ୟାୟ କରିବ, ତେବେ ମୁଁ ସାକ୍ଷୀଙ୍କୁ ଡାକି ଆଣି ପାରିବି। ବୃନ୍ଦାବନ ଧାମର ଠାକୁର ଶ୍ରୀ ଗୋପାଳ ଜୀଉ ହେଉଛନ୍ତି ଆମ ଦୁହିଁଙ୍କର ସାକ୍ଷୀ। ତାଙ୍କ ଆଗରେ ଇଏ ମୋତେ କଥା ଦେଇଥିଲେ। ଏବେ ତୁମେ ଗୋଟିଏ ଚୁକ୍ତିପତ୍ର ଲେଖିଦିଅ। ବୃନ୍ଦାବନରୁ ଗୋପାଳ ଜୀଉ ଆସିବା ପରେ ଯଦି ତୁମେ ନ ମାନିବ!"

ସମସ୍ତେ ତା' କଥାରେ ସହମତ ହୋଇ ଗୋଟିଏ ଚୁକ୍ତିପତ୍ର ଲେଖିଦେଲେ। ଭାବିଲେ, ଏଇଟା ଗୋଟେ ବଦ୍ଧ ପାଗଳ। ବୃନ୍ଦାବନରୁ କେବେ କ'ଣ ଠାକୁର ଆସିବେ ନା ସାକ୍ଷୀ ଦେବେ! ଆଉ ଯଦି ଇଏ ମୂର୍ତ୍ତିଙ୍କୁ ଉଠାଇ ଆଣେ, ତେବେ ସେ କ'ଣ କେବେ ଉତ୍ତର ଦେବେ? ଏଭଳି ଭାବି ଭଦ୍ରଲୋକେ ଏକ ପ୍ରକାରେ ବଡ଼ ବିପ୍ରଙ୍କର କୁଟୁମ୍ବ ଲୋକଙ୍କ ପକ୍ଷ ନେଲେ। କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ ଭକ୍ତ ପାଇଁ ଠାକୁର ସବୁ କିଛି କରି ପାରନ୍ତି ବୋଲି। ଅବିଶ୍ୱାସୀ ଲୋକଙ୍କୁ ପ୍ରଭୁଙ୍କ ଶ୍ରୀବିଗ୍ରହ କାଠ ଓ ପଥରର ପ୍ରତିମା ଭଳି ଲାଗେ। କିନ୍ତୁ ଭକ୍ତଙ୍କ ପାଇଁ ସେ ସାକ୍ଷାତ୍ ସଚଳ ଈଶ୍ୱର। ନାସ୍ତିକ ଲୋକେ ଛୋଟ ବିପ୍ରର କଥାକୁ ତାଚ୍ଛଲ୍ୟ କରି ଉଡ଼ାଇଦେଲେ। ଆସ୍ତିକ ଲୋକେ କୁହାକୁହି ହେଉଥାନ୍ତି, ଭଗବାନ ବଡ଼ ଦୟାଳୁ! ସେ ଭକ୍ତ ପାଇଁ ଅସମ୍ଭବକୁ ସମ୍ଭବ କରି ପାରନ୍ତି। ଏହାର ଭାବନା ଦେଖି ଲାଗୁଛି ଭଗବାନ ନିଶ୍ଚୟ ଆସିବେ। ଭାରି ଭଲ ହେବ, ମରୁଭୂମିରେ ଗଙ୍ଗା ବହିବା ଭଳି ଆମ୍ଭ ଭଳି ଗୃହ ଜଞ୍ଜାଳରେ ପଡ଼ିଥିବା ପାପୀ ଲୋକଙ୍କୁ ପ୍ରଭୁଙ୍କ ଦର୍ଶନ ମିଳିବ! ବଡ଼ ବିପ୍ରଙ୍କ ମନ ମଧ୍ୟ ଭାରି ଆନନ୍ଦ। ତାଙ୍କୁ ଦୃଢ଼ ବିଶ୍ୱାସ ଥିଲା ଯେ ଗୋପାଳ ଜୀଉ ନିଶ୍ଚୟ ଆସିବେ।

ଛୋଟ ବିପ୍ର ଆଉ କାଳ ବିଳମ୍ବ ନ କରି ବାହାରିଲେ ବୃନ୍ଦାବନ। ଗୋପାଳ ଜୀଉଙ୍କ ମନ୍ଦିରରେ ପହଞ୍ଚି ପ୍ରଭୁଙ୍କ ପାଦତଳେ ଗୁହାରି ଜଣାଇ କହିଲେ—"ହେ ଅନ୍ତର୍ଯାମୀ! ହେ ଦୟାମୟ! ହେ ବ୍ରଜେନ୍ଦ୍ରନନ୍ଦନ! ତୁମେ ଆମ ଦୁହିଁଙ୍କୁ ସହାୟ ହୁଅ। ତୁମେ ଆଉ ଆଉ ମୋର ବନ୍ଧୁ କ'ଣ ସତ୍ୟଭ୍ରଷ୍ଟ ହୋଇଯିବ! ଆମେ ଦୁହେଁ ଧର୍ମସଂକଟରେ ପଡ଼ିଛୁ ପ୍ରଭୁ! ଆମ କଥାକୁ ଲୋକେ ଅସତ୍ୟ ବୋଲି କହି ଧୋକ୍କା ଦେବାକୁ ଚାହୁଁଛନ୍ତି। ଯଦି ଏଭଳି ହୋଇଯାଏ, ତୁମ କୀର୍ତ୍ତିରେ କଳଙ୍କ ଲାଗିବ ଦୟାମୟ! ଶରଣାଗତ ଭକ୍ତର ବିନତି ସ୍ୱୀକାର କରି ଚାଲ ମୋ ସଙ୍ଗରେ ସାକ୍ଷୀ ଦେଇ ଆସିବ।"

ଭଗବାନ କହିଲେ—"ତୁମେ ତୁମ ଘରକୁ ଫେରିଯାଅ ବିପ୍ରବର! ଭଦ୍ରଲୋକଙ୍କୁ ଡାକି ଗୋଟିଏ ସଭାର ଆୟୋଜନ କର। ମୁଁ ସେଇଠି ଆବିର୍ଭୂତ ହୋଇ ସାକ୍ଷୀ ଦେଇଦେବି।"

ବିପ୍ର କିନ୍ତୁ ସେଥିରେ ରାଜି ହେଲେ ନାହିଁ। କେବଳ ସାକ୍ଷୀ ଦେବା ପାଇଁ ଗୋପାଳଙ୍କୁ ନେବା ତ ତାଙ୍କର ଉଦ୍ଦେଶ୍ୟ ନ ଥିଲା। ଏହା ପଛରେ ଲୁଚି ରହିଥିଲା ତାଙ୍କର ବିଗ୍ରହ ସେବାର ଅଭିଳାଷ। ଭଗବାନ ଆବିର୍ଭାବ ହୋଇ କହିଦେବା ପରେ ତ ଅନ୍ତର୍ଦ୍ଧାନ ହୋଇଯିବେ। ସବୁବେଳ ପାଇଁ ପ୍ରଭୁଙ୍କ ସେବା ସୁଖ ଓ ଦର୍ଶନର ଆନନ୍ଦ ମିଳି ପାରିବ ନାହିଁ। ତେଣୁ ସେ ଚତୁରତାର ସହ କହିଲେ—"ପ୍ରଭୁ! ତୁମେ ଚତୁର୍ଭୁଜରୂପରେ ଆବିର୍ଭୂତ ହୋଇ ସାକ୍ଷୀ ଦେଇଦେଲେ ମଧ୍ୟ ସେହି ନାସ୍ତିକ ଲୋକେ ତାହା ମାନିବେ ନାହିଁ। ତେଣୁ ତୁମକୁ ଏହି ଗୋପାଳ ରୂପରେ ମୋ ସଙ୍ଗେ ଯିବାକୁ ପଡ଼ିବ।"

ଭକ୍ତର ଅନ୍ତର ଭାବନାକୁ ଭଗବାନ ବେଶ୍ ବୁଝି ପାରିଲେ। ତଥାପି ଗୋପାଳ ଜୀଉ ସୁରଙ୍ଗ ଅଧରରେ ମନ୍ଦ ମନ୍ଦ ହସି କହିଲେ—"ବିପ୍ରବର! ତୁମେ ବାତୁଳ ହୋଇଲ କି? ଶିଳା ପ୍ରତିମା କେବେ କ'ଣ ଚାଲିପାରେ?" ବିପ୍ର କହିଲେ—"ମାୟାଧର! ମୋ ଉପରେ ଆଉ କପଟ-ଜାଲ ଫିଙ୍ଗ ନାହିଁ। ପ୍ରତିମା ଯଦି କଥା କହି ପାରୁଛି, ତେବେ ଚାଲି ପାରିବ ନାହିଁ କାହିଁକି? ତୁମ ବିହୁନେ ମୋର ଆଉ କେହି ସାହା ନାହିଁ ଦୟାନିଧି! ମୁଁ ତୁମକୁ ସଙ୍ଗରେ ନେଇ ଯିବି ବୋଲି ଭଦ୍ରଲୋକଙ୍କୁ କଥା ଦେଇ ଆସିଛି। ଆଉ ବିଳମ୍ବ ନ କରି ମୋ ସଙ୍ଗରେ ଚାଲ।"

ସେପଟେ ବଡ଼ ବିପ୍ର ମଧ୍ୟ ଅଖିଆ ଅପିଆ ପ୍ରଭୁଙ୍କ ପାଦ ତଳେ ଭକ୍ତିପୂତ ଗୁହାରୀ ଜଣାଉ ଥାଆନ୍ତି। କହୁଥାନ୍ତି, "ହେ ସ୍ୱାମୀ! ମୁଁ ଧର୍ମସଂକଟରେ ପଡ଼ିଛି। ମୋତେ ସାହା ହୁଅ ପ୍ରଭୁ! ଯେପରି ମୋର ସତ୍ୟ ରକ୍ଷା ହେବ ଏବଂ ଘର ଲୋକେ ଅଶାନ୍ତି ନ ହେବେ, ସେଭଳି କୌଣସି ଉପାୟ କର ଭକ୍ତବତ୍ସଳ!"

ଦୁଇ ଭକ୍ତଙ୍କର ଭାବ ଆଗରେ ଭଗବାନ ହାରିଗଲେ। ତାଙ୍କ ପାଖରେ ଭକ୍ତକୁ ଭଣ୍ଡାଇବାକୁ ଆଉ କୌଣସି ବାଟ ନ ଥିଲା। ସେ ପ୍ରସନ୍ନ ବଦନରେ କହିଲେ—"ବିପ୍ରବର! ମୁଁ ତୁମ ସଙ୍ଗରେ ଯିବି ସତ, କିନ୍ତୁ ତୁମକୁ ମୋର ଦୁଇଟି ସର୍ତ୍ତ ମାନିବାକୁ ପଡ଼ିବ। ପ୍ରତିଦିନ ଦୁଇ ସେର ଅନ୍ନ ଭୋଗ ଲଗାଇବ ଏବଂ ବାଟରେ ଚାଲିଲାବେଳେ ପଛକୁ ଲେଉଟି ଚାହିଁବ ନାହିଁ। ମୁଁ ତୁମ ପଛେ ପଛେ

ଚ୍ଚାଲିଥିବି। ମୋର ନୂପୁର ଶବ୍ଦରୁ ତୁମେ ଜାଣିପାରିବ ଯେ ମୁଁ ଆସୁଛି ବୋଲି। ଯଦି ପଛକୁ ଚ୍ଚାହିଁଦେବ, ତେବେ ମୁଁ ସେଇଠି ରହିଯିବି; ଆଉ ଆଗକୁ ଯିବି ନାହିଁ। ଛୋଟ ବିପ୍ର କହିଲେ—''ପ୍ରଭୁ! ତୁମର ସବୁ ସର୍ତ୍ତ ମଞ୍ଜୁର। ଦୁଇ ସେର ଜାଗାରେ ଚ୍ଚାରି ସେର ଚ୍ଚାଉଳର ଅନ୍ନ ଭୋଗ ଲଗାଇବି। ମୋ ଭଳି ଅକିଞ୍ଚନ ପାଖରେ ତ କିଛି ନାହିଁ, ତଥାପି ତୁମେ ସଙ୍ଗରେ ଥିଲେ କିଛି ଅଭାବ ରହିବ ନାହିଁ। ଏ ସେବକ ଥାଉ ଥାଉ ତୁମର କିଛି ଅସୁବିଧା ହେବ ନାହିଁ ପ୍ରଭୁ! କିଛି ନ ହେଲେ ଗାଁରୁ ଭିକ୍ଷା କରି ଅନ୍ନ ମାଗି ଆଣିବି।''

ଆଗେ ଆଗେ ଚ୍ଚାଲିଲେ ଛୋଟ ବିପ୍ର ଏବଂ ପଛେ ପଛେ ଚ୍ଚାଲିଲେ ଭକ୍ତବତ୍ସଳ ଭଗବାନ। *'ଧେନୁ ପଛେ ପଛେ ବତ୍ସା ଗମେ କ୍ଷୀର ଲୋଭେ। ଭକତ ପଛରେ ତୁହି ଥାଉ ସେହି ଭାବେ॥'* ଏହି ବଚନକୁ ପ୍ରଭୁ ସତ୍ୟ କରି ଦେଖାଇଦେଲେ। ଏଭଳି ଦୃଶ୍ୟରେ କାହା ମନ ବା ଲାଖି ନ ଯିବ! ଛୋଟ ବିପ୍ରଙ୍କ ମୁଖପଦ୍ମ ପୂର୍ଣ୍ଣିମା ଚ୍ଚାନ୍ଦ ଭଳି ଅତି ପ୍ରଫୁଲ୍ଲିତ ହୋଇ ଉଠିଲା। ସେ ମନେ ମନେ ଭାବୁଥାନ୍ତି, ପ୍ରଭୁ ସତରେ କେଡ଼େ ଦୟାମୟ! ମୋ ଭଳି ତୁଚ୍ଛ ସେବକ ଉପରେ ତାଙ୍କର କେତେ କରୁଣା!

ଏହିଭଳି ଶହେ ଦିନର ବାଟ ଅତି ଆନନ୍ଦରେ ଅତିକ୍ରାନ୍ତ ହୋଇଗଲା। ଯେଉଁଠି ରାତି ହୁଏ, ସେଠାରେ ଗୋପାଳ ଜୀଉ ବିଶ୍ରାମ କରନ୍ତି। ଛୋଟ ବିପ୍ର ପ୍ରଭୁଙ୍କ ଭୋଗରାଗର ବ୍ୟବସ୍ଥା କରି ମଣୋହି କରାନ୍ତି। ପାଦ ମଞ୍ଚାଳି ପ୍ରଭୁଙ୍କ ପଥଶ୍ରମ ଦୂର କରନ୍ତି। ପ୍ରଭୁ ବିଶ୍ରାମ କରିବା ପରେ ନିଜେ ପ୍ରସାଦ ପାଇ ବିଶ୍ରାମ କରନ୍ତି ଏବଂ ପ୍ରଭାତରୁ ପ୍ରଭୁଙ୍କ ସେବା-ପୂଜା ଓ ବାଳଭୋଗ ସାରି ପୁଣି ଯାତ୍ରା ଆରମ୍ଭ କରନ୍ତି। ଏହିଭଳି ଚ୍ଚାଲୁ ଚ୍ଚାଲୁ ଗ୍ରାମ ନିକଟ ହୋଇ ଆସିଲା। ଗ୍ରାମର ଅନତି ଦୂରରେ ବାଲିଆ ରାସ୍ତାରେ ଚ୍ଚାଲିଲା ବେଳେ ପ୍ରଭୁଙ୍କ ଚରଣ ନୂପୁର ଭିତରେ ବାଲି ପଶି ଯିବାରୁ ଆଉ ନୂପୁରର ରୁଣ-ଝୁଣ ଶବ୍ଦ ଶୁଭିଲା ନାହିଁ। ଭକ୍ତ ମନରେ ସନ୍ଦେହ ଜାତ ହେଲା ଯେ କାଳେ ପ୍ରଭୁ ମୋତେ ଠକି ଦେଲେ କି? ସେ କେଉଁଠି ଅଟକି ଗଲେ ନାହିଁ ତ? ତା'ଛଡ଼ା ଗୋପାଳଙ୍କ ରୂପ ଲାବଣ୍ୟ ଓ ଜଗଣାବଙ୍କ ସମ ସୁଲଳିତ ଚ୍ଚାଲି ଦର୍ଶନ ପାଇଁ ତାଙ୍କ ମନ ବ୍ୟାକୁଳ ହୋଇ ଉଠିଲା। ସେ ଟିକିଏ କଣେଇ ପଛକୁ ଚ୍ଚାହିଁଦେଲା ବେଳକୁ ଠାକୁରେ ସେଇଠି ଅଟକିଗଲେ। ପ୍ରଭୁଙ୍କ ରୂପ ସୁଧା ପାନ କରି ଛୋଟ ବିପ୍ରଙ୍କ ମନ ମୟୂର ଆନନ୍ଦରେ ନୃତ୍ୟ କଲା। ତାଙ୍କର ଦର୍ଶନ ପିପାସା ବେଳୁ ବେଳ ବଢ଼ି ଚ୍ଚାଲିଲା। ଚକୋର ଚନ୍ଦ୍ରକୁ ଚ୍ଚାହିଁବା

ପରି ସେ ଅପଲକ ନୟନ ମାର୍ଗରେ ପ୍ରଭୁଙ୍କୁ ହୃଦୟରେ ବସାଇ ଦେଲେ। କହିଲେ—"ପ୍ରଭୁ! ଥକିଗଲ କି? ଏଇ ଆମ ଗାଆଁ ପାଖେଇ ଆସିଲାଣି। ଖୁବ୍ କମ୍ ସମୟ ଭିତରେ ଆମେ ପହଞ୍ଚିଯିବା।" ଭଗବାନ କହିଲେ—"ଭକ୍ତବର! ମୁଁ ତୁମକୁ କଥା ଦେଇଥିଲି ନା, ପଛକୁ ଲେଉଟି ଚାହିଁବ ନାହିଁ ବୋଲି? ଏବେ ଏଠାରୁ ଆଉ ମୁଁ ଉଠିବି ନାହିଁ। ମୁଁ ଏଇଠି ରହୁଛି, ତୁମେ ଗାଆଁ ଲୋକଙ୍କୁ ଡାକିଆଣ।"

ଛୋଟ ବିପ୍ର ଯାଇ ଭଦ୍ରଲୋକଙ୍କୁ ଠାକୁରଙ୍କ ଆଗମନର ସୂଚନା ଦେଲେ। ସମସ୍ତେ ଆଚମ୍ବିତ ହୋଇଗଲେ! ସତରେ କ'ଣ ଠାକୁର ଆସିଗଲେ ସାକ୍ଷୀ ଦେବା ପାଇଁ! ଯାଇ ଦେଖନ୍ତି ତ ଚନ୍ଦନଚର୍ଚ୍ଚିତ ନୀଳକଳେବରଧାରୀ ବନମାଳୀ ଛନ୍ଦା ଚରଣରେ ଉଭା ହୋଇଛନ୍ତି। ତାଙ୍କ ଚରଣରେ ଶୋଭା ପାଉଛି ସୁବର୍ଣ୍ଣ ନୂପୁର। କଟିତଟରେ କ୍ଷୁଦ୍ର ଘଣ୍ଟିକା। କଣ୍ଠରେ କୌସ୍ତୁଭ ମଣି। ଭୁଜରେ ବାଜୁବନ୍ଧ। ହସ୍ତରେ ହୀରା ଜଟିତ ସ୍ୱର୍ଣ୍ଣ କଙ୍କଣ। କର୍ଣ୍ଣରେ ଦୋଳାୟମାନ ହେଉଛି କୁଣ୍ଡଳ। ମୁଖକମଳର ଆଭା ଶରତଚନ୍ଦ୍ରର କାନ୍ତିକୁ ତିରସ୍କୃତ କରୁଥାଏ। ଉନ୍ମୁକ୍ତ କେଶରାଶି ମଧ୍ୟରେ ଶ୍ୱେତ ପୁଷ୍ପ ଦାଉ ଦାଉ ଝଟକୁ ଥାଏ। ସଘନ ଓ ସ୍ନିଗ୍ଧ କେଶରେ ଖୋସା ଯାଇଥିବା ମୟୂର ମୁକୁଟର ଶୋଭା ନୀଳ ମେଘରେ ସପ୍ତରଙ୍ଗୀ ଇନ୍ଦ୍ରଧନୁ ଭଳି ଶୋଭା ପାଉଥାଏ। ସମସ୍ତେ ଏଭଳି ଭୁବନମୋହନ ପ୍ରଭୁଙ୍କ ଦର୍ଶନ ପାଇ ତନୁମନ ଭୁଲିଗଲେ।

ଭଗବାନ ମେଘ ଗମ୍ଭୀର ବାଣୀରେ କହିଲେ—"ହେ ଗ୍ରାମବାସୀବୃନ୍ଦ! ଛୋଟ ବିପ୍ରଙ୍କ କଥା ଅସତ୍ୟ ନୁହେଁ। ମୋତେ ସାକ୍ଷୀ ରଖି ବଡ଼ ବିପ୍ର ଏହାଙ୍କୁ କନ୍ୟାଦାନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ। ତୁମେମାନେ ଏଥିରେ ତିଳେମାତ୍ର ସନ୍ଦେହ ନ କରି ଆନନ୍ଦରେ ବିବାହ କାର୍ଯ୍ୟ ସମ୍ପାଦନ କର। ବରକନ୍ୟାଙ୍କର ଅବଶ୍ୟ ମଙ୍ଗଳ ହେବ।"

ପ୍ରଭୁଙ୍କ ଅମୃତବର୍ଷୀ ଅନ୍ତରୀକ୍ଷ ବାଣୀ ଶୁଣି ବଡ଼ ବିପ୍ରଙ୍କ ଆନନ୍ଦର ସୀମା ରହିଲା ନାହିଁ। ଘରଲୋକେ ଏଭଳି ବିଚିତ୍ର ଘଟଣା ଦେଖି ଡରିଗଲେ। ସ୍ୱୟଂ ଭଗବାନ ଯଦି ଏତେ ବାଟରୁ ସାକ୍ଷୀ ଦେବାକୁ ଆସି ପାରନ୍ତି, ତେବେ ଆମେ ଅସତ୍ୟର ପକ୍ଷ ନେଲେ ତା'ର ପରିଣାମସ୍ୱରୂପ ଆମକୁ ଭୟଙ୍କର ଦଣ୍ଡ ମଧ୍ୟ ଦେଇ ପାରିବେ। ସେମାନେ ରାଜି ହୋଇଗଲେ। ସେମାନଙ୍କ ହୃଦୟରେ ଏହି ଭୟରୁ ଭକ୍ତି ମଧ୍ୟ ଜନ୍ମ ନେଲା ଗୋପାଳଙ୍କ ଚରଣରେ। ଗାଆଁର ଅନେକ ଲୋକ ଛୋଟ ବିପ୍ରଙ୍କ ମହତ ଗୁଣରେ ପ୍ରଭାବିତ ହୋଇ ତାଙ୍କ ସଙ୍ଗେ ନିଜ ନିଜ କନ୍ୟାକୁ

ବିବାହ ଦେବା ପାଇଁ ଆଗଭର ହେଲେ। ମାତ୍ର ଶେଷ ନିଷ୍ପତ୍ତି ହେଲା ଯେ, ଭଗବାନ ଯେଉଁ ପ୍ରସ୍ତାବ ସ୍ୱୀକାର କରିଛନ୍ତି, ତାହା ହିଁ ହେବ। ବଡ଼ ଆନନ୍ଦ ଉତ୍ସାହରେ ଶ୍ରୀ ଗୋପାଳ ଜୀଉଙ୍କ ସାନ୍ନିଧ୍ୟରେ ଭୋଜିଭାତ ସହିତ ଶୁଭ ଲଗ୍ନରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା।

ଫୁଲର ସୁବାସ ପରି ଛୋଟ ବିପ୍ରଙ୍କ ପ୍ରଭୁଭକ୍ତି ସୌରଭରେ ମହକି ଉଠିଲା ସମଗ୍ର ବିଦ୍ୟାନଗର। ପ୍ରଭୁଙ୍କ ଆଗମନ କଥା ସେଠାକାର ରାଜାଙ୍କ କାନରେ ପଡ଼ିଲା। ସେ ଅନେକ ସମ୍ଭାର ସହିତ ଶ୍ରୀ ଗୋପାଳ ଜୀଉଙ୍କ ପାଇଁ ସୁନ୍ଦର ଦେଉଳଟିଏ ତୋଳିଦେଲେ ଏବଂ ଭୋଗରାଗ ଓ ସେବାପୂଜାର ସମସ୍ତ ସୁଗ୍ରରୁ ବ୍ୟବସ୍ଥା କରାଇ ନିଜର ଜୀବନ ସଫଳ କଲେ। ପ୍ରଭୁ ଭକ୍ତର ଭାବ-ଡୋରିରେ ବନ୍ଧା ହୋଇ ସାକ୍ଷୀ ଦେବାକୁ ଯାଇଥିବାରୁ ତାଙ୍କ ନାମ ହେଲା ସାକ୍ଷୀଗୋପାଳ।

ରାଜା ପୁରୁଷୋତ୍ତମ ଦେବ କାଞ୍ଚିପୁର ବିଜୟ କରିବା ପରେ ସେଠାରୁ ଗୋପାଳଙ୍କୁ ଆଣି ପ୍ରଥମେ କଟକର ବାରବାଟୀ ଦୁର୍ଗରେ ସ୍ଥାପନା କଲେ। ତା'ପରେ କଳାପାହାଡ଼ର ଆକ୍ରମଣ ହେତୁ ଗୋପାଳ ଜୀଉ କିଛି ଦିନ ଚିଲିକା ନିକଟସ୍ଥ କନ୍ତୋଳପୁର ଗ୍ରାମରେ ବିରାଜମାନ ହେଲେ।

ଥରେ ପୁରୀର ରାଜା ଯାଇଥିଲେ ସାକ୍ଷୀଗୋପାଳଙ୍କ ଦର୍ଶନ ଉଦ୍ଦେଶ୍ୟରେ। ଭୁବନମୋହନଙ୍କ ରୂପ ସୌନ୍ଦର୍ଯ୍ୟରେ ତାଙ୍କ ମନ ଲାଖିଗଲା। ସେ ଅତି ଆଦରରେ ଠାକୁରଙ୍କୁ ଶ୍ରୀକ୍ଷେତ୍ର ପୁରୀ ଆସିବାକୁ ନିମନ୍ତ୍ରଣ ଦେଲେ। ରାଜାଙ୍କର ଶ୍ରଦ୍ଧା ଭାବନା ଦେଖି ଠାକୁରେ ନିମନ୍ତ୍ରଣ ସ୍ୱୀକାର କରି ତାଙ୍କ ସଙ୍ଗରେ ପୁରୀକୁ ବିଜେ କଲେ। ରାଜା ଜଗନ୍ନାଥଙ୍କ ପାଖରେ ଗୋପାଳ ଜୀଉଙ୍କୁ ବିରାଜମାନ କରାଇ ଖୁବ୍ ପୂଜାସତ୍କାର ସହିତ ବହୁ ପ୍ରକାର ଭୋଗରାଗର ବ୍ୟବସ୍ଥା କରିଦେଲେ। ଗୋପାଳ ଜୀଉ ତ ଖୁବ୍ ଖାଉଟିଆ ଠାକୁର। ଭଲ ଭଲ ଜିନିଷ ବାଛି ବାଛି ଆଗ ଖାଇ ଯାଆନ୍ତି ଆଉ ଜଗନ୍ନାଥଙ୍କ ପାଇଁ କାଞ୍ଜିଭାତ ଛାଡ଼ି ଦିଅନ୍ତି। ଦିନେ ଦୁଇଦିନ ତ ଅତିଥି ଭାବି ଜଗନ୍ନାଥ କିଛି କହିଲେ ନାହିଁ। କିନ୍ତୁ ସବୁ ଦିନ ସେଇ ଧନ୍ଦା, କେତେ ବା ସହିବେ। ତାଙ୍କ ମୁହଁ ଫିକା ପଡ଼ିଗଲା।

ଏ ଭିତରେ ଆଉ ଗୋଟିଏ ସମସ୍ୟା ଉପସ୍ଥିତ ହେଲା। ଦର୍ଶନାର୍ଥୀ ଭକ୍ତଜନ ଥରେ ଅଧେ ଜଗନ୍ନାଥଙ୍କୁ ଦେଖି ଅପଲକ ନେତ୍ରରେ ସାକ୍ଷୀଗୋପାଳଙ୍କୁ ଗ୍ରହିଁ ରହନ୍ତି। ତେଣୁ ଜଗନ୍ନାଥଙ୍କ ବଦନ ମ୍ଳାନ ହୋଇଗଲା। ରାଜା ପ୍ରଭୁଙ୍କୁ ବିଷଣ୍ଣ ବଦନ ଦେଖି ପଗ୍ରରିଲେ—"ଜୟ ଜୟ ପ୍ରଭୁ! ମନ ଦୁଃଖର କାରଣ? କ'ଣ

ହୋଇଛି ତୁମ୍ଭର!" ଜଗନ୍ନାଥ ବିଷର୍ଣ୍ଣ ମନରେ କହିଲେ—"ତିନି ଦିନ ହେଲା ଗୋଟିଏ ହେଲେ କାକରା ପିଠା ଖାଇବାକୁ ପାଇ ନାହିଁ। ଇଏ ସବୁ ସଫା କରି ଦେଉଛନ୍ତି।" ରାଜା କହିଲେ—"ଏଇ କଥାକୁ ଏତେ ଦୁଃଖୀ! କି ଅଭାବ ଅଛି ତୁମ ଭଣ୍ଡାରରେ! କାଲିଠାରୁ ଦିଗୁଣ ଭୋଗର ବ୍ୟବସ୍ଥା କରି ଦିଆଯିବ।

ଯେତେ ଯାହା କଲେ ବି ଜଗନ୍ନାଥଙ୍କ ସମସ୍ୟା ଦୂର ହେଲା ନାହିଁ। ଗୋପାଳ ଜୀଉଙ୍କୁ ତ ଖୁବ୍ ପ୍ରସାଦ ସେବନର ଅଭ୍ୟାସ ରହିଛି। ଗୋବର୍ଦ୍ଧନ ପୂଜା ବେଳେ ସେ ହଣ୍ଡା ହଣ୍ଡା ପ୍ରସାଦ ସଫା କରି ଦେଇଥିଲେ। ତେଣୁ **'ଯଥା ପୂର୍ବଂ ତଥା ପରମ୍'** ନ୍ୟାୟ ହୋଇଗଲା। ଏଥର ମହାପ୍ରଭୁ ଜଗନ୍ନାଥଙ୍କ ଧୈର୍ଯ୍ୟ ବନ୍ଧ ଭାଙ୍ଗିଗଲା। ସେ ଗୋପାଳ ଜୀଉଙ୍କ ସହିତ ହସଖୁସି, କଥାବାର୍ତ୍ତା ଇତ୍ୟାଦି ନ କରି ମନ ଦୁଃଖରେ ବସି ରହିଲେ। ଗୋପାଳ ଜୀଉ ପ୍ରଭୁଙ୍କର ମଉନ ଦଶା ଦେଖି ବୁଝିଗଲେ ଯେ ସେ ରହିବାରୁ ଜଗନ୍ନାଥ ଦେବଙ୍କୁ ଅସୁବିଧା ହେଉଛି। ଦିନେ ରାତିରେ ଅଜ୍ଞାତରେ ସେ ମନ୍ଦିରରୁ ବାହାରି ଗଲେ। ଏଣେ ମହାପ୍ରଭୁ ଜଗନ୍ନାଥ ରାଜାକୁ ସ୍ୱପ୍ନରେ କହିଲେ ଯେ ଗୋପାଳ ଜୀଉ ମନ ଦୁଃଖରେ ମନ୍ଦିର ଛାଡ଼ି ଚ୍ଲି ଯାଉଛନ୍ତି, ଶୀଘ୍ର ଯାଅ ତାଙ୍କୁ ପ୍ରସନ୍ନ କରି ଆଦରରେ ପାଛୋଟି ଆଣିବ। ରାଜାରାଣୀ ଦୁହେଁ ରାତି ଅଧରେ ଦୌଡ଼ିଲେ ଏବଂ ପ୍ରଭୁଙ୍କ ପାଦତଳେ ପଡ଼ି ବାହୁଡ଼ି ଯିବାକୁ ବହୁ ବିନତି କଲେ। ଠାକୁରେ କହିଲେ—"ମୁଁ ଆଉ ସେଠାକୁ ଯିବି ନାହିଁ, ଯଦି ତୁମର ମନ ଅଛି, ଏଇଠି ମୋ ସେବା-ପୂଜାର ବ୍ୟବସ୍ଥା କରିଦିଅ। ହଁ, ଆଉ ଗୋଟିଏ କଥା ମନେରଖ। ମୁଁ ଡାଲିଭାତ ଖାଇ ରହି ପାରିବି ନାହିଁ।"

ରାଜା କହିଲେ—କରୁଣାନିଧାନ! ଚିନ୍ତା କରନ୍ତୁ ନାହିଁ। ଘିଅ କଢ଼େଇ ଚୁଲିରୁ ଓହ୍ଲେଇବ ନାହିଁ। ସବୁ ଦିନ ନୂଆ ନୂଆ ପିଠାପଣା, ଭୋଗରାଗର ବ୍ୟବସ୍ଥା କରି ଦିଆଯିବ। ମିଠା ଖାଇ ଖାଇ ତୁମର ଯେବେ ଅରୁଚି ହୋଇଯିବ, ଆଜ୍ଞା ହେଲେ ଭାତ-ଡାଲି ତିଆରି କରି ଦିଆଯିବ। ଏହା ଶୁଣି ଗୋପାଳ ଜୀଉ ଅତି ପ୍ରସନ୍ନ ହୋଇଗଲେ। ରାଜା ତାଙ୍କ ପାଇଁ ପୁରୀ ମନ୍ଦିର ଭଳି ଆଉ ଗୋଟିଏ ମନ୍ଦିର ତୋଳି ଉତ୍ତମ ଭୋଗରାଗ ବ୍ୟବସ୍ଥା କରିଦେଲେ।

ବଙ୍ଗଳା ଭାଷାର ବୈଷ୍ଣବ କୋଷରେ ଉଲ୍ଲେଖ ମିଳେ ଯେ ଆଜିଠୁ ପ୍ରାୟ ଦୁଇ ଶହ ବର୍ଷ ପୂର୍ବେ 'ବାବା ବ୍ରହ୍ମଗ୍ୱରୀ' ନାମକ ଜନୈକ ବୈଷ୍ଣବ ସେଠାରେ ଗୋଟିଏ ସୁନ୍ଦର ମନ୍ଦିର ତୋଳିଦେଲେ। ଅଦ୍ୟାବଧି ସେହି ସତ୍ୟବାଦୀ ଗ୍ରାମରେ ନିର୍ମିତ ମନ୍ଦିରରେ ଶ୍ରୀରାଧାରାଣୀଙ୍କ ସଙ୍ଗେ ଗୋପାଳ ଜୀଉ ବିରାଜମାନ

ହୋଇ ପୂଜା ପାଉଛନ୍ତି ।

ଥରେ ପୁରୀର ମହାରାଣୀ ଗୋପାଳ ଜୀଉଙ୍କ ଦର୍ଶନ ନିମନ୍ତେ ଯାଇଥାନ୍ତି । ପ୍ରଭୁଙ୍କ ଲାବଣ୍ୟସିନ୍ଧୁ ତୁଲ୍ୟ ଶ୍ୟାମଳ ଅଙ୍ଗ କାନ୍ତି ଦର୍ଶନ କରି ତାଙ୍କ ହୃଦୟରେ ତରଙ୍ଗାୟିତ ହେଲା ଅପାର ଆନନ୍ଦ ଲହରି । ପ୍ରଭୁଙ୍କ ଅଙ୍ଗ ଅଙ୍ଗରେ ଖଚିତ ଆଭୂଷଣ ନିରେଖି ସେ ଅତ୍ୟନ୍ତ ପ୍ରୀତ ହେଲେ । ସହସା ତାଙ୍କର ଦୃଷ୍ଟି ପଡ଼ିଲା ପ୍ରଭୁଙ୍କ ଶୁକ ପକ୍ଷୀ ସମ ମନୋହର ନାସିକାରେ । ସର୍ବାଙ୍ଗ ଆଭୂଷଣରେ ସୁଶୋଭିତ ହୋଇଥିଲେହେଁ ନାସାମୋତି ବିହୁନେ ନାସିକା ଖାଲି ଖାଲି ଦେଖାଯାଉଥାଏ । ସେ ମନେ ମନେ ଚିନ୍ତା କଲେ, ଯଦି ଗୋପାଳଙ୍କ ନାସାରେ ଛିଦ୍ର ଥାଆନ୍ତା, ସେ ଆପଣା ନାକର ଅମୂଲ୍ୟ ମୋତିକୁ ତାଙ୍କୁ ପିନ୍ଧାଇ ଦେଇ ଜୀବନ ଧନ୍ୟ କରନ୍ତେ । ପୂଜାରୀମାନଙ୍କୁ ପଗ୍ଚରିବାରୁ ସେମାନେ ମନା କରିଦେଲେ । ତାଙ୍କ ମନ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲା ।

ଭକ୍ତ ହୃଦୟର ଭାବନା ଚିହ୍ନିପାରି ସେଦିନ ରାତିରେ ଭଗବାନ ରଙ୍ଗ ଅଧରରେ ହସି ହସି ରାଣୀକୁ ସ୍ୱପ୍ନରେ କହିଲେ—"ମାଆ! ତୁମେ ମନଦୁଃଖ କର ନାହିଁ । ପିଲାଦିନେ ମୋ ମାଆ ଯଶୋଦା ମୋର ନାକ ଫୋଡ଼ାଇ ମୁକ୍ତା ବସଣି ପିନ୍ଧାଇ ଦେଇଥିଲେ । ଥରେ ଯମୁନାରେ ସ୍ନାନ କରିବା ସମୟରେ ତାହା ହଜିଗଲା । ସେହି ଦିନଠାରୁ ଆଉ କେହି ନାସାମୋତି ପିନ୍ଧାଇ ନାହାନ୍ତି, ତେଣୁ ସେହି ଛିଦ୍ରଟି ବନ୍ଦ ହୋଇଯାଇଛି । ମୁକ୍ତା ବସଣି ପିନ୍ଧିବାକୁ ମୋର ଖୁବ୍ ମନ ବଳିଛି । ଯଦି ମୋତେ ବହୁମୂଲ୍ୟ ବସଣି ଦେଇଦେଲେ ତୁମର ମନ ବ୍ୟଥା ହେବ ନାହିଁ, ତେବେ ମୋତେ ପିନ୍ଧାଇ ଦିଅ । ମୁଁ ଭାରି ଖୁସି ହେବି । କାଲି ଆସି ନିରେଖି ଦେଖିବ, ତୁମକୁ ମୋ ନାକରେ ଛିଦ୍ର ମିଳିଯିବ ।"

ଏଭଳି ସ୍ୱପ୍ନ ଦେଖି ରାଣୀ ଚମକି ପଡ଼ିଲେ । ଭାବିଲେ, ମୋ ଗୋପାଳ ଠାକୁର କେମିତି ମୋର ମନ କଥା ଜାଣି ପାରିଲେ? ପ୍ରଭାତରୁ ଉଠି ବେଗ ବେଗ ହୋଇ ପହଞ୍ଚିଲେ ପ୍ରଭୁଙ୍କ ଛାମୁରେ । ଚନ୍ଦ୍ରବଦନ ନିରେଖି ଦେଖନ୍ତି ତ ସତକୁ ସତ ଛିଦ୍ର ଦେଖାଗଲା । ରାଣୀଙ୍କ ଆନନ୍ଦ କହିଲେ ନ ସରେ । ରଙ୍କକୁ ଧନ ମିଳିବା ପରି ସେ ଗୋପାଳଙ୍କୁ ଆଉଁସି ଦେଇ କହିଲେ—"ମୋ ଧନରେ! ତୁ କ'ଣ ଭାବୁଛୁ ତୋତେ ମୁକ୍ତା ବସଣି ପିନ୍ଧାଇଦେଲେ ମୋ ମନରେ କଷ୍ଟ ହେବ । ଏଇ ଛାର ମୁକ୍ତା କି ଧନ ଅବା, ମୁଁ ତୋ ପାଇଁ ହସି ହସି ପ୍ରାଣ ଦେଇ ପାରିବି ରେ! ମୋ ଉପରେ ତୋର କେତେ କରୁଣା ନୁହେଁ ସତେ! ବାବୁ ରେ! ମୁହଁ ଟେକି ମୋ

ଆଡ଼କୁ ଟିକେ ଗ୍ରୀହିଁଦେଲୁ, ତୋ ନାସାରେ ମୁକ୍ତା ପିନ୍ଧାଇଦେବି।''

ପ୍ରଭୁ ବାଙ୍କ ଗ୍ରୀହାଣିରେ ମୁରୁକି ହସି ରାଣୀଙ୍କ ଆଡ଼କୁ ଗ୍ରୀହିଁଦେଲେ। ରାଣୀ ପ୍ରେମ ବିଭୋର ହୋଇ ପ୍ରଭୁଙ୍କ ନାସିକାରେ ପିନ୍ଧାଇ ଦେଲେ ମୁକ୍ତା ବସଣି। ପ୍ରଭୁଙ୍କର ହସ ହସ ପଦ୍ମମୁଖ ଦେଖି ସେ ଜୀବନର ସକଳ ଦୁଃଖ ଭୁଲିଗଲେ। ପ୍ରଭୁଙ୍କ ଚନ୍ଦ୍ର ବଦନରେ ଦାଉ ଦାଉ ହୋଇ ଝଟକୁଥିବା ନାସାମୋତି ଦେଖି ରାଣୀଙ୍କ ନେତ୍ରରୁ ଧାର ଧାର ଆନନ୍ଦାଶ୍ରୁ ପ୍ରବାହିତ ହୋଇ ତାଙ୍କୁ ଆନନ୍ଦ ସାଗରରେ ପରିପ୍ଲୁତ କରିଦେଲା। ସେ ମାଆର ଅଧିକାର ପାଇ ନିଜକୁ ଧନ୍ୟ ମଣିଲେ। ଅଦ୍ୟାବଧି ସେହି ନାସାମୋତି ଶ୍ରୀ ଗୋପାଳ ଜୀଉ ଉତ୍ସବ ସମୟରେ ଧାରଣ କରନ୍ତି।

ରତ୍ନାକର ଯାହାଙ୍କର ଗୃହ ଏବଂ ଲକ୍ଷ୍ମୀ ମହାରାଣୀ ଯାହାଙ୍କର ଘରଣୀ, ତାଙ୍କ ପାଇଁ ଏ ସଂସାରରେ ଦୁର୍ଲଭ ବା କ'ଣ ରହିଛି! ତଥାପି ମାଆ ନିକଟରେ ବାଳକ ଅଳି କଲା ପରି ପ୍ରଭୁ ରାଣୀଙ୍କ ଠାରୁ ମାଗି ମୁକ୍ତା ବସଣି ପିନ୍ଧିଲେ। ସେ କେବଳ ଭକ୍ତର ପ୍ରେମଡୋରିରେ ବନ୍ଧା। ଶୁଦ୍ଧ ହୃଦୟରେ ତାଙ୍କୁ ଭଜିଲେ ସେ ଭକ୍ତ ପାଖରେ ହାତ ପତାଇବାକୁ ମଧ୍ୟ ସଂକୋଚ କରନ୍ତି ନାହିଁ। ଲୀଳାମୟ ଗୋପାଳଙ୍କ ଲୀଳାକୁ କିଏ ବା ବୁଝିବ!

ରାଧାରାଣୀଙ୍କ ବିନା ଗୋପାଳ ଜୀଉଙ୍କ ମନ ଲାଗିଲା ନାହିଁ ଏବଂ ତେଣେ ପ୍ରଭୁଙ୍କ ବିନା ରାଧାରାଣୀଙ୍କୁ ମଧ୍ୟ ଭଲ ଲାଗିଲା ନାହିଁ। ତେଣୁ ସେ ସାକ୍ଷୀଗୋପାଳ ଗ୍ରାମ ନିବାସୀ ବିଲ୍ୱେଶ୍ୱର ପୂଜାରୀଙ୍କ କନ୍ୟା ରୂପରେ ଅବତରିତ ହେଲେ। ପୂଜାରୀ ଅତି ସ୍ନେହରେ କନ୍ୟାର ନାମ ରଖିଲେ ଲକ୍ଷ୍ମୀ। ଲକ୍ଷ୍ମୀ ଚନ୍ଦ୍ରକଳା ଭଳି ଧୀରେ ଧୀରେ ବଡ଼ ହୋଇ ପ୍ରାପ୍ତବୟସ୍କା ହେଲେ। ଶ୍ରୀ ଗୋପାଳ ଜୀଉ ତାଙ୍କ ସହିତ ନାନା ପ୍ରକାର ଲୀଳାଖେଳା କରୁଥାନ୍ତି। ବେଳେ ବେଳେ ପୂଜାରୀମାନେ ପ୍ରଭୁଙ୍କର କେତେକ ଆଭୂଷଣ ଲକ୍ଷ୍ମୀଙ୍କ ପଲଙ୍କରୁ ପାଆନ୍ତି। ଆଉ କେତେବେଳେ କେମିତି ଲକ୍ଷ୍ମୀଙ୍କର କେତେକ ଆଭୂଷଣ ପ୍ରଭୁଙ୍କ ରତ୍ନ ପଲଙ୍କ ଉପରେ ପଡ଼ିଥାଏ। ଧୀରେ ଧୀରେ ସମସ୍ତଙ୍କୁ ଏ କଥା ଜ୍ଞାତ ହୋଇଗଲା। ସେଠାକାର ଧର୍ମାତ୍ମା ରାଜା ଲକ୍ଷ୍ମୀଙ୍କୁ ରାଧାଙ୍କ ସ୍ୱରୂପ ମନେକରି ରାଧାରାଣୀଙ୍କର ଗୋଟିଏ ସୁନ୍ଦର ମୂର୍ତ୍ତି ଗଢ଼ିଲେ। କଥିତ ଅଛି ଯେ ମୂର୍ତ୍ତିର ପ୍ରାଣପ୍ରତିଷ୍ଠା ହେବା ସମୟରେ ଲକ୍ଷ୍ମୀ ଦେହ ତ୍ୟାଗ କରି ସେଥିରେ ପ୍ରବିଷ୍ଟ ହୋଇଗଲେ। ଅଦ୍ୟାବଧି ସାକ୍ଷୀଗୋପାଳଙ୍କ ବାମପାର୍ଶ୍ୱରେ ରାଧାରାଣୀ ବିରାଜମାନ ହୋଇ ଭକ୍ତଜନଙ୍କ ହୃଦୟରେ ଭକ୍ତି-ରସ-ମନ୍ଦାକିନୀ ପ୍ରବାହିତ କରୁଛନ୍ତି।



# ଶ୍ରୀଜୟଦେବ

ଭକ୍ତବତ୍ସଳ ଶ୍ରୀଜଗନ୍ନାଥ ସ୍ୱମୁଖରେ ଯାହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି, ସେହି ପରମ ଭକ୍ତ କବି ଜୟଦେବ କେତେ ମହନୀୟ ହୋଇ ନ ଥିବେ! ସେ କେବଳ କବି ନ ଥିଲେ, ସେ ଥିଲେ ଏକାଧାରରେ ଜଣେ କବି, ଭକ୍ତ ଓ ସାକ୍ଷାତ୍ ନନ୍ଦବଂଶୀଙ୍କ ଅବତାର। ତାଙ୍କ ରଚିତ ଶ୍ରୀଗୀତଗୋବିନ୍ଦ କାବ୍ୟ ସଂସ୍କୃତ ବାଙ୍ମୟ ମଧ୍ୟରେ ଅଦ୍ୱିତୀୟ ସ୍ଥାନ ଅଧିକାର କରିଛି। ଅଦ୍ୟାବଧି ତାହାର ସମକକ୍ଷ କୌଣସି ଗ୍ରନ୍ଥ ହୋଇ ନାହିଁ କି ହେବା ସମ୍ଭବ ମଧ୍ୟ ନୁହେଁ। ତିନି ଲୋକରେ ତାହାର ମହିମା ଉଜାଗର ହୋଇ ସାରିଛି। କଥିତ ଅଛି ଯେ ପରମ ଧର୍ମାତ୍ମା ରାଜା ବିକ୍ରମାଦିତ୍ୟଙ୍କ ରାଜଦରବାରରେ ଥରେ ଗୀତଗୋବିନ୍ଦ ଗାୟନ କରାଯାଉଥିବାବେଳେ ସେଠାରେ ସ୍ୱର୍ଗବାସୀ ଦେବତା ଏବଂ ପାତଳ ନିବାସୀ ନାଗଗଣ ପ୍ରଭୃତି ବିରାଜମାନ ଥିଲେ। ଗୀତଗୋବିନ୍ଦ ଶୁଣି ସେମାନେ କହିଲେ, ଏହା ତ ଆମ ଲୋକରେ ଦେବବଧୂ ଅପସରାଗଣ ଓ ନାଗକନ୍ୟା ତଥା ନାଗବଧୂଗଣ ଗାନ କରୁଥିବାର ଆମେ ଶୁଣିଛୁ। ଏଥିରୁ ପ୍ରମାଣିତ ହୁଏ ଯେ ଗୀତଗୋବିନ୍ଦ ତ୍ରିଭୁବନ ପ୍ରସିଦ୍ଧ।

ଏହି ଗ୍ରନ୍ଥଟି ଏତେ ମହିମା ମଣ୍ଡିତ ହେବାର କାରଣ ହେଉଛି ଯେ ଏହା ରାଧାମାଧବଙ୍କ ଲୀଳାବିଳାସ ଚିତ୍ରଣରେ ପରିପୂର୍ଣ୍ଣ। ଯେଉଁ କାବ୍ୟରେ ପ୍ରଭୁଙ୍କ ଯଶକୀର୍ତ୍ତି ଗାନ ହୋଇ ନ ଥାଏ, ତାହା କାକତୀର୍ଥ ଭଳି ଅତି ଅପବିତ୍ର। ରାଜହଂସ ସମ ସଜ୍ଜନ ତାହାକୁ ଗ୍ରହଣ କରନ୍ତି ନାହିଁ। ଗ୍ରନ୍ଥର ଅଧିକାରୀତ୍ୱ ବର୍ଣ୍ଣନା କରି କବି ଜୟଦେବ କହିଛନ୍ତି—

**ଯଦି ହରିସ୍ମରଣେ ସରସଂ ମନୋ**
**ଯଦି ବିଳାସକଳାସୁ କୁତୂହଳମ୍।**
**ମଧୁର କୋମଳ କାନ୍ତ ପଦାବଳୀଂ**
**ଶୃଣୁ ତଦା ଜୟଦେବସରସ୍ୱତୀମ୍॥**

"ଯଦି ଭଗବାନ ଶ୍ରୀହରିଙ୍କ ସ୍ମରଣ ପାଇଁ ତୁମ ମନରେ ଅନୁରାଗ ଭରି ରହିଛି, ଯଦି ଶ୍ରୀକୃଷ୍ଣଙ୍କ ନିକୁଞ୍ଜ କେଳି-ବିଳାସ ଜାଣିବାକୁ ହୃଦୟରେ କୌତୁହଳ ଜାତ ହେଉଛି, ତେବେ ସୁମଧୁର ମନୋହର ପଦାବଳୀଯୁକ୍ତ ଜୟଦେବଙ୍କ ବାଣୀ ଶ୍ରବଣ କର।"

ଏହି ଗୌରବ କାରଣରୁ ଗୀତଗୋବିନ୍ଦ ଗ୍ରନ୍ଥ ଭକ୍ତଜନଙ୍କୁ ପ୍ରିୟ ହେବା ସହିତ ଜଗନ୍ନାଥଙ୍କର ଅତ୍ୟନ୍ତ ପ୍ରିୟ ହୋଇ ପାରିଛି। ସଜ୍ଜନ କହନ୍ତି—ଗୀତଗୋବିନ୍ଦର ପଦ୍ୟାବଳୀ ଶ୍ରବଣ କରି ଭଗବାନ ଯେ ପ୍ରସନ୍ନ ହୁଅନ୍ତି, ଏଥରେ ଲେଶମାତ୍ର ସନ୍ଦେହ ନାହିଁ। ସୂର୍ଯ୍ୟଙ୍କୁ ଦର୍ଶନ କରି ଏବଂ ତାଙ୍କ କିରଣର ସ୍ପର୍ଶ ପାଇ ପଦ୍ମ ପ୍ରସ୍ଫୁଟିତ ଓ ପ୍ରଫୁଲ୍ଲିତ ହେବା ପରି ଜୟଦେବଙ୍କ ବାଙ୍ମୟ ରୂପୀ କିରଣ ସ୍ପର୍ଶରେ ସଜ୍ଜନଙ୍କ ହୃଦୟ ପ୍ରଫୁଲ୍ଲିତ ହୋଇଉଠେ।

ଭକ୍ତ ଓ ଭଗବାନଙ୍କୁ ସୁଖ ପ୍ରଦାନ କରିଥିବା ଶ୍ରୀ ଜୟଦେବ ମହାପ୍ରଭୁ ଆବିର୍ଭୂତ ହୋଇଥିଲେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଓଡିଶା ପ୍ରଦେଶର ନିପଟ ମଫସଲ କେନ୍ଦୁବିଲ୍ୱ ଗ୍ରାମରେ।* କେତେକ ଲେଖକ ପୁରୀଜିଲ୍ଲାର କୋଠଦେଶ ଅଞ୍ଚଳର ଏକ ଗ୍ରାମ ବୋଲି ନିର୍ଦ୍ଦେଶ କରୁଛନ୍ତି। ମାଘ ମାସ, ଶୁକ୍ଳ ପକ୍ଷ, ମକର-ସଂକ୍ରାନ୍ତି, ଅଭିଜିତ ମୁହୂର୍ତ୍ତ ମଧ୍ୟାହ୍ନ ବେଳାରେ ସେ ଶ୍ରୀ ଭୋଜଦେବଙ୍କ ଔରସରୁ ମାତା ବାମାଦେବୀଙ୍କ କୋଳ ମଣ୍ଡନ କରିଥିଲେ। ତାଙ୍କ ମାଆଙ୍କ ନାମ ରାଧା ବୋଲି କେଉଁଠି କେଉଁଠି ବର୍ଣ୍ଣନା ଆସେ।

ମାୟାଧରଙ୍କ ଲୀଳା ବଡ଼ ବିଚିତ୍ର। ସେ ଯାହାକୁ ଆପଣାର କରି ନେବାକୁ ଚାହାନ୍ତି, ତାହାର ସବୁ ବନ୍ଧନ ଶୃଙ୍ଖଳକୁ ପ୍ରଥମେ କାଟି ଦିଅନ୍ତି। ବାଲ୍ୟକାଳରେ ଜୟଦେବଙ୍କ ପିତା-ମାତା ପରଲୋକ ଗମନ କରିଗଲେ। ଏହି ଘଟଣାରୁ ତାଙ୍କ ମନରେ ସଂସାରର ଅଳୀକତା ଓ ନଶ୍ୱରତା ଜ୍ଞାନ ଉଦୟ ହୋଇଥିଲା। ତୁଳସୀ ଦୁଇ ପତ୍ରରୁ ବାସିଲା ପରି ସେ ପିଲାଟି ଦିନରୁ ସମସ୍ତ ଜାଗତିକ ଭୋଗରୁ ବିରକ୍ତ

* ଆଜି ପର୍ଯ୍ୟନ୍ତ ବଙ୍ଗୀୟମାନେ ଜୟଦେବଙ୍କୁ ବୀରଭୂମ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମବାସୀ ବୋଲି ପ୍ରମାଣିତ କରିଥିଲେ। କିନ୍ତୁ ଜୟଦେବ ଯେ ଉତ୍କଳର କେନ୍ଦୁଲୀ ଶାସନରେ ଜନ୍ମ ଗ୍ରହଣ କରିଥିଲେ, ଭକ୍ତମାଳା ଗ୍ରନ୍ଥର ନିମ୍ନୋକ୍ତ ଶ୍ଳୋକରୁ ତାହା ସ୍ପଷ୍ଟରୂପେ ପ୍ରମାଣିତ ହୁଏ।

ଜଗନ୍ନାଥପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ।
କେନ୍ଦୁବିଲ୍ୱ ଇତିଖ୍ୟାତଃ ଗ୍ରାମୋ ବ୍ରାହ୍ମଣସଂକୁଳଃ॥
ତତ୍ରୋତ୍କଳୋ ଦ୍ୱିଜୋ ଜାତୋ ଜୟଦେବ ଇତି ଶ୍ରୁତଃ।
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ॥

ସୌଜନ୍ୟ—ପୂର୍ଣ୍ଣଚନ୍ଦ୍ର ଭାଷାକୋଷ।

ସେ ଯାହାହେଉ ନା କାହିଁକି, ଜୟଦେବଙ୍କ ଭଳି ମହାନ୍ ଭକ୍ତଙ୍କୁ ନିଜ ନିଜ ରାଜ୍ୟର ଅନ୍ତର୍ଭୁକ୍ତ କରି ସମସ୍ତେ ଯେ ଗୌରବ ମଣୁଛନ୍ତି, ଏହା ସୁଖର ବିଷୟ। ଏଥିରୁ ପ୍ରମାଣିତ ହୁଏ ଯେ ଭକ୍ତ ଯେଉଁଠି ଜନ୍ମ ହୁଅନ୍ତି, ସେହି ଗ୍ରାମଟି ନିଶ୍ଚୟ ପବିତ୍ର ଓ ପ୍ରସିଦ୍ଧ ହୋଇଯାଏ।

ହୋଇ ପ୍ରଭୁଙ୍କ ଭଜନରେ ମନପ୍ରାଣ ସମର୍ପଣ କରିଦେଇଥିଲେ। ତାଙ୍କ ବୈରାଗ୍ୟ ଭାବନା, ଈଶ୍ୱରପ୍ରୀତି ଓ ସରଳତାର ସୁଯୋଗ ନେଇ ସେହି ଗ୍ରାମର ନିରଞ୍ଜନ ନାମକ ଜଣେ ବ୍ରାହ୍ମଣ କଳେବଳେକୌଶଳେ ତାଙ୍କର ସବୁ ସମ୍ପତ୍ତିକୁ ଅପହରଣ କରିବାର ଷଡ଼ଯନ୍ତ୍ର ରଚିଲା। ନକଲି କାଗଜପତ୍ର ତିଆରି କରି ଦିନେ ସେ ଜୟଦେବଙ୍କୁ କହିଲା—"ତୋ ବାପା ମୋ'ଠାରୁ ହଜାରେ ଟଙ୍କା ଧାର ନେଇଥିଲେ। ତାହା ପରିଶୋଧ ନ କରି ଅସମୟରେ ସେ ଚାଲିଗଲେ। ତେଣୁ ପୁତ୍ର ହିସାବରେ ତାହାକୁ ପରିଶୋଧ କରିବା ତୋର ନିହାତି କର୍ତ୍ତବ୍ୟ। ଶକ୍ତି ଥିଲେ ଶୀଘ୍ର ସୁଧ ସହିତ ଋଣ ପରିଶୋଧ କର, ନଚେତ୍ ସବୁ ଘରବାଡ଼ି ମୋ ନାଆଁରେ ଲେଖିଦେ।" ଜୟଦେବ କୌଣସି ଆପତ୍ତି ବିନା, ନିର୍ବିକାର ଚିତ୍ତରେ ସବୁ ସମ୍ପତ୍ତି ଓ ଘରଦ୍ୱାର ତାଙ୍କ ନାଆଁରେ ଲେଖିଦେଲେ।

ଅଜ୍ଞ ଲୋକ ଅନ୍ୟକୁ ଠକିଦେଇ ଭାବେ ଯେ କେହି ତାକୁ ଦେଖି ନାହିଁ ବୋଲି, କିନ୍ତୁ ଭଗବାନଙ୍କ ରାଜ୍ୟରେ ଏଭଳି ଅନୀତି ଚଳିବ କିପରି? ଏଭଳି ହେଲେ ତ ସୃଷ୍ଟିର ନିୟମ ଉଲ୍ଲଘଂନ ହୋଇଯିବ! କେହି କାହାକୁ ମାନିବେ ନାହିଁ! ସେଥିପାଇଁ ଭଗବାନ ଭକ୍ତ ଅପରାଧରୂପୀ ଉଗ୍ର ପାପର ଫଳ ଅବିଳମ୍ବେ ଦେଇଦେଲେ। ନିରଞ୍ଜନ ବଡ଼ ଆନନ୍ଦ ମନରେ ଗାଡ଼ିରେ ଜିନିଷପତ୍ର ଲଦି ଘରକୁ ବୋହି ନେବାକୁ ଯୋଗାଡ଼ କରୁଥାଏ। ହଠାତ୍ ସେପଟୁ ତା' ଝିଅ ଚିତ୍କାର କରି ନିଆଁ ନିଆଁ କହି ଦୌଡ଼ି ଆସିଲା। କ'ଣ ହେଲା! କ'ଣ ହେଲା! ବୋଲି ପଚାରିବାରୁ ସେ ଭୋ ଭୋ ହୋଇ କାନ୍ଦି ପକାଇ କହିଲା—"ବାପା! ଶୀଘ୍ର ଚାଲ, ଶୀଘ୍ର ଚାଲ। ଘରେ ନିଆଁ ଲାଗିଗଲା। ଯେତେ ଚେଷ୍ଟା କଲେ ବି ଲିଭେଇ ହେଉନି। ଲାଗୁଛି କୌଣସି ଦେବକୂଟ ହୋଇଛି।"

ନିଆଁ ଲାଗିବା କଥା ଶୁଣି ନିରଞ୍ଜନ ଘରେ ପହଞ୍ଚିବା ପୂର୍ବରୁ ଭକ୍ତ ଜୟଦେବ ଯାଇ ହୁ ହୁ ହୋଇ ଜଳୁଥିବା ନିଆଁ ଭିତରୁ ଜିନିଷପତ୍ର କାଢ଼ିନେବା ସହିତ ନିଆଁ ଲିଭାଇବାକୁ ଚେଷ୍ଟା କଲେ। ଭକ୍ତଙ୍କ ଦର୍ଶନରେ କୃତାର୍ଥ ହୋଇ ଅଗ୍ନିଦେବ କୋପ ତ୍ୟାଗ କରି ସହସା ପ୍ରଶମିତ ହୋଇଗଲେ। ଯେଉଁ ଈଶ୍ୱରଙ୍କ ଭୟରେ ବାୟୁ ପ୍ରବାହିତ ହୁଏ, ସୂର୍ଯ୍ୟ ଆଲୋକ ପ୍ରଦାନ କରନ୍ତି, ଇନ୍ଦ୍ର ଜଳ ବୃଷ୍ଟି କରନ୍ତି ଏବଂ ମୃତ୍ୟୁ ଭୟଭୀତ ହୋଇ ପଳାୟନ କରେ, ଅଗ୍ନିଦେବ ତାଙ୍କ ଭକ୍ତଙ୍କର ବହୁମାନ ନ କରିବେ ବା କିପରି?

ଜୟଦେବଙ୍କର ଏଭଳି ପରଦୁଃଖକାତରତା ଓ ଅମାୟିକ ସ୍ୱଭାବ ଦେଖି

ନିରଞ୍ଜନ ବିପ୍ରର ପାଷାଣ ସମ କଠୋର ହୃଦୟ ମଧ୍ୟ ତରଳି ଗଲା । ସେ ତା'ର ମନ୍ଦକୃତ୍ୟ ପାଇଁ ପଶ୍ଚାତ୍ତାପ କରି ତାଙ୍କ ନିକଟରେ କ୍ଷମା ପ୍ରାର୍ଥୀ ହେଲା । ତାଙ୍କ ପାଦତଳେ ପଡ଼ି ବିନତି କରିବା ସହିତ ଷଡ଼ଯନ୍ତ୍ରପୂର୍ବକ କରିଥିବା ନକଲି କାଗଜ କଥା ଖୋଲି କହିଦେଲା ଏବଂ ସବୁ ଧନ-ସମ୍ପତ୍ତି ଫେରାଇଦେଲା । ଅପକାରୀ ପ୍ରତି ଉପକାର କରି ଶ୍ରୀ ଜୟଦେବ ମହାପ୍ରଭୁ ରାମ ଚରିତମାନସରେ କଥିତ ଶିବଙ୍କ ବଚନକୁ ସାର୍ଥକ କଲେ—**'ଉମା ସନ୍ତକୀ ଇହଇ ବଡ଼ାଈ । ମନ୍ଦ କରତ ଜେ କରଇ ଭଲାଈ ।।'**

ମଧୁଲୋଭୀ ଭ୍ରମର ପୁଷ୍ପର ମକରନ୍ଦରେ ଲାଗି ରହିବା ପରି ଜୟଦେବଙ୍କ ମନ ଲାଗି ସାରିଥିଲା ଶ୍ରୀରାଧାମାଧବଙ୍କ ଶୃଙ୍ଗାର ରସରେ । ଶୃଙ୍ଗାର ରସ ସକଳ ରସ ମଧ୍ୟରେ ରାଜା; କାରଣ ଏଥିରେ ସମସ୍ତ ରସ ସନ୍ନିବେଶିତ ହୋଇଥାଏ । ଜୟଦେବଙ୍କର ପ୍ରଭୁପ୍ରେମରେ ପାଗଳ ମନ ଆଉ ଘରେ ଲାଗିଲା ନାହିଁ । ଦିନେ ସେ ସବୁକିଛି ପରିତ୍ୟାଗ କରି ବାହାରି ପଡ଼ିଲେ ଶ୍ରୀକ୍ଷେତ୍ର ଉଦ୍ଦେଶ୍ୟରେ । କୁହାଯାଏ ଯେ ମାର୍ଗରେ ଅସହ୍ୟ ଶୋଷ ଲାଗିବାରୁ ଜଗନ୍ନାଥ ନିଜେ ଆସି ତାଙ୍କୁ ପାଣି ପିଆଇ ଥିଲେ ଏବଂ ଭୋକିଲା ଜାଣି କ୍ଷୀର ପିଆଇ ଥିଲେ ।

ଏହିଭଳି ପାଦେ ପାଦେ ଦୟାମୟଙ୍କ କୃପା ଅନୁଭବ କରି ସେ ପହଞ୍ଚିଲେ ପୁରୀ ଧାମରେ । ରତ୍ନ ସିଂହାସନରେ ଚତୁର୍ଦ୍ଧା ମୂରତି ଦର୍ଶନ କରି ମନପ୍ରାଣ ଶୀତଳ କରିବା ସହିତ ଜୀବନ ଧନ୍ୟ କଲେ ଏବଂ କଠୋର ବୈରାଗ୍ୟ ଧାରଣ କରି ଭକ୍ତିଭାବରେ ଦିନ କାଟିଲେ ।

ଦାକ୍ଷିଣାତ୍ୟର ସୁଦେବ ନାମକ ଜଣେ ଧାର୍ମିକ ବ୍ରାହ୍ମଣ ସନ୍ତାନ ପାଇବା ଲାଳସାରେ ଜଗନ୍ନାଥଙ୍କୁ ମନପ୍ରାଣ ଦେଇ ସେବା କରୁଥିଲେ । ଦିନେ ଭକ୍ତିପୂତ ମନରେ ଠାକୁରଙ୍କ ଚରଣରେ ଗୁହାରୀ ଜଣାଇ କହିଲେ—ହେ ପ୍ରଭୁ! ତୁମ ଦୟାରୁ ମୋର ସନ୍ତାନ ହେଲେ ପ୍ରଥମ ସନ୍ତାନକୁ ତୁମ ସେବାରେ ଅର୍ପଣ କରିବି । ସେ ତୁମର ଦାସ ବା ଦାସୀ ରୂପରେ ସେବା ସୌଭାଗ୍ୟ ଲାଭ କରିବ । ଭଗବାନଙ୍କ ଇଚ୍ଛାରୁ ପ୍ରଥମେ ତାଙ୍କ କୋଳ ମଣ୍ଡନ କଲା କନ୍ୟାଟିଏ । ସେ ତା'ର ନାମ ଦେଲେ ପଦ୍ମାବତୀ । କନ୍ୟାଟିର ନାମ ଯେପରି, ଗୁଣ ମଧ୍ୟ ସେହିପରି । ବାଲ୍ୟକାଳରୁ ପ୍ରଭୁଭକ୍ତିରେ ଅନୁପ୍ରାଣିତ ପଦ୍ମାବତୀ ବାର ବର୍ଷର ହେବା ପରେ ସୁଦେବ ବ୍ରାହ୍ମଣ ତାକୁ ସଙ୍ଗରେ ଘେନି ଠାକୁରଙ୍କ ଚରଣରେ ସମର୍ପଣ କରିବା ପାଇଁ ଶ୍ରୀକ୍ଷେତ୍ର ପହଞ୍ଚିଲେ । ଠାକୁରଙ୍କୁ ବିନତି ଜଣାଇ କହିଲେ—"ହେ ନୀଳାଦ୍ରିବିହାରୀ! ପୂର୍ବ

ପ୍ରତିଜ୍ଞା ଅନୁସାରେ ଏବେ ମୁଁ ତୁମ ସମ୍ମୁଖରେ ଉପସ୍ଥିତ। ଏ କନ୍ୟାକୁ ଆପଣାର କରି ନିଜ ଚରଣରେ ଦାସୀରୂପେ ସ୍ଥାନ ଦିଅ! ଏବେ ମୋ ପାଇଁ ଯାହା ଆଜ୍ଞା ହେବ, ତାହା ଶିରୋଧାର୍ଯ୍ୟ କରି ମୁଁ ନିଜକୁ ଧନ୍ୟ ମଣିବି।'' ପ୍ରଭୁ ଜଗନ୍ନାଥ କହିଲେ—''ହେ ଭୂଦେବ! ପଦ୍ମାବତୀ ଆଜିଠାରୁ ମୋର ହୋଇଗଲା। ମୁଁ ଏହାକୁ ଅଙ୍ଗୀକାର କରିନେଲି। ଏବେ ମୋ ଆଜ୍ଞା ଘେନି ତୁମେ ଯାଅ। କାମିନୀ-କାଞ୍ଚନରୁ ଦୂରେଇ ରହି ମୋ ଭକ୍ତିରେ ଦିବାନିଶି ନିମଗ୍ନ ରହୁଥିବା ପରମ ରସିକ ଜୟଦେବ ମୋର ସ୍ୱରୂପ ଅଟନ୍ତି। ତାଙ୍କୁ ଏ କନ୍ୟାରତ୍ନ ଅର୍ପଣ କରି ତୁମେ ନିଶ୍ଚିନ୍ତ ହୁଅ। ଆଉ ଗୋଟିଏ କଥା ମନେରଖ! ସେ ସହଜରେ ଏ ପ୍ରସ୍ତାବ ସ୍ୱୀକାର କରିବେ ନାହିଁ। ତାଙ୍କର ଜୀବନ ଅତ୍ୟନ୍ତ ବୈରାଗ୍ୟପୂର୍ଣ୍ଣ। ମୋର ଆଜ୍ଞା ବୋଲି କହି ପଦ୍ମାବତୀକୁ ତାଙ୍କ ହାତରେ ଅର୍ପଣ କରିଦେବ।''

ପ୍ରଭୁଙ୍କ ଆଜ୍ଞା ଘେନି ସୁଦେବ ବ୍ରାହ୍ମଣ ପହଞ୍ଚିଲେ ଜୟଦେବଙ୍କ ନିକଟରେ। ଦେଖିଲେ, ଜଗନ୍ନାଥଙ୍କ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ। ଜୟଦେବଙ୍କ ବୈରାଗୀ ବେଶ ଦେଖି ପ୍ରଥମେ କନ୍ୟାଦାନ କଥା କହିବାକୁ ତାଙ୍କର ସାହସ ହେଲା ନାହିଁ। ପୁଣି ଧୈର୍ଯ୍ୟ ବାନ୍ଧି ବିନୟ ଭାବରେ କହିଲେ—''ମହାତ୍ମନ୍! ମୋର ଅଲିଅଳି କନ୍ୟା ଏହି ପଦ୍ମାବତୀକୁ ପତ୍ନୀରୂପରେ ଗ୍ରହଣ କରି ସେବା ସୌଭାଗ୍ୟ ପ୍ରଦାନ କର।'' ବ୍ରାହ୍ମଣଙ୍କ କଥା ଶୁଣି ଜୟଦେବଙ୍କୁ ମୁଣ୍ଡରେ ବଜ୍ର ପଡ଼ିଲା ଭଳି ଲାଗିଲା। ସେ କହିଲେ—''ବିପ୍ରବର! ତୁମେ ଏ କ'ଣ କହୁଛ? ମୋ ଭଳି ଜଣେ ପରମ ଅକିଞ୍ଚନ ବନବାସୀକୁ କନ୍ୟାଦାନ! ତୁମେ ବାତୁଳ ହୋଇନାହଁ ତ? ମୋ ବେଶ ଦେଖି ପାରୁଛ କି ନାହିଁ? ଝିଅ ସେମିତି କୌଣସି ଅଦରକାରୀ ଜିନିଷ ନୁହେଁ ଯେ ଯାହାକୁ ପାରିବ ଦେଇଦେବ। କନ୍ୟାଦାନ ଗ୍ରହଣ କରିବା ଭଳି ଯୋଗ୍ୟତା ଥିବା କୌଣସି କୁଳୀନ ଧନୀ ବ୍ରାହ୍ମଣ ଦେଖି କନ୍ୟାଦାନ କର।''

ବ୍ରାହ୍ମଣ କହିଲେ—''ମୁଁ ପ୍ରଭୁ ଜଗନ୍ନାଥଙ୍କ ଆଜ୍ଞା ଘେନି ତୁମ୍ଭ ନିକଟକୁ ଆସିଛି। ଠାକୁରଙ୍କ ଆଜ୍ଞା ପାଳନ କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ। ତେଣୁ ଆଜ୍ଞା ଶିରୋଧାର୍ଯ୍ୟ କରି ପଦ୍ମାକୁ ଗ୍ରହଣ କର। ନଚେତ୍ ତୁମକୁ ପ୍ରଭୁ ଆଜ୍ଞା ଲଙ୍ଘନରୂପୀ ପାପ ଭୋଗିବାକୁ ପଡ଼ିବ।'' ଜୟଦେବ କହିଲେ—***''ସହସ୍ର ଘରଣୀ ପ୍ରଭୁଙ୍କୁ ଶୋହେ। ଗୋଟିଏ ଆମ୍ଭଙ୍କୁ ପର୍ବତ ପ୍ରାୟେ ॥*** ଜଗନ୍ନାଥଙ୍କ କଥା ଭୁଲିଯାଅ। ସେ ପରମ ସମର୍ଥ। ତାଙ୍କ ପାଇଁ ସହସ୍ର ରାଣୀ ଶୋଭା, କିନ୍ତୁ ମୋ ପାଇଁ ତ ଗୋଟିଏ ବି ପାହାଡ଼ ଭଳି। ଯାହାର ନିଜ ପେଟ ପୋଷିବାର ସାମର୍ଥ୍ୟ ନାହିଁ, ସେ ପାଳିବ

ପନୀକୁ! ଯାଅ, ଯାଅ! କନ୍ୟାକୁ ନେଇ ଯଥାଶୀଘ୍ର ଫେରିଯାଅ।''

ଜୟଦେବଙ୍କ କଥା ଶୁଣି ବ୍ରାହ୍ମଣ ଟିକିଏ ବିରକ୍ତ ହୋଇ କହିଲେ—''ବଡ଼ ବୈରାଗୀ ଦେଖାଉଛନ୍ତି। ଯାହାଙ୍କ ଆଜ୍ଞା ବ୍ରହ୍ମା, ବିଷ୍ଣୁ, ମହେଶ ଶିରୋଧାର୍ଯ୍ୟ କରନ୍ତି, ତାଙ୍କ ଆଜ୍ଞା ବି ମାନିବେ ନାହିଁ! ଝିଅକୁ କହିଲେ—ମାଆ ରେ! ଇଏ ନ ମାନିଲେ ନାହିଁ, ମୁଁ କିନ୍ତୁ ଜଗନ୍ନାଥଙ୍କ ଆଜ୍ଞା ଲଙ୍ଘନ କରି ପାରିବି ନାହିଁ। ସେ କହିଦେଇଛନ୍ତି ମାନେ ଇଏ ଆଜିଠାରୁ ତୋର ସ୍ୱାମୀ ହୋଇଗଲେ। ଇଏ ରଖନ୍ତୁ ବା ମାରନ୍ତୁ, ତୁ ଏହାଙ୍କ ଦୁଆରେ ପଡ଼ି ରହ।''

ଏତିକି କହି ବ୍ରାହ୍ମଣ ଫେରିଗଲେ ନିଜ ଘରକୁ। ପଦ୍ମାବତୀକୁ ଜୟଦେବ ବୁଝାଇ କହିଲେ—''ଦେବୀ! ତୁମେ ନିଜର କର୍ତ୍ତବ୍ୟ-ଅକର୍ତ୍ତବ୍ୟ ବିଷୟରେ ଭଲଭାବେ ବିଗ୍ୱର କରି ଦେଖ। ମୋର ନିଜର ଠିକଣା ନାହିଁ, ମୁଁ ତୁମକୁ ରଖିବି କିପରି? ଏଭଳି ଦରିଦ୍ର ପାଖରେ ରହି ତୁମେ କି ସୁଖ ପାଇବ! ମୋ କଥା ମାନି ଘରକୁ ଫେରିଯାଅ। ବାପାଙ୍କୁ କହିବ ତୁମ ଅନୁରୂପ ବରପାତ୍ର ଦେଖି ବିବାହ କରିଦେବେ।''

ପଦ୍ମାବତୀ କହିଲେ—''ସ୍ୱାମୀ! ତୁମ ଚରଣ ହିଁ ମୋର ଘର। ବାପା ମୋତେ ଟେକି ଦେଇଛନ୍ତି ତୁମ ହାତରେ। ତା'ଛଡ଼ା ଏହା ଜଗନ୍ନାଥଙ୍କର ଆଜ୍ଞା ମଧ୍ୟ। ତୁମେ ମୋର ଇହକାଳ ଓ ପରକାଳର ଦେବତା। ଏବେ ତୁମେ ରଖିଲେ ରଖ, ମାରିଲେ ମାର। ତୁମ ଛଡ଼ା ମୋର ଆଉ ଅନ୍ୟ ଆଶ୍ରୟ ନାହିଁ। ମୋର ଏହା ଅଟଳ ନିର୍ଣ୍ଣୟ।''

ଜୟଦେବ ଚିନ୍ତାରେ ପଡ଼ିଗଲେ। ଭାବିଲେ, ବଡ଼ ଧର୍ମସଂକଟ ଉପସ୍ଥିତ ହେଲା! ଏକପକ୍ଷେ ପ୍ରଭୁଙ୍କ ଆଜ୍ଞା ସହିତ ପଦ୍ମାବତୀର ଭାବପୂର୍ଣ୍ଣ ଦୃଢ଼ ନିର୍ଣ୍ଣୟ ଏବଂ ଅପରପକ୍ଷେ ବୈରାଗ୍ୟ ବେଶର ମର୍ଯ୍ୟାଦା! ସ୍ତ୍ରୀକୁ ବିଷ୍ଣୁଙ୍କ ପ୍ରତ୍ୟକ୍ଷ ମାୟା ବୋଲି କୁହାଯାଇଛି। ସ୍ୱୀକାର କଲେ ସାଂସାରିକ ମୋହରେ ଛନ୍ଦି ହେବାର ସମ୍ଭାବନା ରହିଛି ଏବଂ ପରିତ୍ୟାଗ କଲେ ଜଗନ୍ନାଥଙ୍କ ଆଜ୍ଞା ଲଙ୍ଘନ ହେଉଛି! ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା। କ'ଣ କରିବେ କିଛି ବୁଦ୍ଧି ଦିଶିଲା ନାହିଁ। ଶେଷକୁ ରାତିରେ ଲୁଚି ଅନ୍ୟ କୁଆଡ଼େ ପଳାଇଯିବାକୁ ସ୍ଥିର କଲେ। ହଠାତ୍ ଆକାଶବାଣୀ ହେଲା, ''ଜୟଦେବ! ପଦ୍ମାବତୀ ସାଧାରଣ ମାୟାରୂପୀ ନାରୀ ନୁହେଁ। ଏ ଗଙ୍ଗା ଭଳି ଅତ୍ୟନ୍ତ ପବିତ୍ର। ଏହାର ସଙ୍ଗରେ ତୁମ ଭକ୍ତିରେ ବାଧା ଉପୁଜିବ ନାହିଁ, ବରଂ ଭକ୍ତିଲତା ଦିନୁ ଦିନ ବଢ଼ି ବଢ଼ି ଗ୍ୱଲିବ। ଯଦି ତୁମେ ଏ କନ୍ୟାକୁ ସ୍ୱୀକାର ନ କର, ତେବେ ତୁମକୁ ଅପରାଧ ଦଣ୍ଡ ଭୋଗିବାକୁ ପଡ଼ିବ।''

ମେଘ ଗର୍ଜନ ସମ ଆକାଶବାଣୀ ଶୁଣି ଜୟଦେବ ଭାବିଲେ, ଲାଗୁଛି

ଭଗବାନଙ୍କର ଏହା ହିଁ ଇଚ୍ଛା । ଶିର ପାତି ପ୍ରଭୁଙ୍କ ଆଜ୍ଞା ସ୍ୱୀକାର କରିବାକୁ ହେବ । ଠାକୁରଙ୍କ ପାଦପଦ୍ମରେ ବିନତି ଜଣାଇ କହିଲେ, "ଦୟାମୟ! ତୁମର ଇଚ୍ଛା ପୂର୍ଣ୍ଣ ହେଉ । ଏଥର ମୋ ଜୀବନ ନୌକା ତୁମ ହାତରେ । ନାବିକ ହୋଇ ଭବସିନ୍ଧୁରୁ ପାର କରାଇଦ ପ୍ରଭୁ!" ତା'ପରେ ସେ ସ୍ୱୀକାର କଲେ ପଦ୍ମାଙ୍କୁ । ପଦ୍ମାଙ୍କ ଆଗମନ ସତେ ଯେପରି ତାଙ୍କର ଜୀବନଧାରାକୁ ବୈରାଗ୍ୟରୁ ଟାଣି ଆଣି ପ୍ରଭୁ ଅନୁରାଗ-ରସ-ମନ୍ଦାକିନୀରେ ସମ୍ମିଳିତ କରିଦେଲା । ଏକାକୀ ଥିଲାବେଳେ ଗଛ ତଳେ ଦିନ କଟିଯାଉଥିଲା । କିନ୍ତୁ ପତ୍ନୀକୁ ନେଇ ଏପରି ରହିବା ସମ୍ଭବ ନୁହେଁ । ତେଣୁ ସେ ଗୋଟିଏ କୁଟୀର ନିର୍ମାଣ କରି ଠାକୁର ଶ୍ରୀରାଧାମାଧବଙ୍କ ସେବା ଆରମ୍ଭ କରିଦେଲେ । ପ୍ରଭୁଙ୍କ ସେବା ସାଙ୍ଗକୁ ସତ୍ସଙ୍ଗ ଚର୍ଚ୍ଚା, ସାଧୁସେବା ଓ ଅତିଥି ଅଭ୍ୟାଗତଙ୍କ ସେବାରେ ମନପ୍ରାଣ ଢାଳିଦେଲେ ଭକ୍ତ ଦମ୍ପତି । ଜୟଦେବଙ୍କୁ ଏବେ ଲାଗିଲା ଯେ ବାସ୍ତବରେ ପଦ୍ମାବତୀ ସାଧାରଣ ସ୍ତ୍ରୀ ନୁହନ୍ତି । ତାଙ୍କ ପଦାର୍ପଣରୁ ଜୟଦେବଙ୍କ ଭକ୍ତିଲତା ଦିନକୁ ଦିନ ପୁଷ୍ପିତ-ପଲ୍ଲବିତ ହୋଇଗ୍ଲଲିଲା ।

ପ୍ରକୃତରେ ଗୃହସ୍ଥାଶ୍ରମ କାହାକୁ ବାନ୍ଧେ ନାହିଁ । ଅନେକ ବଡ଼ ବଡ଼ ସନ୍ଥ ଓ ଭକ୍ତ ଗୃହରେ ରହି ଭଗବାନଙ୍କୁ ପାଇ ପାରିଛନ୍ତି । ଗୃହସ୍ଥାଶ୍ରମ ସବୁ ଆଶ୍ରମର ମୂଳଦୁଆ । ଏହା ଠିକ୍ ହୋଇଗଲେ ସମାଜ ଠିକ୍ ହୋଇଯିବ । ତେବେ ଘର-ସଂସାର ବନ୍ଧନ ଭଳି ଲାଗିବାର କାରଣ ହେଲା ବ୍ୟକ୍ତିକୁ ସେଥିରେ ରହିବାର ବିଦ୍ୟା ଜଣା ନାହିଁ । ନୌକା ଯାତ୍ରୀମାନଙ୍କୁ ନଦୀ ପାର କରାଏ । କିନ୍ତୁ କେତେବେଳେ? ଯେତେବେଳଯାଏ ପାଣିରେ ନୌକା ଥାଏ । ଯଦି ନୌକାରେ ପାଣି ପଶିଗଲା, ତେବେ ଯାତ୍ରୀ ପାର କରାଇବା ତ ଦୂରେ ଥାଉ, ତାହା ନିଜେ ବୁଡ଼ିଯିବ । ସେହିଭଳି ଗୃହସ୍ଥାଶ୍ରମ ପ୍ରତ୍ୟେକ ମାନବ ପାଇଁ ମଙ୍ଗଳପ୍ରଦ । କିନ୍ତୁ ଜଳରେ ପଦ୍ମପତ୍ର ଥିବା ଭଳି କେବଳ ପ୍ରଭୁଭକ୍ତି ଓ ସେବା ପାଇଁ ଗୃହସ୍ଥାଶ୍ରମରେ ରହିଲେ ପ୍ରଭୁଙ୍କୁ ପାଇ ହେବ । ଭାଗବତରେ ଭଗବାନ ପ୍ରଚେତାମାନଙ୍କୁ ଗୃହୀଧର୍ମର ମାର୍ଗ ଦର୍ଶାଇ କହିଛନ୍ତି—

**ଗୃହେଷୁ ବସତାଂ ବାପି ପୁଂସାଂ କୁଶଳକର୍ମଣାମ୍ ।**
**ମଦ୍‌ବାର୍ତ୍ତା ଯାତଯାମାନାଂ ନ ବନ୍ଧାୟ ଗୃହା ମତାଃ ॥**

(୪ । ୩୦ । ୧୯)

ଅର୍ଥାତ୍ "ଗୃହରେ ଥାଇ ଯେଉଁ ଲୋକେ ପ୍ରତିଦିନ ସକାଳ ସଂଧ୍ୟାରେ ମୋର ନାମ-ସଂକୀର୍ତ୍ତନ ଓ ଲୀଳା-କଥା ଆଲୋଚନାରେ ସମୟ ବିତାନ୍ତି ଏବଂ ପ୍ରତ୍ୟେକ ଜୀବକୁ ମୋର ସ୍ୱରୂପ ଭାବି ନିଷ୍କାମଭାବନାରେ ସେବା କରନ୍ତି, ସେମାନଙ୍କ ପାଇଁ

ଗୃହସ୍ଥାଶ୍ରମ ବନ୍ଧନକାରକ ହୁଏ ନାହିଁ।''

ଏହି କୌଶଳରେ ଗୃହରେ ରହିବା ଯୋଗୁଁ କ୍ରମେ ଜୟଦେବଙ୍କ ଜୀବନଯାତ୍ରା ଅତି ସୁଖଦ ହୋଇ ଚ୍ଚାଲିଲା। ଦିବାନିଶି ପ୍ରଭୁଭକ୍ତିରେ ମଗ୍ନ ରହୁଥିବାରୁ ତାଙ୍କ ହୃଦୟସିନ୍ଧୁରେ ଜାଗରିତ ହେଲା ଶ୍ରୀରାଧାକୃଷ୍ଣଙ୍କ ମାଧୁର୍ଯ୍ୟ-ରସର ବିବିଧ ଲୀଳା ତରଙ୍ଗ। ପ୍ରତିଦିନ ହୃଦୟରେ ଯେପରି ଲୀଳା ପ୍ରକାଶ ପାଉଥାଏ, ସେ ତାହାକୁ ସଂସ୍କୃତ ଛନ୍ଦରେ ଲିପିବଦ୍ଧ କରି ଶୁଣାଉଥାନ୍ତି ରାଧାମାଧବ ଠାକୁରଙ୍କୁ। ଗୋବିନ୍ଦଙ୍କ ଲୀଳା ବର୍ଣ୍ଣନା ହୋଇଥିବାରୁ ସେ ତାଙ୍କ ରଚିତ କାବ୍ୟର ନାମ ରଖିଲେ 'ଗୀତଗୋବିନ୍ଦ'।

ଗୀତଗୋବିନ୍ଦ ପ୍ରଣୟନ ସମୟରେ ଦିନେ ଜୟଦେବଙ୍କ ମନରେ ଗୋଟିଏ ଅଲୌକିକ ଭାବ ସ୍ଫୁରିତ ହେଲା। କୃଷ୍ଣାନୁରାଗିଣୀ ଶ୍ରୀରାଧା ମାନ କରିଛନ୍ତି। ମାନିନୀ ରାଧାଙ୍କୁ ପ୍ରସନ୍ନ କରିବା ନିମନ୍ତେ ରସିକେଶ୍ୱର ଶ୍ରୀକୃଷ୍ଣ ବିନତି କରି କହୁଛନ୍ତି, ''ହେ ପ୍ରିୟେ! ହେ ଚ୍ଚାରୁଶୀଳେ! ଏବେ ଦୁର୍ଜୟ ମାନ ତ୍ୟାଗ କରି କିଛି କୁହ। ତୁମର ମୌନ ମୋ ହୃଦୟରେ ବିସ୍ତାର କରୁଛି ଭୟରୂପୀ ନିବିଡ଼ ଅନ୍ଧକାର। କିଛି କହିଲେ, କୁନ୍ଦପୁଷ୍ପ ସମ ତୁମ ଦନ୍ତପଂକ୍ତିର ଆଭାରେ ମୋ ହୃଦୟର ଅନ୍ଧକାର ଦୂର ହୋଇଯିବ। ତୁମ ପ୍ରଫୁଲ୍ଲିତ ମୁଖଚନ୍ଦ୍ରକୁ ଦେଖି ମୋ ନୟନରୂପୀ ଚକୋର ଆହ୍ଲାଦିତ ହୋଇ ଉଠିବ। ହେ ପ୍ରିୟେ! ତୁମେ ମୋର ଭୂଷଣ, ତୁମେ ମୋର ଜୀବନ ଏବଂ ତୁମେ ମୋର ଭବଜଳଧିରତ୍ନ। ଏ ଦାସକୁ ଆଜ୍ଞା ହେଲେ ସ୍ଥଳପଦ୍ମର ଦୀପ୍ତିକୁ ଲଜ୍ଜିତ କରୁଥିବା ଏବଂ ମୋ ହୃଦୟକୁ ଆନନ୍ଦ ପ୍ରଦାନ କରୁଥିବା ତୁମ ଚରଣ ଦ୍ୱୟକୁ ଅଲକ୍ତକ (ଅଳତା)ରେ ସୁସଜ୍ଜିତ କରିଦେବି। ହେ ପ୍ରିୟେ! କାମଜ୍ୱାଳା ବିନାଶକ ଏବଂ ମୋ ମସ୍ତକର ଆଭୂଷଣ ସଦୃଶ ତୁମ ପଦାରବିନ୍ଦକୁ ମୋ ମସ୍ତକରେ ଅର୍ପଣ କରି ମୋତେ ଧନ୍ୟ କର। ଏହି ଭାବକୁ ସେ—**'ସ୍ମରଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ ଦେହି ପଦପଲ୍ଲବମୁଦାରମ୍।'** ପଂକ୍ତି ଦ୍ୱାରା ବ୍ୟକ୍ତ କରିବାକୁ ଚ୍ଚାହୁଁଥିଲେ। କିନ୍ତୁ ଏହି ପଂକ୍ତିର ସ୍ଫୁରଣରେ ଜୟଦେବଙ୍କ ଲେଖନୀ ହଠାତ୍ ଅଟକି ଗଲା। ଏଭଳି ବିଚିତ୍ର ଭାବର ସ୍ଫୁରଣ ତାଙ୍କୁ ସ୍ତବ୍ଧ କରିଦେଲା। ମନେ ମନେ ଭାବିଲେ, ଚରାଚରବନ୍ଦ୍ୟ ଭଗବାନ ଶ୍ରୀକୃଷ୍ଣ କେବେ କ'ଣ ରାଧାଙ୍କ ନିକଟରେ ଏତେ ଦୀନ ପରି ହୋଇ ପାରନ୍ତି? ଏହା କ'ଣ କେବେ ସମ୍ଭବ? ନା, ନା! କିନ୍ତୁ ଯେତେ ବାରଣ କଲେ ବି ମନରେ ସେହି ପଂକ୍ତିଟି ବାରମ୍ବାର ଉଙ୍କି ମାରୁଥାଏ। ନେତ୍ର ବନ୍ଦ କରି ରାଧାମାଧବଙ୍କୁ ଧ୍ୟାନ କଲେ। ମାନସପଟରେ ପୁନଃ ସେହି ଲୀଳା ସ୍ଫୁରିତ ହେଲା।

ସଂକୋଚରେ ପଡ଼ି ସେ ଲେଖିବେ କି ନ ଲେଖିବେ ସ୍ଥିର କରି ପାରିଲେ ନାହିଁ। ଲେଖନୀ ରଖି ଚାଲିଗଲେ ନଦୀକୁ ସ୍ନାନ କରିବା ନିମନ୍ତେ।

ଜୟଦେବଙ୍କର ସଂକୋଚ ଭାବନା ଦେଖି ଭଗବାନ ସ୍ୱହସ୍ତରେ ସେହି ପଂକ୍ତିଟିକୁ ପୂରଣ କରି ଭକ୍ତିକାବ୍ୟର ଓ ଭକ୍ତର ମାନ ବଢ଼ାଇବାକୁ ସ୍ଥିର କଲେ। ସହସା ସେ ଜୟଦେବଙ୍କ ବେଶରେ ଉପସ୍ଥିତ ହେଲେ ଜୟଦେବଙ୍କ ଗୃହରେ। ସ୍ୱାମୀଙ୍କୁ ଏତେ ଶୀଘ୍ର ସ୍ନାନ ସାରି ଫେରିବାର ଦେଖି ପଦ୍ମାବତୀ ଆଚମ୍ଭିତ ହୋଇଗଲେ! ପଚାରିଲେ—"ସ୍ୱାମୀ! ଆଜି ଏତେ ଶୀଘ୍ର ଗାଧୋଇ ସାରି ଫେରି ଆସିଲ ଯେ?" ଜୟଦେବ ବେଶଧାରୀ ଭଗବାନ କହିଲେ—ହଁ ପଦ୍ମେ! ଗୋଟିଏ ପଦ ଅଧାଲେଖା ରହିଯାଇଥିଲା। ଅଚାନକ ମନେ ପଡ଼ିବାରୁ ଶୀଘ୍ର ଚାଲିଆସିଲି। କାଳେ ଭୁଲିଯିବି; ତେଣୁ ତୁମେ ମୋର ପୋଥି ଓ ଲେଖନୀ ଘେନି ଆସ। ପଦଟିକୁ ଆଗ ଲେଖି ଦେଉଛି, ତା'ପରେ ପ୍ରସାଦ ସେବନ କରିବା, ତୁମେ ଶୀଘ୍ର ରୋଷେଇ ସାର।"

ପଦ୍ମାବତୀ ପ୍ରଭୁଙ୍କ ହାତକୁ ପୋଥି ଓ ଲେଖନୀ ବଢ଼ାଇଦେଇ ରୋଷେଇରେ ଲାଗିଗଲେ। ଠାକୁର ଜୟଦେବଙ୍କ ମନରେ ସ୍ଫୁରିତ ହୋଇଥିବା ଭାବନାକୁ ଯଥାବତ୍ ଲେଖିଦେଲେ। ତା' ପରେ ସେ ପଦ୍ମାବତୀଙ୍କ ହାତରୁ ଭୋଜନ କରି କୁଟୀରରେ ବିଶ୍ରାମ କରିବାକୁ ଚାଲିଗଲେ। ପଦ୍ମାବତୀ ସ୍ୱାମୀଙ୍କ ପତ୍ରରେ ଭୋଜନ କରିବାକୁ ବସିଗଲେ। ସେତିକିବେଳେ ପ୍ରକୃତ ଜୟଦେବ ଗାଧୋଇ ପାଧୋଇ ଓଦା ଲୁଗାରେ ଆସି ପହଞ୍ଚିଲେ। ପତିବ୍ରତା ପଦ୍ମାବତୀ ତାଙ୍କୁ ନ ଖୁଆଇ ଆଗ ଖାଇବାକୁ ବସିଥିବା ଦେଖି ସେ ଚକିତ ହୋଇ ପଚାରିଲେ—"ପଦ୍ମେ! ଆଜି ତୁମେ ଶୀଘ୍ର ଭୋଗ ଲଗେଇ ଦେଲ କି ମୋ ଆସିବାରେ ଡେରି ହେଲା? ତୁମକୁ ବେଶୀ ଭୋକ ଲାଗିଲା କି?" ପଦ୍ମାବତୀ ବିସ୍ମିତ ହୋଇ କହିଲେ—"ସ୍ୱାମୀ! ତୁମେ ଏ କ'ଣ କହୁଛ? ଏବେ ତ ତୁମେ ମୋ'ଠାରୁ ପୋଥି ମାଗି ପଦଟିକୁ ପୂରଣ କଲ ଏବଂ ପ୍ରସାଦ ପାଇସାରି ମୋତେ ପ୍ରସାଦ ପାଇବାକୁ ଆଜ୍ଞା ଦେଇ ବିଶ୍ରାମ କକ୍ଷକୁ ଗଲ। ତୁମକୁ ଭୋଜନ କରାଇ ମୁଁ ତୁମ ପତ୍ରରେ ବସିଛି।"

ଜୟଦେବଙ୍କ ବିସ୍ମୟର ସୀମା ରହିଲା ନାହିଁ। ସେ ତରତର ହୋଇ ଯାଇ ଦେଖନ୍ତି ତ ତାଙ୍କ ମନରେ ସ୍ଫୁରିତ ହୋଇଥିବା ପଦଟି ପୋଥିରେ ଅବିକଳ ଲେଖା ହୋଇଛି। ଶୟନକକ୍ଷ ଦିବ୍ୟ ସୁଗନ୍ଧରେ ମହ ମହ ହୋଇ ବାସି ଉଠୁଛି। କିନ୍ତୁ କକ୍ଷରେ କେହି ନାହାନ୍ତି। ସେ ଜାଣି ପାରିଲେ ଯେ ଏହା ଦୟାମୟଙ୍କ ଲୀଳା! ଆନନ୍ଦରେ ବିଭୋର ହୋଇ ସେ ନାଚିବାକୁ ଲାଗିଲେ। ତା'ପରେ ଦୌଡ଼ି ଯାଇ

ପଦ୍ମାବତୀଙ୍କ ପତ୍ରରେ ବସି ପ୍ରସାଦ ପାଇଲେ। ପଦ୍ମାବତୀ ଆଶ୍ଚର୍ଯ୍ୟରେ ପଡ଼ିଗଲେ। ସେ ସ୍ୱାମୀଙ୍କ ହାତ ଧରି ପକାଇ କହିଲେ—"ଏ କ'ଣ କରୁଛ? ଏ ଅଭାଗିନୀର ଅଇଁଠା ଖାଅ ନାହିଁ।" ଜୟଦେବ ଭାବ ବିଭୋର ହୋଇ କହିଲେ—"ତୁମେ ଅଭାଗିନୀ ନୁହଁ ପଦ୍ମେ, ଅଭାଗ୍ୟ ତ ମୁଁ ପ୍ରିୟେ! ତୁମ ଭଳି ଭାଗ୍ୟବତୀ ଏ ଜଗତରେ କେହି ନାହିଁ। ତୁମକୁ ପ୍ରଭୁଙ୍କ ଦର୍ଶନ ହେଲା। ମୋ ଭଳି ଅଭାଗ୍ୟ ଜୀବନରେ ପ୍ରଭୁଙ୍କ ଦର୍ଶନ କାହିଁ? ମୋତେ ବାରଣ କର ନାହିଁ ପ୍ରିୟେ! ପ୍ରଭୁଙ୍କ ପ୍ରସାଦ ପାଇବାକୁ ଦିଅ। ମୋର ସ୍ୱାମୀ ଜଗନ୍ନାଥ ଛଦ୍ମବେଶରେ ଆସି ଆମ ଗୃହକୁ ପାବନ କରିଦେଲେ। ସେ ତୁମକୁ ଧନ୍ୟ କରି ତୁମ ହାତରୁ ପ୍ରସାଦ ସେବନ କଲେ। ପଦ୍ମେ! ଏ ସବୁ ତୁମ ଭକ୍ତିଭାବର ପ୍ରଭାବ। ତୁମ ଯୋଗୁଁ ଆଜି ମୋ ଜୀବନ ଧନ୍ୟ ହୋଇଗଲା। ପ୍ରଭୁ ଆଜି 'ଗୀତଗୋବିନ୍ଦ' ପ୍ରବନ୍ଧରେ ହସ୍ତାକ୍ଷର କରି ପ୍ରମାଣିତ କରିଦେଲେ ଯେ ତାଙ୍କୁ ଏହା ଅତ୍ୟନ୍ତ ପ୍ରିୟ।" ଏଭଳି କହି ଭକ୍ତ ଜୟଦେବ ବାରମ୍ବାର ପ୍ରଭୁ ଲେଖିଥିବା ପଦଟିକୁ ଉଚ୍ଚସ୍ୱରରେ ଗାଇ ଉଠିଲେ—

**'ସ୍ମରଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ ଦେହି ପଦପଲ୍ଲବମୁଦାରମ୍।'**

ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟ କସ୍ତୁରୀର ସୁଗନ୍ଧ ଭଳି ଜଗତରେ ବ୍ୟାପିଗଲା। କାହିଁକି ବା ନ ହୁଅନ୍ତା, ସେଥିରେ ଯେ ଜଗନ୍ନାଥଙ୍କ ହସ୍ତାକ୍ଷରରୂପୀ ମୋହର ରହିଛି। ଏହା ଦେଖି ସେଠାକାର ରାଜା ମଧ୍ୟ ରାଧାକୃଷ୍ଣଙ୍କ ଲୀଳା ସମ୍ବନ୍ଧୀୟ ଗୋଟିଏ ଗ୍ରନ୍ଥ ଲେଖି ତାହାର ନାମ ଦେଲେ 'ଗୀତଗୋବିନ୍ଦ'। ରାଜା ତାଙ୍କ ଅଧୀନସ୍ଥ ପଣ୍ଡିତଙ୍କୁ ବହୁ ଦାନ-ଦକ୍ଷିଣା ଦେଇ ତାହାର ଅନେକ ପ୍ରତିଲିପି ତିଆରି କରି ଦେଶ-ବିଦେଶରେ ପ୍ରଚାର କରିବାକୁ ଆଜ୍ଞା ଦେଲେ। ଅନ୍ୟ ପଣ୍ଡିତ ଓ ରସିକ ସଜ୍ଜନ ରାଜାଙ୍କ ଲିଖିତ ଗ୍ରନ୍ଥ ଦେଖି ହସି ହସି କହିଲେ—"ଏହା ଗୀତଗୋବିନ୍ଦ ନୁହେଁ। ଏଥିରେ ଯଦିଓ ରାଧାମାଧବଙ୍କ କୁଞ୍ଜକେଳି ବର୍ଣ୍ଣନା ହୋଇଛି, ଏହାର ପଦ୍ୟାବଳୀ ମଧ୍ୟ ଅତି ମଧୁର, କିନ୍ତୁ ଜୟଦେବଙ୍କ ଗୀତଗୋବିନ୍ଦରୁ ଯେପରି ପ୍ରେମ-ରସ ଝରି ପଡୁଛି, ଏଥିରେ ସେଭଳି ଭାବ ନାହିଁ। ଆଉ ପ୍ରେମ ବିନା କାବ୍ୟ ସବୁବେଳେ ନିର୍ଜୀବ, ତାହାର କୌଣସି ମହତ୍ତ୍ୱ ନାହିଁ।"

ରାଜାଙ୍କ ଆଜ୍ଞାକାରୀ ବ୍ରାହ୍ମଣ ଓ ଅନ୍ୟ ପଣ୍ଡିତଙ୍କ ଭିତରେ ମତଭେଦ ହୋଇଗଲା, ଯାହା ଫଳରେ ଲୋକମାନେ ମଧ୍ୟ ଦ୍ୱନ୍ଦ୍ୱରେ ପଡ଼ିଲେ। କେଉଁଟି ପ୍ରକୃତ ଗୀତଗୋବିନ୍ଦ, କେଉଁଥିରେ ପ୍ରଭୁ ଜଗନ୍ନାଥ ନିଜେ ପଦ ପୂରଣ କରିଥିଲେ, ତାହାର ନିର୍ଣ୍ଣୟ ପାଇଁ ଦୁଇଟି ଯାକ ଗ୍ରନ୍ଥକୁ ଜଗନ୍ନାଥଙ୍କ ମନ୍ଦିର ଭିତରେ ରଖି

କବାଟ ବନ୍ଦ କରି ଦିଆଗଲା। ସକାଳୁ ଯାଇ ପହଡ଼ ଖୋଲି ଦେଖିଲା ବେଳକୁ ରାଜାଙ୍କ ରଚିତ ଗ୍ରନ୍ଥକୁ ପ୍ରଭୁ ଦୂରକୁ ଫିଙ୍ଗି ଦେଇଛନ୍ତି ଏବଂ ଜୟଦେବଙ୍କ ପ୍ରଣୀତ ଗୀତଗୋବିନ୍ଦ ଗ୍ରନ୍ଥରେ ଫୁଲମାଳ ପିନ୍ଧାଇ ହୃଦୟରେ ଲଗାଇଛନ୍ତି। ଶ୍ରୀରାମଚରିତ ମାନସରେ ଯେପରି କାଶୀ ବିଶ୍ୱନାଥ **'ସତ୍ୟଂ ଶିବଂ ସୁନ୍ଦରମ୍'** ଲେଖି ଦେଇଥିଲେ, ଶ୍ରୀଧରସ୍ୱାମୀଙ୍କ ଭାଗବତ ଟୀକାକୁ ପ୍ରଭୁ ବିନ୍ଦୁମାଧବ ଯେପରି ସର୍ବଶ୍ରେଷ୍ଠ ବୋଲି ପ୍ରମାଣିତ କରିଦେଇଥିଲେ, ସେହିପରି ପ୍ରଭୁ ଜଗନ୍ନାଥ ଜୟଦେବଙ୍କ ଗୀତଗୋବିନ୍ଦକୁ ସ୍ୱୀକୃତି ପ୍ରଦାନ କଲେ।

ଏ ଘଟଣାରେ ରାଜା ଅତି ଲଜ୍ଜିତ ହୋଇପଡ଼ିଲେ। ଭାବିଲେ, "ପ୍ରଭୁ କାହିଁକି ମୋ ରଚିତ ଗ୍ରନ୍ଥକୁ ହତାଦର କରି ଫୋପାଡ଼ିଦେଲେ, ଜୟଦେବଙ୍କ ଭଳି ମୁଁ ବି ତ ତାଙ୍କରି ଲୀଳା ଲେଖିଥିଲି! ସମ୍ମାନ ନ ଦେଲେ ନାହିଁ, ଖଟୁଲି ଉପରେ ତ ରଖିଥାନ୍ତେ!" ଗ୍ରନ୍ଥର ଅପମାନକୁ ନିଜର ଅପମାନ ଭାବି ସେ ଅତି ମନସ୍ତାପରେ ସମୁଦ୍ରରେ ଝାସ ଦେବାକୁ ସ୍ଥିର କଲେ। ପ୍ରଭୁ ଜଗନ୍ନାଥ ତାଙ୍କୁ ଦର୍ଶନ ଦେଇ କହିଲେ—"ଗଜପତି! ତୁମେ ମୋର ଭକ୍ତ ସତ, କିନ୍ତୁ ତୁମର ଏ ଗ୍ରନ୍ଥ ଲେଖନ ପଛରେ ଅନ୍ୟକୁ ଛୋଟ ପ୍ରମାଣିତ କରିବାର ଉଦ୍ଦେଶ୍ୟ ରହିଛି; ତେଣୁ ମୁଁ ତାହାକୁ ଫୋପାଡ଼ି ଦେଲି। ତୁମର କଳ୍ପନା ଆକାଶ କୁସୁମ ଭଳି ସମ୍ପୂର୍ଣ୍ଣ ନିରର୍ଥକ। ଜୟଦେବଙ୍କ ପ୍ରଣୀତ ଗୀତଗୋବିନ୍ଦ ଭଳି ଗ୍ରନ୍ଥ ଏ ଜଗତରେ ଆଜିଯାଏ ନାହିଁ କି ହେବ ନାହିଁ ମଧ୍ୟ। ଏବେ ତୁମେ ପ୍ରାଣତ୍ୟାଗର ଭାବନା ଛାଡ଼ିଦିଅ। ଯାଅ, ଜୟଦେବଙ୍କ ଗୀତଗୋବିନ୍ଦର ବାର ସର୍ଗ ଭିତରେ ବାରଟି ଶ୍ଳୋକ ମିଶେଇ ଲେଖିଦେବ। ଫୁଲ ସହିତ, ପଳାଶ ପତ୍ରର ଠୁଙ୍ଗା ଅଦରକାରୀ ହୋଇଥିଲେହେଁ ଯେପରି ଠାକୁରଙ୍କ ପାଖକୁ ଚାଲିଯାଏ, ସେହିପରି ଗୀତଗୋବିନ୍ଦ କାବ୍ୟରେ ସ୍ଥାନ ପାଇ ତୁମର ସେହି ବାରଟି ଶ୍ଳୋକ ଜଗତରେ ଗୌରବ ମଣ୍ଡିତ ହୋଇଯିବ। ପ୍ରଭୁଙ୍କ ଅମୃତ ବଚନ ଶୁଣି ରାଜାଙ୍କ ମନ ପ୍ରସନ୍ନ ହେଲା। ସେ ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଉଆସକୁ ଫେରି ଆସିଲେ।

\+ + +

ଥରେ ଜଣେ ମାଳିର ଭକ୍ତିମତୀ କନ୍ୟା ବାଇଗଣ କିଆରିରୁ ବାଇଗଣ ତୋଳିବା ବେଳେ ଆନନ୍ଦ ମନରେ ଗୁଣୁଗୁଣୁ ହୋଇ ଗୀତଗୋବିନ୍ଦ ପଞ୍ଚମ ସର୍ଗର ଏହି ପଦଟି ଗାଉଥିଲା—***'ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ।'*** ତା'ର ସୁଲଳିତ ସ୍ୱର ସହିତ ହୃଦୟ ଭରା ଭାବର ପ୍ରେମତରଙ୍ଗ

ପ୍ରଭୁ ଜଗନ୍ନାଥଙ୍କୁ ଅଧୀର କରି ପକାଇଲା । ସେ ଆଉ ମନ୍ଦିରରେ ରହି ପାରିଲେ ନାହିଁ । ଭକ୍ତ କଣ୍ଠରୁ ଝରି ଆସୁଥିବା ଗୀତରୂପୀ ସୁମଧୁର ମଧୁରସର ଆସ୍ୱାଦନ ପାଇଁ ସେ ତା' ପଛେ ପଛେ ଗ୍ୱଲିଲେ । ରସଘନମୂର୍ତ୍ତି ଜଗନ୍ନାଥଙ୍କ ଆଗମନ ଲକ୍ଷ୍ୟ କରି ମାତା ସରସ୍ୱତୀ ପ୍ରଭୁଙ୍କ ସେବା ପାଇଁ ଏହାକୁ ସୁନ୍ଦର ଅବସର ଭାବି ମାଳିନୀ କଣ୍ଠରେ ବିରାଜମାନ ହୋଇ ଗୀତଟିକୁ ଆହୁରି ସୁଲଳିତ କରିଦେଲେ । ଜଗନ୍ନାଥ ଆଉ ସମ୍ଭାଳି ପାରିଲେ ନାହିଁ । ମାଳିନୀର ସ୍ୱରରେ ସ୍ୱର ମିଳାଇ ନିଜେ ଗାଇବା ଆରମ୍ଭ କରିଦେଲେ । ମଝିରେ ମଝିରେ ବାଃ! ବାଃ! କହି ପ୍ରଶଂସା ମଧ୍ୟ କରୁଥାନ୍ତି । ଏହିପରି ସେ ଏତେ ବିହ୍ୱଳ ହୋଇଗଲେ ଯେ ତାଙ୍କର ଦେହଜ୍ଞାନ ରହିଲା ନାହିଁ । ପ୍ରଭୁଙ୍କ ସୁକୋମଳ ଅଙ୍ଗରେ ସୁଶୋଭିତ ଝୀନ ପୀତାମ୍ବରରେ ବାଇଗଣ କଣ୍ଟା ବାଜି ତାହା ସ୍ଥାନେ ସ୍ଥାନେ ଚିରିଗଲା । ସତେ ଯେପରି ବାଇଗଣ ଗଛ ତା'ର କଣ୍ଟାରୂପୀ ନଖ ମାଧ୍ୟମରେ ଝୀନ ବସନକୁ ବିଦାରଣ କରି ପ୍ରଭୁଙ୍କ ଅଙ୍ଗ ସ୍ପର୍ଶ ପାଇବାକୁ ବ୍ୟାକୁଳ ହେଉଛି । ପୃଥିବୀ ଦେବୀ କଣ୍ଟାଖୁଞ୍ଚ ମାଧ୍ୟମରେ ପ୍ରଭୁଙ୍କ କୋମଳ ଚରଣରେ ଆଘାତ ଦେଇ ସତେ ଅବା ନିଜ ସୌଭାଗ୍ୟ ଲେଖନୀରେ ଲେଖି ଦେଉଛି ପ୍ରଭୁଙ୍କ ନିକଟକୁ ପ୍ରୀତି ପତ୍ର । ପ୍ରଭୁଙ୍କୁ କିନ୍ତୁ ଏ ସବୁର ଜ୍ଞାନ ନାହିଁ । ତାଙ୍କ ସ୍ମୃତିପଟରେ ମାନିନୀ ରାଧାଙ୍କ ମାନଲୀଳା ପ୍ରସଙ୍ଗ ମନେ ପଡ଼ିଯିବାରୁ ସେ ବିମୁଗ୍ଧ ହୋଇ ମାଳିନୀ କନ୍ୟାର ପଛେ ପଛେ ଗ୍ୱଲିଥାନ୍ତି ।

ଅଷ୍ଟପଦୀ ପୂର୍ଣ୍ଣ ହେବା ପରେ ମାଳିନୀ କନ୍ୟାର ଗୀତ ଲହରୀ ଧୀରେ ଧୀରେ ବିରାମ ଲାଭ କଲା । ଭଗବାନ ସେଇଠୁ ଫେରି ଆସିଲେ ଶ୍ରୀମନ୍ଦିରକୁ । ପ୍ରଭୁଙ୍କ ପୀତାମ୍ବର ଅନେକ ସ୍ଥାନରେ ଚିରି ଯାଇଥିବା ଦେଖି ଗଜପତି ଆଚମ୍ବିତ ହୋଇ ପଡ଼ିଲେ! ପୂଜାରୀମାନଙ୍କୁ ପଗ୍ୱରିବାରୁ ସେମାନେ କହିଲେ—"ମଣିମା! ମାୟାଧର କି ଲୀଳା କରିଛନ୍ତି ଆମ୍ଭକୁ କିଛି ଜଣା ନାହିଁ । ଏବେ ତ ନୂଆ ବସନ ପିନ୍ଧାଇଥିଲୁ, ହଠାତ୍ କେମିତି ଚିରିଗଲା କିଛି ଅନୁମାନ କରି ହେଉ ନାହିଁ ।"

ଏହାର ରହସ୍ୟ ଜାଣିବା ନିମନ୍ତେ ଗଜପତି ହୃଦୟରେ ପ୍ରଭୁଙ୍କୁ ଧ୍ୟାନ କଲେ । ଜଗନ୍ନାଥ କହିଲେ—"ରାଜନ୍! ବାଇଗଣ ଗଛର କଣ୍ଟା ବାଜି ମୋର ଏ ଦଶା ହୋଇଛି । ଦେଖ! ମୋ ପାଦରେ କଣ୍ଟାଖୁଞ୍ଚ ବାଜି କିପରି କ୍ଷତବିକ୍ଷତ ହୋଇଯାଇଛି ।" ଗଜପତି ପ୍ରଭୁଙ୍କ ପାଦକୁ ଗ୍ୱହିଁ ଦେବାବେଳକୁ ତାଙ୍କ ଦେହରେ ଶିହରଣ ଖେଳିଗଲା । ପାଦ ଆଉଁସି ଦେଇ କହିଲେ—"ଆହା! କି ସୁକୋମଳ ପାଦପଦ୍ମ! ମୋ ପ୍ରଭୁଙ୍କ କୋମଳ ଚରଣରେ ଆଘାତ ଦେବାର ଏଡ଼େ ଦୁଃସାହସ

କିଏ କଲା! ଯାହାଙ୍କ ଚରଣରେ ମହାରାଣୀ ଲକ୍ଷ୍ମୀ ପରିଗ୍ରରୀ ଭାବରେ ନିତ୍ୟ ଖଟନ୍ତି, ବ୍ରହ୍ମାଦି ଦେବଗଣ ଯାହାଙ୍କର ଆଜ୍ଞାକାରୀ, ତାଙ୍କୁ ଏଭଳି କଷ୍ଟ ଦେଲା କିଏ?'' ପ୍ରଭୁଙ୍କୁ ପଗ୍ଚରିଲେ—''ମହାବାହୁ! ତୁମର ସେ ବାଇଗଣ କିଆରିରେ କି କାମ ପଡ଼ିଲା? ପୂଜାରୀମାନେ କ'ଣ ସେବାରେ କିଛି ଅବହେଳା କଲେ ଯେ ତୁମକୁ ଯିବାକୁ ପଡ଼ିଲା? କେଉଁ ଦୁଷ୍ଟର ଏଡ଼େ ସାହସ, ଯିଏ ତୁମ ଭଳି ଠାକୁରଙ୍କୁ କଣ୍ଟାଖୁଞ୍ଚରେ ବୁଲାଇ କଷ୍ଟ ଦେଲା! ମୋତେ ଆଜ୍ଞା ହେଉ ପ୍ରଭୁ! ସେ ଦୁଷ୍ଟକୁ ମୃତ୍ୟୁଦଣ୍ଡ ଦେବି।''

ଜଗନ୍ନାଥ କହିଲେ—''ରାଜନ୍! ତେବେ କଣ ତୁମେ ମୋ ଭକ୍ତକୁ ପ୍ରାଣଦଣ୍ଡ ଦେବ?''

—''ଭକ୍ତ? ଯିଏ ତୁମକୁ ଏଭଳି ଘୋର କଷ୍ଟ ଦେଇଛି, ତାକୁ ତୁମେ ଭକ୍ତ କହୁଛ?'' ବିସ୍ମିତ ହୋଇ କହିଲେ ଗଜପତି।

''ହଁ, ସେ ମୋର ପରମ ଭକ୍ତ। ପରମ ଭକ୍ତିମତୀ ମାଳିନୀ କନ୍ୟାର ଗୀତଗୋବିନ୍ଦ ଗାୟନରେ ମୁଗ୍ଧ ହୋଇ ମୁଁ ତାହା ଶୁଣିବା ଲାଳସାରେ ତା' ପଛେ ପଛେ ଗ୍ଚଲି ଯାଇଥିଲି। ଗୀତଗୋବିନ୍ଦ ମୋର ଅତ୍ୟନ୍ତ ପ୍ରିୟ। ତାହାକୁ କିଏ କେଉଁଠି ଗାଇଲେ ମୁଁ ତା' ନିକଟକୁ ନ ଯାଇ ରହିପାରେ ନାହିଁ। ପ୍ରଭୁଙ୍କର ରୁଚି ଜାଣି ରାଜା ମାଳିନୀ କନ୍ୟାକୁ ବହୁ ଆଡ଼ମ୍ବର ସହିତ ପାଲିଙ୍କିରେ ବସାଇ ପାଛୋଟି ଆଣିଲେ। ସୁନ୍ଦର ସୁନ୍ଦର ବସ୍ତ୍ର-ଅଳଙ୍କାରରେ ସୁସଜ୍ଜିତ ହୋଇ ମହାପ୍ରଭୁ ଜଗନ୍ନାଥଙ୍କ ସମ୍ମୁଖରେ ସେ ନୃତ୍ୟ କରି ଗୀତଗୋବିନ୍ଦ ଗାନ କଲା। ତାହା ଶୁଣି ପ୍ରଭୁ ଅତ୍ୟନ୍ତ ପ୍ରସନ୍ନ ହେଲେ। ସେହି ଦିନଠାରୁ ଗଜପତି ରାଜା ମନ୍ଦିରରେ ପ୍ରତିଦିନ ଗୀତଗୋବିନ୍ଦ ଗାୟନର ସମୁଚିତ ବ୍ୟବସ୍ଥା କରିଦେଲେ, ଯାହା କି ଅଦ୍ୟାବଧି ଗ୍ଚଲିଛି।

ଗୀତଗୋବିନ୍ଦ କାବ୍ୟର ଏଭଳି ମହିମା ଦେଖି ଗଜପତି ରାଜା ନଗର ସାରା ଡେଙ୍ଗୁରା ପିଟିଦେଲେ ଯେ ଆଜିଠାରୁ ରାଜା-ରଙ୍କ କେହି ବି ଦେବାଳୟ, ଉଦ୍ୟାନ ପ୍ରଭୃତି ପବିତ୍ର ସ୍ଥାନରେ ଏକାଗ୍ରଚିତ୍ତ ହୋଇ ଗୀତଗୋବିନ୍ଦ ପଢ଼ିବେ ଓ ଗାଇବେ। ଅଷ୍ଟପଦୀର ପ୍ରତିଟି ଅକ୍ଷରକୁ ସ୍ପଷ୍ଟ ଉଚ୍ଚାରଣ କରିବା ସହିତ ଲଳିତ ସ୍ୱରରେ ଗାୟନ କରିବା ବିଧେୟ। ସେତେବେଳେ ଏଭଳି ଭାବନା ରଖିବାକୁ ହେବ ଯେ ଶ୍ରୀରାଧାମାଧବ ସମ୍ମୁଖରେ ବିରାଜମାନ ହୋଇ ଶ୍ରବଣ କରୁଛନ୍ତି।

ସେତେବେଳେ ମୁଲତାନ୍ ଦେଶର ଜଣେ ବ୍ରାହ୍ମଣ ଶ୍ରୀକ୍ଷେତ୍ର ଦର୍ଶନ କରିବାକୁ ଆସିଥିଲେ। ରାଜାଙ୍କର ଏ ଘୋଷଣା ପଡ଼ିଲା ତାଙ୍କ କାନରେ। ସେ ତାହାକୁ

ଗାୟନ କରିବା ଉଦ୍ଦେଶ୍ୟରେ ପ୍ରତିଲିପି କରି ନେଇଗଲେ ଏବଂ ଶୁଦ୍ଧପୂତ ଭାବରେ ପ୍ରତିଦିନ ଠାକୁରଙ୍କ ଆଗରେ ଗାୟନ କଲେ। ବ୍ରାହ୍ମଣ ରହୁଥିବା ଘରର ଉପର ମହଲାରେ ଜଣେ ମୋଗଲ ଭଡ଼ାରେ ରହୁଥିଲା। ସଂଧ୍ୟାବେଳେ ବ୍ରାହ୍ମଣ ଗୀତଗୋବିନ୍ଦ ଗାୟନ କରିବା ସମୟରେ ସେ ନବାବର ଦରବାରକୁ ଯିବା ପାଇଁ ତଳକୁ ଓହ୍ଲାଏ। କିନ୍ତୁ ଗୀତଗୋବିନ୍ଦ ଧ୍ୱନିର ମାଧୁର୍ଯ୍ୟରେ ଆକୃଷ୍ଟ ହୋଇ ସେ ଏତେ ବିଭୋର ହୋଇଯାଏ ଯେ ବହୁ ସମୟ ପର୍ଯ୍ୟନ୍ତ ଶିଢ଼ିରେ ଠିଆ ହୋଇ ଶୁଣେ। ପ୍ରତିଦିନ ତାକୁ ଏହିପରି ଭାବବିହ୍ୱଳ ହୋଇ ଶୁଣୁଥିବା ଦେଖି ଦିନେ ବ୍ରାହ୍ମଣ ପଗ୍ଚରିଲେ, "କିଛି ବୁଝି ପାରୁଛ?" ମୁଗଲ ଜଣକ ବିନମ୍ର ଭାବରେ ହାତଯୋଡ଼ି କହିଲା—"ପଣ୍ଡିତ ମହାଶୟ! ବୁଝି ନ ପାରିଲେ ମଧ୍ୟ ତୁମ ଗାୟନରେ ମୁଁ ମନ୍ତ୍ରମୁଗ୍ଧ ପରି ହୋଇଯାଉଛି, ମୋତେ ତାହା ଭାରି ଭଲ ଲାଗୁଛି।" ବ୍ରାହ୍ମଣ କହିଲେ—"ଏହା ହେଉଛି ଗୀତଗୋବିନ୍ଦ। ଏହାକୁ ଗାନ କଲେ ଭଗବାନ ଭାରି ଖୁସୀ ହୁଅନ୍ତି। ତୁମେ ଯଦି ଗାଇବାକୁ ଗ୍ଚହିଁବ ମୁଁ ତୁମକୁ ଶିଖାଇଦେବି।"

ବିଲେଇ କପାଳକୁ ଶିକା ଛିଡ଼ିବା ପରି ମୁଗଲର ଆନନ୍ଦ କହିଲେ ନ ସରେ। ତା'ର ଅନେକ ଦିନର ମନୋବାଞ୍ଛା ଆଜି ଠାକୁର ପୂର୍ଣ୍ଣ କଲେ। ଅନେକ ଦିନରୁ ସେ ଗାଇବାକୁ ଗ୍ଚହୁଁଥିଲା, ଅଥଚ ଭୟରେ କହିବାକୁ ସାହସ କରିପାରୁ ନ ଥିଲା। ଏବେ ବ୍ରାହ୍ମଣଙ୍କ ପକ୍ଷରୁ ସମ୍ମତି ମିଳିଯିବାରୁ କ୍ଷୁଧାର୍ତ୍ତକୁ ଅମୃତ ମିଳିବା ପରି ସେ ମନପ୍ରାଣ ଦେଇ ଗୀତଗୋବିନ୍ଦ ଅଧ୍ୟୟନ କଲା। ବ୍ରାହ୍ମଣ ତାକୁ ବୁଝାଇ କହିଲେ—"ଯେଉଁଠି ଗୀତଗୋବିନ୍ଦ ଅଷ୍ଟପଦୀ ଗାୟନ କରାଯାଏ, ଭଗବାନ ଶ୍ୟାମସୁନ୍ଦର ନିଶ୍ଚୟ ସେଠାକୁ ଯାଆନ୍ତି। ତୁମେ ଏହାକୁ ଗାୟନ କଲାବେଳେ ଠାକୁରଙ୍କ ପାଇଁ ଗୋଟିଏ ଆସନ ବିଛାଇଦେବ।" ମୁଗଲ କହିଲା—"ହଜୁର! ମୁଁ ତ ଅନ୍ୟର କିଣା ଗ୍ଚକର। ମୋ ଦ୍ୱାରା କ'ଣ ଏ ନିୟମ ପାଳନ ସମ୍ଭବ? ମୁଁ ତ ଗୋଟିଏ ଜାଗାରେ ସ୍ଥାୟୀଭାବେ ବସି ପାଠ କରି ପାରିବି ନାହିଁ। କେତେବେଳେ କେଉଁ କାମରେ କୁଆଡ଼େ ଯେ ଯିବାକୁ ପଡ଼ିବ ତାହାର କୌଣସି ଠିକଣା ନାହିଁ। ଅଧିକ ସମୟ ମୋତେ ଘୋଡ଼ା ଚଢ଼ିବାକୁ ପଡୁଛି, ହେଲେ ଗୀତଗୋବିନ୍ଦ ନ ଗାଇ ମୁଁ ରହି ପାରୁ ନାହିଁ। ଦୟା କରି ମୋତେ କୌଣସି ଉପାୟ ବତାଇ ଦିଅନ୍ତୁ।" ବ୍ରାହ୍ମଣ କହିଲେ—"ଘରେ ଥିଲାବେଳେ ତ କୌଣସି ଅସୁବିଧା ହେବ ନାହିଁ। ଘୋଡ଼ା ପିଠିରେ ବସିବାବେଳେ ସେଇଠି ନିଜ ଆଗରେ ଠାକୁରଙ୍କ ପାଇଁ ଗୋଟିଏ ଆସନ ବିଛାଇଦେବ ଏବଂ ତାଙ୍କୁ ନିବେଦନ କରିବ ଯେ ପ୍ରଭୁ! ଏବେ ଦୟା

କରି ଆପଣ ଏଇଠି ବିରାଜମାନ ହୋଇ ଶୁଣନ୍ତୁ।''

ମୁଗଲ ବ୍ରାହ୍ମଣଙ୍କ କଥା ମାନି ସେହି ଦିନଠାରୁ ସେଭଳି କଲା। ଥରେ କୌଣସି ଜରୁରୀ କାମରେ ଖୁବ୍ ଶୀଘ୍ର ଘୋଡ଼ା ଚଢ଼ି ଯିବାକୁ ପଡ଼ିବାରୁ ଘୋଡ଼ା ପିଠିରେ ଆସନ ବିଛାଇବାକୁ ସେ ଭୁଲିଗଲା। ପୂର୍ବ ଅଭ୍ୟାସ ଯୋଗୁଁ ଅନାୟାସରେ ଗୀତଗୋବିନ୍ଦ ଅଷ୍ଟପଦୀ ତା' ମୁହଁରୁ ଝଙ୍କୃତ ହେବାକୁ ଲାଗିଲା। ମୋଗଲ ସିନା ଆସନ ବିଛାଇବା ଭୁଲିଗଲା, ପ୍ରଭୁ କ'ଣ ଶୁଣିବା ଭୁଲିଯିବେ! ମୁଗଲ ଆଡ଼କୁ ମୁହଁ କରି ଭକ୍ତବତ୍ସଳ ଭଗବାନ ଗୀତଗୋବିନ୍ଦ ଶୁଣିବା ଲାଳସାରେ ପଛୁଆ ପଛୁଆ ଦୌଡ଼ିଲେ। ପ୍ରଭୁଙ୍କ ଚରଣ ନୂପୁରର ରୁଣଝୁଣ ଶବ୍ଦ ମୋଗଲ କାନରେ ପଡ଼ିବାରୁ ସେ ଚକିତ ହୋଇ ଚାହିଁଦେଲା ସମ୍ମୁଖକୁ। ପ୍ରଭୁଙ୍କ ନବ କିଶୋର ନବ ଦୁର୍ବାଦଳ ସମ ଶ୍ୟାମ ରୂପ ସୌନ୍ଦର୍ଯ୍ୟ ଦର୍ଶନ କରି ସେ ଆତ୍ମବିଭୋର ହୋଇଗଲା। ସହସା ଘୋଡ଼ାରୁ ଓହ୍ଲାଇ ପ୍ରଭୁଙ୍କ ପାଦପଦ୍ମରେ ଭକ୍ତିପୂତ ପ୍ରଣାମ ଜଣାଇଲା। କହିଲା— ''ଏ କ'ଣ କରୁଛ ପ୍ରଭୁ! ତୁମର କୋମଳ ଚରଣକୁ କଷ୍ଟ ହେବ। ହେ ଦୟାମୟ! ମୋତେ କ୍ଷମା କରିଦିଅ। ମୁଁ ତରବରରେ ଆସନ ବିଛାଇବା ଭୁଲିଗଲି।'' ଭଗବାନ କହିଲେ—''ତୁ ସିନା ଭୁଲିଗଲୁ, ମୁଁ କ'ଣ ଶୁଣିବା ଭୁଲିଯିବି?'' ପ୍ରଭୁଙ୍କ ବଚନ ଶୁଣି ମୋଗଲ ମନରେ ମର୍ମନ୍ତୁଦ କଷ୍ଟ ହେଲା। ସେ ଭାବିଲା, ''ମୋର ଅସାବଧାନତା ଯୋଗୁଁ ମୋ ପ୍ରଭୁଙ୍କୁ କେତେ କଷ୍ଟ ହେଲା। ଚାକିରୀ କରିଥିବା ପର୍ଯ୍ୟନ୍ତ ଭବିଷ୍ୟତରେ ଏଭଳି ଭୁଲ୍ ହେବାର ଅନେକ ସମ୍ଭାବନା ରହିଛି। ତେଣୁ ସବୁ କିଛି ଛାଡ଼ି ଭଗବାନଙ୍କ ସେବାରେ ମନପ୍ରାଣ ଢାଳିଦେବି।'' ଏଭଳି ମନସ୍ଥ କରି ସେ ଚାକିରୀରୁ ଇସ୍ତଫା ଦେଇ ଗୃହଜଞ୍ଜାଳ ପରିତ୍ୟାଗ କରି ବୈରାଗୀ ବେଶ ଧାରଣପୂର୍ବକ ପ୍ରଭୁଙ୍କ ଭଜନରେ ମଗ୍ନ ରହିଲା।

ଜୟଦେବଙ୍କର ପ୍ରଭୁଭକ୍ତି ଓ ଗୀତଗୋବିନ୍ଦ କାବ୍ୟ ଯେପରି ଜଗତ ପ୍ରସିଦ୍ଧ, ତାଙ୍କର ତ୍ୟାଗ, ବୈରାଗ୍ୟ ଓ ସହନଶୀଳତା ମଧ୍ୟ ସେହିପରି ଅବର୍ଣ୍ଣନୀୟ। ଥରେ ଜଣେ ଶ୍ରଦ୍ଧାଳୁ ବ୍ୟକ୍ତି ସତ୍ସଙ୍ଗ ଆଲୋଚନା ଓ ହରିନାମ ସଂକୀର୍ତ୍ତନ ନିମନ୍ତେ ତାଙ୍କୁ ଆଦରରେ ଘରକୁ ଡାକିଥିଲା। ସେ ତା'ର ଆଗ୍ରହ ରକ୍ଷା କରି ତା' ଘରେ ପଦାର୍ପଣ କଲେ। ତାଙ୍କ ଆଗମନ ଯୋଗୁଁ ବହୁ ଦିନ ଧରି ହରିନାମ ସଂକୀର୍ତ୍ତନ ଓ ସତ୍ସଙ୍ଗ ସମାରୋହ ଅନୁଷ୍ଠିତ ହେଲା। ଫେରିବା ବେଳକୁ ଭକ୍ତ ଜଣକ ବାଧ୍ୟ କରି ଜୟଦେବଙ୍କୁ ଦକ୍ଷିଣା ରୂପରେ କିଛି ଧନରତ୍ନ ଓ ସୁନାମୋହର ଦେବାକୁ ଇଚ୍ଛା ପ୍ରକାଶ କଲେ। ସେସବୁ ପ୍ରତି ଜୟଦେବଙ୍କର ଆଦୌ ସ୍ପୃହା ନ ଥିଲା।

ସେ ଭଲଭାବେ ଜାଣି ସାରିଥିଲେ ଯେ ଅର୍ଥ ହିଁ ଅନର୍ଥର ମୂଳ । ସେଥିରେ ପନ୍ଦର ପ୍ରକାର ଦୋଷ ନିତ୍ୟ ନିବାସ କରେ । ସେଥିପାଇଁ ଧନ-ରତ୍ନ ନେବାକୁ ସେ ବାରମ୍ବାର ମନା କଲେ । କିନ୍ତୁ ଶ୍ରଦ୍ଧାଳୁ ଲୋକଟି ବହୁ ଆଗ୍ରହ କରି ତାଙ୍କ ଗାମୁଛାରେ ସେସବୁକୁ ବାନ୍ଧିଦେଲା । ତା'ର ପ୍ରେମାଗ୍ରହକୁ କାଟି ନ ପାରି ଜୟଦେବ ତାହାକୁ ନେବାକୁ ବାଧ୍ୟ ହେଲେ ।

ଜୟଦେବ ଘରକୁ ଫେରିବା ବାଟରେ ଡାକୁମାନଙ୍କୁ ଧନ କଥା ଜଣାପଡ଼ିଗଲା । ସେମାନେ ଅଗ୍ରନକ ଆସି ଜୟଦେବଙ୍କର ସାଙ୍ଗ ହୋଇଗଲେ । କିଛି ଦୂର ଯିବା ପରେ ଜୟଦେବ ମହାପ୍ରଭୁ ସେମାନଙ୍କୁ ପଗ୍ଚରିଲେ—"ତୁମେମାନେ କେଉଁଆଡ଼େ ଯିବ?" ସେମାନେ ଉତ୍ତର ଦେଲେ—"ତୁମେ ଯେଉଁଠିକି ଯିବ, ଆମେ ମଧ୍ୟ ସେଇଠିକି ଯିବୁ ।" ସେମାନଙ୍କର ଗ୍ଚଲିଚଳନ ଓ କଥାବାର୍ତ୍ତାରୁ ସେ ବୁଝିଗଲେ ଯେ ଏମାନେ ମହା ଠକ ଲୋକ । ତାଙ୍କର ତ ଧନ ପ୍ରତି ମମତା ନ ଥିଲା, ଭକ୍ତର ଆଗ୍ରହରେ ସେ ତାହା ଆଣିବାକୁ ବାଧ୍ୟ ହୋଇଥିଲେ, ତେଣୁ ସେ ଗାମୁଛା ସହିତ ସବୁ ଧନ ଗ୍ଚୋରଙ୍କ ହାତକୁ ବଢ଼ାଇଦେଇ କହିଲେ—"ଏଇ ଗାମୁଛାରେ କିଛି ମୋହର ବନ୍ଧା ହୋଇଛି । ମୁଁ ବୁଢ଼ା ଲୋକ ନେଇ ପାରୁ ନାହିଁ । ଏ ସବୁକୁ ତୁମେମାନେ ପାଖରେ ରଖ । ଆମେ ତ ଏକା ଜାଗାକୁ ଯିବା । ସେଠାରେ ପହଞ୍ଚିବା ପରେ ତୁମର ଇଚ୍ଛା ଯେତିକି ତୁମେ ରଖିବ ଏବଂ ବାକି ମୋତେ ଫେରାଇ ଦେବ । ମୁଁ ଭାବୁଥିଲି କେହି ଜଣେ ସାଙ୍ଗ ମିଳିଗଲେ ଭଲ ହୁଅନ୍ତା । ଭଗବାନଙ୍କ କୃପାରୁ ତୁମେମାନେ ଭେଟ ହୋଇଗଲ ।"

ଜୟଦେବ ସରଳ ଭାବନାରେ ଠକମାନଙ୍କୁ ଏପରି କହି ମୋହର ଗଣ୍ଠିଲିଟି ବଢ଼ାଇ ଦେଲେ, ଅଥଚ ଗ୍ଚୋରମାନେ ତାଙ୍କ କଥାକୁ ଓଲଟା ବୁଝିଲେ । ସେମାନେ ଭାବିଲେ—ଏବେ ସିନା ଇଏ ଭାରି ଦାନୀ ଦେଖାଇ ହେଉଛି । ନିଛାଟିଆ ଜଙ୍ଗଲରେ କେହି ସହାୟ ନ ଥିବାରୁ ଏବେ ଭଦ୍ରଲୋକ ଭଳି ଗଣ୍ଠିଲିଟି ଆମକୁ ଧରାଇ ଦେଲା, କିନ୍ତୁ କେତେବେଳେ ଯେ ଆମକୁ ଲୋକଙ୍କ ଆଗରେ ଧରା ପକେଇଦେବ, କ'ଣ ଭରସା! ନରମାୟା ନାରାୟଣଙ୍କୁ ଅଗୋଚର ପରା! ଏହାକୁ କି ବିଶ୍ୱାସ?" ସେମାନଙ୍କ ଭିତରୁ ଜଣେ କହିଲା—ଏଇଟାକୁ ପ୍ରାଣରେ ମାରିଦେବା ଭଲ ହେବ । ଆଉ ଜଣେ କହିଲା—ସବୁ ଧନ ତ ଆମକୁ ମିଳିଗଲା, ପୁଣି ଗୋଟାଏ ନିର୍ଦ୍ଦୋଷ ମନୁଷ୍ୟକୁ ମାରି କି ଲାଭ? ଅନ୍ୟ ଜଣେ କହିଲା—ଯଦି ରାଜାଙ୍କୁ କହି ଆମକୁ ଇଏ କାରାଗାରରେ ପୂରାଇଦେବ, ତେବେ ଧନ ସହିତ ଆମର ପ୍ରାଣ ମଧ୍ୟ ଯିବ;

ରାଜା ଆମକୁ ନିଶ୍ଚୟ ଶୂଳିରେ ଚଢ଼ାଇଦେବ। ସେତେବେଳେ କ'ଣ କରିବା? ଆଉ ଜଣେ କହିଲା—ତେବେ ଗୋଟିଏ କାମ କର। ଏହାକୁ ମାର ନାହିଁ କି ଛାଡ଼ ନାହିଁ। ଏହାର ହାତ-ଗୋଡ଼ ହାଣି ଶୁଖିଲା କୂଅରେ ଫୋପାଡ଼ି ଦିଅ।

କଥାଟି ସମସ୍ତଙ୍କ ମନକୁ ପାଇଲା। ସେମାନେ ଜୟଦେବଙ୍କର ହାତଗୋଡ଼ କାଟି କୂଅ ଭିତରକୁ ଠେଲିଦେଇ ସବୁ ଧନକୁ ବାଣ୍ଟିକୁଣ୍ଟି ନିଜ ନିଜ ଘରକୁ ଫେରିଗଲେ। ସେମାନଙ୍କ ହୃଦୟରେ ଟିକିଏ ଦୟା ବି ଆସିଲା ନାହିଁ! ଜଣେ ନିରପରାଧ ଲୋକକୁ କଷ୍ଟ ଦେବାକୁ ସେମାନଙ୍କର ବିବେକ ବାଧା ଦେଲା ନାହିଁ। ସେଥିପାଇଁ ଦୁର୍ଜନ ଲୋକକୁ ସର୍ପଠାରୁ ମଧ୍ୟ ଭୟଙ୍କର କୁହାଯାଇଛି। ସାପ ପାଦତଳେ ଥାଉ ବା ମୁଣ୍ଡ ଉପରେ ବସିଥାଉ, ସେ ନିଶ୍ଚୟ କାମୁଡ଼ିବ। ସେହିପରି ଦୁର୍ଜନ ଲୋକ ସହିତ ସାଙ୍ଗ ହୁଅ ବା ତାକୁ ବିରୋଧ କର, ସେ ନିଶ୍ଚୟ ଅପକାର କରିବ—

ଆରାଧିତୋ ବାପ୍ୟପରାଧିତୋ ବା
ଖଳଃ କରୋତ୍ୟେବ ସଦାପକାରମ୍।
ପାଦସ୍ଥିତୋ ମୂର୍ଦ୍ଧନି ସଂସ୍ଥିତୋ ବା
ଦଶତ୍ୟବଶ୍ୟଂ ଖଳୁ ଦନ୍ଦଶୂକଃ ॥ (ନୀତୌ)

ଏଭଳି ଘୋର ବିପଦରେ ମଧ୍ୟ ଭକ୍ତ ଜୟଦେବଙ୍କ ମନରେ ଲେଶମାତ୍ର ବିଷାଦ ନ ଆଏ। ସେ ଏହାକୁ ପ୍ରଭୁଙ୍କର ମଙ୍ଗଳମୟ ବିଧାନ ଭାବି ଉଚ୍ଚସ୍ୱରରେ ନାମ-ସଂକୀର୍ତ୍ତନ କରି ଆନନ୍ଦିତ ହେଉଥାନ୍ତି। କିଛି ସମୟ ମଧ୍ୟରେ ରାଜା ଲକ୍ଷ୍ମଣସିଂହ ସେ ବାଟରେ ଯାଉ ଯାଉ ତାଙ୍କ କାନରେ ସଂକୀର୍ତ୍ତନ ଧ୍ୱନି ପଡ଼ିଲା। ସେ ବିସ୍ମୟ ଚିତ୍ତରେ ଭାବିଲେ କାହାର ଏ ସୁଲଳିତ କଣ୍ଠସ୍ୱର! କୂଅ ଭିତରକୁ ଚାହିଁ ଦେଖନ୍ତି ତ ଜୟଦେବ ପ୍ରଭୁଭକ୍ତିରେ ମଗ୍ନ। ତାଙ୍କ ମୁଖରୁ ଫୁଟି ଉଠୁଛି ଦିବ୍ୟ ଜ୍ୟୋତିର ଅମିତ ପ୍ରକାଶ, ନେତ୍ରରୁ ବହି ଚାଲିଛି ଧାର ଧାର ଆନନ୍ଦାଶ୍ରୁ। ଏଭଳି ପ୍ରେମ ବୈଚିତ୍ର୍ୟ ସ୍ଥିତି ଲକ୍ଷ୍ୟ କରି ଜୟଦେବଙ୍କ ପ୍ରତି ରାଜାଙ୍କ ମନରେ ସଦ୍ଭାବନା ଜାଗ୍ରତ ହେଲା। ସେ ତାଙ୍କୁ କୂଅରୁ ବାହାର କରି ଯୋଡ଼ହସ୍ତପୂର୍ବକ ବିନୀତ ସ୍ୱରରେ ପଚାରିଲେ—"ମହାତ୍ମନ୍! ଆପଣଙ୍କ ଭଳି ତେଜସ୍ୱୀ ବ୍ରାହ୍ମଣଙ୍କୁ କିଏ ଏଭଳି କଷ୍ଟ ଦେଲା? କିଏ ଆପଣଙ୍କୁ ହସ୍ତପାଦବିହୀନ କରିଦେଲା? ଆପଣ ଦୟାକରି ତା'ର ପରିଚୟ ଦିଅନ୍ତୁ। ମୁଁ ସେଭଳି ଦୁଷ୍ଟକୁ କଠୋର ଦଣ୍ଡ ଦେଇ ତୁମ ପ୍ରତି କରିଥିବା ଅପକାରର ପ୍ରତିଶୋଧ ନେବି।" ଜୟଦେବ ଟିକିଏ ହସିଦେଇ କହିଲେ—"ରାଜନ୍! ମୋତେ କେହି କଷ୍ଟ ଦେଇ ନାହାନ୍ତି। ମୋ ଦେହର ଗଢ଼ଣ ଏହିପରି।"

ସାଧୁଜନ କଦାପି ମିଛ କହନ୍ତି ନାହିଁ । ତେଣୁ ଅଜାଣତରେ ହେଲେ ବି ତାଙ୍କ ମୁଖରୁ ସତ କଥା ହିଁ ବାହାରିଲା । ଭକ୍ତବତ୍ସଳ ଜଗନ୍ନାଥ ଜୟଦେବଙ୍କୁ ତାଙ୍କର ଅଭିନ୍ନ ସ୍ୱରୂପ ବୋଲି ସ୍ୱୀକାର କରି ସାରିଥିଲେ । ସେ ପଦ୍ମାବତୀକୁ ଜୟଦେବଙ୍କ ନିକଟରେ ସମର୍ପଣ କରିଦେବାକୁ ସୁଦେବ ବ୍ରାହ୍ମଣଙ୍କୁ ଆଜ୍ଞା ଦେଇଥିବା କଥାଟି ଆଜି ସତ୍ୟ ପ୍ରମାଣିତ ହେଲା । ବ୍ରଜଲୀଳା ଶ୍ରବଣରେ ଦ୍ରବୀଭୂତ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଯେପରି ହସ୍ତପାଦଶୂନ୍ୟ ହୋଇ ଦାରୁବ୍ରହ୍ମ ରୂପରେ କଳିଯୁଗୀୟ ଜୀବଙ୍କୁ ଉଦ୍ଧାର କରୁଛନ୍ତି, ଜୟଦେବଙ୍କ ରୂପ ଠିକ୍ ସେହିପରି ହୋଇଯାଇଥିଲା । ଦ୍ୱିତୀୟତଃ ଜୟଦେବ ଭଲଭାବେ ଜାଣିଥିଲେ ଯେ ଏ ଜଗତରେ ଭଗବାନ ଥାଉ ଥାଉ କେହି କାହାକୁ ଦୁଃଖ ଦେବାକୁ ସକ୍ଷମ ହୋଇ ପାରିବ ନାହିଁ । ସବୁକିଛି ପ୍ରଭୁଙ୍କର ମଙ୍ଗଳମୟ ବିଧାନ । ମେରୀ ଖୁଣ୍ଟରେ ବନ୍ଧା ହୋଇଥିବା ଡାଉଣିଟିରେ ଗ୍ରଥିତ ହୋଇ ବଳଦମାନେ ଘୂରି ବୁଲୁଥିବା ପରି ସମସ୍ତ ପ୍ରାଣୀ ନିଜ ନିଜର କର୍ମଫଳରୂପୀ ତନ୍ତ୍ରରେ ବନ୍ଧା ହୋଇ ସୁଖ-ଦୁଃଖ ଭୋଗ କରୁଛନ୍ତି । ତେଣୁ ତାଙ୍କ ପ୍ରତି ଯାହା ସବୁ ଘଟିଗଲା, ତାହା ପଛରେ ମଧ୍ୟ ଭଗବାନଙ୍କ ଅନୁକମ୍ପା ଲୁଚି ରହିଛି । ଭଗବାନ ବୋଧହୁଏ ଏହି ମାଧ୍ୟମରେ ତାଙ୍କର ସବୁ ପାପରାଶି ଧୋଇ ଦେବାକୁ ସ୍ଥିର କରିଛନ୍ତି । ଯଦି ସେ ଠକମାନଙ୍କର ସୂଚନା ଦିଅନ୍ତି, ତେବେ ରାଜା ସେମାନଙ୍କୁ ନିଶ୍ଚୟ ଦଣ୍ଡ ଦେବେ । ଜୟଦେବ ଅନ୍ୟ କାହାକୁ ଦଣ୍ଡ ଦେବାକୁ ଚାହୁଁ ନ ଥିଲେ । ତା' ଛଡ଼ା ସେ ଭଲଭାବେ ଜାଣିଥିଲେ ଯେ ଅଧର୍ମ ଆଚରଣ କରିଥିବା ଲୋକକୁ ଯେଉଁ ଦଣ୍ଡ ମିଳେ, ତାହାକୁ ଅଧର୍ମୀ ସାବ୍ୟସ୍ତ କରି ଅନ୍ୟ ଆଗରେ ତାହାର ଚୁଗୁଲି କରୁଥିବା ଲୋକକୁ ମଧ୍ୟ ସେହି ଦଣ୍ଡ ମିଳିବ । ଏ କଥା ଭାଗବତରେ ପରୀକ୍ଷିତ ଓ ଧର୍ମଙ୍କ ସଂବାଦରେ ସ୍ପଷ୍ଟଭାବେ ଉଲ୍ଲେଖ ଅଛି ।

ଦିଗ୍‌ବିଜୟ ଯାତ୍ରାରେ ରାଜା ପରୀକ୍ଷିତ ବୃଷଭକୁ ଏକ ପାଦରେ ଠିଆ ହୋଇଥିବାର ଦେଖି ତାଙ୍କର ଅନ୍ୟ ତିନୋଟି ଗୋଡ଼ କାଟି ଦେଇଥିବା ଦୁଷ୍ଟ ବ୍ୟକ୍ତିର ନାମ ପଚ୍ଚାରିଲେ । ବୃଷଭ ଉତ୍ତର ଦେଲେ—"ହେ ରାଜନ୍! ଶାସ୍ତ୍ରର ବିବିଧ ବଚନରେ ବୁଦ୍ଧି ମୋହିତ ହେବା କାରଣରୁ ମୁଁ କାହାକୁ ମୋ ଦୁଃଖର କାରଣ କହିବି ଜାଣି ପାରୁ ନାହିଁ । ଯାହାଙ୍କ ଦୃଷ୍ଟିରେ ଦ୍ୱୈତ ବୋଲି କିଛି ନାହିଁ, ସେମାନେ ନିଜେ ନିଜକୁ ସମସ୍ତ କ୍ଳେଶର କାରଣ ମାନନ୍ତି । କେତେକ ପ୍ରାରବ୍ଧକୁ ଦୁଃଖର କାରଣ କହନ୍ତି ତ ଆଉ କେତେକ କହନ୍ତି କର୍ମ ହିଁ ଦୁଃଖ ଦିଏ । କେତେକଙ୍କ ମତରେ ସ୍ୱଭାବ ଏବଂ ଆଉ କେତେକଙ୍କ ମତରେ ଈଶ୍ୱର ହିଁ ଦୁଃଖର

କାରଣ। କେତେକ କହନ୍ତି ଯେ ତର୍କ-ବିତର୍କ ଅଥବା ବାଚିକ ପ୍ରଗଲ୍‌ଭତା ଦ୍ୱାରା ଦୁଃଖର କାରଣ ଖୋଜି ବାହାର କରିବା ସମ୍ଭବପର ନୁହେଁ। ଅତଏବ ତୁମେ ଏ ବିଷୟରେ ନିଜେ ବିଚାର କରି ବୁଝିନିଅ।''

ସେହିପରି ଭକ୍ତ ଜୟଦେବ ଅନ୍ୟ କାହାକୁ ଦୋଷ ନ ଦେଇ ଭଗବାନଙ୍କ କୃପାରୁ ତାଙ୍କୁ ଏମିତି ଦେହ ମିଳିଛି ବୋଲି କହିଲେ। ପ୍ରକୃତରେ ଏହା ହିଁ ସଜ୍ଜନଙ୍କର ସହଜ ସ୍ୱଭାବ ଏବଂ ଉଦାରତା। କେହି ତାଙ୍କର ଯେତେ ଅନିଷ୍ଟ କଲେ ମଧ୍ୟ ସେ କାହାର ଦୋଷ ଦେଖନ୍ତି ନାହିଁ କି କାହାକୁ ଦୁଃଖ ଦିଅନ୍ତି ନାହିଁ। ଚାରୋଟି ଗୁଣ ତାଙ୍କ ହୃଦୟରେ ଆଭୂଷଣ ରୂପରେ ସର୍ବଦା ବିରାଜମାନ ଥାଏ— କ୍ଷମା, ଦୟା, ଦୀନତା ଓ ପରଦୋଷ ସଂଗୋପନ। ଏହି କାରଣରୁ ସେ ଜଗତରେ ବନ୍ଦନୀୟ ହୋଇଥାନ୍ତି।

ଜୟଦେବଙ୍କର ଦିବ୍ୟ ଦର୍ଶନ ପାଇ ଓ ତାଙ୍କର ସରସ ବଚନାମୃତ ଶ୍ରବଣ କରି ରାଜା ଲକ୍ଷ୍ମଣସିଂହଙ୍କ ହୃଦୟରେ ଭକ୍ତି ଲତା ଅଙ୍କୁରିତ ହେଲା। ସେଇଥିପାଇଁ ତ କୁହାଯାଇଛି ଯେ ଭକ୍ତଙ୍କର ସଙ୍ଗ ମହା ପତିତକୁ ମଧ୍ୟ ପରମ ପାବନ କରିଦିଏ, ଶୁଷ୍କ ହୃଦୟରେ ଭରିଦିଏ ପ୍ରଭୁପ୍ରେମର ସ୍ୱଚ୍ଛ ମନ୍ଦାକିନୀ। ରାଜାଙ୍କ ଜୀବନ ଧାରା ନୂଆ ମୋଡ଼ ନେଲା। ସେ ବୁଝିଗଲେ, ଇଏ କୌଣସି ସାଧାରଣ ପୁରୁଷ ନୁହନ୍ତି। ଏହାଙ୍କର ଗୁଣ ଓ ମହିମା ଅବର୍ଣ୍ଣନୀୟ। ଭଗବାନ ନିଶ୍ଚୟ ତାଙ୍କ ଉପରେ କରୁଣା କରି ଏଭଳି ମହାପୁରୁଷଙ୍କର ସାନ୍ନିଧ୍ୟ ପ୍ରଦାନ କରିଛନ୍ତି। ସେ ହାତଯୋଡ଼ି ତାଙ୍କ ପାଦତଳେ ବିନତି ଜଣାଇ ପାଲିଙ୍କିରେ ବସାଇ ରାଜବାଟୀକୁ ନେଇଗଲେ। ନିପୁଣ ଚିକିତ୍ସକଙ୍କୁ ଡକାଇ ତାଙ୍କ ଉପଚାରର ଉତ୍ତମ ବ୍ୟବସ୍ଥା କରିଦେଲେ। କିଛି ଦିନ ମଧ୍ୟରେ କ୍ଷତସ୍ଥାନ ପୂରିଗଲା, ସେ ଆରୋଗ୍ୟ ଲାଭ କଲେ।

ଦିନେ ରାଜା ଲକ୍ଷ୍ମଣସେନ ଭକ୍ତି ସହକାରେ ଜୟଦେବଙ୍କୁ ପ୍ରଣାମ କରି ନିବେଦନ ସ୍ୱରରେ କହିଲେ—ମହାତ୍ମନ୍! ସାଧୁସନ୍ଥଙ୍କ ମୁଖରୁ ସତ୍ସଙ୍ଗ ଶୁଣିବାର ଇଚ୍ଛା ମୋ ମନ ତଳେ ଅନେକ ଦିନରୁ ଦବି ରହିଥିଲା। ଆପଣଙ୍କ ସଙ୍ଗରେ ଭେଟ କରାଇ ଭଗବାନ ମୋର ସେହି ଅଭିଳାଷ ଏବେ ପୂରଣ କରିଛନ୍ତି। ଏବେ ଆପଣ ମୋତେ ଆତ୍ମକଲ୍ୟାଣର ମାର୍ଗ ଦେଖାନ୍ତୁ। ମୁଁ ସହର୍ଷ ଆପଣଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ନିଜକୁ କୃତାର୍ଥ ମଣିବି।'' ରାଜାଙ୍କର ବିନମ୍ରତା ଓ ଆନ୍ତରିକ ନିଷ୍ଠା ଦେଖି ଜୟଦେବ କହିଲେ—ରାଜନ୍! ତୁମେ ଯଦି ଆତ୍ମକଲ୍ୟାଣ ଇଚ୍ଛା କର, ତେବେ ପ୍ରତିଦିନ ଠାକୁରଙ୍କୁ ବିବିଧ ମିଷ୍ଟାନ୍ନ ଭୋଗ ଲଗାଇ ସାଧୁସନ୍ଥଙ୍କ

ସେବା କର। ସେମାନେ ହେଲେ ମଳୟ ପବନ। ମଳୟ ପବନ କଣ୍ଟକିତ ବୃକ୍ଷଗୁଡ଼ିକୁ ଚନ୍ଦନରେ ପରିଣତ କରିଦେବା ପରି ସେମାନେ ପାଷାଣ ହୃଦୟରେ ମଧ୍ୟ ଭକ୍ତି ସରିତା ପ୍ରବାହିତ କରିପାରନ୍ତି। ସେମାନଙ୍କ ଅନୁଗ୍ରହରୁ ତୁମ ହୃଦୟରେ ଭକ୍ତି ମହାରାଣୀ ନିତ୍ୟ ନିବାସ କରିବେ। ସେମାନଙ୍କୁ ଦର୍ଶନ କରି ନେତ୍ର ସଫଳ କର। କେହି ସନ୍ତାନର ସେବା କଲେ ପିତାମାତା ଯେପରି ତା' ଉପରେ ପ୍ରସନ୍ନ ହୁଅନ୍ତି, ସେହିପରି ସାଧୁସନ୍ଥଙ୍କ ସେବାରେ ଠାକୁରେ ଅତିରେ ପ୍ରସନ୍ନ ହୋଇଯାଆନ୍ତି। କଣ୍ଠିମାଳା ଓ ତିଳକ ଧାରଣ କରିଥିବା ପ୍ରତ୍ୟେକ ସାଧୁ ପୂଜନୀୟ—

**ମାଳା ତିଳକମୁଦ୍ରାଭିଃ ସଂଯୁକ୍ତୋ ଯଃ ପ୍ରଦୃଶ୍ୟତେ।**
**ଶ୍ୱପଚାଲୋଽପି ମହୀପାଳ ପୂଜନୀୟୋ ନ ସଂଶୟଃ॥**

ଜୟଦେବଙ୍କ ବଚନରେ ରାଜା ଲକ୍ଷ୍ମଣସେନଙ୍କର ଅଗାଧ ଶ୍ରଦ୍ଧା ଥିଲା। ସେହି ଦିନଠାରୁ ସେ ସାଧୁସେବାରେ ମନପ୍ରାଣ ଢାଳିଦେଲେ। ଅନ୍ନବସ୍ତ୍ରାଦି ଦ୍ୱାରା ସେ ସାଧୁସନ୍ଥଙ୍କୁ ଯଥୋଚିତ ସମ୍ମାନ ଦିଅନ୍ତି। କୌଣସି ସାଧୁସନ୍ଥ ତାଙ୍କ ଦ୍ୱାରରୁ ପ୍ରସାଦ ସେବନ ନ କରି ଫେରନ୍ତି ନାହିଁ। ତାଙ୍କ ସାଧୁସେବାର ଖ୍ୟାତି ମଳୟ ପବନ ଭଳି ଧୀରେ ଧୀରେ ଚତୁର୍ଦ୍ଦିଗରେ ବ୍ୟାପିଗଲା। ଲୋକମୁଖରୁ ରାଜାଙ୍କର ସାଧୁସେବା ନିଷ୍ଠା କଥା ଶୁଣି ସେହି ଠକମାନେ ତାଙ୍କୁ ଠକିବାର ସୁଯୋଗ ଖୋଜିଲେ। ରାଜା କଣ୍ଠିମାଳା ଓ ତିଳକକୁ ସମ୍ମାନ ଦେଉଥିବାରୁ ସେମାନେ ସୁନ୍ଦର ସୁନ୍ଦର କଣ୍ଠିମାଳା ପିନ୍ଧି, ଲମ୍ବା ଚଉଡ଼ା ଊର୍ଦ୍ଧ୍ୱପୁଣ୍ଡ୍ର ତିଳକ କାଟି, ଚିତ୍ତାକର୍ଷକ ଶୁଭ୍ର ଶ୍ୱେତ ବସ୍ତ୍ର ପରିଧାନ କରି ଆସି ରାଜାଙ୍କ ନଗରରେ ପହଞ୍ଚିଲେ। ତାଙ୍କୁ ଦୂରରୁ ଦେଖି ଜୟଦେବ ବେଶ୍ ଚିହ୍ନିଗଲେ। ତଥାପି ସେମାନଙ୍କର ସ୍ୱାଗତ ସମ୍ମାନରେ ସେ ଆଦୌ ହେଳା ନ କରି ବରଂ ଅନ୍ୟମାନଙ୍କ ଅପେକ୍ଷା ବିଶେଷ ସମ୍ମାନ ଜଣାଇଲେ। ରାଜାଙ୍କୁ ଡାକି କହିଲେ—"ରାଜନ୍! ଏମାନେ ମୋର ବଡ଼ ଗୁରୁଭାଇ। ଏମାନଙ୍କ ହୃଦୟ ଭଗବଦ୍ଭକ୍ତିରେ ପରିପୂରିତ। ତୁମର ସୌଭାଗ୍ୟ ଯେ ଆଜି ତୁମେ ଏକ ସଙ୍ଗେ ଚାରିଜଣ ମହାନ୍ ସାଧୁଙ୍କ ଦର୍ଶନ ପାଇଲ। ରାଜବାଟୀରେ ଏମାନଙ୍କ ନିବାସର ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବା ଦରକାର। ସେବକମାନଙ୍କୁ ସତର୍କ କରାଇ ଦେବ, ଏମାନଙ୍କ ସେବାରେ ଯେପରି ତିଳେମାତ୍ର ତ୍ରୁଟି ନ ହୁଏ।"

ଜୟଦେବ ସେମାନଙ୍କୁ ନିଜ ପାଖରେ ଅଥବା ସନ୍ଥମଣ୍ଡଳୀ ଭିତରେ ନ ରଖି ସେମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ରାଜାଙ୍କୁ କହିବା ପଛରେ ତାଙ୍କର ଭାବନା ଥିଲା ଯେ ନିଜ ପାଖରେ ରଖିଲେ ଠକମାନଙ୍କୁ ସେମାନଙ୍କ କୁକୃତ୍ୟ ପାଇଁ

ବାରମ୍ବାର ଦୁଃଖ ହେବ। ଆଉ ଯଦି ସନ୍ଥଙ୍କ ମଣ୍ଡଳୀରେ ରଖନ୍ତି, ତେବେ ପ୍ରକୃତ ଭେଦ ଖୋଲିଯାଇ ପାରେ। ଏମାନେ ତ ପାରମ୍ପରିକ ଶିକ୍ଷାପ୍ରାପ୍ତ ସାଧୁ ନୁହନ୍ତି, ରାଜାଙ୍କୁ ଠକିବାକୁ ମନଇଚ୍ଛା ସାଧୁବେଶ ସାଜିଛନ୍ତି, ତେଣୁ ସାଧୁତା ସମ୍ପର୍କରେ କେହି କିଛି ପଗ୍ଚରିଦେଲେ କହି ପାରିବେ ନାହିଁ। ରାଜାଙ୍କୁ ଏ କଥା ଜଣା ପଡ଼ିଲେ ସନ୍ଥବେଶ ପ୍ରତି ତାଙ୍କର ଅଶ୍ରଦ୍ଧା ହୋଇପାରେ। ଲୋକମାନେ ମଧ୍ୟ ସନ୍ଥବେଶକୁ ଘୃଣା କରି ପାରନ୍ତି। ତା' ଛଡ଼ା ଭେଦ ଖୋଲିଗଲେ ଠକମାନେ ଲଜ୍ଜାରେ କାହାକୁ ମୁହଁ ଦେଖାଇ ପାରିବେ ନାହିଁ। ଏ ସବୁ କାରଣରୁ ସେ ସ୍ୱତନ୍ତ୍ରରୂପେ ରାଜବାଟୀରେ ସେମାନଙ୍କର ବ୍ୟବସ୍ଥା କରାଇଲେ।

ରାଜା ନତମସ୍ତକ ହୋଇ ତତ୍‌କ୍ଷଣାତ୍ ଜୟଦେବଙ୍କର ଆଜ୍ଞା ଶିରୋଧାର୍ଯ୍ୟ କଲେ। ସେମାନଙ୍କୁ ଠାକୁରଙ୍କ ଠାରୁ ବଳି ସେବାସତ୍କାର କରାଗଲା। ରାଜା ନିଜେ ସେବା ଦାୟିତ୍ୱ ବହନ କଲେ। ଠକମାନେ ଜୟଦେବ ଗୋସାଇଁଙ୍କୁ ଭଲଭାବେ ଚିହ୍ନି ସାରିଥିଲେ। ତେଣୁ ସେମାନଙ୍କ ମନରେ ସନ୍ଦେହ ସୃଷ୍ଟି ହେଲା ଯେ ଏତେ ସ୍ୱାଗତ ସତ୍କାର ପଛରେ କୌଣସି ଷଡ଼ଯନ୍ତ୍ର ନାହିଁ ତ? ରାଜାଙ୍କ ହାତରେ ଇଏ ସେମାନଙ୍କୁ ଦଣ୍ଡ ଦେବ ନାହିଁ ତ? ରାଜାଙ୍କର ଆତିଥ୍ୟ ସେମାନଙ୍କୁ କଣ୍ଟା ଫୋଡ଼ି ହେବା ଭଳି ଲାଗୁଥାଏ। ବଳିପଶୁର ପୂଜା-ଅର୍ଚ୍ଚନା ଭଳି ସେମାନଙ୍କ ମନ ଆଶଙ୍କାରେ କମ୍ପି ଉଠୁଥାଏ। ସେମାନେ ଯଥାଶୀଘ୍ର ରାଜବାଟୀରୁ ବାହାରି ଯିବାକୁ ଗ୍ଚହୁଁଥାନ୍ତି, ମାତ୍ର ଜୟଦେବ ଆଜି ଯିବ କାଲି ଯିବ କହି ବାଧ୍ୟ କରି ଅଟକାଉଥାନ୍ତି। କହୁଥାନ୍ତି— "ମହାତ୍ମନ୍! ଶୁଭ ତିଥିରେ ଯାତ୍ରା ଆରମ୍ଭ କଲେ ଯାତ୍ରା ମଙ୍ଗଳମୟ ହେବ। ଏଠାରେ ଆପଣଙ୍କର କିଛି ଅସୁବିଧା ହେଉଛି କି? ଯିବାକୁ ଆତୁର କାହିଁକି?"

ଆଜି ପୂର୍ଣ୍ଣିମା, କାଲି ଏକାଦଶୀ, ପରଦିନ ଅମାବାସ୍ୟା—ଏହିପରି କହି କହି ସେ ଠକମାନଙ୍କୁ ଅନେକ ଦିନ ରଖିଦେଲେ। ଦିନେ ସେମାନେ ଗ୍ଚଲିଯିବା ପାଇଁ ଅଧୀର ହୋଇ ଜିଦ୍ ଧରି ବସିବାରୁ ଜୟଦେବ ଗୋସାଇଁ ରାଜାଙ୍କୁ ଡକାଇ କହିଲେ—"ରାଜନ୍! ଏମାନଙ୍କର ସାନ୍ନିଧ୍ୟ ଲାଭ ବିଷୟୀ ଜୀବକୁ ବ୍ରହ୍ମଦର୍ଶନ ହେବାପରି ଅତ୍ୟନ୍ତ ଦୁର୍ଲଭ। ତୁମ ଭଳି ରାଜସିକ ବୈଭବରେ ବୁଡ଼ି ରହିଥିବା ରାଜାଙ୍କ ପକ୍ଷେ ତ ଏମାନଙ୍କର ଦର୍ଶନ ଅସମ୍ଭବ। ଏବେ ଆନନ୍ଦ ମନରେ ଏମାନଙ୍କର ଯଥେଷ୍ଟ ସେବା କରି ସନ୍ଥସେବାର ପ୍ରକୃତ ଫଳ ଲାଭ କର। ତୁମେ ଯଦି ମୋତେ ଖୁସୀ କରିବାକୁ ଗ୍ଚହୁଁଥାଅ, ତେବେ ଆଜି ଧନଧାନ୍ୟରେ ଏମାନଙ୍କୁ ସନ୍ତୁଷ୍ଟ କରିଦିଅ।"

ରାଜାଙ୍କୁ ଏଭଳି କହିବା ପଛରେ ଜୟଦେବଙ୍କର ଅନେକ ପବିତ୍ର ଓ ଗୂଢ଼

ଭାବନା ଲୁଚି ରହିଥିଲା । ସେ ଭାବିଲେ, ଲୋକେ ଧନ ରୋଜଗାର କରିବା ପାଇଁ ଜଣା ନାହିଁ କେତେ କ'ଣ ଅନୀତି ପଥ ଅବଲମ୍ବନ କରୁଛନ୍ତି । କିନ୍ତୁ ଏମାନେ ତ ତାହା ନ କରି ସାଧୁବେଶ ଧାରଣ କରିଛନ୍ତି । ତେଣୁ ଏହି ବେଶ ପ୍ରତି ସମ୍ମାନ ଦେବା ରାଜାଙ୍କର ପରମ କର୍ତ୍ତବ୍ୟ । ରାଜାଙ୍କୁ କହି ସେ ସେମାନଙ୍କ ଘର ଧନଧାନ୍ୟରେ ଏଭଳି ଭରିଦେବେ ଯେ ଜଗତ ଜାଣିବ ସାଧୁବେଶର ମହିମା କେତେ? ଯେଉଁମାନେ ଦିନରାତି ପାପ କର୍ମ କରି ପେଟ ଖଣ୍ଡକ ପାଇଁ ଅନ୍ନ ମୁଠାଏ ଏବଂ ଲଜ୍ଜା ନିବାରଣ ପାଇଁ ବସ୍ତ୍ର ଦି'ଖଣ୍ଡ ପାଉ ନ ଥିଲେ, ସେମାନେ ଆଜି ସାଧୁବେଶ ଧରିବାରୁ ସବୁଦିନ ପାଇଁ ଅଯାଚକ ହୋଇଯିବେ । ସେମାନଙ୍କୁ ଆଜୀବନ ଆଉ କାହା ଆଗରେ ହାତ ପତାଇବାକୁ ପଡ଼ିବ ନାହିଁ । ଏତଦ୍ଦ୍ୱାରା ସାଧୁବେଶର ମହିମା ବଢ଼ିବା ସହିତ ଭଗବାନଙ୍କର କୀର୍ତ୍ତିବାନା ଫର ଫର ହୋଇ ଉଡ଼ିବ । ତା' ଛଡ଼ା ଏଭଳି ସଦ୍‌ବ୍ୟବହାରରେ ହୁଏତ ଦୁଷ୍ଟଙ୍କର ବୁଦ୍ଧି ପବିତ୍ର ହୋଇଯାଇପାରେ ।

ରାଜା କିନ୍ତୁ ଏ ରହସ୍ୟ ବୁଝି ପାରିଲେ ନାହିଁ । ସେ ବିସ୍ମୟ ମନରେ ଭାବିଲେ, ଗୋସେଇଁ ତ କେବେ କାହା ମୁଖରେ ଏଭଳି ପ୍ରଶଂସା କରନ୍ତି ନାହିଁ କି କାହାକୁ ଧନରତ୍ନ ଦେବାକୁ ଏତେ ବାଧ୍ୟ କରନ୍ତି ନାହିଁ, ଆଜି ତାଙ୍କ ସ୍ୱଭାବରେ ଏଭଳି ବୈପରୀତ୍ୟ କାହିଁକି? ତଥାପି ତାଙ୍କୁ ମୁହଁ ଖୋଲି ପଚାରିବାକୁ ରାଜାଙ୍କର ସାହସ ହେଲା ନାହିଁ । ସେ ଭକ୍ତି ସହକାରେ ଛଦ୍ମବେଶୀ ସାଧୁଙ୍କୁ ସମ୍ମାନିତ କରି ଅନେକ ଧନରତ୍ନ ଦେବା ସହିତ ଆଶ୍ରମ ପର୍ଯ୍ୟନ୍ତ ସେମାନଙ୍କୁ ଛାଡ଼ି ଆସିବାକୁ ଅନେକ ଭାରୁଆଙ୍କୁ ପଠାଇଲେ । ମାର୍ଗରେ ଚୋରଡାକୁ କାଳେ ହଇରାଣ କରିବେ, ସେଥିପାଇଁ କେତେକ ସୈନ୍ୟସାମନ୍ତଙ୍କୁ ମଧ୍ୟ ସେମାନଙ୍କ ସହିତ ପଠାଗଲା ।

ସୈନ୍ୟସାମନ୍ତଙ୍କ ସହିତ ଛଦ୍ମବେଶୀ ଠକ ଚାରିହେଁ ହସ ହସ ମନରେ ଚାଲିଥାନ୍ତି । ବାଟରେ ଗୋଟିଏ ଗଛ ଛାଇରେ କିଛି ସମୟ ବିଶ୍ରାମ କରିବା ବେଳେ ସୈନ୍ୟଙ୍କର ମୁଖିଆ ସେମାନଙ୍କୁ ପଚାରିଲେ—"ମହାତ୍ମନ୍! ଆଜିଯାଏ ଆମର ଏ ଆଖି ଆପଣଙ୍କ ଭଳି ସନ୍ଥଙ୍କୁ ଦେଖିବାର ସୁଯୋଗ ପାଇ ନ ଥିଲା । ଆମ ରାଜବାଟୀକୁ ପ୍ରତିଦିନ ଅନେକ ସାଧୁସନ୍ଥ ଆସୁଛନ୍ତି, କିନ୍ତୁ ଆମ ମଣିମା ଗୋସାଇଁଙ୍କ ଆଜ୍ଞା ମାନି ଆପଣଙ୍କର ଯେଭଳି ସେବା କଲେ, ଆଜି ପର୍ଯ୍ୟନ୍ତ ସେଭଳି ସେବା କାହାର ହୋଇ ନ ଥିଲା । ଆମେ ଭାବି ପାରୁ ନାହୁଁ ଯେ ଗୋସାଇଁଙ୍କର ଆପଣଙ୍କ ପ୍ରତି ଏତେ ସ୍ନେହ-ସୌହାର୍ଦ୍ଦ କାହିଁକି? ତାଙ୍କ ସହିତ ଆପଣମାନଙ୍କର କି ସମ୍ବନ୍ଧ ରହିଛି? ଏହାର ରହସ୍ୟ ଜାଣିବାକୁ ଆମର ମନ ଅତ୍ୟନ୍ତ ବ୍ୟାକୁଳ । ଯଦି

ଆମେମାନେ ଶୁଣିବାକୁ ଯୋଗ୍ୟ ହୋଇଥାଉ, ତେବେ ଦୟା କରି କୁହନ୍ତୁ।''

ଠକମାନେ ସତ କଥାକୁ ଲୁଗ୍ୱଇବା ଛଳରେ କହିଲେ—''ଏହାର ରହସ୍ୟ ଅତ୍ୟନ୍ତ ଦୁରୂହ। କାହା ଆଗରେ ଆମେ ତାହା ପ୍ରକାଶ କରିବାକୁ ଗ୍ୱହୁଁନା। ଏତଦ୍ଦ୍ୱାରା ତୁମ ଗୋସାଇଁଙ୍କର ମାନହାନି ହେବ। ଆମେ ଆଜନ୍ମ ସାଧୁ, ସମସ୍ତଙ୍କୁ ସମ୍ମାନ ଦେବା ଆମର ସହଜ ସ୍ୱଭାବ, ପୁଣି ଆମେ କାହାର ମାନହାନି କାହିଁକି କରିବୁ? ସେଥିରୁ ଆମକୁ ମିଳିବ ବା କ'ଣ? ତଥାପି ତୁମମାନଙ୍କର ଆଗ୍ରହ ଲକ୍ଷ୍ୟ କରି କହିବାକୁ ବାଧ୍ୟ ହେଉଛୁ। ମାତ୍ର ତୁମେମାନେ ସାବଧାନ ରହିବ, କାହାକୁ କହିବ ନାହିଁ। ବହୁ ଦିନ ପୂର୍ବର କଥା। ତୁମ ଗୋସେଇଁ ଓ ଆମ୍ଭେମାନେ ଜଣେ ରାଜାଙ୍କ ପାଖରେ ଗ୍ୱକିରୀ କରୁଥିଲୁ। ଆମ ଭିତରେ ପରସ୍ପର ଅପାର ସ୍ନେହ-ସହାନୁଭୂତି ଓ ଅତୁଟ ପ୍ରେମଭାବନା ଥିଲା। ଦୈବଯୋଗକୁ ତୁମ ଗୋସେଇଁ ଏଭଳି ଗୋଟିଏ ଅପରାଧ କରିଦେଲେ, ଯାହାଫଳରେ ରାଜାଙ୍କର କ୍ରୋଧ ସୀମା ଲଙ୍ଘନ କରିଗଲା। ସେ ଆଗପଛ ବିଗ୍ୱର ନ କରି ହଠାତ୍ ତାଙ୍କୁ ମୃତ୍ୟୁଦଣ୍ଡର ଆଦେଶ ଦେଇଦେଲେ। ଆମ ଉପରେ ତାଙ୍କ ମୃତ୍ୟୁଦଣ୍ଡର ଦାୟିତ୍ୱ ଦିଆଗଲା। କିନ୍ତୁ ଜଣେ ଏତେ ଦିନର ପରିଚିତ ମିତ୍ରକୁ ମାରିବାକୁ ଆମ ବିବେକ ବାଧା ଦେଲା, ହାତରୁ ଅସ୍ତ୍ର ଖସି ପଡ଼ିଲା। ଆମେ ତାଙ୍କର ପ୍ରାଣ ରକ୍ଷା ପାଇଁ ଗୋଟିଏ ସୁନ୍ଦର ଉପାୟ ପାଞ୍ଚିଲୁ। ତାଙ୍କର ହାତଗୋଡ଼ କାଟିଦେଇ ରାଜାଙ୍କୁ ଦେଖାଇଦେଲୁ, ଯଦ୍ଦ୍ୱାରା ରାଜାଙ୍କୁ ତାଙ୍କ ମୃତ୍ୟୁ କଥା ବିଶ୍ୱାସ ହୋଇଗଲା ଏବଂ ସେ ବଞ୍ଚିଗଲେ। ଆମର ସେହି ଉପକାର ସେ ଆଜି ପର୍ଯ୍ୟନ୍ତ ଭୁଲି ପାରି ନାହାନ୍ତି କି କେବେ ଭୁଲି ପାରିବେ ନାହିଁ। ତାହାର ପ୍ରତିବଦଳରେ ସେ ରାଜାଙ୍କୁ କହି ଆମକୁ ଏତେ ସମ୍ମାନ ସହକାରେ ସେବା କଲେ। କିନ୍ତୁ ତୁମେମାନେ ଏ ସବୁ ଘଟଣା ତାଙ୍କୁ କହିବ ନାହିଁ। ସେ ଖରାପ ଭାବିବେ।''

ଠକମାନେ ସତ ଘଟଣାଟି ଲୁଗ୍ୱଇବାକୁ ଚେଷ୍ଟା କରିଥିଲେ ମଧ୍ୟ ପରୋକ୍ଷରୂପେ ସତ କହିବାକୁ ବାଧ୍ୟ ହୋଇଥିଲେ ଯେ ସେମାନେ ତାଙ୍କ ହାତଗୋଡ଼ ଛେଦନ କରିଛନ୍ତି। ତେଣୁ କୁହାଯାଏ ଯେ ଯେତେ ଗୋପନ ରଖିଲେ ମଧ୍ୟ ସତ୍ୟ କେବେ ଲୁଚି ରହେ ନାହିଁ। ସମୟ ଆସିଲେ ତାହା ନିଶ୍ଚୟ ପ୍ରକାଶ ପାଇଥାଏ। ଠକମାନେ 'କାହାକୁ କହିବ ନାହିଁ' ବୋଲି ଯେଉଁ ବାରଣ କରିଥିଲେ, ତାହା ପଛରେ ମଧ୍ୟ ତାଙ୍କର ଆତ୍ମଗୋପନ ଭାବ ଲୁଚି ରହିଥିଲା। ବାହ୍ୟ ଦୃଷ୍ଟିରୁ ସେମାନେ କହିଦେଲେ ଯେ ଏତଦ୍ଦ୍ୱାରା ତୁମ ଗୋସାଇଁ ଖରାପ ଭାବିବେ। କିନ୍ତୁ ପ୍ରକୃତରେ ସେମାନଙ୍କର ଭାବନା ଥିଲା ଯେ ଯଦି ସୈନ୍ୟମାନେ ଯାଇ ଜୟଦେବଙ୍କୁ ଏଭଳି ମିଥ୍ୟା ଲାଞ୍ଛନ

କଥା କହନ୍ତି, ତେବେ ସେ ତାଙ୍କ ଉପରେ କ୍ରୁଦ୍ଧ ହୋଇ ରାଜାଙ୍କ ନିକଟରେ ସତ୍ୟ ଘଟଣା ପ୍ରକାଶ କରି ପାରନ୍ତି। ଆଉ ଯଦି ରାଜା ଜାଣିଯାଆନ୍ତି ଯେ ସେଇମାନେ ହିଁ ତାଙ୍କ ହାତଗୋଡ଼ ହାଣିଥିଲେ, ତେବେ ସେମାନଙ୍କର ନିସ୍ତାର ଅସମ୍ଭବ।

ଭକ୍ତ ଜୟଦେବଙ୍କ ପ୍ରତି ସାଧୁବେଶଧାରୀ କୃତଘ୍ନ ଠକମାନଙ୍କର ଏପରି ମିଥ୍ୟା ଲାଞ୍ଛନକୁ ସର୍ବଂସହା ପୃଥିବୀ ସହି ପାରିଲା ନାହିଁ। ସେ ତତ୍‌କ୍ଷଣାତ୍ ଫାଟିଗଲା ଏବଂ ଠକମାନେ ପାତାଳଗାମୀ ହୋଇ ପ୍ରାଣ ହରାଇଲେ। ପ୍ରକୃତରେ ପାହାଡ଼ ପର୍ବତର ଭାର ପୃଥିବୀକୁ ଭାର ମନେ ହୁଏ ନାହିଁ। ପରଦ୍ରୋହୀ, ଅପକାରୀ ଓ ପାପୀ ଲୋକ ହିଁ ପୃଥିବୀ ପାଇଁ ଭାରସ୍ୱରୂପ। ସେଭଳି ଲୋକଙ୍କର ଜୀବନ ବୃଥା। କେବଳ ବୃଥା ନୁହେଁ, ଡିଆଁ ରୋଗ ଭଳି ସେମାନଙ୍କର ଜୀବନ ସଂସାର ପାଇଁ ଘୋର କ୍ଷତିକାରକ। ମଦୁଆ ଓ ଗଞ୍ଜାଡ଼ଙ୍କ ଠାରୁ ଯେପରି ଅନେକ ଲୋକ ମଦ ଓ ଗଞ୍ଜେଇ ପିଇବା ଶିଖିଯାଆନ୍ତି, ସେହିପରି ପରଦ୍ରୋହୀ ଦୁଷ୍ଟ ଲୋକଙ୍କ ଠାରୁ ପରଦ୍ରୋହର ସୂକ୍ଷ୍ମ ସଂସ୍କାର ହୁତାଶନ ଭଳି ସଂସାରରେ ବିସ୍ତାର ଲାଭ କରିଥାଏ। ସେମାନଙ୍କ ସଙ୍ଗରୁ ଅନେକଙ୍କ ଜୀବନ କୁମାର୍ଗଗାମୀ ହୋଇଯାଏ। ତେଣୁ ପୃଥିବୀ ମାତା ଏଭଳି ଲୋକଙ୍କର ବଞ୍ଚିବାକୁ ଶ୍ରେଷ୍ଠ ମନେ କଲେ ନାହିଁ। ସେ ସେମାନଙ୍କୁ ମୃତ୍ୟୁଦଣ୍ଡ ଦେଲେ।

ଯାହା ହେଲେ ବି କିଛି କ୍ଷଣ ପାଇଁ ଠକମାନେ ଭକ୍ତ ଜୟଦେବଙ୍କର ସାନ୍ନିଧ୍ୟ ଲାଭ କରି ପରୋକ୍ଷ ରୂପରେ ଜଗନ୍ନାଥଙ୍କର ସଙ୍ଗ ଲାଭ କରିଥିଲେ। ଭଗବାନ ସେମାନଙ୍କୁ ସେମାନଙ୍କ କୃତ କର୍ମର ଫଳ ଦେବା ସହିତ ପୃଥିବୀ କୋଳରେ ସ୍ଥାନ ଦେଇ ସତେ ଯେପରି ପୁଅମାନଙ୍କୁ ଜନନୀ କୋଳକୁ ପଠାଇ ଦେଲେ। ତା' ବ୍ୟତୀତ ଭଗବାନ ହେଉଛନ୍ତି ମର୍ଯ୍ୟାଦାପୁରୁଷୋତ୍ତମ। ଠକମାନେ ସାଧୁବେଶ ଧରି ଆସିଥିବାରୁ ମିଛରେ ହେଲେ ବି ସେମାନଙ୍କର ତାଙ୍କ ସହିତ ଆତ୍ମୀୟତା ହୋଇଗଲା ବୋଲି ସେ ଭାବିଲେ। ଯିଏ କୌଣସି ପ୍ରକାରେ ଥରେ ପ୍ରଭୁଙ୍କ ଅକ୍ତିଆରକୁ ଚାଲିଯାଇଛି, ଅନ୍ୟ କେହି ତାକୁ ଦଣ୍ଡ ଦେଲେ ସେ ସହି ପାରନ୍ତି ନାହିଁ। ତା' ଛଡ଼ା ଅନ୍ୟ କୌଣସି ଦଣ୍ଡ ଦେଲେ ଲୋକେ ଦେଖିବେ, ସାଧୁବେଶର ନିନ୍ଦା ହେବ। ଲୋକେ ସାଧୁବେଶ ପ୍ରତି ଅଶ୍ରଦ୍ଧା କରିବେ। ତେଣୁ ଭଗବାନ ଅନ୍ୟ କୌଣସି ଦଣ୍ଡ ନ ଦେଇ ପୃଥିବୀ କୋଳରେ ସ୍ଥାନ ଦେଲେ।

ଠକମାନେ ଜୟଦେବଙ୍କ ହାତଗୋଡ଼ ହାଣିବା ସମୟରେ ବି ତ ଭଗବାନ ଓ ପୃଥିବୀ ଦୁହେଁ ଦେଖୁଥିଲେ। ସେତେବେଳେ କାହିଁକି ଏ ଦଣ୍ଡ ଦେଲେ ନାହିଁ?

ଏହାର କାରଣ ମଧ୍ୟ ସ୍ପଷ୍ଟ। ପାପ ଓ ପୁଣ୍ୟ ଏକ ରକମର ବୀଜ ଏବଂ ସେହି ବୀଜ ଅଙ୍କୁରିତ ହୁଏ ଦେହରୂପୀ ଉର୍ବର ଜମିରେ। ଯେତେ ଭଲ ବୀଜ ହେଲେ ବି ତାହା ଅଙ୍କୁରିତ ହୋଇ ପରିପକ୍ୱ ଶସ୍ୟରେ ପରିଣତ ହେବାକୁ କିଛି ସମୟ ଲାଗେ। ଏ କ୍ଷେତ୍ରରେ ଠିକ୍ ସେଇଆ ହେଲା। ଠକମାନଙ୍କ ପାପ ପରିପକ୍ୱ ହେବାକୁ କିଛି ସମୟ ଲାଗିଲା। ପାପ ମାଠିଆ ଭରି ଯିବା କ୍ଷଣି ତାହା ଦଣ୍ଡରୂପ ଧାରଣ କରି ଠକମାନଙ୍କ ମୁଣ୍ଡରେ ଅଜାଡ଼ି ହୋଇଗଲା।

ଏ ଘଟଣାରେ ସୈନ୍ୟମାନେ ଆଚମ୍ବିତ ହୋଇଗଲେ। ଭାବିଲେ, ବୋଧହୁଏ ଏମାନେ କୌଣସି ସିଦ୍ଧ ପୁରୁଷ ଥିଲେ। ଆମ୍ଭମାନଙ୍କୁ ଦର୍ଶନ ଦେଇ ସହସା ପାତାଳକୁ ଚାଲିଗଲେ। ସେମାନେ ଆଉ ବିଳମ୍ବ ନ କରି ଦୌଡ଼ି ଆସି ରାଜାଙ୍କ ନିକଟରେ ସମସ୍ତ ଘଟଣା ଜଣାଇଲେ। ରାଜା ମଧ୍ୟ ଚକିତ ହୋଇ ସୈନ୍ୟସାମନ୍ତଙ୍କ ସହିତ ଜୟଦେବ ଗୋସାଇଁଙ୍କ ନିକଟରେ ପହଞ୍ଚିଲେ। ସମସ୍ତଙ୍କ ମନ ଏ ତଦନ୍ତ ଜାଣିବାକୁ ଖୁବ୍ ଉତ୍ସୁକ ହେଉଥିଲା। ରାଜା ହାତଯୋଡ଼ି ଗୋସାଇଁଙ୍କୁ ଏ ସବୁ ବୃତ୍ତାନ୍ତ ଜଣାଇବା ସହିତ ପ୍ରକୃତ ରହସ୍ୟ ଜାଣିବାକୁ ଆଗ୍ରହ ପ୍ରକାଶ କଲେ। ସାଧୁଙ୍କର ମୃତ୍ୟୁ ସମାଚାର ପାଇବା କ୍ଷଣି ଜୟଦେବଙ୍କ ଆଖିରୁ ଧାର ଧାର ଅଶ୍ରୁ ବହି ଚାଲିଲା। ଅଶ୍ରୁଧାରାର ପ୍ରବଳ ପ୍ରବାହରେ ତାଙ୍କର ଦୃଷ୍ଟିଶକ୍ତି ଅବରୁଦ୍ଧ ହୋଇଗଲା। ସେ ବ୍ୟାକୁଳ ଚିତ୍ତରେ ହାତରେ ଅଶ୍ରୁଧାର ପୋଛିବାକୁ ଇଚ୍ଛା କରନ୍ତେ ସହସା ତାଙ୍କର ହାତଗୋଡ଼ କଅଁଳି ଆସିଲା। ଏ ଘଟଣା ରାଜାଙ୍କୁ ଆହୁରି ଆଶ୍ଚର୍ଯ୍ୟରେ ପକାଇ ଦେଲା। ସେ ସ୍ତମ୍ଭୀଭୂତ ହୋଇ ପଚାରିଲେ—"ମହାରାଜ! ସାଧୁବେଶରେ ସେମାନେ କିଏ ଆସିଥିଲେ? ପୁଣି ଆପଣଙ୍କର ହାତ ହଠାତ୍ କଅଁଳି ଆସିଲା କେମିତି? ସେମାନଙ୍କ ପାଇଁ ଆପଣ ଏତେ ବ୍ୟଥିତ କାହିଁକି? ଏ କି ବିଚିତ୍ର ଲୀଳା! ସେମାନେ ଭୂଇଁ ଭିତରେ କୁଆଡ଼େ ଉଭେଇ ଗଲେ? ଦୟାକରି ଆମକୁ ସବୁ ବୃତ୍ତାନ୍ତ କହିବା ହୁଅନ୍ତୁ।"

ରହସ୍ୟ ଉନ୍ମୋଚନ କରିବାକୁ ଜୟଦେବଙ୍କର ଇଚ୍ଛା ନ ଥିଲେ ମଧ୍ୟ ରାଜାଙ୍କର ଦୃଢ଼ ଆଗ୍ରହକୁ ସେ କାଟି ନ ପାରି ସବୁ କଥା କହିବାକୁ ବାଧ୍ୟ ହେଲେ। ସାଧୁବେଶରେ ଆସିଥିବା ଠକମାନେ ହିଁ ତାଙ୍କର ହାତଗୋଡ଼ ହାଣି ଦେଇ କୂଅରେ ଫୋପାଡ଼ି ଦେଇଥିବା କଥା ଶୁଣି ରାଜାଙ୍କ ଆଶ୍ଚର୍ଯ୍ୟ ସୀମା ରହିଲା ନାହିଁ। ସେ ଚିତ୍ରପଟ ଭଳି କିଛି କ୍ଷଣ ସ୍ଥାଣୁ ପାଲଟିଗଲେ। କିଛି ସମୟ ପରେ ବାହ୍ୟ ଚେତନା ଫେରିପାଇ ପଚାରିଲେ—ମହାରାଜ! ଆପଣ ଏ କଥା ପୂର୍ବରୁ

ଜଣାଇଲେ ନାହିଁ କାହିଁକି? ଜୟଦେବ ଟିକିଏ ଗମ୍ଭୀର ଭାବରେ ନିଜର ପରିଚୟ ଦେଇ କହିଲେ—"ରାଜନ୍! ସାଧୁବେଶ ଅତି ଅମୂଲ୍ୟ। ଏହାର ମହିମା ବର୍ଣ୍ଣନ କରିବାକୁ ବୀଣାପାଣି ସରସ୍ୱତୀଙ୍କର ଶବ୍ଦ ଭଣ୍ଡାର ମଧ୍ୟ କମ୍ ମନେହୁଏ। ସନ୍ଥଙ୍କ ସହିତ କେହି ଯେତେ ଦୁର୍ବ୍ବ୍ୟବହାର କଲେ ଅଥବା ତାଙ୍କର ଯେତେ ନିନ୍ଦା କଲେ ମଧ୍ୟ ସେ ନିନ୍ଦୁକ ଲୋକର ଅମଙ୍ଗଳ କରିବା ପରିବର୍ତ୍ତେ ମଙ୍ଗଳ କାମନା କରନ୍ତି। ସେ କଦାପି ତାଙ୍କର ବେଦସମ୍ମତ ଉପକାର ମାର୍ଗ ଛାଡ଼ନ୍ତି ନାହିଁ। ତାଙ୍କର ନବନୀତ ସମ ହୃଦୟ ମୈତ୍ରୀ, କରୁଣା ଓ ଭକ୍ତି ରସରେ ରସାଣିତ ହୋଇ ସରସ, ସୁନ୍ଦର ଓ ମଧୁରତାର ପ୍ରତିମୂର୍ତ୍ତି ହୋଇ ସାରିଥାଏ। ଦୁଷ୍ଟ ହିଂସ୍ରକ ପ୍ରାଣୀ ଯେପରି ତା'ର ଦୁଷ୍ଟବୁଦ୍ଧି ଛାଡ଼ିପାରେ ନାହିଁ, ସେହିପରି ସାଧୁସନ୍ଥ ତାଙ୍କର ସାଧୁତା ପରିତ୍ୟାଗ କରିବାକୁ ଅକ୍ଷମ। ଯେଉଁ ମନୁଷ୍ୟ ଏହି ଗୂଢ଼ ତତ୍ତ୍ୱ ଜାଣି ଘୋର ବିପଦରେ ମଧ୍ୟ ସାଧୁତା ଛାଡ଼େ ନାହିଁ, ପରମ ରସିକ ଭଗବାନ ଶ୍ୟାମସୁନ୍ଦର ତାକୁ ଅନାୟାସରେ ଦର୍ଶନ ଦିଅନ୍ତି। ରାଜନ୍! ଏ ଘଟଣା ମୁଁ ତୁମକୁ ପୂର୍ବରୁ ନ ଜଣାଇବାର ବିଶେଷ କାରଣ ଥିଲା। ସେ ସମୟରେ ଜଣାଇଥିଲେ ତୁମର ସାଧୁସନ୍ଥଙ୍କ ପ୍ରତି ଅଶ୍ରଦ୍ଧା ହୋଇଯାଇଥାନ୍ତା। ସାଧୁବେଶରେ ଚୋର ଓ ଠକମାନେ ବୁଲୁଛନ୍ତି ବୋଲି ଭାବି ତୁମେ ସାଧୁସେବା ବନ୍ଦ କରି ଦେଇଥାନ୍ତ। ଭଗବାନ ତ ଦୟାଳୁ! ସେ ସମସ୍ତଙ୍କୁ ଆଶ୍ରୟ ଦିଅନ୍ତି। କିନ୍ତୁ ଦୁଃଖର କଥା ଯେ ମୁଁ ମୋ ସାଧୁବେଶର ଅନୁରୂପ ସାଧୁତା ରକ୍ଷା କରି ପାରିଲି ନାହିଁ। ମୋ ପାଇଁ ଗ୍ରରିଜଣ ନିରୀହ ନିର୍ଦ୍ଦୋଷ ସାଧୁ ପ୍ରାଣ ହରାଇଲେ। ମୋ ଜୀବନକୁ ଧିକ୍।"

ରାଜା ଲକ୍ଷ୍ମଣସେନ ପୂର୍ବରୁ ଲୋକମୁଖରୁ ଜୟଦେବଙ୍କ ନାମ ଶୁଣିଥିଲେ, କିନ୍ତୁ ଏବେ ତାଙ୍କର ପରିଚୟ ଓ ପ୍ରତ୍ୟକ୍ଷ ଦର୍ଶନ ପାଇ ନିଜକୁ କୃତାର୍ଥ ମଣିଲେ। 'ଇଏ ସେହି ଜୟଦେବ ଗୋସାଇଁ, ସାକ୍ଷାତ୍ ଜଗନ୍ନାଥଙ୍କର ସ୍ୱରୂପ'—ଏ କଥା ଭାବି ଭାବି ସେ ହୃଦୟରେ ଉଦ୍‌ବେଳିତ ଆନନ୍ଦକୁ ସମ୍ଭାଳି ପାରୁ ନ ଥାନ୍ତି। ମନ ଭିତରେ ତର୍କ-ବିତର୍କ କରୁଥାନ୍ତି, ସତରେ ଜୟଦେବ ଗୋସାଇଁ ଏଭଳି ଉଦାର ହୋଇ ନ ଥିଲେ କ'ଣ ଜଗନ୍ନାଥ ତାଙ୍କୁ ନିଜର ସ୍ୱରୂପ ବୋଲି କହିଥାନ୍ତେ! ଏଭଳି ମହନୀୟତା ସାମାନ୍ୟ ଜୀବଠାରେ ପରିଲକ୍ଷିତ ହେବା ସମ୍ଭବପର ନୁହେଁ। ସେ ତାଙ୍କ ପାଦରେ ବିନୀତ ପ୍ରଣାମ ଜଣାଇ ନିବେଦନ କଣ୍ଠରେ କହିଲେ—"ମହାତ୍ମନ୍! ମୁଁ ଆପଣଙ୍କର କିଂକର। ଏ ପ୍ରଣତକୁ ଚରଣରେ ଶରଣ ଦେଇ ଆପଣ କୃତାର୍ଥ କରି ଦେଇଛନ୍ତି। ଏବେ ମୋର ଏହି ବିନୀତ୍ ନିବେଦନ ସ୍ୱୀକାର କରି ଆପଣ

ସବୁଦିନ ପାଇଁ ରାଜବାଟୀରେ ନିବାସ କଲେ ମୁଁ ମୋ ଜୀବନକୁ ସଫଳ ମଣିବି। ସତରେ ଯାହା ମୁଁ ଶାସ୍ତ୍ରରୁ ଶୁଣିଥିଲି, ତାହା ଆଜି ଏ ଚର୍ମନେତ୍ରରେ ଦେଖିବାକୁ ପାଇଲି। ଦେବତାଙ୍କ ବ୍ୟବହାର ପ୍ରାଣୀମାନଙ୍କୁ ସୁଖୀ ଓ ଦୁଃଖୀ ଉଭୟ ଦିଏ, କିନ୍ତୁ ଆପଣଙ୍କ ଭଳି ଭଗବତ୍-ପରାୟଣ ସନ୍ଥଙ୍କ ବ୍ୟବହାର ସମସ୍ତଙ୍କ ପାଇଁ ମଙ୍ଗଳକର ହୁଏ। ଆପଣ ରାଜବାଟୀରେ ବିରାଜମାନ ହେଲେ ସତ୍ସଙ୍ଗ ଚର୍ଚ୍ଚା ଓ ନାମ ସଂକୀର୍ତ୍ତନରେ ନଗର ଉଛୁଳି ଉଠିବ।''

ରାଜାଙ୍କର ପ୍ରେମାଗ୍ରହ ଦେଖି ଜୟଦେବ ଗୋସାଇଁ ରାଜବାଟୀରେ ରହିବାକୁ ରାଜି ହେଲେ। ତାଙ୍କ ଆଜ୍ଞାରେ ରାଜା ଲକ୍ଷ୍ମଣସେନ କେନ୍ଦୁବିଲ୍ୱ ଗ୍ରାମରୁ ତାଙ୍କର ଧର୍ମପତ୍ନୀ ଭକ୍ତିପରାୟଣା ପଦ୍ମାବତୀଙ୍କୁ ସସମ୍ମାନେ ରାଜବାଟୀକୁ ନେଇ ଆସିଲେ। ଦୀର୍ଘ ଦିନ ପରେ ସ୍ୱାମୀଙ୍କର ଦର୍ଶନ ଲାଭ କରି ପଦ୍ମାବତୀଙ୍କର ତୃଷାର୍ତ୍ତ ନେତ୍ର ଶୀତଳ ହେଲା। ସେ ତାଙ୍କ ଚରଣରେ ଭକ୍ତିପୂତ ପ୍ରଣାମ ଜଣାଇ କୁଶଳକ୍ଷେମ ପଚ୍ଚାରିଲେ। ଭକ୍ତ ଦମ୍ପତିଙ୍କ ମିଳନ ପରେ ରାଜା ପଦ୍ମାବତୀଙ୍କୁ ରାଣୀଙ୍କ ନିକଟରେ ରଖି ରାଣୀଙ୍କ ଉପରେ ତାଙ୍କ ଦେଖାରଖାର ଦାୟିତ୍ୱ ଅର୍ପଣ କଲେ।

ଏହିପରି ବହୁ ଦିନ ବିତିଗ୍ଲଲା। ଦିନେ ପଦ୍ମାବତୀଙ୍କ ସଙ୍ଗେ ରାଣୀ ବସିଥିବା ସମୟରେ ଜଣେ ଦୂତ ଅସ୍ଥିର ଚିତ୍ତରେ ଦୌଡ଼ି ଆସି କହିଲା— ''ମହାରାଣୀଙ୍କର ଜୟ ହେଉ! ସରିଗଲା ରାଣୀ ମାଆ! ବଡ଼ ଅପ୍ରିୟ ସମ୍ବାଦ। ତୁମର ବଡ଼ ଭାଇ ଅସମୟରେ ମୃତ୍ୟୁ ମୁଖରେ ପଡ଼ିଲେ ଏବଂ ତାଙ୍କ ସହିତ ତୁମର ଜଣେ ଭାଉଜ ସତୀ ହୋଇଗଲେ, ଆଉ ଜଣେ ବିରହରେ ହାତଗୋଡ଼ ହାଣି ପକାଇଲେ, ଆଉ ଜଣେ ଅଗ୍ନିରେ ଝାସ ଦେଲେ।'' ଏଭଳି ଦୁଃଖଦ ସମାଚ୍ରରରେ ରାଣୀ ପ୍ରଥମେ ଅଧୀର ହୋଇ କ୍ରନ୍ଦନ କଲେ ଏବଂ ତା'ପରେ ଭାଉଜମାନଙ୍କର ସତୀତ୍ୱକୁ ପ୍ରଶଂସା କରି ଗର୍ବ ଅନୁଭବ କଲେ। କହିଲେ, ''ମୋ ଭାଉଜଙ୍କ ଭଳି ସତୀ ଏ ଜଗତରେ ଦୁର୍ଲଭ। ସେମାନଙ୍କର ସତୀତ୍ୱକୁ ଶତ ଶତ ନମନ!'' ପଦ୍ମାବତୀ ନୀରବରେ ସବୁ ଶୁଣୁଥାନ୍ତି, କିନ୍ତୁ ତାଙ୍କ ବଦନରେ ଆଶ୍ଚର୍ଯ୍ୟର ସଂକେତ ନ ଥାଏ। ଏହା ଦେଖି ରାଣୀ ପଚ୍ଚାରିଲେ—''ତୁମେ କ'ଣ ମୋ ଭାଉଜମାନଙ୍କ ସତୀତ୍ୱରେ ପ୍ରଭାବିତ ନୁହଁ। ଏହା କ'ଣ ତୁମକୁ ଆଶ୍ଚର୍ଯ୍ୟାନ୍ୱିତ କରୁ ନାହିଁ।'' ପଦ୍ମାବତୀ କହିଲେ—''ସ୍ୱାମୀଙ୍କ ସ୍ୱର୍ଗବାସୀ ହେବା ପରେ ତାଙ୍କ ମୃତଦେହ ସଙ୍ଗେ ଅଗ୍ନିରେ ଝାସ ଦେବା କିଛି କମ୍ କଥା ନୁହେଁ। ଏହାକୁ ମଧ୍ୟ ସତୀତ୍ୱ କୁହାଯାଇପାରେ। କିନ୍ତୁ ଏହା ଅନନ୍ୟ ପାତିବ୍ରତ୍ୟର ସଂକେତ ନୁହେଁ। ଏତଦ୍ଦ୍ୱାରା ଅନାବିଳ ପ୍ରେମ

ପ୍ରକଟ ହୁଏ ନାହିଁ। ପତିଦେବଙ୍କ ବିୟୋଗରେ ତାଙ୍କୁ ସ୍ମରଣ କରି ପ୍ରେମଭାବ ପରିପୁଷ୍ଟ କରିବା ଶ୍ରେୟସ୍କର। ଅଗ୍ନିରେ ଝାସ ଦେବା ତ ପ୍ରେମମାର୍ଗର ବିପରୀତ ଗତି। ଯଦି ପଚାରିବେ ଯେ ଅନାବିଳ ପ୍ରେମ କାହାକୁ କହିବା? ତେବେ ସ୍ୱାମୀଙ୍କ ମୃତ୍ୟୁ ସମାଚାର ପାଇବା କ୍ଷଣି ପଞ୍ଚପ୍ରାଣ ପିଣ୍ଡ ଛାଡ଼ି ଚାଲିଯିବା ହିଁ ପ୍ରକୃତ ସତୀତ୍ୱର ପରିଚୟ ବୋଲି ବୁଝିରଖ।''

ପଦ୍ମାବତୀଙ୍କ କଥାରେ ରାଣୀ ଚିନ୍ତିତା ହୋଇ ପଡ଼ିଲେ। ତାଙ୍କର ଗର୍ବ ଚୂର୍ଣ୍ଣ ହୋଇଗଲା। ଏଥିରେ ସେ ଅନୁଭବ କଲେ ନିଜର ଅପମାନ। ତାଙ୍କ ହୃଦୟରେ ଜଳି ଉଠିଲା ଦ୍ୱେଷର ବହ୍ନି। ସେ ବ୍ୟଙ୍ଗ ବଚନରେ କହିଲେ—''ସତୀତ୍ୱର ଯେଉଁ ଲକ୍ଷଣମାନ ତୁମେ ବଖାଣ କଲ, ମୋ କାନ ଉଠିବା ଦିନଠାରୁ ମୁଁ ତାହା କେଉଁଠୁ ଶୁଣି ନାହିଁ। ଲାଗୁଛି ତୁମେ ଏକା ସେଭଳି ସତୀ ନାରୀ!'' ଏତିକିରେ ରାଣୀଙ୍କ ମନ ମାନିଲା ନାହିଁ। ଦିନେ ସେ ଏକାନ୍ତରେ ରାଜାଙ୍କୁ ସବୁ କଥା ଜଣାଇଲେ ଏବଂ ପଦ୍ମାବତୀର ସତୀତ୍ୱ ପରୀକ୍ଷା ପାଇଁ ଜୟଦେବ ଗୋସାଇଁଙ୍କୁ କିଛି ସମୟ ପାଇଁ ଅନ୍ୟତ୍ର ନେଇଯିବାକୁ ଆଗ୍ରହ କଲେ। ରାଜା ତାଙ୍କ କଥାରେ ବିରକ୍ତି ପ୍ରକାଶ କରି କହିଲେ—''ଛି, ଛି, ମହାରାଣୀ! ତୁମେ ଏ କ'ଣ ଭାବୁଛ? ପଦ୍ମାବତୀଙ୍କ ସତୀତ୍ୱ ପରୀକ୍ଷା କରିବାର ଅର୍ଥ ତୁମେ ଜାଣ? ଏହାର ଅର୍ଥ ହେଉଛି ତାଙ୍କୁ ଜୟଦେବ ଗୋସାଇଁଙ୍କ ମୃତ୍ୟୁ ସମାଚାର ଦେବା। ତେବେ କ'ଣ ତୁମେ ଏଭଳି କୁଚକ୍ରାନ୍ତ କରିବାକୁ ଭାବିଛ? ନା, ନା ମୁଁ କଦାପି ତୁମର ଏ କଥା ରଖି ପାରିବି ନାହିଁ।'' ରାଜାଙ୍କର ବହୁ ବାରଣ ସତ୍ତ୍ୱେ ରାଣୀ ମାନିଲେ ନାହିଁ। ସେ ଜିଦ୍ ଧରି ବସିବାରୁ ପରିଶେଷରେ ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇ ତାଙ୍କ କଥା ମାନିବାକୁ ବାଧ୍ୟ ହେଲେ।

କିଛି ସମୟ ଭିତରେ ଜଣେ ଦୂତ କାନ୍ଦି କାନ୍ଦି ଆସି ଜୟଦେବ ଗୋସାଇଁଙ୍କ ମୃତ୍ୟୁର ସମାଚାର ଶୁଣାଇଲା। ସମାଚାର ପାଇବା କ୍ଷଣି 'ହେ ବିଧାତା! ଏ କ'ଣ ହେଲା' ବୋଲି କହି ମହାରାଣୀ ଅଚେତ ହେବା ଭଳି ଅଭିନୟ କଲେ ଏବଂ ସେଠାରେ ରୁଣ୍ଡ ହୋଇଥିବା ଅନ୍ୟ ସ୍ତ୍ରୀ ଲୋକମାନେ ମୁଣ୍ଡ ପିଟି କାନ୍ଦିବାକୁ ଲାଗିଲେ। ସେମାନଙ୍କୁ ଅଧୀର ଦେଖି ପଦ୍ମାବତୀ ଧ୍ୟାନରେ ସ୍ୱାମୀଙ୍କୁ ସ୍ମରଣ କଲେ। ସ୍ୱାମୀ ସମ୍ପୂର୍ଣ୍ଣ ସ୍ୱସ୍ଥ ଓ ରାଜାଙ୍କ ସଙ୍ଗେ ସତ୍ସଙ୍ଗ ଆଲୋଚନା କରୁଥିବାର ଦେଖାଗଲା। ତାଙ୍କୁ ରାଣୀଙ୍କର ଷଡ଼ଯନ୍ତ୍ର ବୁଝିବାକୁ ଅଧିକ ସମୟ ଲାଗିଲା ନାହିଁ। ସେ ତାଙ୍କୁ ପ୍ରବୋଧନା ଦେଇ କହିଲେ—''ମହାରାଣୀ! ମୋ ସ୍ୱାମୀ ତ ଅତି ଆନନ୍ଦରେ ରାଜାଙ୍କ ସଙ୍ଗେ ପୁଷ୍ପ ବାଟିକାରେ ସତ୍ସଙ୍ଗ ଆଲୋଚନା କରୁଛନ୍ତି। ସେ ସମ୍ପୂର୍ଣ୍ଣ କୁଶଳ।

ତୁମେମାନେ ଅଯଥା ଏଭଳି କ୍ରନ୍ଦନ କରୁଛ କାହିଁକି? ଭୟ ତ୍ୟାଗ କରି ସ୍ୱସ୍ଥ ହୁଅ ।''

ମାୟାପତି ବିଷ୍ଣୁଙ୍କ ଆଗରେ ରାକ୍ଷସମାନଙ୍କର ମାୟା ପ୍ରହେଳିକା ନିଷ୍ଫଳ ହୋଇଯିବା ପରି ପଦ୍ମାବତୀଙ୍କ ସତୀତ୍ୱ ଓ ପ୍ରେମ ଆଗରେ ରାଣୀଙ୍କର ଷଡ଼ଯନ୍ତ୍ର ପଣ୍ଡ ହୋଇଗଲା । ସେ ଅପମାନ ବୋଝରେ ଦବିଗଲେ । ତାଙ୍କ ମୁଖ ଲଜ୍ଜାରେ ଅବନତ ହୋଇଗଲା । ତଥାପି ସ୍ତ୍ରୀ ହଠ ଯେ ଜଗତ ପ୍ରସିଦ୍ଧ, ଏ କଥାର ଜ୍ୱଳନ୍ତ ଉଦାହରଣ ରୂପରେ ରାଣୀ ପୁଣି ଥରେ ପଦ୍ମାବତୀଙ୍କର ପରୀକ୍ଷା ନେବାକୁ ପଣ କଲେ । ସତୀ ପଦ୍ମାବତୀ ରାଣୀଙ୍କର ଅନ୍ତର ଭାବନା ଓ କୂଟ-ଚକ୍ରାନ୍ତ ବୁଝି ସାରିଥିଲେ ମଧ୍ୟ ଏପାଳି ପରୀକ୍ଷା ଦେବାକୁ ପ୍ରସ୍ତୁତ ରହିଲେ । ଷଡ଼ଯନ୍ତ୍ର ଅନୁସାରେ ଅଗ୍ରନକ ଦୌଡ଼ି ଆସି ଜଣେ ଦୂତୀ ଜୟଦେବ ଗୋସାଇଁଙ୍କ ମୃତ୍ୟୁ ସମାଗ୍ରର ଦେବା କ୍ଷଣି ସେ ଆଖିପିଛୁଳାକେ ଏ ପାର୍ଥିବ ଦେହ ତ୍ୟାଗ କରିଦେଲେ ।

ପରୀକ୍ଷା କରିଦେବା ସହଜ, କିନ୍ତୁ ତାହାର ପରିଣାମକୁ ସାମନା କରିବା ଅତ୍ୟନ୍ତ କଠିନ । ଏବେ ରାଣୀ କ'ଣ କରିବେ କିଛି ଭାବି ପାରିଲେ ନାହିଁ । ଦୁଃଖରେ ତାଙ୍କର ବଦନ ମ୍ଳାନ ପଡ଼ିଗଲା । ସେ ଆକୁଳ କ୍ରନ୍ଦନ କଲେ । ଦୂତୀଙ୍କ ଠାରୁ ଏ ଦୁଃଖଦ ସମାଗ୍ରର ପାଇ ରାଜା ଆସି ଦେଖନ୍ତି ତ ତାଙ୍କ ଦେହ କମ୍ପି ଉଠିଲା । ସେ ଗଛ କାଟିଲା ଭଳି ଭୂମିରେ ଟଳି ପଡ଼ିଲେ । ନିଜ କର୍ମକୁ ଦୋଷ ଦେଇ କହିଲେ—''ହେ ବିଧାତା! ଏ କି ଅନର୍ଥ ହୋଇଗଲା? ସ୍ତ୍ରୀ ବୋଲିଆ ହୋଇ ମୁଁ କେଡ଼େ ଅପରାଧ ନ କରିଦେଲି! ଯାହାଙ୍କୁ ମୁଁ ନୟନ ପିତୁଳି କରିଥିଲି, ତାଙ୍କ ପ୍ରାଣପ୍ରିୟାଙ୍କ ମୃତ୍ୟୁ ଷଡ଼ଯନ୍ତ୍ରରେ ମୁଁ ହେଲି ଭାଗୀଦାର! କାଳେ କାଳେ ଏଭଳି ଘୋର ଅପରାଧର ପ୍ରାୟଶ୍ଚିତ୍ତ ନାହିଁ । ଏହି ପାପ କାଳିମା ମାର୍ଜନାର ଏକମାତ୍ର ପନ୍ଥା ମୃତ୍ୟୁ । ଏବେ ମୁଁ ଅଗ୍ନିରେ ଝାସ ଦେଇ ପ୍ରାଣ ତ୍ୟାଗ କରିଦେବି ।''

ରାଜାଙ୍କର ଦୃଢ଼ ପ୍ରତିଜ୍ଞାରେ ଅନ୍ତଃପୁର ନିବାସୀ ରାଣୀ ଓ ଦାସଦାସୀଙ୍କ ହୃଦୟ ଆଶଙ୍କାରେ ଭୟଭୀତ ହୋଇଗଲା । ସମସ୍ତେ ଜାଣିଥିଲେ ଯେ ସ୍ତ୍ରୀ ହଠ ଭଳି ରାଜହଠ ମଧ୍ୟ ଦୁର୍ନିବାର । ଏ କ୍ଷେତ୍ରରେ ରାଜା ଯଦି କାହା କଥା ମାନି ପାରନ୍ତି, ସେ ହେଉଛନ୍ତି ଏକମାତ୍ର ଜୟଦେବ ଗୋସାଇଁ । ରାଜାଙ୍କର କେତେ ଜଣ ଅନ୍ତରଙ୍ଗ ସେବକ ରାଜାଙ୍କ ପ୍ରାଣ ରକ୍ଷା ପାଇଁ ଜୟଦେବ ଗୋସାଇଁଙ୍କୁ ଏ ଦୁଃଖଦ ସମାଗ୍ରର ଶୁଣାଇଲେ । ଜୟଦେବଙ୍କ ମନରେ ପଦ୍ମାବତୀର ମୃତ୍ୟୁ ପାଇଁ ତିଳେମାତ୍ର ବିଷାଦ ନ ଥିଲା । ସେ ଜାଣିଥିଲେ ଯେ ପଦ୍ମାବତୀ ତାଙ୍କ ବିନା କ୍ଷଣେମାତ୍ର ରହି ପାରିବେ ନାହିଁ । ସେ ଚିନ୍ତିତ ଥିଲେ କେବଳ ରାଜାଙ୍କ ପାଇଁ । ତତ୍‌କ୍ଷଣାତ୍ ସେ

ଯାଇ ପହଞ୍ଚିଲେ ରାଜାଙ୍କ ନିକଟରେ। ରାଜା ତାଙ୍କ ପାଦତଳେ ପଡ଼ି କ୍ରନ୍ଦନ କଲେ। ବ୍ୟାକୁଳତାରେ ତାଙ୍କ ପ୍ରାଣ ଦ୍ରବିତ ହୋଇଗଲା। ସେ ଅଶ୍ରୁପୂର୍ଣ୍ଣ ନେତ୍ରରେ ଜୟଦେବଙ୍କ ମୁଖକୁ ଚାହିଁ କହିଲେ—"ମହାତ୍ମନ୍! ଏ ଅପରାଧୀର ଅନ୍ତିମ ବନ୍ଦନା ସ୍ୱୀକାର କରନ୍ତୁ। ମୁଁ ଆଉ ଏ ଅଭାଗା ପ୍ରାଣକୁ ଜୀବିତ ରଖିବାକୁ ଚାହେଁନା। ମୁଁ ଜୀବନରେ ଆପଣଙ୍କର ଉପଦେଶ ଧାରଣ କରି ପାରିଲି ନାହିଁ। ସବୁ ଉପଦେଶକୁ ଧୂଳିସାତ୍ କରିଦେଲି। ଏବେ ମୋତେ ପ୍ରାୟଶ୍ଚିତ୍ତ ପାଇଁ ଆଜ୍ଞା ଦିଅନ୍ତୁ।" ଜୟଦେବ ଧୈର୍ଯ୍ୟ ବନ୍ଧାଇ କହିଲେ—"ରାଜନ୍! ଯାହା ଘଟିବାର ଥିଲା ଘଟିଗଲା। ମୃତ୍ୟୁ ତ ଜୀବନର ସହଚର। ଯିଏ ଜନ୍ମ ହୋଇଛି, ତାହାର ମରଣ ସୁନିଶ୍ଚିତ। ମନୁଷ୍ୟ ପୁରାତନ ବସ୍ତ୍ର ତ୍ୟାଗ କରି ନୂତନ ବସ୍ତ୍ର ପରିଧାନ କରିବା ପରି ଜୀବ ଜୀର୍ଣ୍ଣ ଦେହକୁ ତ୍ୟାଗ କରି ଅନ୍ୟ ନୂତନ ଦେହ ଧାରଣ କରେ। ଏଥିପାଇଁ ଏତେ ଚିନ୍ତିତ ହେବାର କ'ଣ ଅଛି? ଆତ୍ମା ତ ଅଜର ଅମର। ଦେହ ମରିଗଲେ ମଧ୍ୟ ସେ କଦାପି ମରେ ନାହିଁ। ତା' ଛଡ଼ା ଆପଣ ଅଗ୍ନିରେ ଝାସ ଦେଲେ ପଦ୍ମାବତୀ ଯେ ଫେରି ଆସିବେ, ତା' ବି ନୁହେଁ। ତେଣୁ ହଠ ପରିତ୍ୟାଗ କରନ୍ତୁ।"

ଯେତେ ବୁଝାଇଲେ ବି ରାଜାଙ୍କ ଅନ୍ତର ବୁଝୁ ନ ଥାଏ। ଏ ଅପରାଧ ପାଇଁ ସେ ନିଜକୁ କ୍ଷମା କରି ପାରୁ ନ ଥାନ୍ତି। ଜୟଦେବ ଦେଖିଲେ ରାଜାଙ୍କ ଜୀବନ ରକ୍ଷା ପାଇଁ ପଦ୍ମାବତୀଙ୍କ ପ୍ରାଣ ଫେରିବା ଆବଶ୍ୟକ। ସେ ରାଜାଙ୍କୁ ପୁଣି ବୁଝାଇ କହିଲେ—"ରାଜନ୍! କେଉଁଥିପାଇଁ ପ୍ରାୟଶ୍ଚିତ୍ତ? ପଦ୍ମାବତୀ ତ ଜୀବିତ ଓ ସୁସ୍ଥ! କିଛି କ୍ଷଣ ପ୍ରତୀକ୍ଷା କରନ୍ତୁ, ପଦ୍ମାବତୀ ଏହି କ୍ଷଣି ଉଠି ବସିବେ।" ଏତିକି କହି ଜୟଦେବ ନିଳାଦ୍ରୀ ବିହାରୀ ଜଗନ୍ନାଥଙ୍କୁ ସ୍ମରଣ କରି ଲଳିତ ସ୍ୱରରେ ଗୀତଗୋବିନ୍ଦ ଅଷ୍ଟପଦୀ ଗାୟନ ଆରମ୍ଭ କଲେ। ଅଷ୍ଟପଦୀର ଭାବ ଓ ମଧୁର ସ୍ୱର ଝଂକାରରେ ପଦ୍ମାବତୀଙ୍କର ମୃତ ଦେହରେ ଚୈତନ୍ୟ ଫେରି ଆସିଲା। ସେ ଜୟଦେବଙ୍କ ସ୍ୱରରେ ସ୍ୱର ମିଳାଇ ଗାଇ ଚାଲିଲେ ଗୋବିନ୍ଦଙ୍କର ପ୍ରେମଗୀତ। ନିର୍ମଳ ପ୍ରେମର ଧ୍ୱଜା ଉଡ଼ାଇ ସମସ୍ତଙ୍କ ମନରେ ସେ ଭରିଦେଲେ ଅମିତ ଆଶ୍ଚର୍ଯ୍ୟ! ଲୋକମାନେ ଆଶ୍ଚର୍ଯ୍ୟ ହେଉଥିବା ସ୍ଥଳେ ରାଜାଙ୍କ ମନ ବିଷଣ୍ଣତାରେ ଭାଙ୍ଗି ପଡୁଥାଏ। ସେ ନିଜକୁ କ୍ଷମା କରି ପାରୁ ନ ଥାନ୍ତି। ଜୟଦେବ ଗୋସାଇଁ ତାଙ୍କର ଅତିଷ୍ଠତା ଲକ୍ଷ୍ୟ କରି ଆଶ୍ୱାସନା ଦେବା ସଙ୍ଗେ ସଙ୍ଗେ ଅଗ୍ନି ପ୍ରବେଶରୁ ନିବର୍ତ୍ତାଇଲେ। ରାଜାଙ୍କର ପ୍ରୀତି ଭାବନା ଥିବା ସତ୍ତ୍ୱେ, ରାଣୀର କୁଚକ୍ରାନ୍ତରୁ ରାଜା ଏଭଳି ଭୁଲ୍ କରି ଦେଇଛନ୍ତି ବୋଲି ଜାଣିବା ସତ୍ତ୍ୱେ ଜୟଦେବ ଆଉ ରାଜବାଟୀରେ ରହିବାକୁ

ଉଚିତ ମଣିଲେ ନାହିଁ। ଭାବିଲେ, ଯେଉଁଠି ଏଭଳି ଅମଙ୍ଗଳ ଘଟିଗଲା, ସେଠାରେ ରହିଲେ ଭବିଷ୍ୟତରେ ହୁଏତ ଆହୁରି କିଛି ଅସୁବିଧା ହୋଇପାରେ। ରାଜାଙ୍କ ଠାରୁ ବିଦାୟ ନେଇ ସେ ତାଙ୍କର କେନ୍ଦୁବିଲ୍ୱ ଆଶ୍ରମକୁ ଫେରି ଆସିଲେ।

ଜୟଦେବ କେନ୍ଦୁବିଲ୍ୱ ଗ୍ରାମରେ ଦିବାନିଶି ଠାକୁରଙ୍କ ସେବାପୂଜାରେ ମଗ୍ନ ରହିଲେ। ଗଙ୍ଗା ସ୍ନାନ କରିବା ତାଙ୍କର ପ୍ରତ୍ୟହ ଦିନଚର୍ଯ୍ୟା ଥିଲା। ଅତ୍ୟନ୍ତ ବୃଦ୍ଧାବସ୍ଥାରେ ଚାଲିବାକୁ ଶକ୍ତି ନ ଥିଲେ ମଧ୍ୟ ସେ ତାଙ୍କ ନିୟମରେ ଅଟଳ ଥାଆନ୍ତି। ଗଙ୍ଗାଙ୍କ ପ୍ରତି ତାଙ୍କର ଆନ୍ତରିକ ଶ୍ରଦ୍ଧା ଓ ପ୍ରୀତି ଲକ୍ଷ୍ୟ କରି ଦିନେ ମାଆ ଗଙ୍ଗା ରାତିରେ ଦର୍ଶନ ଦେଇ କହିଲେ—"ବତ୍ସ! ତୁମର ଦେହ ଅବଶ ଓ ଜରାଜୀର୍ଣ୍ଣ ହୋଇଗଲାଣି। ଚାଲିବା ପାଇଁ ଶକ୍ତି ନାହିଁ। ତେଣୁ ତୁମେ ଆଉ କଷ୍ଟ କରି ଏତେ ଦୂର ଆସିବା ଦରକାର ନାହିଁ। ସ୍ନାନ କଲାବେଳେ ମୋତେ ଧ୍ୟାନ କଲେ ତୁମକୁ ସେଇଠି ଗଙ୍ଗା ସ୍ନାନର ଫଳ ମିଳିଯିବ।" ଜୟଦେବ କହିଲେ—"ମାଆ! ତୁମର ପ୍ରତ୍ୟକ୍ଷ ଦର୍ଶନ ଓ ସ୍ନାନ ବିନା ମୋର ମନ ମାନେ ନାହିଁ। ଦିନଟା ସାରା କେମିତି ଗୋଟାଏ ଖାଲିଖାଲି ଲାଗେ। ତେଣୁ ମୋତେ ଏ ସୌଭାଗ୍ୟରୁ ବଞ୍ଚିତ କର ନାହିଁ।" ଦେବନଦୀ ଗଙ୍ଗା ପ୍ରସନ୍ନ ଚିତ୍ତରେ କହିଲେ—"ପୁତ୍ର! ଯଦି ତୁମର ମନ ନ ମାନୁଛି, ତେବେ ମୁଁ ତୁମ ଆଶ୍ରମ ପାଖ ସରୋବରର ମଧ୍ୟରେ ପ୍ରକଟ ହୋଇଯିବି। ଯେଉଁଦିନ ସେହି ସରୋବରରେ ନାନା ଜାତିର ପଦ୍ମ ବିକଶିତ ହେବାର ଦେଖିବ, ସେହି ଦିନ ମୁଁ ଆସିଗଲି ବୋଲି ଜାଣିବ। ଠିକ୍ ସେହିପରି ହେଲା। ପରଦିନ ପ୍ରଭାତରେ ସରୋବରରେ ପଦ୍ମ ବିକଶିତ ହେବା ଦେଖି ଜୟଦେବ ସେହି ଦିନଠାରୁ ସେଇଠି ସ୍ନାନ କଲେ। ଏହି କାରଣରୁ ସେହି ସରୋବରଟି ଜୟଦେଈ ଗଙ୍ଗା ନାମରେ ବିଖ୍ୟାତ ହେଲା।

ବର୍ଣ୍ଣନା ଅଛି ଯେ ଜୀବନର ଶେଷ ସମୟରେ ଜୟଦେବ ତାଙ୍କର ସହଧର୍ମିଣୀ ସତୀ ପଦ୍ମାବତୀଙ୍କ ସମେତ ଅନେକ ବନ୍ଧୁବର୍ଗଙ୍କୁ ସଙ୍ଗରେ ଘେନି ଶ୍ରୀବୃନ୍ଦାବନ ଧାମକୁ ଯାତ୍ରା କଲେ। ବୃନ୍ଦାବନରେ ଠାକୁରଙ୍କ ଦର୍ଶନ ଓ ଯମୁନା ସ୍ନାନ କରିବା ପରେ ଯମୁନା ନିକଟସ୍ଥ ଧୀର-ସମୀର ଘାଟରେ ସୁଖପୂର୍ବକ ନିବାସ କରି ଯୁଗଳକିଶୋର ଶ୍ରୀରାଧାକୃଷ୍ଣଙ୍କର ଦିବ୍ୟ ନିତ୍ୟବିହାର ଲୀଳା ଅବଲୋକନପୂର୍ବକ କିଛି ଦିନ ଅନ୍ତେ ଏହି ମର ଦେହ ପରିତ୍ୟାଗ କରି ଶ୍ରୀପ୍ରିୟା-ପ୍ରିୟତମଙ୍କ ନିତ୍ୟ ଲୀଳାରେ ପ୍ରବେଶ ପାଇଲେ।



# ଭକ୍ତିମତୀ କରମାବାଈ

ଭକ୍ତିହୀନ ନାସ୍ତିକ ଲୋକଙ୍କୁ ଯାହା ମିଛ ଭଳି ଲାଗେ, ଶ୍ରଦ୍ଧାବନ୍ତ ଭକ୍ତଙ୍କ ପାଇଁ ତାହା ପ୍ରତ୍ୟକ୍ଷ। ଭୌତିକବାଦର ପ୍ରଖର ସ୍ରୋତରେ ଅଣନିଶ୍ୱାସୀ ହୋଇ ଭାସି ଯାଉଥିବା ଲୋକେ କହନ୍ତି, "ଭଗବାନ କେଉଁଠି ଅଛନ୍ତି? ସେ କ'ଣ ଡାକିଲେ ଶୁଣନ୍ତି ଓ ଦେଲେ କ'ଣ ଖାଆନ୍ତି? ଯଦି ଖାଉଥାନ୍ତେ, ତେବେ ତାଙ୍କୁ କେହି ଦିଅନ୍ତେ ନାହିଁ।" ଏଭଳି ଅନେକ ବିତଣ୍ଡା ଯୁକ୍ତି କରୁଥିବା ଲୋକଙ୍କୁ ଜଣା ନ ଥାଏ ଯେ ଭଗବାନ କାହା ହାତରୁ ଖାଆନ୍ତି ଓ କେମିତି ଖାଆନ୍ତି? ହୃଦୟହୀନ ସଂବେଦନାଶୂନ୍ୟ ଲୋକଙ୍କ ହାତରୁ ଭଗବାନ କାହିଁକି ବା ଖାଆନ୍ତେ? ତାଙ୍କୁ କ'ଣ ଖାଇବାକୁ ମିଳୁ ନାହିଁ ଯେ ସେ ଏଭଳି ଲୋକଙ୍କ ଠାରୁ କିଛି ଖାଇବାକୁ ମନ ବଳାଇବେ? କେହି ତାଙ୍କୁ ପରୀକ୍ଷା କରିବାକୁ ଗ୍ରହିଁଲେ ସେ ବରଂ ତା' ପରୀକ୍ଷାରେ ଜାଣିଶୁଣି ଫେଲ୍ ହୋଇ ଛୁଟି ପାଇବାକୁ ଭଲ ଭାବନ୍ତି। ସେ କାହିଁକି ବା କାହାର ପରୀକ୍ଷାରେ ପାସ୍ ହେବାକୁ ଗ୍ରହିଁବେ? ତାଙ୍କୁ କ'ଣ କାହାଠାରୁ ପ୍ରମାଣପତ୍ର ଦରକାର ଅଛି? ତାଙ୍କୁ ତ ଦରକାର ଭକ୍ତର ଅନାବିଳ ଭାବନା। ସେ ତ କେବଳ ଭକ୍ତର ଭାବନା ରକ୍ଷା କରିବାକୁ ତା' ହାତରୁ ଖାଇବାକୁ ମନ ବଳାନ୍ତି!

ଭଗବାନ ଶ୍ରୀକୃଷ୍ଣ ଶାନ୍ତିଦୂତ ହୋଇ କୌରବ ସଭାକୁ ଯାଇଥିବା ବେଳେ ଦୁର୍ଯ୍ୟୋଧନ ତାଙ୍କୁ ଭୋଜନ ପାଇଁ ଆମନ୍ତ୍ରଣ କଲା। ଭଗବାନ କହିଲେ—"ନା ଦୁର୍ଯ୍ୟୋଧନ! ମୁଁ ତୁମ ଘରେ ଭୋଜନ କରିବି ନାହିଁ। ବିଦୁର କକାଙ୍କ ଘରେ ଭୋଜନ କରିବାକୁ ମୁଁ ସ୍ଥିର କରିଛି।"

ଏହା ଶୁଣି ଦୁର୍ଯ୍ୟୋଧନ କ୍ରୋଧରେ ଜର୍ଜର ହୋଇଗଲା। ତଥାପି କ୍ରୋଧକୁ ମନ ଭିତରେ ଗ୍ରପି ରଖି ସେ କହିଲା—"ସେଠି ତୁମକୁ କଣ ଅଧିକ ସ୍ୱାଦିଷ୍ଟ ବ୍ୟଞ୍ଜନ ମିଳିବ ବାସୁଦେବ?" ଭଗବାନ କହିଲେ—"କୌଣସି ଜିନିଷ ସ୍ୱାଦିଷ୍ଟ ହୋଇ ନ ଥାଏ; ସ୍ୱାଦିଷ୍ଟ ହୋଇଥାଏ ଖୁଆଉଥିବା ଲୋକର ଭାବନା। ତା' ଛଡ଼ା ଭୋଜନ ଦୁଇଟି ସ୍ଥିତିରେ କରାଯାଏ। କ୍ଷୁଧାରେ ପ୍ରାଣ ଯାଉଥିଲେ ଏବଂ ଖୁଆଉଥିବା ଲୋକର ଶ୍ରଦ୍ଧାଭାବନା ଥିଲେ। ଭୋକିଲା ଲୋକକୁ ଯେଉଁଠି ଯାହା ମିଳିଲେ ବି ସେ ଖାଇବାକୁ ବାଧ୍ୟ ହୁଏ। ଆଉ ଭୋକ ନ ଥିଲେ ମଧ୍ୟ କେହି ଆନ୍ତରିକ ଭାବନାରେ ଦେଉଥିବା ପଦାର୍ଥ ସ୍ୱୀକାର କରିବାକୁ ବ୍ୟକ୍ତି ବାଧ୍ୟ ହୁଏ। ଦୁର୍ଯ୍ୟୋଧନ! ତୁମ ମନରେ ଭାବ ନାହିଁ ଏବଂ ମୋ ପେଟରେ ଭୋକ ନାହିଁ। ତେଣୁ ମୁଁ ତୁମର

ଆତିଥ୍ୟ ସ୍ୱୀକାର କରି ପାରିବି ନାହିଁ।''

ଏଥିରୁ ପ୍ରମାଣିତ ହେଲା ଯେ ଭଗବାନ ହେଲେ ଭାବଗ୍ରାହୀ। ଭକ୍ତବତ୍ସଳ କାହାକୁ ଖୁଆଇ ସୁଖୀ ହୁଅନ୍ତି ତ ଆଉ କାହା ହାତରୁ ଖାଇ ସୁଖୀ ହୁଅନ୍ତି। ବିଦୁରଙ୍କର ଶାଗ ଭଜା, ସୁଦାମାର ଖୁଦ ଭଜା ଓ ଶବରୀର ବରକୋଳିରୁ ଭଗବାନ କେତେ ଯେ ସ୍ୱାଦ ପାଇଥିଲେ, ତାହା କେବଳ ସେ ହିଁ ଜାଣନ୍ତି।

ଏହି ଭକ୍ତମାନଙ୍କ ଭଳି ଆଉ ଜଣେ ଭକ୍ତିମତୀ ନାରୀ ଏ କଳିଯୁଗରେ ଜଗନ୍ନାଥ ଭଗବାନଙ୍କୁ ଖେଚେଡ଼ି ଖୁଆଇ ସନ୍ତୁଷ୍ଟ କରି ପାରିଥିଲା। ସେହି ଭାଗ୍ୟବତୀ ନାରୀର ନାମ ହେଲା 'କରମାବାଈ'। ଜଗନ୍ନାଥ ତାକୁ ମାଆ ରୂପରେ ସ୍ୱୀକାର କରିଥିବାରୁ ସେ ଜୀବନର ପ୍ରକୃତ ଫଳ ପାଇ ଧନ୍ୟ ହୋଇଥିଲା। ପ୍ରକୃତରେ କରମାବାଈର ନାଆଁ କିଛି ଭିନ୍ନ ଥିଲା। କିନ୍ତୁ ତା'ର ପିତାମାତା ଦେଇଥିବା ନାଆଁଟିକୁ ପ୍ରାୟ କେହି ଜାଣନ୍ତି ନାହିଁ। ପ୍ରଭୁ ଜଗନ୍ନାଥ ବାଳକ ରୂପରେ ଖନେଇ ଖନେଇ ଡାକୁଥିବା ନାଆଁଟି ଜଗତରେ ପ୍ରସିଦ୍ଧ ହୋଇଗଲା। ଖେଚେଡ଼ି ତିଆରିରେ କେବେ ଡେରି ହେଲେ ଜଗନ୍ନାଥ ଗୋପାଳ ରୂପରେ ତା' ପଣତକାନି ଟାଣି ଅଳି କରି କହନ୍ତି—ବେଗି କର ମା'! ବେଗି କର ମା'! ବାରମ୍ବାର 'କର ମା, କର ମା' କହିବାରୁ ତା'ର ନାମ ହୋଇଗଲା 'କରମା'। ମନ୍ଦିରରେ ଭୋଗରାଗରେ କୌଣସି ଊଣା ହେବାରୁ ଯେ ପ୍ରଭୁ ଜଗନ୍ନାଥ କରମାବାଈ ଘରେ ଖେଚେଡ଼ି ଖାଇବାକୁ ଯାଉଥିଲେ ତା' ନୁହେଁ, ଭକ୍ତର ପ୍ରୀତି ଭାବନା ମିଶା ଖେଚେଡ଼ିରୁ ତାଙ୍କୁ ଅପାର ଆନନ୍ଦ ମିଳୁଥିଲା।

ଯଦିବା ଶାସ୍ତ୍ରୀୟ ବିଧି-ବିଧାନରେ ଭଗବାନଙ୍କୁ ଭୋଗ ଲଗାଇବା ଉଚିତ, ତଥାପି ଆତ୍ମୀୟତା ଓ ଭାବନାର ଉଚ୍ଚତମ ସ୍ଥିତିରେ କେଉଁ କେଉଁ ଭକ୍ତ ଏହି ବନ୍ଧନକୁ ଲଙ୍ଘନ କରି ଯାଆନ୍ତି। ସେଭଳି ଭକ୍ତଙ୍କ ମଧ୍ୟରେ କରମାବାଈ ଥିଲା ଅନ୍ୟତମ। ସେ ଭଗବାନଙ୍କୁ ଭୋଗ ଲଗାଉଛି ବୋଲି ତା' ମନରେ ଭାବନା ନ ଥିଲା। ଜଗନ୍ନାଥଙ୍କ ପ୍ରତି ତା'ର ଥିଲା ପୁତ୍ର ଭାବନା। ତା ବାତ୍ସଲ୍ୟ ସ୍ନେହର ଆବେଗ ଏତେ ପ୍ରବଳ ହୋଇ ଉଠିଥିଲା ଯେ ସକାଳୁ ବାସି ପାଇଟି ସାରିବା ପୂର୍ବରୁ, ଅଗାଧୁଆ ଆଗ ସେ ତା' ଗୋପାଳ ପାଇଁ ଖେଚେଡ଼ି ବସେଇ ଦେଉଥିଲା। ସେ ଭାବୁଥିଲା, ଜଗନ୍ନାଥ ତ ତା'ର ଗେହ୍ଲା ପୁଅ। ଛୋଟ ପିଲାଙ୍କୁ ବାରମ୍ବାର ଭୋକ ଲାଗେ। ପିଲାମାନେ କିଛି ଖାଇ ହାତ ଧୋଇ ସାରିଥାନ୍ତି, ଅଥଚ ହାତ ନ ଶୁଖୁଣୁ ଆଉ କିଛି ମନପସନ୍ଦ ପଦାର୍ଥ ଦେଖି ପକାଇଲେ ସେମାନେ ପୁଣି ଖାଇବାକୁ

ଅଳି କରନ୍ତି। କରମା ଭାବେ, ଗୋପାଳ ପିଲାଲୋକ। ଭୋକ ସହି ପାରିବ ନାହିଁ। ବାସି ପାଇଟି ତ ପରେ କରି ପାରିବ, କିନ୍ତୁ ଆଗ ପୁଅ କଥା ବୁଝିବାକୁ ହେବ।

ପ୍ରଭୁ ଜଗନ୍ନାଥ କରମାର ଭାବନାକୁ ଆଦର ଦେଇ ଖେଚେଡ଼ି ରନ୍ଧା ନ ହେବା ପୂର୍ବରୁ ତା' ଘରେ ବାଳଗୋପାଳ ରୂପରେ ହାଜର ହୋଇଯାଆନ୍ତି। ଖଲି ପକାଇ ପିଢ଼ା ଉପରେ ବସି ରହନ୍ତି। ଖନେଇ ଖନେଇ କେତେ କ'ଣ ଏଣୁତେଣୁ ଗପନ୍ତି। ମଝିରେ ମଝିରେ କେଉଁ ଭକ୍ତଙ୍କ କଥା ମଧ୍ୟ କୁହନ୍ତି। ଆଉ ଡେରି ହେଲେ କହନ୍ତି—''ଭୋକ ଲାଗିଲାଣି ମାଆ, ବେଗି କର।'' କରମା କହେ—''ମୋ ଧନଟା ପରା! ଟିକିଏ ରହ! ଏଇ ସାଙ୍ଗେ ସାଙ୍ଗେ ହୋଇଯିବ।'' ଏମିତି କହି କରମା ଦାନ୍ତକାଠି ପଛପଟେ ଖେଚେଡ଼ି ଗୋଳେଇ ପ୍ରଭୁଙ୍କ ପତ୍ରରେ ବାଢ଼ିଦିଏ। ଜଗନ୍ନାଥ ଖେଚେଡ଼ିକୁ ଅମୃତ ଭଳି ପୋଛିପାଛି ଖାଇ ଯାଆନ୍ତି। ଏହିଭଳି ସ୍ନେହଶ୍ରଦ୍ଧା ମାଆ-ପୁଅଙ୍କର ଅନେକ ଦିନରୁ ଚ୍ଚଲିଥାଏ।

ଦିନେ ଜଣେ ବେଦଜ୍ଞ କର୍ମକାଣ୍ଡୀ ସାଧୁ କରମା କୁଟୀରରେ ପହଞ୍ଚିଲେ। କରମା ଅତି ଆଦରରେ ତାଙ୍କ ପାଦ ଧୋଇଦେଇ ଘରକୁ ପାଛୋଟି ଆଣିଲା ଏବଂ ଖୁବ୍ ସମ୍ମାନ କରି କିଛି ଦିନ ରହିବାକୁ ନିବେଦନ କଲା। ତା'ର ଶ୍ରଦ୍ଧା ଦେଖି ସାଧୁ ସେଇଠି ରହିଗଲେ। ପରଦିନ ସକାଳୁ ଉଠି ସେ ଦେଖନ୍ତି ତ ବଡ଼ ଆଶ୍ଚର୍ଯ୍ୟ ଘଟଣା! କରମା ତା'ର ନିତିଦିନିଆ ନିୟମ ଅନୁସାରେ ଜଗନ୍ନାଥଙ୍କ ପାଇଁ ଖେଚେଡ଼ି ରାନ୍ଧିବାରେ ବ୍ୟସ୍ତ ଥାଏ। ହାତ ମୁହଁ ନ ଧୋଇ ଅଗାଧୁଆ ଖେଚେଡ଼ି ବସାଇଥିବା ଦେଖି ସାଧୁ ପଚ୍ଚାରିଲେ—''ଏ କ'ଣ କରୁଛ ମାଆ?''

କରମା ବଡ଼ ଖୁସୀ ମନରେ କହିଲା—''ମୁଁ ମୋର ପୁଅ ଗୋପାଳ ପାଇଁ ଖେଚେଡ଼ି ରାନ୍ଧୁଛି।''

—''ଗୋପାଳ ମାନେ?''

''ମାନେ କ'ଣ, ମୋ ଜଗନ୍ନାଥକୁ ମୁଁ ଗୋପାଳ ବୋଲି ଡାକେ। ଏହା ମୋର ଗେଲର ଡାକ ନାଆଁ।''

''ତେବେ ଜଗନ୍ନାଥଙ୍କ ପାଇଁ ତୁମେ ଏମିତି ଖେଚେଡ଼ି ରାନ୍ଧୁଛ!''—ଆଚମ୍ବିତ ହୋଇ ପଚ୍ଚାରିଲେ ସାଧୁ।

''ହଁ, ଏଥିରେ ଏତେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି? ପିଲାଟା ମୋର ସକାଳୁ ଖାଇବାକୁ ଅଳି କରି ବସୁଛି, ତେଣୁ ମୁଁ ଆଗ ତା' କାମ ନ କରି ଅନ୍ୟ କାମ କରିବି?'' ଅତି ସହଜ ଭାବରେ କହିଲା କରମା। ତା' କଥା ଶୁଣି ସାଧୁ ମୁଣ୍ଡରେ

ହାତ ଦେଲେ। କହିଲେ—"ତୁମେ ଜାଣ ଏ ଜଗନ୍ନାଥ କିଏ? ଇଏ ହେଉଛନ୍ତି ସକଳ ସୃଷ୍ଟିର ଆଧାର। ବ୍ରହ୍ମା, ରୁଦ୍ର, ଇନ୍ଦ୍ର ପ୍ରଭୃତି ଦେବଗଣ ସର୍ବଦା ଏହାଙ୍କ ପାଦରେ ଖଟନ୍ତି। ଏଭଳି ଜଗତ ଠାକୁରଙ୍କୁ ତୁମେ ଏମିତି ଅଗାଧୁଆ ମୁହଁହାତ ନ ଧୋଇ ଦାନ୍ତକାଠି ପଛରେ ଘାଣ୍ଟି ଖେଚେଡ଼ି ଭୋଗ ଲଗାଉଛ?" ସାଧୁଙ୍କ କଥା ଶୁଣି କରମା ଡରିଗଲା। ହାତଯୋଡ଼ି କହିଲା—"ମତେ ଏତେ କଥା ଜଣାନାହିଁ ବାବା! ମୁଁ ତ ପୁଅ ବୋଲି ଭାବି ବହୁ ଦିନରୁ ଏମିତି ଖୁଆଇ ଆସୁଛି। କାହିଁ କେବେ ମୋ ଗୋପାଳ ତ ଖେଚେଡ଼ି ଅସୁଆଦ ହୋଇଥିବା କଥା ମୋତେ କହି ନାହିଁ। ଯଦି ମୋର କିଛି ଭୁଲ୍ ହେଉଥାଏ, କହିଲେ ମୁଁ ସୁଧାରି ଦେବି।"

ସାଧୁ କହିଲେ—"ଭୁଲ୍ କଥା ପଚ୍ଚରୁଛ? ସମ୍ପୂର୍ଣ୍ଣ ଭୁଲ୍। ଆଜିଠାରୁ ଆଉ ସେମିତି କରିବ ନାହିଁ। ଆସ ମୁଁ ତୁମକୁ ବିଧି-ବିଧାନ ଶିଖାଇ ଦେଉଛି। ଦେଖ! ସକାଳୁ ଉଠି ପ୍ରଥମେ ମୁହଁ-ହାତ ଧୋଇ ଘରର ବାସି ପାଇଟି ସାରିବ। ତା'ପରେ ଚୁଲି ଲିପିବ। ଭଲଭାବରେ ଠାକୁରଙ୍କ ବାସନ କୁସନ ମାଜିବ। ତା'ପରେ ଗାଧୋଇ ପାଧୋଇ ଧୁଆ ଲୁଗା ପିନ୍ଧି ରୋଷେଇ ଘରକୁ ପଶିବ। ତା'ପରେ ଶୁଦ୍ଧତା ଓ ପବିତ୍ରତା ରକ୍ଷା କରି ସାବଧାନ ହୋଇ ରୋଷେଇ କରିବ।" ଏହିଭଳି ଶୁଦ୍ଧତାର ନାନା ପ୍ରକାର ନିୟମ କଟକଣା କହିଗଲେ ବାବା। ବାବାଙ୍କ କଥା ଶୁଣି କରମା ଡରିଗଲା! ଭାବିଲା, ମୁଁ ମୂର୍ଖ ଲୋକ; ବିଧି-ବିଧାନ ଜାଣି ନାହିଁ। କାଳେ ଜଗନ୍ନାଥଙ୍କୁ କଷ୍ଟ ହେଉଥିବ! ତା' ପରଦିନ ସେ ସକାଳୁ ଉଠି ବାବାଙ୍କ କହିବା ଅନୁସାରେ ବାସି ପାଇଟି, ବାସନ ମଜା ଓ ଗାଧୁଆ ପାଧୁଆରେ ଲାଗି ରହିଲା। ଏମତି କରୁ କରୁ ଖେଚେଡ଼ି ତିଆରିରେ ଉଛୁର ହେଲା। ଜଗନ୍ନାଥ କିନ୍ତୁ ପୂର୍ବ ଅଭ୍ୟାସବଶତଃ ଠିକ୍ ସମୟରେ ଆସି ହାଜର ହୋଇଗଲେ। ଦେଖିଲେ, ଖେଚେଡ଼ି ତିଆରି ହେବା ତ ଦୂରର କଥା, ଏପର୍ଯ୍ୟନ୍ତ ଚୁଲିରେ ହାଣ୍ଡି ବି ବସି ନାହିଁ। ମାଆ ଏପର୍ଯ୍ୟନ୍ତ ଗାଧୋଉଛି। ଫେରିଯାଇ କିଛି ସମୟ ପରେ ଆସି ଦେଖିଲେ ଯେ ଚୁଲି ଲିପା ଚ୍ଲିଛି। ଘଣ୍ଟାକ ପରେ ପୁଣି ଆସି ଦେଖିଲା ବେଳକୁ ବାସନ ମଜା ହେଉଛି। ଏମିତି ଥରକୁ ଥର ଯିବା-ଆସିବା କରି କରି ଜଗନ୍ନାଥ ହଇରାଣ ହୋଇଗଲେ। ସାଧୁ ବାବା ଚୁଲି ପାଖରେ ବସି 'ଏମତି କରନା, ସେମିତି କର' କହି ନାନା ପ୍ରକାର ଉପଦେଶ ଝାଡୁଥାନ୍ତି। ଏହା ଦେଖି ଭଗବାନ ରାଗରେ ଆଖି ତରାଟି ସାଧୁକୁ ଚ୍ହିଁଲେ, କିନ୍ତୁ କିଛି ନ କହି ଫେରିଗଲେ। କିଛି ସମୟ ପରେ ଆସି ପହଞ୍ଚିଲା ବେଳକୁ ଖେଚେଡ଼ି ତ ରନ୍ଧା ସରିଥିଲା, କିନ୍ତୁ ତାହା ଏତେ ଗରମ

ଥିଲା ଯେ ଖାଇ ହେଉ ନ ଥିଲା । ବେଳ ଉଛୁର ହୋଇ ଗଲାଣି । ମନ୍ଦିରରେ ଭୋଗ ଲାଗିବା ସମୟ ହୋଇଯାଇଥିଲା । ଯେମିତି ସେମିତି ସୁ-ସୁ ହୋଇ ଖାଇଦେଲେ ସତ, କିନ୍ତୁ ଆଚମନ କଲାବେଳକୁ ସେପଟେ ମନ୍ଦିରରେ ପ୍ରସାଦ ଘଣ୍ଟ ବାଜିଲା । ତରବରରେ ମୁହଁହାତ ନ ଧୋଇ ଠାକୁରେ ସେଇଠୁ ସିଧା ଧାଇଁଗଲେ ଶ୍ରୀମନ୍ଦିରକୁ ।

ପ୍ରଭୁଙ୍କ ମୁହଁରେ ଖେଚେଡ଼ି ଲାଗିଥିବା ଦେଖି ପୂଜାରୀମାନେ ଆଚମ୍ଭିତ ହୋଇ ପଚ୍ଚାରିଲେ—"ଏ କ'ଣ ପ୍ରଭୁ? ଆପଣଙ୍କ ମୁଖାରବିନ୍ଦରେ ଏ ଉଚ୍ଛିଷ୍ଟ ଲାଗିଲା କେଉଁଠୁ? କେଉଁଠି ଖେଚେଡ଼ି ଖାଇ କରି ଆସିଛନ୍ତି କି? କିଏ ସେହି ଭାଗ୍ୟଶାଳୀ, ଯିଏ ତୁମକୁ ଖେଚେଡ଼ି ଭୋଗ ଖୁଆଇ ସନ୍ତୁଷ୍ଟ କରି ପାରିଲା । କିନ୍ତୁ ସେ କ'ଣ ମୁହଁ ଧୋଇବାକୁ ଜଳ ଟିକିଏ ଦେଇ ପାରିଲା ନାହିଁ? ଏ ଛବି ଦେଖି ଆମ ଅଙ୍ଗ ଅଙ୍ଗ ପୁଲକିତ ହୋଇଉଠୁଛି ।" ପ୍ରଭୁ ଜଗନ୍ନାଥ କହିଲେ—"ମୋର ମାଆ କରମା ମୋତେ ସବୁ ଦିନ ସକାଳୁ ସକାଳୁ ଖେଚେଡ଼ି ଖାଇବାକୁ ଡାକେ । ତା'ର ଅନାବିଳ ପ୍ରୀତିର ବଶ ହୋଇ ମୁଁ ପ୍ରତିଦିନ ତା' ହାତରୁ ଖେଚେଡ଼ି ଖାଏ । କିନ୍ତୁ ଜଣେ ସାଧୁ କାଲି ଆସି ତାକୁ ନାନା ପ୍ରକାର ଶାସ୍ତ୍ରୀୟ ରୀତି-ନିତି ପଢ଼ାଇ ତା'ର ମତିଭ୍ରମ କରିଦେଇଛି । ମୋ ଉପାସନାର ଅନେକ ବିଧି ରହିଛି ବୋଲି ତାକୁ ଜଣା ନାହିଁ । ଯିଏ ଉପାସକର ନିଷ୍ଠା ନ ଜାଣି ତାକୁ ଓଲଟା ପୋଲଟା କଥା ପଢ଼ାଏ, ସେ ଘୋର ଅନ୍ୟାୟ କରିଥାଏ । ମାଆ କରମା ନୀତିନିୟମରେ ଲାଗିଯିବାରୁ ଖେଚେଡ଼ି କରିବାରେ ବିଳମ୍ବ ହେଲା । ଏପଟେ ମନ୍ଦିରରେ ଭୋଗ ଘଣ୍ଟ ବାଜିବାରୁ ମୁଁ ତରବରରେ ମୁହଁ ନ ଧୋଇ ଚ୍ଚାଲି ଆସିଲି ।"

ପୂଜାରୀମାନେ ଭଗବାନଙ୍କର ଅଭିପ୍ରାୟ ବୁଝି ପାରି ପହଞ୍ଚିଲେ ସାଧୁଙ୍କ ନିକଟରେ । ତାଙ୍କୁ ସବୁ ବୃତ୍ତାନ୍ତ ଶୁଣାଇ କହିଲେ—"ବାବା! ଆପଣ ଯାଇ କରମାବାଈକୁ ବୁଝାଇ ଦିଅନ୍ତୁ ସେ ପୂର୍ବ ଭଳି ଠାକୁରଙ୍କୁ ଖେଚେଡ଼ି ଭୋଗ ଅର୍ପଣ କରୁ । ତା' ଭଳି ଭକ୍ତ ପାଇଁ ଏସବୁ ଆବଶ୍ୟକ ନାହିଁ । ପ୍ରଭୁ ତା'ର ସେଇ ଭକ୍ତିରେ ସନ୍ତୁଷ୍ଟ ।" ସାଧୁ ବହୁତ ଡରିଗଲେ । ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଅପରାଧ ହେଲା ଓ ସେ ରୁଷ୍ଟ ହୋଇଗଲେ ଭାବି ପ୍ରଭୁଙ୍କୁ ହାତଯୋଡ଼ି କ୍ଷମା ମାଗିଲେ ଏବଂ ଶୀଘ୍ର ଯାଇ କରମା ନିକଟରେ ପହଞ୍ଚିଲେ । କରମା ମଧ୍ୟ ବାବାଙ୍କୁ ଦେଖି ଡରିଗଲା ଯେ କାଳେ ଆଉ କେଉଁ ନୂଆ ନିୟମ ବତାଇବାକୁ ଆସିଗଲେ କି? ବାବା ତାକୁ କହିଲେ—"ମାଆ! ତୁମେ ଏଥର ପୂର୍ବଭଳି ତୁମ ଗୋପାଳକୁ ଖୁଆଇବ । କାଲି ତୁମକୁ ଯେଉଁ ସବୁ ନିୟମ ବତାଇଥିଲି, ତାହା ଆମ ଭଳି ଲୋକଙ୍କ ପାଇଁ

କୁହାଯାଇଛି। ଶାସ୍ତ୍ରରେ ଦୁଇ ପ୍ରକାର ନିୟମ ଅଛି, କିନ୍ତୁ ତୁମ ପାଇଁ ତ ତୁମର ପୂର୍ବ ନିୟମ ଠିକ୍। ସେଇଥିରେ ତୁମର ଗୋପାଳ ଖୁସୀ ହେବ।'' ତାହା ଶୁଣି କରମାର ମନ ଆନନ୍ଦରେ ନାଚି ଉଠିଲା! ସେ ସାଧୁବାବାଙ୍କୁ ଭୋଜନ କରିବାକୁ ଅନୁରୋଧ କଲା। ତା'ର ଭକ୍ତିରେ ମହାବାହୁ ଜଗନ୍ନାଥ ପ୍ରସନ୍ନ ହେବା ଜାଣି ସାଧୁ ବାବା ତା' ହାତରୁ ପ୍ରସାଦ ପାଇ ନିଜକୁ ଧନ୍ୟ ମଣିଲେ। କହିଲେ—''ମାଆ! ମୁଁ ଭାବୁଥିଲି ତୁମ ହାତରୁ ଦିନେ ମାଗି କରି ପ୍ରସାଦ ପାଇବି ବୋଲି। ଆଜି ତୁମେ ମୋତେ ପ୍ରଭୁଙ୍କ ପ୍ରସାଦ ଦେଇ ଧନ୍ୟ କରିଦେଲ।'' ଏହା କହି ବାବା କିଛି ଦିନ ପରେ ନିଜର ଆଶ୍ରମକୁ ଫେରିଗଲେ।

ଏଣେ କରମାବାଈର ବୟସ ଧୀରେ ଧୀରେ ଢଳିବାକୁ ଲାଗିଲା। ଏ ସଂସାରକୁ ଯିଏ ଆସିଛି, ତାକୁ ତ ଦିନେ ନା ଦିନେ ଯିବାକୁ ପଡ଼ିବ। ଏହି ନିୟମକୁ ତ କେହି ଲଘଂନ କରି ପାରିବେ ନାହିଁ। କରମାବାଈ ଜଗନ୍ନାଥଙ୍କୁ ଗୋପାଳ ରୂପରେ କୋଳରେ ଧରି ଶେଷ ନିଶ୍ୱାସ ତ୍ୟାଗ କରି ତାଙ୍କର ପରମ ଧାମ ଲାଭ କଲା।

କରମାବାଈର ବିୟୋଗ ଦୁଃଖ ଜଗନ୍ନାଥଙ୍କୁ ଅଧୀର କରି ପକାଇଲା। ସେ ମାଆର ବିୟୋଗ ସହି ନ ପାରି ଅଧୀର ହୋଇ କାନ୍ଦି ପକାଇଲେ ଏବଂ ସେଦିନ ମଣୋହି କଲେ ନାହିଁ। ପୂଜାରୀମାନେ ପ୍ରଭୁଙ୍କର ଏଭଳି ଦୁଃଖଦ ସ୍ଥିତି କଥା ଜଣାଇଲେ ଗଜପତିଙ୍କୁ। ଗଜପତି ଆସି ଦେଖନ୍ତି ତ ପ୍ରଭୁ ଶୋକସାଗରରେ ମଗ୍ନ। ପ୍ରଭୁଙ୍କ ଆଖିରେ ଲୁହ ଦେଖି ଗଜପତି ମଧ୍ୟ କାନ୍ଦି ପକାଇଲେ। କହିଲେ—''ଦୟାମୟ! ଆଜି ତୁମ ମନ ଏତେ ଦୁଃଖୀ କାହିଁକି? କ'ଣ ହୋଇଛି, ନୈବେଦ୍ୟ ମଣୋହି ନ କରି ଏଭଳି ଅଧୀର ହୋଇ କାନ୍ଦୁଛନ୍ତି କାହିଁକି?'' ପ୍ରଭୁ ତ ସହଜେ ଆଗରୁ ଦୁଃଖୀ ଥିଲେ। ରାଜା ପଚ୍ଚାରି ଦେବାରୁ ଅନ୍ତରର କୋହ ବାହାରକୁ ଝରଣା ଭଳି ଫୁଟି ବାହାରି ପଡ଼ିଲା। କୋହର ଆବେଗରେ ବହୁ ସମୟ ପର୍ଯ୍ୟନ୍ତ କିଛି କହି ପାରିଲେ ନାହିଁ। କରମାର ସ୍ନେହ, ଖେଚେଡ଼ି ଖୁଆଇବା କଥା ମନେ ପଡ଼ିବାରୁ ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ। ଅନେକ ସମୟ ପରେ ଟିକିଏ ଧୈର୍ଯ୍ୟ ଧରି କହିଲେ—''ମୋ ମାଆ ଆଜି ମୋତେ ଛାଡ଼ି ଚ୍ଚାଲିଗଲା। ମୋତେ ଆଉ ଖେଚେଡ଼ି ଖୁଆଇବ କିଏ? କିଏ ପୁଅ ବୋଲି କହି କୋଳରେ ଧରି ଗେଲ କରିବ?'' ଗଜପତି କହିଲେ—''ପ୍ରଭୁ! ଯଦି ତୁମ ମନ ନ ଥିଲା, ତେବେ ମାଆଙ୍କୁ ପଠାଇଲ କାହିଁକି? ତୁମେ ଚ୍ଚାହିଁଥିଲେ କ'ଣ ରଖି ପାରି ନ ଥାନ୍ତ?''

ଜଗନ୍ନାଥ କହିଲେ—"ନା, ମୁଁ ମୋ ଭକ୍ତକୁ ଏ ମର୍ତ୍ତ୍ୟଲୋକରେ ଅଧିକ ଦିନ ରଖିବାକୁ ଚାହେଁ ନାହିଁ। ବାର୍ଦ୍ଧକ୍ୟରେ ଭୀଷଣ କଷ୍ଟ ଭୋଗିବାକୁ ପଡ଼େ। ମୋ ଭକ୍ତର ଦୁଃଖ ମୁଁ ସହିପାରେ ନାହିଁ।" ଗଜପତି ହାତଯୋଡ଼ି ବିନତି କରି କହିଲେ—"ପ୍ରଭୁ! କରମାବାଈଙ୍କ ଭଳି ସ୍ନେହ ତ ଆମର ନାହିଁ, କିନ୍ତୁ ଆଜିଠୁ ତାଙ୍କ ନାମରେ ପ୍ରତିଦିନ ଖେଚେଡ଼ି ଭୋଗ ଅର୍ପଣ କରାଯିବ।" ଏହା ଶୁଣି ପ୍ରଭୁ ଜଗନ୍ନାଥ ଆନନ୍ଦିତ ହେଲେ। ଅଦ୍ୟାବଧି ଷାଠିଏ ପଉଟି ଭୋଗ ଲାଗିବା ପୂର୍ବରୁ ଜଗନ୍ନାଥଙ୍କୁ ଖେଚେଡ଼ି ଭୋଗ ଅପର୍ଣ କରି କୁହାଯାଏ—"କରମାବାଈ ଖେଚେଡ଼ି ମଣୋହି କରନ୍ତୁ ପ୍ରଭୁ!"

ଭକ୍ତ ନାଆଁ ଶୁଣି ଭଗବାନ ଆନନ୍ଦରେ ମଣୋହି କରନ୍ତି। ସତରେ, ଭକ୍ତ ଭଗବାନଙ୍କ ଆଡ଼କୁ ଗୋଟିଏ ପାହୁଣ୍ଡ ବଢ଼େଇଲେ ଭଗବାନ ଶହେ କୋଶ ଚାଲିଆସନ୍ତି। କେହି ତାଙ୍କୁ ମାଆ ରୂପରେ ବାତ୍ସଲ୍ୟ ସ୍ନେହ ଦେଲେ, ସେ ପୁଅ ରୂପରେ ତା'ର ସବୁ ଭାର ବହନ କରନ୍ତି।

## ଭକ୍ତ ମଣିଦାସ

ନିରଭିମାନୀ ଭକ୍ତ ଭଗବାନଙ୍କର ଅତି ଆପଣାର ଓ ସୁରକ୍ଷାର ପାତ୍ର। ଅବୋଧ ବାଳକର ରକ୍ଷା ଭାର ଯେପରି ତା'ର ପିତା-ମାତା ବହନ କରନ୍ତି, ତା'ର ସବୁ ଦୋଷ ଓ ଅପରାଧକୁ କ୍ଷମା କରି ତାକୁ କୋଳକୁ ନିଅନ୍ତି, ତା'ର ଦରୋଟି ବଚନ ଶୁଣି ଆନନ୍ଦ ଲାଭ କରନ୍ତି, ଭଗବାନ ସେହିପରି ତାଙ୍କ ସରଳ ଅମାୟିକ ଭକ୍ତ ମୁଖରୁ ତାଙ୍କର ଲୀଳାଗାନ ଶୁଣି ଖୁସୀ ହୁଅନ୍ତି। ସେ ତା'ର ଶୁଦ୍ଧ-ଅଶୁଦ୍ଧ ଭାଷାକୁ ଦେଖନ୍ତି ନାହିଁ କି ତା'ର ପାଣ୍ଡିତ୍ୟ ଓ ବିଦ୍ୱତ୍ତାକୁ ଦେଖନ୍ତି ନାହିଁ। ଭାବଗ୍ରାହୀଙ୍କୁ ଯେ ସଂସ୍କୃତ ଭାଷାରେ ଡାକିଲେ ସେ ଶୁଣନ୍ତି, ତା' ନୁହେଁ। ସେ ପ୍ରତ୍ୟେକ ପ୍ରାଣୀଠାରେ ଅନ୍ତର୍ଯାମୀ ରୂପରେ ରହି ତା'ର ଅନ୍ତରର ଛୋଟ-ବଡ଼ ସମସ୍ତ ଭାବକୁ ଭଲଭାବରେ ବୁଝି ପାରନ୍ତି। ଯେ ପୂର୍ଣ୍ଣବ୍ରହ୍ମ, ଆପ୍ତକାମ, ଷଡ଼ୈଶ୍ୱର୍ଯ୍ୟଶାଳୀ, ସମସ୍ତ ଭୁବନର କର୍ତ୍ତା, ଭର୍ତ୍ତା ଓ ସଂହର୍ତ୍ତା, ତାଙ୍କର କେଉଁ ପଦାର୍ଥ ବା ଅଭାବ ଅଛି ଯେ ସେ କାହାଠାରୁ କେଉଁ ପଦାର୍ଥ ପାଇ ଖୁସୀ ହେବେ! କେବଳ ସେ ଭକ୍ତିରେ ବା ଭକ୍ତର ଭାବରେ ବଶୀଭୂତ ହୋଇଯାଆନ୍ତି। ଯଜ୍ଞ, ଦାନ, ଶାସ୍ତ୍ରଜ୍ଞାନ, ତପସ୍ୟା ପ୍ରଭୃତି ଦ୍ୱାରା ତାଙ୍କୁ ବଶ କରାଯାଇ ପାରେନା। ସବୁଠାରୁ ବଡ଼ ହୋଇଥିବାରୁ ତାଙ୍କୁ ଉଚ୍ଚ ପଦରେ ମଧ୍ୟ ଖୁସୀ ମିଳେ ନାହିଁ। ସେ ତ ଭକ୍ତର

ଭାବରେ ବାନ୍ଧି ହୋଇ ତା'ର ଛୋଟ ଛୋଟ ସେବା କରିବାରେ ହିଁ ନିଜକୁ ଧନ୍ୟ ମନେ କରନ୍ତି । କେବଳ ପ୍ରଭୁଙ୍କ ଛଡ଼ା ଜଗତରେ ଆଉ ଏଭଳି ଉଦାର କିଏ ଅଛି? ସମସ୍ତେ ବଡ଼ପଣିଆ ଓ ଉଚ୍ଚ ପଦ ହାସଲ କରିବାର ପ୍ରତିଯୋଗିତାରେ ଉନ୍ମତ୍ତ ପରି ଦୌଡ଼ୁଛନ୍ତି । ସବୁଠି ବଡ଼ନାମୀ ଲୋକର ଆଦର । ସାଜ-ସରଞ୍ଜାମପୂର୍ଣ୍ଣ, ଆଡ଼ମ୍ବରମୟ ଆୟୋଜନ ମଧ୍ୟରେ କୁହାଳିଆ ଲୋକର ପ୍ରବଚନ ଶୁଣିବାକୁ ଯେତେ ଲୋକ ଆସିବେ, ପ୍ରତିଷ୍ଠାହୀନ, ସାଜ-ସରଞ୍ଜାମହୀନ ସରଳ ଲୋକଟି ଯେତେ ସୁନ୍ଦର କଥା କହିଲେ ବି 'ଗାଆଁ କନିଆ ସିଙ୍ଘାଣି ନାକୀ' ପରି କେତେ ଲୋକେ ବା ତା କଥାକୁ ଆଦରରେ ଶୁଣିବାକୁ ଚାହିଁବେ । କିନ୍ତୁ ମଣିଆ ଦାସ ପରି ସରଳ ଭକ୍ତର ଅସଂସ୍କୃତ ଢଗଢମାଳିପୂର୍ଣ୍ଣ ଭଜନ ଗୀତିକା ଶୁଣିବାକୁ ପ୍ରଭୁ ଯେତେ ଆତୁର, ବଡ଼ ବଡ଼ ପଣ୍ଡିତଙ୍କ ମୁଖରୁ ଧର୍ମଶାସ୍ତ୍ର ଓ ପୁରାଣ ଶୁଣିବାକୁ ସେତେ ଆତୁର ନୁହନ୍ତି । ଏହା ସେ ଦେଖାଇ ଦେଇଛନ୍ତି ମଣିଦାସଙ୍କ ବଶ୍ୟତାରେ ।

ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ମଣିଦାସଙ୍କ ଘର । ପ୍ରଭୁଙ୍କ କୃପା ପ୍ରସାଦରେ ତାଙ୍କର ପରିବାର ସୁଖେ-ଦୁଃଖେ କାଳ କାଟୁଥିଲା । ନଶ୍ୱର ସଂସାରରେ କୌଣସି କଥା ସ୍ଥାୟୀ ନୁହେଁ । ଏ ଜୀବନ ତ ପାଣି ଫୋଟକା ପରି । କାହାର ଯିବା ସମୟ କେତେବେଳେ ଯେ ଆସିଯିବ, ତାହା କିଏ କହିବ? ଯେତିକି ଦିନ ପାଇଁ ଯିଏ ଆସିଥିବ, ସେତିକି ଦିନ ପୂରିଗଲେ ତାକୁ କେହି ଅଟକାଇ ରଖି ପାରିବେ ନାହିଁ । ମଣିଦାସଙ୍କ ପରିବାରରେ ଏକା ମଣିଦାସଙ୍କୁ ଛାଡ଼ି ସମସ୍ତେ ଜଣ ଜଣ କରି ଏ ସଂସାରରୁ ବିଦାୟ ନେଇ ଚାଲିଗଲେ । ସମସ୍ତଙ୍କ ବିୟୋଗ ଦେଖି ଦେଖି ମଣିଦାସଙ୍କୁ ଏ ନାଶବାନ୍ କ୍ଷଣଭଙ୍ଗୁର ସଂସାରର ଅସଲ ରୂପ ଅନୁଭବ ହୋଇଗଲା । ତାଙ୍କ ମନରେ ପ୍ରକୃତ ବୈରାଗ୍ୟ ଜାଗ୍ରତ ହେଲା । ଏଠି କାହାର ଏଭଳି ପରିବାର ଅଛି, ଯାହା ଘରୁ କେହି ମରି ନାହାନ୍ତି? କିନ୍ତୁ କେତେ ଜଣଙ୍କ ମନରେ ବୈରାଗ୍ୟ ଜାତ ହେଉଛି? ଶ୍ମଶାନ ବୈରାଗ୍ୟ ଅବଶ୍ୟ କିଛି ସମୟ ପାଇଁ ଜାତ ହୋଇଯାଏ; କିନ୍ତୁ ତାହା କେବଳ ଶବଦାହ କର୍ମ ସରିବା ପର୍ଯ୍ୟନ୍ତ । ତା'ପରେ ଯେଉଁ କଥାକୁ ସେଇ କଥା । ତୋର-ମୋର ପୁଣି ଆରମ୍ଭ ହୋଇଯାଏ । ନିଜ କାନ୍ଧରେ ନେଇ ଶବକୁ ପୋଡ଼ିଦେଇ ଆସନ୍ତି, ଅଥଚ ନିଜର ନମ୍ବର ଯେ ଆସିବ, ସେକଥା ଭୁଲି ଯାଆନ୍ତି । ନିଜକୁ ଏଠାରେ ସ୍ଥିର ଓ ସ୍ଥାୟୀ କରିବାକୁ କି କ'ଣ, ଲୋକେ ଏକ ଆରେକକୁ ପରାସ୍ତ କରି ଦୁଇ ପାଦ ଆଗରେ ରହିବାକୁ ଚାହାନ୍ତି । ଏଭଳି ଆଶ୍ଚର୍ଯ୍ୟ ଆଉ କ'ଣ ଅଛି? ମହାଭାରତରେ ଯକ୍ଷ ପଚାରିଥିବା ପ୍ରଶ୍ନର ଉତ୍ତର ଦେଇ ଯୁଧିଷ୍ଠିର ଏହି

ଆଶ୍ଚର୍ଯ୍ୟଟିକୁ ସ୍ପଷ୍ଟ କରିଦେଇ କହିଥିଲେ—

**ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମମନ୍ଦିରମ୍ ।**
**ଶେଷାଃ ସ୍ଥାବରମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃ ପରମ୍ ॥**

ଅର୍ଥାତ୍—"ଏ ସଂସାରରେ ପ୍ରତିଦିନ ଲୋକେ ମରୁଛନ୍ତି । ମାତ୍ର ଯେଉଁମାନେ ଜୀବିତ ଅଛନ୍ତି, ସେମାନେ ସ୍ୱଚକ୍ଷୁରେ ଏସବୁ ଦେଖି ମଧ୍ୟ ନିଜେ ସ୍ଥାୟୀରୂପେ ରହିବାକୁ ବ୍ୟବସ୍ଥା କରିବାରେ ବ୍ୟସ୍ତ । ଏହାଠାରୁ ବଳି ଆଶ୍ଚର୍ଯ୍ୟର କଥା ଆଉ କ'ଣ ଅଛି?"

କିନ୍ତୁ ମଣିଦାସଙ୍କ ବୈରାଗ୍ୟ ସେଭଳି ବୈରାଗ୍ୟ ନୁହେଁ । ସେ ଅନୁଭବ କଲେ, ଯାହାଙ୍କ ପାଇଁ ଏତେ କର୍ମ କରିଥିଲେ, ସେମାନେ ତ ରହିଲେ ନାହିଁ; ଅଥଚ ଜୀବନର ସେହି ମୂଲ୍ୟବାନ୍ ସମୟତକ ହାତରୁ ଖସିଗଲା । ନିଜ ପାଇଁ ସେ କ'ଣ କରି ପାରିଲେ? ଯାହା କିଛି କରିଛନ୍ତି, ତାକୁ ତ ସେ ନିଜ ସଙ୍ଗରେ ନେଇ ଯାଇ ପାରିବେ ନାହିଁ । ଆଉ ଯାହା କିଛି ନେଇଯିବା ଭଳି ଜିନିଷ ଅଛି, ତାହା ସେ ଏ ପର୍ଯ୍ୟନ୍ତ ଯୋଗାଡ଼ କରି ପାରି ନାହାନ୍ତି । ଏଭଳି ଆତ୍ମାନୁଶୀଳନ କରୁ କରୁ ତାଙ୍କର ମନେ ପଡ଼ିଗଲା—

**ଧନାନି ଭୂମୌ ପଶବଶ୍ଚ ଗୋଷ୍ଠେ**
**ନାରୀ ଗୃହଦ୍ୱାରୀ ସୁତା ଶ୍ମଶାନେ ।**
**ଦେହଶ୍ଚିତାୟାଂ ପରଲୋକମାର୍ଗେ**
**ଧର୍ମାନୁଗୋ ଗଚ୍ଛନ୍ତି ଜୀବ ଏକ ॥**

ଅର୍ଥାତ୍—"ଜୀବ ଏ ସଂସାରରୁ ଖସିଯିବାବେଳେ ତା ସଙ୍ଗରେ କିଛି ଯାଏ ନାହିଁ । ସୁନାରୁପା ଯାହା ସବୁ ସେ ମାଟିତଳେ ପୋତି ରଖିଥାଏ ବା ଧନସମ୍ପଦ ଯାହା କିଛି ସଞ୍ଚୟ କରିଥାଏ, ତାହା ସେମିତି ସେଇଠି ରହିଯାଏ, ଗାଈଗୋରୁ, ହାତୀଘୋଡ଼ା ପ୍ରଭୃତି ପଶୁ ଗୋଠରେ ରହିଯାଆନ୍ତି, ପତ୍ନୀ ଗୃହର ଦ୍ୱାରଦେଶ ପର୍ଯ୍ୟନ୍ତ ଯାଏ, ପୁତ୍ରମାନେ ଅତି ବେଶୀରେ ଶ୍ମଶାନ ପର୍ଯ୍ୟନ୍ତ ଯାଆନ୍ତି, ଯେଉଁ ଦେହର ସୁଖ ପାଇଁ ସେ ଏତେ ସବୁ ଉପାର୍ଜିତ କରିଥିଲା, ତାହା ମଧ୍ୟ ଚିତାଗ୍ନିରେ ଭସ୍ମ ହୋଇଯାଏ, କେବଳ ତା ସଙ୍ଗରେ ଯାଏ ଧର୍ମ ବା ସତ୍‌କର୍ମ, ଯାହାକି ତାକୁ ଆଗାମୀ ଗତି ପ୍ରଦାନ କରେ ।

ଏ କଥା ଭାବିବା କ୍ଷଣି ମଣିଦାସ ସେହି ପ୍ରକୃତ ଧର୍ମ ପ୍ରତି ସଚେତନ

ହୋଇଗଲେ। ଭାବିଲେ, ପରିବାର ମଧ୍ୟରୁ ଆଉ କେହି ତ ରହିଲେ ନାହିଁ, ଥିଲେ ମଧ୍ୟ ସେମାନଙ୍କ ଦ୍ୱାରା ମୋତେ କ'ଣ ମିଳିବ? ମୋ କର୍ମର ଫଳ ତ ମୋତେ ମିଳିବ? ଏକା ଏହି ଶରୀରଟି ଅଛି, ଯାହା ପାଇଁ ଏତେ ଜଞ୍ଜାଳ କରିବାକୁ ପଡୁଛି। ହେଲେ ଏ ଦେହଟି ମଧ୍ୟ ପଞ୍ଚଭୂତରେ ଗଢ଼ା। ତେଣୁ ସେ ପଞ୍ଚଭୂତମାନେ ପୁଣି ଏହାକୁ ନିଜ ନିଜ ଭିତରେ ଆତ୍ମସାତ୍ କରିନେବେ। ଅନ୍ତତୋଗତ୍ୱା ମୋ ସଙ୍ଗରେ ଯେଉଁ ଧର୍ମ ଯିବ ତାହା ତ ମୁଁ କରି ପାରିଲି ନାହିଁ।

ଜୀବର ସବୁଠାରୁ ବଡ଼ ଧର୍ମ ହେଲା, ସେ ତା'ର ଅଂଶୀ ପରମାତ୍ମାଙ୍କ ଠାରୁ ଚିରକାଳରୁ ବିଯୁକ୍ତ ହୋଇ ସଂସାର ମାର୍ଗରେ ବୁଲି ବୁଲି ନାନା ଯୋନିରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ନାନା ପ୍ରକାର ଶାରୀରିକ ଓ ମାନସିକ କଷ୍ଟ ଭୋଗ କରୁଛି, ସେଥିରୁ ନିସ୍ତାର ପାଇବା। ସେଥିରୁ ନିସ୍ତାର ପାଇବାର ସବୁଠୁ ସହଜ ଓ ସରଳ ଉପାୟ ହେଲା ଭଗବାନଙ୍କ ନାମ ଜପିବା। ଅନ୍ୟ ସମସ୍ତ କର୍ମ ବୃଥା। ବାସ୍, ଏହି ସିଦ୍ଧାନ୍ତରେ ସେ ଅଟଳ ହୋଇଗଲେ। ଭାବିଲେ, ଯେଉଁ ପ୍ରାରବ୍ଧ ହେତୁ ଶରୀରକୁ ଜନ୍ମ ମିଳିଛି, ସେହି ପ୍ରାରବ୍ଧ ଅନୁସାରେ ତା'ର ଭରଣ-ପୋଷଣ ମଧ୍ୟ ହେବ। ଅତ୍ୟନ୍ତ ହୀନ ଅଦରକାରୀ ଛୋଟ ଛୋଟ ଜୀବଙ୍କୁ ଯଦି ଖାଇବାକୁ ମିଳୁଛି, ତେବେ ତାଙ୍କ ପେଟ ଗୃଖଣ୍ଡକ କ'ଣ ପୂରିବ ନାହିଁ ବିଶ୍ୱମ୍ଭରଙ୍କର ଏତେ ବଡ଼ ବିଶାଳ ଜଗତରେ! ନିଶ୍ଚିନ୍ତ ହୋଇ ସେ ସଂସାରର ଆଶା ତ୍ୟାଗ କରିଦେଲେ। ଉଜୁଡ଼ି ଯାଇଥିବା ସଂସାରକୁ ସେ ଆଉ ଢିରା ଲଗାଇ ଉଠାଇବାକୁ ଗ୍ରହିଁଲେ ନାହିଁ। ସେ ଏହାକୁ ବରଂ ଭଗବାନଙ୍କର ପରମ କୃପା ମନେକଲେ। ଭଗବାନ ତାଙ୍କୁ ସମସ୍ତ ଜଞ୍ଜାଳରୁ ମୁକ୍ତ କରି ଭଗବଭଜନ କରିବାର ସୁଯୋଗ ଦେଇଛନ୍ତି ବୋଲି ଭାବିଲେ। ସେ ଡୋର କଉପୁନି ଓ ତୁଳସୀ କଣ୍ଠି ଧାରଣ କରି ବୈଷ୍ଣବ ହୋଇଗଲେ। ସକାଳୁ ସକାଳୁ ସ୍ନାନ ସାରି ଦ୍ୱାଦଶ ତିଳକ କରି ହରି ନାମ ଭଜିବା ତାଙ୍କର ନିତିଦିନିଆ କର୍ମ ହୋଇଗଲା।

ସରଳ ଓ ନିରାଡ଼ମ୍ବର ସାଧୁ ଜୀବନ। ଆଜିକାଲି ଭକ୍ତି ନାମରେ ଯେପରି ଅସଂଖ୍ୟ ପ୍ରକାର ସାଜ-ସରଞ୍ଜାମ, ଅତ୍ୟାଧୁନିକ ବାଦ୍ୟଯନ୍ତ୍ରମୟ ସଂଗୀତ ରସର ମୋହିନୀ ଶକ୍ତିରେ ସକଳ ରସସାଗର ମୋହନ ବଂଶୀଧାରୀ ବିଶ୍ୱମୋହନଙ୍କୁ ବଶ କରିବାକୁ ଚେଷ୍ଟା କରାଯାଉଛି, ସେଥିରୁ ଉର୍ଦ୍ଧ୍ୱରେ ଥିଲେ ମଣିଦାସ। ତେଣୁ ସେ ନଡ଼ିଆର ସଢ଼େଇ ଦୁଇ ଫାଳକୁ କରତାଳ କଲେ। ସେହି ସଢ଼େଇ ମାଡ଼ର ତାଳେ ତାଳେ ନାଚିକୁଦି ସିଂହଦ୍ୱାର ପତିତ ପାବନଙ୍କ ଆଗରେ ବେଳେ ବେଳେ

ଆରମ୍ଭ କରି ଦିଅନ୍ତି ତାଙ୍କର ଉଦ୍ଦଣ୍ଡ କୀର୍ତ୍ତନ। କେତେବେଳେ ଭୂଇଁରେ ଲୋଟି ପଡୁଥାନ୍ତି, ପୁଣି କେତେବେଳେ ଉଠି ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି। କେତେବେଳେ ଜଗମୋହନରେ ପହଞ୍ଚି ଗରୁଡ଼ ସ୍ତମ୍ଭ ପଛରେ ଥାଇ କଳାଶ୍ରୀମୁଖକୁ ଦର୍ଶନ କରି ଆତ୍ମବିଭୋର ହୋଇଯାନ୍ତି। କାହିଁକି ବା ନ ହେବେ? ତାଙ୍କର ତ କେହି ଆଗକୁ ନାହିଁ କି ପଛକୁ ନାହିଁ। କାହାକୁ ବା ଭୟ? ସେହିଠାରେ ସେ ଉନ୍ମୁକ୍ତ କଣ୍ଠରେ ଭଜନ ଗାଇ, ଦୁଇ ବାହୁ ଉଠାଇ ନାନା ରଙ୍ଗରେ ନାଚନ୍ତି। ସଢ଼େଇ ବଜାଇ ଆଗକୁ ପଛକୁ ଯାଇ ନାଚି ନାଚି କୀର୍ତ୍ତନ କରନ୍ତି। ନିଜ ମନର ଭାବ ଅନୁସାରେ ମହାପ୍ରଭୁଙ୍କୁ ଜଣାଇ ଗାଇ ଉଠନ୍ତି—

**ତ୍ରିପଣ୍ଡ କାଳିଆ, କାଇଁଚ ମାଳିଆ, ଜୟ ଜୟ ଜଗନ୍ନାଥ।**
**ନାନା ଫୁଲହାରେ, ଶୋଭନ ମୂରତି, ହୃଦପଦ୍ମେ ଲକ୍ଷ୍ମୀ ସ୍ଥିତ ॥**
**ରତ୍ନ ଆଭୂଷଣ ସର୍ବାଙ୍ଗେ ଶୋହେ, ମୋହନ ମୂରତି ମନକୁ ମୋହେ ॥ ରତ୍ନ. (୧)**
**ଶ୍ରୁତିଯୁଗେ ତୋର, ମକର କୁଣ୍ଡଳ, ଯେହ୍ନେ ତପନ ମଣ୍ଡଳ।**
**ମସ୍ତକେ କିରୀଟ, ନାନା ରତ୍ନେ ପୁଟ, ଆଭା ଦିଶେ ଝଲମଲ ॥**
**ନବଗ୍ରହ ପଂକ୍ତି ସଦୃଶ ହୋଏ, ବିମ୍ବାଧରେ ମନ ଅଟକି ଯାଏ ॥ (୨)**
**ଶ୍ରୀମୁଖ ତୋ କଳା, ଶ୍ୱେତପଦ୍ମ ଡୋଳା, ତହିଁ ମଧ୍ୟେ ଚକା ଆଖି।**
**ତା ଦେଖି ଭକତ, ଚିତ୍ତ ହୋଏ ତୃପ୍ତ, ନେତ୍ର ତହିଁ ଯାଏ ଲାଖି ॥**
**କୃପାସିନ୍ଧୁ ତୁ ତ ଆରତତ୍ରାଣ, ଭବସାଗରୁ କର ପରିତ୍ରାଣ ॥(୩)**
**ଶ୍ରୀଭୁଜ ଯୁଗଳ, ପ୍ରାଣୀଙ୍କ ମଙ୍ଗଳ, କରଇ ଆୟୁଧେ ନିତି।**
**ସେ ବାହୁ ଶରଣ, ପଶିଛି ଯେ ଜନ, ତାହାର କାହାକୁ ଭୀତି ॥**
**ତୋହର ଅଭୟ ଚରଣ ବିନା, ନାହିଁ ଗତି ମୋର ସେ ବଜ୍ର ସେହ୍ନା ॥(୪)**

ଏହିପରି ନାନା ଗୀତ ଗାଇ ଉନ୍ମତ୍ତ ଭଳି ସେ ନାଚନ୍ତି। ତାଙ୍କ ପାଦପାତରେ ଭୂମି ଦୁଲୁ ଦୁଲୁ କମ୍ପେ। ଏହିପରି କିଛି ଦିନ ବିତିଗଲା। ଥରେ ଜଗମୋହନରେ ପୁରାଣପଣ୍ଡା ବସି ବିଷ୍ଣୁ ପୁରାଣ ପଢୁଥାନ୍ତି। ଅନେକ ଶ୍ରୋତା ମଧ୍ୟ ବସିଥାନ୍ତି। ଏତିକି ବେଳେ ମଣିଦାସ ଆସି ପହଞ୍ଚିଗଲେ। ପୂର୍ବ ଅଭ୍ୟାସ ଅନୁସାରେ ସେ ତାଙ୍କର ପ୍ରାଣପ୍ରିୟ ଚକାଡୋଳାଙ୍କୁ ଚାହିଁ ଭାବବିଭୋର ହୋଇଗଲେ। ଦୁଇ ହାତରେ ସଢ଼େଇ ପିଟି ପାଦ ଉଠାଇ ନାଚିବା ଆରମ୍ଭ କରିଦେଲେ। କେତେବେଳେ ଗାଉ ଥାଆନ୍ତି, କେତେବେଳେ ପୁରାଣ ପୋଥି ନିକଟରେ ଦଣ୍ଡବତ କରି ପୁଣି ଉଠି ଜଗନ୍ନାଥଙ୍କୁ ମଧ୍ୟ କରଯୋଡ଼ି ପ୍ରଣାମ କରୁଥାନ୍ତି ଏବଂ ନିଜ ମନର ଭାବ ବ୍ୟକ୍ତ କରି ଗୀତ

ଗାଇ ନାଚୁଥାନ୍ତି। କେତେବେଳେ ଉଚ୍ଚସ୍ୱରରେ କୁହାଟ ମାରି ଓ କୁରୁଳି କରି ହସୁଥାନ୍ତି। ତାଙ୍କୁ ଏହା ଜଣା ପଡୁ ନ ଥାଏ ଯେ ପୁରାଣ ପଢ଼ିବାରେ ବ୍ୟାଘାତ ସୃଷ୍ଟି ହେଉଛି। ସତରେ, ଭକ୍ତର ଏହି ପ୍ରେମ ବିହ୍ୱଳ ସ୍ଥିତି ଅତି ଅଦ୍ଭୁତ। ଭକ୍ତର ଏଭଳି ଭକ୍ତି ପ୍ରଭାବରେ ସମଗ୍ର ଜଗତ ପ୍ଳାବିତ ହୋଇଯାଏ, ପବିତ୍ର ହୋଇଯାଏ। ସ୍ୱୟଂ ଭଗବାନ ତାଙ୍କ ଭକ୍ତ ଉଦ୍ଧବଙ୍କୁ ଏତାଦୃଶ ଭକ୍ତିର ମହିମା ଗାନ କରି କହିଛନ୍ତି—

**ବାଗ୍‌ଗଦ୍‌ଗଦା ଦ୍ରବତେ ଯସ୍ୟ ଚିତ୍ତଂ**
**ରୁଦତ୍ୟଭୀକ୍ଷ୍ଣଂ ହସତି କ୍ୱଚିଚ୍ଚ।**
**ବିଲଜ୍ଜ ଉଦ୍‌ଗାୟତି ନୃତ୍ୟତେ ଚ**
**ମଦ୍ଭକ୍ତି ଯୁକ୍ତୋ ଭୁବନଂ ପୁନାତି॥**

ଲାଜ ସରମ ତ୍ୟାଗ କରି ଏହିପରି ପ୍ରେମ ବିଭୋର ନୃତ୍ୟରେ ଜଗତକୁ ପବିତ୍ର କରିଦେବାର ସାମର୍ଥ୍ୟ ଥିଲା ସତ, କିନ୍ତୁ ପୁରାଣ ପଣ୍ଡାଙ୍କ ମନକୁ କାହିଁକି କେଜାଣି ଏହା ଦୂଷିତ କରିଦେଲା। ତାଙ୍କ ବୁଦ୍ଧି ଲୌକିକ ମର୍ଯ୍ୟାଦା ମଧ୍ୟରେ ସୀମିତ ଥିବାରୁ ସେ ପ୍ରେମ ଜଗତର ଅଲୌକିକ ଭାବକୁ ବୁଝି ପାରିଲେ ନାହିଁ। ଭଗବତ୍‌ପ୍ରେମରେ ଭକ୍ତ ଓ ଭଗବାନ ଉଭୟେ ସାମାଜିକ ରୀତିନୀତି ଓ ମର୍ଯ୍ୟାଦାକୁ ଉଲ୍ଲଙ୍ଘନ କରିଯିବାର ଅନେକ ଦୃଷ୍ଟାନ୍ତ ରହିଛି। ଶବରୀର ଅଇଁଠା କୋଳି ଖାଇବା, କରମାବାଈର ଅଗାଧୁଆ ରନ୍ଧା ଖେଚେଡ଼ି ଖାଇବା, ପାଣ୍ଡବଙ୍କ ଗୃହରେ ସେବାକାର୍ଯ୍ୟ ଓ ଅଇଁଠା ପତ୍ର ଉଠାଇବା ତଥା ଗୋପୀପ୍ରେମ ଆଦି ଅସଂଖ୍ୟ ଦୃଷ୍ଟାନ୍ତରେ ଆମ ଭଗବାନଙ୍କର ଭାବଗ୍ରାହିତା ପ୍ରତିପାଦିତ ହୋଇଛି। ସେ ନିଜର ପ୍ରଭୁତା ଓ ଐଶ୍ୱର୍ଯ୍ୟ ଛାଡ଼ି ଭକ୍ତର ଅତ୍ୟନ୍ତ ନିକୃଷ୍ଟ ସେବା କରିବାକୁ ମଧ୍ୟ ପଶ୍ଚାତ୍ପଦ ହୋଇ ନ ଥାନ୍ତି, ଯାହାକି ସାମାଜିକ ମର୍ଯ୍ୟାଦା ଦୃଷ୍ଟିରୁ ଅଗ୍ରାହ୍ୟ। ଆଜିର ଏହି ଲୀଳା ମଧ୍ୟ ତାହାରି ପୁନରାବୃତ୍ତି।

ସାଧାରଣ ଶିଷ୍ଟାଗ୍ରର ଓ ମର୍ଯ୍ୟାଦା ଦୃଷ୍ଟିରୁ ପୁରାଣ ପଣ୍ଡାଙ୍କ କହିବା ଅବଶ୍ୟ ଭୁଲ୍ ନୁହେଁ ଏବଂ ପୁରାଣ ପାଠ ମଧ୍ୟ ଭଗବାନଙ୍କ ଉପାସନାର ଏକ ମାଧ୍ୟମ; ଏହାଦ୍ୱାରା ଭଗବାନ ଜ୍ଞାନଯଜ୍ଞରେ ପୂଜିତ ହୁଅନ୍ତି; ପୁଣି ଏହାଦ୍ୱାରା ଜ୍ଞାନ ଓ ଭକ୍ତିର ପ୍ରଗ୍ୱର-ପ୍ରସାର ହୁଏ। କିନ୍ତୁ କେବଳ ଶୁଆ ଭଳି ଶିଖି ଶୁଣି କହୁଥିବା ବାଚିକ ଜ୍ଞାନୀ ଭଗବାନଙ୍କୁ ପାଇପାରେ ନାହିଁ। ଶାସ୍ତ୍ରୀୟ ଜ୍ଞାନ, ତପସ୍ୟା, ଯଜ୍ଞ ଇତ୍ୟାଦିକୁ ଭଗବାନ ଅନନ୍ୟ ଭକ୍ତି ତୁଳନାରେ କନିଷ୍ଠ ବିବେଚନା କରନ୍ତି। ପ୍ରେମାଭକ୍ତିର ମଧୁରତାରେ ସେ ନିଜକୁ ଭକ୍ତ ପାଖରେ ଯେପରି ବିକି ଦିଅନ୍ତି, ସେପରି ଅନ୍ୟ

କୌଣସି ସାଧନା ଦ୍ୱାରା ସମ୍ଭବ ହୁଏ ନାହିଁ। ତାହା ଛଡ଼ା ଜ୍ଞାନୀ ତା' ଜ୍ଞାନ ବଳରେ ନିଜକୁ ଅସାଧନାରୁ ଦୂରେଇ ରଖି ସାଧନାରେ ସଂଲଗ୍ନ ରହିବାକୁ ଚେଷ୍ଟା କରେ। ସେ ଖୁବ୍ ସାବଧାନ ହୋଇଥାଏ; ତେଣୁ ସେ ଭଗବାନଙ୍କର ସାବାଳକ ପୁତ୍ର ପରି। କିନ୍ତୁ ଭୋଳା ସ୍ୱଭାବର ଭକ୍ତ ଛୋଟ ଅବୋଧ ଶିଶୁ ପରି ଅତି ସରଳ ଓ ଭଗବାନଙ୍କର ଆଶ୍ରିତ ହୋଇଥାଏ। ପିତା-ମାତା ବଡ଼ ସାବାଳକ ପୁତ୍ର ତୁଳନାରେ ଯେପରି ଅବୋଧ ଶିଶୁଟିକୁ ଅଧିକ ରକ୍ଷା କରିଥାନ୍ତି; ତା'ର ହିତ-ଅହିତ ପ୍ରତି ପ୍ରତ୍ୟେକ ପଦକ୍ଷେପରେ ନଜର ରଖିଥାନ୍ତି, ଭଗବାନ ସେହିପରି ଜ୍ଞାନୀ ଅପେକ୍ଷା ସରଳ ଭକ୍ତକୁ ନିଜ ଆଖି ଆଗରେ ରଖିବାକୁ ଚାହାନ୍ତି; ତା'ର ଅନାବିଳ ହୃଦୟର କଥାକୁ ଶୁଣିବାକୁ ଭଲ ପାଆନ୍ତି। ସେଥିପାଇଁ ସେ ଆଜି ଏହି ଲୀଳା କରୁଛନ୍ତି।

ଭକ୍ତ ମଣିଦାସ ନୃତ୍ୟଗୀତରେ ବିଭୋର। ବିଷ୍ଣୁପୁରାଣ ଆଗରେ ଗୋଡ଼ ଉଠାଇ ନାଚିବା ଦ୍ୱାରା ଯେ ପୁରାଣର ଅପମାନ ହେଉଛି, ଏହା ତାଙ୍କ ମନକୁ ମଧ୍ୟ ଆସିଲା ନାହିଁ। ତାହାର ଏହି ବାତୁଳ ମତି ଦେଖି ପୁରାଣ ପଣ୍ଡା ରାଗିଗଲେ। ସେ ପୁରାଣ ପଢ଼ା ବନ୍ଦ କରି କହିଲେ, "ଆରେ ମୂର୍ଖ! ତୋତେ ଦେଖାଯାଉନି? ଏ ବିଷ୍ଣୁପୁରାଣ ଆଗରେ ତୁ ଗୋଡ଼ ଟେକି ନାଚୁଛୁ! ପୁରାଣର ନିନ୍ଦା କରୁଛୁ! ସତରେ ତୁ ମାଡ଼ ମୂଲୋଉଛୁ। ଏଠି କେତେ ବଡ଼ ବଡ଼ ଦେବତାତୁଲ୍ୟ ଲୋକ ବସିଛନ୍ତି। ତୋର ଟିକିଏ କାହାକୁ ଖାତିରି ନାହିଁ? ତୁ କୁହାଟ ମାଡ଼ି ଗୋଡ଼ରେ ଝୁମୁକି ବାନ୍ଧି ଏଠି ନାଟ କରୁଛୁ। ବେଶୀ ଭାବ ଦେଖେଇ ହେଉଛୁ। ପୁରାଣ ତ ତୁ କାନରେ ଶୁଣୁ ନାହୁଁ, ଆଉ କାହାରିକୁ ବି ଶୁଣାଇ ଦେଉ ନାହୁଁ। ପୁରାଣ ପଣ୍ଡାଙ୍କୁ ତୁ ହୀନ ମନେକରି ଅପମାନ କରୁଛୁ। ତୋ ପିଠି କୁଣ୍ଡେଇ ହେଲାଣି। ରହ, ରହ; ଏବେ କୋଉ ବାପ ତୋ ପିଠିରେ ପଡ଼ିବ ଆମେ ଟିକେ ଦେଖିବୁ। ଭଲରେ ଭଲରେ ମାନିଯାଆ। ଯଦି ଭଲ ଦଶା ଅଛି, ଏଠୁ ପଳେଇଯାଆ। ନହେଲେ ମାଡ଼ ଗୋଟିଏ ବି ତଳେ ପଡ଼ିବ ନାହିଁ। ଆରେ! ଭଣ୍ଡ କୋଉଠିକାର!!"

ପୁରାଣ ପଣ୍ଡାଙ୍କ କ୍ରୋଧ ଦେଖି ହଠାତ୍ ଭକ୍ତ ମଣିଦାସଙ୍କର ବାହ୍ୟ ଚେତନା ଫେରି ଆସିଲା। ପୁରାଣ ପଣ୍ଡାଙ୍କ ମର୍ମଭେଦୀ ବଚନରେ ତାଙ୍କ ହୃଦୟରେ ସୃଷ୍ଟି ହେଲା ଅସହ୍ୟ ବେଦନା। କିନ୍ତୁ କହିବେ କାହାକୁ? ଅନ୍ୟ ଜଣକ ସଙ୍ଗେ ଝଗଡ଼ା କରି ବା କି ଲାଭ? ସେ ଯାହା କରୁଥିଲେ ପ୍ରଭୁଙ୍କ ପାଇଁ, ପ୍ରଭୁଙ୍କ ଆଗରେ ଓ ପ୍ରଭୁଙ୍କ ଦରବାରରେ କରୁଥିଲେ। ସର୍ବସମର୍ଥ ପ୍ରଭୁ ଥାଉଁ ଥାଉଁ ଯଦି ତାଙ୍କୁ ଅନ୍ୟ କେହି ଏପରି ଶାସନ କରିବ, ତେବେ ଏଥିରେ ପ୍ରଭୁଙ୍କର ପ୍ରଭୁତ୍ୱ ଆଉ କ'ଣ

ରହିଲା? ଏହାର ନ୍ୟାୟ ପ୍ରଭୁ କରିବା କଥା। ଏହିପରି ଭାବି ସେ ପ୍ରଭୁଙ୍କ ଉପରେ ମାନ କଲେ। ଆଖିରୁ ଝରି ଆସିଲା ଅମାନିଆ ଲୁହର ଅଜସ୍ର ଧାରା। କଳାଶ୍ରୀମୁଖକୁ ଗ୍ୱହିଁ ସେ ମନର ବ୍ୟଥା ପ୍ରକାଶ କରି କହିଲେ—"ହେ ମହାବାହୁ! ତୁମେ ଦୁଇ ଭୁଜ ଉଠାଇ ବସି ଚକା ଚକା ଆଖିରେ ସବୁ ଦେଖୁଛ, ଅଥଚ ନୀରବ ରହିଛ! ମୁଁ ଜାଣିଥିଲି, ତୁମେ କୁଆଡ଼େ ଶରଣାଗତବତ୍ସଳ; କିନ୍ତୁ ଆଜି ମୋତେ ଏହି ଦଣ୍ଡ ଦେଲ! ସାଧାରଣ ଲୋକଟିଏ ମଧ୍ୟ ତା'ର ଆଶ୍ରିତ ଲୋକକୁ ସଂକଟରୁ ରକ୍ଷା କରେ। ଆଉ ତୁମେ ମହାବାହୁ ହୋଇ ମୋତେ ଏପରି ଦଣ୍ଡିତ କରୁଛ! ତାହା ବି ଅନ୍ୟମାନଙ୍କ ଦ୍ୱାରା! ଆଜି ଜାଣିଲି ଯେ ତୁମେ ତୁମ ଦାସ ପ୍ରତି କେଡ଼େ ନିଷ୍ଠୁର।"

ଏହିପରି ନାନା କଥା କହି କ୍ରୋଧରେ ସଢ଼େଇ ଦୁଇଟିକୁ ଠାକୁରଙ୍କ ଆଗକୁ ଫିଙ୍ଗିଦେଲେ ଏବଂ ରାଗରେ ତମତମ ହୋଇ ମଠକୁ ଫେରିଗଲେ। ମଠରେ ବିରସ ମନରେ ଶୋଇ ରହି ଲୁହ ଗଡ଼ାଇଲେ। ପ୍ରଭୁଙ୍କର ସେଇ ଲୀଳା ବାରମ୍ବାର ତାଙ୍କ ମନରେ ଉଙ୍କି ମାରୁଥାଏ। ସେ ତାଙ୍କରି କଥା ଚିନ୍ତନ କରି କରି ତାଙ୍କ ଉପରେ ମାନ କରି ମନେ ମନେ ଅନେକ ଯୁକ୍ତିତର୍କ କରୁଥାନ୍ତି ପ୍ରଭୁଙ୍କ ସଙ୍ଗରେ।

ଦିନ ବିତିଗଲା। ରାତି ହେଲା। ସଂଧ୍ୟା ଧୂପକୁ ମଧ୍ୟ ସେ ଗଲେ ନାହିଁ। ଉପବାସରେ ମଠରେ ଶୋଇ ରହିଲେ। ତେଣେ ଠାକୁରଙ୍କ ସେବା ସରିଲା। ମନ୍ଦିରରେ ପହୁଡ଼ ପଡ଼ିଲା। ସେବକମାନେ ଭଣ୍ଡାର ଘରେ ମୁଦ ଦେଇ ବଡ଼ ଦେଉଳ ବନ୍ଦ କରି ଯେଝା ଯେଝା ଘରକୁ ଗ୍ୱଲିଗଲେ। କିନ୍ତୁ ଭକ୍ତର ଅପମାନରେ ଭଗବାନଙ୍କ ହୃଦୟ ଜଳୁଥାଏ। ସେ କି ଆଉ ଶାନ୍ତିରେ ଶୋଇ ପାରନ୍ତି! ଭକ୍ତର ଦୁଃଖ ନାଶିବାକୁ ତାଙ୍କ ନୀଳଚକ୍ରରେ ପରା ବାନା ଉଡ଼ୁଛି। ପୁଣି ଭକ୍ତର କଷଣ ଦେଖି କେମିତି ଚୁପ୍ ରହିଯିବେ! ଯେମିତି ହେଲେ ଆଜି ତାଙ୍କୁ ଏହାର ଏକ ସ୍ଥାୟୀ ସମାଧାନ ବାହାର କରିବାକୁ ପଡ଼ିବ। ନଚେତ୍ କେବଳ ମଣିଦାସ ନୁହେଁ, ଏପରି ଅନେକ ଭକ୍ତ ଆସି ତାଙ୍କର ମନକଥା ଭଗବାନଙ୍କୁ ଶୁଣାଇବା ବେଳେ ବ୍ୟାଘାତ ସୃଷ୍ଟି ହେବ। ତେଣୁ ପ୍ରଭୁ ରାତ୍ରିରେ ଗଜପତି ମହାରାଜଙ୍କୁ ସ୍ୱପ୍ନରେ କହିଲେ—"ହେ ରାଜା! ତୁ ଏଠି ଘୋର ଅଜ୍ଞାନ ନିଦ୍ରାରେ ଶୋଇ ରହିଛୁ, ଅଥଚ ତୋ ପ୍ରଜାଙ୍କର ଭଲମନ୍ଦ ଓ ଦୁଃଖ କଷ୍ଟ ପାଇଁ ତୋର ତ ଟିକିଏ ବି ଚିନ୍ତା ନାହିଁ! ମୋ କଥା ଶୁଣ୍। ମଣିଦାସ ମୋର ଭକ୍ତ। ସେ ଜଗମୋହନରେ ସଢ଼େଇ ବଜାଇ ନାଚି ଗାଇ ମୋର ନାମ କୀର୍ତ୍ତନ କରେ। ମୁଁ ତା'ର ସେହି ଭାବ ଦେଖି ବହୁତ ସୁଖ ପାଏ। ତୋର ଛୋଟ ପୁଅ ତୋ କୋଳରେ ବସି ଦରୋଟି ବଚନରେ କଥା

କହିଲେ ତୋତେ ଯେପରି ଖୁସୀ ଲାଗେ, ତା'ର ଢଗଢମାଳିପୂର୍ଣ୍ଣ ଗୀତ ଓ ନାଚ ମୋତେ ସେହିପରି ବହୁତ ଆନନ୍ଦ ଦିଏ। କିନ୍ତୁ ତୋର ପୁରାଣପଣ୍ଡା ତାକୁ ବହୁତ ଗାଳିମନ୍ଦ କରି ମୋ ଆଗରୁ ତାକୁ ତଡ଼ିଦେଲା। ଭକ୍ତଙ୍କର ଭାବପୂର୍ଣ୍ଣ କଥା ଶୁଣିବାକୁ ମୋତେ ଯେତେ ଭଲ ଲାଗେ, ପୁରାଣ ଶୁଣିବା ତା' ତୁଳନାରେ କିଛି ନୁହେଁ। ପୁରାଣ ତ ସେ ଯେଉଁଠି ଇଚ୍ଛା ସେଠି ଶୁଣାଇ ପାରିବ; ହେଲେ ମୋ ଭକ୍ତ ମୋର ସଙ୍ଗେ ଭେଟ ହେବା ବେଳେ, ତା' ମନ ଭିତରର ଦିପଦ କଥା ଶୁଣାଇବା ବେଳେ ତାକୁ ବାଧା ଦେବାଟା ଠିକ୍ ହେଉ ନାହିଁ। ମଣିଦାସ ଅପମାନିତ ହୋଇ ଏଠୁ ରୁଷି ପଳାଇ ଯାଇଛି। ଭୋକ ଉପାସରେ ମଠରେ ପଡ଼ି ରହିଛି। ତେଣୁ ମୁଁ ମଧ୍ୟ ଆଜି ଉପବାସ ଅଛି। ମୁଁ ତାକୁ ଛାଡ଼ି ପାରିବି ନାହିଁ। ସେ ନ ଆସିଲା ଯାଏ ମୁଁ ମଧ୍ୟ ମଣୋହି କରିବି ନାହିଁ ବୋଲି ଜାଣି ରଖ। ତେଣୁ ଯଦି ଭଲ ଦଶା ଅଛି, ତାକୁ ସସମ୍ମାନେ ଆଣି ମୋ ଜଗମୋହନରେ ବିଜେ କରାଇବୁ। ସେ ପ୍ରତିଦିନ ମୋ ଆଗରେ ଗାଇବ, ନୃତ୍ୟ କରିବ। ମୋର ଏ ଜଗମୋହନ ମୋ ଭକ୍ତଙ୍କ ପାଇଁ ଉଦ୍ଦିଷ୍ଟ। ମୋ ଭକ୍ତମାନେ ଏଠି ମୋର ରଙ୍ଗଅଧରକୁ ଚାହିଁ ମୋର ପାଦପଦ୍ମକୁ ଚିନ୍ତା କରି କରତାଳି ଦେଇ କୀର୍ତ୍ତନ କରିବେ, ମହା ଆନନ୍ଦରେ ନାଚିବେ, ମୋତେ ସ୍ତୁତି କରିବେ, ମୋତେ ସୁଖ-ଦୁଃଖ ଜଣାଇବେ। ଏହି ଉଦ୍ଦେଶ୍ୟରେ ବିଶ୍ୱକର୍ମା ଏହାକୁ ଏତେ ସୁନ୍ଦର କରି ନିର୍ମାଣ କରିଛନ୍ତି। ତେଣୁ ଏଠି ପୁରାଣ ପଢ଼ିବା ଦରକାର ନାହିଁ। ଯାହାର ଇଚ୍ଛା, ସେ ଲକ୍ଷ୍ମୀଙ୍କ ଆଗ ମଣ୍ଡପରେ ବସି ପୁରାଣ ପଢୁ। ମୋ ଭକ୍ତକୁ ମୋ'ଠାରୁ ଅନ୍ତର କଲେ ମୁଁ ସହି ପାରିବି ନାହିଁ।"

ରାଜାଙ୍କୁ ଏହିପରି ଆଦେଶ ଦେଇ ସ୍ୱୟଂ ପ୍ରଭୁ ଦେବାଧିଦେବ ମଣିଦାସ ପାଖରେ ପହଞ୍ଚିଗଲେ। ତାଙ୍କୁ ନାନାପ୍ରକାରେ ବୁଝାଇ ଆଶ୍ୱାସନା ଦେଲେ ଏବଂ ଭୋଜନ କରିବାକୁ ଆଦେଶ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ। ମଣିଦାସଙ୍କ ଆନନ୍ଦ କହିଲେ ନ ସରେ। ତାଙ୍କର ସମଗ୍ର ଶରୀର ରୋମାଞ୍ଚିତ ହୋଇଗଲା। ସ୍ୱୟଂ ପ୍ରଭୁ ତାଙ୍କ ଗୁହାରି ଶୁଣିଲେ। ତାଙ୍କର ମନର ଅଭିମାନ ମିଳେଇଗଲା। ପ୍ରଭୁଙ୍କ ଭକ୍ତବତ୍ସଳତାକୁ ଅନୁଭବ କରି ସେ ବାରମ୍ବାର ପ୍ରଣାମ କଲେ। ତା'ପରେ ପରମ ଆନନ୍ଦରେ ଉଠି ଭୋଜନ କଲେ।

ତେଣେ ରାଜା ଧଡ଼ପଡ଼ ହୋଇ ନିଦରୁ ଉଠିଲେ। ପାଖରେ କାହାକୁ ନ ଦେଖି ପ୍ରଭୁଙ୍କ ସ୍ୱପ୍ନାଦେଶକୁ ସତ୍ୟ ମଣିଲେ। ପ୍ରଭୁଙ୍କ ଆଦେଶ ପାଇ ନିଜ ଜୀବନକୁ ମଧ୍ୟ ଧନ୍ୟ ମଣିଲେ। ଆଉ କାଳବିଳମ୍ବ ନ କରି ତତ୍‌କ୍ଷଣାତ୍ ସେ

ଘୋଡ଼ାରେ ଚଢ଼ି ବାହାରି ପଡ଼ିଲେ ପୁରୀ ଅଭିମୁଖେ। ରାଜା ବେଳ ଦୁଇ ଘଡ଼ି ନ ହେଉଣୁ ଶ୍ରୀକ୍ଷେତ୍ରରେ ପହଞ୍ଚିଗଲେ। ଭକ୍ତ ମଣିଦାସଙ୍କୁ ଅନେକ ପ୍ରକାରେ ସମ୍ମାନ ଦେଇ ବଡ଼ ଆଦରରେ ପ୍ରଭୁଙ୍କ ଜଗମୋହନରେ ପହଞ୍ଚାଇଲେ। ରାଜା ନିଜେ ସ୍ୱହସ୍ତରେ ଭକ୍ତ ମଣିଦାସଙ୍କ ମୁଣ୍ଡରେ ପାଟ ବାନ୍ଧିଦେଲେ ଏବଂ ସେହିଠାରେ ନାନା ଭାବଭଙ୍ଗୀରେ ସଢ଼େଇ ବଜାଇ ନୃତ୍ୟ କରି ଓ ଗୀତ ଗାଇ ପ୍ରଭୁଙ୍କୁ ଖୁସୀ କରିବାକୁ ସାଦର ଅନୁରୋଧ କଲେ। ସେହିଦିନୁ ସେଠାରେ ପୁରାଣ ପଢ଼ିବା ମନା ହେଲା ଏବଂ ଲକ୍ଷ୍ମୀଙ୍କ ଜଗମୋହନରେ ପୁରାଣ ପାଠର ପରମ୍ପରା ଆରମ୍ଭ ହେଲା।

ଭକ୍ତଙ୍କର ମାନ ରଖିବା ପାଇଁ ଭକ୍ତବତ୍ସଳ ପ୍ରଭୁ ସବୁ କିଛି କରି ପାରନ୍ତି। ଯେଉଁ ପ୍ରଭୁ ବିଷ୍ଣୁପୁରାଣ ପାଠକୁ ମନା କରି ଭକ୍ତର ପ୍ରାକୃତ ଅସଂସ୍କୃତ ଭାଷାର ଗୀତ ଶୁଣିବାକୁ ଚ୍ୱାହାନ୍ତି, ସେଭଳି ପ୍ରଭୁଙ୍କୁ ନ ଭଜି ଯିଏ ଅନ୍ୟତ୍ର ନିଜର ଦୁଃଖ ମେଣ୍ଟାଇବାକୁ ପ୍ରଚେଷ୍ଟା କରେ, ଅନ୍ୟର ଦାସତ୍ୱ କରେ, ଭିକାରୀ ଆଗରେ ଯାଇ ଭିକ ମାଗେ, ତାକୁ ସେଥିରୁ କି ଲାଭ ବା ମିଳିବ! ତା'ର ସେହି ସବୁ ଶ୍ରମ ବୃଥା। ଜଣେ ଅନ୍ଧ ଅନ୍ୟ ଜଣେ ଅନ୍ଧକୁ ଆଶ୍ରା କରି କ'ଣ ପ୍ରକୃତ ମାର୍ଗ ପାଇ ପାରିବ? ମୃଗତୃଷ୍ଣାକୁ ଦେଖି ଯେତେ ଦୌଡ଼ିଲେ କଣ ତୃଷା ମେଣ୍ଟି ପାରିବ? ଭବସାଗର ତରିବାକୁ କେବଳ ସେହି ଭକ୍ତବତ୍ସଳ ପ୍ରଭୁଙ୍କ ଚରଣକମଳ ହିଁ ଏକମାତ୍ର ନୌକା। ବଡ଼ ବଡ଼ ପୁରୁଷାର୍ଥକାରୀ ବ୍ୟକ୍ତିମାନେ ଅନେକ କ୍ଳେଶପୂର୍ଣ୍ଣ ସାଧନା ଦ୍ୱାରା ଯାହାକୁ ପାରି ହେବାକୁ ବହୁ ପ୍ରୟାସ କରି ମଧ୍ୟରେ କୂଳରେ ଆସି ବୁଡ଼ି ଯାଆନ୍ତି, ତାହାକୁ ଭକ୍ତ ଅନାୟାସରେ ଏହି ଶ୍ରୀଚରଣରୂପୀ ନୌକାର ଶରଣରେ ପାର ହୋଇଯାଏ। ପ୍ରଭୁଙ୍କର ସେହି ଅଭୟପ୍ରଦ ଚରଣର ଶରଣ ନେଇ ଭକ୍ତ ମଣିଦାସ ପ୍ରଭୁଙ୍କୁ ଆନନ୍ଦ ଦେବା ସହିତ ନିଜେ ମଧ୍ୟ ଭବସାଗରରୁ ପାର ହୋଇଗଲେ।



## ଭକ୍ତ ବଳରାମ ଦାସ

ପରବ୍ରହ୍ମ ପରମାତ୍ମାଙ୍କ ପ୍ରାପ୍ତି ନିମନ୍ତେ ଯେତେ ସବୁ ସାଧନା ମାର୍ଗ ଅଛି, ସେଥିମଧ୍ୟରୁ ଭକ୍ତିମାର୍ଗ ଏଭଳି ଏକ ମାର୍ଗ, ଯେଉଁଥିରେ ଶୁଚି, ଅଶୁଚି, ଜାତି, ଯୋଗ୍ୟତା, ବିଦ୍ୟା ଇତ୍ୟାଦିର କୌଣସି ଧରାବନ୍ଧା ନିୟମ କଟକଣା ନାହିଁ। ଭକ୍ତର ଯଦି ଭାବ ପ୍ରବଳ, ତେବେ ଭଗବାନ ସାଂସାରିକ ଶୃଙ୍ଖଳା, ମର୍ଯ୍ୟାଦା ତଥା ଭକ୍ତର ଦୋଷ, ଅପରାଧ ଆଦିକୁ ଦେଖନ୍ତି ନାହିଁ। ସେ ସରଳ ହୃଦୟର ଅନାବିଳ

ବିଶୁଦ୍ଧ ଭାବକୁ ଦେଖି ତାକୁ କୋଳେଇ ନିଅନ୍ତି। ସେ ଦେଖନ୍ତି ନାହିଁ ଯେ ତା' ଦେହରେ କେତେ ପାପକାଳିମା ଲାଗିଛି ବା ସେ କେତେ ଅପବିତ୍ର। ପିଲାଟିଏ କାଦୁଅ ପଙ୍କରେ ଲଟପଟ ହୋଇଥିଲେ ମଧ୍ୟ ମାଆ ଯେପରି ତାକୁ ଆପଣାର ଭାବି କୋଳକୁ ନେଇଯାଏ ଏବଂ ପୋଛିପାଛି ପରିଷ୍କାର କରିଦିଏ, ସେହିପରି ଭଗବାନ ଭକ୍ତକୁ ଆପଣାର ଭାବରେ ଅଙ୍ଗୀକାର କରି ପରମ ପାବନ କରିଦିଅନ୍ତି। **'ପବିତ୍ରାଣାଂ ପବିତ୍ରଂ ଯୋ ମଙ୍ଗଳାନାଂ ଚ ମଙ୍ଗଳମ୍'** ଯାହାଙ୍କର ସ୍ୱରୂପ, ତାଙ୍କୁ କିଏ ବା ଅପବିତ୍ର କରି ପାରିବ! ଗଙ୍ଗାଜଳରେ ଯେତେ ପାପ ଧୋଇଲେ ସୁଦ୍ଧା ଗଙ୍ଗା କଣ ଅପବିତ୍ର ହୋଇଯିବ? ଯଦ୍ୟପି ଭଗବଦ୍ ମାର୍ଗରେ ଚାଲିବାକୁ ହେଲେ ପବିତ୍ର-ଅପବିତ୍ର ପ୍ରତି ଧ୍ୟାନ ଦେବା ଓ ପାପକର୍ମରୁ ଦୂରେଇ ରହିବା କେବଳ ଆବଶ୍ୟକ ନୁହେଁ, ପରମ ଆବଶ୍ୟକ; ତଥାପି ପୂର୍ବ ସଂସ୍କାର ଯୋଗୁଁ ଅଥବା ଭୁଲବଶତଃ ଭକ୍ତ ଦ୍ୱାରା ଯଦି କୌଣସି ପାପ କର୍ମ ଘଟିତ ହୋଇଯାଏ, ତେବେ ତା' ହୃଦୟରେ ବିରାଜିତ ଭଗବାନ ତାହାକୁ ନଷ୍ଟ କରି ଦିଅନ୍ତି। ଭାଗବତରେ ଅଛି–

**ଯେ ଅନ୍ୟଭାବ ପରିହରି। କୃଷ୍ଣଚରଣେ ଆଶ୍ରେ କରି ॥**
**ହରି ତା ହୃଦୟକମଳେ। ପ୍ରକାଶ ହୋନ୍ତି ସର୍ବକାଳେ ॥**
**ତାର ବିକର୍ମ ଯେତେ ଥାନ୍ତି। ହେଲେ ସମସ୍ତ ବିନାଶନ୍ତି ॥**

ପ୍ରଭୁଙ୍କ ପ୍ରତି ଭକ୍ତର ଘନିଷ୍ଠ ଆତ୍ମୀୟତା ଓ ପ୍ରବଳ ଭାବାଧିକ୍ୟର ଅଦମ୍ୟ ସ୍ରୋତରେ ପାପ ଏବଂ ନିୟମର ବନ୍ଧ ଭାଙ୍ଗିଯାଏ। ଭକ୍ତର ସିଧା ମିଳନ ହୁଏ ଭଗବାନଙ୍କ ସଙ୍ଗରେ। ଜଗତ ଆଖିରେ ଯେ ହସ୍ତପାଦହୀନ ଦାରୁମୂର୍ତ୍ତି, ସେ କ୍ଷଣକ ମଧ୍ୟରେ ପହଞ୍ଚି ଯାଆନ୍ତି ଭକ୍ତ ନିକଟରେ। ଷଡୈଶ୍ୱର୍ଯ୍ୟଭୋଗୀ ପହଞ୍ଚି ଯାଆନ୍ତି ଭକ୍ତର ଭଙ୍ଗା କୁଟିରରେ। ଷାଠିଏ ପଉଟିଖିଆ ପୁଣି ଭକ୍ତର ସାଧାରଣ ପତ୍ର, ପୁଷ୍ପ, ଫଳ ଓ ଜଳ ଟିକକ ଗ୍ରହଣ କରିବାକୁ ଆତୁର ହୋଇପଡ଼ନ୍ତି। ଜଗତରେ ସର୍ବତ୍ର ଅବହେଳିତ, ଅଯୋଗ୍ୟ ଓ ମାନହୀନକୁ ସେ ସର୍ବୋଚ୍ଚ ସମ୍ମାନ ଦେଇ ନିଜର କରି ନିଅନ୍ତି; ଅଥଚ ଯଜ୍ଞ, ତପ, ପବିତ୍ରତା, ବେଦାଧ୍ୟୟନ ଆଦିର ଅଭିମାନରେ ଉନ୍ମତ୍ତ ଲୋକେ ଜଳକା ପରି ଚାହିଁ ରହିଯାଆନ୍ତି।

ଆଜି ପତିତପାବନ ଦୀନବନ୍ଧୁ ଜଗନ୍ନାଥ ସେହି ଲୀଳା କରିବାକୁ ଯାଉଛନ୍ତି। ଆଜି ଶ୍ରୀଗୁଣ୍ଡିଚ୍ଚା ଯାତ୍ରାର ଶୁଭ ଦିନ। ପ୍ରଭୁ ଶ୍ରୀଜଗନ୍ନାଥ ଭାଇ ଭଉଣୀଙ୍କୁ ସଙ୍ଗରେ ଧରି ରଥରେ ବିରାଜମାନ ହୋଇଛନ୍ତି। ବଡ଼ଦାଣ୍ଡରେ ପ୍ରବଳ ଭିଡ଼। ଶଙ୍ଖ, ଘଣ୍ଟ

ମର୍ଦ୍ଦଳ, ହରିବୋଲ ଓ ହୁଳହୁଳିରେ ତ୍ରିଭୁବନ କମ୍ପି ଉଠୁଛି । କିନ୍ତୁ ଏ କି ବିଡ଼ମ୍ବନା! ବଡ଼ଦାଣ୍ଡରେ ଜନସମୁଦ୍ର ଭଗବାନଙ୍କ ରଥଯାତ୍ରାର ଆନନ୍ଦ ଉତ୍ସବରେ ଆହ୍ଲାଦିତ ଓ ଉନ୍ମତ୍ତ ଥିବା ବେଳେ ଭଗବାନଙ୍କୁ ନିଜର ପ୍ରାଣ ସମାନ ମଣୁଥିବା ଭକ୍ତ ବଳରାମ ଦାସ ଆଜି ବେଶ୍ୟା ଘରେ କାମରସରେ ମଗ୍ନ ହୋଇଛି କିପରି? ମହନ୍ତ ସୋମନାଥଙ୍କର ଶିଷ୍ୟ ସେ। ଭଗବାନଙ୍କ ନାମ କେଉଁଠୁ କାନରେ ପଡ଼ିବା ମାତ୍ରେ ତାହାକୁ ସେ କୋଟିନିଧି ପାଇଲା ପରି ମଣନ୍ତି । ସାଧୁଙ୍କ ସଙ୍ଗତିରେ ବସି ହରିଚରିତ ଶ୍ରବଣ ଓ ଗାୟନରେ ଆତ୍ମବିଭୋର ହୋଇଯାଆନ୍ତି । ସକଳ ଜୀବଙ୍କ ପ୍ରତି ତାଙ୍କ ହୃଦୟରେ ଦୟା । ପୁଣି ଜଗନ୍ନାଥଙ୍କ ସେବା ତାଙ୍କ ଜୀବନର ସର୍ବସ୍ୱ । ତଥାପି ଭକ୍ତିପ୍ରଭାରେ ଚିରଭାସ୍ୱର ଭକ୍ତଚନ୍ଦ୍ରମା ବଳରାମଙ୍କ ଠାରେ ଏଭଳି କଳଙ୍କ ରହିଯାଇଛି କିପରି? ବାତ୍ସଲ୍ୟମୟୀ ମାଆ ପିଲାଟିକୁ ନାନା ବେଶଭୂଷାରେ ସଜାଇ ଦେଇ ତା' ମସ୍ତକରେ କଳା ଟିପାଟିଏ ଲଗାଇଦେବା ପରି ସମ୍ଭବତଃ ଭଗବାନ ତାଙ୍କ ପ୍ରିୟ ଭକ୍ତଠାରେ ଲୋକପ୍ରସିଦ୍ଧି ଓ ଅଭିମାନରୂପୀ ଡାକିନୀଙ୍କର ନଜର ନ ଲାଗିବା ନିମନ୍ତେ ଏ କଳଙ୍କର କଳା ଟିପାଟିଏ ଲଗାଇ ଦେଇଛନ୍ତି । ପୂର୍ବଜନ୍ମର କେଉଁ ଅଶୁଭ ସଂସ୍କାର ରହିଯାଇଛି ବୋଧହୁଏ । ସେଥିପାଇଁ ତାଙ୍କ ମନ ଓ ଇନ୍ଦ୍ରିୟ କେବେ କେବେ ପ୍ରକୃତିର ବଶବର୍ତ୍ତୀ ହୋଇ ବେଶ୍ୟା ପ୍ରତି ଆସକ୍ତ ହୋଇଯାଆନ୍ତି । ମନ, ଇନ୍ଦ୍ରିୟ, ଶରୀର ତ ପ୍ରକୃତିର ଅଂଶ; ତେଣୁ ପ୍ରକୃତି ଆଡ଼କୁ ଆକର୍ଷିତ ହେବା ସେମାନଙ୍କର ସ୍ୱାଭାବିକ ପ୍ରବୃତ୍ତି; କିନ୍ତୁ ସେ ନିଜେ ତ ନିଜର ଅନ୍ତରାତ୍ମାକୁ ଶ୍ରୀଜଗନ୍ନାଥଙ୍କ ସହିତ ସଂଲଗ୍ନ କରି ଦେଇଛନ୍ତି । ତେଣୁ ଅନ୍ତରାତ୍ମାର ଆହ୍ୱାନରେ ସେ ସଜାଗ ନ ହୁଅନ୍ତେ ବା କିପରି? ସେ କାମିନୀ-କାଞ୍ଚନକୁ ଜୀବନର ସର୍ବସ୍ୱ ମଣୁଥିବା କାମୁକ ପୁରୁଷଙ୍କ ପରି କଣ ଆତ୍ମବିସ୍ମୃତ ହୋଇ ପାରନ୍ତେ? ତାଙ୍କର ସର୍ବସ୍ୱ ତ ଶ୍ରୀଜଗନ୍ନାଥ!

ଘଣ୍ଟା, ତୂରୀ, ମର୍ଦ୍ଦଳ ଓ କୀର୍ତ୍ତନର ଧ୍ୱନି ବଳରାମ ଦାସଙ୍କ କାନରେ ପଡ଼ିଲା । ଭଗବାନଙ୍କ ନାମ ଶୁଣିବା ମାତ୍ରେ କାମ-ପିଶାଚ ତାଙ୍କ ଦେହରୁ ଛାଡ଼ି ପଳାଇଲା । ତାଙ୍କ ଅନ୍ତଶ୍ଚେତନା ଜାଗ୍ରତ ହୋଇଗଲା । ଭୂତ ଛାଡ଼ିଯିବା ପରେ ବ୍ୟକ୍ତିର ଯେଉଁ ସ୍ଥିତି ହୁଏ, ତାଙ୍କର ବର୍ତ୍ତମାନ ସେହି ସ୍ଥିତି । ସେ ନିଜକୁ ବେଶ୍ୟା ଘରେ ଦେଖି ଅତ୍ୟନ୍ତ ଅନୁତାପ କଲେ । କପାଳରେ ହାତ ଦେଇ ନିଜକୁ ବହୁ ଧିକ୍କାର କରି କହିଲେ, ହାୟ! ଧିକ୍ ମୋ ଜୀବନକୁ । ମୋ ଭଳି ଅଜ୍ଞାନ ପାମର ଆଉ କିଏ ଅଛି! ଆଜି ଶ୍ରୀଗୁଣ୍ଡିଚ୍ଚା ଯାତ୍ରା । ପ୍ରଭୁ ନୀଳାଦ୍ରିବିହାରୀ ଆସି ରଥରେ

ବିଜେ କରିବେଣି । ଅଥଚ ମୁଁ ବେଶ୍ୟା ସଙ୍ଗରେ କାଳ କାଟୁଛି ।'' ଏତିକି କହୁ କହୁ ପତିତପାବନ ବାନା ଉଡ଼ାଉଥିବା ଦୟାମୟ ପ୍ରଭୁଙ୍କ ସ୍ୱଭାବ ତାଙ୍କର ମନେ ପଡ଼ିଗଲା । ସେ ନିଜର ସବୁ କୁକୃତ୍ୟକୁ ଭୁଲିଗଲେ । କେବଳ ପ୍ରଭୁଙ୍କ ଦୀନବତ୍ସଳ ସ୍ୱଭାବକୁ ସ୍ମରଣ କରି କରି ଆତ୍ମବିସ୍ମୃତ ହୋଇ ତରବର ହୋଇ ଦୌଡ଼ିଲେ ବଡ଼ଦାଣ୍ଡକୁ ।

ବଡ଼ଦାଣ୍ଡରେ ପହଞ୍ଚି ଦେଖିଲେ, ତିନୋଟି ରଥ ଗୋଟିଏ ଧାଡ଼ିରେ ରଖା ହୋଇଛି । ନନ୍ଦିଘୋଷରେ ପ୍ରଭୁ ଜଗନ୍ନାଥ ବିଜେ କରି ସାରିଲେଣି । ରଥରେ କଳାଶ୍ରୀମୁଖକୁ ଚାହିଁଦେବା ମାତ୍ରେ ସେ ନିଜକୁ ରୋକି ପାରିଲେ ନାହିଁ । ଚଢ଼ିଗଲେ ନନ୍ଦିଘୋଷ ରଥ ଉପରକୁ । ସମଗ୍ର ଶରୀର ପୁଲକିତ ହୋଇ ଉଠିଲା ଚକା ଚକା ଆଖି ଦୁଇଟିକୁ ଦେଖି । ହୃଦୟର କୋହ ସାଙ୍ଗକୁ ନେତ୍ରରୁ ବହି ଆସିଲା ଅମାନିଆ ଅଶ୍ରୁର ଦୁଇଟି ସଦ୍ୟ ପ୍ରକଟିତ ନିର୍ଝର । ପ୍ରଭୁଙ୍କ ଛାମୁରେ କରଯୋଡ଼ି ଠିଆ ହୋଇଗଲେ । ହେଲେ ତାଙ୍କର ଆନନ୍ଦ ହଠାତ୍ ପଶ୍ଚାତ୍ତାପରେ ପରିବର୍ତ୍ତିତ ହୋଇଗଲା । ନିଜର କୁତ୍ସିତ ସ୍ୱଭାବ ପ୍ରତି ଘୃଣା ଆସିଲା ତାଙ୍କ ମନରେ । ହୃଦୟରେ ଜମା ହୋଇ ରହିଥିବା ସମସ୍ତ ଆପତ୍ତି, ଅଭିଯୋଗ, ପ୍ରାର୍ଥନା ଏକାବେଳକେ ବାହାରି ପଡ଼ିଲା ଆପଣାର ପ୍ରଭୁଙ୍କୁ ରଥ ଉପରେ ଦେଖି । ସର୍ବ ସମର୍ଥଙ୍କ ଆଗରେ ନିଜର ଅସମର୍ଥତା ବ୍ୟକ୍ତ କରି କହିଲେ—''ହେ ପତିତପାବନ! ହେ ମହାବାହୁ! ଆଉ କେତେ ଦିନ ମୋର ଏ ଦୁର୍ଗତିକୁ ଦେଖି ମଧ୍ୟ ନୀରବ ରହିବ ପ୍ରଭୁ! ମୁଁ ତୁମର ହୋଇଯାଇଛି, ତୁମ ଚରଣରେ ଶରଣ ନେଇଛି । ତଥାପି ଏ ମନ-ବୁଦ୍ଧି-ଇନ୍ଦ୍ରିୟ ମୋତେ ନିଜ ନିଜ ବିଷୟ ଆଡ଼କୁ ଟାଣି ନେଉଛନ୍ତି କେମିତି? ବହୁପତ୍ନୀକ ପୁରୁଷକୁ ଯେପରି ତା'ର ସ୍ତ୍ରୀମାନେ ନିଜ ନିଜ ଶୟନ କକ୍ଷକୁ ଟାଣି ନେବାକୁ ଚେଷ୍ଟା କରନ୍ତି, ମୋର ସ୍ଥିତି ସେହିପରି ହୋଇଯାଇଛି ପ୍ରଭୁ! ନେତ୍ର ସୁନ୍ଦର ଦୃଶ୍ୟ ଆଡ଼କୁ, କର୍ଣ୍ଣ ଶ୍ରୁତିମଧୁର ଶବ୍ଦ ଆଡ଼କୁ, ଚର୍ମ କୋମଳ ସ୍ପର୍ଶ ସୁଖ ଆଡ଼କୁ, ଜିହ୍ୱା ସ୍ୱାଦିଷ୍ଟ ଆହାର ଆଡ଼କୁ, ନାସା ସୁଗନ୍ଧ ଆଡ଼କୁ, ଶିଶ୍ନ କାମୋପଭୋଗ ଆଡ଼କୁ— ସମସ୍ତ ଇନ୍ଦ୍ରିୟ ଏହିପରି ମୋତେ କଳବଳ କରୁଛନ୍ତି । ଅବଶ୍ୟ ମୁଁ ସେମାନଙ୍କ ସଙ୍ଗେ ଯୁଝିବାକୁ ଚେଷ୍ଟା କରୁଛି, କିନ୍ତୁ ଏକା ମୁଁ ସେହି ଦୁର୍ଦ୍ଧର୍ଷ ଇନ୍ଦ୍ରିୟଙ୍କ ବଳ ଆଗରେ ହାରିଯାଉଛି । ଶେଷରେ ସେମାନଙ୍କ ମନୋମୁଗ୍ଧକର ପ୍ରଲୋଭନରେ ପଡ଼ିଯାଇ ମୋର ପାଦ ଖସିଯାଉଛି ପତନର ଗର୍ତ୍ତ ଆଡ଼କୁ । ପୁଣି ଯେତେବେଳେ ତୁମ କଥା ମନେପଡୁଛି, ମୁଁ ସବୁକିଛି ଭୁଲି ତୁମ ଆଡ଼କୁ ଦୌଡୁଛି । କ'ଣ କରିବି

ପ୍ରଭୁ! ମୋର ସାମର୍ଥ୍ୟ କିଛି କାମ କରୁ ନାହିଁ। ହେଲେ ତୁମେ ତ ମହାବାହୁ। ତୁମେ ଚାହିଁଲେ କଣ ନ କରି ପାରିବ?'' ଏହିପରି କେତେ କଣ କହି ଚାଲିଥାନ୍ତି ଭକ୍ତ ବଳରାମ ଦାସ। ନିଜ ମନର ସକଳ କଲ୍ମଷକୁ ସତେ ଯେପରି ଧୋଇଦେବାକୁ ଆରମ୍ଭ କରିଥାନ୍ତି। କିନ୍ତୁ ଅନ୍ତର କଥା ଓ ମରମର ବ୍ୟଥାକୁ ପ୍ରକାଶ କରିବାକୁ ସୁଯୋଗ କାହିଁ? ଇତିମଧ୍ୟରେ ପ୍ରଭୁଙ୍କର କୌଣସି ସେବକର ଦୃଷ୍ଟି ତାଙ୍କ ଉପରେ ପଡ଼ିସାରିଥିଲା। ତତ୍‌କ୍ଷଣାତ୍ ମାଡ଼ଗାଳିର ବର୍ଷା ହୋଇଗଲା। କେତେ ଜଣ ସେବକ ଆସି ହଠାତ୍ ତାଙ୍କୁ ପଛରୁ ଘୋଷାରି ପକାଇ କ୍ରୋଧରେ କହିଲେ— ''ହଇରେ ଅଧମ! ଗାଧୁଆ ନାହିଁ, ପାଧୁଆ ନାହିଁ। କୋଉଠି ବେଶ୍ୟା ପାଖରେ ପଶିଥିଲୁ, ଆସି ସିଧା ରଥରେ ଚଢ଼ିଗଲୁ। ଛି, ଛି! ତୋ ଗାଲରେ ପାନପିକର ଦାଗ। ଦେହ ସାରା ବେଶ୍ୟା କୁଚକୁଙ୍କୁମର ଚିହ୍ନ। ଶୁଚି ପବିତ୍ର ନ ହୋଇ ଆସି ଏଠି ଭକ୍ତି ଦେଖାଉଛୁ! ଯା, ଯା ବାହର ଏଠୁ। ଆରେ! ବ୍ରହ୍ମା, ଇନ୍ଦ୍ର ପ୍ରଭୃତି ଯେଉଁ ପ୍ରଭୁଙ୍କ ପାଦପଦ୍ମରେ ଖଟିବା ପାଇଁ ଆକୁଳ ହେଉଛନ୍ତି, ତୁ ତାଙ୍କ ପାଖକୁ ଆସିଛୁ ଏଇ ଅବସ୍ଥାରେ। ଛି, ଛି! ପୋଡ଼ିଯାଉ ତୋ ଭକ୍ତି, ପୋଡ଼ିଯାଉ ତୋ ଜ୍ଞାନ।'' ଏହିପରି ନାନା ଲୋକ ନାନାପ୍ରକାର ଗାଳି ଦେଇ ଓ ଧକ୍କା ମାରି ମାରି ତାଙ୍କୁ ରଥରୁ ତଳକୁ ଠେଲିଦେଲେ।

ଭକ୍ତ ଓ ଭଗବାନଙ୍କ ମିଳନରେ, ଅନ୍ତରଙ୍ଗ ବାର୍ତ୍ତାଳାପରେ ବ୍ୟାଘାତ ସୃଷ୍ଟି ହୋଇଗଲା। ଭକ୍ତ ମନରେ ସାତ୍ତ୍ୱିକ ପ୍ରଣୟକୋପ ଜାଗି ଉଠିଲା। ନୟନରୁ ବହି ଚାଲିଲା ଅଜସ୍ର ଅଶ୍ରୁଧାରା। ସେ ହାତଯୋଡ଼ି ତଳେ ଠିଆ ହୋଇ ପ୍ରଥମେ ପ୍ରଭୁଙ୍କ ମୁଖକୁ ରକ୍ତିମ ନେତ୍ରରେ ଚାହିଁଲେ ଏବଂ ନିଜର ଆତ୍ମୀୟ ସମ୍ବନ୍ଧର ସ୍ୱାଭିମାନରେ ପ୍ରଭୁଙ୍କ ଉପରେ ଲାଞ୍ଛନାର ବର୍ଷା କରିଗଲେ।

ଭକ୍ତ ପ୍ରତ୍ୟେକ ଘଟଣାକୁ ପ୍ରଭୁଙ୍କ ବିଧାନ ମନେକରେ। ତାଙ୍କ ଇଚ୍ଛା ବିନା କେହି କାହାକୁ କଣ ଦଣ୍ଡ ଦେଇ ପାରିବ? ତେଣୁ ସେ ପ୍ରଭୁଙ୍କୁ ପ୍ରଣାମ କରି ଉଚ୍ଚସ୍ୱରରେ ଶୁଣାଇ ଶୁଣାଇ କହିଲେ—''ହେ ମହାବାହୁ! ହେ ଭକ୍ତବତ୍ସଳ! ମୁଁ ଅଧମ; ମୁଁ ପତିତ, ଅପବିତ୍ର। କିନ୍ତୁ ତୁମେ ତ ପତିତପାବନ ନାମ ବହିଛ! ମୋ ଭଳି ପତିତ କେହି ନ ଥିଲେ ତୁମର ଏତେ ବଡ଼ ନାମର କଣ ଯଥାର୍ଥତା ରହନ୍ତା? ମୁଁ ଯଦି ତୁମ ପାଖରେ ଅପରାଧ କରିଛି, ତୁମେ ମୋତେ ଦଣ୍ଡ ଦେଇଥାନ୍ତ। ତୁମେ ମୋର ପ୍ରଭୁ, ମୁଁ ତୁମର ଦାସ। ତୁମ ହାତରେ ସୁଦର୍ଶନ ଚକ୍ର ଅଛି, ସେଥିରେ ମୋ ମୁଣ୍ଡ କାଟି ଦେଇଥାନ୍ତ। କିନ୍ତୁ ଅନ୍ୟମାନଙ୍କ ହାତରେ କାହିଁକି ଦଣ୍ଡ ଦେଲ?

ତୁମେ ସ୍ୱୟଂ ରଥ ଉପରେ ବସି ଥାଉ ଥାଉ ତୁମ ଆଗରେ ଅନ୍ୟମାନେ ମୋତେ ମାରିଲେ! ମୁଁ ପାପ କରିଛି ବୋଲି ତୁମେ ମୋତେ ହତାଦର କରି ଠେଲିଦେଲ! ତାହେଲେ ଆଉ କୌଣସି ପାପୀ ତୁମ ଦ୍ୱାରକୁ କାହିଁକି ଆସିବ? ତୁମକୁ କାହିଁକି ପତିତପାବନ କହିବ? କାହିଁକି ଅନାଥର ନାଥ କହିବ? କାହିଁକି ତୁମ ଆଗରେ ଗୁହାରି କରିବ? ଜଗତର ଲୋକଙ୍କ ପରି ତୁମେ ବି ସ୍ୱାର୍ଥପର। ଭଲକୁ ତ ସମସ୍ତେ ଭଲ ପାଆନ୍ତି, ପତିତକୁ ସମସ୍ତେ ଦୂର ଦୂର କରନ୍ତି। ତୁମେ ଏକା ଏହାର ବ୍ୟତିକ୍ରମ ଥିଲ; ପତିତକୁ ବି କୋଳକୁ ନେଇ ସ୍ନେହ କରୁଥିଲ। ସେଥିପାଇଁ ଆମେ ସବୁ ପତିତ ତୁମର ଯଶକୁ ବିସ୍ତାର କରିଛୁ। କିନ୍ତୁ ତୁମେ ବି ବଦଳିଗଲ। ଜଣେ ଅତି ଦୁରାଚ୍ୱରୀ ଅନନ୍ୟ ଭାବରେ ତୁମକୁ ଭଜିଲେ ସେ ଅଚିରେ ଧର୍ମାତ୍ମା ହୋଇ ପରମ ଶାନ୍ତି ଲାଭ କରେ ବୋଲି ତୁମେ ଗୀତାରେ ଯେଉଁ ଘୋଷଣା କରିଛ, ତାହା ଆଜି ମିଛ ହେଲା। ଯଦି ତୁମେ ଏପରି କରିବ, ତେବେ ତୁମର ଏ ଦରବାର ଆଜିଠାରୁ ଶୂନ୍ୟ ହୋଇଯିବ। ତୁମେ ମୋର ପ୍ରାଣନାଥ ବୋଲି ମୁଁ ତୁମ ପାଖକୁ ଆସିଥିଲି; କିନ୍ତୁ ତୁମେ ଶେଷରେ ଏଇଆ କଲ! ମୁଁ ଏଥର ତୁମ କପଟ ଜାଣିଗଲି। ଠିକ୍ ଅଛି। ମୁଁ ଯାଉଛି। କିନ୍ତୁ ଏତିକି କହିଯାଉଛି—ଯଦି ମୁଁ ତୁମର ପ୍ରକୃତ ଦାସ ହୋଇଯାଏ, ଯଦି ତୁମ ବିନା ମୋର ଆଉ କାହା ଉପରେ ଭରସା ନ ଥାଏ, ତେବେ ତୁମର ରଥ ଆଜି ଏଠୁ ହୁଙ୍କିବ ନାହିଁ। ତୁମ ବାପା ନନ୍ଦଙ୍କର ରାଣ। ଆଉ ଗୋଟିଏ କଥା ମନେରଖ। ତୁମେ ଅଖିଳ ବ୍ରହ୍ମାଣ୍ଡର ଈଶ୍ୱର। ତୁମେ ଯଦି ସେବକର ହାନିଲାଭ ନ ବୁଝିବ, ତେବେ ଆଉ ବୁଝିବ କିଏ? ଏଥିରେ ତୁମରି କୀର୍ତ୍ତିଚନ୍ଦ୍ରରେ କଳଙ୍କ ଲାଗିବ; ମୋର କ'ଣ ଯିବ? ତୁମ ପରି ବ୍ରହ୍ମାଣ୍ଡ ଠାକୁରଙ୍କର ଆଶ୍ରିତ ହୋଇ ଯଦି ମୁଁ ଅନ୍ୟଠାରୁ ମାଡ଼ ଖାଇଲି, ତେବେ ଏ ଲଜ୍ଜା କାହାର ହେଲା ଟିକେ ବିଚ୍ୱର କରି ଦେଖ। ଠିକ୍ ଅଛି। ତୁମର ଯାହା ଇଚ୍ଛା ସେଇଆ କର। ତୁମେ ନିଜେ ଡାକି ନ ଆଣିବା ଯାଏ ମୁଁ ଆଉ ତୁମ ଦୁଆରକୁ ଆସିବି ନାହିଁ।"

ଏହିପରି କହି କହି ଏବଂ ପଛକୁ ବୁଲି ଚ୍ୱହିଁ ଚ୍ୱହିଁ ସେ ଯାଇ ପହଞ୍ଚିଲେ ସମୁଦ୍ର କୂଳ ବାଙ୍କି ମୁହାଣରେ। ସେଠାରେ ସେ ବାଲିରେ ତିନୋଟି ରଥ ତିଆରି କରି ନିଜେ ଧ୍ୟାନରେ ବସିଗଲେ। ନୟନରୁ ଝରୁଥାଏ ଲୋତକର ଧାର। ବ୍ୟାକୁଳ ହୃଦୟରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଆବାହନ କରି ସେ କହିଲେ—"ହେ ବ୍ରହ୍ମାଣ୍ଡ ଠାକୁର! ଯଦି ମୁଁ ତୁମର ପ୍ରକୃତ ସେବକ ହୋଇଥାଏ,

ତେବେ ତୁମେ ବଡ଼ଦାଣ୍ଡର ରଥ ଛାଡ଼ି ଆସି ମୋର ଏହି ରଥରେ ବିଜେ କର।''

ଧେନୁ ପଛେ ପଛେ ବତ୍ସ କ୍ଷୀର ଲୋଭରେ ଚାଲିଲା ପରି ଭଗବାନ ତ ଭକ୍ତର ଅନୁଗମନ କରିଥାନ୍ତି! ସେ କ'ଣ ଆଉ ଭକ୍ତର ମନୋବେଦନାକୁ ଉପେକ୍ଷା କରି ପାରନ୍ତେ। ତତ୍‌କ୍ଷଣାତ୍ ସେଠାରେ ଶୂନ୍ୟରୁ ଘଣ୍ଟା, କାହାଳୀ ଓ ଶଙ୍ଖାଦିର ଘନ ଘନ ନାଦ ଶୁଭିଲା। ଦିବ୍ୟ ସୁଗନ୍ଧରେ ଦଶଦିଗ ମହକି ଉଠିଲା। ପ୍ରଭୁ ଶ୍ରୀଜଗନ୍ନାଥ ଭାଇ ଭଉଣୀଙ୍କୁ ସଙ୍ଗରେ ଘେନି ଭକ୍ତର ବାଲି ରଥରେ ବିରାଜମାନ ହେଲେ। ପ୍ରଭୁଙ୍କୁ ଦେଖି ପ୍ରଥମେ ବଳରାମଦାସ ମାନ କରି କଣେଇ କଣେଇ ଚାହୁଁଥାନ୍ତି। ଆଗେ ପାଟି ଫିଟାଇବ କିଏ? ଭଗବାନ ହାରିଗଲେ। ଭକ୍ତର ମାନ ଭଞ୍ଜନ କରିବାକୁ ପ୍ରଭୁ କହିଲେ—''ଆଉ ରୋଷ ନ କର ବଳରାମ! ମୁଁ ତୁମ ପାଇଁ ଏତେ ବଡ଼ ଯାତ୍ରା ଛାଡ଼ି ତୁମ ପାଖକୁ ଚାଲି ଆସିଛି। ମୁଁ ମୋ ଭକ୍ତର ଅଧୀନ। ତେଣୁ ଏବେ ତୁମର ଯାହା ଇଚ୍ଛା, କର।''

ପ୍ରଭୁଙ୍କ ଭକ୍ତବତ୍ସଳତା ଦେଖି ତାଙ୍କର ମାନ ଆଉ ଅଧିକ ସମୟ ରହି ପାରିଲା ନାହିଁ। କଣ୍ଠ ବାଷ୍ପରୁଦ୍ଧ ହୋଇ ଆସିଲା। ସେ ସାଷ୍ଟାଙ୍ଗ ଭୂମିରେ ଶୋଇଯାଇ ଭୋ ଭୋ କରି କାନ୍ଦି ପକାଇଲେ। ଦୟାମୟ ପ୍ରଭୁ ଭକ୍ତ ବଳରାମକୁ ତଳୁ ଉଠାଇ ନିଜ ବକ୍ଷ ଉପରକୁ ଆଉଜେଇ ନେଇ ନିବିଡ଼ ଆଲିଙ୍ଗନ କଲେ। ପ୍ରଭୁଙ୍କ ଶ୍ରୀଅଙ୍ଗ ସ୍ପର୍ଶରେ ତାଙ୍କର ଅଙ୍ଗ ଅଙ୍ଗ ପୁଲକିତ ହୋଇ ଉଠିଲା। ଭକ୍ତବତ୍ସଳ ଜଗନ୍ନାଥ ନିଜର ଉତ୍ତରୀୟରେ ବଳରାମଙ୍କ ଆଖିରୁ ଝରି ଆସୁଥିବା ଲୁହ ଧାର ପୋଛିଦେଇ କହିଲେ—''ମାନ ତ୍ୟାଗ କରି କିଛି କୁହ ବଳରାମ! ତୁମର ପ୍ରଣୟ ମିଶ୍ରିତ ମଧୁର ବଚନ ଶୁଣିବା ପାଇଁ ମୁଁ ଏତେ ଦୂରରୁ ଚାଲି ଆସିଲି। ମନରେ ଆଉ ଯଦି କିଛି କୋପ ବାକି ରହିଥାଏ ତାହାକୁ ଚାପି ନ ରଖି ମନ ଖୋଲି ମୋତେ କହିଦିଅ।'' ପ୍ରଭୁଙ୍କ ପ୍ରିୟ ବଚନ ଶୁଣି ବଳରାମ ଦାସଙ୍କ ଅନ୍ତର କୋହ କୂଳ ଲଂଘନ କରିଗଲା। ସେ ଅଧୀର ହୋଇ କାନ୍ଦି କାନ୍ଦି ଲୁହଧାରରେ ପ୍ରଭୁଙ୍କ ବକ୍ଷସ୍ଥଳକୁ ସିକ୍ତ କରି ଚାଲିଲେ। ଦୀର୍ଘ ସମୟ ପରେ ଟିକିଏ ପ୍ରକୃତିସ୍ଥ ହୋଇ ଗଦ୍‌ଗଦ କଣ୍ଠରେ କହିଲେ—ସତରେ ପ୍ରଭୁ, ତୁମେ ଏ ଛାର ଅଧମର ମାନ ରଖିବା ପାଇଁ ଏତେ ବଡ଼ ଉତ୍ସବ ଛାଡ଼ି ଚାଲି ଆସିଲ! ସ୍ୱୟଂ ଜଗନ୍ମାତା ଲକ୍ଷ୍ମୀ ଯାହାଙ୍କର ପରିଚାରିକା, ଜଗତ୍‌ସ୍ରଷ୍ଟା ବ୍ରହ୍ମା ଯାହାଙ୍କର ଆଜ୍ଞାକୁ ଚାହିଁ ରହିଥାନ୍ତି, ଯାହାଙ୍କ ଆଜ୍ଞାରେ ସୂର୍ଯ୍ୟ-ଚନ୍ଦ୍ର ଆତଯାତ ହୁଅନ୍ତି, ଇନ୍ଦ୍ରାଦି ଦେବଗଣ ତଥା ଯକ୍ଷ-ରାକ୍ଷସ, ଗନ୍ଧର୍ବ, କିନ୍ନର ପ୍ରଭୃତି ଯାହାଙ୍କର ଗୁଣ ଗାନ କରନ୍ତି, ଯାହାଙ୍କ ପାଦପଦ୍ମକୁ ଯୋଗୀ, ଜ୍ଞାନୀ ଓ

ମୁନିଜନ ସେମାନଙ୍କ ହୃଦୟରେ ଧ୍ୟାନ କରନ୍ତି, ସେ ଆଜି ତାଙ୍କର ପ୍ରଭୁପଣିଆକୁ ଭୁଲିଯାଇ ଏ ଅଧମ ପାଖରେ ପହଞ୍ଚି ବିନୟ କରୁଛନ୍ତି! ଧନ୍ୟ ପ୍ରଭୁ! ଧନ୍ୟ ତୁମର ଭକ୍ତବତ୍ସଳତା! ତୁମ ପରି ଉଦାର ପ୍ରଭୁଙ୍କୁ ଛାଡ଼ି ଯେଉଁ ମୂଢ଼ ଜନ ଅନ୍ୟ ଦେବତାଙ୍କୁ ଭଜେ, ସେ ମହାମୂର୍ଖ। ଗଙ୍ଗାଜଳ ଛାଡ଼ି ତୃଷାର୍ତ୍ତ ବ୍ୟକ୍ତି କୂଅ, ଗାଡ଼ିଆ ଖୋଜି ବୁଲିବା ପରି ଏବଂ ଅମୃତ ଛାଡ଼ି ବିଷ ଖାଇବା ପରି ତା' କର୍ମ ବୃଥା। ତୁମରି ମହିମା ମୁଁ ଯତ୍କିଞ୍ଚିତ୍ ଜାଣି ତୁମରି ଶରଣ ନେଇଛି। ସେଥିପାଇଁ ଏ ବଳିଆ ଜଗତରେ କାହାରିକୁ ଭୟ କରେ ନାହିଁ। କିନ୍ତୁ ହେ ବଳିଆରଭୁଜ! ତୁମ ଭଳି ପ୍ରଭୁଙ୍କୁ ମୁଁ ଆଜି ରୋଷରେ ବହୁତ ଗାଳି ଦେଲି। ମୁଁ ମହାପାପୀ। ତୁମେ ତୁମର ଦାସକୁ ଏଭଳି ସହାୟ ହୁଅ ବୋଲି ଆଜି ମୁଁ ପ୍ରତ୍ୟକ୍ଷ ଦେଖିଲି। ହେ କରୁଣାକର! ମୋର ଅପରାଧ କ୍ଷମା କର। ମୋ ପାଇଁ ଆଜି ତୁମେ କେଡ଼େ ବଡ଼ ସୁଖକର ଉତ୍ସବ ଓ କେତେ ପ୍ରକାର ନୈବେଦ୍ୟ ଛାଡ଼ି ଏଠିକି ଚାଲି ଆସିଲ! ମୁଁ ଅଧମ ଅକିଞ୍ଚନ ଏଠି ତୁମର କେଉଁ ଉପଚାରରେ ସେବା କରି ପାରିବି?''

ଭକ୍ତର ବିନମ୍ରତା ଦେଖି ପ୍ରଭୁ ମନ୍ଦ ମନ୍ଦ ହସି କହିଲେ—''ବତ୍ସ ବଳରାମ! ମନ ଊଣା କର ନାହିଁ । ମୋର ଉପଚାର ଲୋଡ଼ା ନାହିଁ। ମୋତେ ଲୋଡ଼ା ମୋର ଭକ୍ତ। ଭକ୍ତ ମୋର ପ୍ରାଣଧନ। ମୁଁ ତା' ଭକ୍ତି-ଡୋରରେ ବନ୍ଧା। ଯେଉଁଠି ମୋ ଭକ୍ତ ନାହିଁ, ସେଠି ମୋତେ କି ସୁଖ ବା ମିଳି ପାରିବ? ଭକ୍ତ ମୋତେ ପତ୍ର-ପୁଷ୍ପଟିଏ ଦେଇ ପୂଜା କଲେ ବି ତାହା ମୋତେ ବହୁତ ଭଲ ଲାଗେ। କିନ୍ତୁ ଅଭକ୍ତ ଭାବହୀନ ମନୁଷ୍ୟ ମୋତେ ନାନା ପ୍ରକାର ସ୍ୱାଦିଷ୍ଟ ଅନ୍ନବ୍ୟଞ୍ଜନରେ ପୂଜା କଲେ ମଧ୍ୟ ମୁଁ ତାହାକୁ ଗ୍ରହଣ କରେ ନାହିଁ।''

ପ୍ରଭୁଙ୍କ ଶ୍ରୀମୁଖରୁ ଏଭଳି କରୁଣିତ ବଚନ ଶୁଣି ଭକ୍ତ ବଳରାମ ଆନନ୍ଦ ସାଗରରେ ବୁଡ଼ିଗଲେ। ସେ ଦେହଜ୍ଞାନ ଭୁଲି ଧ୍ୟାନସ୍ଥ ହୋଇଗଲେ। ନିଜ ହୃଦୟରୂପୀ ରଥରେ ପ୍ରଭୁଙ୍କୁ ବିରାଜମାନ କରାଇ ମନ-ବୁଦ୍ଧି-ଇନ୍ଦ୍ରିୟ ପ୍ରଭୃତିଙ୍କୁ ସଂଯତ କରି ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱର ସିଦ୍ଧାନ୍ତ ଅନୁସାରେ ପ୍ରଭୁଙ୍କର କଳ୍ପିତ ମାନସ ପୂଜା କଲେ। ମନ, ଚୈତନ୍ୟ, ବୁଦ୍ଧି, ପଞ୍ଚପ୍ରାଣ, ମହତ୍‌ତତ୍ତ୍ୱ, ଚବିଶ ପ୍ରକୃତି ପ୍ରଭୃତିଙ୍କୁ ରାଜା, ମନ୍ତ୍ରୀ, ସାରଥି, ଦାରୁକ, ପରିଛା, ପଣ୍ଡା, ଘଣ୍ଟୁଆ, ରଥଟଣାଳି ପ୍ରଭୃତିରୂପେ ସେବାରେ ନିଯୁକ୍ତ କରି ଆନନ୍ଦରୂପୀ ବଡ଼ଦାଣ୍ଡରେ ରଥ ଟାଣିଲେ। ନିଜ ମଧ୍ୟରେ ରଥଯାତ୍ରାର ସମସ୍ତ ଉପକରଣ, ସେବାକାରୀ ଓ ଚଉଦ ବ୍ରହ୍ମାଣ୍ଡର ଅପୂର୍ବ ସମ୍ଭାର ଓ ନୈବେଦ୍ୟ ଅର୍ପଣପୂର୍ବକ ଏହିରୂପେ ମାନସିକ ଦିବ୍ୟ ରଥଯାତ୍ରା

ସମ୍ପନ୍ନ କରି ପରମ ଆନନ୍ଦ ଲାଭ କଲେ ।

ତେଣେ ବଡ଼ଦାଣ୍ଡରେ ଭୀଷଣ କୋଳାହଳ । ତିନି ରଥ ଅଚଳ ହୋଇଯାଇଥାନ୍ତି । ରଥ ଟାଣିବା ଲୋକେ ଅଗଣିତ ସଂଖ୍ୟାରେ ଟାଣି ଟାଣି ଥକିଗଲେ, ଅଥଚ ରଥ ଟିକିଏ ବି ଘୁଞ୍ଚୁ ନ ଥାଏ । କେମିତି ବା ଘୁଞ୍ଚନ୍ତା? ପ୍ରଭୁଙ୍କର ଇଚ୍ଛା ଥିଲେ ସିନା ରଥ ଗ୍ଭଲିବ! ସ୍ୱୟଂ ପ୍ରଭୁମାନେ ତ ଭକ୍ତର ପଣ ରଖିବାକୁ ଯାଇ ବାଙ୍କି ମୁହାଁଣରେ ବାଲି ରଥରେ ବିଜେ କରିଛନ୍ତି । ରଥରେ ତ କେବଳ ଦାରୁମୂର୍ତ୍ତି ବିଦ୍ୟମାନ । ରଥ ତିଳେମାତ୍ର ନ ଘୁଞ୍ଚିବା ଦେଖି ସମସ୍ତେ ଚକିତ ହୋଇଗଲେ । ରାଜା ଚିନ୍ତିତ ହୋଇ ପଡ଼ିଲେ । ସେ ନଗରର ବ୍ରାହ୍ମଣ, କ୍ଷତ୍ରିୟ, ପାତ୍ର, ମନ୍ତ୍ରୀ, ବାଳକ, ବୃଦ୍ଧ, ନରନାରୀ ସମସ୍ତଙ୍କୁ ଡକାଇ ଟଣାଇଲେ । କିନ୍ତୁ ରଥ ଗ୍ଭଲିଲା ନାହିଁ । ଶେଷରେ ରାଜାଙ୍କ ଆଦେଶରେ ଶହେ ମତ୍ତଗଜଙ୍କୁ ରଥରେ ଯୋଗ୍ଭଗଲା । ସମସ୍ତ ନରନାରୀ ଦଉଡ଼ି ଧରିଲେ । ରାଜା ନିଜେ ମଧ୍ୟ ଅଣ୍ଟା ଭିଡ଼ି ଦଉଡ଼ି ଧରିଲେ । ଏକାବେଳକେ ହରିବୋଲ, ହୁଳହୁଳି ଧ୍ୱନି କରି ସମସ୍ତେ ରଥ ଟାଣିଲେ । କିନ୍ତୁ ସବୁ ପ୍ରଚେଷ୍ଟା ବିଫଳ ହୋଇଗଲା । ରାଜା ନିରୁପାୟ ହୋଇ ଶେଷରେ ପ୍ରଭୁଙ୍କୁ ପ୍ରାର୍ଥନା କଲେ । ସେ ଭାବିଲେ—"ନିଶ୍ଚୟ ମୋ ଦ୍ୱାରା କୌଣସି ଅପରାଧ ହୋଇଛି । ସେଥିପାଇଁ ରଥ ଗ୍ଭଲୁ ନାହିଁ ।" ଏହିପରି ମନ ଦୁଃଖରେ ଚିନ୍ତା କରି କୁଶାସନରେ ରାଜା ପ୍ରଭୁଙ୍କ ଆଦେଶ ପାଇବା ମାନସରେ ଅଧିଆ ପଡ଼ିଲେ । ପ୍ରଭୁ ତାଙ୍କୁ ଆଦେଶ ଦେଲେ—"ରାଜନ୍! ମୋ ରଥ ନ ଗ୍ଭଲିବାର କାରଣ ତୁମକୁ କହୁଛି, ଶୁଣ । ମୋର ଭକ୍ତ ପ୍ରତି ଘୋର ଅପରାଧ ହୋଇଛି । ମୋର ଯେଉଁ ଭକ୍ତ ନିରନ୍ତର ମୋର ନାମ-ଗୁଣ କୀର୍ତ୍ତନ କରେ, ସେ କଦାପି ଅପବିତ୍ର ନୁହେଁ । ମୋର ନାମ ଉଚ୍ଚାରଣ କଲେ ସମସ୍ତ ବାହ୍ୟ ଓ ଆଭ୍ୟନ୍ତର ଅଶୁଚି ଦୂର ହୋଇ ପବିତ୍ରତା ଆସେ । ପୁଣି ମୋର ନାମକୁ ନିରନ୍ତର ଉଚ୍ଚାରଣ କରୁଥିବା ବଳରାମ ଦାସ ଅପବିତ୍ର ହେଲା କିପରି?

**ନାମ୍ନୋଽସ୍ତି ଯାବତୀ ଶକ୍ତିର୍ପାପ ନିର୍ହରଣଂ ହରେଃ ।**
**ତାବଦ୍ କର୍ତ୍ତୁଂ ନ ଶକ୍ନୋତି ପାତକଂ ପାତକୀଜନାଃ ॥**

**ମୋ ନାମେ ପାପକ୍ଷୟ ଯେତେ । କରି ନ ପାରେ ପାପୀ ତେତେ ॥**

କିନ୍ତୁ ମୋ ଭକ୍ତ ବଳରାମକୁ ତୁମ ସେବକମାନେ ବାଡ଼ିଆପିଟା କରି ରଥରୁ ତଡ଼ିଦେଲେ । ସେ ମୋ ସହିତ ଭେଟ କରିବାକୁ ଆସିଥିଲା, କିନ୍ତୁ ସେମାନେ ଭେଟ କରାଇ ଦେଲେ ନାହିଁ । ସେ ମନଦୁଃଖରେ ଅଭିମାନ କରି ଏଠୁ ପଳାଇଗଲା । ସେ ବାଙ୍କିମୁହାଣରେ ମୋତେ ବାଲି ରଥରେ ବିରାଜମାନ କରାଇ ଯେଉଁ ଅପୂର୍ବ

ରୀତିରେ ରଥଯାତ୍ରା କଲା, ତାହା ତୁମେ ବୁଝି ପାରିବ ନାହିଁ। ତାହା ମୋତେ ବହୁତ ସୁଖ ଦେଲା। ତେଣୁ ମୁଁ ଭକତ ଭାବରେ ବନ୍ଧା ହୋଇ ସେଠାରେ ବିରାଜମାନ ହୋଇଛି। ଏଠି ତୁମେ ଯେତେ ଟାଣିଲେ ବି ରଥ କେମିତି ଚ୍ଲିବ! ଭକ୍ତ ମୋର ଶରୀର। ଭକ୍ତ ଓ ମୋ ଭିତରେ କୌଣସି ପାର୍ଥକ୍ୟ ନାହିଁ। ପତିପରାୟଣା ସତୀ ସାଧ୍ୱୀ ସ୍ତ୍ରୀ ଯେପରି ସ୍ୱାମୀଙ୍କୁ ସେବା ବଳରେ ବଶ କରି ରଖିଥାଏ, ସେହିପରି ଭକ୍ତର ପ୍ରେମଡୋରୀରେ ମୁଁ ବନ୍ଧା। ଭକ୍ତ ରକ୍ଷଣ ନିମନ୍ତେ ମୁଁ ହାତରେ ସୁଦର୍ଶନ ଚକ୍ର ଧାରଣ କରିଛି। ଭକ୍ତର ସୁଖ-ଦୁଃଖ ହେଉଛି ମୋର ସୁଖ-ଦୁଃଖ। ତେଣୁ ମୁଁ ତାକୁ ଛାଡ଼ି ପାରିବି ନାହିଁ। ଯଦି ତୁମେ ଏଠି ରଥଯାତ୍ରା କରିବାକୁ ଚ୍ହୁଁଛ, ତେବେ ଅବିଳମ୍ବେ ମୋର ଏହି ଆଜ୍ଞା ପାଳନ କର। ତୁମର ଯେଉଁ ସେବକମାନେ ମୋ ଭକ୍ତ ବଳରାମକୁ ନ ବୁଝି ନ ବିଚ୍ରି ଦଣ୍ଡିତ କରିଛନ୍ତି, ସେମାନଙ୍କୁ ଯୋଡ଼ି ଯୋଡ଼ି କରି ବାନ୍ଧିବ। ସେମାନଙ୍କୁ ଦାନ୍ତରେ ତିରଣ ଧରାଇ, ବେକରେ ରସି ବାନ୍ଧି, ପଛରୁ ଧକ୍କା ଦେଇ ଦେଇ ମୋ ଭକ୍ତ ପାଖକୁ ନେଇଯିବ। ସେମାନେ ତା' ପାଦତଳେ ପଡ଼ି କ୍ଷମା ମାଗିବେ। ପୁଣି ତୁମେ ସ୍ୱୟଂ ମୋ ଭକ୍ତକୁ ସସମ୍ମାନ ନିଜ କୋଳରେ ବସାଇ ମୋ ପାଖକୁ ଆଣିବ। ଏଠି ନନ୍ଦିଘୋଷରେ ତାକୁ ବସାଇ ତା' ମୁଣ୍ଡରେ ପାଟ ଶାଢ଼ୀରେ ଶିରପା ବାନ୍ଧିବ। ସେ ଆଦେଶ ଦେଲେ ଯାଇ ମୋ ରଥ ଚ୍ଲିବ। ନଚେତ୍ ଜାଣିରଖ ଯେ ମୁଁ ନୀଳାଚଳ ଛାଡ଼ି ଚ୍ଲିଯିବି। ମୋ ଭକ୍ତ ଯେଉଁଠି ରହିବ, ମୁଁ ମଧ୍ୟ ସେଇଠି ରହିବି।''

ଭଗବାନଙ୍କ ଆଜ୍ଞା ଶୁଣି ରାଜା ଧଡ଼ପଡ଼ ହୋଇ ଉଠିଲେ। ଭଗବାନଙ୍କ ଆଦେଶ ଅନୁସାରେ ଅପରାଧୀ ସେବକମାନଙ୍କୁ ଗଳାଧକ୍କା ଦେଇ ଭକ୍ତ ବଳରାମ ଦାସଙ୍କ ପାଖକୁ ଘେନିଗଲେ। ସେମାନେ ନିଜ ଅପରାଧ ପାଇଁ ଭକ୍ତଙ୍କୁ କ୍ଷମା ମାଗିଲେ। ରାଜା ବଳରାମ ଦାସଙ୍କୁ ଧନ, ବସ୍ତ୍ର ଆଦି ଦେଇ ନାନା ପ୍ରକାରେ ସମ୍ମାନିତ କଲେ ଏବଂ ଘୋଡ଼ାରେ ବସାଇ ନେଇ ଆସି ନନ୍ଦିଘୋଷରେ ବିରାଜିତ କରାଇଲେ। ତାଙ୍କ ମୁଣ୍ଡରେ ପାଟବସ୍ତ୍ର ବାନ୍ଧିଲେ ଏବଂ ରଥଯାତ୍ରା ଆରମ୍ଭ କରାଇବାକୁ ତାଙ୍କୁ ଅନୁରୋଧ କଲେ।

ଭକ୍ତର ଅଭିମାନ ତ ପୂର୍ବରୁ ଦୂର ହୋଇଯାଇଥିଲା, ଏବେ ଭଗବାନଙ୍କର ରୋଷ ମଧ୍ୟ ଦୂର ହୋଇଗଲା। ଭଗବାନଙ୍କ ଅଦ୍ଭୁତ ଲୀଳା ଦେଖି ବଳରାମ ଦାସଙ୍କ ହୃଦୟ କୃତଜ୍ଞତାରେ ଗଦ୍‌ଗଦ ହୋଇଗଲା। ସେ କରପତ୍ର ଯୋଡ଼ି ପ୍ରଭୁଙ୍କୁ ପ୍ରାର୍ଥନା କରି କହିଲେ—''ହେ ମହାବାହୁ! ହେ ଭକ୍ତବତ୍ସଳ! ତୁମ କରୁଣା ଅପାର

ପ୍ରଭୁ! ତୁମେ ତ ଦୁବକୁ ଦାରୁ କରିପାର। ଅକିଞ୍ଚନ ଦୀନହୀନକୁ ମଧ୍ୟ ଆପଣାର କରି ତା'ର ସମ୍ମାନ ବଢ଼ାଇଥାଅ। ଆଜି ଜାଣିଲି ଯେ ମୋ ପରି ଦୀନହୀନ ପାଇଁ ଏପରି ଲୀଳା ରଚି ତୁମର ସେଇ ଶରଣାଗତ ରକ୍ଷକ ବାନାର ମହିମା ପ୍ରକୀର୍ତ୍ତିତ କଲ। ଧନ୍ୟ ପ୍ରଭୁ ତୁମର ଲୀଳା! ପ୍ରଭୁ ବେଳ ଉଛୁର ହେଲାଣି। ତୁମର ଯାତ୍ରା ଦେଖିବାକୁ ଆହୁରି କେତେ ଭକ୍ତ ପ୍ରତୀକ୍ଷା କରିଛନ୍ତି। ସେମାନଙ୍କୁ ଏଥର କୃତାର୍ଥ କର ପ୍ରଭୁ! ଆଉ ବିଳମ୍ବ କର ନାହିଁ।''

ଶ୍ରୀଜଗନ୍ନାଥଙ୍କୁ ଏତିକି ପ୍ରାର୍ଥନା କରି ଲୋକମାନଙ୍କୁ ରଥ ଟାଣିବାକୁ ଆଦେଶ ଦେଲେ। ସମସ୍ତେ ପ୍ରଭୁଙ୍କର ଜୟକାର କରି ରଥ ଟାଣିଲେ। ହରିବୋଲି ହୁଳହୁଳି ଓ ଘଣ୍ଟ କାହାଳୀ ନାଦ୍‌ରେ ଭୁବନ କମ୍ପି ଉଠିଲା। ନନ୍ଦିଘୋଷ ଘୁଁ ଘୁଁ ଶବ୍ଦ କରି ତୀବ୍ର ବେଗରେ ଗଡ଼ି ଚ୍ଲିଲା। ଖୁବ୍ କମ୍ ସମୟ ଭିତରେ ତିନି ରଥ ଗୁଣ୍ଡିଚ୍ଚା ମନ୍ଦିର ନିକଟରେ ପହଞ୍ଚିଗଲା। ପ୍ରଭୁ ଭକ୍ତର ମାନ ରଖିଲେ। ସମସ୍ତେ ଭକ୍ତଙ୍କର ମହିମା ଗାନ କଲେ। ଭକ୍ତ ବୈଷ୍ଣବଜନଙ୍କ ଠାରେ ଅପରାଧ କଲେ ତାହା ଭଗବାନଙ୍କ ପ୍ରତି ଯେ ଅପରାଧ, ତାହା ସର୍ବଜନଙ୍କୁ ବିଦିତ ହୋଇଗଲା।



## ଭକ୍ତ ଦାସିଆ ବାଉରୀ

ପୁରୀଠାରୁ ପ୍ରାୟ ଦୁଇ କୋଶ ଦୂରରେ ପଡ଼େ ବାଲିଗାଁ। ସେହି ଗାଁରେ ଦାସିଆ ନାମକ ଜଣେ ବାଉରୀର ଘର। ଦାସିଆ ଅତି ଗରିବ। ପେଷା ତା'ର ତନ୍ତରେ ଲୁଗା ବୁଣିବା। ଗୃହସ୍ଥ ହେଲେ ମଧ୍ୟ ତା'ର ସନ୍ତାନସନ୍ତତି ନ ଥିଲେ। କେବଳ ପତିପତ୍ନୀ ଦୁହେଁ ସେଇ ବେଉଷା କରି କୌଣସି ପ୍ରକାରେ ନିଜର ଗୁଜରାଣ ମେଣ୍ଟାଉଥିଲେ। ନିର୍ଦ୍ଧନ ହେଲେ ସୁଦ୍ଧା ଧନ ପ୍ରତି ଲାଳସା ନ ଥିଲା ସେହି ଦମ୍ପତିଙ୍କ ମନରେ। ଭଗବାନଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ। ଯିଏ ଜୀବନ ଦେଇଛି, ସେ ଉଦର ପୋଷଣ ପାଇଁ ଦୁଇଟି ହାତ ମଧ୍ୟ ଦେଇଛି। ସେଥିରେ ଯେତିକି ଉପାର୍ଜନ ହେଉଛି, ତାହା ଭଗବାନଙ୍କ ଇଚ୍ଛା ବୋଲି ଧରିନେଇ ଦୁହେଁ ସନ୍ତୁଷ୍ଟ। ଅଧିକ ଧନ ହେବ ବା କ'ଣ? କିଏ ଅଛି ଖାଇବାକୁ? ଧନ ତ ସମସ୍ତ ଅନର୍ଥର ମୂଳ। ଧନ ଅଧିକ ହେଲେ ଯାହା ଟିକେ ସରଳ ବିଶ୍ୱାସ ମନରେ ଅଛି, ତାହା ବି କେଉଁଆଡ଼େ ଚ୍ଲିଯାଏ। ସମସ୍ତଙ୍କ ପ୍ରତି ମନରେ ଭୟ ଜନ୍ମେ, ଏପରିକି ନିଜ ପୁତ୍ରମାନଙ୍କ ପ୍ରତି ମଧ୍ୟ ମନରେ ଆଶଙ୍କା ଉପନ୍ନ ହୋଇଯାଏ। ଭଗବଦ୍‌ବିଶ୍ୱାସ

କମ୍ ହୋଇ ନିଜ କର୍ମ, ସାବଧାନତା, ବଳ ଓ ଚତୁରତା ଉପରେ ବିଶ୍ୱାସ ଅଧିକ ହୁଏ। କେବଳ ସେତିକି ନୁହେଁ, ଭାଗବତରେ ଧନଲୋଭର ଅପକାରିତା ଦର୍ଶାଇ କୁହାଯାଇଛି—

**କୁଷ୍ଟ ଯେସନେ ରୂପ ନାଶେ। ଲୋଭ ତେମନ୍ତ ଗୁଣ ଯଶେ ॥**
**ଅର୍ଜନେ ସାଧନେ ସଞ୍ଚୟେ। ଧନ ସେ ସର୍ବ ଦୁଃଖମୟେ ॥**
**ଚଉର୍ଯ୍ୟ ହିଂସା ମିଥ୍ୟା ଦମ୍ଭ। ଭେଦ ବଇର ମଦ ଗର୍ବ ॥**
**କାମ କ୍ରୋଧ ଯେ ଅବିଶ୍ୱାସ। ସ୍ପର୍ଦ୍ଧା ବ୍ୟସନ ଯେ ବିଶେଷ ॥**
**ଏ ପଞ୍ଚଦଶ ଦୋଷ ଧନେ। ଏଣୁ ପଣ୍ଡିତ ସାଧୁଜନେ ॥**
**ଧନ ସଞ୍ଚୟ ଦୂର କରି। ନିୟତ କର୍ମକୁ ଆବୋରି ॥**
**ଧୀରେ ରହନ୍ତି ସମଚିତ୍ତେ। ଧନ୍ୟ ଜୀବନ ଏ ଜଗତେ ॥**

ଏହି ଭାଗବତ ବାଣୀକୁ ଗଣ୍ଠି କରି, ସକଳ ଅନର୍ଥର ମୂଳ କାରଣ ଧନର ଇଚ୍ଛା ଛାଡ଼ି ଭକ୍ତଦମ୍ପତି ନିଶ୍ଚିନ୍ତରେ କାଳାତିପାତ କରୁଥିଲେ। ସେ ଦୁହିଁଙ୍କୁ ଭଗବାନଙ୍କର ଚରିତ ଶ୍ରବଣ, କୀର୍ତ୍ତନ ପ୍ରଭୃତି ବହୁତ ଭଲ ଲାଗୁଥିଲା। ଯେଉଁଠି ଭାଗବତ ସପ୍ତାହ ବା ପ୍ରବଚନ ହୁଏ, ସେଠାରେ ଦାସିଆ ଯାଇ ଉପସ୍ଥିତ ହୋଇଯାଏ। ଛୋଟ ଜାତି ହୋଇଥିବାରୁ ସଂକୋଚରେ ଆଡ଼େଇ ହୋଇ ପଛ ଜାଗା ଦେଖି ବସିପଡ଼େ; ମନଦେଇ କଥା ଶୁଣେ। ଅବଶ୍ୟ ଶିକ୍ଷାଦୀକ୍ଷା ନ ଥିବା ସାଧାରଣ ଦାସିଆ ପକ୍ଷେ ପୁରାଣ ଶାସ୍ତ୍ରର ସବୁ ଅର୍ଥ ଓ ତତ୍ତ୍ୱ ବୁଝିବା ସମ୍ଭବପର ହୁଏ ନାହିଁ, ତଥାପି ଭଗବାନଙ୍କ ସରଳ ଚରିତ ଓ ଲୀଳା ତ ବୁଝି ହୋଇଯାଏ। ସେତିକି ବି ଜଣେ ସରଳ ହୃଦୟର ଭକ୍ତ ପାଇଁ ଭକ୍ତିର ପଥ ପ୍ରଶସ୍ତ କରିବାକୁ ଯଥେଷ୍ଟ। ବେଳେ ବେଳେ ଅଧିକ ଶାସ୍ତ୍ରଜ୍ଞାନ ଓ ବିଦ୍ୱତ୍ତା ବରଂ ଅଧିକ ମୋହରେ ପକାଇଦିଏ। ତାହାଦ୍ୱାରା ନିଜର ଅଜ୍ଞାନ ତ ଦୂର ହୁଏ ନାହିଁ, ବରଂ ଶାସ୍ତ୍ରୀୟ ବିବାଦ ଓ ଅଭିମାନ ତା'ର ଭକ୍ତିମାର୍ଗରେ ଅଭେଦ୍ୟ ପ୍ରାଚୀର ପରି ଦଣ୍ଡାୟମାନ ହୋଇଯାଏ। ତେଣୁ ଗୀତାରେ ଅନୁଭବଶୂନ୍ୟ ଜ୍ଞାନକୁ ଶାସ୍ତ୍ରଜାଲ କୁହାଯାଇଛି। ସଂସାରର ମୋହରୂପୀ ଦୁସ୍ତର ପଙ୍କ ଭଳି ଏଭଳି ଶିଖାଣିଆ ଶାସ୍ତ୍ରଜ୍ଞାନ ମଧ୍ୟ ଏକ ପ୍ରକାର ପଙ୍କ। ଏଥିରେ ପଶିଗଲେ ମଣିଷ ସାଧନା ମାର୍ଗରେ ଆଗେଇ ପାରେ ନାହିଁ। ସେଥିପାଇଁ ଭଗବାନ ସରଳ, ଅଶିକ୍ଷିତ, ଭୋଳା ସ୍ୱଭାବର ଭକ୍ତକୁ ଯେତେ ଶୀଘ୍ର ଓ ସହଜରେ ମିଳନ୍ତି, ଜ୍ଞାନୀ, ବିଦ୍ୱାନ୍ ଓ ଚତୁର ଲୋକଙ୍କୁ ସେତେ ସହଜରେ ମିଳନ୍ତି ନାହିଁ; ସେମାନଙ୍କୁ ବିଶେଷ ସାଧନା କରିବାକୁ ପଡ଼େ।

ଭଗବାନଙ୍କ ନାମର ମହିମା ଅପାର। କିଛି ମର୍ମ ନ ବୁଝି ମୁଖରେ କେବଳ ଉଚ୍ଚାରଣ କଲେ ଓ ଶୁଣିଲେ ମଧ୍ୟ ତାହା ମନୁଷ୍ୟର ଅନ୍ତଃକରଣକୁ ଧୀରେ ଧୀରେ ପବିତ୍ର କରିଦିଏ। କିଛି ଦିନ ଏହିପରି କୀର୍ତ୍ତନ ଆଦି କରିବା ଓ ଶୁଣିବା ଦ୍ୱାରା ଦାସିଆର ହୃଦୟ ନର୍ମଳ ହୋଇଗଲା। ଭଗବାନଙ୍କ ପ୍ରତି ତା'ର ରୁଚି ଅଧିକରୁ ଅଧିକ ବଢ଼ିବାକୁ ଲାଗିଲା। ସଂସାରର ଅସାରତା ତାକୁ ଅନୁଭବ ହେବାକୁ ଲାଗିଲା। କ୍ରମଶଃ ତା' ମନରେ ବୈରାଗ୍ୟ ଉଦୟ ହେଲା। ନିଜର ଖାଇବା ପିଇବା ଓ ଦେହଧର୍ମ ପ୍ରତି ତା'ର ଆଉ ଦୃଷ୍ଟି ରହିଲା ନାହିଁ। ଯାହା କିଛି କର୍ମ ସେ କରୁଥାଏ, ସେଥିରୁ ସମ୍ପୂର୍ଣ୍ଣ ନିର୍ଲିପ୍ତ ରହି କେବଳ ଯନ୍ତ୍ରପରି କରୁଥାଏ। ବେଳେ ବେଳେ ଏକାନ୍ତରେ ବସି ଭାବେ—"ମୋର ଏ ଜୀବନ କ'ଣ ଏମିତି ବ୍ୟର୍ଥ ଚ୍ୱଲିଯିବ। କଣ ମୁଁ ଏ ଜନ୍ମର ପରମ ଉଦ୍ଦେଶ୍ୟକୁ ସଫଳ କରି ପାରିବି ନାହିଁ? ମୁଁ ତ ଛୋଟ ଜାତିରେ ଜନ୍ମ ପାଇଛି, ଭଗବାନଙ୍କୁ କ'ଣ ମୁଁ ପାଇ ପାରିବି? ଭଗବାନଙ୍କ ଭକ୍ତି କ'ଣ ଓ ତାହା କେମିତି କରିବାକୁ ହୁଏ, ତାହା ଆଜିଯାଏ ବି ଜାଣି ପାରିଲି ନାହିଁ। ହାୟ! ପ୍ରଭୁ କ'ଣ ସତରେ ମୋତେ ଉଦ୍ଧାର କରିବେ ନାହିଁ!" ଏହିପରି ଆତ୍ମଚିନ୍ତନ କରି କରି କିଛି ଦିନ ବିତିଗଲା।

ଆଷାଢ଼ ମାସ ଆସିଲା। ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ପାଖେଇ ଆସିଲା। ପ୍ରଭୁ ଜଗନ୍ନାଥ ପାପୀ, ତାପୀ, ପତିତ, ଚ୍ୱଣ୍ଡାଳ ସମସ୍ତଙ୍କୁ ଦର୍ଶନ ଦେବାକୁ ରଥରେ ବିଜେ କରିବେ। ଯେଉଁମାନେ ମନ୍ଦିର ଭିତରକୁ ଯାଇ ନ ପାରନ୍ତି, ସେମାନଙ୍କ ପାଇଁ ଏହି ସୁଯୋଗର ବ୍ୟବସ୍ଥା କରିଛନ୍ତି ପରମ ଦୟାଳୁ ଜଗନ୍ନାଥ। ଭଗବାନଙ୍କର ଏହି ପ୍ରସିଦ୍ଧ ରଥଯାତ୍ରା ଦେଖିବାକୁ ଦୂରଦୂରାନ୍ତରୁ ଅନେକ ଯାତ୍ରୀ ପୁରୀ ଆସିବାକୁ ଲାଗିଲେ। ସେମାନଙ୍କୁ ଦେଖି ବାଲିଗାଁର ସେହି ଦାସିଆ ମନରେ ପ୍ରଥମେ ଅନୁତାପ ଜାତ ହେଲା। ସେ ଭାବିଲା, "ହାୟ! ଏତେ ନିକଟରେ ରହି ମଧ୍ୟ ଆଜିଯାଏ ମୁଁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ଦେଖି ପାରିଲି ନାହିଁ। ମୋ ଜୀବନକୁ ଧିକ୍। ଏଥର କିନ୍ତୁ ମୁଁ ରଥଯାତ୍ରା ଦେଖିବାକୁ ନିଶ୍ଚୟ ଯିବି। ଯେତିକି ସମୟ ଚ୍ୱଲିଗଲା, ଗଲା। ଆଉ ଏ ଭୁଲ୍ କରିବି ନାହିଁ। ଏ ବର୍ଷ ପ୍ରଭୁଙ୍କୁ ଦର୍ଶନ କରି ମୋର ମନ କଥା ସବୁ ଶୁଣେଇବି।"

ରଥଯାତ୍ରା ଆରମ୍ଭ ହେଲା। ଦାସିଆ ଆଖପାଖର ଅନ୍ୟ କେତେଜଣ ଯାତ୍ରୀଙ୍କ ସଙ୍ଗେ ପୁରୀ ଗଲା। ଶ୍ରୀଜଗନ୍ନାଥଙ୍କୁ ରଥ ଉପରେ ଦର୍ଶନ କରି ନିଜର ନେତ୍ର ଓ ଜନ୍ମକୁ ସଫଳ କଲା। ତା' ଜୀବନର ସର୍ବସ୍ୱଙ୍କୁ ଦେଖି ଆନନ୍ଦସିନ୍ଧୁରେ ନିମଜ୍ଜିତ

ହୋଇଗଲା। ହଜାର ହଜାର ଭକ୍ତଙ୍କ ଗହଣରେ ପ୍ରଭୁ ନନ୍ଦିଘୋଷରେ ବିଜେ କରିଛନ୍ତି। ଖୋଳ, କରତାଳ, ଘଣ୍ଟ, ଘଣ୍ଟା, କାହାଳୀ ଧ୍ୱନିରେ ଗଗନ ପବନ ମୁଖରିତ ହେଉଛି। ଭକ୍ତମାନେ ଆନନ୍ଦରେ ନୃତ୍ୟ କରୁଛନ୍ତି। ପ୍ରଭୁ ସମସ୍ତଙ୍କୁ ଆଲିଙ୍ଗନର ସୁଖ ପ୍ରଦାନ କରୁଛନ୍ତି। ଆଚଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କୁ ଆଜି ଉଦାର ହୃଦୟରେ ଭକ୍ତିରସରେ ମଜ୍ଜାଇ ଦେଇଛନ୍ତି। ବେଶ ତ ତାଙ୍କର ଅବର୍ଣ୍ଣନୀୟ। ଦାସିଆ ଏହି ସବୁକୁ ପ୍ରଥମେ ଉନ୍ମୁକ୍ତ ନେତ୍ରରେ ଦେଖି ପ୍ରଭୁଙ୍କୁ ନେତ୍ର ମାଧ୍ୟମରେ ହୃଦୟ ମଧ୍ୟକୁ ନେଇଗଲା। ତା'ପରେ ପଲକରୂପୀ କବାଟ ବନ୍ଦ କରିଦେଇ ଏକାନ୍ତରେ ପ୍ରଭୁଙ୍କୁ ଧ୍ୟାନ କଲା। ଆଖି ବୁଜି ଧ୍ୟାନ କରୁ କରୁ ସେ ଅତ୍ୟନ୍ତ ଭାବ ବିଭୋର ହୋଇଗଲା। ଧ୍ୟାନରେ ତାକୁ ଭଗବାନଙ୍କ ଜ୍ୟୋତିର୍ମୟ ଚତୁର୍ଭୁଜ ସ୍ୱରୂପର ଦର୍ଶନ ହେଲା। ଦାସିଆ ଆଖିରୁ ଝରି ଆସିଲା ଆନନ୍ଦାଶ୍ରୁର ଧାର। କିନ୍ତୁ କିଛି କ୍ଷଣ ମଧ୍ୟରେ ସେହି ସ୍ୱରୂପ ଅଦୃଶ୍ୟ ହୋଇଗଲା। ଦାସିଆ ସର୍ବସ୍ୱ ହରାଇଥିବା ଲୋଭୀ ବଣିକ ପରି ବ୍ୟାକୁଳ ହୋଇ ଉଠିଲା। ସେ ଦୁଇହାତ ଉପରକୁ ଉଠାଇ ପ୍ରଭୁଙ୍କୁ ପ୍ରାର୍ଥନା କଲା—"ପ୍ରଭୁ! ତୁମେ ଆଜି ମୋତେ ଦର୍ଶନ ଦେଇ ଧନ୍ୟ କରିଦେଲ। ମୁଁ କଣ ପତିତପାବନଙ୍କୁ ଦର୍ଶନ କରି ଆଉ ପତିତ ହୋଇ ରହିଲି? ନା, ମୁଁ ପବିତ୍ର ହୋଇଗଲି। ପ୍ରଭୁ! ଆଜିଠାରୁ ମୁଁ ତୁମର ହୋଇଗଲି। ଧନ୍ୟ ପ୍ରଭୁ! ଧନ୍ୟ ତୁମର ଉଦାରତା। ତୁମେ ଜଗତର ନାଥ ଜଗନ୍ନାଥ। ମୁଁ ଅଧମ ମହାପାପୀ, ତୁଚ୍ଛ ପ୍ରାଣୀଟିଏ। କିନ୍ତୁ ମୋତେ ତୁମେ ଆଜି ଦର୍ଶନ ଦେଲ! ମୁଁ ଶୁଣିଛି କେତେ ବଡ଼ ବଡ଼ ଋଷିମୁନି ତୁମ ଦର୍ଶନର ଝଲକ ଟିକିଏ ପାଇବାକୁ କେତେ କଠୋର ତପସ୍ୟା କରିଥାନ୍ତି। କିନ୍ତୁ ମୁଁ ଅଧମ ତ କିଛି ପୁଣ୍ୟ କରି ନାହିଁ! ସତରେ ପ୍ରଭୁ ତୁମେ ଅହେତୁକୀ ଦୟାଳୁ ବୋଲି ମୁଁ ଆଜି ବୁଝି ପାରିଲି। ହେ କରୁଣାକର! ଆଉ ଟିକିଏ ଦୟା କରି ମୋତେ ଆପଣାର କରିନିଅ ପ୍ରଭୁ! ମୋର ପାପତାପ କାଳ କାଳ ପାଇଁ ଦୂର କରିଦିଅ।"

ପ୍ରଭୁଙ୍କୁ ରଥରେ ଦର୍ଶନ କରି ଦାସିଆ ଘରକୁ ଫେରିଲା। ଫେରିବା ବେଳେ ସେ ଗାମୁଛା କାନିରେ ଠାକୁରଙ୍କ ଛଡ଼ା ଫୁଲ-ତୁଳସୀ ବାନ୍ଧି ଆଣିଥାଏ। ବାଟରେ ଚାଲିଲାବେଳେ ପ୍ରଭୁପ୍ରେମରେ ତା' ପାଦ ଟଳମଳ ହେଉଥାଏ, ମନରେ ପ୍ରଭୁଙ୍କ ସ୍ୱରୂପ ବାରମ୍ବାର ଭାସି ଆସୁଥାଏ। ତା'ର ଆନନ୍ଦ ଦେଖିଲେ ଲାଗୁଥାଏ ସତେ ଯେପରି ସେ କିଛି ଅମୂଲ୍ୟ ନିଧି ପାଇଯାଇଛି। ପ୍ରଭୁଙ୍କୁ ଦର୍ଶନ କରି ସେ କିପରି ଘରକୁ ଫେରିଲା, ତା'ର ସେ କଥା ଆଦୌ ହୋସ ନାହିଁ। ପ୍ରଭୁଙ୍କ ଭାବନାରେ

ଭାବିତ ହୋଇ ହୋଇ ଅର୍ଦ୍ଧଚେତନ ଅବସ୍ଥାରେ ସେ ଘରକୁ ଫେରିଲା । ପଥଶ୍ରାନ୍ତ ହୋଇ ସ୍ୱାମୀ ଫେରିଛନ୍ତି, ଭୋକ ଲାଗୁଥିବ, ଏହା ଭାବି ସ୍ତ୍ରୀ ତା'ର 'ଖାଇବାକୁ ବସ' ବୋଲି କହି ଭୋଜନ ଆଣିବାକୁ ଗଲା । ଦାସିଆ କିଛି ନ କହି ହାତଗୋଡ଼ ଧୋଇ ଆସି ପିଢ଼ା ଉପରେ ବସିଗଲା । ସ୍ତ୍ରୀ ନୂଆ ନାଲି ହାଣ୍ଡିରେ ଖୁଦ ଅରୁଆ ଗ୍ୱଉଳର ଜାଉ ରାନ୍ଧି ଶୀତଳ କରି ରଖିଥାଏ । ଫେନ ପର୍ଯ୍ୟନ୍ତ ଯାଉ ପୂରି ରହିଥାଏ । ଉପରେ ପଡ଼ିଥାଏ ଧୋବ ଫରଫର ମୋଟା ସର । ସେଇ ସର ଉପରେ ସାଗ ମେଞ୍ଚାଏ ଥୋଇ ସ୍ତ୍ରୀ ଆଣି ରଖିଦେଲା ଦାସିଆ ଆଗରେ । ଅର୍ଦ୍ଧତରଳ ଜାଉରେ ଶାଗ ମେଞ୍ଚାକ ସାମାନ୍ୟ ଲହସି ଯାଇଥାଏ । ଦାସିଆ ଗ୍ୱହିଁଦେଲା ହାଣ୍ଡିକୁ । ଆହା! ଏ କି ମଧୁର ଦୃଶ୍ୟ! ଏ ତ ସାକ୍ଷାତ୍ ଜଗନ୍ନାଥଙ୍କ ଚକାଡ଼ୋଳା । ଦାସିଆ ଆଖି ପିତୁଳିରେ ଜଗନ୍ନାଥଙ୍କ ନେତ୍ରର ଯେଉଁ ଅପୂର୍ବ ଶୋଭାର ଝଲକ ସ୍ଥାୟୀ ହୋଇ ରହିଯାଇଥିଲା, ତାହା ହିଁ ସେ ଦେଖୁଛି ଏଠାରେ । ହାଣ୍ଡିର ଗୋଲାକାର ଈଷତ୍ ଲାଲ ଫେନ, ତା ମଝିରେ ବଳୟାକାର ଧବଳ ସର, ପୁଣି ତା' ମଧ୍ୟରେ କଳା ରଙ୍ଗର ଶାଗ ମେଞ୍ଚାଏ ଠିକ୍ ଶ୍ରୀଜଗନ୍ନାଥଙ୍କ ଚକାଆଖି ପରି ଦିଶୁଛି । ସତେ ଯେପରି ଏଠାରେ ମଧ୍ୟ ସେ ଭକ୍ତକୁ ଦର୍ଶନ ଦେବାକୁ ଆସି ଯାଇଛନ୍ତି । ଭାବ ବିଭୋର ହୋଇଗଲା ଦାସିଆ । ମାନସପଟରେ ଭାସି ଆସିଲା ତା'ର ପ୍ରାଣପ୍ରିୟ ପ୍ରଭୁଙ୍କର ଦିବ୍ୟ ସ୍ମୃତି ।

ଦାସିଆର ମନ ଯେହେତୁ ପ୍ରଭୁଙ୍କ ନେତ୍ରରେ ତନ୍ମୟ ହୋଇଯାଇଛି, ତାକୁ ସର୍ବତ୍ର ସେହି ଦୃଶ୍ୟ ନ ଦିଶିବ କାହିଁକି! ସର୍ବତ୍ର ଶ୍ୟାମସୁନ୍ଦରଙ୍କୁ ଦେଖୁଥିବା ଗୋପୀଙ୍କୁ ତ ପୁଣି ସାରା ସଂସାର ଶ୍ୟାମମୟ ଦିଶୁଥିଲା! ଯମୁନାର ନୀଳ ଜଳରାଶି, କୁଞ୍ଜବନ, ଆକାଶର ଘନ କଳା ବାଦଲ, ମୟୂର କଣ୍ଠ ସର୍ବତ୍ର ସେମାନଙ୍କୁ ଘନଶ୍ୟାମଙ୍କର ଦର୍ଶନ ହେଉଥିଲା; ତାଙ୍କୁ ଭୁଲିବାକୁ ଚେଷ୍ଟା କଲେ ମଧ୍ୟ ଭୁଲି ପାରୁ ନ ଥିଲେ । ସେହି ଶ୍ୟାମପ୍ରେମପାଗଳୀ ଗୋପୀଙ୍କର ସ୍ଥିତିକୁ ଭକ୍ତ ସୁରଦାସ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଗୋପୀମାନେ ନୀଳ ରଙ୍ଗର ଝଲକ ଟିକିଏ କେଉଁଠି ଦେଖି ପକାଇଲେ, ସେଠାରେ ତାଙ୍କୁ ଶ୍ୟାମସୁନ୍ଦର ଶ୍ରୀକୃଷ୍ଣ ବିଦ୍ୟମାନ ଥିବାର ଅନୁଭବ ହୁଏ । ସେମାନେ ପରସ୍ପରକୁ କୁହନ୍ତି—

**ଯହଁ ଦେଖେ ଶ୍ୟାମ ବିରାଜେ ତହଁ ଗୋ! ଯହଁ ଦେଖେ ଶ୍ୟାମ.... ।**
**କୁଞ୍ଜବନେ ଶ୍ୟାମ, ଯମୁନାରେ ଶ୍ୟାମ, ଶ୍ୟାମ ଘନଘଟା ନଭେ ଦିଶଇ ॥**
**ଅଣୁପରମାଣୁ ସବୁ ଶ୍ୟାମମୟ! ଲୋକେ କହନ୍ତି ଏ ନୂଆ ଅଟଇ ।**

**ଲୋକଙ୍କ ଆଖିର ପିତୁଳାରେ ଶ୍ୟାମ, କି ଅବା ହେଲି ମୁଁ ପାଗଳୀ ସହି!॥**
**ରବିସାର ଚନ୍ଦସାର ଶ୍ୟାମ ଦିଶେ, ଶ୍ୟାମ ମୃଗମଦ କାମବିଜୟୀ ।**
**ନୀଳକଣ୍ଠ କଣ୍ଠେ ଶ୍ୟାମକୁ ଦେଖ ଗୋ! ଶ୍ୟାମ ତରୁ-ଲତା ପତ୍ରେ ଶୋଭଇ ॥**
**ବେଦର ଅକ୍ଷର ଶ୍ୟାମ ହୋଇଛି ଗୋ! ଶ୍ୟାମ ହସେ ଦୀପଶିଖାରେ ରହି ।**
**ସୁର ନର କଥା କିଏ ବା ପଗ୍ଚରେ, ଅରୂପ ବ୍ରହ୍ମ ବି ଶ୍ୟାମ ଦିଶଇ ॥**

ଆଜି ଦାସିଆର ଠିକ୍ ସେହି ସ୍ଥିତି । ଖାଇବା ପାଇଁ ପରଷା ଯାଇଥିବା ଜାଉ ମଧ୍ୟରେ ବି ତାକୁ ଜଗନ୍ନାଥଙ୍କ ଦର୍ଶନ ହେଉଛି । ସେ ତାହାକୁ ଖାଇବ କିପରି? ପ୍ରଭୁଙ୍କର ସୁମଧୁର ସ୍ମୃତିରେ ବିଭୋର ହୋଇ ଉନ୍ମତ୍ତ ପରି ହୋଇଗଲା ଦାସିଆ । ଖାଇବ କଣ, ଆନନ୍ଦରେ ନାଚିବାକୁ ଲାଗିଲା ଭୋଜନ ପାଖରେ । ଶରୀର ପୁଲକିତ ହୋଇଗଲା, ନେତ୍ରରୁ ଅଶ୍ରୁ ବିଗଳିତ ହେଲା, ମୁଖରୁ ଆଉ ବାକ୍ୟ ସ୍ଫୁରିତ ହେଲା ନାହିଁ । ହାତରେ କରତାଳି ଦେଇ ଗଦ୍‌ଗଦ କଣ୍ଠରେ ପ୍ରଭୁଙ୍କ ନାମ ଉଚ୍ଚାରଣ କରି ଉଦ୍ଦଣ୍ଡ କୀର୍ତ୍ତନ ଆରମ୍ଭ କରିଦେଲା ଦାସିଆ ।

ଗୁଣ ଚିହ୍ନେ ଗୁଣିଆ, ସୁନା ଚିହ୍ନେ ବଣିଆ । ଦାସିଆର ଭାବକୁ କେବଳ ପ୍ରଭୁପ୍ରୀତିର ରୀତି ଜାଣିଥିବା ଭଗବତ-ରସରସିକ ଛଡ଼ା ଅନ୍ୟ କିଏ ବା କଣ ବୁଝିବ! ପତ୍ନୀ ଦାସିଆର ଏ ଭାବକୁ ବୁଝି ପାରିଲା ନାହିଁ । ସ୍ୱାମୀଙ୍କର ଏ କ'ଣ ହେଲା ଭାବି ସେ ବ୍ୟାକୁଳ ହୋଇ କାନ୍ଦବୋବାଳି ଆରମ୍ଭ କରିଦେଲା । ସାଇପଡ଼ିଶାର ଲୋକଙ୍କୁ ଡାକ ପକାଇଲା । ଲୋକେ ଆସି ରୁଣ୍ଡ ହୋଇଗଲେ । କେତେକ ଲୋକେ କହିଲେ, ବାଟରେ ଆସିବା ବେଳେ ବୋଧହୁଏ ଭୂତ ବା ପ୍ରେତ ତା' ଦେହରେ ଆସିଯାଇଛି । କିନ୍ତୁ ତାକୁ ଯେଉଁ ପ୍ରଭୁପ୍ରେମରୂପୀ ଭୂତ ଧରିଥିଲା, ସେ କଥାକୁ ବୁଝିବାକୁ ଶକ୍ତି କାହାର? ତାହା ତ କେବଳ ସେହି ରସର ରସିକ ହିଁ ବୁଝିବ । ଲୋକମାନେ ଦାସିଆକୁ ବଡ଼ ପାଟିରେ ଡାକି କହିଲେ—ଦାସିଆ, ହେ ଦାସିଆ! ଆରେ, ଏ କଣ କରୁଛୁ! ଖାଇବା ପାଖରେ ନାଚୁଛୁ କାହିଁକି? ତୋର କ'ଣ ହୋଇଛି? ତୋର ଏ ନାଚ ଦେଖି ତୋ ସ୍ତ୍ରୀ ବିଚ୍ଚରୀ ଡରିଗଲାଣି । ଦେଖିଲୁଣି, କେତେ ଲୋକ ତୋ ଘରେ ରୁଣ୍ଡ ହେଲେଣି? ବସି ଖାଉନୁ କାହିଁକି? ଦାସିଆ ଟିକିଏ ପ୍ରକୃତିସ୍ଥ ହୋଇ କହିଲା—"ଦେଖ, ଦେଖ କେଡ଼େ ସୁନ୍ଦର! କେମିତି ସୁରଙ୍ଗ ନେତ୍ର ଧାର । ଶ୍ୱେତପଦ୍ମ ପରି ଧୋବ ଫରଫର ଆଖି, ପୁଣି ତା' ମଝିରେ କଳା ଡୋଳାକୁ କ'ଣ ଦେଖି ପାରୁନ? ଏ ତ ସାକ୍ଷାତ୍ ଜଗନ୍ନାଥଙ୍କର ଚକାଡୋଳା । ତାଙ୍କୁ ଦେଖି ତୁମେମାନେ ନେତ୍ର ସାର୍ଥକ କର ।"

ସେତେବେଳକୁ ଦାସିଆର ଘରେ ଲୋକଙ୍କର ଭିଡ଼ ହୋଇଯାଇଥାଏ ।

ରଥଯାତ୍ରାରୁ ଫେରିଥିବା କେତେ ଜଣ ସାଧୁ ବୈଷ୍ଣବ ସେହି ଗାଁରେ ସେଦିନ ଶ୍ରମ ଲାଘବ ପାଇଁ ରହିଯାଇଥିଲେ। ସେମାନେ ମଧ୍ୟ କୋଳାହଳ ଶୁଣି ସେଠାକୁ ଚାଲିଆସିଲେ। ଜଣେ ଭକ୍ତ ଦାସିଆର ଭାବକୁ ବୁଝିଗଲେ। ସେ ସମସ୍ତଙ୍କୁ ଶୁଣାଇ କହିଲେ—ଏ ଦାସିଆ ସାଧାରଣ ଦାସିଆ ବାଉରୀ ନୁହେଁ, ଏ ପ୍ରକୃତରେ ଭଗବାନଙ୍କର ହିଁ ଦାସିଆ, ଭଗବାନଙ୍କର 'ଦାସ'। ଏ ତ ବହୁ ବଡ଼ ଭକ୍ତ। ଏ ଏହି ବାଲିଗ୍ରାମକୁ ଧନ୍ୟ କରିଦେଲେ ବୋଲି ଜାଣ। ତୁମେମାନେ ଦେଖୁନ, ସେ କିପରି ହାଣ୍ଡିରେ ଶାଗ ମେଞ୍ଚାକୁ ଦେଖି ଜଗନ୍ନାଥଙ୍କ ସ୍ତୁତିରେ ମଗ୍ନ ହୋଇଯାଇଛନ୍ତି! ତୁମେମାନେ ବୃଥାରେ ଭୂତ ଲାଗିବାର ଆଶଙ୍କା କରୁଛ। ଉଠ, ଉଠ ମୁଁ ତାକୁ ବୁଝାଇ ଦେଉଛି। ଏତିକି କହି ସେ ତା ସ୍ତ୍ରୀକୁ କହିଲେ, ତୁମେ ପ୍ରଥମେ ପେଜସର ଉପରୁ ଶାଗ ମେଞ୍ଚାକ କାଢ଼ି ନିଅ। ତାକୁ ଅଲଗା ପତ୍ରରେ ରଖ ଓ ଜାଉକୁ ଅନ୍ୟ ଏକ ବାସନରେ ପରଷି ଦିଅ। ତେବେ ଯାଇ ତୁମ ସ୍ୱାମୀଙ୍କ ମୁଣ୍ଡ ଠିକ୍ ହେବ। ବୈଷ୍ଣବଙ୍କ କଥା ମାନି ସେ ସେହିପରି କଲା। ଭକ୍ତ ଦାସିଆର ବାତୁଳ ମତି ଶାନ୍ତ ହେଲା। ସମସ୍ତଙ୍କ କଥା ମାନି ସେ ଭୋଜନ କଲା। ସମସ୍ତେ ଦାସିଆର ଭକ୍ତି ଭାବକୁ ଦେଖି ଆଚମ୍ବିତ ହୋଇଗଲେ। ତାକୁ ଧନ୍ୟ ଧନ୍ୟ କହିଲେ।

ଦାସିଆ ବାଉରୀ ଏଥର ବାଲିଗ୍ରାମ ଦାସ ରୂପେ ପରିଚିତ ହୋଇଗଲା। କେବଳ ନାମ ନୁହେଁ, ତା'ର ଜୀବନ ମଧ୍ୟ ସମ୍ପୂର୍ଣ୍ଣ ବଦଳିଗଲା। ସତ୍ୟ, ଦୟା, ବିନୟ, ଇନ୍ଦ୍ରିୟ ସଂଯମ ପ୍ରଭୃତି ସମସ୍ତ ସଦ୍‌ଗୁଣ ତା'ଠାରେ ପ୍ରକାଶିତ ହୋଇଗଲା। ଦିବାନିଶି ଭଗବାନଙ୍କର ଧ୍ୟାନରେ ମଗ୍ନ ରହିଲା ଦାସିଆ। ସେହି ଶ୍ରୀମୁଖ, ସେହି ନନ୍ଦିଘୋଷ, ସେହି ଘଣ୍ଟାନାଦ ବାରମ୍ବାର ତା'ର ମନରେ ପ୍ରତିବିମ୍ବିତ ଓ ପ୍ରତିଧ୍ୱନିତ ହେଉଥାଏ। ଅହର୍ନିଶ ମୁଖରେ ଭଗବାନଙ୍କ ନାମ। ଏଥର ତା' ମନରେ ଭଗବାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରିବାର ଲାଳସା ଜାଗି ଉଠିଲା। ଭଗବାନଙ୍କର ବିୟୋଗ ଅସହ୍ୟ ବୋଧ ହେଲା। ତା'ର ପ୍ରାଣ ଭଗବାନଙ୍କ ଦର୍ଶନ ନିମନ୍ତେ ଆକୁଳବ୍ୟାକୁଳ ହୋଇ ଉଠିଲା। ଯଦିଓ ଗୃହକର୍ମ ମଧ୍ୟ ତାକୁ କରିବାକୁ ପଡୁଥିଲା, କିନ୍ତୁ ମନ ତା'ର ଥାଏ ପ୍ରଭୁଙ୍କ ପାଦପଦ୍ମରେ। ଏହା ହିଁ ଗୃହସ୍ଥ ପାଇଁ ଭଜନର ଉତ୍ତମ ପନ୍ଥା—

**କରେ କର କାମ ତୁଣ୍ଡେ ଧର ନାମ ପ୍ରୀତି ରଖ ହୃଦୟରେ।**
**ଗୃହୀସାଧୁଙ୍କର ଭଜନ କୌଶଳ ଏହା ଜାଣିଥାଅ ବାରେ ॥**

ଏହି ଉପଦେଶକୁ ସେ କାର୍ଯ୍ୟରେ କରି ଦେଖାଇଦେଲା। ପ୍ରଭୁଙ୍କ ଛଡ଼ା ଆଉ କେଉଁଠି ତା' ମନ ଲାଗୁ ନ ଥାଏ। ବାରମ୍ବାର ମନରେ ବିଚାର କରୁଥାଏ, ସତେ

କଣ ପ୍ରଭୁ ମୋ ଉପରେ କୃପା କରିବେ । ସତେ କଣ ମୋତେ ତାଙ୍କର ଶଙ୍ଖଚକ୍ରଧାରୀ ରୂପର ଦର୍ଶନ ମିଳିବ । ଏହିପରି କିଛି ଦିନ ବିତିଗଲା । ପ୍ରଭୁ ଭାବଗ୍ରାହୀ ତା'ର ଭାବକୁ ଆଉ ଅଧିକ ଉପେକ୍ଷା କରି ପାରିଲେ ନାହିଁ । ସେ ତ ଭକ୍ତଜନଙ୍କର ବନ୍ଧୁ । ଭକ୍ତର ଭାବରେ ସେ ବନ୍ଧା । ଥରେ ରାତିରେ ତାକୁ ଦର୍ଶନ ଦେଲେ । ଯାହାଙ୍କୁ ସେ ରଥରେ ଦର୍ଶନ କରିଥିଲା, ତାଙ୍କୁ ସାକ୍ଷାତ୍ ନେତ୍ର ସମ୍ମୁଖରେ ଦେଖି ଦାସିଆ କୃତାର୍ଥ ହୋଇଗଲା । ସାଷ୍ଟାଙ୍ଗ ଦଣ୍ଡବତ୍ କରି ପ୍ରଭୁଙ୍କୁ ଅବାକ୍ ହୋଇ ଚ୍ୱହିଁ ରହିଲା ଦାସିଆ । ମୁଖରୁ ତା'ର ବାକ୍ୟ ସ୍ଫୁରୁ ନ ଥାଏ, ହସ୍ତପଦ ଅଚଳ ଓ ଅବଶ ହୋଇଯାଇଥାଏ, ନୟନ ଯୁଗଳରୁ ଝରି ଆସୁଥିବା ପରମ ଆହ୍ଲାଦର ଶୀତଳ ଅଶ୍ରୁଧାରା ନୀରବରେ ଗଣ୍ଡସ୍ଥଳକୁ ପ୍ଲାବିତ କରି ବହି ଚ୍ୱଲିଥାଏ ବକ୍ଷସ୍ଥଳ ଅଭିମୁଖେ । କିଛି ତହିଁରୁ ପିଇଯାଉଥାଏ ତା' ପ୍ରକମ୍ପିତ ଅଧର । ସ୍ତମ୍ଭୀଭୂତ ଦାସିଆର ଏହି ପ୍ରେମ ବୈବର୍ଣ୍ଣ୍ୟ ଓ ବିଚିତ୍ର ସ୍ଥିତିରେ ତା'ର ଅଧର ସତେ ଯେପରି ପ୍ରଭୁଙ୍କୁ କିଛି ସ୍ତୁତି କରିବା ନିମନ୍ତେ ପ୍ରକମ୍ପିତ ହେଉଥାଏ । କିନ୍ତୁ ଶାସ୍ତ୍ର ଓ ସଂସ୍କୃତ ଅନଭିଜ୍ଞ ଦାସିଆ ବା କି ସ୍ତୁତି କରିବ! କେବଳ ମନର ଭାବ ଟିକିକ ସେ ସରଳ ଭାବରେ ପ୍ରକାଶିତ କରିଦେଲା । ସେ କହିଲା, ହେ ପ୍ରଭୁ ଭାବଗ୍ରାହୀ! ହେ ଦୟାସିନ୍ଧୁ! ତୁମ ଦୟା ଅପାର । ତୁମେ ବ୍ରହ୍ମାଣ୍ଡ ଠାକୁର ହୋଇ ମଧ୍ୟ ଭକ୍ତ ପାଇଁ ସବୁ ପ୍ରଭୁପଣିଆକୁ ଭୁଲିଯାଅ । ମୁଁ ଛାର ହୀନଜାତି; କ୍ରିୟା, କର୍ମ, ପୂଜା ଅର୍ଚ୍ଚନା କିଛି ମୋତେ ଜଣା ନାହିଁ । ତୀର୍ଥ, ବ୍ରତ, ଦାନ, ଧର୍ମ କିଛି କରି ନାହିଁ । ତଥାପି ଆଜି ତୁମେ ମୋତେ ସେହି ରୂପରେ ସାକ୍ଷାତ ଦର୍ଶନ ଦେଲ, ଯେଉଁ ରୂପରେ ମୁଁ ତୁମକୁ ନନ୍ଦିଘୋଷରେ ଦର୍ଶନ କରିଥିଲି । ବ୍ରହ୍ମା, ଇନ୍ଦ୍ର, ସୁର, ଅସୁର, ଯକ୍ଷ, ଗନ୍ଧର୍ବ, କିନ୍ନର, ଯୋଗୀ, ସିଦ୍ଧ, ମୁନିଋଷିଙ୍କୁ ମଧ୍ୟ ଯାହାଙ୍କ ପାଦପଦ୍ମର ଦର୍ଶନ ଦୁର୍ଲଭ, ତାହା ଆଜି ମୋ ପାଇଁ ଏତେ ସୁଲଭ ହୋଇଗଲା! ପ୍ରଭୁ ମୋ ଗୃହରେ ଆବିର୍ଭୂତ ହୋଇ ମୋତେ ଦର୍ଶନ ଦେଲେ, ଏହା ମୋ ପାଇଁ କେଡ଼େ ବଡ଼ କଥା!

ଦାସିଆର କଥା ଶୁଣି ପ୍ରଭୁ ମନ୍ଦ ମନ୍ଦ ହସି କହିଲେ—"ଶୁଣ ଦାସ! ମୋର ଯେଉଁ ଭକ୍ତ କାମନା ବାସନା ତ୍ୟାଗ କରି ସ୍ୱର୍ଗ ଅପବର୍ଗକୁ ଖାତିରି ନ କରି ଏକମାତ୍ର ମୋତେ ତା' ସର୍ବସ୍ୱ ମନେକରି ମୋଠାରେ ପ୍ରୀତି କରେ, ମୋତେ ଭକ୍ତିଭାବରେ ଭଜେ, ମୁଁ ମଧ୍ୟ ତାକୁ ଭଜୁଥାଏ । ମୁଁ ତାକୁ କଦାପି ଭୁଲିପାରେ ନାହିଁ । ତେଣୁ ବତ୍ସ ଦାସିଆ! ମୁଁ ତୁମ ଉପରେ ପ୍ରସନ୍ନ ହୋଇଛି । ମୋତେ କିଛି ବର ମାଗ ।"

ପ୍ରଭୁଙ୍କ ପ୍ରସନ୍ନତା ଦେଖି ଦାସିଆ କହିଲା—''ପ୍ରଭୁ! ଅନ୍ୟ ସବୁ ବର ମୋର କଣ ହେବ? ମୁଁ କେବଳ ଏତିକି ଚାହେଁ ଯେ, ତୁମ ପାଦପଦ୍ମକୁ ସ୍ମରଣ କରି ମୋର ଜୀବନ ଯାଉ। ମୋତେ ତୁମ ଭକ୍ତମାନଙ୍କ ସେବାର ଅବସର ମିଳୁଥାଉ। ପ୍ରଭୁ! ମୋର ଆଉ ଗୋଟିଏ ମାଗୁଣି ଯେ ଯେତେବେଳେ ମୁଁ ତୁମର ଦର୍ଶନ ଚାହିଁବି, ତୁମର ଦର୍ଶନ ମୋତେ ମିଳୁଥିବ। ଏହା ଛଡ଼ା ମୋର ଆଉ କିଛି ଲୋଡ଼ା ନାହିଁ।''

ଭକ୍ତର ପ୍ରାର୍ଥନା ଶୁଣି ପ୍ରଭୁ ତା'ର ନିଷ୍କାମ ଭକ୍ତିକୁ ପ୍ରଶଂସା କଲେ ଏବଂ କହିଲେ—''ତୁ ଯେତେବେଳେ ପୁରୀ ଯାଇ ମୋତେ ଚିନ୍ତା କରି ନୀଳଚକ୍ରକୁ ଚାହିଁବୁ, ମୁଁ ନୀଳଚକ୍ରରେ ଥାଇ ତୋତେ ତୋ ଇଚ୍ଛାନୁମତ ରୂପରେ ଦର୍ଶନ ଦେବି। ତୁ ମୋତେ ଯାହା କିଛି ନୈବେଦ୍ୟ ଅର୍ପଣ କରିବୁ, ମୁଁ ତାହାକୁ ଅବଶ୍ୟ ଗ୍ରହଣ କରିବି।'' ଏତିକି କହି ପ୍ରଭୁ ଅନ୍ତର୍ହିତ ହୋଇଗଲେ। ପ୍ରଭୁଙ୍କ ସୁମଧୁର ସ୍ମୃତିରେ ତା'ର ରାତି ବିତିଗଲା। ଭକ୍ତ ବାଲିଗ୍ରାମ ଦାସର ଆନନ୍ଦ କହିଲେ ନ ସରେ। ସ୍ୱୟଂ ପ୍ରଭୁ ତା'ର ନୈବେଦ୍ୟ ଗ୍ରହଣ କରିବାକୁ ସ୍ୱୀକାର କରିଛନ୍ତି। ସେ କ'ଣ ଦେବ ତା' ପ୍ରଭୁଙ୍କୁ! ଛୋଟ ଜାତି ହେବାରୁ ସଂକୋଚ ମଧ୍ୟ ଲାଗୁଥାଏ।

ରାତି ପାହି ସକାଳ ହେଲା। ଦାସିଆର ମନ ଅତ୍ୟ କୁତୂହଳୀ ହୋଇ ଆନନ୍ଦ ସାଗରରେ ବୁଡୁଥାଏ ଓ ଉଠୁଥାଏ। ସେ ଶ୍ରୀଜଗନ୍ନାଥଙ୍କ ନାମ ଉଚ୍ଚାରଣ କରି ଚାଲିଲା ବ୍ରାହ୍ମଣ ସାହିକୁ। ସେ ଯେଉଁ ଲୁଗାଟିଏ ବୁଣିଥିଲା, ତାକୁ ନେଇ ଜଣେ ବ୍ରାହ୍ମଣଙ୍କୁ ବିକିଲା। ବ୍ରାହ୍ମଣ କଉଡ଼ି ଆଣିବାକୁ ଘର ଭିତରକୁ ଗଲେ। ଇତି ମଧ୍ୟରେ ଦାସିଆର ଦୃଷ୍ଟି ପଡ଼ିଲା ବ୍ରାହ୍ମଣ ଗୋସେଇଁଙ୍କ ଦାଣ୍ଡ ଦୁଆରେ ନୂଆ କରି ଫଳିଥିବା ଛୋଟିଆ ନଡ଼ିଆ ଗଛ ଉପରେ। ଗୋଟିଏ ମାତ୍ର ନଡ଼ିଆ ଥାଏ କାନ୍ଧିରେ। ଗୋସେଇଁ କଉଡ଼ି ଦେଲାରୁ ଦାସିଆ ବ୍ରାହ୍ମଣଙ୍କୁ ନେହୁରା ହୋଇ କହିଲା—''ଗୋସେଇଁ! ମୋତେ ଏ ନଡ଼ିଆଟି ଦିଅନ୍ତୁନି!''

ବ୍ରାହ୍ମଣ କହିଲେ--''ଆରେ, ଏ ଗଛ ତ ନୂଆ ଫଳିଛି। ଏ ଫଳ ମୁଁ ତୋତେ କେମିତି ଦେଇଦେବି? ଆଉ ତୁ ଏ ନଡ଼ିଆ ନେଇ କରିବୁ କ'ଣ?''

—''ମୋର ଦରକାର ଅଛି ଗୋସେଇଁ! ତୁମେ ଯାହା କଉଡ଼ି ନେବ ନିଅ ପଛେ, ମୋତେ ଏ ନଡ଼ିଆଟି ଦିଅ।''—କହିଲା ଦାସିଆ।

ଦାସିଆର ଗରଜ ଦେଖି ବ୍ରାହ୍ମଣଙ୍କ ମନରେ ଟିକିଏ ଲୋଭ ଆସିଗଲା। ସେ କହିଲେ—''ଦେଖ ଦାସିଆ! ଏଇଟା ମୋ ଗଛର ପ୍ରଥମ ଫଳ। ତଥାପି ତୋର

ନିହାତି ଦରକାର ଯେତେବେଳେ ମୁଁ ତୋତେ ଦେବି; କିନ୍ତୁ ଏହା ବାବଦକୁ ତୋତେ ଅଧିକ ମୂଲ୍ୟ ଦେବାକୁ ପଡ଼ିବ। ତୁ ଯଦି ଏ ଲୁଗାଟିର ମୂଲ୍ୟ ପୂରା ଛାଡ଼ କରିଦେବୁ, ତେବେ ଯାଇ ଏ ନଡ଼ିଆ ମୁଁ ତୋତେ ଦେବି।''

'ଠିକ୍ ଅଛି' କହି ଦାସିଆ ଆନନ୍ଦରେ ସହମତ ହୋଇଗଲା। ବ୍ରାହ୍ମଣ ମନେ ମନେ ଖୁସୀ ହୋଇଗଲେ ଏବଂ ଦାସିଆର ଖୁସୀ ମଧ୍ୟ କହିଲେ ନ ସରେ। ବ୍ରାହ୍ମଣ ଖୁସୀ ହେବା ପଛରେ ଥିଲା ସ୍ୱାର୍ଥ। ସେ ଭାବିଲେ, ଗୋଟିଏ ନଡ଼ିଆ ବଦଳରେ ତାଙ୍କୁ ତା'ର କେତେଗୁଣ ମୂଲ୍ୟର ବସ୍ତ୍ରଟିଏ ମିଳିଗଲା। କିନ୍ତୁ ଦାସିଆର ଖୁସୀ ପଛରେ ଥିଲା ପରମାର୍ଥ। ସେ ପ୍ରଭୁଙ୍କ ଖୁସୀରେ ଖୁସୀ ହେଉଥିଲା। ତା'ର ଯେ ସାରା ଦିନର ପାରିଶ୍ରମିକ ସହିତ ସୂତାର ମୂଲ୍ୟ ମଧ୍ୟ ଚାଲିଯାଉଛି, ମୂଳଧନ ବୁଡ଼ି ଯାଉଛି, ଏ କଥା ତିଳେମାତ୍ର ତା' ମନରେ ଉଦୟ ହେଲା ନାହିଁ। ଆସନ୍ତା କାଲି ପାଇଁ କି ବ୍ୟବସ୍ଥା ହେବ, ଉଦର ପୋଷଣ କିପରି ହେବ, ଏ କଥା ମଧ୍ୟ ତା' ମନକୁ ଆସିଲା ନାହିଁ। ତା' ମନରେ କେବଳ ଏହି ଗୋଟିଏ କଥାର ଆନନ୍ଦ ଯେ ପ୍ରଭୁଙ୍କୁ ଅର୍ପଣ କରିବା ନିମନ୍ତେ ତାକୁ ଆଜି ଉତ୍ତମ ଶ୍ରୀଫଳଟିଏ ମିଳିଗଲା।

ପ୍ରକୃତରେ ଏହା ହିଁ ସର୍ବସ୍ୱ ଅର୍ପଣ। ଏହା ହିଁ ପ୍ରଭୁଙ୍କ ଉପରେ ଅତୁଟ ଭରସାର ନିଦର୍ଶନ। ଏହିପରି ଅର୍ପଣକୁ ହିଁ ପ୍ରଭୁ ଗ୍ରହଣ କରନ୍ତି। ଜଗତରେ ଦାନୀ ତ ଅନେକ ଅଛନ୍ତି। ଠାକୁରଙ୍କ ପାଇଁ ପ୍ରସାଦ, ବସ୍ତ୍ର, ଆଭୂଷଣର ଖଞ୍ଜା କରି ଦେଉଛନ୍ତି ଏବଂ ମନ୍ଦିର ନିର୍ମାଣ ନିମନ୍ତେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଦେଉଛନ୍ତି। କିନ୍ତୁ ସେମାନେ ନିଜେ ନିଜର ପାଳନକର୍ତ୍ତା ହୋଇ ଭବିଷ୍ୟତ ପାଇଁ ଅମାପ ସମ୍ପତ୍ତି ରଖିବା ପରେ ହିଁ ଏହି ଦାନ କରନ୍ତି। ତା'ଛଡ଼ା ସେମାନେ କେବଳ ନିଜ ପାଇଁ ନୁହେଁ, ନିଜର ଅନେକ ପିଢ଼ି ପାଇଁ, ପୁଣି ଦିନକ ପାଇଁ ନୁହେଁ, ଅନେକ ବର୍ଷ ପାଇଁ ଧନର ବ୍ୟବସ୍ଥା କରିବା ପରେ ସେତିକି ଦାନ କରନ୍ତି। ତାହା ବି ପବିତ୍ର ଧନ ନୁହେଁ, କି ଝାଳବୁହା ଧନ ନୁହେଁ। ସରକାରଙ୍କୁ ଠକିଦେଇ ଲୁଚାଇ ରଖିଥିବା ଧନର କିଛି ଅଂଶରେ ଅଥବା ଭଗବାନଙ୍କର ଲକ୍ଷ ଲକ୍ଷ ନିରୀହ ସନ୍ତାନଙ୍କର ତଣ୍ଟି ଚିପି ସଂଗ୍ରହ କରିଥିବା ଧନରେ ହିଁ ସେମାନେ ଭଗବାନଙ୍କୁ ଖୁସୀ କରିବାକୁ ଚାହାନ୍ତି। ପୁଣି ସେଥିରେ ବି ବେପାରୀ ବୁଦ୍ଧି ଲଗାନ୍ତି ଯେ ସେହି ନାଶବାନ୍ ଧନ ଦ୍ୱାରା ନିଜର ଦାତାପଣିଆକୁ ଅବିନାଶୀ କରି ରଖିବାକୁ ଚେଷ୍ଟା କରନ୍ତି ମାର୍ବଲରେ ନାମ ଲେଖାଇ। ଏତେ କରି ମଧ୍ୟ ମନ ମାନେ ନାହିଁ, ତାହାର ପ୍ରତିବଦଳରେ ଭଗବାନଙ୍କ କୃପା ବି ଚାହାନ୍ତି, ପୁଣି ଭବିଷ୍ୟତରେ ଆଉ ଶହେ ଗୁଣ ଲାଭ ହେଲେ

ଏକ ଗୁଣ ଖର୍ଚ୍ଚ କରିବାର ଲାଞ୍ଚ ଓ ପ୍ରଲୋଭନ ମଧ୍ୟ ଦେଖାନ୍ତି ଭଗବାନଙ୍କୁ। ଚତୁର ଶିରୋମଣି ଓ ବୁଦ୍ଧିପ୍ରଦାତା ଭଗବାନଙ୍କୁ ମଧ୍ୟ ନିଜ ଚତୁରତା ଓ ବୁଦ୍ଧିରେ ବିମୋହିତ କରିଦେବାକୁ ଚେଷ୍ଟା କରନ୍ତି। ଭଗବାନଙ୍କୁ ଓ ଧର୍ମକୁ ଆଖିଠାର ମାରି ଧାର୍ମିକ ଓ ଭକ୍ତ ବୋଲାଉଥିବା ଏହି ଲୋକଙ୍କୁ ଏ ସମାଜରେ ହୁଏତ ଆଦର ମିଳିପାରେ, ଏଠାକାର କୋର୍ଟ-କଚେରୀରେ ନ୍ୟାୟ ମିଳିପାରେ, କିନ୍ତୁ ସେହିମାନଙ୍କ ଅନ୍ତଃକରଣରେ ସାକ୍ଷୀରୂପେ ସବୁ ଦେଖୁଥିବା ଅନ୍ତର୍ଯାମୀ ପରମାତ୍ମାଙ୍କ ଦରବାରରେ କେବଳ ଦାସିଆ ପରି ନିଜର ପେଟରୁ କାଟି ଅର୍ପଣ କରୁଥିବା ନିଷ୍କିଞ୍ଚନ ଭକ୍ତଙ୍କୁ ହିଁ ଆଦର ମିଳେ। ତାଙ୍କରି ଅର୍ପିତ ସାମାନ୍ୟ ପତ୍ର, ପୁଷ୍ପ, ଫଳ ଓ ଜଳାଦି ପଦାର୍ଥକୁ ହିଁ ଭଗବାନ ଗ୍ରହଣ କରିବାକୁ ଆତୁର ହୁଅନ୍ତି। ଏହା ହିଁ ଭଗବାନଙ୍କ ନ୍ୟାୟ ପରାୟଣତାର ଆଦର୍ଶ ମାନଦଣ୍ଡ। ତା ହୋଇ ନ ଥିଲେ ବଡ଼ ବଡ଼ ପୁଞ୍ଜିପତିମାନେ ଭଗବାନଙ୍କୁ ନିଲାମ ଦ୍ୱାରା ଅକ୍ତିଆର କରି ନେଇ ନିଜ ସ୍ୱାର୍ଥରେ ଉପଯୋଗ କରୁଥାନ୍ତେ ଏବଂ ଦାସିଆ ପରି ଅସଂଖ୍ୟ ଅକିଞ୍ଚନ, ଗରିବ ଓ ନିରୀହ ଭକ୍ତଙ୍କ ପକ୍ଷେ ଭଗବାନଙ୍କ ଆଗରେ ଦିପଦ ଗୁହାରି ଶୁଣାଇବା ମଧ୍ୟ ଦୁଃସାଧ୍ୟ ହୋଇପଡ଼ନ୍ତା। ଅସ୍ତୁ।

ବ୍ରାହ୍ମଣଙ୍କ ଠାରୁ ସମ୍ମତି ପାଇ ଦାସିଆ ତରବର ହୋଇ ଗ୍ଲିଲା ଘରକୁ। ସ୍ନାନାଦି ସାରି ଧୁଆ ବସ୍ତ୍ର ପିନ୍ଧି ଆସି ବ୍ରାହ୍ମଣଙ୍କ ଠାରୁ ନଡ଼ିଆଟି ନେଲା। ନଡ଼ିଆ ଧରି ଘରକୁ ଫେରୁ ଫେରୁ ଦେଖିଲା ଜଣେ ବ୍ରାହ୍ମଣ ପୁରୀ ଯାଉଛନ୍ତି। ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ଭୋଗ କରିବା ପାଇଁ ସେ ନଡ଼ିଆ, ପଇଡ଼, ଆମ୍ବ, ପଣସ, କଦଳୀ, ଛେନା, ଦହି, ଘିଅ, ଉଖୁଡ଼ା ଇତ୍ୟାଦି ନାନା ପ୍ରକାର ମଣୋହି ଦ୍ରବ୍ୟ ମଧ୍ୟ ନେଇଯାଉଛନ୍ତି। ତାଙ୍କୁ ଦେଖି ଦାସିଆ ଭାବିଲା ପ୍ରଭୁ ମୋର ଉପହାର ଗ୍ରହଣ କରିବାକୁ କଥା ଦେଇଛନ୍ତି। ହେଲେ ମୁଁ ହୀନଜାତି ବା କିପରି ଉପହାର ନେଇଯିବି? ଏହି ବ୍ରାହ୍ମଣ ଗୋସେଇଁଙ୍କ ହାତରେ ପଠାଇବି। ଏହା ଭାବି ସେ ସେହି ବ୍ରାହ୍ମଣଙ୍କୁ ଅନୁରୋଧ କରି କହିଲା—"ଗୋସେଇଁ! ଆପଣ ତ ପ୍ରଭୁଙ୍କ ପାଇଁ ମଣୋହି ଦ୍ରବ୍ୟ ନେଇ ଯାଉଛନ୍ତି, ମୋର ଗୋଟିଏ ନଡ଼ିଆ ନେଇ ଯାଆନ୍ତେନି?" ବ୍ରାହ୍ମଣ ଦାସିଆର ଶ୍ରଦ୍ଧା ଦେଖି କହିଲେ—"ଠିକ୍ ଅଛି। ମୋର ଏତେ ଜିନିଷ ଭୋଗ ଲାଗିବ, ତୋର ଏ ନଡ଼ିଆଟିଏ ଭୋଗ ଲଗାଇବାକୁ ବା କ'ଣ ଅସୁବିଧା!" ଦାସିଆ କହିଲା, "ନାଇଁ ଗୋସେଇଁ! ଏହାକୁ ସେମିତି ଭୋଗ ଲଗାଇବେ ନାହିଁ। ଆପଣ ପ୍ରଥମେ ଆପଣଙ୍କର ଯେମିତି ଭୋଗ କରିବା କଥା କରିଦେବେ। ଆପଣଙ୍କ

କାମ ସରିଗଲେ ଗରୁଡ଼ ପଛରେ ଠିଆ ହୋଇ ଏ ନଡ଼ିଆଟିକୁ ହାତରେ ଟେକି ଧରି କହିବେ—"ହେ ପ୍ରଭୁ! ଏ ନଡ଼ିଆଟି ତୁମର ବାଲିଗ୍ରାମଦାସ ପଠାଇଛି, ଏହାକୁ ନିଜେ ସ୍ୱହସ୍ତରେ ଗ୍ରହଣ କରନ୍ତୁ।" ବ୍ରାହ୍ମଣ ମୃଦୁ ମୃଦୁ ହସି କହିଲେ—"ତୁ କଣ ପାଗଳ ହେଲୁ କିରେ ଦାସିଆ! ପ୍ରଭୁ କଣ ନିଜେ ହାତରେ କେବେ କିଛି ଗ୍ରହଣ କରନ୍ତି?"—"ନାଇଁ ଗୋସେଇଁ, ଯଦି ମୋ ପ୍ରଭୁ ଏହା ନିଜ ହାତରେ ଗ୍ରହଣ ନ କରନ୍ତି, ତେବେ ଫେରାଇ ଆଣିବେ।" ଦାସିଆର ଅମାୟିକ ସରଳ ଭାବ ଦେଖି ବ୍ରାହ୍ମଣ ଟିକେ ହସିଦେଇ ନଡ଼ିଆଟି ନେଲେ। ମନେ ମନେ ଭାବିଲେ, ବିଚରା କହୁଛି ଯେତେବେଳେ ତା'ର ମନ ରଖିବାକୁ ସେହିପରି କରିଦେଲେ କ୍ଷତି କ'ଣ?

ବ୍ରାହ୍ମଣ ପୁରୀରେ ପହଞ୍ଚିଗଲେ। ନିଜର ସବୁ ଦ୍ରବ୍ୟ ପଣ୍ଡାଙ୍କୁ ଦେଲେ। ସେମାନେ ମହାପ୍ରଭୁଙ୍କ ନିକଟରେ ନୈବେଦ୍ୟ କରାଇଦେଲେ। ବ୍ରାହ୍ମଣ ଦିଅଁଙ୍କ ଦର୍ଶନ ସାରିଲେ ଓ ମହାପ୍ରସାଦ ସେବନ କରିସାରି ଟିକିଏ ବିଶ୍ରାମ କଲେ। ଫେରିବା ବେଳକୁ ଦାସିଆର ନଡ଼ିଆ କଥା ମନେ ପଡ଼ିଗଲା। ସେ ଗରୁଡ଼ ପଛରେ ଠିଆ ହୋଇ କହିଲେ—"ପ୍ରଭୁ! ବାଲିଗାଁର ଦାସିଆ ତୁମ ପାଇଁ ଏ ନଡ଼ିଆଟି ପଠାଇଛି। କହିଛି, ତୁମେ ଯଦି ଏହାକୁ ସ୍ୱହସ୍ତରେ ଗ୍ରହଣ କରିବ, ତେବେ ଦେବି। ନଚେତ୍ ଫେରାଇ ନେବି। ଏବେ ତୁମର ଯାହା ଇଚ୍ଛା ତାହା କର।"

ବ୍ରାହ୍ମଣ ଆଖିବୁଜି ଅଞ୍ଜଳିରେ ନଡ଼ିଆଟି ଟେକି ଧରି ଏତିକି କହୁ କହୁ ହଠାତ୍ ନଡ଼ିଆଟି ତାଙ୍କ ହାତରୁ ଖସିଯିବା ପରି ଲାଗିଲା। ସେ ପ୍ରଭୁଙ୍କର କରସ୍ପର୍ଶ ଅନୁଭବ କଲେ। ଚାହିଁଦେଲା ମାତ୍ରେ ଦେଖିଲେ ପ୍ରଭୁ ହାତ ବଢ଼ାଇ ତାହାକୁ ନେଇଯାଉଛନ୍ତି। ବ୍ରାହ୍ମଣ ଆଶ୍ଚର୍ଯ୍ୟ ହୋଇଗଲେ। ତାଙ୍କର ନିଜ ଆଖିକୁ ବିଶ୍ୱାସ ହେଲା ନାହିଁ। ସେ ଦୁଇ ହାତରେ ଆଖି ମଳି ପୁଣି ଚାହିଁଲେ। ଦେଖିଲେ, ପ୍ରଭୁ ତାହାକୁ ଶ୍ରୀମୁଖରେ ଆହାର କରୁଛନ୍ତି। ବ୍ରାହ୍ମଣଙ୍କ ନେତ୍ର ଅଶ୍ରୁଛଳଛଳ ହୋଇ ଆସିଲା। ସେ କହି ଉଠିଲେ, ଧନ୍ୟ ତୁ ଦାସିଆ, ଧନ୍ୟ ତୋର ଭାବ! ଧନ୍ୟ ତୋର ପିତାମାତା, ଧନ୍ୟ ତୋର ପ୍ରଭୁ ଜଗନ୍ନାଥ! ଆଜି ମୁଁ ତୋ ପାଇଁ ଧନ୍ୟ ହୋଇଗଲି ଦାସିଆ। ଏହା କହି ପ୍ରଭୁଙ୍କୁ ବାରମ୍ବାର ପ୍ରଣାମ କରି ବ୍ରାହ୍ମଣ ଫେରି ଆସିଲେ। ଏକଥା ଶ୍ରୀମନ୍ଦିରରେ ସର୍ବତ୍ର ପ୍ରଚାରିତ ହୋଇଗଲା।

ଭଗବାନ ଭକ୍ତର ପରୀକ୍ଷା ନିଅନ୍ତି, କିନ୍ତୁ ଏ କ୍ଷେତ୍ରରେ ନୂଆ ଘଟଣା ଘଟିଲା। ଭକ୍ତ ପରୀକ୍ଷା ନେଲା ଭଗବାନଙ୍କର। ଭଗବାନ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହାକୁ ସତ୍ୟରେ ପରିଣତ କରି ବାଲିଗ୍ରାମ ଦାସର ବିଶ୍ୱାସକୁ ଆହୁରି ଦୃଢ଼ୀଭୂତ

କରିଦେଲେ । ଏଥର ଦାସିଆ ମନରୁ ହୀନମନ୍ୟତା ଓ ସଂକୋଚ ଟିକିଏ ଦୂର ହୋଇଗଲା । ଯେଉଁ ମହାପ୍ରଭୁ ତାକୁ ଆପଣାର କରିନେବାକୁ ପ୍ରସ୍ତୁତ, ଆଉ ସେଠାରେ ଛୋଟ ବଡ଼ର ପ୍ରଭେଦ କ'ଣ? ନିଷାଦରାଜ ପ୍ରଭୃତି ଅନେକ ଭକ୍ତଙ୍କୁ ପ୍ରଭୁ ଆଲିଙ୍ଗନ କରି ପରମ ପ୍ରେମରେ ଆହ୍ଲାଦିତ କରିଥିବାର ଅନେକ ଦୃଷ୍ଟାନ୍ତ ପୁରାଣ ପୃଷ୍ଠାରେ ଦେଖିବାକୁ ମିଳେ ।

ଥରେ ଦାସିଆ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ନିମନ୍ତେ ପୁରୀ ଯିବାକୁ ମନସ୍ଥ କଲା । ଠାକୁରଙ୍କ ପାଇଁ କ'ଣ ନେବ? ଦେଖିଲା ଜଣେ ଆମ୍ବ ବିକିବାକୁ ଆସିଛି । ଆମ୍ବ ଦେଖିବାକୁ ବହୁତ ସୁନ୍ଦର, ବଡ଼ ବଡ଼ ଓ ମନମୋହକ ହୋଇଛି । ପାଚି ହଳଦୀ ଗୁରୁଗୁରୁ ଦିଶୁଛି; ସୁଗନ୍ଧରୁ ବହୁତ ମିଠା ଅନୁମାନ ହେଉଛି । ସେଥିରୁ କେତେ ଗଣ୍ଡା ନିଖୁଣ ଆମ୍ବ ବାଛି ଦାସିଆ କିଣିଲା । ନିଜେ ସ୍ନାନାଦି ସାରି ପବିତ୍ର ହେଲା ଏବଂ ଶିକାଭାରରେ ଆମ୍ବକୁ ସଜାଇ ରଖି ବାହାରିଲା ପ୍ରଭୁଙ୍କ ଦର୍ଶନ ନିମନ୍ତେ । ବେଢ଼ା ଭିତରେ ପହଞ୍ଚୁ ପହଞ୍ଚୁ ଆମ୍ବ ଦେଖି ପଣ୍ଡାମାନେ ଘେରିଗଲେ ଦାସିଆକୁ । ଏ କହିଲା ମୁଁ ନେବି, ସେ କହିଲା ବାଲିଗ୍ରାମ ଯଜମାନ ମୋର; ତେଣୁ ମୁଁ ତା'ର ଭୋଗ କରି ଆଣିବି । ସେମାନଙ୍କ ମନରେ ଲାଳସା ମଧ୍ୟ ଆସିଗଲା ଯେ ଭୋଗ ଲଗାଇଲେ ସେଥିରୁ କିଛି ଆମକୁ ମଧ୍ୟ ମିଳିଯିବ । ସେମାନଙ୍କର ଏହିପରି କନ୍ଦଳ ଦେଖି ଦାସିଆକୁ ହସ ଲାଗିଲା । ସେ ସ୍ମିତହାସ ପ୍ରକାଶ କରି କହିଲା, "ଗୋସେଇଁମାନେ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଏ ଆମ୍ବ କାହାରିକୁ ଦିଆହେବ ନାହିଁ । ଏ ସବୁ ପୂଜା ହେବା ପାଇଁ ଆସି ନାହିଁ ।"

ଦାସିଆର ଉତ୍ତର ଶୁଣି ନିଆଁରେ ପାଣି ପଡ଼ିଲା ପରି ସେମାନଙ୍କର କନ୍ଦଳ ହଠାତ୍ ବନ୍ଦ ହୋଇଗଲା । ସେମାନେ ଆଶ୍ଚର୍ଯ୍ୟରେ କହିଲେ, "ଆରେ ଠାକୁରଙ୍କ ପାଖକୁ ଆଣିଛୁ କ'ଣ ପାଇଁ? ଏଠୁ କ'ଣ ତୁ ଅମଣିଆ ଫେରାଇ ନେବୁ? ଅମଣିଆ ଦ୍ରବ୍ୟ ଖାଇବା କେତେ ପାପ ଜାଣିଛୁ?" ସେ କହିଲା—"ନାଇଁ ଗୋସେଇଁ! ମୁଁ ତ ଠାକୁରଙ୍କୁ ହିଁ ଦେବି । କିନ୍ତୁ ମୋର ଇଚ୍ଛା ଯେ ଠାକୁର ନିଜେ ନେଇ ମଣୋହି କରନ୍ତୁ ।" ତା' କଥାକୁ ସମସ୍ତେ ହସରେ ଉଡ଼ାଇ ଦେଇ ଚାଲିଗଲେ ।

ଭକ୍ତ ଦାସିଆ ଆମ୍ବଭାର ଉଠାଇ ନେଇ କେତେ ପାହୁଣ୍ଡ ପଛକୁ ଘୁଞ୍ଚି ଯାଇ ଚାହିଁଲା ଶ୍ରୀମନ୍ଦିରର ନୀଳଚକ୍ରକୁ । ପତିତପାବନ ବାନା ଫର ଫର ହୋଇ ଉଡୁଥାଏ । ସତେ ଯେପରି ଦାସିଆକୁ କୋଳାଗ୍ରତ କରିବା ପାଇଁ ସେ ଆହ୍ୱାନ ଦେଉଥାଏ । ସେହିଠାରେ ଦାସିଆ ପ୍ରଭୁଙ୍କୁ ସ୍ମରଣ କରି ସାଷ୍ଟାଙ୍ଗ ପ୍ରଣାମ କଲା

ନୀଳାଚଳ ବିହାରୀ ଶ୍ରୀଜଗନ୍ନାଥଙ୍କୁ। ତତ୍‌କ୍ଷଣାତ୍ ପ୍ରଭୁ ତାକୁ ଦର୍ଶନ ଦେଲେ ନୀଳଚକ୍ରରେ। ପ୍ରଭୁଙ୍କ ଦର୍ଶନ ପାଇ ସେ ଧନ୍ୟ ହୋଇଗଲା। ତା' ନେତ୍ର ଲୋତକପୂର୍ଣ୍ଣ ହୋଇଗଲା। ସେ ଗଦ୍‌ଗଦ କଣ୍ଠରେ କରଯୋଡ଼ି କହିଲା—''ପ୍ରଭୁ! ଏସବୁ ତୁମରି ପଦାର୍ଥ। ତୁମରି ପଦାର୍ଥକୁ ମୁଁ ତୁମକୁ ଅର୍ପଣ କରିବାକୁ ଆଣିଛି। ଏମାନେ ବୃଥାରେ କଳହ କରୁଛନ୍ତି କାହିଁକି? ତେଣୁ ତୁମେ ନିଜ ଇଚ୍ଛାରେ ଗ୍ରହଣ କରି ମଣୋହି କର।'' ଏତିକି କହି ସେ ଦୁଇଟି ଲେଖାଏଁ ଆମ୍ବ ଉଠାଇ ପ୍ରଭୁଙ୍କୁ ଦେଖାଇଲା। ପ୍ରଭୁଙ୍କ ଇଚ୍ଛାରେ ଆମ୍ବ ସବୁ ଯୋଡ଼ି ଯୋଡ଼ି ହୋଇ ଶୂନ୍ୟ ମାର୍ଗରେ ଗ୍ରଲିଗଲା ନୀଳଚକ୍ରରେ ବିରାଜିତ ନୀଳାଦ୍ରୀବିହାରୀଙ୍କ ହାତକୁ। ପଣ୍ଡାମାନେ ଓ ଦେଖଣାହାରୀମାନେ ଗ୍ରହିଁଥାନ୍ତି। ଧୀରେ ଧୀରେ ଆମ୍ବ ଝୁଡ଼ି ଦୁଇଟି ଖାଲି ହୋଇଗଲା। ସମସ୍ତଙ୍କ ମୁଖମଣ୍ଡଳରେ ଆଶ୍ଚର୍ଯ୍ୟର ରେଖା। ଆମ୍ବ ସବୁ ଗଲା କୁଆଡ଼େ? କିଏ ମାୟାରେ ଉଠାଇ ନେଲା ବୋଲି ଭାବି ସମସ୍ତେ ଚକିତ ହୋଇ ଦାସିଆକୁ ଗ୍ରହୁଁଥାନ୍ତି। ଭାବିଲେ, ଏ କୌଣସି ଯାଦୁବିଦ୍ୟା ଜାଣିଛି ନା କ'ଣ? ସେମାନଙ୍କ ବିସ୍ମୟ ଦେଖି ଦାସିଆ କହିଲା—''ଆପଣମାନେ ଦେଖି ପାରିଲେ ନାହିଁ କି? ପ୍ରଭୁ ପରା ସବୁ ଆମ୍ବ ଖାଇଲେ!''

ଆମ୍ବ ଝୁଡ଼ି ଖାଲି ହେବା ଘଟଣା ସେମାନେ ସ୍ୱଚକ୍ଷୁରେ ଦେଖିଥିଲେ। ପୁଣି ଦାସିଆ ମୁହଁରୁ ଏ କଥା ଶୁଣି ସେମାନଙ୍କ ମନରେ ଆହୁରି ଅଧିକ କୁତୂହଳ ଜାଗି ଉଠିଲା। ସେମାନେ ଦୌଡ଼ିଗଲେ ମନ୍ଦିର ଭିତରକୁ। ଦେଖିଲେ ଯେ ରତ୍ନସିଂହାସନ ପାଖରେ ଆମ୍ବଗ୍ରେପା ଓ ଟାକୁଆମାନ ଗ୍ରରିଆଡ଼େ ବିଛାଇ ହୋଇ ପଡ଼ିଛି। ଭକ୍ତ ଦାସିଆର ଭକ୍ତିଭାବକୁ ସମସ୍ତେ ଭୂରି ଭୂରି ପ୍ରଶଂସା କଲେ। ଠାକୁରଙ୍କ ଛଡ଼ାମାଳ ଆଣି ଦାସିଆକୁ ପିନ୍ଧାଇ ସମସ୍ତେ କଲ୍ୟାଣ କରିବା ସହିତ କହିଲେ—''ଧନ୍ୟ ତୁମେ ଭକ୍ତ ବାଲିଗ୍ରାମ ଦାସ। ତୁମ ପରି ଭକ୍ତ ଏ ସଂସାରରେ ଆଉ କିଏ ଅଛି? ଆମେ ତ ଠାକୁରଙ୍କ ସେବକ ହୋଇ ମଧ୍ୟ ତାଙ୍କୁ ଚିହ୍ନି ପାରିଲୁ ନାହିଁ। ନିତି ନିତି ଭୋଗ ଲଗାଇ ମଧ୍ୟ ତାଙ୍କୁ ଖୁଆଇ ପାରିଲୁ ନାହିଁ; କିନ୍ତୁ ତୁମେ ଆଜି ପ୍ରତ୍ୟକ୍ଷରେ ଠାକୁରଙ୍କୁ ଖୁଆଇ ପାରିଲ। ତୁମେ ବଡ଼ ଭାଗ୍ୟବାନ୍! ଯାହା କହନ୍ତି, ଗାଈର ପହ୍ନାରେ ଯେଉଁଠି ଅମୃତ ତୁଲ୍ୟ କ୍ଷୀର ରହିଥାଏ, ସେଠାରେ ରହି ମଧ୍ୟ ଚିଙ୍କ କେବଳ ରକ୍ତ ହିଁ ପିଇଥାଏ, ସେ କ୍ଷୀରର ସ୍ୱାଦ ପାଇପାରେ ନାହିଁ। ଆମେମାନେ ଠିକ୍ ସେହିପରି।'' ବ୍ରାହ୍ମଣଙ୍କ ମୁଖରୁ ପ୍ରଶଂସା ଶୁଣି ଦାସିଆକୁ ସଂକୋଚ ଲାଗିଲା। ସେ ତତ୍‌କ୍ଷଣାତ୍ ସେମାନଙ୍କ ପାଦତଳେ ପଡ଼ିଯାଇ କହିଲା—''ନାଇଁ ଗୋସେଇଁ!

ଏ ଭଳି ନ କୁହନ୍ତୁ। ମୋ'ଠାରେ ବା କି ଭକ୍ତି ଅଛି! ଏହା ତ ପ୍ରଭୁଙ୍କର ଓ ଆପଣମାନଙ୍କର କୃପାର ଫଳ। ଆଜି ଆପଣମାନଙ୍କର ଆଶୀର୍ବାଦ ପାଇ ହିଁ ମୁଁ ଭାଗ୍ୟବାନ୍ ହେଲି।" ଏହା କହି ସେ ସେମାନଙ୍କ ପାଦଧୂଳି ଆଣି ମୁଣ୍ଡରେ ବୋଳିଲା।

ଦାସିଆର ଭକ୍ତିଭାବରେ ଓ ନିରଭିମାନିତାରେ ପଣ୍ଡାମାନେ ବହୁତ ପ୍ରଭାବିତ ହେଲେ। ଭଗବାନଙ୍କୁ କିପରି ବଶ କରାଯାଏ, ତାହା ସେମାନେ ଦାସିଆଠାରୁ ଶିକ୍ଷା କଲେ। ପ୍ରଭୁ ଶ୍ରୀରାମଙ୍କ ବନବାସ ବେଳେ କୋହ୍ଲ-କିରାତମାନେ ସୀତାରାମଙ୍କ ଚରଣରେ ଯେଉଁ ଭକ୍ତିଭାବ ଦେଖାଇଥିଲେ, ସେଥିରୁ ରାମଙ୍କୁ ଅତି ଆପଣାର ଭାବୁଥିବା ଅଯୋଧ୍ୟାବାସୀମାନେ ମଧ୍ୟ ଶିକ୍ଷା ଲାଭ କରିଥିଲେ। ଗୋସ୍ୱାମୀ ତୁଳସୀଦାସ ସେହି ପ୍ରକରଣକୁ ଅତି ସୁନ୍ଦର ଭାବେ ଉପସ୍ଥାପିତ କରି ଲେଖିଛନ୍ତି—

**ଲାଗେ ସରାଜନ ଭାସ ସବ ଅନୁରାଗ ବଚନ ସୁନାୱହାଁ।**
**ବୋଲନି ମିଲନି ସିୟ ରାମ ଚରନ ସନେହୁ ଲଖି ସୁଖୁ ପାୱହାଁ॥**
**ନର ନାରି ନିଦରହିଁ ନେହୁ ନିଜ ସୁନି କୋଲଭିଲ୍ଲନି କୀ ଗିରା॥**
**ତୁଲସୀ କୃପା ରଘୁବଂଶମନି କୀ ଲୋହ ଲୈ ଲୌକା ତିରା॥**

ଲୁହା ପାଣିରେ ବୁଡ଼ିଯାଏ, ଅପରପକ୍ଷେ ନୌକା ପାଣିରେ ଭାସେ ଓ ଲୁହାକୁ ବୋହିନିଏ। କିନ୍ତୁ ଲୁହା ସଙ୍ଗେ ତୁଳନୀୟ ବନବାସୀ କୋହ୍ଲ-କିରାତମାନେ ସ୍ୱୟଂ ଶ୍ରୀରାମଙ୍କ ନଗରର ରାମପ୍ରେମୀ ବାସିନ୍ଦାମାନଙ୍କୁ ନିଜ ଉପରେ ଧାରଣ କରି ତାରିଦେଲେ। ଦାସିଆର ଭକ୍ତିଭାବରେ ସତେ ଯେପରି ସେହିପରି ଘଟଣାର ପୁନରାବୃତ୍ତି ହେଲା। ପ୍ରଭୁଙ୍କର ନିତ୍ୟ ସେବକମାନେ ହୀନଜାତି ଦାସିଆ ବାଉରୀଠାରୁ ଏହି ଶିକ୍ଷା ପାଇଲେ ଯେ କେବଳ କ୍ରିୟା ଦ୍ୱାରା ନୁହେଁ, ହୃଦୟର ଭାବ ଦ୍ୱାରା ହିଁ ଭଗବାନଙ୍କୁ ବଶ କରାଯାଇପାରେ।

ଭକ୍ତ ବାଲିଗ୍ରାମ ଦାସ ସେହିଠାରେ ପ୍ରଭୁଙ୍କୁ ବାରମ୍ବାର ସାଷ୍ଟାଙ୍ଗ ଦଣ୍ଡବତ କଲା। ପ୍ରଭୁଙ୍କ ଭକ୍ତବତ୍ସଳତା ସ୍ମରଣ କରି ତା'ର ହୃଦୟ ଆନନ୍ଦରେ ପୂରି ଉଠିଲା। ସେ ମନେ ମନେ ଭାବିଲା, ପ୍ରଭୁଙ୍କର ଦଶଅବତାର ରୂପ ଯଦି ଥରେ ଦର୍ଶନ କରନ୍ତି, ମୋ ଜନ୍ମ ଓ ଜୀବନ କୃତାର୍ଥ ହୋଇଯାଆନ୍ତା। ଏହିପରି ଭାବି ମନ ମଧ୍ୟରେ ପ୍ରଭୁଙ୍କୁ ଧ୍ୟାନ କରୁ କରୁ ଅନ୍ତର୍ଯାମୀ ତା'ର ମନକଥା ଜାଣିଗଲେ। ତତ୍‌କ୍ଷଣାତ୍ ତାକୁ ନୀଳଚକ୍ରରେ ତାଙ୍କର ମତ୍ସ୍ୟାବତାର ଠାରୁ ଆରମ୍ଭ କରି କଲ୍‌କୀ ଅବତାର ପର୍ଯ୍ୟନ୍ତ କ୍ରମଶଃ ଦଶ ଅବତାର ରୂପର ଦର୍ଶନ କରାଇଲେ। ପ୍ରଭୁଙ୍କ

ଦର୍ଶନ ପାଇ ତା'ର ମନୋବାଞ୍ଛା ପୂର୍ଣ୍ଣ ହୋଇଗଲା। ସେ ପ୍ରଭୁଙ୍କୁ ଅଶ୍ରୁଳ ନୟନରେ ପୁନଃ ପୁନଃ ପ୍ରଣାମ କଲା। ଶେଷରେ ପ୍ରଭୁଙ୍କ ଲୀଳାକୁ ସ୍ମରଣ କରି କରି ଘରକୁ ଫେରି ଆସିଲା।

ଦାସିଆର ଜୀବନ ଭକ୍ତିଭାବରେ ଓତପ୍ରୋତ ହୋଇସାରିଥିଲା। କାୟ-ମନବାକ୍ୟରେ ସେ ଭଗବାନଙ୍କର ହୋଇସାରିଥିଲା। ତେଣୁ ତା'ର ଶରୀର-ନିର୍ବାହ ସମ୍ବନ୍ଧୀୟ ସମସ୍ତ କର୍ମ ହୋଇଗଲା ଭଗବାନଙ୍କର ପୂଜା। ତା'ର ସ୍ତ୍ରୀ ମଧ୍ୟ ସ୍ୱାମୀଙ୍କ ପ୍ରଭାବରେ ଭକ୍ତିମତୀ ହୋଇଗଲା। ଉଭୟେ ଭଗବାନଙ୍କ ନାମ ଓ ଲୀଳା ସ୍ମରଣ କୀର୍ତ୍ତନ କରି କରି କାଳ କାଟିଲେ। ଶେଷରେ ନଶ୍ୱର ପାର୍ଥିବ ଦେହ ତ୍ୟାଗ କରି ଉଭୟେ ଭଗବାନଙ୍କ ଦିବ୍ୟ ଧାମକୁ ଚାଲିଗଲେ।



# ତିଳକ୍ଷ ମହାପାତ୍ର

କଥାରେ ଅଛି ଶରଣ ନେବ ତ ବଡ଼ର ନେବା ଉଚିତ, ସମର୍ଥର ନେବା ଉଚିତ। ଛୋଟ ଅସମର୍ଥ ବ୍ୟକ୍ତିର ଶରଣ ନେଲେ ଶରଣାଗତର ଦୁଃଖ ଦୂର ହେବା ସବୁବେଳେ ସମ୍ଭବ ହୁଏ ନାହିଁ। ସେ କେତେ ବା ସହାୟତା କରି ପାରିବ! ଯେ ନିଜ ଦୁଃଖ ଦୂର କରିବାକୁ ମାର୍ଗ ଖୋଜି ଖୋଜି ବୁଲୁଛି, ସେ ପୁଣି ଅନ୍ୟ ପାଇଁ ବା କଣ କରିବ? ତେବେ ଏଠାରେ ପ୍ରଶ୍ନ ଉଠେ ଯେ ସମର୍ଥ କିଏ? ନେତା, ମନ୍ତ୍ରୀ, ରାଜା, ଧନବାନ୍, ଉଚ୍ଚ ପଦାଧିକାରୀ? ନା; ଏମାନେ ବି କାହାରି ଅଧୀନରେ ରହି ନିଜ ନିଜ କର୍ମର ଫଳ ଭୋଗୁଛନ୍ତି। ଏମାନଙ୍କର ନିଜର ସ୍ଥିତି ଅସମ୍ଭବ, ଏମାନେ ଆଉ କାହାକୁ ବା କଣ ରକ୍ଷା କରିବେ! ଭାଗବତକାର ଶ୍ରୀଜଗନ୍ନାଥଦାସ ଲେଖିଛନ୍ତି—

**ଏ ଦେହ ପଞ୍ଚଭୂତେ ଜଡ଼ି। ଅବିଦ୍ୟା କାଳ କର୍ମେ ପଡ଼ି॥**
**ଆପଣା ଦୁଃଖେ ନିତ୍ୟ ଦୁଃଖୀ। ଏ କାହିଁ ପର ପ୍ରାଣ ରକ୍ଷୀ॥**
**ଉରଗ ଗିଳିଛି ଯାହାକୁ। ସେ କାହିଁ ରଖିବ ଆନକୁ॥**

କେହି ଯେତେ ବଡ଼ ଶକ୍ତିମାନ୍, ଧନବାନ୍, ସାମର୍ଥ୍ୟବାନ୍ ହୋଇଥିଲେ ମଧ୍ୟ ସର୍ବସମର୍ଥ ଭଗବାନଙ୍କ ଠାରୁ ବଡ଼ ନୁହେଁ। ସମସ୍ତେ ସେହି ମହାକାଳଙ୍କର ଅଧୀନ। ତେଣୁ ସର୍ବସମର୍ଥଙ୍କ ତତ୍ତ୍ୱକୁ ଜାଣିଥିବା ବୁଦ୍ଧିମାନ୍ ଲୋକ କୌଣସି ସଂକଟରେ ପଡ଼ିଲେ ସେ ସର୍ବଶକ୍ତିମାନ୍, ସର୍ବଜ୍ଞ ଓ ସର୍ବସମର୍ଥଙ୍କର ହିଁ ଶରଣ ନିଅନ୍ତି। ପ୍ରଭୁ

ଶରଣାଗତବତ୍ସଳ। ସେ ତାକୁ ସେହି ସଂକଟରୁ ନିଶ୍ଚୟ ରକ୍ଷା କରନ୍ତି। ରକ୍ଷା ନ କରି ଯଦି ମାରି ଦିଅନ୍ତି, ତେବେ ବି ତାହା ମଙ୍ଗଳକର। ତାଙ୍କରି ଶରଣକୁ ଯାଇ ଜୀବିତ ରହିଲେ ବି ପରମ ମଙ୍ଗଳ ଏବଂ ତାଙ୍କ ହାତରେ ମୃତ୍ୟୁ ଲାଭ କଲେ ବି ପରମ ମଙ୍ଗଳ। ଏହି କଥାକୁ ବିଭୀଷଣ ଭଲଭାବରେ ହୃଦୟଙ୍ଗମ କରିଥିଲେ। ସେଥିପାଇଁ ସେ ପ୍ରଭୁ ଶ୍ରୀରାମଙ୍କ ଶରଣକୁ ଆସିଥିଲେ। ସେ ଶତ୍ରୁପକ୍ଷର ହୋଇ ମଧ୍ୟ ଏହି ବିଶ୍ୱାସ ରଖିଥିଲେ ଯେ ମୁଁ ଶ୍ରୀରାମଙ୍କ ଶରଣକୁ ଚ୍ୱଲିଯିବା ଉତ୍ତମ ହେବ। ସେ ମୋତେ ଶରଣ ଦିଅନ୍ତୁ ବା ଶତ୍ରୁର ଭାଇ ମନେକରି ମାରି ଦିଅନ୍ତୁ, ସେଥିରେ ମୋର ମଙ୍ଗଳ ନିହିତ। କେବଳ ବିଭୀଷଣ ନୁହେଁ, ଅନେକ ଭକ୍ତଙ୍କ ଜୀବନରେ ଏହି ଦୃଷ୍ଟାନ୍ତ ଦେଖିବାକୁ ମିଳେ। ଭଗବାନଙ୍କର ଏହା ସ୍ୱଭାବ ଯେ, ସେ ତାଙ୍କ ଶରଣକୁ ଆସିଥିବା ବ୍ୟକ୍ତିର ପାପ, ଦୋଷ, ଅପରାଧ ଇତ୍ୟାଦିକୁ ଦେଖନ୍ତି ନାହିଁ; କୌଣସି ବ୍ୟକ୍ତିକୁ ନ କରି ସମସ୍ତଙ୍କୁ ଅଭୟ ପ୍ରଦାନ କରନ୍ତି। ସେଥିପାଇଁ ପ୍ରଭୁ ଶ୍ରୀରାମ ବାଲ୍ମୀକି ରାମାୟଣରେ କହିଛନ୍ତି—

**ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ।**
**ଅଭୟଂ ସର୍ବଭୂତେଭ୍ୟୋ ଦଦାମ୍ୟେତଦ୍ ବ୍ରତଂ ମମ॥**

—''ଯେ କେହି ହେଉ ନା କାହିଁକି, ସେ ଯଦି 'ପ୍ରଭୁ! ମୁଁ ତୁମ ଶରଣାଗତ, ମୋତେ ରକ୍ଷା କର'—ଏତିକି କହି ମୋ ଶରଣକୁ ଆସେ, ମୁଁ ତାକୁ ସମସ୍ତଙ୍କ ଠାରୁ ଅଭୟ କରିଦିଏ। ଏହା ମୋର ବ୍ରତ।'' ପୁଣି ରାମଚରିତମାନସରେ କହିଛନ୍ତି—

**କୋଟି ବିପ୍ର ବଧ ଲାଗହିଁ ଜାହୂ। ଆଏଁ ସରନ ତଜଉଁ ନହିଁ ତାହୂ॥**

ଅର୍ଥାତ୍—''କୋଟି କୋଟି ବ୍ରହ୍ମହତ୍ୟା ପାପର ଭାଗୀ ହୋଇ ମଧ୍ୟ ଯେ ମୋ ଶରଣକୁ ଆସେ, ମୁଁ ତାକୁ ତ୍ୟାଗ କରିପାରେ ନାହିଁ।''

ଏଭଳି ଉଦାର ପ୍ରଭୁଙ୍କୁ ଛାଡ଼ି ଯିଏ ଭିକାରୀ ଆଗରେ ଭିକ ମାଗେ, ତାକୁ କ'ଣ ବା ମିଳିବ? ମିଳିଲେ ବି ସେଥିରେ କେତେ ଦିନ ତା' କାମ ଚଳିବ? ଶ୍ରୀଜଗନ୍ନାଥଙ୍କ ଭକ୍ତ ତଥା ସେବକ ତିଳଞ୍ଚ ମହାପାତ୍ର ଦୋଷଟିଏ କରିଦେଇଥିଲେ, କିନ୍ତୁ ପ୍ରଭୁ ତାଙ୍କୁ ରକ୍ଷା କରିବାକୁ କିପରି ଲୀଳା ରଚିଲେ, ତାହା ହିଁ ଶଂସିତ ଭକ୍ତ ଚରିତଟିର ପ୍ରତିପାଦ୍ୟ ବିଷୟ।

ଗଜପତିରାଜା ପ୍ରତାପରୁଦ୍ରଙ୍କ ରାଜତ୍ୱ ସମୟର ଘଟଣା। ପୁରୀ ମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ଜଣେ ସେବକ ଥିଲେ ତିଳଞ୍ଚ ମହାପାତ୍ର। ବେଦ ଶାସ୍ତ୍ରରେ ଉତ୍ତମ ଅଧ୍ୟୟନ ଥିଲା ତାଙ୍କର। ଧର୍ମ, ଅଧ୍ୟାତ୍ମ ସମ୍ବନ୍ଧରେ ମଧ୍ୟ ତାଙ୍କର ଉତ୍ତମ ଜ୍ଞାନ

ଥିଲା । ପବିତ୍ରତା, ସୁଶୀଳତା, ସହନଶୀଳତା ଆଦି ଗୁଣରେ ସେ ବିଭୂଷିତ ଥିଲେ । ଉତ୍ତମ ଲୋକଙ୍କ ମେଳରେ ବସନ୍ତି, ଦୁଃଖୀ-ରଙ୍କୀଙ୍କୁ ଦେଖିଲେ ସେମାନଙ୍କୁ ଡାକି ଖାଲବାକୁ ଦିଅନ୍ତି; କାହାରିକୁ କଟୁ ବଚନ କହନ୍ତି ନାହିଁ । ତାଙ୍କର ସ୍ନିଗ୍ଧ ଓ ମଧୁର ବଚନରେ ଉଦ୍‌ବିଗ୍ନ ପ୍ରାଣୀ ମଧ୍ୟ ଆଶ୍ୱସ୍ତି ଲାଭ କରନ୍ତି । ଏସବୁ ସଦ୍‌ଗୁଣ ସାଙ୍ଗକୁ ବୃତ୍ତି ମଧ୍ୟ ଥିଲା ସଦ୍‌ବୃତ୍ତି ଅର୍ଥାତ୍ ପରମ ସତ୍ୟ ଶ୍ରୀଜଗନ୍ନାଥଙ୍କର ସେବା । ରତ୍ନସିଂହାସନରେ ବିଜେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପହଡ଼ ଖୋଲିବା ଠାରୁ ପହଡ଼ ପଡ଼ିବା ଯାଏ ଯେତେ ସବୁ ସେବା ହୁଏ, ତାହାର ମୁଖ୍ୟ ଦାୟିତ୍ୱ ତିଳକ୍କ ମହାପାତ୍ରଙ୍କର । ନିଜେ ସ୍ୱହସ୍ତରେ ପ୍ରଭୁଙ୍କ ସେବା କରିବାରେ ସେ ଆନନ୍ଦ ପାଆନ୍ତି । ପୁଷ୍ପନିର୍ମିତ ମୁକୁଟ, ମାଳ, ଚୁଳ, କର୍ଣ୍ଣଫୁଲ, କେୟୂର, ନାନା ରଙ୍ଗର ବିଭିନ୍ନ ପ୍ରକାର ଫୁଲର ହାର ପ୍ରଭୁଙ୍କୁ ନିତି ପିନ୍ଧାଇ ବେଶ କରନ୍ତି । ଚତୁର୍ଦ୍ଧା ମୂର୍ତ୍ତିଙ୍କର ଯେତେବେଳେ ଯେଉଁ ସବୁ ରତ୍ନ ଅଳଙ୍କାରର ବେଶ ହୁଏ, ତାହା ମଧ୍ୟ ତାଙ୍କରି ଦାୟିତ୍ୱ । ପ୍ରଭୁଙ୍କୁ ବସ୍ତ୍ର ପିନ୍ଧାଇବା, କସ୍ତୁରୀ, ଚନ୍ଦନ ପ୍ରଭୃତିରେ ବେଶ କରିବା ଏବଂ ଧୂପ ଆଳତି ପ୍ରଭୃତି ସେବା ତାଙ୍କ ବିନା ଅନ୍ୟ କେହି ଭଲଭାବେ କରି ପାରନ୍ତି ନାହିଁ; କାରଣ ସେ ସେଇଥିରେ ମନପ୍ରାଣ ଢାଳି ସେବା କରନ୍ତି ଏବଂ ସେଇଥିରେ ଆନନ୍ଦ ଲାଭ କରନ୍ତି । ସେ କେବଳ ଯେ ହାତରେ ସେବା କରନ୍ତି ତା ନୁହେଁ, ତାଙ୍କର ଦେହ ମନ ସବୁକିଛି ସମର୍ପିତ ପ୍ରଭୁଙ୍କ ଠାରେ । ସେହି ଦାରୁବ୍ରହ୍ମ ହିଁ ତାଙ୍କର ସର୍ବସ୍ୱ । ସେ କେବଳ ଜଗନ୍ନାଥଙ୍କୁ ହିଁ ନିଜର ନାଥ ବୋଲି ଜାଣନ୍ତି । ତାଙ୍କୁ ହିଁ ନିଜର ଇଷ୍ଟ, ମିତ୍ର, ଗୁରୁ ସବୁ କିଛି ମାନନ୍ତି । ସୁତ, ବିତ୍ତ, ଦାରା ସବୁକିଛି ହୃଦୟର ସହ ତାଙ୍କରି ଚରଣରେ ଅର୍ପଣ କରି ତାଙ୍କରି କୃପା ପ୍ରସାଦ ଲବ୍ଧ ଧନରେ ହିଁ ଜୀବନ ନିର୍ବାହ କରନ୍ତି । କାୟମନୋବାକ୍ୟରେ ସେ ପ୍ରଭୁଙ୍କର ହୋଇଯାଇଥାନ୍ତି । ଶରୀର ଦ୍ୱାରା ଶ୍ରୀହରିଙ୍କ ସେବା, ମନ ଦ୍ୱାରା ଶ୍ରୀହରିଙ୍କ ଚିନ୍ତନ ଓ ମୁଖରେ ଶ୍ରୀହରିଙ୍କ ନାମ—ଏହା ହିଁ ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟ ।

ସାଧାରଣତଃ ଦେଖିବାକୁ ଗଲେ ଠାକୁରଙ୍କ ସେବା କାର୍ଯ୍ୟ ତ ଅନେକ ସେବକ କରନ୍ତି ଓ କରୁଛନ୍ତି । କିନ୍ତୁ ହୃଦୟର ଭାବ ନ ଥିଲେ ସେହି ସେବା କେବଳ ଗୁକିରି ବା ବେଉଷା ପରି ହୋଇଯାଏ । ସେଥିରୁ କେବଳ ଅର୍ଥ ଉପାର୍ଜନ ହୁଏ ସିନା, ପରମାର୍ଥ ବା ଭଗବତ୍‌ପ୍ରେମ ଉପାର୍ଜନ ହୋଇପାରେ ନାହିଁ । ସେହି ସେବା ଦ୍ୱାରା କେବଳ ଶ୍ରମମାତ୍ର ସାର ହୁଏ ଏବଂ ତାହା କେବଳ ଇହଲୋକରେ କ୍ଷଣିକ ନାଶବାନ୍ ଫଳ ଦେଇ ନଷ୍ଟ ହୋଇଯାଏ; କିନ୍ତୁ ସେଥିରେ ଭାବ ମିଶ୍ରିତ

ହେଲେ ତାହା ଉଭୟ ଇହଲୋକ ଓ ପରଲୋକରେ ଅନନ୍ତ ଫଳ ପ୍ରଦାନ କରିଥାଏ। ସ୍ୱୟଂ ବିଶ୍ୱପତି ତା'ର ଅଧୀନ ହୋଇଯାଆନ୍ତି। ଭକ୍ତରାଜ ହନୁମାନ ତାଙ୍କ ସେବା ବଳରେ ପ୍ରଭୁ ଶ୍ରୀରାମଙ୍କୁ ବଶ କରି ରଖିଥିଲେ। କେବଳ ଶ୍ରୀରାମ ନୁହନ୍ତି, ଜଗନ୍ମାତା ସୀତା, ଲକ୍ଷ୍ମଣ, ଭରତ ସମସ୍ତେ ତାଙ୍କ ସେବାରେ ଋଣୀ ହୋଇଗଲେ। ପ୍ରଭୁ ଶ୍ରୀରାମ କହିଥିଲେ—"ହନୁମାନ! ମୁଁ ତୁମ ପାଖରେ ଏହିପରି ଋଣୀ ହୋଇ ରହିବାକୁ ଚାହେଁ; କାରଣ ତୁମ ଋଣ ଶୁଝିବାକୁ ହେଲେ ତୁମ ଉପରେ କିଛି ବିପତ୍ତି ପଡ଼ିବା ଦରକାର, ଯେତେବେଳେ କି ମୁଁ ଯାଇ ତୁମକୁ ସାହାଯ୍ୟ କରି, ତୁମର ଉପକାର କରି ତାହା ଶୁଝିବି। କିନ୍ତୁ ମୁଁ ଚାହେଁ ନାହିଁ ଯେ ତୁମ ଉପରେ କିଛି ବିପଦ ପଡୁ।" ଏହି ପରିପ୍ରେକ୍ଷୀରେ ସେବ୍ୟ ସେବକର ଛୋଟ ଛୋଟ ଅପରାଧକୁ ଯେ କ୍ଷମା କରିଦେବେ, ଏଥିରେ ସନ୍ଦେହର ଅବକାଶ କାହିଁ? ଏଭଳି ସେବକର ଭଲମନ୍ଦ ଓ ସୁଖଦୁଃଖକୁ ପ୍ରଭୁ ଶୁଣି ମଧ୍ୟ କଣ କାନ ବନ୍ଦ କରିଦେଇ ପାରିବେ? ପ୍ରଭୁଙ୍କ କଥା ଛାଡ଼, ସେ ତ ଅନାଥର ନାଥ; ସାଧାରଣ ମୁନିବ ଜଣେ ମଧ୍ୟ ତା' ସେବକର ଆନ୍ତରିକ ନିଷ୍ଠାରେ ପ୍ରଭାବିତ ହୋଇ ତା'ର ଦୋଷ କ୍ଷମା କରି ତା' ପ୍ରତି ଦୟା କରିବାକୁ ବାଧ୍ୟ ହୋଇପଡ଼େ। ପୁଣି ପ୍ରଭୁ ତ ପରମ ଉଦାର। ସେ ତାଙ୍କର ଶରଣାଗତକୁ କିପରି ବା ହତାଦର କରି ପାରନ୍ତେ? ଏ ପରିପ୍ରେକ୍ଷୀରେ ପ୍ରଭୁ ତା'ର ଦୋଷକୁ ନିଜ ଉପରକୁ ନେଇ ଯାଆନ୍ତି ଅଥବା ଆବଶ୍ୟକ ପଡ଼ିଲେ ନିଜେ ହିଁ ତା'ର ମାନ ରକ୍ଷା ପାଇଁ କିଛି ନୂତନ ଲୀଳା ରଚି ଦିଅନ୍ତି।

ଥରେ ତିଳଛ ମହାପାତ୍ର ମନ୍ଦିରରେ ଥାଆନ୍ତି। ହଠାତ୍ କେତେଜଣ ସେବକ ଦୌଡ଼ି ଆସି ଖବର ଦେଲେ ଯେ ଗଜପତି ରାଜା ଶ୍ରୀପ୍ରତାପରୁଦ୍ର ଦେବ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଆସୁଛନ୍ତି। ସୈନ୍ୟସାମନ୍ତଙ୍କ ସମେତ ବିଶାଳ ପଟୁଆର ତାଙ୍କର ସଙ୍ଗରେ ଅଛି। ନାନା ପ୍ରକାର ବାଦ୍ୟ, ଶଙ୍ଖ, ଭେରୀ, ତୂରୀର ତୁମୁଳ ନାଦ ଓ ଜୟଘୋଷ ଧ୍ୱନି ମଧ୍ୟରେ ଆସି ସେ ସିଂହଦ୍ୱାର ନିକଟରେ ପହଞ୍ଚିଗଲେଣି। ମହାପାତ୍ରେ ଏ ସମାଚାର ପାଉ ପାଉ ରାଜା ଶ୍ରୀମନ୍ଦିରରେ ପ୍ରବେଶ କଲେ। ତାଙ୍କୁ ଦେଖି ସେ ଅସ୍ତବ୍ୟସ୍ତ ହୋଇ ଧାଇଁଲେ ପ୍ରଭୁଙ୍କ ପାଖକୁ। କେଉଁଠି କିଛି ଅବ୍ୟବସ୍ଥା ହୋଇ ନାହିଁ ତ? ଠାକୁରଙ୍କ ବେଶଭୂଷା କିଛି ଖରାପ ହୋଇଯାଇ ନାହିଁ ତ? ରାଜା କ'ଣ ଭାବିବେ? ହଠାତ୍ ତରବର ହୋଇ ସେ ରତ୍ନସିଂହାସନ ଉପରକୁ ଉଠିଗଲେ। ଦେଖିଲେ, ଠାକୁରଙ୍କ ମସ୍ତକରେ ଫୁଲ ନାହିଁ। ସମ୍ଭବତଃ ଭଗବାନଙ୍କୁ

ଏହି ଲୀଳା କରିବାର ଥିଲା । ନଚେତ୍ ନାନା ପୁଷ୍ପରେ ବିଭୂଷିତ ରହୁଥିବା ପ୍ରଭୁଙ୍କ ମସ୍ତକରୁ ହଠାତ୍ ପୁଷ୍ପ କୁଆଡ଼େ ଗୁଳିଗଲା?

ଯେଉଁ କାରଣରୁ ହେଉ ପଛେ, ଫୁଲ ଠାକୁରଙ୍କ ମସ୍ତକରେ ନ ଥିବା ଦେଖି ମହାପାତ୍ରେ ବ୍ୟସ୍ତ ହୋଇ ପଡ଼ିଲେ । ସେ ଭାବିଲେ, ମୁଁ ଏବେ କି ବୁଦ୍ଧି କରିବି? ରାଜା ଆସିଗଲେଣି । ଦିଅଁ ଦର୍ଶନ ପରେ ତାଙ୍କୁ ଠାକୁରଙ୍କ ମସ୍ତକରୁ ଛଡ଼ା ଫୁଲ ଦେବାକୁ ପଡ଼ିବ । ଏହା ରାଜା ଆଶା କରିଥାନ୍ତି । ଠାକୁରଙ୍କ ଫୁଲ ନ ଦେଲେ କେବଳ ମୋର ମହତ ଯିବ ନାହିଁ, ମୋର ସେବା ମଧ୍ୟ ଯିବ । ଏପରି ଭାବୁ ଭାବୁ ହଠାତ୍ ତାଙ୍କ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା । ସେ ଭାବିଲେ, ମୋର ଶିଖାରେ ଯେଉଁ ଫୁଲ ଅଛି, ତାହାକୁ ଏବେ ପ୍ରଭୁଙ୍କ ମସ୍ତକରେ ରଖିଦେବି । ରାଜାଙ୍କୁ ପ୍ରସାଦ ରୂପେ ତାହା ଦେଇ ସଂକଟରୁ ରକ୍ଷା ପାଇଯିବି । ସେ ଆଉ କାଳ ବିଳମ୍ବ ନ କରି ତତ୍‌କ୍ଷଣାତ୍ ନିଜ ଗୋଖୁରା ଆକାରର ମୋଟା ଶିଖାରୁ ଯାଇ ଫୁଲ ପେଛାଟିଏ କାଢ଼ି ଠାକୁରଙ୍କ ମସ୍ତକରେ ରଖିଦେଲେ । ଧବଳ ଯାଇ ଫୁଲ ପେଛାଟି ପ୍ରଭୁଙ୍କୁ ସୁନ୍ଦର ମାନିଲା ।

ଆଜି ଏକ ନୂଆ କଥା ହେଲା । ଭକ୍ତ ଭଗବାନଙ୍କର ଛଡ଼ାଫୁଲ ପିନ୍ଧେ, କିନ୍ତୁ ଆଜି ଭଗବାନ ବିନା ଆପତ୍ତିରେ ଭକ୍ତର ଛଡ଼ାଫୁଲ ପିନ୍ଧିଲେ । ଏ କଥା କେହି ଜାଣି ପାରିଲେ ନାହିଁ । ତିଳଛ ମହାପାତ୍ରଙ୍କର ସଂକଟ ମଧ୍ୟ ଏକପ୍ରକାରେ ଟଳିଗଲା ।

ରାଜା ପ୍ରଭୁଙ୍କୁ ନମସ୍କାର କଲେ । ଯଥାବିଧି ଦିଅଁଙ୍କ ଦର୍ଶନ ପରେ ପ୍ରଭୁଙ୍କ ପ୍ରସାଦ ପାଇଁ ହାତ ପତେଇଲେ । ମହାପାତ୍ରେ ଭଲଭାବରେ ନିଜର ହାତ ଧୋଇ ଠାକୁରଙ୍କ ମଥାରୁ ଫୁଲ ପେଛାଟି ନେଇ ରାଜାଙ୍କ ଅଞ୍ଜଳିରେ ଦେଲେ । ରାଜା ତାହାକୁ ଆଦରରେ ଗ୍ରହଣ କରି ମଥାରେ ଛୁଆଁଇଲେ ଏବଂ ରାଜନବରକୁ ଫେରି ଆସିଲେ ।

ରାତ୍ରି ହେଲା । ରାଜା ନିଜର ବହୁମୂଲ୍ୟ ଆସନରେ ବସି ସେହି ଛଡ଼ାଫୁଲର ଦିବ୍ୟ ଶୋଭା ଦେଖୁଥାନ୍ତି । ହଠାତ୍ ସେଥିରେ କେତୋଟି ଲମ୍ବା ବାଳ ଗୁଡ଼ାଇ ହୋଇଥିବାର ଦେଖାଗଲା ରାଜାଙ୍କୁ । ଆଶ୍ଚର୍ଯ୍ୟରେ ପଡ଼ିଗଲେ ରାଜା । ଭାବିଲେ, ଫୁଲ ତ ମୋତେ ଠାକୁରଙ୍କ ମଥାରୁ ମିଳିଲା! ପୁଣି ପ୍ରଭୁ ଜଗନ୍ନାଥ ତ ଦାରୁବ୍ରହ୍ମ, ତାଙ୍କ ମୁଣ୍ଡରେ ତ କେଶ ନାହିଁ; ତେବେ ଏ କେଶ ଫୁଲରେ କେଉଁଠୁ ଆସିଲା? ନିଶ୍ଚେ ଏହା ବ୍ରାହ୍ମଣ ମୁଣ୍ଡର ଛଡ଼ାପୁଷ୍ପ । ସେ ତା'ର ଛଡ଼ାପୁଷ୍ପକୁ ପ୍ରଭୁଙ୍କ ମସ୍ତକରେ ରଖି ଦେଇଥିଲା ଏବଂ ସେଠାରୁ ଉଠାଇ ମୋତେ ଦେଲା । ଏଭଳି ଅନୁମାନ କରି

ସେ ରାଗିଗଲେ ଏବଂ ଦୂତମାନଙ୍କୁ ଡକାଇ ତିଳଙ୍କ ମହାପାତ୍ରଙ୍କୁ ଯଥାଶୀଘ୍ର ଉପସ୍ଥିତ କରାଇବାକୁ କଠୋର ଆଦେଶ ଦେଲେ । ରାଜାଙ୍କ ଆଦେଶରେ ଦୂତମାନେ ଯାଇ ମନ୍ଦିରରୁ ତିଳଙ୍କ ମହାପାତ୍ରଙ୍କୁ ଧରି ଆଣିଲେ ।

ନିଜ ଦୋଷ ତ ସମସ୍ତଙ୍କୁ ଜଣାଥାଏ । ତେଣୁ ମହାପାତ୍ରେ ମଧ୍ୟ ମନେ ମନେ ଶଂକିତ ହୋଇଗଲେ । ସେ ଅନୁମାନ କରିନେଲେ ଯେ ବୋଧହୁଏ ରାଜାଙ୍କୁ କୌଣସି ପ୍ରକାରେ ମୋ ଫୁଲ ରଖିବା କଥା ଜଣା ପଡ଼ିଯାଇଛି । ତଥାପି କ'ଣ କରିବେ । ଘଟଣା ତ ଘଟି ସାରିଛି । ଏଣିକି ପ୍ରଭୁଙ୍କର ଯାହା ଇଚ୍ଛା, ତାହା ହିଁ ହେବ ବୋଲି ଭାବି ସେ ରାଜାଙ୍କ ଆଗରେ ଉପସ୍ଥିତ ହେଲେ । ତାଙ୍କୁ ଦେଖୁ ଦେଖୁ ରାଜା କ୍ରୋଧରେ ଅଗ୍ନିଶର୍ମା ହୋଇଗଲେ । ରାଜା ପଚ୍ଚରିଲେ—"କିହୋ ମହାପାତ୍ରେ! ଏ ଦାରୁବ୍ରହ୍ମଙ୍କ ମୁଣ୍ଡରେ ବାଳ କେଉଁଠୁ ଆସିଲା? ସତ ସତ କୁହ, ନ ହେଲେ ତୁମକୁ ମୁଁ କଠୋର ଦଣ୍ଡ ଦେବି ।" ରାଜାଙ୍କର କୋପ ଦେଖି ମହାପାତ୍ରଙ୍କର ପାଏ ରକ୍ତ ଶୁଖିଗଲା । ମନେ ମନେ ସେ ପ୍ରଭୁଙ୍କୁ ଡାକିଲେ । ଯାହାଙ୍କର ସେ ସେବକ, ତାଙ୍କ ଛଡ଼ା ଆଉ କାହା ଆଗରେ ନିଜର ଦୁଃଖ ଶୁଣାଇବେ? ସେ ଅନୁଭବ କଲେ ଯେ ଏକା ପ୍ରଭୁଙ୍କ ଛଡ଼ା ତାଙ୍କୁ ଏ ରାଜଦଣ୍ଡରୁ ଅନ୍ୟ କେହି ରକ୍ଷା କରି ପାରିବ ନାହିଁ । ତଥାପି ରାଜା ପ୍ରଶ୍ନ କରି ସାରିଲେଣି ମାନେ ତାଙ୍କୁ ଉତ୍ତର ଦେବାକୁ ପଡ଼ିବ । ତେଣୁ ସେ ଏହାର ଏକ ତତ୍କାଳିକ ସମାଧାନ ବାହାର କରିଦେଲେ । ସେ ଭାବିଲେ, ଯାହା ହେବ ଦେଖାଯିବ । ପ୍ରଭୁ ମୋତେ ରଖିଲେ ରଖିବେ, ମାରିଲେ ମାରିବେ । କିନ୍ତୁ ବର୍ତ୍ତମାନ ଏ ରାଜା ପାଖରୁ ତ ମୁକୁଳିବାକୁ ପଡ଼ିବ । ତେଣୁ ଏବେ ମିଥ୍ୟା ନ କହିଲେ ମୋତେ ନିସ୍ତାର ନାହିଁ । ଏପରି ଭାବି ସେ ବିନା ଦ୍ୱିଧାରେ ହାତଯୋଡ଼ି କହିଲେ—"ରାଜନ୍! ଆପଣଙ୍କୁ କ'ଣ ଆଜିଯାଏ ଏ କଥା ଜଣା ନ ଥିଲା? ପ୍ରଭୁଙ୍କ ମୁଣ୍ଡରେ ତ କେଶ ଅଛି ।" ବ୍ରାହ୍ମଣଙ୍କ ଠାରୁ ଏଭଳି ଉତ୍ତର ଶୁଣି ରାଜା ମନେ ମନେ ଆହୁରି କ୍ରୋଧିତ ହୋଇଗଲେ । ସେ କହିଲେ, "ମିଥ୍ୟା, ପୁଣି ତା' ଉପରେ ଏତେ ଦୃଢ଼ତା । ଠିକ୍ ଅଛି, କାଲି ମୋତେ ପ୍ରଭୁଙ୍କ ମୁଣ୍ଡରେ କେଶ ଦେଖାଇବ । ନଚେତ୍ ତୁମକୁ ଏ ରାଜ୍ୟରୁ ବାହାର କରି ଦିଆଯିବା ସୁନିଶ୍ଚିତ ବୋଲି ଜାଣ ।"

—"ହଁ ମଣିମା! ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ । ମୁଁ ନିଶ୍ଚୟ ଦେଖାଇଦେବି । ଯଦି ଦେଖାଇ ନ ପାରିବି, ଆପଣ ମୋତେ ଦଣ୍ଡ ଦେବେ ।"—ନିର୍ଭୟରେ କହିଦେଲେ ତିଳଙ୍କ ମହାପାତ୍ରେ ।

ଏତିକିରେ ସିନା ତାଙ୍କ ସମସ୍ୟାର ତାତ୍କାଳିକ ସମାଧାନ ହୋଇଗଲା,

ହେଲେ ହୃଦୟରେ ଘୋଟିଗଲା ଚିନ୍ତାର ଘନ ବାଦଲ। ସେ ଫେରି ଆସିଲେ ଶ୍ରୀମନ୍ଦିରକୁ। ରାତି ପାହିଲେ ପ୍ରମାଣ ଦେଖାଇବାକୁ ପଡ଼ିବ। କି ବୁଦ୍ଧି କରିବେ କିଛି ସ୍ଥିର କରି ପାରିଲେ ନାହିଁ। ବୁଦ୍ଧି ଏଠି କ'ଣ ବା କାମ ଦେବ? ସେ ଭାବିଲେ, ସମସ୍ତଙ୍କ ବୁଦ୍ଧିକୁ ମୋହିତ କରୁଥିବା ମାୟା ଯାହାଙ୍କର ସେବିକା, ସେହି ମାୟାପତିଙ୍କ ଶରଣ ନେବା ହିଁ ବୁଦ୍ଧିମତ୍ତା ହେବ। ସେ ସିଧା ଚାଲିଲେ ପ୍ରଭୁଙ୍କ ସମ୍ମୁଖକୁ। ପ୍ରଥମେ ପ୍ରଭୁଙ୍କର ଯାହା କିଛି ନିତ୍ୟ ସେବା ସେଦିନର ବାକି ଥିଲା, ସେସବୁ ସାରିଲେ। ନୈବେଦ୍ୟ, ଆଳତି, ବଡ଼ସିଂହାର ବେଶ ପ୍ରଭୃତି ସାରି ପ୍ରଭୁଙ୍କ ପଲଙ୍କ ସଜାଇଲେ। ପ୍ରଭୁଙ୍କୁ ସାଷ୍ଟାଙ୍ଗ ଦଣ୍ଡବତ କରିସାରି ଉଠି କରପତ୍ର ଯୋଡ଼ି ଠିଆ ହୋଇଗଲେ ପ୍ରଭୁଙ୍କ ଛାମୁରେ। ଭକ୍ତ ଓ ଭଗବାନଙ୍କର ଚାରି ଚକ୍ଷୁର ମିଳନ ହୋଇଗଲା। ହୃଦୟର ଅବ୍ୟକ୍ତ ପ୍ରାର୍ଥନା ଓ କୋହ ପ୍ରସ୍ଫୁଟିତ ହୋଇଗଲା ଶବ୍ଦ ମାଧ୍ୟମରେ।

ସେ କହିଲେ—"ହେ ମହାବାହୁ! ତୁମର ଏ ଅଧମ ସେବକର ଅନ୍ତିମ ପ୍ରଣାମ ଗ୍ରହଣ କର। ଆଉ ତୁମ ଶ୍ରୀମୁଖ ଦର୍ଶନ କରିବାର ସୌଭାଗ୍ୟ ମିଳିବ କି ନାହିଁ ସନ୍ଦେହ। କିନ୍ତୁ ଏଥିରେ ତୁମର କିଛି ଦୋଷ ନାହିଁ, ସବୁ ମୋ କର୍ମର ଫଳ। ମୁଁ ବଡ଼ ଅପରାଧୀ। ମୁଁ କେଡ଼େ ଦୋଷ କରି ନ ଦେଲି ସତେ! ମୁଁ ତୁମର ସେବକ, ତୁମେ ମୋର ସ୍ୱାମୀ। ଅଥଚ କେତେ ଗର୍ବ ମୋର ହୋଇଗଲା ଯେ ମୁଁ ମୋ ମୁଣ୍ଡର ଛଡ଼ାଫୁଲ ତୁମ ମୁଣ୍ଡ ଉପରେ ନିର୍ଭୟରେ ରଖିଦେଲି! ସତରେ, ଯାହା କୁହନ୍ତି ପିମ୍ପୁଡ଼ି ହୋଇ ରୁଖାରେ ଚଢ଼ିବା କଥା, ସେଇଆ ହେଲା ମୋ ଜୀବନରେ। ଛୋଟ ଲୋକ ଯେବେ ଉଚ୍ଚ ପଦକୁ ଯାଏ, ସେ ଗର୍ବରେ କାହାରିକୁ ମାନେ ନାହିଁ। ସାପକୁ ଦୁଗ୍ଧ ଦେଇ ପୋଷିଲେ ସେ ବେଳ ପାଇଲେ ଚୋଟ ମାରେ, ତାହାର ବିଷ ବଢ଼ି ବଢ଼ି ଚାଲେ। ମୁଁ ବି ସେଇ ଶ୍ରେଣୀର। ମୋ ଭଳି ପାପୀ ତୁମର ସେବକ ହେବାର ଯୋଗ୍ୟ ନୁହେଁ। ହାୟ! ଯେଉଁ ପ୍ରଭୁଙ୍କ ପାଦପଦ୍ମରେ ଇନ୍ଦ୍ରାଦି ଦେବତାଙ୍କ ମୁକୁଟମଣ୍ଡିତ ଶିର ଲୋଟିଯାଏ, ଯାହାଙ୍କ ପାଦପଦ୍ମକୁ ଧୌତ କରି ପ୍ରବହମାନ ତ୍ରିଭୁବନ ପାବନକାରୀ ଜଳକୁ ଭଗବାନ ଗଙ୍ଗାଧର ନିଜ ଶିରରେ ଧାରଣ କରନ୍ତି, ଯାହାଙ୍କ ଚରଣକୁ ଶୁକ, ସନକ ଆଦି ବଡ଼ ବଡ଼ ମୁନିଋଷି ଓ ଯୋଗୀମାନେ ଧ୍ୟାନ କରୁଥାନ୍ତି, ମୁଁ ଅଧମ ତାଙ୍କ ମସ୍ତକ ଉପରେ ମୋର ଛଡ଼ାଫୁଲ ରଖିଦେଲି। ମୋର ଏ ଅପରାଧ ପାଇଁ ମୋତେ ଦଣ୍ଡ ନ ଦେଲ କାହିଁକି ପ୍ରଭୁ! ତୁମ ହାତରେ ଚକ୍ର ଅଛି, ଏବେ ମୋର ଶିର କାଟି ମୋ ପରି ପାପୀକୁ ଉଚିତ ଶାସ୍ତି ଦିଅ! ତୁମ ହାତରେ ମରିବା ମୋ ପାଇଁ ଶ୍ରେୟସ୍କର ହେବ। କିନ୍ତୁ ସେ

ରାଜା ହାତରେ ମୋତେ ଦଣ୍ଡ ନ ଦିଅ—ଏତିକି ମୋର ତୁମକୁ ବିନତି। ମୁଁ ଯେତେ ଦୋଷୀ ହେଲେ ବି ତୁମର ସେବକ। ମୋତେ ତୁମେ ଯାହା ଦଣ୍ଡ ଦେବ, ମୋ ପାଇଁ ତାହା ଶିରୋଧାର୍ଯ୍ୟ। ଏଥିରେ ତୁମର ବି ମହତ ରହିବ, ମୋର ବି ମହତ ରହିବ। ଏତେ ବଡ଼ ବଡ଼ ଅସୁର ତୁମର ପାଖରେ ଅପରାଧ କରି ସୁଦ୍ଧା ତୁମ ହାତରେ ମରି ତୁମ ଧାମକୁ ଚାଲିଗଲେ। ମୋତେ ମଧ୍ୟ ତୁମର ଧାମ ମିଳିଯିବ। ଏତିକି ମୋର ସ୍ୱାର୍ଥ ଏବଂ ଏହା ହିଁ ମୋ ପାଇଁ ପରମାର୍ଥ ମଧ୍ୟ।''

ଭକ୍ତ ନିଜ ଦୃଷ୍ଟିରୁ ସିନା ନିଜକୁ ଦୋଷୀ ମନେକରି ଏପରି ଅନୁତାପ କରି କହୁଛି, କିନ୍ତୁ ଭଗବାନ କ'ଣ ତାଙ୍କର ସେବକ ତଥା ଶରଣାଗତ ଭକ୍ତର ଦୋଷ ଧରିବେ? ବାପାଙ୍କ କୋଳରେ ବସି ଅବୋଧ ଶିଶୁ ବାପାଙ୍କର ଦାଢ଼ିକୁ ଟାଣିଲେ ବାପା କ'ଣ ତାହାକୁ ଅପରାଧ ମଣନ୍ତି? ସେ ବରଂ ପିଲାଟିକୁ କୋଳେଇ ନେଇ ଗେଲ କରନ୍ତି। ଏଥରୁ ପୁଅର ବାପାଙ୍କ ପ୍ରତି ସହଜ ଆତ୍ମୀୟତା ବ୍ୟକ୍ତ ହୁଏ। ସେହିପରି ଭଗବାନ ଭକ୍ତର ଏ ବ୍ୟବହାରକୁ ଆତ୍ମୀୟତା ମନେ କରୁଛନ୍ତି। ଭକ୍ତ ଯାହା ବି କରିଛି, ତା' ଦ୍ୱାରା ଭଗବାନଙ୍କ ଉପରେ ତା'ର ଦୃଢ଼ ଆତ୍ମୀୟତା, ପ୍ରଗାଢ଼ ବିଶ୍ୱାସ ଓ ଘନିଷ୍ଠ ସେବ୍ୟ-ସେବକ ଭାବର ସମ୍ବନ୍ଧ ଥିବା କଥା ଭଗବାନଙ୍କୁ ଅନୁଭବ ହେଉଛି। ଭକ୍ତର ଅନାବିଳ ନିର୍ମଳ ନିଷ୍କପଟ ହୃଦୟକୁ ଦେଖି ପ୍ରଭୁ ଆନନ୍ଦିତ ହେଉଥାନ୍ତି ଏବଂ ଭକ୍ତର ମାନ ରକ୍ଷା ପାଇଁ ଏକ ନୂଆ ଅଦ୍ଭୁତ ଲୀଳା କରିବାକୁ ଚାହୁଁଥାନ୍ତି। କିନ୍ତୁ ଅନ୍ତର୍ଯାମୀଙ୍କର ଅନ୍ତର କଥାକୁ ଭକ୍ତ ବା କେମିତି ଜାଣିବ! ଭକ୍ତ କହି ଚାଲିଛି ନିଜ ମର୍ମ ବେଦନାର କାହାଣୀ।

ଭାବବିନୋଦିଆ ଠାକୁର ହାତ, ପାଦ, କାନ ନ ଥିବା ଜଡ଼ ଦାରୁମୂର୍ତ୍ତି ପରି ନୀରବରେ ଠିଆ ହୋଇଥାନ୍ତି। ତାଙ୍କ ରଙ୍ଗ ଅଧରରେ ଫୁଟି ଉଠୁଥାଏ ସ୍ମିତହାସର ଶୋଭା। ମହାପାତ୍ରେ ପ୍ରଭୁଙ୍କ ମୁଖାରବିନ୍ଦକୁ ଚାହିଁ ପୁଣି କହିଲେ, ''ଠିକ୍ ଅଛି। ତୁମକୁ ଯାହା କହିବା କଥା ମୁଁ କହିଦେଲି। ଏଣିକି ତୁମ ଇଚ୍ଛା। ରଖିଲେ ରଖିବ, ମାରିଲେ ମାରିବ। ଆଉ ଅଧିକ କ'ଣ କହିବି? ତୁମେ ତ ଅନ୍ତର୍ଯାମୀ। ମୁଁ କାହିଁକି ରାଜାଙ୍କ ଆଗରେ ମିଛ କହିଲି, ତାହା ବି ତୁମେ ଜାଣ। କେବଳ ରାଜଦଣ୍ଡ ଭୟରେ। ଆଜି ରାତିକ ଭିତରେ ତୁମେ ଯଦି କିଛି ପ୍ରତିକାର କରିବ କର; ନଚେତ୍ ରାତି ପାହିଲେ ରାଜା ମୋତେ ଧରି ଆଣିବ। ମୁଁ ତୁମ ମସ୍ତକରେ କେଶ ଦେଖାଇ ନ ପାରିଲେ ମୋତେ ନିଶ୍ଚୟ ଦଣ୍ଡ ଦେବ। କିନ୍ତୁ ଜାଣିରଖ ପ୍ରଭୁ ରାତି ପାହିବା ପୂର୍ବରୁ ମୁଁ ନିଶ୍ଚୟ ବିଷ ଖାଇ ପ୍ରାଣ ହରାଇଦେବି।''

ଏହିପରି ନିଜ ମନର କଷ୍ଟ ଜଣାଇ ଭକ୍ତ ତିଳକ୍ଷ ମହାପାତ୍ର ସାଷ୍ଟାଙ୍ଗ ପ୍ରଣାମ କଲେ ପ୍ରଭୁଙ୍କୁ। ପହଡ଼ ପକାଇ ସେ ନିଜ ଘରକୁ ଫେରିଗଲେ। ସମସ୍ତ ସେବକ ମଧ୍ୟ ନିଜ ନିଜ ଘରକୁ ଚାଲିଗଲେ। ମହାପାତ୍ରେ ରାତ୍ରି ପାହିଲେ ବିଷ ଖାଇ ମରିବେ ବୋଲି ବିଷ ଆଣି ଶଯ୍ୟା ପାଖରେ ରଖିଲେ। କିଛି ନ ଖାଇ ନ ପିଇ ଉପବାସରେ ପ୍ରଭୁଙ୍କୁ ସ୍ମରଣ କରୁ କରୁ କେତେବେଳେ ତାଙ୍କ ଆଖିକୁ ନିଦ ଆସିଯାଇଛି। ସେଇଠି ସେ ବିଛଣାରେ ଶୋଇ ପଡ଼ିଥାନ୍ତି। ନେତ୍ରରୁ ଅଶ୍ରୁଧାରା ଗଡ଼ି ତକିଆ ଭିଜି ଯାଇଥାଏ। ଗଣ୍ଡସ୍ଥଳରେ ମଧ୍ୟ ସ୍ପଷ୍ଟ ଦିଶୁଥାଏ ଶୁଖିଲା ଅଶ୍ରୁଧାରାର ଚିହ୍ନ। ଏହି ସମୟରେ ପ୍ରଭୁ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ—"ଆରେ, ତୁ ମୋର ସେବକ ହୋଇ ଏତେ ଚିନ୍ତା କାହିଁକି କରୁଛୁ? ମୁଁ ଥାଉ ଥାଉ ସେ ରାଜା ତୋର କ'ଣ କରି ପାରିବ? ତା'ଛଡ଼ା ତୁ ଯେଉଁ କଥା ପାଇଁ ଡରୁଛୁ, ତାହା ସମ୍ପୂର୍ଣ୍ଣ ନିରାଧାର। ମୁଁ ଏକବାର ଟାଙ୍ଗରା ନୁହେଁ। ମୋ ମୁଣ୍ଡରେ କେଶ ଅଛି। ଯଦି ତୁ ବିଶ୍ୱାସ ନ କରୁଛୁ, କାଲି ବଡ଼ି ଭୋରୁ ଉଠି ଦେଖିବୁ ଏବଂ ରାଜା ଆସିଲେ ତାକୁ ଦେଖାଇଦେବୁ।" ଏତିକି କହି ପ୍ରଭୁ ଅନ୍ତର୍ହିତ ହୋଇଗଲେ।

ଅବଶ୍ୟ ପ୍ରଭୁଙ୍କ ପାଇଁ ଏହା କିଛି ବଡ଼ କଥା ନୁହେଁ। ଯିଏ ତାଙ୍କୁ ହାତ, ଗୋଡ଼ ଓ କର୍ଣ୍ଣ ନ ଥିବା ଦାରୁମୂର୍ତ୍ତି ବୋଲି ବୁଝିଛି, ତା' ପାଇଁ ପ୍ରଭୁ ଦାରୁମୂର୍ତ୍ତି। ଆଉ ଦାରୁମୂର୍ତ୍ତିରେ ଯେପରି ହାତ-ଗୋଡ଼ ନାହିଁ, ସେହିପରି କେଶ ବି ନାହିଁ; କିନ୍ତୁ ଯେଉଁ ଭକ୍ତ ତାଙ୍କୁ କୁଞ୍ଚିତ ଚୁଳିଆ କାଇଁଚ ମାଳିଆ ନଟବର ଶ୍ରୀକୃଷ୍ଣଙ୍କର ଅଭିନ୍ନ ସ୍ୱରୂପ ବୋଲି ଭାବେ, ତା' ପାଇଁ ସେହି ରୂପ ହେବା ପ୍ରଭୁଙ୍କ ପକ୍ଷେ ବା କେଉଁ ବିଚିତ୍ର କଥା! ଭକ୍ତର ଭାବ ଅନୁସାରେ ହିଁ ପ୍ରଭୁ ପ୍ରକଟିତ ହୁଅନ୍ତି। ସେ ନିରାକାର ହୋଇ ମଧ୍ୟ ସାକାର ହୁଅନ୍ତି, ଅଜ ହୋଇ ମଧ୍ୟ ଜନ୍ମ ନିଅନ୍ତି, ଅବିନାଶୀ ହୋଇ ମଧ୍ୟ ଭକ୍ତର ଭାବନା ଅନୁସାରେ କଳେବର ତ୍ୟାଗ କରନ୍ତି। ପୁଣି ଏ କଥା ବା କେଉଁ ବିଚିତ୍ର! ଅସ୍ତୁ।

ପ୍ରଭୁଙ୍କର ସ୍ୱପ୍ନାଦେଶରେ ତିଳକ୍ଷ ମହାପାତ୍ରଙ୍କ ମନ ପ୍ରଫୁଲ୍ଲିତ ହୋଇଗଲା। ସେହି କଥାକୁ ଭାବି ଭାବି ରାତି ବିତିଗଲା। ପାହାନ୍ତା ହେବା ମାତ୍ରେ ସେ ଶୀଘ୍ର ଶୀଘ୍ର ସ୍ନାନ ସାରି ମନ୍ଦିର ଫିଟାଇଲେ। ମନ ଛନ ଛନ ହେଉଥାଏ ପ୍ରଭୁଙ୍କ ଦର୍ଶନ କରିବାକୁ। ସେ ଦୀପମାନ ଜଳାଇ ଯାଇ ପହଞ୍ଚିଲେ ରତ୍ନସିଂହାସନ ନିକଟରେ। ପ୍ରଥମେ ସାଷ୍ଟାଙ୍ଗ ଦଣ୍ଡବତ କରି ସାରି ଚାହିଁଦେଲେ ପ୍ରଭୁଙ୍କ ଶ୍ରୀମୁଖକୁ। ଏ କି ଅଦ୍ଭୁତ ଦୃଶ୍ୟ ଆଜି ସେ ଦେଖୁଛନ୍ତି! କେବେ ବି ସେ ଏ ଦୃଶ୍ୟ ଦେଖି ନ ଥିଲେ।

କଳା କଳା କେଶଗୁଚ୍ଛ ଦିଶୁଛି ପ୍ରଭୁଙ୍କ ମସ୍ତକରେ। କଡ଼କୁ ଯାଇ ଦେଖିଲେ ଯେ କେଶଗୁଚ୍ଛ ପୃଷ୍ଠଦେଶ ଦେଇ ଲମ୍ବିଛି କଟି ପର୍ଯ୍ୟନ୍ତ। ଆଶ୍ଚର୍ଯ୍ୟ ଓ ଆନନ୍ଦରେ ସେ ଭାବ ବିଭୋର ହୋଇଗଲେ। ଆଖିର ଅମାନିଆ ଲୁହକୁ ରୋକି ପାରିଲେ ନାହିଁ। ପ୍ରଭୁଙ୍କର କରୁଣା ଦେଖି ତାଙ୍କ ହୃଦୟ ଗଦ୍‌ଗଦ ହୋଇଗଲା। କେବଳ ପ୍ରଭୁଙ୍କୁ ବାରମ୍ବାର ସାଷ୍ଟାଙ୍ଗ ପ୍ରଣିପାତ କରିବା ଛଡ଼ା ସେ ଆଉ ଅଧିକ କିଛି କରି ପାରୁ ନ ଥାନ୍ତି। କିଛି କ୍ଷଣ ପରେ ସେ ପ୍ରକୃତିସ୍ଥ ହେଲେ। ପ୍ରଭୁଙ୍କ ଅଦ୍ଭୁତ ଲୀଳା ଓ ଭକ୍ତବତ୍ସଳତାକୁ ସ୍ମରଣ କରି କରି ଆନନ୍ଦ ମନରେ ସେବା କାର୍ଯ୍ୟରେ ଲାଗିଗଲେ।

ସକାଳ ହେଲା। ରାଜା ପ୍ରତାପରୁଦ୍ର ବ୍ରାହ୍ମଣର ମିଥ୍ୟା ବୟାନକୁ ମନରୁ ଭୁଲି ପାରୁ ନ ଥାନ୍ତି। ସେ ଦିଅଁଙ୍କ ଦର୍ଶନ କରିବା ନିମନ୍ତେ ବାହାରିଲେ। ମନ୍ଦିରରେ ପ୍ରବେଶ କରି ପ୍ରଥମେ ପ୍ରଭୁମାନଙ୍କୁ ନମସ୍କାର କଲେ। ତା'ପରେ ତିଳଛ ମହାପାତ୍ରଙ୍କୁ କହିଲେ, ''ମହାପାତ୍ରେ! ଏଥର ମୋତେ ପ୍ରଭୁଙ୍କ କେଶ ଦେଖାଅ। କାଲି ସିନା ମିଛ କହି ବଞ୍ଚିଗଲ। ହେଲେ ଆଜି ପୁଣି କ'ଣ କହିବ?'' ମହାପାତ୍ରେ ପ୍ରଭୁଙ୍କ ବଳରେ ବଳିଆର। ସେ ନିର୍ଭୟରେ ଉତ୍ତର ଦେଲେ—''ମଣିମା! ମୁଁ ବା କ'ଣ ଆପଣଙ୍କୁ ଦେଖାଇବି, ଆପଣ ସାକ୍ଷାତେ ନିଜେ ଯାଇ ଦେଖନ୍ତୁ।''

ରାଜା ପ୍ରଭୁଙ୍କ ପଛପଟକୁ ଯାଇ ଦେଖିଲେ ଯେ କଳା ମଚମଚ କେଶ ଜଟା ପରି ଲମ୍ବିଛି କଟି ପର୍ଯ୍ୟନ୍ତ। ରାଜା ଭାବିବାକୁ ଲାଗିଲେ, ଏହା କିପରି ସମ୍ଭବ ହେଲା! ହୁଏତ ଜଉ କି ମହମ ଦ୍ୱାରା ଏ କେଶ ଲଗାଇ ମୋତେ ଭଣ୍ଡିବାକୁ ଚେଷ୍ଟା କରିଛି। କିନ୍ତୁ ଏତେ କେଶ ତ ଏଭଳି ଉପାୟରେ ଏତେ ସୁନ୍ଦର ଭାବରେ ଲଗାଇବା ସମ୍ଭବ ନୁହେଁ। ସେ ଆଶ୍ଚର୍ଯ୍ୟରେ ପଡ଼ିଗଲେ ଏବଂ ଏହାର ସତ୍ୟାସତ୍ୟ ପରୀକ୍ଷା କରିବାକୁ ସେଥିରୁ କେତୋଟି ବାଳ ଧରି ଝିଙ୍କିଦେଲେ। ବାଳ ଉପୁଡ଼ିଯିବା ମାତ୍ରେ ପ୍ରଭୁଙ୍କ ମସ୍ତକରୁ ଧାର ଧାର ରୁଧିର ବାହାରି ଆସିଲା। ରକ୍ତ ଦେଖି ରାଜାଙ୍କ ମୁଣ୍ଡ ଘୂରିଗଲା। କେତେ ବଡ଼ ଅପରାଧ କଲେ ସେ! ସାକ୍ଷାତ୍ ପ୍ରଭୁଙ୍କୁ ସେ ଦାରୁ ମନେକରି ପରୀକ୍ଷା କଲେ! ତତ୍‌କ୍ଷଣାତ୍ ସେ ନିଜର ଭୁଲ୍ ପାଇଁ କ୍ଷମା ମାଗି ଭକ୍ତ ବ୍ରାହ୍ମଣଙ୍କ ପାଦତଳେ ଲୋଟିଗଲେ। ସେ ଶୋକ ଗଦ୍‌ଗଦ ହୋଇ କହିଲେ—''ହେ ଦ୍ୱିଜବର! ମୋ ଅପରାଧ କ୍ଷମା କର। ମୁଁ ନିତାନ୍ତ ମୂର୍ଖ। ରାଜମଦର ଅଭିମାନରେ ପ୍ରଭୁଙ୍କ ମହିମାକୁ ମୁଁ ଜାଣି ପାରି ନ ଥିଲି। ତାଙ୍କର ଭକ୍ତବତ୍ସଳତାକୁ ଭୁଲି ଯାଇଥିଲି। ସେଥିପାଇଁ ଆପଣଙ୍କ ପରି ଭକ୍ତଙ୍କୁ ଦଣ୍ଡିତ କରିବାକୁ ମୁଁ ମନସ୍ଥ କରିଥିଲି। ଆଜି ପ୍ରଭୁଙ୍କ ପାଖରେ ମୁଁ ଯେଉଁ ଅପରାଧ କରିଛି, ତାହା ପ୍ରଭୁ ମୋତେ କଦାପି କ୍ଷମା

ଦେବେ ନାହିଁ। ଆପଣ ହିଁ କ୍ଷମା କରିବେ। କାରଣ ପ୍ରଭୁ ଆପଣଙ୍କ ପାଇଁ ଆଜି ଏ ଲୀଳା ରଚିଛନ୍ତି। ଭକ୍ତର ଅପମାନ ହେଲେ ତାହା ତାଙ୍କୁ ନିଜର ଅପମାନଠାରୁ ଅଧିକ ମନେହୁଏ। ଭଗବାନ ଭକ୍ତର ଅପମାନକୁ ସହି ପାରନ୍ତି ନାହିଁ।''

ଭକ୍ତର କୋମଳ ହୃଦୟ ଏତେ ବଡ଼ ରାଜାଙ୍କୁ ପାଦତଳେ ପଡ଼ି କ୍ଷମା ମାଗିବା ଦେଖି ସହି ପାରିଲା ନାହିଁ। ମହାପାତ୍ରେ ତୁରନ୍ତ ରାଜାଙ୍କ ଦୁଇ ବାହୁକୁ ଧରି ତଳୁ ଉଠାଇ କୋଳାଗ୍ରତ କଲେ। କହିଲେ—''ରାଜନ୍! ଆପଣ ଏ କ'ଣ କରୁଛନ୍ତି! ମୁଁ ଛାର ଅଧମ ମହାପାପୀ। ପ୍ରକୃତରେ ମୁଁ ହିଁ ଦୋଷୀ। ମୁଁ ମୋ ମୁଣ୍ଡର ଫୁଲ ଠାକୁରଙ୍କ ମସ୍ତକରେ ରଖିଥିଲି ଏବଂ ଦଣ୍ଡରୁ ରକ୍ଷା ପାଇବା ପାଇଁ ଆପଣଙ୍କ ଆଗରେ ମିଥ୍ୟା ମଧ୍ୟ କହିଥିଲି। କିନ୍ତୁ ପ୍ରଭୁ ତ କରୁଣାସାଗର। ସେ ମୋ ପରି ଅଧମ ସେବକର ଅପରାଧ ନ ଧରି ମୋତେ ରକ୍ଷା କରିବାକୁ ଏ ଅଦ୍ଭୁତ ଲୀଳା କରିଛନ୍ତି। ଏଥିରେ ମୋର କିଛି ମହିମା ନାହିଁ। ଏହା ତ ଶରଣାଗତରକ୍ଷକ ପ୍ରଭୁଙ୍କର ଅହେତୁକୀ କୃପା।''

ଏତିକି କହି ଦୁହେଁ ନିଜ ନିଜର ଅପରାଧ ପାଇଁ ପ୍ରଭୁଙ୍କୁ କ୍ଷମା ମାଗିଲେ। ଦୁହେଁ ତଳୁ ଉଠି ପୁଣି ଥରେ ପ୍ରଭୁଙ୍କ ପଛପଟକୁ ଗ୍ରହିଁଦେଲା ବେଳକୁ ପ୍ରଭୁଙ୍କ କେଶ କେଉଁଆଡ଼େ ଉଭେଇଯାଇଛି। ରାଜା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମହିମା ଜାଣିଗଲେ। ସେ ହାତଯୋଡ଼ି ଗଦ୍‌ଗଦ କଣ୍ଠରେ ପ୍ରଭୁଙ୍କୁ ସ୍ତୁତି କରି କହିଲେ— ''ହେ ଜଗନ୍ନାଥ! ଆଜି ମୁଁ ତୁମର ମହିମା ସ୍ୱଚକ୍ଷୁରେ ଦେଖିଲି। ପ୍ରଭୁ! ତୁମର ଭକ୍ତ ତୁମର ଅତି ଆପଣାର। ତୁମେ ତା'ଠାରୁ ଭିନ୍ନ ନୁହଁ। ଭକ୍ତ ପାଇଁ ତୁମେ ସବୁକିଛି କରିପାର। ହେ ମହାପ୍ରଭୁ! ମୁଁ ଛାର ମାନବ ତୁମର ମହିମାକୁ କ'ଣ ବା ବୁଝିବି, ଦେବଗଣ ମଧ୍ୟ ତାହା ବୁଝି ନ ପାରି ବଣା ହୁଅନ୍ତି। ତେଣୁ ମୋ ଅପରାଧ କ୍ଷମା କର।'' ରାଜା ଏହିପରି ଅନେକ ମତେ ପ୍ରଭୁଙ୍କୁ ସ୍ତୁତି କଲେ ଏବଂ ତା'ପରେ ନାନା ପ୍ରକାର ନୈବେଦ୍ୟ ଅର୍ପଣ କଲେ। ଏହାପରେ ଭକ୍ତ ତିଳକ୍ଷ ମହାପାତ୍ରଙ୍କୁ ନାନା ପ୍ରକାର ଧନବସ୍ତ୍ର ଆଦି ପ୍ରଦାନ କରି ନିଜ ଉଆସକୁ ଫେରିଗଲେ।

ଭକ୍ତ ତିଳକ୍ଷ ମହାପାତ୍ର ପ୍ରଭୁଙ୍କ ମହିମା ଦେଖି ଆହୁରି ଅଧିକ ତନ୍ମୟ ହୋଇ ପ୍ରଭୁଙ୍କ ସେବା କରିବାକୁ ଲାଗିଲେ। ସେ ପ୍ରଭୁଙ୍କ ସେବା, କୀର୍ତ୍ତନ ଓ ସ୍ମରଣରେ ସମଗ୍ର ଜୀବନକୁ ସାର୍ଥକ କରିବା ସହିତ ଦେହ ତ୍ୟାଗ କରି ପରମ ପଦର ଅଧିକାରୀ ହେଲେ।



# ଅତିବଡ଼ୀ ଜଗନ୍ନାଥ ଦାସ

ପଞ୍ଚଦଶ ଶତାବ୍ଦୀରେ ପୁରୀ ଜିଲ୍ଲାର କପିଳେଶ୍ୱର ପୁର ଶାସନରେ ବାସ କରୁଥିଲେ ପୁରାଣ ପଣ୍ଡା ଶ୍ରୀ ଭଗବାନ ଦାଶ। ସେ ତାଙ୍କର କୌଳିକ ବୃତ୍ତିକୁ ଅବଲମ୍ବନ କରି ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ପୁରାଣ ପାଠ କରୁଥିଲେ। ତାଙ୍କର ଧର୍ମପତ୍ନୀଙ୍କ ନାମ ଥିଲା ପଦ୍ମାବତୀ। ଗୃହସ୍ଥାଶ୍ରମୀ ହୋଇଥିଲେ ସୁଦ୍ଧା ପୂର୍ବଜନ୍ମର କୌଣସି କର୍ମଫଳ ହେତୁ ସେମାନଙ୍କର କୋଳ ଦୀର୍ଘ ଦିନ ପର୍ଯ୍ୟନ୍ତ ରିକ୍ତ ରହିଥିଲା। ବଂଶରକ୍ଷା ପାଇଁ ସେମାନେ ନାନା ଉପାୟ କରି ମଧ୍ୟ ବିଫଳ ହେଲେ। ଶେଷରେ ଶ୍ରୀଜଗନ୍ନାଥଙ୍କ ନିକଟରେ ସନ୍ତାନଟିଏ ପାଇଁ ପ୍ରାର୍ଥନା କଲେ। ହୁଏତ ଏହା ପ୍ରଭୁ ଶ୍ରୀଜଗନ୍ନାଥଙ୍କର କୌଣସି ବିଧାନ ହୋଇପାରେ ଯେ ଗୁଣହୀନ ଅନେକ ସନ୍ତାନ ଅପେକ୍ଷା ଗୋଟିଏ ବଂଶ ଉଜ୍ଜ୍ୱଳକାରୀ ଓ ଜଗତଉଦ୍ଧାରକ ପୁତ୍ର ଦେବାକୁ ସେ ଚାହୁଁଥିଲେ। ତେଣୁ ସେମାନଙ୍କ ଗୁହାରୀ ଶୁଣିଲେ ପ୍ରଭୁ ଶ୍ରୀଜଗନ୍ନାଥ। ୧୪୮୭ ମସିହା ଭାଦ୍ରବ ଶୁକ୍ଳ ଅଷ୍ଟମୀ ଦିନ ଅତ୍ୟନ୍ତ ସୁନ୍ଦର ଓ ଶୁଭ ବେଳାରେ ପଦ୍ମାବତୀଙ୍କ କୋଳମଣ୍ଡନ କଲା ସୁନ୍ଦର ଶିଶୁଟିଏ। ସେହି ଶିଶୁଟି ଶ୍ରୀଜଗନ୍ନାଥଙ୍କ କୃପା ପ୍ରଦତ୍ତ ହୋଇଥିବାରୁ ପିତାମାତା ତା'ର ନାମ ରଖିଲେ ଜଗନ୍ନାଥ। ପିତା ଭଗବାନ ଦାଶ ବାଳକ ଜଗନ୍ନାଥଙ୍କର ୪ବର୍ଷ ବୟସରେ କର୍ଣ୍ଣବେଧ ଓ ୮ ବର୍ଷ ବୟସରେ ଉପନୟନ ସଂସ୍କାର ସମ୍ପନ୍ନ କରିଦେଲେ। ବାଳକ ଜଗନ୍ନାଥ ବିଦ୍ୟା ଅଧ୍ୟୟନ କ୍ଷେତ୍ରରେ ଖୁବ୍ ଶୀଘ୍ର ଉନ୍ନତି କରିଗଲେ। ସେ ଅତ୍ୟନ୍ତ ମେଧାବୀ, ଧୀର, ଶାନ୍ତ ଓ ବିବେକଶୀଳ ଥିଲେ। ତୁଳସୀ ଦୁଇ ପତ୍ରରୁ ବାସିବା ପରି ତାଙ୍କଠାରେ ବାଲ୍ୟକାଳରୁ ହିଁ ଦିବ୍ୟଗୁଣ ପ୍ରକାଶ ପାଇଥିଲା। ସେ ଖୁବ୍ କମ୍ ସମୟ ମଧ୍ୟରେ ଗୀତା, ରାମାୟଣ, ମହାଭାରତ ଓ ଶ୍ରୀମଦ୍‌ଭାଗବତର ଟୀକାମାନ ଅଧ୍ୟୟନ କରି ବିପୁଳ ଜ୍ଞାନର ଅଧିକାରୀ ହୋଇଗଲେ। ବ୍ୟାକରଣ ଓ ବେଦାନ୍ତର ଅନେକ ଅଂଶ କଣ୍ଠସ୍ଥ କରିନେଲେ। ଷଡ଼ଦର୍ଶନରେ ମଧ୍ୟ ତାଙ୍କର ଉତ୍ତମ ଜ୍ଞାନ ହୋଇଗଲା। ତାଙ୍କୁ ମାତ୍ର ୧୨ ବର୍ଷ ହୋଇଥିବା ବେଳେ ପିତା ତାଙ୍କର ବିବାହ କରିବାକୁ ଉଦ୍ୟମ କଲେ। ମାତ୍ର ତାଙ୍କଠାରେ ଆଧ୍ୟାତ୍ମିକ ଚେତନାର ସ୍ୱାଭାବିକ ଉନ୍ମେଷ ହୋଇଥିବା ହେତୁ ସାଂସାରିକ କାର୍ଯ୍ୟର ନିରର୍ଥକତା ତାଙ୍କୁ ଖୁବ୍ ଶୀଘ୍ର ଅନୁଭବ ହୋଇଯାଇଥିଲା। ତେଣୁ ସେ ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ।

ସାଧାରଣତଃ ପିତାମାତାଙ୍କ ମନରେ ପୁତ୍ରର ବିବାହ ଓ ନିଜର ବଂଶରକ୍ଷା

ପାଇଁ ଅଧିକ ଆଗ୍ରହ ଥାଏ; ମାତ୍ର ପୁତ୍ର ଜଗନ୍ନାଥର ଭକ୍ତିରେ ଗଭୀର ଅଭିନିବେଶ ଦେଖି ସେମାନେ ତାଙ୍କୁ ଅଧିକ ବାଧ୍ୟ କରି ପାରୁ ନ ଥିଲେ। ଦୈବଯୋଗକୁ ତାଙ୍କର ଯୌବନାବସ୍ଥାର ଅବ୍ୟବହିତ ପୂର୍ବରୁ ତାଙ୍କର ପିତୃବିୟୋଗ ଘଟିଗଲା। ପରିବାରରେ ରହିଗଲେ କେବଳ ମାଆପୁଅ ଦୁଇଜଣ। ଜଗନ୍ନାଥ ମାଆଙ୍କୁ ବହୁ ଧାର୍ମିକ ଓ ଅଧ୍ୟାତ୍ମିକ ରହସ୍ୟ ବୁଝାଇ କୌଣସି ପ୍ରକାରେ ତାଙ୍କୁ ବିବାହ କରାଇବାର ଦୁରାଗ୍ରହରୁ ମୁକ୍ତ କଲେ। ସେ ମାଆଙ୍କୁ ବୁଝାଇ କହିଲେ—"ମାଆ! ତୁମେ ମୋ ପାଇଁ ଚିନ୍ତା କର ନାହିଁ। ସମଗ୍ର ସଂସାରର ଚିନ୍ତା ଯେ କରୁଛନ୍ତି, ସେ କ'ଣ ମୋ ଚିନ୍ତା କରିବେ ନାହିଁ? ତୁମେ ନିଜର ପରଲୋକ ପାଇଁ ଚିନ୍ତା କର। ନିଜ ଜୀବନକୁ ଭଗବଦ୍‌ଭଜନ, ସ୍ମରଣରେ ବ୍ୟତୀତ କର। ବାକି ରହିଲା ତୁମର ସେବା କଥା। ଜାଣିରଖ ଯେ ମୁଁ ଯେପର୍ଯ୍ୟନ୍ତ ଅଛି, ତୁମର ସେବାରେ ତିଳେମାତ୍ର ତ୍ରୁଟି ହେବ ନାହିଁ।" ଏହିପରି ମାଆଙ୍କୁ ସନ୍ତୁଷ୍ଟ କରାଇ କିଛି ଦିନ ପରେ ନିଜେ ପିତାଙ୍କର ପଦରେ ଆସୀନ ହୋଇ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ପୁରାଣ ପଢ଼ିବାର ପରମ୍ପରାକୁ ବୃତ୍ତିରୂପେ ଗ୍ରହଣ କଲେ। କ୍ରମେ କ୍ରମେ ସଂସାର ପ୍ରତି ବୈରାଗ୍ୟ ତାଙ୍କର ତୀବ୍ରତର ହେଲା; ମାତ୍ର ମାତୃସେବାକୁ ସେ ବୈରାଗ୍ୟ ପଥର ପ୍ରତିବନ୍ଧକ ବୋଲି କେବେ ବି ଭାବି ନ ଥିଲେ। ମାଆଙ୍କର ସେବା ସହିତ ନିଜ ଜୀବନକୁ ଭଗବଦ୍‌ଆରାଧନାମୟ କରି ସେ ଆଗେଇ ଚାଲିଲେ ପାରମାର୍ଥିକ ପଥରେ। ଭଗବଦ୍‌ବିଶ୍ୱାସ ଓ ଭକ୍ତି ହିଁ ଥିଲା ତାଙ୍କର ପାଥେୟ।

ସମ୍ଭବତଃ ପିତାଙ୍କ ଦେହାନ୍ତ ହେବାପରେ ଓ ଜଗନ୍ନାଥ ସେହି କାର୍ଯ୍ୟ ସମ୍ଭାଳିବା ପୂର୍ବରୁ ଅନ୍ୟ କେହି ପୁରାଣପଣ୍ଡା କିଛି କାଳ ପୁରାଣ ଶୁଣାଉଥିଲେ। ସେ କାଳରେ ସଂସ୍କୃତରେ ରଚିତ ପୁରାଣ ଶାସ୍ତ୍ରାଦି ବିଷୟରେ ଜ୍ଞାନ ଲାଭ କରିବା କେବଳ ସଂସ୍କୃତଜ୍ଞ ବିଦ୍ୱାନ୍ ଓ ପୁରାଣପଣ୍ଡାଙ୍କ ମୁଖନିଃସୃତ ଚର୍ଚ୍ଚା ବ୍ୟତୀତ ଅନ୍ୟତ୍ର ଦୁର୍ଲଭ ଥିଲା। ଏହି ଦୃଷ୍ଟିରୁ ଜିଜ୍ଞାସୁ ଶ୍ରୋତାଗଣଙ୍କୁ ଯଥାସମୟରେ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇ ବକ୍ତାଙ୍କ ମୁଖରୁ ଶାସ୍ତ୍ରାଦି ଶ୍ରବଣ କରିବାକୁ ପଡୁଥିଲା। ବିଳମ୍ବ ହୋଇଗଲେ ସେହି ପ୍ରସଙ୍ଗ ହାତଛଡ଼ା ହୋଇଯାଉଥିଲା। ଥରେ ଜଗନ୍ନାଥଦାସଙ୍କ ମାଆ କାର୍ତ୍ତିକ ହବିଷ ସମୟରେ ଭାଗବତ ଶ୍ରବଣ କରୁଥାନ୍ତି। କୌଣସି ଏକ ପ୍ରକରଣକୁ ବୁଝି ନ ପାରି ସେ ପ୍ରସଙ୍ଗକୁ ସ୍ପଷ୍ଟ କରିବା ନିମିତ୍ତ ବକ୍ତାଙ୍କୁ ନିବେଦନ କଲେ, ମାତ୍ର ବକ୍ତା ଅଭିମାନବଶତଃ ତାଙ୍କୁ ଜଣେ ମୂଢ଼ା ନାରୀ ବୋଲି କହି କେଇପଦ ତିରସ୍କାରପୂର୍ଣ୍ଣ ଉକ୍ତି ଶୁଣାଇ ଦେଲେ। ଭୂତପୂର୍ବ ପୁରାଣପଣ୍ଡାଙ୍କ ପତ୍ନୀ

ପଦ୍ମାବତୀଙ୍କ ହୃଦୟକୁ ତାଙ୍କର ସେହି କଟୁବାକ୍ୟ ଆନ୍ଦୋଳିତ କଲା। ସେ ଘରକୁ ଯାଇ ପୁତ୍ର ଜଗନ୍ନାଥଙ୍କୁ କହିଲେ—''ବାବୁରେ! ତୁ ଏତେ ଶାସ୍ତ୍ର ପୁରାଣ ପଢ଼ିଛୁ, ଏ ସଂସ୍କୃତ ଭାଗବତକୁ ତୁ କ'ଣ ଆମ ବୁଝିବା ଭଳି ଭାଷାରେ ଲେଖି ଦେଇ ପାରିବୁ ନାହିଁ। ଏତକ କାମ ଯଦି ତୁ କରି ଦେଇ ପାରନ୍ତୁ, ତେବେ ଆମେ ଆଉ ସେ ପୁରାଣପଣ୍ଡାଙ୍କ ମୁହଁକୁ ଗ୍ରହିଁ ବସନ୍ତୁ ନାହିଁ।''

ମାଆଙ୍କର ଏହି ଇଚ୍ଛା ସତେ ଯେପରି ସମଗ୍ର ଉତ୍କଳର ସାଧାରଣ ନର-ନାରୀଙ୍କ ଅନ୍ତର୍ହୃଦୟର ନିବେଦନ ରୂପେ ପ୍ରତିଧ୍ୱନିତ ହେଲା ଜଗନ୍ନାଥଦାସଙ୍କ କର୍ଣ୍ଣକୁହରରେ। ଏଣେ ମାନବଜୀବନର ପରମ ଲକ୍ଷ୍ୟ ପ୍ରାପ୍ତି ନିମିତ୍ତ ପ୍ରଭୁଙ୍କ ଠାରୁ କିଛି ନିର୍ଦ୍ଦେଶ ପାଇବାକୁ ପ୍ରବଳରୁ ପ୍ରବଳତର ହେଉଥାଏ ତାଙ୍କର ଅଭୀପ୍ସା। କ'ଣ କଲେ ଓ କେଉଁ ସାଧନା କିପରି କଲେ ସେ ପ୍ରଭୁଙ୍କୁ ଶୀଘ୍ର ପାଇ ପାରିବେ, ତାହା ତାଙ୍କ ହୃଦୟରେ ଅହର୍ନିଶ ଉଙ୍କି ମାରୁଥାଏ। ନିଶିଦିବସ ପ୍ରଭୁଙ୍କ ବିନା ବ୍ୟାକୁଳ ହେଉଥାନ୍ତି। ପ୍ରଭୁଙ୍କ ଦର୍ଶନ ପାଇବାକୁ ମନ ଉତ୍ସୁକ ହେଉଥାଏ। ଥରେ ରାତିରେ ବିଛଣାକୁ ଗଲେ ଭକ୍ତ ଜଗନ୍ନାଥ ଦାସ। ବିରହ ବ୍ୟାକୁଳତାରେ ଆଖିକୁ ନିଦ ଆସୁ ନ ଥାଏ। ମନରେ ଏକମାତ୍ର ଚିନ୍ତା, ସେ ପ୍ରଭୁଙ୍କ ଅନୁଗ୍ରହ କିପରି ପ୍ରାପ୍ତ ହେବେ। ଶୋଇ ରହି ଏହିପରି ପ୍ରଭୁଙ୍କୁ ସ୍ମରଣ କରୁଥାନ୍ତି। ନେତ୍ର କୋଣରୁ ଝରୁଥାଏ ଅବାରିତ ଅଶ୍ରୁର ଅବିଚ୍ଛିନ୍ନ ଧାରା। ଅଶ୍ରୁର ସେଇ ନୀରବ ଶୀତଳ ଧାରା ଗଣ୍ଡସ୍ଥଳକୁ ପ୍ଲାବିତ କରି ତକିଆକୁ ମଧ୍ୟ ଆର୍ଦ୍ର କରିଦେଉଥାଏ। ହୃଦୟର ଅବ୍ୟକ୍ତ ଭାଷା ଓ ଆବେଗପୂର୍ଣ୍ଣ ଭାବରେ ମନେ ମନେ ପ୍ରାର୍ଥନା କରି କହୁଥାନ୍ତି—ହେ ପ୍ରଭୁ! ତୁମେ ତ ସମସ୍ତଙ୍କର ଅନ୍ତରରେ ବିଦ୍ୟମାନ। ମୋର ଅନ୍ତର କଥା କଣ ତୁମେ ଜାଣ ନାହିଁ? ତୁମକୁ ମୁଁ କ'ଣ ବା ଜଣାଇବି? ମୋର ଏକମାତ୍ର ଚିନ୍ତା ତୁମେ। ମୁଁ ତୁମର ଦାସ। ମୋର ଜୀବନର ପରମ ଗତି ମଧ୍ୟ ତୁମେ। ପ୍ରଭୁ! ମୁଁ ଏ କର୍ମ ଜଞ୍ଜାଳରେ ପଥଭ୍ରାନ୍ତ ହୋଇଯାଇଛି। କେଉଁ ସାଧନା କଲେ ତୁମେ ଖୁସୀ ହେବ, ମୁଁ କିଛି ଜାଣି ପାରୁ ନାହିଁ। କେବଳ ଏତିକି କୃପା କର—ତୁମ ଶ୍ରୀମୁଖରେ ମୋତେ କିଛି ଆଦେଶ ଦିଅ। ମୋତେ ମୋ ଜୀବନ ବିଷୟରେ କିଛି ଦିଗ୍‌ଦର୍ଶନ ଦିଅ।''

ଏହିପରି ପ୍ରାର୍ଥନା କରୁ କରୁ କେତେବେଳେ ତାଙ୍କୁ ନିଦ୍ରା ଆସିଯାଇଛି। ପ୍ରଭୁ ଭକ୍ତର ସତ୍ ପ୍ରାର୍ଥନା, ସତ୍ ଉଦ୍ଦେଶ୍ୟକୁ କେବେ ଉପେକ୍ଷା କରି ପାରନ୍ତି ନାହିଁ। ଅସତ୍ ବସ୍ତୁ କାମନା କରି କେହି ଭଗବାନଙ୍କୁ ପ୍ରାର୍ଥନା କଲେ, ଭଗବାନ୍ ସେଥିରେ ଯଦି ତାର ହିତ ହେବା ଦେଖନ୍ତି, ତେବେ ତାହା ପୂରଣ କରନ୍ତି, ନଚେତ୍ ସେହି

ପ୍ରାର୍ଥନାକୁ ପୂରଣ କରନ୍ତି ନାହିଁ । କାରଣ ସେ ଜୀବର ପ୍ରକୃତ ହିତୈଷୀ । ପିତା-ମାତା ଯେପରି ପିଲାର ହିତକୁ ଦୃଷ୍ଟିରେ ରଖି ସେ ମାଗୁଥିବା ଛୁରି, ଧାରୁଆ କାଚ ବା ବିଷାକ୍ତ ଦ୍ରବ୍ୟ ଆଦି ହାନିକାରକ ପଦାର୍ଥ ତାକୁ ଦିଅନ୍ତି ନାହିଁ, ଠିକ୍ ସେହିପରି ଭଗବାନ ଭକ୍ତର ଅସତ୍ କାମନାକୁ ପୂରଣ କରନ୍ତି ନାହିଁ । କିନ୍ତୁ ଜୀବ ଯଦି ସତ୍ ଉଦ୍ଦେଶ୍ୟରେ କିଛି କାମନା କରୁଥାଏ, ତାହା ସେ ନିଶ୍ଚୟ ପୂରଣ କରନ୍ତି; କାରଣ ଏହା ହିଁ ଜୀବର ଲକ୍ଷ୍ୟ । ଭଗବାନ ଜୀବଠାରୁ ଏହି ଆଶା ରଖନ୍ତି ଯେ, ମୋଠାରୁ ଦୂରେଇ ଯାଇ ଜୀବ ଅନେକ ଯୋନିରେ ଭ୍ରମି ଭ୍ରମି କଷ୍ଟ ପାଉଛି, ସେ କିପରି ଶୀଘ୍ର ମୋ ପାଖକୁ ଆସିଯାଉ ।

ସେଥିପାଇଁ ଭଗବାନ ଜଗନ୍ନାଥଦାସଙ୍କର ଇଚ୍ଛା ପୂରଣ କରିବା ନିମନ୍ତେ ସ୍ୱପ୍ନରେ ତାଙ୍କୁ ଦର୍ଶନ ଦେଲେ । ପ୍ରଭୁ ଚତୁର୍ଭୁଜରେ ଧାରଣ କରିଥାନ୍ତି ଶଙ୍ଖ, ଚକ୍ର, ଗଦା ଓ ପଦ୍ମ । ମସ୍ତକରେ କିରୀଟ ଓ କର୍ଣ୍ଣରେ କୁଣ୍ଡଳ ଝଲମଲ ହେଉଥାଏ, ବକ୍ଷରେ ଶ୍ରୀବତ୍ସ ଚିହ୍ନ । ରଙ୍ଗଅଧରରେ ମନ୍ଦ ମନ୍ଦ ହସି ପ୍ରଭୁ ଭକ୍ତକୁ କହିଲେ, "ବତ୍ସ! ଜଗନ୍ନାଥ! ତୁମର ମନ କଥା ମୁଁ ଜାଣେ । ତୁମ ଇଚ୍ଛା ଅତ୍ୟନ୍ତ ଶୁଭଙ୍କର । ମୁଁ ଏବେ ତୁମକୁ ତୁମର ଉଦ୍ଧାର ନିମନ୍ତେ ଯେଉଁ ଉପାୟ କହୁଛି ଶୁଣ । ଏହା କେବଳ ତୁମର ଉଦ୍ଧାର କରିବ ନାହିଁ, ସାରା ସଂସାରକୁ ମଧ୍ୟ ଉଦ୍ଧାର କରିବାକୁ ସମର୍ଥ ହେବ । 'ଓଁ' ଏହି ଏକାକ୍ଷର ବ୍ରହ୍ମ ସକଳ ଶାସ୍ତ୍ର ଓ ବେଦର ମୂଳ । ଏହା ମୋ ମୁଖରୁ ପ୍ରକାଶିତ ହେଲା । ଅନନ୍ତ ଏହାକୁ ବ୍ୟାଖ୍ୟା କରି ଚତୁର୍ଦ୍ଦଶ ଅକ୍ଷରରେ ବ୍ରହ୍ମାଙ୍କୁ ଉପଦେଶ ଦେଲେ । ବ୍ରହ୍ମା ତାହାକୁ ନିଜ ହୃଦୟରେ ଧାରଣ କରି ପୁଣି ତାହାକୁ ଚାରିଟି ଶ୍ଳୋକରେ ବିସ୍ତାର କରିବା ସହ ନର-ନାରାୟଣଙ୍କୁ ଶୁଣାଇଲେ, ଯାହାକି ଚତୁଃଶ୍ଳୋକୀ ଭାଗବତ ନାମରେ ପ୍ରସିଦ୍ଧ । ନର-ନାରାୟଣ ଋଷି ତାହାକୁ ନିଜ ହୃଦୟ ମଧ୍ୟରେ ଜପ କରି କରି ପୁନଶ୍ଚ ତାହାକୁ ଦଶ ଶ୍ଳୋକରେ ବ୍ୟାଖ୍ୟା କରି ନାରଦ ମୁନିଙ୍କୁ ଶୁଣାଇଲେ । ନାରଦ ତାହାକୁ ଶତ ଶ୍ଳୋକରେ ମହାମୁନି ବ୍ୟାସଙ୍କୁ ଶୁଣାଇଲେ । ବ୍ୟାସଦେବ ତାହାକୁ ଅଠର ହଜାର ଶ୍ଳୋକରେ ବିସ୍ତାର କରି ପରମହଂସ ଶୁକଦେବଙ୍କୁ ଶୁଣାଇଲେ । ଶୁକଦେବ ତାହାକୁ ମୁନିମଣ୍ଡଳୀଙ୍କ ମଧ୍ୟରେ ରାଜା ପରୀକ୍ଷିତଙ୍କୁ ଶୁଣାଇଲେ । ତାହା ଶୁଣି ପରୀକ୍ଷିତଙ୍କର ମୁକ୍ତି ହୋଇଗଲା । ପୁଣି ତୁମର ପରମ କଲ୍ୟାଣ କରିବାକୁ ଓ ସଂସାର ଉଦ୍ଧାର କରିବାକୁ ଯେ ଏହା ସମର୍ଥ, ଏକଥା କହିବା ବାହୁଲ୍ୟ ମାତ୍ର । ତେଣୁ ତୁମେ ଏହାକୁ ତୁମର ପ୍ରାକୃତ ଭାଷାରେ ରଚନା କର । ଏହା ଶ୍ରବଣ କରି ଅଶେଷ ପ୍ରାଣୀ ଏ

ଭବସାଗରରୁ ତରିଯିବେ ।''

ଭଗବାନଙ୍କର ଏହି ଆଦେଶ ଥିଲା ଏକାଧାରରେ ଦୀକ୍ଷା, ଶିକ୍ଷା ଓ ଉପଦେଶ । ଏହି ଆଜ୍ଞା ପାଇ ଜଗନ୍ନାଥ ଖୁସୀ ହୋଇଗଲେ । ପୁଣି ଭାବିଲେ, ଏତେ ବଡ଼ ଦୁଷ୍ପ୍ରବେଶ୍ୟ ଗ୍ରନ୍ଥର ରଚନା ମୁଁ କରିପାରିବି ତ? କୁହାଯାଇଛି—**'ବିଦ୍ୟାବତାଂ ଭାଗବତେ ପରୀକ୍ଷା ।'** ବଡ଼ ବଡ଼ ବିଦ୍ୱାନ୍ ମଧ୍ୟ ଭାଗବତର ଅର୍ଥ ନିର୍ଣ୍ଣୟ କରିବାରେ ଭ୍ରମିତ ହୋଇଯାଆନ୍ତି । ଯାହାର ତତ୍ତ୍ୱକୁ ମୁନି ଋଷିମାନେ ବି ବୁଝିପାରନ୍ତି ନାହିଁ, ତାହାକୁ ରଚନା କରିବା ମୋ ପରି ସାଧାରଣ ବ୍ୟକ୍ତି ପକ୍ଷରେ କ'ଣ ସମ୍ଭବ? ମୋର ବା କି ସାମର୍ଥ୍ୟ ଅଛି!'' ସେ ଭଗବାନଙ୍କୁ ନିଜର ଏହି ଅସାମର୍ଥ୍ୟ ଜଣାଇ ଦେଲେ । ଭଗବାନ କହିଲେ—''ତୁମେ ଚିନ୍ତା କର ନାହିଁ । କାର୍ଯ୍ୟ ଶୁଭାରମ୍ଭ କରିଦିଅ । ମୁଁ ତୁମ ହୃଦୟଯନ୍ତ୍ରରେ ବିରାଜିତ ହୋଇ ପଦ ପରେ ପଦ କହିଦେବି । ତୁମେ ହୃଦୟର ସ୍ଫୁରଣ ଅନୁସାରେ ତାଳପତ୍ର ପୋଥିରେ ଲେଖିଯିବ ।''

ଏହିପରି ଆଦେଶ ଦେଇ ପ୍ରଭୁ ଅନ୍ତର୍ହିତ ହୋଇଗଲେ । ଜଗନ୍ନାଥ ଦାସଙ୍କ ନିଦ୍ରା ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠି ଚାରିଆଡ଼କୁ ଚାହିଁଲେ । କେହି କେଉଁଠି ଦିଶିଲେ ନାହିଁ । ସେ ଭାବିଲେ, ନିଶ୍ଚୟ ପ୍ରଭୁଙ୍କର କୃପା ହେଲା । ସେ ମୋତେ ଦର୍ଶନ ଦେଇ କୃତାର୍ଥ କରିଦେଲେ ।

ଏହାପରେ ଜଗନ୍ନାଥ ଦାସ ପ୍ରଭୁଙ୍କ ପ୍ରେରଣାରେ ବ୍ୟାସଦେବଙ୍କ କୃତ ଭାଗବତକୁ ସ୍କନ୍ଧ ପରେ ସ୍କନ୍ଧ ଓଡ଼ଆ ନବାକ୍ଷରୀ ବୃତ୍ତରେ ଲେଖିଚାଲିଲେ । ଏହାଦ୍ୱାରା ସତେ ଯେପରି ଓଡ଼ିଆ ଭାଷାଭାଷୀ ଓ ସାଧାରଣ ଅଶିକ୍ଷିତ ଲୋକଙ୍କ ପାଇଁ ମୁକ୍ତିର ପସରା ଖୋଲିଦେଲେ । ଦୁର୍ଗମ ଭାଗବତ ସରଳ ଭାଷାରେ ବ୍ୟକ୍ତ ହୋଇ ସମସ୍ତଙ୍କ ପାଇଁ ସୁଗମ ହୋଇଗଲା । ଦାସେ ଅଧ୍ୟାୟେ ଅଧ୍ୟାୟେ ରଚନା କରି ମାଆଙ୍କୁ ଶୁଣାଇଲେ; ପରେ ଲୋକମାନଙ୍କୁ ଶୁଣାଇଲେ । ଆବାଳବୃଦ୍ଧବନିତା ସମସ୍ତେ ଶ୍ରଦ୍ଧାର ସହ ତାହାକୁ ଶୁଣିଲେ । ଲୋକେ ଭାଗବତ ଶୁଣି ପରମ ଆନନ୍ଦ ଲାଭ କଲେ । ନାରୀମାନେ ତାଙ୍କୁ ନିଜ ନିଜ ଘରକୁ ଡାକି ଆଣନ୍ତି ଏବଂ ତାଙ୍କ ଚାରିପଟେ ଘେରି ବସି ତାଙ୍କଠାରୁ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଓ ଗୋପୀମାନଙ୍କର ପ୍ରେମ ଇତ୍ୟାଦି ବିଷୟ ଶୁଣି ଅତ୍ୟନ୍ତ ଆହ୍ଲାଦିତ ହୁଅନ୍ତି । ତାଙ୍କୁ ଚାଉଳ, ଦକ୍ଷିଣା ଓ ବସ୍ତ୍ରାଦି ଦେଇ ପ୍ରତିଦିନ ଆସି ଭାଗବତ ଶୁଣାଇବାକୁ ଅନୁରୋଧ କରନ୍ତି । ଶ୍ରୋତାମାନଙ୍କର ଭାବ ଦେଖି ବକ୍ତା ମଧ୍ୟ ଶ୍ରୀକୃଷ୍ଣଲୀଳା ରସ ଶୁଣାଇବାରେ ତନ୍ମୟ ହୋଇଯାନ୍ତି । ସ୍ୱୟଂ ବକ୍ତା ଯେତେବେଳେ ଭଗବାନଙ୍କର ଜଣେ ପରମ ଭକ୍ତ, ତାଙ୍କ ଭାବର ପ୍ରଭାବ ଶ୍ରୋତୃମଣ୍ଡଳୀ

ଉପରେ ପଡ଼ିବା ତ ସ୍ୱାଭାବିକ କଥା । କ୍ରମେ କ୍ରମେ ଶ୍ରୋତାମାନଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଲା । ତାଙ୍କ ଭାଗବତର ମହିମା ରୂପୀ ସୌରଭ ଚତୁର୍ଦ୍ଦିଗରେ ବ୍ୟାପିବାକୁ ଲାଗିଲା ।

ସମାଜରେ ଖଳ, ଈର୍ଷ୍ୟାଳୁ ଓ ଦୁଷ୍ଟ ପ୍ରକୃତିର ଲୋକଙ୍କ ସଂଖ୍ୟା କିଛି କମ୍ ନୁହେଁ । ପରଶ୍ରୀକାତରତା, ଈର୍ଷ୍ୟା ଓ ଅନ୍ୟର ଦୋଷଦର୍ଶନ ହିଁ ଏଭଳି ଲୋକଙ୍କର ପରମ ପରୁଷାର୍ଥ । ନିଜକୁ କ୍ଷତି ସହିବାକୁ ପଡ଼ିଲେ ମଧ୍ୟ ଅନ୍ୟକୁ ଗର୍ତ୍ତରେ ଠେଲିଦେବାକୁ ସେମାନେ ଆଦୌ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ସେମାନଙ୍କୁ ଏହି ସୌରଭ ଦୁର୍ଗନ୍ଧ ପରି ମନେହେଲା । ସେମାନେ ତ ମାଛି ପରି ସର୍ବଦା ଦୁର୍ଗନ୍ଧ ଓ ପଚାସଢ଼ା ପଦାର୍ଥକୁ ଭଲ ପାଆନ୍ତି । ଗୁଣରେ ଦୋଷ ଦେଖିବା ସେମାନଙ୍କର ସହଜାତ ସ୍ୱଭାବ । କୌଣସି ଭଲ କଥାରୁ ମନ୍ଦ ଅର୍ଥ ବାହାର କରିବାକୁ ସେମାନେ ସତେ ଯେପରି ଶତଜିହ୍ୱ ହୋଇଯାଆନ୍ତି । ସେମାନେ ନିଜର ପାପପଙ୍କିଳ ଜୀବନକୁ ପବିତ୍ରାତ୍ମାଙ୍କ ଜୀବନ ସହ ତୁଳନା କରନ୍ତି । ନିଜର କଳୁଷିତ ବିଚାରଧାରା ଓ ଘୃଣିତ ବାସନାକୁ ମହାତ୍ମାଙ୍କ ଉପରେ ଅଜାଡ଼ି ପକାଇବା ସଙ୍ଗେ ସଙ୍ଗେ ନିଜର ତୁଚ୍ଛ ବିଚାରରୂପୀ ତରାଜୁରେ ତାଙ୍କୁ ତଉଲି ନିଜର ନିର୍ଣ୍ଣୟ ଶୁଣାଇବା ବେଳେ ବିଚାରପତି ପାଲଟି ଯାଆନ୍ତି । ସେମାନେ ନିଜେ କାମବାସନାରେ ଜର୍ଜରିତ ହୋଇ ନିଶିଦିବସ କାମିନୀର ଦାସତ୍ୱ କରିବାରେ ଲାଗିଥାନ୍ତି, ଅଥଚ ସ୍ୱୟଂ କାମବିଜୟୀ ଶିବଙ୍କୁ ମଧ୍ୟ କାମାସକ୍ତ କହିବାକୁ ଦ୍ୱିଧା ବୋଧ କରନ୍ତି ନାହିଁ; ପୁଣି ମହାତ୍ମା ବ୍ରହ୍ମଚାରୀ ଜଗନ୍ନାଥ ଦାସ ବା ସେଥିରୁ କିପରି ବାଦ୍ ପଡ଼ନ୍ତେ । ସେମାନେ ତାଙ୍କ ନାମରେ କୁତ୍ସାରଟନା କରିବାକୁ ଲାଗିଲେ । କେତେକ ସଂସ୍କୃତ ଅଭିମାନୀ ବିଦ୍ୱାନ ତାଙ୍କ ଭାଗବତକୁ 'ତେଲି ଭାଗବତ' କହି ଉପହାସ କଲେ । ସେହି ଖଳଲୋକମାନେ ରାଜା ପ୍ରତାପରୁଦ୍ରଙ୍କ ଆଗରେ ଅଭିଯୋଗ କଲେ—''ମଣିମା! ଆଜିକାଲି ଜଗନ୍ନାଥ ଦାସ ଗୋଟିଏ ନୂଆ ମହାତ୍ମା ହୋଇ ବାହାରିଛି । ସେ ନାରୀମାନଙ୍କୁ ଭ୍ରଷ୍ଟ କଲାଣି । କଣ ଗୋଟିଏ ଭାଗବତ ଲେଖୁଛି ଯେ ସମସ୍ତଙ୍କୁ ବୁଲି ବୁଲି ଶୁଣାଉଛି । ଚିତା ତିଳକ କରି ବେକରେ ତୁଳସୀମାଳା ପକାଇ ବ୍ରହ୍ମଚାରୀ ବେଶ ହୋଇଛି ସିନା, ହେଲେ ପକ୍କା ଭଣ୍ଡଟାଏ । କାଖରେ ପୋଥିପତ୍ର ବିଡ଼ାଏ ଜାକି ଚାରିଆଡ଼େ ବୁଲୁଛି । ଯେଉଁଠି ସ୍ତ୍ରୀଲୋକଙ୍କ ମେଳ ଦେଖୁଛି, ସେଠାକୁ ଯାଇ ବଡ଼ ଭାବଭଙ୍ଗୀ ଦେଖାଇ ନିଜେ ରଚନା କରିଥିବା ସେହି ଗୀତ ବୋଲୁଛି । ତା'ର ଗୀତରେ ମୋହିତ ହୋଇ ସେମାନେ ତା ପାଲରେ ପଡ଼ିଯାଉଛନ୍ତି । ସେମାନେ ନିଜ ନିଜ ସ୍ୱାମୀଙ୍କର ଯେତିକି

ସେବା ନ କରନ୍ତି, ତା'ଠାରୁ ଅଧିକ ତା'ର ସେବା କରୁଛନ୍ତି। ସ୍ତ୍ରୀଲୋକମାନେ ତା'ଠାରୁ ଗୀତ ଶୁଣିବାକୁ ପାଗଳ ପରି ହେଉଛନ୍ତି। ଆଉ ସେ ଯୁବକ ଓ ବ୍ରହ୍ମଚାରୀ ହୋଇ ମଧ୍ୟ ସେଇମାନଙ୍କୁ ଶୁଣାଇବାକୁ ସୁଖ ପାଉଛି। ଏହିପରି ଯଦି କିଛିଦିନ ଚାଲିବ, ଜାଣନ୍ତୁ ନାରୀଙ୍କର ମାନ ମର୍ଯ୍ୟାଦା ବୋଲି ଆଉ କିଛି ରହିବ ନାହିଁ। ଆମ କଥାରେ ଯଦି ବିଶ୍ୱାସ ନ ହେଉଛି, ଆପଣ ଗୁପ୍ତଚର ପଠାଇ ଏହାର ସତ୍ୟାସତ୍ୟ ପରୀକ୍ଷା କରିପାରନ୍ତି।''

ରାଜା ଏ କଥା ଶୁଣି କ୍ରୋଧରେ ନିଆଁବାଣ ହୋଇଗଲେ। ସେ ତତ୍‌କ୍ଷଣାତ୍ ଦୂତଙ୍କୁ ପଠାଇ ଦେଲେ। ଦୂତମାନେ ଜଗନ୍ନାଥ ଦାସଙ୍କୁ ଧରି ଆଣି ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ। ରାଜା ତାଙ୍କୁ ପଚାରିଲେ—''କୁହ ବ୍ରହ୍ମଚାରୀ, ତୁମେ ସାଧୁଙ୍କ ଭେକ ଧରିଛ, ଅଥଚ ନାରୀଙ୍କ ମେଳରେ ବସି ଗୀତ ଶୁଣାଉଛ କାହିଁକି? ତୁମେ ପୁରୁଷ ଓ ବ୍ରହ୍ମଚାରୀ ହୋଇ ମଧ୍ୟ ପୁରୁଷଙ୍କ ସଙ୍ଗ ଛାଡ଼ି ଅଧିକାଂଶ ସମୟ ନାରୀଙ୍କ ମଣ୍ଡଳୀରେ ବିତାଇବାର କଣ ରହସ୍ୟ? ଏହା ତୁମର ଦଣ୍ଡନୀୟ ଅପରାଧ।'' ଏକଥା ଶୁଣି ଜଗନ୍ନାଥ ଦାସ ପ୍ରଭୁଙ୍କୁ ସ୍ମରଣ କଲେ। ସେ ଜାଣିଗଲେ ଯେ ତାଙ୍କର ଅନ୍ତରର ଭାବକୁ ନ ବୁଝିପାରି ଖଳ ଲୋକମାନେ ରାଜାଙ୍କ ଆଗରେ ଏପରି ଚୁଗୁଲି କଥା କହିଛନ୍ତି। ତଥାପି ସେ ପ୍ରଭୁ ଜଗନ୍ନାଥଙ୍କର ସ୍ୱପ୍ନାଦେଶର ଭରସାରେ ନିର୍ଭୟରେ ରାଜାଙ୍କୁ ନିଜ କଥା କହିଦେଲେ। ସେ କହିଲେ, ''ରାଜନ୍! ଆପଣ ଦୁଷ୍ଟଲୋକଙ୍କ କଥାରେ ସାଧୁଲୋକଙ୍କୁ ଦଣ୍ଡିବା ଉଚିତ ନୁହେଁ। ମୁଁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ବା ସ୍ତ୍ରୀ, ପୁରୁଷ, ବାଳକ, ବୃଦ୍ଧ ଆଦି ଦେଖେ ନାହିଁ। ଯେଉଁମାନେ ଭାଗବତ ଶୁଣିବାକୁ ଶ୍ରଦ୍ଧା କରନ୍ତି, ମୁଁ ସେମାନଙ୍କୁ ଶୁଣାଏ। ଏଥିରେ ସ୍ତ୍ରୀ-ପୁରୁଷଙ୍କ ପ୍ରସଙ୍ଗ ପାଇଁ ସ୍ଥାନ କାହିଁ? ମୁଁ ପୁରୁଷଙ୍କ ମେଳରେ ପୁରୁଷ ଓ ନାରୀଙ୍କ ମେଳରେ ନାରୀ ହୋଇଥାଏ। ପୁଣି ମୁଁ ଭଗବତ ମାର୍ଗର ଲୋକ। ତେଣୁ ଏଭଳି ସନ୍ଦେହ କରିବା ଉଚିତ ନୁହେଁ।

ଦାସଙ୍କ ମୁଖରୁ ଏଭଳି ନିର୍ଭୟ ଉତ୍ତର ଶୁଣି ରାଜାଙ୍କ ଓଷ୍ଠ କ୍ରୋଧରେ ପ୍ରକମ୍ପିତ ହେଲା। ସେ ସଙ୍ଗେ ସଙ୍ଗେ କହିଲେ, ''ତୁମେ ଯାହା କଥାରେ କହିଲ, ତାହା ପ୍ରତ୍ୟକ୍ଷରେ ନ ଦେଖାଇବାଯାଏ ଆମେ ବିଶ୍ୱାସ କରିବୁ ନାହିଁ। ତୁମେ ତୁମର ନାରୀରୂପ ମୋତେ ଦେଖାଅ। ନ ହେଲେ ତୁମେ ଦଣ୍ଡଭାଗୀ ହେବ।'' ଏହା କହି ଭକ୍ତ ଜଗନ୍ନାଥ ଦାସଙ୍କୁ କାରାଗାରରେ ବନ୍ଦୀ କରି ରଖିବାକୁ ସେବକଙ୍କୁ ଆଦେଶ ଦେଲେ।

ଭକ୍ତ ଜଗନ୍ନାଥ ଦାସ ଯେଉଁ ଭାବରେ ଉତ୍ତର ଦେଇଥିଲେ, ରାଜା ତାହା ବୁଝିଲେ ନାହିଁ। ନାରୀମାନେ ସବୁରି ଚିତ୍ତ ଗ୍ରେର ମନମୋହନ ଶ୍ରୀକୃଷ୍ଣଙ୍କ ମଧୁର ମଧୁର ଲୀଳା ଶ୍ରବଣରେ ଆକୃଷ୍ଟ ହୋଇ ଭାଗବତ ଶ୍ରବଣ କରିବାକୁ ଗ୍ରହୁଁଥିବାବେଳେ ରାଜା ତାହାକୁ ଓଲଟା ବୁଝିଲେ। ତେଣୁ ଭକ୍ତ ସଂକଟରେ ପଡ଼ିଗଲେ। ଅଧ୍ୟାତ୍ମ ଦୃଷ୍ଟିରୁ ଦେଖିଲେ ଜୀବ ପୁରୁଷ ନୁହେଁ କି ସ୍ତ୍ରୀ ନୁହେଁ। ସେ ତ ସାକ୍ଷାତ୍ ପରମାତ୍ମାଙ୍କର ଅଂଶ। ସ୍ତ୍ରୀ ବା ପୁରୁଷ ତ ତା ଶରୀରର ନାମ, ତାର ବାହ୍ୟ ରୂପ। ଯିଏ ଏ ଜନ୍ମରେ ସ୍ତ୍ରୀ ହୋଇଛି, ସେ ଯେ କେଉଁ ଜନ୍ମରେ ପୁରୁଷ ନ ଥିଲା କି ପରଜନ୍ମରେ ପୁରୁଷ ନ ହେବ, ଏପରି ତ କିଛି ନିୟମ ନାହିଁ। କେବଳ ଦେହ ଦୃଷ୍ଟିରୁ ଭେଦ। କିନ୍ତୁ ଯେଉଁ ମହାତ୍ମା ନିଜର ପ୍ରକୃତ ସ୍ୱରୂପକୁ ଚିହ୍ନି ଦେହଭାବରୁ ଅତୀତ ହୋଇସାରିଛନ୍ତି, ତାଙ୍କ ଦୃଷ୍ଟିରେ ସ୍ତ୍ରୀ-ପୁରୁଷ ଭେଦର କୌଣସି ବିଶେଷ ମହତ୍ତ୍ୱ ନ ଥାଏ। ଦେବକନ୍ୟାମାନେ ସ୍ନାନ କରୁଥିବାବେଳେ ସେହି ରାସ୍ତାରେ ପରମହଂସ ଶ୍ରୀଶୁକଦେବ ଗଲେ, ମାତ୍ର ସେମାନେ ତାଙ୍କୁ ଦେଖି ସଙ୍କୋଚ କରି ନ ଥିଲେ କି ନିଜ ନିଜର ବସ୍ତ୍ର ପରିଧାନ କରି ନ ଥିଲେ। କାରଣ ଶ୍ରୀଶୁକଦେବଙ୍କ ଦୃଷ୍ଟିରେ ସ୍ତ୍ରୀ-ପୁରୁଷର ଭେଦ ନ ଥିଲା, ସେ ସର୍ବଦା ଆତ୍ମସ୍ୱରୂପରେ ସ୍ଥିତ ରହୁଥିଲେ। ମାତ୍ର ଏଠି ଜଗନ୍ନାଥ ଦାସଙ୍କ ଅଧ୍ୟାତ୍ମପ୍ରଧାନ ଉକ୍ତିକୁ ରାଜା ସାଧାରଣ ଲୌକିକ ଅର୍ଥରେ ବୁଝିଲେ। ଅବଶ୍ୟ ସାମାଜିକ ମର୍ଯ୍ୟାଦା ଦୃଷ୍ଟିରୁ ରାଜାଙ୍କ କହିବା ଯୁକ୍ତିଯୁକ୍ତ। କିନ୍ତୁ ଯେଉଁଠି ବକ୍ତା ଭଗବାନଙ୍କର ଭକ୍ତିଭାବରେ ପୂର୍ଣ୍ଣରୂପେ ଭାବିତ, କୃତ୍ରିମତାର ଲେଶମାତ୍ର ଚିହ୍ନ ନାହିଁ କି ଲୋକମାନଙ୍କର ମନୋରଞ୍ଜନ କରିବାର ଭାବ ନାହିଁ, କେବଳ ଜୀବକୁ ତାର ପରମ ପ୍ରିୟତମ ଭଗବାନଙ୍କ ସଙ୍ଗେ ଯୁକ୍ତ କରିବାର ବିଶୁଦ୍ଧ ଭାବନା ରହିଛି, ସେଠି ସ୍ତ୍ରୀପୁରୁଷ ନିର୍ବିଶେଷରେ ସମସ୍ତେ ସେହି ପରମପୁରୁଷ ପରମାତ୍ମାଙ୍କ ସଙ୍ଗେ ମିଳିତ ହେବାକୁ ପ୍ରଚେଷ୍ଟା କରିବା କେବଳ ଉଚିତ ନୁହେଁ, ପରମ ଆବଶ୍ୟକ ମଧ୍ୟ। ଏହା ଜୀବର ଅଧିକାର। ସେ କ୍ଷେତ୍ରରେ ଦେହଦୃଷ୍ଟିକୁ ଅନ୍ତରାୟ କରି ଠିଆ କରାଇଲେ ଜୀବ ତା'ର ଲକ୍ଷ୍ୟରୁ ବଞ୍ଚିତ ରହିଯିବ।

ସେ ଯାହାହେଉ, ରାଜା ପ୍ରତାପରୁଦ୍ର କିନ୍ତୁ ତାଙ୍କୁ ନାରୀ ବେଶ ନ ଦେଖାଇବା ପର୍ଯ୍ୟନ୍ତ କାରାରୁଦ୍ଧ କରି ରଖିଲେ। ଭକ୍ତର ଆଉ ସାହାଭରସା କିଏ ଅଛି? ଏକା ଭଗବାନଙ୍କ ଛଡ଼ା ସେ ତା'ର ସୁଖ-ଦୁଃଖ କାହାକୁ କହିବ? ଭକ୍ତ ଜଗନ୍ନାଥ ଦାସ ସ୍ମରଣ କଲେ ସେହି **'କର୍ତ୍ତୁମକର୍ତ୍ତୁଂ ଅନ୍ୟଥାକର୍ତ୍ତୁଂ ସମର୍ଥଃ'** ଈଶ୍ୱରଙ୍କୁ। ବନ୍ଦୀଗୃହରେ

ବସି ପ୍ରଭୁଙ୍କୁ ପ୍ରାର୍ଥନା କରି କହିଲେ—"ହେ ଆର୍ତ୍ତତ୍ରାଣ ପ୍ରଭୁ! ତୁମରି ଆଦେଶରେ ମୁଁ ଏ କାର୍ଯ୍ୟ ଆରମ୍ଭ କଲି, ଅଥଚ ତାକୁ ପ୍ରଗ୍ୱର କରୁ କରୁ ଏ ଦଣ୍ଡ! ତୁମେ ଯେପରି ମୋତେ ଏତେ ବଡ଼ ମାର୍ଗ ଦେଖାଇଥିଲ, ସେହିପରି ଏ ସଙ୍କଟରୁ ମଧ୍ୟ ଉଦ୍ଧାର କର। ତୁମେ ଦ୍ରୌପଦୀ, ଗଜେନ୍ଦ୍ର ଓ ମୃଗୁଣୀର ଆର୍ତ୍ତ ନିବେଦନ ଶୁଣି ସେମାନଙ୍କୁ ବିପଦରୁ ଉଦ୍ଧାର କରିଥିଲ; ଏବେ ଏ ରାଜଦଣ୍ଡରୁ ମୋତେ ରକ୍ଷା କର। ତୁମେ ସର୍ବସମର୍ଥ। ଏପରି ଲୀଳା କର, ଯେପରି ମୋର ଏ ପୁରୁଷ ରୂପ ଯାଇ ନାରୀରୂପ ହୋଇଯିବ। ଏ ଅବୁଝା ରାଜାଙ୍କ ମୁଖରେ କାଳି ଲାଗିବ, ଏ ଖଳ ଲୋକ ମଧ୍ୟ ଲାଜରେ ଶଢ଼ିବେ। ତୁମେ ସାଧୁଙ୍କ ରକ୍ଷଣ ବାନା ଉଡ଼ାଉଛ, ତେଣୁ ସତ୍ୟର ମହିମା ଉଜାଗର କର, ନଚେତ୍ ମୋର ମରଣ ନିଶ୍ଚିତ। ମୋର ମରଣ ତୁମକୁ ହିଁ ଲାଗିବ। ଆଉ ତୁମେ ତୁମ ଭକ୍ତକୁ ରକ୍ଷା କରି ନ ପାରିଲ ବୋଲି ତୁମ ନାମରେ କଳଙ୍କ ମଧ୍ୟ ଲାଗିବ। ତେଣୁ ଏ କଥାକୁ ବିଗ୍ୱର କରି ଯାହା ଗ୍ୱହୁଁଛ, କର।"

ଏହିପରି ପ୍ରାର୍ଥନା କରି ଦାସେ ପ୍ରଭୁଙ୍କ ଭରସାରେ ନିଶ୍ଚିନ୍ତ ହୋଇ ଶୋଇଗଲେ। ତେଣେ ପ୍ରଭୁ ଭକ୍ତର କଷଣ ସହି ପାରିଲେ ନାହିଁ। ସେ ଭକ୍ତକୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ, "ବତ୍ସ ଜଗନ୍ନାଥ! ମୁଁ ଥାଉଁ ଥାଉଁ ତୁମେ କାହିଁକି ଚିନ୍ତା କରୁଛ? ତୁମର ରାଜା କିଛି କରିବ ନାହିଁ; ସେ ତୁମର ପାଦତଳେ ପଡ଼ି କ୍ଷମା ମାଗିବ। ତୁମେ ଯାହା ଗ୍ୱହୁଁଛ, ତାହା ହିଁ ହେବ; ମୋ କୃପାରୁ ତୁମର ନାରୀ ରୂପ ହୋଇଯିବ। ଚିନ୍ତା କର ନାହିଁ।" ଏତିକି କହି ପ୍ରଭୁ ତାଙ୍କର ପାଦପଦ୍ମ ଜଗନ୍ନାଥ ଦାସଙ୍କ ଦେହରେ ଛୁଆଇଁ ଦେଲେ ଏବଂ ତତ୍‌କ୍ଷଣାତ୍ ଅନ୍ତର୍ହିତ ହୋଇଗଲେ।

ଜଗନ୍ନାଥ ଦାସଙ୍କର ନିଦ୍ରା ଭାଙ୍ଗିଗଲା। ସେ ଉଠିପଡ଼ି ଗ୍ୱରିଆଡ଼କୁ ଗ୍ୱହିଁଲେ। କାହାରିକୁ ପାଇଲେ ନାହିଁ। ହଠାତ୍ ନିଜ ଦେହ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା। ଆଶ୍ଚର୍ଯ୍ୟ ହୋଇଗଲେ ସେ। ତାଙ୍କର ପୁରୁଷ ରୂପ କେଉଁଆଡ଼େ ଉଭେଇ ଯାଇ ଜନମନମୋହିନୀ ନାରୀ ରୂପ ହୋଇଯାଇଛି। ସେ ଆନନ୍ଦରେ ବିଭୋର ହୋଇଗଲେ। ଭକ୍ତ ପ୍ରତି ପ୍ରଭୁଙ୍କ କରୁଣା ଦେଖି ତାଙ୍କ ନେତ୍ରରୁ ଧାର ଧାର ହୋଇ ଅଶ୍ରୁ ବହିବାକୁ ଲାଗିଲା। ସେ ଭାବିଲେ, ଯେଉଁ ପାଦପଦ୍ମର ସ୍ପର୍ଶ ପାଇ ଅହଲ୍ୟା ତରିଗଲା, କୁବୁଜା ଅପୂର୍ବ ସୌନ୍ଦର୍ଯ୍ୟ ଲାଭ କଲା, ଯାହାଙ୍କର ଚରଣୋଦକକୁ ପ୍ରଭୁ ମହାଦେବ ନିଜ ଜଟାରେ ଧାରଣ କରିଛନ୍ତି ଏବଂ ଯାହା ସାରା ସଂସାରକୁ ପବିତ୍ର କରୁଛି, ତାହା ଆଜି ମୋତେ ମିଳିଗଲା, ମୁଁ ପରମ ପବିତ୍ର ହୋଇଗଲି। ଧନ୍ୟ ପ୍ରଭୁ!

ଆଜି ପ୍ରତ୍ୟକ୍ଷ ଜାଣିଲି ଯେ, ତୁମେ ମୋତେ ଆପଣାର କରି ନେଇଛ । ଏହା ମନେ ମନେ କହି ଦାସେ ବାହାରିଲେ ରାଜାଙ୍କ ସମକ୍ଷରେ ପ୍ରମାଣ ଦେବା ନିମନ୍ତେ ।

ପ୍ରହରୀ ଓ ରାଜଦୂତଙ୍କୁ ସଙ୍ଗରେ ଧରି ଭକ୍ତ ଜଗନ୍ନାଥ ଯାଇ ରାଜାଙ୍କ ନିକଟରେ ପହଞ୍ଚିଲେ । ରାଜା ତାଙ୍କୁ ଚାହିଁଦେଇ ଚକିତ ହୋଇଗଲେ । ଭାବିଲେ, ଏ ତ ସେଇ ଜଗନ୍ନାଥ ଦାସ! ଅଥଚ ଏ ନାରୀ ରୂପ କେଉଁଠୁ ଆସିଲା? ପୁରୁଷ ରୂପ କୁଆଡ଼େ ଗଲା? ଏତେ ସୁନ୍ଦର ମନମୋହିନୀ ରୂପ! ଋଷିମୁନିଙ୍କ ତପ ଭଙ୍ଗ ହୋଇଯିବ! ଏହା ଭଗବାନଙ୍କର କୌଣସି ମାୟା ନୁହେଁ ତ? ରାଜାଙ୍କ ମନରେ ପୁଣି ସୃଷ୍ଟି ହେଲା ବିକଳ୍ପ ଭାବନା । ନା, ନା, ଏ ନିଶ୍ଚେ କପଟ କରୁଛି ମୋ ଆଗରେ, କେବଳ ଦଣ୍ଡ ଭୟରେ । ଉପରେ ଉପରେ ନଟଙ୍କ ପରି ନାରୀବେଶ ହୋଇଛି । ଏହା ଭାବି ସେ କହିଲେ, "ମୁଁ ଏ ବେଶରେ ବିଶ୍ୱାସ କରେ ନାହିଁ । ନାରୀଙ୍କ ଲକ୍ଷଣ ପ୍ରତ୍ୟକ୍ଷ ଦେଖାଅ ।" ଦାସେ ଭାବିଲେ, ଆଉ ଲାଜ ସରମ ରଖି ପ୍ରଭୁଙ୍କ କୃପାର ଅବମାନନା କରିବା ଉଚିତ ହେବ ନାହିଁ । ପ୍ରଭୁଙ୍କ ବିଧାନକୁ ଦେଖି ସେ ମୃଦୁ ମୃଦୁ ହସି କହିଲେ, "ରାଜନ୍! ଏତେ କରି ସୁଦ୍ଧା ତୁମର ବିଶ୍ୱାସ ହେଉ ନାହିଁ! ଆଉ କେମିତି ତୁମେ ବିଶ୍ୱାସ କରିବ? ଠିକ୍ ଅଛି । ଯାହା ପ୍ରଭୁଙ୍କ ଇଚ୍ଛା ।" ଏତିକି କହି ଦାସେ ପ୍ରଭୁଙ୍କୁ ସ୍ମରଣ କରି ନିଜର ଗୋପନୀୟ ବସ୍ତ୍ରାବୃତ ଅଙ୍ଗକୁ କିଞ୍ଚିତ ଅନାବୃତ କରିଦେଲେ । ରାଜା ସ୍ୱଚକ୍ଷୁରେ ନାରୀଙ୍କ ଅଙ୍ଗ ଓ ମାସିକ ଧର୍ମ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସଭାରେ ଉପସ୍ଥିତ ସମସ୍ତ ବ୍ୟକ୍ତି ନିଜ ଆଖିରେ ଏ ଘଟଣା ଦେଖିଲେ । ଭୟରେ ସମସ୍ତେ ଏକସ୍ୱରରେ ରାଜାଙ୍କୁ କହିଲେ, "ମହାରାଜ! ଏହାଙ୍କୁ ଛାଡ଼ି ଦିଅନ୍ତୁ । ଏ ଭଗବାନଙ୍କର ଏକାନ୍ତ ଭକ୍ତ । ଏହା ନିଶ୍ଚୟ ଭଗବାନଙ୍କର ଲୀଳା । ଭକ୍ତବତ୍ସଳ ଭଗବାନ ତାଙ୍କ ଭକ୍ତର ମାନ ରଖିବାକୁ ଏ ଲୀଳା କରିଛନ୍ତି । ଏହାଙ୍କର ଅପମାନ କରିବା ଦୋଷରୁ ଆମ ସମସ୍ତଙ୍କର ସର୍ବନାଶ ହୋଇଯିବ!" ରାଜା ତତ୍‌କ୍ଷଣାତ୍ ଆସନରୁ ଉଠିଆସି ଭକ୍ତଙ୍କର ହାତ ଧରି କ୍ଷମା ମାଗିଲେ । ନାନା ସମ୍ଭାରରେ ତାଙ୍କର ପାଦପୂଜା କଲେ । ବସ୍ତ୍ରାଦି ଦେଇ ତାଙ୍କୁ ସମ୍ମାନିତ କଲେ ଏବଂ ତାଙ୍କୁ ଭାଗବତ ଗାୟନ କରିବାକୁ ସହର୍ଷ ଅନୁମତି ଦେବା ସଙ୍ଗେ ସଙ୍ଗେ ନିଜର ଅପରାଧ ମାର୍ଜନା ନିମନ୍ତେ ତାଙ୍କ ଶ୍ରୀମୁଖରୁ ସ୍ୱୟଂ ଭାଗବତ ଶ୍ରବଣ କରିବାକୁ ସାଦର ଅନୁରୋଧ କଲେ ।

ସାଧୁଙ୍କ ହୃଦୟ ଅତ୍ୟନ୍ତ କୋମଳ । ସେ ଅନ୍ୟର କାତର ଭାବନା ଦେଖି ନିଜ ପ୍ରତି ହୋଇଥିବା ଅପରାଧକୁ ସହଜରେ ଭୁଲି ଯାଆନ୍ତି । ଜଗନ୍ନାଥ ଦାସ

ଗଜପତି ରାଜାଙ୍କର ଅନୁରୋଧ ସ୍ୱୀକାର କଲେ ଏବଂ ଭଗବାନଙ୍କ କୃପାରେ ଅଭିଭୂତ ହୋଇଗଲେ । ଏହାପରେ ସେ ଭଗବାନଙ୍କୁ ସ୍ମରଣ କରି ସ୍ନାନ କରିବାକୁ ଗଲେ ଏବଂ ଜଳରେ ପଶି ବୁଡ଼ ପକାଇବାମାତ୍ରେ ତାଙ୍କର ସ୍ତ୍ରୀରୂପ ଅଦୃଶ୍ୟ ହୋଇ ପୁନଃ ପୂର୍ବର ପୁରୁଷ ରୂପ ପ୍ରାପ୍ତ ହେଲା । ସେ ସ୍ନାନାଦି ସାରି ପବିତ୍ର ହୋଇ ରାଜାଙ୍କ ଦରବାରରେ ନିଜ ରଚିତ ଓଡ଼ିଆ ନବାକ୍ଷରୀ ଭାଗବତ ଗାୟନ କଲେ । ରାଜା ତାହା ଶ୍ରବଣ କରି ନିଜ ଜୀବନ ଧନ୍ୟ କଲେ ଏବଂ ଭାଗବତ ଶ୍ରବଣ ଶେଷରେ ଭକ୍ତ ଶ୍ରୀଜଗନ୍ନାଥ ଦାସଙ୍କୁ ଅନେକ ବସ୍ତ୍ରାଭୂଷଣ ଦେଇ ସମ୍ମାନିତ କଲେ ।

ଏହି ଘଟଣା ପରେ ଗଜପତି ରାଜା ପ୍ରତାପରୁଦ୍ର ଦେବ ତାଙ୍କର ମହିମା ବୁଝିଗଲେ । ସେ ତାଙ୍କୁ ନାରୀ ସ୍ୱରୂପ ବୁଝି ନିଜ ରାଣୀ ଗୌରୀ ଦେବୀଙ୍କୁ ଦୀକ୍ଷା ପ୍ରଦାନ କରିବାକୁ ଅନୁରୋଧ କଲେ ଏବଂ ତାଙ୍କର ମନ ରଖି ଦାସେ ରାଣୀଙ୍କୁ ଦୀକ୍ଷା ଦେଲେ । ରାଣୀଙ୍କ ସାମୟିକ ଅବସ୍ଥାନ ପାଇଁ ନିର୍ମିତ ଭବନଟିକୁ ରାଜା ଜଗନ୍ନାଥ ଦାସଙ୍କ ଅବସ୍ଥାନ ପାଇଁ ଅର୍ପଣ କଲେ । ସେ ସେଠାରେ କିଛି କାଳ ବ୍ୟତୀତ କରିଥିଲେ । ତାହା ଆଜି ବଡ଼ ଓଡ଼ିଆ ମଠ ରୂପେ ପ୍ରସିଦ୍ଧ ହୋଇଛି । ନିରପରାଧ ସାଧୁଙ୍କ ବିରୁଦ୍ଧରେ ଅଭିଯୋଗ କରିଥିବା ଖଚୁଆ ଓ ଚୁଗୁଲିଖୋର ଲୋକମାନଙ୍କୁ ରାଜା କଠୋର ଦଣ୍ଡ ଦେଲେ । ଇତିମଧ୍ୟରେ ଭକ୍ତ ଜଗନ୍ନାଥ ଦାସ ବଟଗଣେଶଙ୍କ ପାଖରେ ବସି ପ୍ରତ୍ୟହ ଭଗବତ ଶୁଣାଇବାର ଅନୁମତି ପାଇ ଯାଇଥାନ୍ତି ରାଜାଙ୍କ ଠାରୁ । ବହୁ ଲୋକେ ସେଠାରେ ରୁଣ୍ଡ ହୋଇ ବ୍ୟାସଦେବଙ୍କ ଭାଗବତର ଅର୍ଥ ନିଜ ଭାଷାରେ, ପୁଣି ସରଳ ଓ ସହଜ ବୋଧଗମ୍ୟ ସୁଲଳିତ ପଦାବଳୀ ମାଧ୍ୟମରେ ଶ୍ରବଣ କରି ପ୍ରଭୁଙ୍କ କୃପା ଅନୁଭବ କରୁଥାନ୍ତି । ପ୍ରତିଦିନ ଯଥା ସମୟରେ ଏହି କାର୍ଯ୍ୟକ୍ରମ ଚ୍ଳିଥାଏ ।

ଥରେ ବଙ୍ଗପ୍ରଦେଶରୁ ଆସିଥିବା ଶ୍ରୀମନ୍ ଚୈତନ୍ୟ ମହାପ୍ରଭୁ ସଶିଷ୍ୟ ଶ୍ରୀମନ୍ଦିର ଦର୍ଶନକୁ ଆସିଥିବା ବେଳେ ଦେଖିଲେ ଭକ୍ତ ଜଗନ୍ନାଥ ଦାସ ବଟ ଗଣେଶଙ୍କ ନିକଟରେ ବସି ଭାଗବତ ଶୁଣାଉଛନ୍ତି । ତାଙ୍କର ଉଜ୍ଜ୍ୱଳ ମୁଖମଣ୍ଡଳ ଏକ ଅଦ୍ଭୁତ ଦୀପ୍ତିରେ ଜାଜ୍ୱଲ୍ୟମାନ । ମୁଖର ଭାବଭଙ୍ଗୀରୁ ତାଙ୍କର ଅକୃତ୍ରିମ ତନ୍ମୟତା ସ୍ପଷ୍ଟ ଝଲସି ଉଠୁଛି । ଭାଗବତର ଭାବ-ମହାସିନ୍ଧୁରେ ନିମଜ୍ଜିତ ହୋଇ ସେ ସରଳ ଭାଷାରେ ଭାଗବତ ଅତି ସୁନ୍ଦର ଭାବରେ ଶୁଣାଉଛନ୍ତି । ଶ୍ରୀମନ୍ ମହାପ୍ରଭୁ ତାଙ୍କର ଜ୍ଞାନ, ପାଣ୍ଡିତ୍ୟ, ଧର୍ମଧାରଣା, ଭାଗବତ ରଚନାଶୈଳୀ ସର୍ବୋପରି ଭକ୍ତିଭାବ ଦେଖି ମୁଗ୍ଧ ହୋଇଗଲେ । ଶେଷରେ ସେ ଏତେ ଭାବବିହ୍ୱଳ ହୋଇଗଲେ

ଯେ ନିଜକୁ ଆଉ ସମ୍ଭାଳି ପାରିଲେ ନାହିଁ। ତତ୍‌କ୍ଷଣାତ୍ ଭକ୍ତକବିଙ୍କ ନିକ୍‌ଟକୁ ଚ୍ଚାଲିଯାଇ ତାଙ୍କୁ ସହର୍ଷ ଆଲିଙ୍ଗନ କରି ଆତ୍ମବିଭୋର ହୋଇଗଲେ। ଭାବାବେଶରେ ଉଭୟଙ୍କ ନେତ୍ରରୁ ନିରବଚ୍ଛିନ୍ନ ଅଶ୍ରୁଧାରା ପ୍ରବାହିତ ହେବାକୁ ଲାଗିଲା। ସମୟର ଜ୍ଞାନ ରହିଲା ନାହିଁ। ଦୁଇ ଭକ୍ତଙ୍କର ଏହି ଅପୂର୍ବ ମିଳନର ଦୃଶ୍ୟ ଅତ୍ୟନ୍ତ ଅଦ୍ଭୁତ ଥିଲା। ଅଢ଼େଇ ଘଡି ଏହି ମୁଦ୍ରାରେ ରହିଗଲେ ସେ ଦୁହେଁ। ଶେଷରେ ଶ୍ରୀମନ୍ ମହାପ୍ରଭୁ ଭାଗବତକାର ଶ୍ରୀଜଗନ୍ନାଥଦାସଙ୍କ ଶିରରେ ଶିରପା ବାନ୍ଧିଦେଇ ତାଙ୍କୁ 'ଅତିବଡି' ବୋଲି କହି ସମ୍ମାନିତ କଲେ।

ଏହାପରେ ଜଗନ୍ନାଥ ଦାସଙ୍କୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସାନ୍ନିଧ୍ୟ ମିଳିଗଲା। ଉଭୟଙ୍କ ମଧ୍ୟରେ ବେଳେ ବେଳେ ଅନ୍ତରଙ୍ଗ ଆଳାପ ଚ୍ଚାଲେ। ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କ ଭିତରେ ସଖୀଭାବ ଓ ରାଧାଭାବ ଲକ୍ଷ୍ୟ କରି ତାଙ୍କୁ କେବେ କେବେ 'ସ୍ୱାମିନୀ' ରୂପେ ସମ୍ବୋଧନ କରନ୍ତି ଓ ତାଙ୍କୁ ଆଦର ଦିଅନ୍ତି। ମାତ୍ର ଜଗନ୍ନାଥ ଦାସଙ୍କ ପ୍ରତି ତାଙ୍କର ଏଭଳି ସ୍ନେହ ଦେଖି ତାଙ୍କ ସାନ୍ନିଧ୍ୟରେ ରହୁଥିବା କେତେକ ବଙ୍ଗୀୟ ବୈଷ୍ଣବ ଈର୍ଷାରେ ଜଳି ଉଠିଲେ; କାରଣ ସେମାନଙ୍କ ମନରେ ଭକ୍ତି ଓ ଭାବ ତୁଳନାରେ ଗୁରୁମନ୍ତ୍ର ଓ ଦୀକ୍ଷାର ମହତ୍ତ୍ୱ ସର୍ବୋଚ୍ଚ ଥିଲା। ଜଗନ୍ନାଥ ଦାସଙ୍କୁ ସ୍ୱପ୍ନରେ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ ଠାକୁରେ ଯେ ଦୀକ୍ଷା ଦେଇଛନ୍ତି, ସେ କଥା ସେମାନଙ୍କୁ ଜଣା ନ ଥିଲା। ତେଣୁ ସେମାନେ ତାଙ୍କୁ ଅଣଉପଦେଶିଆ ମନେ କରୁଥିଲେ। ଦାସେ ଏକଥା ଅନୁଭବ କରି ଦୀକ୍ଷା ପ୍ରଦାନ ନିମନ୍ତେ ଚୈତନ୍ୟ ମହାପ୍ରଭୁଙ୍କୁ ଅନୁରୋଧ କଲେ। ମାତ୍ର ଭକ୍ତ ଜଗନ୍ନାଥ ଦାସଙ୍କର ଯେ ଉତ୍କଳୀୟ ମତରେ ପ୍ରୀତି ଅଧିକ, ଏ କଥା ତାଙ୍କୁ ଅଜଣା ନ ଥିଲା। ତେଣୁ ସେ ବଳରାମ ଦାସଙ୍କ ଠାରୁ ଦୀକ୍ଷା ନେବାକୁ ପରାମର୍ଶ ଦେଲେ। ଜଗନ୍ନାଥ ଦାସ **'ହରେ ରାମ ହରେ ରାମ ରାମ ରାମ ହରେ ହରେ। ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ॥'** ଏହି ଉତ୍କଳୀୟ ବୈଷ୍ଣବ ମନ୍ତ୍ରରେ ଦୀକ୍ଷିତ ହେଲେ। ଗୌରାଙ୍ଗ ମହାପ୍ରଭୁଙ୍କ ସାନ୍ନିଧ୍ୟ ସାଙ୍ଗକୁ ତାଙ୍କ ସେବାର ମଧ୍ୟ ଅବସର ମିଳିଗଲା ବୈଷ୍ଣବ ଜଗନ୍ନାଥଙ୍କୁ।

ସେତେବେଳକୁ ତାଙ୍କ ଭାଗବତର ପ୍ରଚ୍ଚାର ଦିନକୁ ଦିନ ବଢ଼ି ଚ୍ଚାଲିଥାଏ। ଲୋକେ ଭାଗବତର ପ୍ରତିଲିପି ପ୍ରସ୍ତୁତ କରି ତାହାକୁ ପାଠ ଓ ପୂଜା କରିବା ଆରମ୍ଭ କରି ଦେଇଥିଲେ। କଳିପାବନାବତାର ଶ୍ରୀମନ୍ ଚୈତନ୍ୟ ମହାପ୍ରଭୁ ଓ ଭକ୍ତ ବଳରାମ ଦାସ ପ୍ରଭୃତି ପଞ୍ଚସଖାଙ୍କର ଭକ୍ତିର ପ୍ରଭାବରେ ଓଡିଶାର ଧର୍ମଚେତନା

ଅଧିକରୁ ଅଧିକ ବିସ୍ତାରିତ ହେବାକୁ ଲାଗିଥାଏ। ଲୋକେ ଭାଗବତର ପୋଥିକୁ ବାସୁଦେବଙ୍କର ସାକ୍ଷାତ୍ ବିଗ୍ରହ ତୁଲ୍ୟ ମନେ କରୁଥାନ୍ତି। କେବେ କେବେ ପ୍ରାକୃତିକ ବିପର୍ଯ୍ୟୟ ଓ ଅମଙ୍ଗଳ ନାଶ ପାଇଁ ଲୋକେ ସେହି ଭାଗବତ ପୋଥିକୁ ଆସ୍ଥାନରେ ରଖି ତାର ଚତୁଷ୍ପାର୍ଶ୍ୱରେ ମଣ୍ଡଳାକାରରେ ବୁଲି ନାମ ସଂକୀର୍ତ୍ତନ କରନ୍ତି। ଏଥିରେ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଓ ଜଗନ୍ନାଥ ଦାସଙ୍କ ସମେତ ପଞ୍ଚସଖାଙ୍କୁ ଆମନ୍ତ୍ରିତ କରାଯାଏ। ଅନେକ ସାଧୁ ବୈଷ୍ଣବ ଓ ଭକ୍ତମାନଙ୍କର ସମାଗମରେ ଗଗନପବନ ମୁଖରିତ ହୋଇଉଠେ। ସର୍ବତ୍ର ଭକ୍ତିର ତରଙ୍ଗ ଖେଳିଯାଏ।

ଜଗନ୍ନାଥ ଦାସ କେବଳ ଏତିକିରେ ତାଙ୍କର ଲେଖନୀକୁ ବିଶ୍ରାମ ଦେଇ ନ ଥିଲେ। ସେ ଭକ୍ତିମୟ ସାଧନରେ ମଗ୍ନ ରହି ଲେଖି ଚାଲିଲେ ଉଭୟ ଓଡିଆ ଓ ସଂସ୍କୃତରେ ଅନେକ ଭକ୍ତିଭାବ ବିସ୍ତାରକ ଗ୍ରନ୍ଥ। ତାଙ୍କ ଲିଖିତ ପ୍ରାୟ ଷାଠିଏ ଖଣ୍ଡ ଓଡିଆ ରଚନା ମଧ୍ୟରୁ ଅର୍ଥ କୋଇଲି, ଗୁପ୍ତ ଭାଗବତ, ତୁଳାଭିଣା, ଦାରୁବ୍ରହ୍ମ ଗୀତା, ଶୈବାଗମ ଭାଗବତ ଇତ୍ୟାଦି ମୁଖ୍ୟ। ସଂସ୍କୃତରେ ନୀଳାଦ୍ରି ଶତକମ୍, ଉପାସନା ଶତକମ୍, କୃଷ୍ଣଭକ୍ତି କଳ୍ପଲତା ଇତ୍ୟାଦି ତାଙ୍କର ଅମୂଲ୍ୟ କୃତି।

ଜଗନ୍ନାଥ ଦାସ ଥିଲେ ସଖୀଭାବାପନ୍ନ ବୈଷ୍ଣବ। ତେଣୁ ତାଙ୍କର ଭକ୍ତିର ସିଦ୍ଧି ଫଳରେ ଦେବକନ୍ୟାମାନେ ଛଦ୍ମବେଶରେ ତାଙ୍କର ସେବା କରିବାକୁ ଆସନ୍ତି। ଏକଥା ମଧ୍ୟ ପୂର୍ବପରି ରାଜାଙ୍କ କାନରେ ପଡ଼ିଲା। ମାତ୍ର ସେ ପୂର୍ବପରି କଠୋର ନ ହୋଇ କେବଳ ନିଜର କର୍ତ୍ତବ୍ୟ ପାଳନ ଦୃଷ୍ଟିରୁ ସେମାନଙ୍କ ପରିଚୟ ପାଇବାକୁ ଇଚ୍ଛା କଲେ। ସେ ନିଜର ଗୁପ୍ତଚରଙ୍କୁ ପଠାଇଲେ। ଗୁପ୍ତଚରମାନେ ସେମାନଙ୍କୁ ଧରିବାକୁ ଚେଷ୍ଟା କରିବା ମାତ୍ରେ ସେମାନେ ଅନ୍ତର୍ହିତ ହୋଇଯାଇଥିଲେ।

ଏଭଳି ଆଉ ଗୋଟିଏ ଅଦ୍ଭୁତ ଘଟଣା ବିଷୟରେ ଶୁଣିବାକୁ ମିଳେ ତାଙ୍କ ଜୀବନରେ। ଥରେ ଜାଣୀରାମ ନାମକ ଜଣେ ବଡ଼ ବ୍ୟବସାୟୀ ପୁରୀ ଆସିଥିଲେ। ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ପାଇଁ ରାଜାଙ୍କୁ ଭେଟିଲେ ଏବଂ ଠାକୁରଙ୍କ ଶ୍ରୀଅଙ୍ଗରେ ଲାଗି କରାଇବା ନିମନ୍ତେ ବହୁ ମୂଲ୍ୟ ଚନ୍ଦନ ଖଣ୍ଡେ ଦେଇଗଲେ ରାଜାଙ୍କୁ। ରାଜା ସେହି କାର୍ଯ୍ୟ ଭକ୍ତ ଜଗନ୍ନାଥ ଦାସଙ୍କ ଉପରେ ନ୍ୟସ୍ତ କଲେ। ସେ ତାହାକୁ ଆଣି ମଠରେ ରଖିଲେ। ମାତ୍ର ଥରେ ପ୍ରଭୁଙ୍କ ଧ୍ୟାନରେ ତନ୍ମୟ ହୋଇଥିବା ଅବସ୍ଥାରେ ସେ ନିଜ ସମ୍ମୁଖରେ ପ୍ରଭୁଙ୍କୁ ଅନୁଭବ କରି ମଠର କାଛରେ ହିଁ ଚନ୍ଦନ ବୋଳିଦେଲେ। ପ୍ରଭୁ ତ ଭକ୍ତର ଭାବ ଅନୁସାରେ ହିଁ ତା'ର ଅର୍ପିତ ଦ୍ରବ୍ୟକୁ ଗ୍ରହଣ କରିଥାନ୍ତି। ସେଇଠାରେ ହିଁ ସେ ତାହାକୁ ଅଙ୍ଗୀକାର କରି

ସାରିଥିଲେ। ମାତ୍ର ଏ ଅନ୍ତରଙ୍ଗ ଭାବକୁ ବାହ୍ୟଚକ୍ଷୁରେ ଦେଖୁଥିବା ଲୋକେ ତ ବୁଝି ପାରନ୍ତି ନାହିଁ। ଏ କଥା ରାଜାଙ୍କ କାନରେ ପଡ଼ିଗଲା ଯେ ସେ ଦେଇଥିବା ବହୁମୂଲ୍ୟ ଚନ୍ଦନ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଲାଗି କରିବା ପରିବର୍ତ୍ତେ ଦାସେ ମାଟି କାନ୍ଥରେ ବୋଳି ଦେଇଛନ୍ତି। ରାଜା ପଚ୍ଚାରିବାରୁ ଦାସେ ନିଃସଙ୍କୋଚ ଓ ବିନା ଦ୍ୱିଧାରେ ଉତ୍ତର ଦେଲେ—"ମୁଁ ଠାକୁରଙ୍କ ଅଙ୍ଗରେ ଚନ୍ଦନ ଲେପି ଦେଇଛି।" ରାଜା ପରୀକ୍ଷା ଉଦ୍ଦେଶ୍ୟରେ ଶ୍ରୀମନ୍ଦିର ଗଲେ। ସେଠାରେ ପ୍ରବେଶ କରୁ କରୁ ତାଙ୍କୁ ଅପୂର୍ବ ଦିବ୍ୟ ସୁଗନ୍ଧ ଅନୁଭବ ହେଲା ଏବଂ ଦିଅଁଙ୍କ ନିକଟକୁ ଯାଇ ଦେଖିଲେ ଯେ ସତକୁ ସତ ତିନି ଠାକୁରଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲେପିତ ହୋଇଛି।

ଥରେ ଜଣେ ଅଦ୍ୱୈତ ସିଦ୍ଧାନ୍ତର କଠୋର ସମର୍ଥକ ତଥା ଦିଗ୍‌ବିଜୟୀ ବିଦ୍ୱାନ୍ ବ୍ରହ୍ମାନନ୍ଦ ବହୁ ବିଦ୍ୱାନଙ୍କୁ ଶାସ୍ତ୍ରଚର୍ଚ୍ଚାରେ ପରାସ୍ତ କରି ଆସି ଜଗନ୍ନାଥ ଦାସଙ୍କ ନିକଟରେ ପହଞ୍ଚିଲେ। ଯଦିଓ ଏହା ଭକ୍ତିମାର୍ଗୀ ନିମନ୍ତେ ସ୍ପୃହଣୀୟ ନୁହେଁ, ତଥାପି ତାଙ୍କର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରି ନ ପାରି ଦାସେ ତାହାଙ୍କ ସହିତ ଶାସ୍ତ୍ରଚର୍ଚ୍ଚା କଲେ। ଶେଷରେ ଜଗନ୍ନାଥ ଦାସ ଜ୍ଞାନମିଶ୍ରାଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଦେଲେ। ବିଦ୍ୱାନ ବ୍ରହ୍ମାନନ୍ଦ ଜଗନ୍ନାଥ ଦାସଙ୍କ ପାଣ୍ଡିତ୍ୟ ନିକଟରେ ପରାସ୍ତ ହୋଇ ତାଙ୍କୁ ସମ୍ମାନିତ କରି ଫେରିଗଲେ।

ବଡ଼ ଓଡ଼ିଆ ମଠରେ ତାଙ୍କର ଅବସ୍ଥାନ କାଳରେ ଲୋକପ୍ରସିଦ୍ଧି ହେତୁ ତାଙ୍କ ସାଧନାରେ ବାରମ୍ବାର ବିଘ୍ନ ଉପସ୍ଥିତ ହେଲା। ସେ ସେଠାରୁ ଯାଇ ସମୁଦ୍ରକୂଳରେ ମହାପ୍ରସାଦ କୁଡୁଆମାନ ଖଞ୍ଜି ଗୁମ୍ଫାଟିଏ ତିଆରି କଲେ ଏବଂ ସେହିଠାରେ ରହି ସାଧନ ଭଜନରେ ମଗ୍ନ ରହିଲେ। ମାତ୍ର ସମୁଦ୍ର ଲହରୀ ଓ ଗର୍ଜନ ହେତୁ ପୁନଃ ତାଙ୍କର ସାଧନା ବାଧାପ୍ରାପ୍ତ ହେଲା। ତେଣୁ ସେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିଜର ମନବେଦନା ଜଣାଇଲେ। ପ୍ରଭୁଙ୍କ ଆଦେଶରେ ସମୁଦ୍ର ସାତ ଲହରୀ ପଛକୁ ଘୁଞ୍ଚିଗଲା। ମଠଟି ସେହିଦିନ ଠାରୁ ସାତଟି ଲହଡ଼ି ମଠ ନାମରେ ପ୍ରସିଦ୍ଧି ଲାଭ କଲା।

ଏକାଧାରରେ ଜଣେ ସନ୍ଥ, କବି ଓ ଭକ୍ତରୂପେ ପରିଚିତ ଜଗନ୍ନାଥଦାସ ତାଙ୍କ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭକ୍ତି ଓ ଆରାଧନାରେ ନିୟୋଜିତ କରିଥିଲେ। ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ସେ ଶ୍ରୀକୃଷ୍ଣଙ୍କୁ ଅଭିନ୍ନ ଭାବରେ ଦର୍ଶନ କରୁଥିଲେ। ନିଜର ସେହି ଭଜନକୁଟୀର ସାତ ଲହଡ଼ି ମଠରେ ସେ

ଷାଠିଏ ବର୍ଷ ବୟସରେ ଖ୍ରୀ. ଅ. ୧୫୪୭ ମାଘ ଶୁକ୍ଳ ସପ୍ତମୀ ଦିନ ହରିନାମ ସଂକୀର୍ତ୍ତନ ଶ୍ରବଣ କରୁ କରୁ ପାର୍ଥିବ ଦେହ ତ୍ୟାଗ କରି ପରମ ଧାମକୁ ଚାଲିଯାଇଥିଲେ। ତାଙ୍କ ପାର୍ଥିବ ଶରୀର ସିନା ରହିଲା ନାହିଁ, କିନ୍ତୁ ଓଡ଼ିଆ ସଂସ୍କୃତିର ପ୍ରାଣକେନ୍ଦ୍ର ତଥା ସର୍ବଜନ ପରିଚିତ ତାଙ୍କର ଭାଗବତ ଆଜି ମଧ୍ୟ ଓଡ଼ିଶାକୁ ଆଧ୍ୟାତ୍ମିକ ଜ୍ଞାନରେ ଭାସ୍ୱର କରି ରଖିଛି। ଗ୍ରାମେ ଗ୍ରାମେ ଓ ଘରେ ଘରେ ତାଙ୍କ ରଚିତ ଭାଗବତ ତାଙ୍କର ଅମ୍ଳାନ ସ୍ମୃତିର ନିଦର୍ଶନ ରୂପେ ପୂଜିତ ଓ ପଠିତ ହେଉଛି ତଥା ଆବାଳବୃଦ୍ଧବନିତାଙ୍କ କଣ୍ଠରେ ତାଙ୍କ ଭାଗବତର ସୂକ୍ତିମାନ ସେମାନଙ୍କ ଜ୍ଞାତ ଓ ଅଜ୍ଞାତରେ ମଧ୍ୟ ଭୂଷଣରୂପେ ଶୋଭାପାଉଛି।



## ଭକ୍ତ କାମଧ୍ୱଜ

ସାଧାରଣ ମୂଲିଆଟିଏ କାହା ଘରେ କାମ କଲେ ମାଲିକ ତା'ର ଦାୟିତ୍ୱ ବୁଝେ, ତା' ସୁଖ-ଦୁଃଖରେ ସହାୟ ହୁଏ। ତେବେ ଜଗତଠାକୁରଙ୍କ ପାଇଁ ଜୀବନ ଉତ୍ସର୍ଗ କରିଦେଇଥିବା ଭକ୍ତର ଦାୟିତ୍ୱ କ'ଣ ସେ ବୁଝିବେ ନାହିଁ? ନା ନା, ପ୍ରଭୁଙ୍କ ସ୍ୱଭାବରେ ଏଭଳି ସନ୍ଦେହର କଳ୍ପନା ମଧ୍ୟ ପାପ। ସାଧାରଣ ମାଲିକ ସଙ୍ଗେ ଭଗବାନଙ୍କୁ ତୁଳନା କରିବା ତାଙ୍କ ଉଦାରତାର ଅପମାନ। ଭଗବାନ ତ ଏତେ ଉଦାର ଯେ ତାଙ୍କୁ ଭଜୁ ନ ଥିବା ଲୋକର, ଏପରି କି ତାଙ୍କୁ ନିନ୍ଦା କରୁଥିବା ଲୋକର ଦାୟିତ୍ୱ ବି ସେ ବୁଝନ୍ତି, ତେବେ ଭକ୍ତକୁ ସେ ଅବହେଳା କରିଦେବେ କିପରି? ଅବହେଳା ତ ଦୂରର କଥା, ସେ ବରଂ ନିଜର ପ୍ରତିଜ୍ଞାକୁ ପଛ କରି ନିଜ ହାତରେ ଭକ୍ତର ପ୍ରତିଜ୍ଞା ଧ୍ୱଜା ଉଡ଼ାନ୍ତି। ଭକ୍ତ ମୁଖରୁ ଜ୍ଞାତ-ଅଜ୍ଞାତରେ ଯାହା ଥରେ ବାହାରି ପଡ଼େ, ପ୍ରଭୁ ତାହାକୁ ପାଳନ କରିବାକୁ କଟିବଦ୍ଧ ହୋଇ ନିଜର ଭକ୍ତବତ୍ସଳ ନାମକୁ ସାର୍ଥକ କରିଥାନ୍ତି।

ପରମ ନିଷ୍ଠାପର ଭକ୍ତ କାମଧ୍ୱଜଙ୍କ ପାଇଁ ଭଗବାନ ଏପରି ଗୋଟିଏ ଅଦ୍ଭୁତ ଲୀଳା କରିଥିଲେ, ଯାହା ଶୁଣିଲେ ଦେହ ଶିହରି ଉଠେ। ସତୀତ୍ୱ, ବୀରତ୍ୱ ଓ ଭକ୍ତିରେ ମହିମା ମଣ୍ଡିତ ରାଜସ୍ଥାନ ପ୍ରାନ୍ତର ଉଦୟ ପୁର ଜିଲ୍ଲାରେ କାମଧ୍ୱଜଙ୍କର ଜନ୍ମ। ଚାରିଭାଇଙ୍କ ଭିତରେ ସେ ଥିଲେ ସବା ସାନ। ବଡ଼ ତିନି ଭାଇ ଉଦୟପୁର ରାଜା ଶ୍ରୀ ରାଣାପ୍ରତାପ ସିଂହଙ୍କ ରାଜଦରବାରରେ ଚାକିରୀ କରୁଥିଲେ। ରାଜାଙ୍କ ତରଫରୁ କାମଧ୍ୱଜଙ୍କୁ ମଧ୍ୟ ଚାକିରୀ ପାଇଁ ଡକରା ଆସିଥିଲା, କିନ୍ତୁ ତାହା ସେ

ସ୍ୱୀକାର କଲେ ନାହିଁ। ସେ ଥିଲେ ଭଗବତ୍‌ବିଶ୍ୱାସୀ, ତେଣୁ ଭଗବାନ ଥାଉ ଥାଉ ଅନ୍ୟ କାହାର ଅଧୀନସ୍ଥ ହୋଇ ତା' ଦୁଆରେ ଚାକିରୀ କରି ହାତ ପାତିବାକୁ ସେ ଭଗବାନଙ୍କର ଅପମାନ ମଣୁଥିଲେ। ତାଙ୍କର ବିଶ୍ୱାସ ଥିଲା ଯେ ଯିଏ ଜନ୍ମ ଦେଇଛି, ସେ ପାଳନ କରିବାର ମଧ୍ୟ ବ୍ୟବସ୍ଥା କରିଛି।

ଏହାର ଅର୍ଥ ନୁହେଁ ଯେ ସେ କର୍ତ୍ତବ୍ୟରେ ଅବହେଳା କରୁଥିଲେ। କର୍ତ୍ତବ୍ୟ ତ ତାଙ୍କ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ଥିଲା। ତାଙ୍କର କର୍ତ୍ତବ୍ୟ ନିଷ୍ଠା ଆଗରେ ତ ବଡ଼ ବଡ଼ କର୍ତ୍ତବ୍ୟନିଷ୍ଠ ମଧ୍ୟ ହାରମାନି ତାଙ୍କୁ ପ୍ରଣାମ କରନ୍ତି। କିନ୍ତୁ ସେ କେବଳ ଦୈହିକ କର୍ତ୍ତବ୍ୟକୁ ସବୁ କିଛି ଭାବୁ ନ ଥିଲେ। ସେ ଜୀବନର ପରମ କର୍ତ୍ତବ୍ୟ ବୁଝି ସାରିଥିଲେ। ଜୀବ ଏ ସଂସାରକୁ ଯେଉଁଥିପାଇଁ ଆସିଛି, ସେହି କାର୍ଯ୍ୟଟି କରିଦେଲେ ସବୁ କର୍ତ୍ତବ୍ୟ ପାଳିତ ହୋଇଯାଏ ବୋଲି ତାଙ୍କର ଦୃଢ଼ ବିଶ୍ୱାସ। ତେଣୁ ସେ ରାଜଦରବାରରେ ଚାକିରୀ ନ କରି ନିଜକୁ ପ୍ରଭୁଙ୍କର ଚାକର କରିଦେଇଥିଲେ। ତାଙ୍କର ପବିତ୍ର ଭକ୍ତିଭାବକୁ ନ ବୁଝି ଭାଇମାନେ ବେଳେ ବେଳେ ତାଙ୍କୁ ଉଦର ପୋଷଣ ପାଇଁ ଚାକିରୀ ଖଣ୍ଡିଏ କରିବାକୁ ବାଧ୍ୟ କରନ୍ତି। କିନ୍ତୁ ସବୁ ପାଳି ସେ ଟିକିଏ ହସିଦେଇ କହନ୍ତି—"ମୁଁ କୌଣସି ଚାକରର ଚାକର ହେବି ନାହିଁ, ଯଦି ହେବି ମାଲିକଙ୍କର ଚାକର ହେବି। ଯିଏ ଏ ଜଗତର ମାଲିକ, ତାଙ୍କ ଦୁଆରେ ଚାକିରି କରିବି।" ଅନ୍ୟ ଭାଇମାନେ ତାଙ୍କ କଥାର ରହସ୍ୟ ନ ବୁଝି ତାଙ୍କୁ ପାଗଳ ଭାବି ହତାଦର କରନ୍ତି।

ରୋଜଗାରିଆ ଲୋକକୁ ସମସ୍ତେ ଭଲ ପାଇବା ସ୍ୱାଭାବିକ କଥା। ବସି ରହିଥିବା ଲୋକକୁ କିଏ କାହିଁକି ବା ଭଲ ପାଇବ? ଯଦିବା କାମଧ୍ୱଜ ବସି ରହି ସମୟ ନଷ୍ଟ କରୁ ନ ଥିଲେ, ଠାକୁରଙ୍କ ସେବା, ପୂଜା, ଆରାଧନାରେ ସମୟ କାଟୁଥିଲେ, ତଥାପି ଘର ଲୋକଙ୍କ ପାଇଁ ସେ ଚକ୍ଷୁଶୂଳ ହୋଇଗଲେ। ସମସ୍ତଙ୍କ ଠାରୁ ହୀନିମାନ ହୋଇ ଦିନେ ସେ ଭାବିଲେ ଯେ ତାଙ୍କର ବଡ଼ ତିନି ଭାଇ ଯେପରି ପ୍ରତିଦିନ ରାଜଦରବାରକୁ ଚାକିରୀ କରିବାକୁ ଯାଉଛନ୍ତି, ସେ ମଧ୍ୟ ସେହିପରି ଜଗତ ମାଲିକଙ୍କର ଚାକିରୀ କରିବାକୁ ଯିବେ। ତା' ପରଦିନ ସକାଳୁ ସେ କାହାକୁ କିଛି ନ କହି ଏକାକୀ ଘର ପାଖ ଜଙ୍ଗଲକୁ ଚାଲିଗଲେ ଏବଂ ସେଠାରେ ଭକ୍ତବତ୍ସଳ ଭାବଗ୍ରାହୀଙ୍କର ପବିତ୍ର ନାମ-ଗୁଣ କୀର୍ତ୍ତନ କରି ଓ ହୃଦୟ ଆସନରେ ପ୍ରଭୁଙ୍କୁ ବିରାଜମାନ କରାଇ ଧ୍ୟାନମଗ୍ନ ହୋଇଗଲେ। ପ୍ରଭୁଙ୍କ ଆଗରେ ଅନ୍ତରର ବେଦନା ପ୍ରକାଶ କରି ତାଙ୍କ ମନ ଟିକିଏ ହାଲୁକା ହେଲା। ତାଙ୍କୁ

ଲାଗିଲା ଭଗବାନ ସତେ ଯେପରି କହୁଛନ୍ତି ଯେ—"କାମଧ୍ୱଜ! ମୁଁ ପରା ତୋର ଏବଂ ତୁ ପରା ମୋର, ପୁଣି ଚିନ୍ତା କରୁଛୁ କାହିଁକି?" ପ୍ରଭୁଙ୍କ ଠାରୁ ଏଭଳି ଆଶ୍ୱାସନା ପାଇ କାମଧ୍ୱଜ ସେହି ଦିନଠାରୁ ନିଶ୍ଚିନ୍ତ ଓ ନିର୍ଭୟ ହୋଇଗଲେ।

ପୟସ୍ୱିନୀ ଭାଗୀରଥୀ ଗଙ୍ଗାର ପ୍ରଖର ଧାରା ସମୁଦ୍ରରେ ମିଶିବା ପାଇଁ ଅବାଧ ଗତିରେ ପ୍ରବାହିତ ହେବା ଭଳି ତାଙ୍କର ଏହି ପ୍ରଭୁଭକ୍ତିର ଧାରା ଅବାଧ ଜାରି ରହିଲା। ପ୍ରଭୁଙ୍କ ନାମ-ସଂକୀର୍ତ୍ତନ କଲାବେଳେ ସେ ଏତେ ତନ୍ମୟ ହୋଇଯାଆନ୍ତି ଯେ ତାଙ୍କ ନେତ୍ରରୁ ଅବିରଳ ଅଶ୍ରୁ ବହିଗଲେ, ଦେହ ପୁଲକିତ ହୋଇଯାଏ ଏବଂ ଲୋମ ଟାଙ୍କୁରି ଉଠେ। ପ୍ରଭୁପ୍ରୀତି ଲାଭ ଆଶାରେ ସେ ପ୍ରଭୁଙ୍କ ପାଦତଳେ ପ୍ରଣତି ଜଣାଇଲାବେଳେ ତାଙ୍କର କଣ୍ଠ ଅବରୁଦ୍ଧ ହୋଇଯାଏ। ସଂକୀର୍ତ୍ତନ ମଝିରେ ସେ କାତର କଣ୍ଠରେ ଉଚ୍ଚ ସ୍ୱରରେ ଠାକୁରଙ୍କୁ ପ୍ରାର୍ଥନା ଜଣାଇ କହନ୍ତି—"ହେ ପ୍ରଭୁ! ହେ ମୋର ମାଲିକ! ତୁମେ ହିଁ ମୋର ସାହାଭରସା। ମୋ ଭଳି ହୀନିମାନଙ୍କୁ ଆପଣାର କରିନେଇ ପାଦପଦ୍ମରେ ସ୍ଥାନ ଦିଅ।" ତାଙ୍କର କରୁଣ ପ୍ରାର୍ଥନାରେ ଅରଣ୍ୟର ଶୁଷ୍କ ତରୁଲତା ମଧ୍ୟ ପୁଲକିତ ହୋଇ ଉଠନ୍ତି। ଅରଣ୍ୟର ଜୀବଜନ୍ତୁ ଧ୍ୟାନସ୍ଥ ହେଲା ଭଳି ସ୍ତବ୍ଧ ହୋଇଯାଆନ୍ତି। ଲାଗୁଥାଏ କାମଧ୍ୱଜଙ୍କ ସ୍ୱରରେ ସ୍ୱର ମିଶାଇ ସେମାନେ ବି ଠାକୁରଙ୍କୁ ପ୍ରାର୍ଥନା ଜଣାଉଛନ୍ତି। କି ଶକ୍ତି ତାଙ୍କର ସେହି ଆକୁଳ ପ୍ରାର୍ଥନାରେ! ଲାଗୁଥାଏ ତାଙ୍କ ହୃଦୟର କରୁଣାରେ ଠାକୁରଙ୍କୁ ଦ୍ରବିତ କରିବାର ଏକ ଅଦ୍ଭୁତ ଶକ୍ତି ରହିଛି, ପ୍ରଭୁଙ୍କର ରତ୍ନ ସିଂହାସନକୁ ଦୋହୋଲାଇ ଦେବା ପାଇଁ ଅଦ୍ଭୁତ କମ୍ପନ ଭରି ରହିଛି। କାହିଁକି ବା ନ ହୁଅନ୍ତା! ଯେଉଁ ପ୍ରାର୍ଥନାରେ ଜଡ଼ ପ୍ରକୃତି ଚେତନତ୍ୱ ଲାଭ କରୁଛି, ଜଙ୍ଗମ ପ୍ରାଣୀସମୂହ ମୂର୍ତ୍ତି ଭଳି ସ୍ଥାବର ପାଲଟିଯାଉଛି, ସେଥିରେ ଚିଦାନନ୍ଦଘନ ପ୍ରଭୁଙ୍କର ହୃଦୟ ତରଳିଯିବା କେଉଁ ବଡ଼ କଥା ଅବା? କାମଧ୍ୱଜଙ୍କ ପ୍ରାର୍ଥନା ସାଙ୍ଗକୁ ବନ୍ୟ ପଶୁପକ୍ଷୀଙ୍କର କଳରବକୁ ଅରଣ୍ୟ ସାରା ଭସାଇଦିଏ ଧୀର ସମୀର। ଲାଗୁଥାଏ ସତେ ଅବା ସେ ପ୍ରଭୁଙ୍କ ନିକଟରେ ଭକ୍ତଜନଙ୍କ ପ୍ରାର୍ଥନା ପହଞ୍ଚାଇବା ପାଇଁ ବାର୍ତ୍ତାବହ ସାଜିଛି।

ଭକ୍ତ କାମଧ୍ୱଜ ଏହିଭଳି ପ୍ରତିଦିନ ଅରଣ୍ୟରେ ଯାଇ ପ୍ରକୃତ ମାଲିକଙ୍କ ଦୁଆରେ ନାମଜପ, କୀର୍ତ୍ତନ ଓ ପ୍ରାର୍ଥନାରୂପୀ କାର୍ଯ୍ୟ ସାରି ସନ୍ଧ୍ୟାବେଳକୁ ଘରକୁ ଫେରନ୍ତି। ପୁଣି ପ୍ରସାଦ ପାଇ ପ୍ରଭୁଙ୍କୁ ସ୍ମରଣ କରି ଶୋଇଯାଆନ୍ତି। ତାଙ୍କର ସ୍ଥିତି ବୁଝି ନ ପାରି ପରିବାର ଲୋକେ ବ୍ୟସ୍ତ ହୁଅନ୍ତି। କହନ୍ତି, ଜଣା ନାହିଁ ଦିନସାରା କୁଆଡ଼େ ବୁଲି ବୁଲି ଆସି ସନ୍ଧ୍ୟାବେଳକୁ ପଙ୍ଗତରେ ବସିଯାଉଛି। ଏମିତି କେତେ

ଦିନ ଚଳିବ? କେମିତି ଘର ଗୁଜୁରାଣ ହେବ କେଜାଣି? କଥାରେ ଅଛି ବସି ଖାଇଲେ ନଈବାଲି ସରେ। ସବୁଦିନ ଏଇଟାକୁ କିଏ ପୋଷିବ? ଦିନେ ତାଙ୍କର ବଡ଼ ତିନିଭାଇ କହିଲେ—"କାମଧ୍ୱଜ! ତୁ ରାଜାଙ୍କ ଦରବାରରେ ଚାକିରୀ ନ କଲୁ ନାହିଁ, ଖାଲି ହାଜିରିଟାଏ ପକେଇଦେଇ ଆସ। ଆମେ ବାକି କାମ ସମ୍ଭାଳି ନେବୁ। ତୋତେ କିଛି ପରିଶ୍ରମ କରିବାକୁ ପଡ଼ିବ ନାହିଁ, ଆଉ ମାସକୁ ମାସ ଦରମାଟା ମିଳିଗଲେ ଆମର ଗୁଜୁରାଣ ସୁରୁଖୁରୁରେ ଚଳିବ।"

ସେମାନଙ୍କ ମୁଖରୁ ଏଭଳି ଅନୀତି କଥା ଶୁଣି କାମଧ୍ୱଜ କହିଲେ—"ଭାଇମାନେ! ଏ କ'ଣ କହୁଛ ତୁମେ? ମୋତେ ପାପ କରିବାକୁ ପରାମର୍ଶ ଦେଉଛ? ତୁମେ କ'ଣ ଜାଣି ନାହଁ ଯେ କର୍ତ୍ତବ୍ୟରେ ଅବହେଳା କରିବା କେତେ ବଡ଼ ଦୋଷ? ମୋତେ କ୍ଷମା କରିବ, ଏଭଳି ଅନୀତି ମୁଁ କରି ପାରିବି ନାହିଁ। କେବଳ ହାଜିରିଟା ଲଗାଇ ମାସିକ ବେତନ ଆଣିବା ଘୋର ଅନ୍ୟାୟ, ମହାପାପ। ଶାସ୍ତ୍ରରେ ଅଛି ଯେ ଅନ୍ୟାୟ ଉପାର୍ଜିତ ଧନ ଦଶ ବର୍ଷଯାଏ ରହେ। ଏଗାର ବର୍ଷ ବେଳକୁ ମୂଳ ସହିତ ସବୁ ନଷ୍ଟ ହୋଇଯାଏ—

**ଅନ୍ୟାୟୋପାର୍ଜିତଂ ବିତ୍ତଂ ଦଶବର୍ଷାଣି ତିଷ୍ଠତି।**
**ପ୍ରାପ୍ତେ ଚୈକାଦଶେ ବର୍ଷେ ସମୂଳଂ ତଦ୍ ବିନଶ୍ୟତି ॥**

ଭାଇ! ତୁମେମାନେ ମୋ ପାଇଁ ଚିନ୍ତା କରୁଛ କାହିଁକି? ମୁଁ ଯାହାଙ୍କର ସେବକ, ଯାହାଙ୍କ ପାଇଁ ମୁଁ କାର୍ଯ୍ୟ କରୁଛି, ଯାହାଙ୍କ ଦୁଆରେ ହାଜିରି ଲଗାଉଛି, ସେ କ'ଣ ମୋର ଦେଖାରେଖା କରିବେ ନାହିଁ? ତୁମର କ'ଣ ତାଙ୍କ ଉପରେ ବିଶ୍ୱାସ ନାହିଁ! ସେ ତ ସାରା ଜଗତକୁ ପାଳନ କରୁଛନ୍ତି, ପୁଣି ମୋତେ ପାଳିବାଟା କ'ଣ ତାଙ୍କୁ ବୋଝ ହେବ! ତୁମ ପାଇଁ ସିନା ମୁଁ ଚକ୍ଷୁଶୂଳ ହୋଇଛି, କିନ୍ତୁ ମୋର ମାଲିକ କ'ଣ ମୋତେ ହିନିମାନ କରିଦେବେ? ଯଦି ସାଧାରଣ ମାଲିକଟିଏ ମଧ୍ୟ ଠିକ୍ ସମୟରେ ଚାକରକୁ ତା' ବେତନ ଦେଉଛି, ତେବେ ସର୍ବନିୟନ୍ତା ପ୍ରଭୁ କ'ଣ ମୋର ଏତିକି ଖିଆଲ ରଖିବେ ନାହିଁ?

ବଡ଼ ତିନି ଭାଇଙ୍କ ପାଇଁ ଠାକୁରଭକ୍ତି ତ ଆକାଶ କଇଁଆ ଚିଲିକା ମାଛ ଭଳି କପୋଳ କଳ୍ପିତ ଥିଲା। ତାହାର ମହତ୍ତ୍ୱ ସେମାନେ କ'ଣ ବା ବୁଝିବେ! ସେମାନଙ୍କ ଦୃଷ୍ଟିରେ ତ କାମଧ୍ୱଜ ଥିଲେ କର୍ମକୁଣ୍ଠ। ବସି ଖାଉଥିବା ଲୋକ ମୁଖରୁ ଶାସ୍ତ୍ର ଉପଦେଶ, ତାହା ପୁଣି ସାନଭାଇଠାରୁ! ସେମାନଙ୍କ ମନରେ ପୂର୍ବରୁ ଜୁଳୁଜୁଳୁ ଥିବା କ୍ରୋଧାଗ୍ନିରେ ସତେ ଯେପରି ଘୃତାହୁତି ପଡ଼ିଗଲା। ରାଗରେ ନିଆଁବାଣ

ହୋଇ ତିନିଭାଇ ଏକସ୍ୱରରେ କହିଲେ—"ଥାଉ ଥାଉ, ବନ୍ଦ କର ଭାଷଣ। ଆମେ ଏମିତି ବହୁତ ଗାଲୁଗପ ଶୁଣିଛୁ। କ'ଣ କହିଲୁ, ତୋ ମାଲିକ ତୋତେ ପାଳୁଛନ୍ତି ଓ ପାଳିବେ? ହେଲା, ତୋ କଥା ହେଉ; କିନ୍ତୁ ତୁ ମରିଗଲେ ତୋ ମୁହଁରେ ନିଆଁ ଦେବ କିଏ? କିଏ ତୋର ଶୁଦ୍ଧିକ୍ରିୟା କରିବ? ତୋ ମାଲିକ କ'ଣ ଏସବୁ କରିବାକୁ ରହିଁ ବସିଛି?"

ଭକ୍ତ କାମଧ୍ୱଜ ଅତ୍ୟନ୍ତ ନିଷ୍ଠାପର। ପ୍ରଭୁଙ୍କ ପ୍ରତି ଭାଇମାନଙ୍କ ମୁଖରୁ ଏଭଳି କଟୁବଚନ ତାଙ୍କୁ ଅସହ୍ୟ ବୋଧହେଲା। ତାଙ୍କ ପାଟିରୁ ହାଠାତ୍ ବାହାରି ପଡ଼ିଲା—"ନିଶ୍ଚୟ, ନିଶ୍ଚୟ! ସେ ମୋତେ ରହିଁ ବସିଛନ୍ତି। ମୁଁ ଯାହାଙ୍କର ଚାକର, ଯାହାଙ୍କ ପାଇଁ ମୁଁ ଜୀବନ ବିକି ଦେଇଛି, ସେ ହିଁ ମୋ ମୁହଁରେ ନିଆଁ ଦେବେ। ଏଥିପାଇଁ ତୁମେମାନେ ଚିନ୍ତା କର ନାହିଁ।"

ଭକ୍ତର ଏହି ପ୍ରତିଜ୍ଞାଟି ପ୍ରଭୁ ରାମଚନ୍ଦ୍ରଙ୍କ ହୃଦୟ ଖାତାର ପ୍ରଥମ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବା ପରି ଛପିଗଲା। ସତରେ ପ୍ରଭୁ କେଡ଼େ ଦୟାଳୁ! ଭକ୍ତର ଅବଗୁଣ ତାଙ୍କୁ ଦେଖାଯାଏ ନାହିଁ, ଅଥଚ ତା'ର ଛୋଟ-ବଡ଼ ପ୍ରତ୍ୟେକ ଶୁଭ ସଂକଳ୍ପକୁ ସେ ଶହେ ଥର ସ୍ମରଣ କରନ୍ତି, ତା'ର ରୁଚି ଅନୁସାରେ ସବୁ କାମ କରନ୍ତି।

ଦିନ ପରେ ଦିନ, ବର୍ଷ ପରେ ବର୍ଷ ଗଡ଼ି ଚାଲିଲା। ତେଣେ କାମଧ୍ୱଜଙ୍କର ଭକ୍ତି-ବୃକ୍ଷଟି ଧୀରେ ଧୀରେ ବିଶାଳରୂପ ଧାରଣ କରୁଥାଏ। ବାହ୍ୟ ପରିସ୍ଥିତିର ଚାପରେ ତାଙ୍କର ନିଷ୍ଠା କୁଣ୍ଠିତ ହେବା ପରିବର୍ତ୍ତେ ଶାଣରେ ସ୍ୱର୍ଣ୍ଣ ଘର୍ଷଣ ପାଇ ଚକ୍‌ଚକ୍ କଲା ଭଳି ତାଙ୍କର ସାଧନା ଦିନକୁ ଦିନ ବଢ଼ି ଚାଲିଥାଏ। ଦିନେ ସେ ପ୍ରଭୁଙ୍କ ଦର୍ଶନ ଆଶାରେ ଅତ୍ୟନ୍ତ ବ୍ୟାକୁଳ ହୋଇ କହିଲେ—"ଦୟାମୟ! ମୋ ଭଳି ଅଧମର ଏ ସଂସାରରେ ଆଉ କେଉଁ କାମ ବାକି ଅଛି ଯେ ବଞ୍ଚାଇ ରଖିଛ? ତୁମର କିଣା ଚାକରକୁ ତୁମ ପାଦପଦ୍ମକୁ ଡାକି ନ ନେଉଛ କାହିଁକି? ତୁମ କର୍ଣ୍ଣରେ କ'ଣ ମୋ ଡାକ ପଡୁ ନାହିଁ। କିଛି ନ ହେଲେ ବି ଥରଟିଏ ଦର୍ଶନ ଦେଇ ଏ ବ୍ୟାକୁଳ ପ୍ରାଣକୁ ତ ଟିକିଏ ଧୈର୍ଯ୍ୟ ଦିଅ।" ଏହିପରି ପ୍ରାର୍ଥନା କରୁ କରୁ ହଠାତ୍ ତାଙ୍କ ସମ୍ମୁଖରେ ପ୍ରଭୁ ରାମଚନ୍ଦ୍ର ପ୍ରକଟ ହୋଇଗଲେ। ପ୍ରଭୁଙ୍କର ନବଦୂର୍ବାଦଳ ଜିଣି ଅଙ୍ଗକାନ୍ତି, ରାଜୀବ ନେତ୍ର, ସ୍ୱର୍ଣ୍ଣାଭ ବସ୍ତ୍ରାଭୂଷଣ ଦର୍ଶନ କରି କାମଧ୍ୱଜଙ୍କର ମନପ୍ରାଣ ଆନନ୍ଦରେ କଲ୍ଲୋଳିତ ହୋଇ ଉଠିଲା। ମାତ୍ର ମାଆ ଜାନକୀ ଓ ଭ୍ରାତା ଲକ୍ଷ୍ମଣଙ୍କ ବିନା ପ୍ରଭୁଙ୍କୁ ଏକାକୀ ଦେଖି ସେ ପୂର୍ଣ୍ଣ ତୃପ୍ତ ହେଉ ନ ଥାନ୍ତି। ତାଙ୍କର

ଆନ୍ତରିକ ଅଭିଳାଷ ପୂର୍ଣ୍ଣ କରିବା ପାଇଁ ସେହି ମୁହୂର୍ତ୍ତରେ ମାଆ ସୀତା ଓ ଭ୍ରାତା ଲକ୍ଷ୍ମଣ ମଧ୍ୟ ତାଙ୍କୁ ଦର୍ଶନ ଦେଲେ। ତ୍ରିମୂର୍ତ୍ତିଙ୍କୁ ନେତ୍ର ସମ୍ମୁଖରେ ପାଇ ତାଙ୍କର ମନପ୍ରାଣ ସବୁକିଛି ଭକ୍ତିରସ-ସିନ୍ଧୁରେ ବୁଡ଼ିଗଲା। ସେ ନିଜର ସର୍ବସ୍ୱ ଅର୍ପଣ କରି ଜୀବନର ଚରମ ଲକ୍ଷ୍ୟ ପାଇଗଲେ। ପୁଣି ଏତେ ବିହ୍ୱଳିତ ହୋଇ ଉଠିଲେ ଯେ ତାଙ୍କର ପ୍ରାଣପକ୍ଷୀ ଦେହରୂପୀ ପଞ୍ଜୁରୀରୁ ଉଡ଼ିଯିବାକୁ ଚାହିଁଲା। ଏତେ ଦିନରୁ ଯେଉଁ ଅଭୟ ପଦାରବିନ୍ଦକୁ ପାଇବାକୁ ସେ ବ୍ୟାକୁଳ ଥିଲେ, ତାହା ପାଇଯିବା ପରେ ସବୁଦିନ ପାଇଁ ସେଇଠି ନିଜକୁ ବିଲୀନ କରିଦେଇ ମରଦେହ ତ୍ୟାଗ କରିଦେଲେ।

"ମୁଁ ଯାହାଙ୍କର ଚାକର, ଯାହାଙ୍କ ପାଇଁ ମୁଁ ଜୀବନ ବିକି ଦେଇଛି, ସେ ହିଁ ମୋ ମୁହଁରେ ନିଆଁ ଦେବେ। ଏଥିପାଇଁ ତୁମେମାନେ ଚିନ୍ତା କର ନାହିଁ।"—କାମଧ୍ୱଜଙ୍କର ଏହି ପ୍ରତିଜ୍ଞାଟି ରକ୍ଷା କରି ପ୍ରଭୁ ରାମଚନ୍ଦ୍ର ଭକ୍ତରାଜ ହନୁମାନଙ୍କୁ ଆଜ୍ଞା ଦେଲେ—"ପୁତ୍ର ହନୁମାନ! କାମଧ୍ୱଜ ମୋର ପରମ ପ୍ରିୟ, ତେଣୁ ସେ ତୁମର ଭାଇ। ଏବେ ତା'ର ଅନ୍ତ୍ୟେଷ୍ଟି କାର୍ଯ୍ୟ ଓ ଦଶାହର ଦାୟିତ୍ୱ ତୁମ ଉପରେ ରହିଲା। ମୋ ଭକ୍ତର ପ୍ରତିଜ୍ଞା ଯେପରି ତଳେ ନ ପଡ଼େ, ସେଥିପ୍ରତି ବିଶେଷ ଯତ୍ନ ରଖିବ। ଏଭଳି ମହା ସମାରୋହରେ ତା'ର କାର୍ଯ୍ୟ ହେବା ଦରକାର, ଯେପରି ତାକୁ ହୀନିମାନ ମନେ କରୁଥିବା ଲୋକଙ୍କର ମୁହଁ ବନ୍ଦ ହୋଇଯିବ। ସେମାନେ ବୁଝି ପାରିବେ ଯେ ମୋ ଭକ୍ତ ନିରାଶ୍ରୟ ନୁହେଁ।"

ଭକ୍ତରାଜ ହନୁମାନ ତ ପ୍ରଭୁଙ୍କ ମନ ଜାଣି ସେବା କରିବାରେ ପ୍ରବୀଣ। ପୁଣି ତା' ସାଙ୍ଗକୁ ପ୍ରଭୁଙ୍କ ଶ୍ରୀମୁଖର ଆଜ୍ଞା ମିଳିଗଲା! ଏଥର ଦେଖିବ କ'ଣ ତାଙ୍କର ଉତ୍ସାହ। ସେ ବାୟୁବେଗରେ ଯାଇ କ୍ଷଣକ ଭିତରେ ସବୁ ବ୍ୟବସ୍ଥା କରିଦେଲେ। ଚନ୍ଦନ କାଠରେ ଜୁଇ ସଜାଇ ତହିଁରେ ନାନା ପ୍ରକାର ଅଗୁରୁ, କର୍ପୂର, ଝୁଣା, ଘିଅ ପ୍ରଭୃତି ସୁଗନ୍ଧ ଦ୍ରବ୍ୟ ପକାଇଲେ ଏବଂ ବିଧିବିଧାନର ସହିତ ରାମ ନାମ ଉଚ୍ଚାରଣ କରି କାମଧ୍ୱଜଙ୍କର ଅନ୍ତ୍ୟେଷ୍ଟି କାର୍ଯ୍ୟ ଆରମ୍ଭ କଲେ।

ଗାଆଁ ଲୋକେ ଦୂରରୁ ଧୂଆଁ ଦେଖି ଜଙ୍ଗଲରେ ନିଆଁ ଲାଗିଛି ଭାବି ଦୌଡ଼ିଲେ। ଯାଇ ଦେଖନ୍ତି ତ ଘଟଣା ଅନ୍ୟ ପ୍ରକାର। ସେମାନେ ଜାଣିପାରିଲେ ଯେ ତାହା ସାଧାରଣ ନିଆଁ ନୁହେଁ, କାମଧ୍ୱଜଙ୍କ ମୃତଦେହକୁ ଦାହ କରାଯାଉଛି। ମାତ୍ର ବଡ଼ ଆଶ୍ଚର୍ଯ୍ୟ କଥା! ହନୁମାନ ତ ଲୋକମାନଙ୍କୁ ଦେଖା ଦେଉ ନ ଥାନ୍ତି, ତେଣୁ ସେମାନେ ଆଚମ୍ବିତ ହେବା କିଛି ବଡ଼ କଥା ନୁହେଁ। ପାଖରେ କେହି ନାହିଁ,

ଜୁଇ ପାଇଁ ଏତେ ଜିନିଷ ଯୋଗାଡ଼ କଲା କିଏ? ମୁଖାଗ୍ନି ଦେଲା କିଏ? ବଡ଼ ବଡ଼ ଧନୀ ଲୋକ ଏଭଳି ଆଡ଼ମ୍ବରରେ ସଂସ୍କାର କରିବାକୁ ମଧ୍ୟ ସମର୍ଥ ହେବେ ନାହିଁ! କିଛି ଅନୁମାନ କରି ନ ପାରି ସେମାନେ ଅବିଳମ୍ବେ କାମଧ୍ୱଜଙ୍କ ଘର ଲୋକଙ୍କୁ ଡକାଇଲେ। ତିନି ଭାଇ ଘଟଣା ସ୍ଥଳରେ ପହଞ୍ଚି ଅବାକ୍ ହୋଇଗଲେ। ହଠାତ୍ ସେମାନଙ୍କର ମନେପଡ଼ିଗଲା ପୂର୍ବରୁ କାମଧ୍ୱଜ କହିଥିବା ବଚନ ଯେ "ମୁଁ ଯାହାଙ୍କର ଚାକର, ଯାହାଙ୍କ ପାଇଁ ମୁଁ ଜୀବନ ବିକି ଦେଇଛି, ସେ ହିଁ ମୋ ମୁହଁରେ ନିଆଁ ଦେବେ।" ସେମାନଙ୍କର ନାସ୍ତିକ ହୃଦୟ ଆସ୍ତିକ ହୋଇଗଲା। ଲୋକମାନଙ୍କୁ ପୂର୍ବର ଘଟଣା ସ୍ମରଣ କରାଇ ତିନିହେଁ କହିଲେ—"ଭାଇମାନେ! ଆମେ କାମଧ୍ୱଜକୁ କର୍ମକୁଣ୍ଠ ଭାବୁଥିଲୁ, ମାତ୍ର ସେ ପ୍ରଭୁଙ୍କର ଏଡ଼େ ପ୍ରିୟପାତ୍ର ଥିଲା, ତାହା ଆମକୁ ଜଣା ନ ଥିଲା। ଆମେ ଆଜି ବୁଝି ପାରିଲୁ ଯେ, ଭଗବାନ କେଡ଼େ ଦୟାଳୁ! ତାଙ୍କ ଭକ୍ତ କରିଥିବା ପ୍ରତିଜ୍ଞାକୁ ସେ କିପରି ପାଳନ କରନ୍ତି, ଆମକୁ ସେ ଜ୍ଞାନ ଆଜି ହେଲା।"

ପ୍ରଭୁଙ୍କ ଅଲୌକିକ କୃପା ଓ ଉଦାରତା ଅନୁଭବ କରି ଗାଆଁ ଲୋକେ ଜୁଇ ଜଳୁଥିବାଯାଏ ଉଚ୍ଚସ୍ୱରରେ ନାମ-ସଂକୀର୍ତ୍ତନ କଲେ। କାମଧ୍ୱଜଙ୍କ ଜୁଇ ନିଆଁରୁ ବାହାରୁଥିବା ଧୂଆଁର ସ୍ପର୍ଶରେ ସେହି ବଣର ଅନେକ ଭୂତ-ପ୍ରେତ ନୀଚ ଯୋନିରୁ ଉଦ୍ଧାର ପାଇଗଲେ। ଭକ୍ତ କାମଧ୍ୱଜ ପ୍ରଭୁଙ୍କ ପରମ ଧାମର ଅଧିକାରୀ ହେଲେ ଏବଂ ପ୍ରଭୁଙ୍କର ଭକ୍ତବତ୍ସଳତାକୁ ନାସ୍ତିକ ଲୋକେ ମଧ୍ୟ ପ୍ରଶଂସା କଲେ।

## ଘାଟମ ମିଣା

ସାଧୁସଙ୍ଗକୁ ମଳୟ ପବନ ସହିତ ତୁଳନା କରାଯାଇଛି ସତ, କିନ୍ତୁ ସାଧୁସଙ୍ଗର ମହିମା ଏତିକିରେ ପୂର୍ଣ୍ଣ ହୋଇଯାଏ ନାହିଁ। ସମ୍ଭବତଃ ଉପମା ଅଳଂକାର ଅଭାବରେ ବକ୍ତା ଏପରି କହିବାକୁ ବାଧ୍ୟ ହୋଇଛନ୍ତି। ଦେବତାଙ୍କ ଭଳି ଦୀର୍ଘ ଆୟୁ ପାଇ କେହି ଚାହିଁଲେ ହୁଏତ ପୃଥିବୀର ସମସ୍ତ ଧୂଳିକଣାକୁ ଗଣିବାକୁ ସମର୍ଥ ହୋଇପାରେ, କିନ୍ତୁ ସାଧୁସଙ୍ଗ ଓ ସତ୍ସଙ୍ଗର ମହିମା ବର୍ଣ୍ଣିବାକୁ ଯାଇ ସାଧାରଣ ମାନବ କ'ଣ, ସ୍ୱୟଂ ବୀଣାପାଣୀ ସରସ୍ୱତୀ ମଧ୍ୟ 'ନେତି ନେତି' କହି ମଉନ ହୋଇଯିବେ। ମଳୟ ପବନ କାଷ୍ଠକୁ ଚନ୍ଦନ କରିଦେବାଟା କିଛି ବଡ଼ କଥା ନୁହେଁ; କାରଣ କାଷ୍ଠ ବିନା ପ୍ରତିବାଦରେ ତାହାର ସ୍ପର୍ଶ ସ୍ୱୀକାର କରିଥାଏ। କିନ୍ତୁ ସାଧୁଜନଙ୍କ

ମୁଖରୁ ଝରି ଆସୁଥିବା ସତ୍ସଙ୍ଗ ସୁଧାକୁ ପ୍ରତିବାଦ କରୁଥିବା ଘୋର ନାସ୍ତିକ, ଚୋର, ଡାକୁ ଓ ମହାପାତକୀର ଜୀବନ କେବେ କେବେ ଏଭଳି ମୋଡ଼ନିଏ, ଯଦ୍ଦ୍ୱାରା ସେ କୁକର୍ମ ଛାଡ଼ି ପରମ ଭକ୍ତ ପାଲଟିଯାଏ । ଏଭଳି ବିରାଟ ପରିବର୍ତ୍ତନ ଘଟିଥିଲା ରାଜସ୍ଥାନ ପ୍ରାନ୍ତର ଜୟପୁର ଅନ୍ତର୍ଗତ ଖୋଡ଼ି ଗ୍ରାମର ପ୍ରସିଦ୍ଧ ଚୋର ଘାଟମ ମିଣାଙ୍କ ଜୀବନରେ ।

ରାଜସ୍ଥାନର ମିଣା ଜାତି ଜୀବହିଂସା ଓ ଚୋରି ପାଇଁ ପ୍ରସିଦ୍ଧ । ତାଙ୍କ ନାଆଁ ଶୁଣିଲେ ଲୋକେ ଦୂରରୁ ଥରହର ହୁଅନ୍ତି । ସେ ଜାତିର ଛୋଟ ପିଲାମାନଙ୍କୁ ମଧ୍ୟ ଚୋରି କୌଶଳ ବେଶ୍ ଜଣାଥାଏ । ଅନ୍ୟ ଭାଷାରେ କହିଲେ ଚୋରି ହେଉଛି ସେମାନଙ୍କର କୌଳିକ ବୃତ୍ତି । ସଙ୍ଗର ରଙ୍ଗ ଚଢ଼ିବା ଭଳି ପିଲାଟି ଦିନରୁ ଘାଟମ ମଧ୍ୟ ଚୋରିରେ ପ୍ରବୀଣ ହୋଇଗଲେ । ତାଙ୍କ ବାପା ତାଙ୍କୁ ଚୋରିର କୌଶଳ ବତାଇ କହିଥିଲେ—"ପୁଅ ରେ! ମୋର ଗୋଟିଏ କଥା ମନେ ରଖିଥିବୁ । ଭୁଲ୍‌ରେ ବି ସାଧୁସଙ୍ଗ କରିବୁ ନାହିଁ । କେଉଁଠି ସତ୍ସଙ୍ଗ ବା ଭଗବାନଙ୍କ କଥା ଚାଲିଥିଲେ ସେଠାରୁ ଦୂରେଇ ରହିବୁ । ଯଦି ଥରେ ମାତ୍ର କାନରେ ସତ୍ସଙ୍ଗ ପଡ଼ିଗଲା, ତେବେ ଜାଣିବୁ ଯେ ତୋର ଜୀବିକା ବୁଡ଼ିଲା । ତୁ ଆଉ ଚୋରି କରି ପାରିବୁ ନାହିଁ ।" ପିତାମାତା ସନ୍ତାନକୁ ପିଲାବେଳେ ଭଲ ବା ମନ୍ଦ ଯେଉଁଭଳି ଶିକ୍ଷା ଦିଅନ୍ତି, ତାହା ବେଦର ଗାର ଭଳି ତା'ର କୋମଳ ହୃଦୟରେ ଅଲିଭା ଛାପ ପକାଇଦିଏ । ଘାଟମଙ୍କ ଜୀବନରେ ସେଇଆ ହୋଇଥିଲା । ସେ ପିତାଙ୍କ ବଚନକୁ ବେଦବାକ୍ୟ ଭଳି ହୃଦୟରେ ସ୍ଥାନ ଦେଲେ ।

ଦିନକର କଥା । ଲୁଟ୍‌ପାଟ କରିବା ଉଦ୍ଦେଶ୍ୟରେ ଘାଟମ ଘୋର ଜଙ୍ଗଲରେ ବୁଲୁଥିବା ବେଳେ ଜଣେ ସାଧୁଙ୍କୁ ଦେଖିଲେ । ସେ ତାଙ୍କୁ ନମସ୍କାର କରି ବାଟକାଟି ଚାଲିଯିବାକୁ ବାହାରନ୍ତେ ସାଧୁ ତାଙ୍କର ପରିଚୟ ପଚାରିଦେବାରୁ ସେ କହିଲେ— "ମୁଁ ଚୋର । ଧନ ଲୁଟିବାକୁ ବୁଲୁଛି । କିନ୍ତୁ ବାବା ଆଜି ସକାଳଟାରୁ କା' ମୁହଁ ଦେଖିଥିଲି କେଜାଣି, ଏପର୍ଯ୍ୟନ୍ତ କେହି ଜଣେ ହେଲେ ଧରା ପଡ଼ି ନାହିଁ । ଆପଣ ଟିକେ କଲ୍ୟାଣ କରନ୍ତୁ, ଯେମିତି କିଛି ମିଳିଯିବ ।" ସାଧୁ ତାଙ୍କୁ ବୁଝାଇ କହିଲେ— "ବତ୍ସ! ଚୋରି ଅତି ହୀନ କାର୍ଯ୍ୟ । ଏହାଦ୍ୱାରା ମନୁଷ୍ୟର ଇହଲୋକ ଓ ପରଲୋକ ନଷ୍ଟ ହୋଇଯାଏ । ଭଗବାନଙ୍କ କୃପାରୁ ତୋତେ ଦେବଦୁର୍ଲଭ ମନୁଷ୍ୟ ଜନ୍ମ ମିଳିଛି । ଏହାକୁ ଏମିତି ହାତଛଡ଼ା କରିଦେବା କ'ଣ ମାନବିକତା ହେବ? ଦେବଗଣ ମଧ୍ୟ ଏଇ ମନୁଷ୍ୟ ଦେହ ପାଇବାକୁ କେତେ ଆଶା କରନ୍ତି! ତେଣୁ

ଚୋରି ଭଳି ନିନ୍ଦନୀୟ କର୍ମ ଛାଡ଼ି ପ୍ରଭୁଭକ୍ତିରେ ମନଦେବା ଉଚିତ।'' ଘାଟମ କହିଲେ—''ବାବା! ଆପଣ ସତ କହୁଛନ୍ତି। ଚୋରି କରିବା ଖରାପ କାମ। ହେଲେ ଏହା ତ ଆମର କୌଳିକ ବୃତ୍ତି; ମୋର ବାପା, ଜେଜବାପାଙ୍କ ଅମଳରୁ ଏହା ଚଳି ଆସୁଛି। ପରଲୋକକୁ ଗଲାବେଳେ ମୋ ବାପା ମୋତେ ନିଜର ଜୀବିକା ଛାଡ଼ିବାକୁ ମନାକରି ଯାଇଛନ୍ତି। ତେଣୁ ଏହା ମୋ ପକ୍ଷେ ସମ୍ଭବ ନୁହେଁ। ଆପଣ ଆଉ ଯାହା କହିବେ ମୁଁ ମାନିବାକୁ ଆପ୍ରାଣ ଚେଷ୍ଟା କରିବି, କିନ୍ତୁ ଚୋରି ଛାଡ଼ିବା କଥା କୁହନ୍ତୁ ନାହିଁ।''

ସାଧୁସନ୍ଥ ତ ସହଜେ ଦୟାଳୁ। ସେ ତା'ର ଦୁର୍ବଳତା ଦେଖି କହିଲେ—''ହଉ ହେଲା, ଯଦି ତୁ ଚୋରି ଛାଡ଼ି ପାରିବୁ ନାହିଁ କିଛି ଆପତ୍ତି ନାହିଁ, ମାତ୍ର ମୋର ଚାରୋଟି କଥା ତୋତେ ମାନିବାକୁ ପଡ଼ିବ—(୧) ସବୁବେଳେ ସତ କହିବୁ, (୨) ସାଧୁସନ୍ଥଙ୍କର ସେବା କରିବୁ, (୩) ଭଗବାନଙ୍କୁ ଭୋଗ ଲଗେଇ ତା' ପରେ ପ୍ରସାଦ ପାଇବୁ, (୪) କେଉଁଠି ଠାକୁରଙ୍କର ଆଳତି ହେଉଥିଲେ ସବୁ କାମ ଛାଡ଼ି ଆଳତି ଦର୍ଶନ କରିବୁ।''

ସାଧୁଙ୍କର ଚାରୋଟିଯାକ ଉପଦେଶ ଘାଟମ ସ୍ୱୀକାର କରିନେଲେ। ସାଧୁସେବା ହୋଇଗଲା ତାଙ୍କ ଜୀବନର ପ୍ରଥମ ଧର୍ମ। ଯେଉଁଦିନ ଚୋରିରୁ ଯାହା କିଛି ମିଳେ, ପ୍ରଥମେ ସାଧୁସେବାରେ ଲଗାନ୍ତି ଏବଂ ଯାହା ବଳିଯାଏ ସେଥିରେ କୁଟୁମ୍ବ ଗୁଜୁରାଣ କରନ୍ତି। ଦିନେ ଭିକ୍ଷା ଉଦ୍ଦେଶ୍ୟରେ ତାଙ୍କ ଦୁଆରେ କେତେକ ସାଧୁସନ୍ଥ ଆସି ପହଞ୍ଚିଗଲେ। ଘାଟମ ଯାଇ ରୋଷେଇ ଘରେ ଦେଖିଲାବେଳକୁ ଅଟା, ଡାଲି, ଚାଉଳ କିଛି ହେଲେ ନାହିଁ। ସାଧୁଙ୍କ ସତ୍କାର ପାଇଁ ସେ ଉଧାର ମାଗି ମାଗି ଗାଁଆ ସାରା ବୁଲି ଆସିଲେ, କିନ୍ତୁ ତାଙ୍କୁ କେହି କିଛି ଦେଲେ ନାହିଁ। ସେ ଭଗବାନଙ୍କୁ ସ୍ମରଣ କରି ଶେଷକୁ ଚୋରି କରିବାକୁ ସ୍ଥିର କରି ଜଣେ ଚାଷୀର ଖଳାରେ ଗଦା ହୋଇଥିବା ଧାନ ଗଦାରୁ କିଛି ଧାନ ଚୋରାଇ ଆଣି ସାଧୁଙ୍କୁ ଭିକ୍ଷା ଦେଇ ସନ୍ତୁଷ୍ଟ କଲେ। ସାଧୁସନ୍ଥ ତାଙ୍କୁ ଭକ୍ତିର ଆଶୀର୍ବାଦ ଦେଇ ଫେରିଗଲେ। ଘାଟମଙ୍କ ମନରେ ଭୟ ଜାତ ହେଲା ଯେ ପାଦ ଚିହ୍ନରୁ ଲୋକେ ଯଦି ତାଙ୍କୁ ଚିହ୍ନି ଯାଆନ୍ତି, ତେବେ ସେ ଧରା ପଡ଼ିଯିବେ। କିନ୍ତୁ ଭଗବାନଙ୍କ ଇଚ୍ଛାରୁ ସେହି ରାତିରେ ଅଘଟଣ ପ୍ରବଳ ମେଘ-ପବନ ମାଡ଼ି ଆସିବାରୁ ପାଦ ଚିହ୍ନ ଲିଭିଗଲା ଏବଂ ଘାଟମଙ୍କର ଚିନ୍ତା ଦୂର ହୋଇଗଲା। ସେହି ଦିନଠାରୁ ଠାକୁରଙ୍କ ପ୍ରତି ଓ ସାଧୁସନ୍ଥଙ୍କ ପ୍ରତି ତାଙ୍କର ଭାବନା ପୂର୍ବ ତୁଳନାରେ ବହୁଗୁଣ ବଢ଼ିଗଲା।

ଘାଟମଙ୍କ ଗୁରୁଦେବଙ୍କ ଆଶ୍ରମରେ ଦିନେ କୌଣସି ଉତ୍ସବର ଆୟୋଜନ ଚାଲିଥିଲା। ଭକ୍ତଜନ ଉତ୍ସବରେ ଗୁରୁଙ୍କୁ ଯଥାଶକ୍ତି ଭେଟି ଦେଇ ନିଜ ନିଜର ଜୀବନ କୃତାର୍ଥ କରୁଥାନ୍ତି। ଘାଟମଙ୍କର ମନ ମଧ୍ୟ ଗୁରୁଙ୍କ ଦର୍ଶନ କରି ଆସିବାକୁ ବ୍ୟାକୁଳ ହେଉଥାଏ। କିନ୍ତୁ ତାଙ୍କ ପାଖରେ ଗୁରୁଙ୍କୁ ଭେଟି ଦେବାକୁ କିଛି ନ ଥିବାରୁ ସେ ଯିବାକୁ ଲାଜ କରୁଥାନ୍ତି। ପୁଣି ଭାବୁଥାନ୍ତି ଏଭଳି ସୁବର୍ଣ୍ଣ ସୁଯୋଗ ହାତଛଡ଼ା କରିଦେଲେ ଆଉ ମିଳିବ ନାହିଁ। ଯାହା ହେଲେ ବି କେଉଁଠୁ କିଛି ଯୋଗାଡ଼ କରି ଯିବାକୁ ହେବ। ଯଦିବା ସଦ୍‌ଗୁରୁଙ୍କ ମନରେ ଶିଷ୍ୟଠାରୁ ସାଂସାରିକ ଧନ-ସମ୍ପତ୍ତି ପାଇବାର ଆଶା ନ ଥାଏ, ସେ ଏସବୁରୁ ଊର୍ଦ୍ଧ୍ୱକୁ ଉଠି ସାରିଥାନ୍ତି, ତଥାପି ତାଙ୍କୁ ଭାବନା ସହକାରେ କେହି କିଛି ଦେଲେ ସେ ହତାଦର ନ କରି ତା'ର ମନ ରଖିବା ପାଇଁ ତାହା ସ୍ୱୀକାର କରନ୍ତି। ଗୁରୁଙ୍କ ପାଦତଳେ କିଛି ଅପର୍ଣ କରିବା ଲକ୍ଷ୍ୟରେ ପ୍ରଭୁଙ୍କୁ ସ୍ମରଣ କରି ସିପାହୀ ବେଶ ଧରି ରାଜବାଟୀରୁ ଚୋରି କରିବାକୁ ବାହାରି ପଡ଼ିଲେ। ବୀରଦର୍ପରେ ରାଜବାଟୀରେ ପଶିଗଲା ବେଳକୁ ଦ୍ୱାରପାଳ ପଚାରିଲା—''କିଏ ତୁମେ? କୁଆଡ଼େ ଯାଉଛ?'' ସେ ସତ୍ୟ କହିବାର ବ୍ରତ ଧାରଣ କରିଥିଲେ। ତେଣୁ ନିର୍ଭୀକ ଚିତ୍ତରେ କହିଲେ—''ମୁଁ ଚୋର, ରାଜବାଟୀରୁ ଚୋରୀ କରିବାକୁ ଯାଉଛି।'' ଦ୍ୱାରପାଳ ତାଙ୍କ କଥା ଶୁଣି ଚମକି ପଡ଼ିଲା। ରାତିର ଘନ ଅନ୍ଧାରରେ ମୁହଁକୁ ମୁହଁ ଦିଶୁ ନ ଥାଏ। ସେ ଭାବିଲା ବୋଧହୁଏ ତା'ଦ୍ୱାରା କୌଣସି ଉଚ୍ଚପଦସ୍ଥ ସେନାପତିଙ୍କର ଅପମାନ ହୋଇଗଲା। ନଚେତ୍ କୌଣସି ଚୋର କ'ଣ କେବେ ଏଭଳି ନିର୍ଭୀକ ହୋଇ ନିଜକୁ ଚୋର ବୋଲି କହି ପାରିବ। ତେଣୁ ସେ ଆଉ କିଛି ନ ପଚାରି ମୁଣ୍ଡ ନୁଆଇଁ ସଲାମ କଲା। ଘାଟମ ଚୋରି କରିସାରି ରାଜାଙ୍କର ଘୋଡ଼ାଶାଳାରୁ ସୁନ୍ଦର ଘୋଡ଼ାଟିଏ ଖୋଲି ଆଣି ନିର୍ଭୟରେ ତା' ଉପରେ ବସି ନଗରରୁ ବାହାରି ଆସିଲେ। ବାହାରିବା ସମୟରେ ମଧ୍ୟ ସେନାପତି ଯାଉଛନ୍ତି ବୋଲି ଭାବି ଦ୍ୱାରପାଳ ସଲାମ୍ କଲା।

ଘାଟମଙ୍କ ମନରେ ଭୟଭ୍ରାନ୍ତି କିଛି ନ ଥାଏ। ସେ ନିଶ୍ଚିନ୍ତରେ ଠାକୁରଙ୍କୁ ସ୍ମରଣ କରି ଘୋଡ଼ା ଦୌଡ଼ାଇ ଯାଉଥାନ୍ତି। ବାଟରେ ଦେଖିଲେ ଯେ ଗୋଟିଏ ମନ୍ଦିରରେ ପ୍ରଭାତ ବେଳାରେ ମଙ୍ଗଳ ଆଳତି ଚାଲିଛି। ତାଙ୍କର ଗୁରୁଦେବଙ୍କ କଥା ମନେ ପଡ଼ିଗଲା। ସେ ଅବିଳମ୍ବେ ଘୋଡ଼ାରୁ ଓହ୍ଲାଇ ଠାକୁରଙ୍କୁ ପ୍ରଣାମ କଲେ ଏବଂ ଘୋଡ଼ାଟିକୁ ଗୋଟିଏ ଗଛରେ ବାନ୍ଧିଦେଇ ଆଳତି ଦର୍ଶନରେ ମନକୁ ମଜାଇ ଦେଲେ। ଏପଟେ ସକାଳୁ ସକାଳୁ ରାଜାଙ୍କର ପ୍ରିୟ ଘୋଡ଼ା ଚୋରି ଯାଇଥିବାର

ଖବର ପାଇ ସୈନ୍ୟ-ସାମନ୍ତମାନେ ଦ୍ୱାରପାଳକୁ ପଚରା ଉଚରା କଲେ। ସେ ରାତିର ସବୁ ଘଟଣା କହିବା ପରେ ସେମାନେ ଗ୍ୱେରକୁ ଖୋଜିବା ପାଇଁ ବାୟୁବେଗରେ ଦୌଡ଼ିଲେ। କିଛି ଦୂର ଯାଇ ଦେଖନ୍ତି ତ ରାଜାଙ୍କ ଘୋଡ଼ାଟି ମନ୍ଦିର ସାମନାରେ ଗୋଟିଏ ଗଛରେ ବନ୍ଧା ହୋଇଛି। ସେମାନେ ଘୋଡ଼ା ଗ୍ୱେର ଆସିଲେ ତାକୁ ଧରିନେଇ ରାଜାଙ୍କ ପାଖରେ ପହଞ୍ଚାଇ ଦେବା ଆଶାରେ ସେଇଠି ଲୁଚି ବସି ରହିଲେ।

ତେଣେ ଭକ୍ତ ଘାଟମ ଠାକୁରଙ୍କ ଆଳତି ଦର୍ଶନ କରୁ କରୁ ଭାବମଗ୍ନ ହୋଇଗଲେ। ତାଙ୍କ ହୃଦୟରେ ଧୀରେ ଧୀରେ ଭକ୍ତି ସଞ୍ଚାର ହେଲା, ପ୍ରଭୁଙ୍କ ସହିତ ତାଙ୍କର ପୂର୍ବ ସମ୍ବନ୍ଧର ଅତୁଟ ସ୍ମୃତି ଜାଗରିତ ହୋଇଗଲା। ତାଙ୍କୁ ଲାଗିଲା ଆଜି ଠାରୁ ସତେ ଅବା ତାଙ୍କର ନୂଆ ଜନ୍ମ ହୋଇଯାଇଛି; ସେ ଆଉ ପୂର୍ବଭଳି ଗ୍ୱେର ହୋଇ ନାହାନ୍ତି। ସେ ଠାକୁରଙ୍କ ସୁନ୍ଦର ଛବିକୁ ହୃଦୟରେ ବସାଇ ବହୁ ସମୟ ପରେ ମନ୍ଦିରରୁ ବାହାରିଲେ। ଭକ୍ତିର ଦିବ୍ୟ ମାଦକତାରେ ତାଙ୍କର ପାଦ ଟଳମଳ ହେଉଥାଏ। ସେ ଆସି ଘୋଡ଼ା ପାଖରେ ପହଞ୍ଚିବା କ୍ଷଣି ରାଜାଙ୍କ ସୈନ୍ୟମାନେ ଆସି ତାଙ୍କୁ ଗ୍ୱରିକଡୁ ଘେରିଗଲେ। ପଗ୍ୱରିବାରୁ ସେ ମୂଳରୁ ଶେଷଯାଏ ସତ କଥା ଖୋଲି କହିଦେଲେ। ସୈନ୍ୟମାନେ ପୁଣି ସନ୍ଦେହ ଦୃଷ୍ଟିରେ ପଗ୍ୱରିଲେ—"ଅନ୍ୟ ସବୁ ଚିହ୍ନ ତ ତୁମ ସହିତ ମେଳ ଖାଉଛି, କିନ୍ତୁ ଆମେ ବୁଝିପାରୁ ନାହୁଁ ଯେ ଆମ ରାଜାଙ୍କର ଏଇ କଳା ଘୋଡ଼ାଟି ରାତିକ ଭିତରେ ଧଳା ହୋଇଗଲା କେମିତି?" ଏତିକିରେ ଘାଟମଙ୍କ ଆଖିରୁ ଧାର ଧାର ଲୁହ ଝରି ଆସିଲା। ତାଙ୍କ ଉପରେ ଠାକୁରଙ୍କର ବାତ୍ସଲ୍ୟ ସ୍ନେହ ଅନୁଭବ କରି ସେ ଭାବଗଦ୍‌ଗଦ କଣ୍ଠରେ କହିଲେ—"ତୁମେମାନେ ମୋ କଥାରେ ସନ୍ଦେହ କର ନାହିଁ। ଏ ସବୁ ମୋ ପ୍ରଭୁଙ୍କର କରୁଣା। ମୋ ଭଳି ପାପୀକୁ ରକ୍ଷା କରିବା ପାଇଁ ସେ କଳା ଘୋଡ଼ାକୁ ଧଳା କରିଦେଲେ।" ସୈନ୍ୟମାନେ ଆଚମ୍ବିତ ହୋଇ ତାଙ୍କୁ ରାଜାଙ୍କ ନିକଟକୁ ନେଇଗଲେ। ସେ ରାଜାଙ୍କୁ ଭକ୍ତିପୂତ ପ୍ରଣତି ଜଣାଇ ସବୁ କଥା କହିଲେ। ରାଜା ତାଙ୍କର ନିର୍ଭୀକତା, ସାଧୁଭକ୍ତି, ସତ୍ୟବାଦିତା ଓ ଗୁରୁନିଷ୍ଠାରେ ଏତେ ପ୍ରଭାବିତ ହେଲେ ଯେ ସେ ତାଙ୍କର ପାଦତଳେ ପ୍ରଣାମ କରି ତାଙ୍କୁ ଗୁରୁସେବା ଓ ଆଜୀବିକା ପାଇଁ ଯଥେଷ୍ଟ ଧନ-ସମ୍ପତ୍ତି ପ୍ରଦାନ କଲେ ଏବଂ ତାଙ୍କ ନାଆଁରେ ଅନେକ ଜମିବାଡ଼ି ଲେଖିଦେଲେ।

ସେ ଦିନଟି ଘାଟମଙ୍କ ପାଇଁ ଅବିସ୍ମରଣୀୟ ହୋଇ ରହିଗଲା। ସେ ପ୍ରଭୁଙ୍କର

**ଅତିଶୟ** କରୁଣାକୁ ମନେ ପକାଇ ପକାଇ ହର୍ଷଗଦ୍‌ଗଦ ହୋଇ ପଡୁଥାନ୍ତି। ଏସବୁ ଗୁରୁଙ୍କ ଆଜ୍ଞା ପାଳନର ଫଳ ବୋଲି ଅନୁଭବ କରିବାରୁ ତାଙ୍କର ଗୁରୁଦେବଙ୍କ ପ୍ରତି ଶ୍ରଦ୍ଧା ଓ ତାଙ୍କ ବଚନରେ ପ୍ରବଳ ନିଷ୍ଠା ହୋଇଗଲା। ସେ ଗୁରୁଙ୍କ ଉତ୍ସବରେ ସମ୍ମିଳିତ ହେଲେ। ସେହିଦିନ ଠାରୁ ତାଙ୍କର ହୃଦୟ ନିର୍ମଳ ହୋଇଗଲା। ସେ ଚୋରି କର୍ମ ଛାଡ଼ି ଅହର୍ନିଶ ଠାକୁରଙ୍କ ସେବା, ଧ୍ୟାନ, ଚିନ୍ତନରେ ମଗ୍ନ ରହିଲେ।

ଏମିତି ପ୍ରଭୁଙ୍କୁ ଧ୍ୟାନ କରୁ କରୁ ଥରେ ଭକ୍ତ ଘାଟମଙ୍କ ମନ ଭଗବାନଙ୍କର ପ୍ରତ୍ୟକ୍ଷ ଦର୍ଶନ ପାଇବା ପାଇଁ ବ୍ୟାକୁଳ ହୋଇ ଉଠିଲା। ସେ ଚିନ୍ତା କଲେ— "ଏତେ ଦିନ ହେଲା ଗୁରୁଦେବଙ୍କ ଠାରୁ ମାର୍ଗ ଦର୍ଶନ ପାଇ ମଧ୍ୟ ଆଜିଯାଏ ମୋତେ ଠାକୁରଙ୍କ ଦର୍ଶନ ମିଳିଲା ନାହିଁ। କ'ଣ କରିବି? ପ୍ରଭୁଙ୍କ ଛଡ଼ା ମୋର ଆଉ କିଏ ଅଛି ଯେ କାହା ଆଗରେ ଗୁହାରୀ ଜଣାଇବି?" ତାଙ୍କ ଦେହସାରା ଏକ ପ୍ରକାର ଶିହରଣ ଖେଳିଗଲା। ସେ ଆର୍ତ୍ତସ୍ୱରରେ ଠାକୁରଙ୍କୁ ପ୍ରାର୍ଥନା କରି କହିଲେ—"ପ୍ରଭୁ! ଆଗରୁ ମୁଁ ଅଗାଧୁଆ ତୁମକୁ ଭୋଗ ନ ଲଗାଇ ଖାଇଦେଉଥିଲି, କିନ୍ତୁ ଏବେ ଗାଧୋଇପାଧୋଇ ତୁମ ପ୍ରସାଦ ପାଉଛି। ତୁମ ପାଇଁ ବେକରେ କଣ୍ଠିମାଳ ପିନ୍ଧିଛି ଓ ମୁଣ୍ଡରେ ଚିତା କାଟିଛି। ହେ ଦୟାମୟ! ମୁଁ ତ ତୁମ ଲାଗି ଏତେ ନିୟମ କଲି, କିନ୍ତୁ ତୁମେ ମୋ ପାଇଁ କ'ଣ କଲ? ମନେରଖ ଯେ ମୋ ଭଳି ମିଣା ଜାତିର ମହାପାପୀ ଘାଟମ ଦାସକୁ ଏବେ ଉଦ୍ଧାର କରିବାର ଦାୟିତ୍ୱ ତୁମର। ପ୍ରଭୁ! ମୋର ଆଉ କିଏ ଅଛି ଯେ କାହାକୁ ଗୁହାରୀ କରିବି?" ଭକ୍ତ ଘାଟମଙ୍କର ଏଭଳି ଗାଉଁଲି ଭାଷାର ପ୍ରେମପୂରିତ ସହଜ ସରଳ ଅନାବିଳ ପ୍ରାର୍ଥନା ଶୁଣି ଭଗବାନ ତତ୍‌କ୍ଷଣାତ୍ ତାଙ୍କ ସମ୍ମୁଖରେ ପ୍ରକଟ ହୋଇଗଲେ। ସେ ପ୍ରଭୁଙ୍କ ପାଦପଦ୍ମରେ ବନ୍ଦନା କରି ତାଙ୍କର ନୟନାଭିରାମ ରୂପ ଦର୍ଶନରେ ମୁଗ୍ଧ ହୋଇଗଲେ। ପ୍ରଭୁଙ୍କୁ ହୃଦୟରେ ବସାଇ ସେ ଆନନ୍ଦ ସାଗରର ଉତ୍ତୁଙ୍ଗ ଲହରୀମାଳାରେ ନିଜକୁ ଭସାଇ ଦେଲେ। ସନ୍ଥଙ୍କ ପ୍ରଭାବରୁ ତାଙ୍କ ଜୀବନରେ କେତେ ଯେ ବିରାଟ ପରିବର୍ତ୍ତନ ହୋଇ ପାରିଥିଲା, ତାହାର ବର୍ଣ୍ଣନା ସେ ଅନେକ ମାରୱାଡ଼ି ଗୀତରେ କରିଛନ୍ତି। ସେଥି ମଧ୍ୟରୁ ଆମ ଭାଷାରେ ଗୋଟିଏ ଦିଆଗଲା—

**ଭାବୁଥିଲି ଆଗ କେଉଁ ଉପାୟରେ ଜୀବ ମାରି ଲୁଟି ଆଣିବି ଧନ।**
**ଏବେ ଭାବୁଅଛି ମୋ ଘରକୁ କେବେ ଆସିବେ ପ୍ରଭୁଙ୍କ ଭକତଜନ॥**
**ଶବର ମେଳରେ ଆଗେ ବୁଲି ବୁଲି ଚୋରି କରି ନିତ୍ୟ ଭରେ ଉଦର।**

**ଏବେ ସାଧୁଙ୍କର ଅଇଁଠା ପ୍ରସାଦ ପାଇବାକୁ ମନେ ଆଗ୍ରହ ମୋର ॥**
**ହାତେ ହାତକଡ଼ି ପକାଇଣ ଆଗ ରାଜାଙ୍କର ଦୂତ ନିଅନ୍ତି ଟାଣି ।**
**ଏବେ ସାଧୁଙ୍କର ପାଦଧୂଳି ମୁଣ୍ଡେ ବୋଳିଣ ନୟନୁ ବହଇ ପାଣି ॥**
**କୁସଙ୍ଗରେ ପଡ଼ି ଆଗରୁ ଘାଟମ କେଉଁପରି ବେଶ ଥିଲୁରେ କରି ।**
**ଏବେ ଗୁରୁଙ୍କର ସୁସଙ୍ଗ ପାଇଣ ତୋ ଜୀବନ ନାବ ହୋଇଲା ପାରି ॥**

ଘାଟମ ଦାସଙ୍କ ଉପଦେଶ ମଧ୍ୟ ଅତ୍ୟନ୍ତ ମର୍ମସ୍ପର୍ଶୀ । ତାଙ୍କ ଉପଦେଶର ଗୋଟିଏ ଭାବଗର୍ଭିକ ମନବୋଧ ଶିକ୍ଷା ଉତ୍କଳ ଭାଷାରେ ଅନୁବାଦ କରାଯାଉଛି—

**ଯେଉଁ ଜନ ତୁଣ୍ଡେ ହରି ଉଚ୍ଚାରେ ।**
**ଆପଣେ ତରିବା କି ଅବା ବିଚିତ୍ର କୋଟି ପତିତଙ୍କୁ ଅଚିରେ ତାରେ ॥**
**କାମ କ୍ରୋଧ ଲୋଭ ମଦ କରି ଦୂର ଅନ୍ତରେ ଜୀବଙ୍କ ଦୟା ବିଗ୍ରହେ ।**
**ଧରଣୀ କୋଳରେ ଧନ୍ୟ ତା' ଜୀବନ ସର୍ବ ତୀର୍ଥର ସେ ପାତକ ହରେ ॥**
**ଅତି ହୀନିମାନ ମିଣା କୁଳେ ଜନ୍ମି ଗୁରୁଦେବଙ୍କର ବଚନ ବଳେ ।**
**ଘାଟମ ଲଭିଲା ରାମଙ୍କ ଦର୍ଶନ ଯା ଦୟାରେ ତିନି ଭୁବନ ତରେ ॥**

*ଭକ୍ତ ଓ ଭଗବାନଙ୍କର ଜୟ!*



ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ॥
ତ୍ୱଦୀୟଂ ବସ୍ତୁ ଗୋବିନ୍ଦ ତୁଭ୍ୟମେବ ସମର୍ପୟେ ।
ତେନ ତ୍ୱଦଙ୍ଘ୍ରିକମଳେ ରତିଂ ମେ ଯଚ୍ଛ ଶାଶ୍ୱତୀମ୍ ॥

ଓଁ ପୂର୍ଣ୍ଣମିଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥

॥ ହରିଃ ଓଁ ତତ୍ସତ୍ ॥

॥ ଜୟ ଶ୍ରୀଚନ୍ଦ୍ରମୌଳି ॥

